ଶ୍ରୀ ରାଜକିଶୋର ରାୟ

# ରାୟ ରଚନାବଳୀ



ଦ୍ୱିତୀୟ ଭାଗ

# ରାୟ ରଚନାବଳୀ

## (ଦ୍ୱିତୀୟ ଖଣ୍ଡ)

ଶ୍ରୀ ରାଜକିଶୋର ରାୟ

ପ୍ରକାଶକ

**ଜଗନ୍ନାଥ ରଥ**

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦବିହାରୀ, କଟକ-୦୨

# ରାୟ ରଚନାବଳୀ


ଲେଖକ :
ଶ୍ରୀ ରାଜକିଶୋର ରାୟ

ସ୍ୱତ୍ୱାଧୀକାରୀ :
ମାଳବିକା ରାୟ

ପ୍ରକାଶକ :
ଜଗନ୍ନାଥ ରଥ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨
ଫୋନ୍-୦୬୭୧-୨୩୦୮୪୫୫(ଅ)

ଅକ୍ଷରସଜ୍ଜା :
କ୍ରିଷ୍ଣା ପ୍ରିଣ୍ଟିଂସ୍, କଟକ-୦୨

ମୁଦ୍ରଣ :
ଲକ୍ଷ୍ମୀ ଅଫସେଟ୍
କଟକ

ପ୍ରଥମ ସଂସ୍କରଣ :
୨୦୨୧

ମୂଲ୍ୟ :
ଟ.୭୦୦/- ମାତ୍ର

ISBN-81-7406-073-1


# Ray Rachanabali


Works of :
**Sri Rajkishore Ray**





Publisher :
**M/s Jagannath Ratha**
Publisher & Book Seller
Binod Behari, Cuttack-2
Ph- 0671-2308455(O)

Laser typeset :
**Krishna Printings**
Cuttack-02

Printings :
**Laxmi Offset**
Cuttack

First Edition :
**2021**

Price :
**Rs.700/- only**

# ସୂଚୀ

# ସୂଚନା

"ମନ୍ୱନ୍ତରର ମାନବ" ଶୀର୍ଷକ ମୋର ଏକ ଗଳ୍ପ ସଂକଳନ ଦୀର୍ଘ ସମୟର ବ୍ୟବ୍ଧାନ ପରେ ପ୍ରକାଶ ପାଉଛି । ବ୍ୟବଧାନ ରହିଲେ ଆକାଂକ୍ଷିତ ମୁହୂର୍ତ୍ତ ପରିପୁଷ୍ଟି ପାଏ । କ୍ରମେ ସୂର୍ଯ୍ୟାସ୍ତକୁ ଢଳି ପଡୁଥିବା ଜୀବନର କାହାଣୀ ମ୍ଳାନ ହୋଇନାହିଁ ବୋଲି ମୋର ବିଶ୍ୱାସ, ଏ ବିଶ୍ୱାସକୁ ପରମେଶ୍ୱର ସମର୍ଥନ କଲେ ହେଲା । ସେ ହିଁ ବିଧାତୃ ।

'ମାନବ'କୁ ମାପିବା, ପ୍ରଜ୍ଞା ଓ ଅନୁଭୂତିରେ ମାନୁଷୀ ରୀତିରେ, ସେ କବି, କଳାକାର, ଯିଏ ହୁଅନ୍ତୁ, ପୂର୍ଣ୍ଣ ସମ୍ଭବ ନୁହେଁ । ତେଣୁ 'ମନ୍ୱନ୍ତରର ମାନବ'ର ଯେତିକି ରଙ୍ଗରେଖା ହୃଦୟରେ ଆଶ୍ଲିଷ୍ଟ ହୋଇଛି, ସେତିକି ଏଥିରେ ପରିବେଶିତ ।

ମୋର ପାଠକପାଠିକାମାନଙ୍କୁ ଏହା ନବଦିଗନ୍ତର ଉପଢୌକନ । ତାଙ୍କରି ପାଖରେ ଏହା ଉତ୍ସର୍ଗୀକୃତ । ପଢୁ ପଢୁ ଯଦି ଏହି କାହାଣୀଗୁଡ଼ିକର କିଛି ମମତା-ସ୍ପର୍ଶ ସେମାନଙ୍କ ହୃଦୟରେ ରଞ୍ଜିତ ହୋଇଯାଏ, ମୁଁ ଧନ୍ୟ ହେବି ।

ପରିଶେଷରେ ଫ୍ରେଣ୍ଡ୍ସ ପବ୍ଲିଶର୍ସର ସ୍ୱତ୍ତ୍ୱାଧିକାରୀ ଗୁଣମାନ୍ ସହଦେବ ପ୍ରଧାନ 'ମନ୍ୱନ୍ତରର ମାନବ'କୁ ସୂର୍ଯ୍ୟାଲୋକ ଦେଇଥିବାରୁ ତାଙ୍କୁ ମୁଁ କଲ୍ୟାଣ କରୁଛି ।

ଶ୍ରୀକ୍ଷେତ୍ର,
ବଳଗଣ୍ଡି
ପୁରୀ

ରାଜକିଶୋର ରାୟ

# ମନ୍ୱନ୍ତରର ମାନବ

ଟେଲିଫୋନ୍ ଧରିଛି ବିନ୍ଦୁ, କଥା କହୁଥିଲା। ସେପଟେ ରତନ ପଟ୍ଟନାୟକ। ଷ୍ଟେଟ୍ ବ୍ୟାଙ୍କ କର୍ମଚାରୀ, ଯୁବକ।

ଟେଲିଫୋନ୍‌ରେ କଥା କହୁଥିଲାବେଳେ ବିନ୍ଦୁର କପାଳରେ ଝାଳ... ବହିପଡୁଛି ଧାର ଧାର ହୋଇ। ତା'ର ବାପା ବାଥ୍‌ରୁମ୍‌ରେ ପଡ଼ିଯାଇଛନ୍ତି। ଗୋଟାଏ ହାତ ଅଚଳ। ଶୀଘ୍ର ଆସ, ରତନ ଦା'। ମାଆ ସେତିକିବେଳୁ ମୂର୍ଚ୍ଛା। ବାବାଙ୍କୁ ଡାକ୍ତରଖାନାକୁ ନେବାକୁ ହେବ। ବ୍ୟାଙ୍କରୁ ଛୁଟିନେଇ ଚାଲିଆସ ରତନ ଦା'।

ରତନ ପଟ୍ଟନାୟକ ଆଉ ବିନ୍ଦୁ ମୁଖାର୍ଜୀ, ବାପା ମଦନ ପଟ୍ଟନାୟକ, ତାଙ୍କ ବାପା ରାସବିହାରୀ ପଟ୍ଟନାୟକ, ତାଙ୍କ ବଡ଼ବାପା ଯୁଗଳ ପଟ୍ଟନାୟକ।

ବିନ୍ଦୁ ମୁଖାର୍ଜୀ, ବାପା ଜ୍ଞାନେଶ ମୁଖାର୍ଜୀ, ତାଙ୍କ ବାପା ଶ୍ୟାମଳ ମୁଖାର୍ଜୀ, ବଡ଼ବାପା ଅମରେଶ ମୁଖାର୍ଜୀ।

ପ୍ରାଗୈତିହାସିକ ଯୁଗରୁ ପ୍ରାଣୀଗୁଡ଼ାକ ପାଖାପାଖି ହୋଇ ଦେହକୁ ପ୍ରସାରଣ ଓ ପୁଣି ସଙ୍କୁଚନ କରି ମାଟିର ରଙ୍ଗ ସହିତ, ପାଣିର ତରଳତା ସହିତ, ପବନର ସୁଅ ସହିତ, ଏକା ସହରରେ ଘର କରି ରହିଆସିଛନ୍ତି।

ବିନ୍ଦୁ ସେହି ସତ୍ୟ ଇତିହାସର ଅସତ୍ୟ କଳି ହୋଇ ନ ପାରେ କି ରତନ ପଟ୍ଟନାୟକ ସେହି ମୈତ୍ରୀ ପରମ୍ପରାର ଅଧ୍ରୁବ ସ୍ଥିତି ହୋଇ ନ ପାରେ।

ମଦନ ପଟ୍ଟନାୟକ ଯିମିତି ପ୍ରେତପୁରୁଷ ବିନ୍ଦୁପାଇଁ, ଅମରେଶ ମୁଖାର୍ଜୀ ସିମିତି ପ୍ରେତାତ୍ମା ରତନ ପଟ୍ଟନାୟକ ପାଇଁ। ଲଗାଲଗି ସ୍ୱର୍ଗପୁର ଚିତାଗ୍ନିର ପାଉଁଶ ତଳେ ମୁଖାର୍ଜୀ ଓ ପଟ୍ଟନାୟକ ବଂଶର କୁଳନିର୍ମାତାମାନେ ଜଗନ୍ନାଥଙ୍କ ମହାପ୍ରସାଦକୁ ପରସ୍ପର ମୁହଁରେ ଦେଇ ଚାଲିଗଲେ ଅନନ୍ତ ପରପାରିକୁ।

ଧ୍ୱଜା ଉଡୁଛି ନୀଳଚକ୍ର ଉପରେ। କେତେ ଦୂରକୁ ଦିଶେ। କାଳେ କିଏ ଦେଖି ନ ପାରିବ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍, ଓଡ଼ିଆ, ବଙ୍ଗାଳୀ, ତେଲୁଗୁ, ମହାରାଷ୍ଟ୍ରୀଙ୍କୁ ନିଶାଣ ଦେଇ ଦେଖାଇଦିଅନ୍ତି ପୁରୀ ମ୍ୟୁନିସିପାଲିଟିର ଏକ୍‌ଜିକ୍ୟୁଟିଭ୍ ଅଫିସର... ଦେଖନ୍ତୁ, ଟିକିଏ ଡାହାଣ ଆଡ଼କୁ ଚାହିଁ ଦେଖନ୍ତୁ... ଶ୍ରୀ ଜଗନ୍ନାଥ ମନ୍ଦିର...

ବୃଦ୍ଧ ଗୁଲାମ୍ ବକ୍‌ସ ବସ୍ ସିଟ୍‌ରୁ 'ୟା ଆଲ୍ଲା' କହି ଜଗନ୍ନାଥଙ୍କୁ ଦେଖିନିଅନ୍ତି – ଖଳିଦଂ ବ୍ରହ୍ମ। ପାଦ୍ରୀ ସାଇମନ୍ ମୋଜେସ୍ କ୍ରସ୍ କରି କହନ୍ତି, କ୍ରାଏଷ୍ଟ୍ ଆମେନ୍ ଆଉ ଅଧ୍ୟାପକ ପ୍ରୌଢ଼ ସୌରେନ୍ ଚଟ୍ଟୋପାଧ୍ୟାୟ ଯୁକ୍ତହସ୍ତ ମଥାରେ ସ୍ପର୍ଶ କରି କହନ୍ତି... କି ଶାଶ୍ୱତ ସନାତନ ଧର୍ମେର ପୀଠ୍ ଏଇ ଉତ୍କଳୀୟ ଦେବାଳୟ... ତୋମାରା ଶୁନୋ...'

ବସ୍‌ଯାକ ଯାତ୍ରୀ... ପାଣ୍ଡୁର, ଶ୍ୱେତ, କୃଷ୍ଣ ବର୍ଣ୍ଣର ସମସ୍ତେ ଶୁଣିଲେ କଲିକତା ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ଦର୍ଶନ ଅଧ୍ୟାପକ ସୌରେନ୍ ଚଟ୍ଟୋପାଧ୍ୟାୟଙ୍କ ଭାଷଣ– ବସ୍‌ଟି ଗୁଞ୍ଜରିତ ହୋଇ ଉଠିଲା।

ଚଟ୍ଟୋପାଧ୍ୟାୟ ଅଭିଭୂତ ଭାବରେ କହିଲେ... ନମସ୍କାର କରୁଛି ଓଡ଼ିଶାର ଅମର ଶିଳ୍ପୀମାନଙ୍କୁ। ପ୍ରଥମ କୈଶୋରରେ ଲୁଚି ଲୁଚି ଉପନ୍ୟାସ ପାଠର ଉନ୍ମାଦନାରେ ପଢ଼ିଥିଲି 'ସୀତାରାମ' ଉପନ୍ୟାସ। ସେଥିରେ ଓଡ଼ିଶାର ଚିତ୍ର ମନକୁ ରଙ୍ଗାକ୍ତ କରିଥିଲା।

ଏହି କଳିଙ୍ଗ ଓ ବଙ୍ଗଦେଶ ସୃଷ୍ଟିର ଆଦ୍ୟ ମୁହୂର୍ତ୍ତରୁ ପରସ୍ପର ଅଚ୍ଛେଦ୍ୟ ବନ୍ଧନରେ ଆବଦ୍ଧ। ପ୍ରାଚୀନ ଭୂଗୋଳର ଗୁରୁ ଟଲେମିଙ୍କ ବର୍ଣ୍ଣନାରେ ତାହାର ପରିଚୟ ଅଛି। ପ୍ରାଚୀନ ପ୍ରାକୃତିକ ଇତିହାସର ରଚୟିତା ପ୍ଲିନିଙ୍କର ଗଙ୍ଗାରାଢ଼ ଓ କଳିଙ୍ଗର ଉଲ୍ଲେଖ ତା'ର ପ୍ରମାଣ। ପୁଣି ପ୍ରାଗୈତିହାସିକ ତାମ୍ରଯୁଗର ଚିହ୍ନ ଯୁଦ୍ଧରେ ବ୍ୟବହୃତ ଖଡ୍ଗ ଏହି ଦୁଇ ଦେଶର ଏକ ଆକୃତି ଓ ପ୍ରକୃତି ବହନ କରିଥିଲା। ପଦ୍ମ ପୁରାଣରେ କଳିଙ୍ଗ, ଓଡ୍ର ଓ ପୌଣ୍ଡ୍ର ଦେଶର ବାରମ୍ବାର ଉଲ୍ଲେଖ ମିଳେ। ଏପରିକି ବୌଦ୍ଧାୟନର ଧର୍ମସୂତ୍ରର ବିଦେଶ ଗମନର ବାଧା ନିଷେଧଗୁଡ଼ିକ ମଧ୍ୟରେ ବଙ୍ଗ ଓ କଳିଙ୍ଗକୁ ଏକ ପର୍ଯ୍ୟାୟରେ ରଖାଯାଇଛି।

କି ଅଦ୍ଭୁତ ମନୀଷା। ସଦାଶିବ ସଂସ୍କୃତ ମହାବିଦ୍ୟାଳୟର କେତେଜଣ ଛାତ୍ର ଥିଲେ ସେ ବସ୍‌ର ଆରୋହୀ। ଅନୁରୋଧ କଲେ– ଏ ଚଳମାନ ଯାନରେ ଆପଣଙ୍କ ଉଦାତ୍ତ କଣ୍ଠଶ୍ରୁତ ହେଲେ ବି ଆମେ ଚାହୁଁ ଆପଣଙ୍କଠାରୁ ବିସ୍ତୃତ ଭାବରେ ଶୁଣିବାକୁ ବଙ୍ଗୋତ୍କଳର ସମନ୍ୱିତ ସଂସ୍କୃତିର ଇତିହାସ। ଆମେ ଆୟୋଜନ କରିବୁ ସଭାଟିଏ। ଆମେ ଶୁଣିବୁ।

ପୁରୀ ଟାଉନ୍‌ହଲ ସଭାରେ ସୌରେନ୍ ଚଟ୍ଟୋପାଧ୍ୟାୟ କହିଥିଲେ–

ବୌଦ୍ଧ ଯୁଗରେ ସିଂହଳ ବିଜୟୀ ବିଜୟ ସିଂହର ମାଆ ଥିଲେ ବଙ୍ଗଳାର ରାଜକନ୍ୟା; କିନ୍ତୁ ତାଙ୍କ ମାତାମହୀ ଥିଲେ କଳିଙ୍ଗର ରାଜକୁମାରୀ।

ପ୍ରାଚୀନ ତାମିଲ ପୋଥି ମଣି–ମେଖଳା ଅନୁସାରେ ଏ କାହାଣୀ ସମ୍ଭବ ବୋଲି ମନେହୁଏ। ସମସାମୟିକ ଯୁଗରେ ବଙ୍ଗଳା ଓ ଓଡ଼ିଶାର ଅମର ସାହସୀ ବଣିକ ଓ ବୁଦ୍ଧିଜୀବୀର ଦଳ ବୃହତ୍ତର ଭାରତର ଦ୍ୱୀପପୁଞ୍ଜର ବହୁ ସ୍ଥାନରେ ଉପନିବେଶ ସ୍ଥାପନ କରନ୍ତି। ମାଳୟ ଓ ଅନ୍ୟାନ୍ୟ ଦ୍ୱୀପମୟ ଦେଶରେ କଳିଙ୍ଗବାସୀ ଔପନିବେଶିକର ପ୍ରଭାବ ଏତେ ବିସ୍ତୃତ ହୋଇଥିଲା ଯେ କୌଣସି ଭାରତୀୟକୁ କେଲିଙ୍ଗ୍ ବା କ୍ଲିଙ୍ଗ୍ ବୋଲି ଅଭିହିତ କରାଯାଇଥିଲା।

ରତନ ପଟ୍ଟନାୟକ, ତାଙ୍କ ବାପା, ମାଆ ସମସ୍ତେ ମାସ ମାସ ଧରି ପାଳିକରି ବିନ୍ଦୁର ବାବାଙ୍କୁ ସେବା କରି ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର କରିଥିଲେ। ଏ କାହାଣୀ ନୁହେଁ, ଯୁଗ ଯୁଗ ଧରି ଏପରିକି ଶତାବ୍ଦୀର ଶୋଭାରେ ବଙ୍ଗ ଓ ଉତ୍କଳ ପରିଷ୍କୃତ ରହି ଆସିଛି।

ସମୁଦ୍ରର ବାଲିଶଯ୍ୟା। ଅଧ୍ୟାପକ ସୌରେନ ଶ୍ରୋତାମାନଙ୍କୁ ସେହିଠାରେ ଶୁଣାଇଛନ୍ତି–

କଳିଙ୍ଗ ସମ୍ରାଟ ଅଶୋକଙ୍କର ବିଜୟ ବାହିନୀକୁ ବାଧା ଦେବାକୁ ଶେଷ ପର୍ଯ୍ୟନ୍ତ ଯେଉଁ ପ୍ରେମଧର୍ମର ଅଭିଯାନ ଆରମ୍ଭ ହେଲା, ତା'ର ସୁଫଳ ସମୁଦାୟ ପୃଥିବୀରେ ବ୍ୟାପ୍ତ ହେଲା। ସେକଥା ଏଠାରେ ଉଲ୍ଲେଖ ନ କଲେ ଯେଉଁ ମାଟି ଉପରେ ବସିଛି, ସେହି ପବିତ୍ର ଉତ୍କଳ ପ୍ରତି ସମ୍ମାନ ଦେଖାଇବା ସମ୍ପୂର୍ଣ୍ଣ ହେବନାହିଁ।

ଓଡ଼ିଶାର ରାଜଧାନୀ କଟକରୁ ପୁରୀ ପଥ ଉପରେ ଯାତ୍ରା କରନ୍ତୁ ଦେଶର ଇତିହାସକୁ ଅନ୍ୱେଷଣ କରି। ପ୍ରାଚୀ ନଦୀ ତୀରରେ ସାମାନ୍ୟ ବିଶ୍ରାମ ନିଅନ୍ତୁ।

ବିନ୍ଦୁର ନିମନ୍ତ୍ରଣ– ରତନ ଦା, ଉପେନ୍ଦ୍ରଭଞ୍ଜ ଓ ରବୀନ୍ଦ୍ରନାଥଙ୍କର ସ୍ମୃତିପୂଜା ଏକତ୍ର ଆୟୋଜନ କର। ଦୁଇ ଜାତିର ଦୁଇ ମନୀଷୀଙ୍କର ଗୁଣଗାନ କରାଯାଉ। ଆଉ ଯାହା ଖର୍ଚ୍ଚ ହେବ, ବଙ୍ଗାଳୀ ଓ ଓଡ଼ିଆଙ୍କର ଦାନରୁ ତାହା ମିଳି ପାରିବ।

ଗୁମୁରି ଉଠିଲା ବେଦ ସ୍ତୋତ୍ର...

ସଂଗଚ୍ଛଧ୍ୱଂ ସଂବଦ ଧ୍ୱଂ ସଂବୋ ମନାଂସି ଦାନତାମ୍
ଦେବାଭାଗଂ ଯଥାପୂର୍ବେ ସଂଜାନାନା ଉପାସତେ

ସମାନୋ ମନ୍ତ୍ରଃ ସ ମିତିଃ ସମାନୀ
ସମାନଂ ମନଃ ସହଚିତ୍ତମେଶାଂ ।
ସମାନଂ
ମନ୍ତ୍ରମଭିମନ୍ତ୍ରଏବଃ ।

ସଭାର ପ୍ରଥମ ବନ୍ଦନା ଗୀତି ଗାଇଥିଲା ବିନ୍ଦୁ ତା'ପରେ ଗଦ୍ୟରେ କହିଥିଲା–

ହେ ବିଶ୍ୱବାସୀ ମନୁଷ୍ୟଗଣ, ତୁମେମାନେ ଏକତ୍ର ଚଳ । ଏକତ୍ର କଥା କୁହ, ତୁମମାନଙ୍କ ମନ ଏକ ହେଉ । ତୁମର ମନ୍ତ୍ର ଏକ ହେଉ, ତୁମର ସମିତି ସକଳର ମିଳନଭୂମି ହେଉ, ଚିତ୍ତ ସମ୍ମିଳିତ ହେଉ । ତୁମମାନଙ୍କୁ ବିଧାତା ଏକ ମନ୍ତ୍ରରେ ସଂଯୋଗ କରନ୍ତୁ ।

ବିନ୍ଦୁ ଦିଦି, ଆଉ୍ ପାରୁଛି ନା..

କିରେ, କି ହଲୋ

ପ୍ରେମେ ପଡ଼େଛି ।

ଗୋଧୂଳିର ଏକ ଛାୟାଛନ୍ନ ପ୍ରସାର । ପଞ୍ଚଦଶ ବର୍ଷୀୟା ସ୍ୱପ୍ନା ବୋଷ୍‌ର ଆଜି ଚରମ ଦୁର୍ଗତି । ବିନ୍ଦୁ ଓ ରତନ ଦା ସେଥିପାଇଁ ଦାୟୀ । ଭଞ୍ଜ–ରବୀନ୍ଦ୍ର ସମାରୋହ ନ ହୋଇଥିଲେ ମହାନ୍ତିପଡ଼ାର ବିମଳ ମହାନ୍ତି କଚ ଭୂମିକାରେ ଓ ସ୍ୱପ୍ନା ବୋଷ୍ ଦେବଯାନୀ ଭୂମିକାରେ ଅଭିନୟ କରି ନ ଥାନ୍ତେ କି ବିମଳର କଣ୍ଠରେ–

"ଚିତ୍ତ ଯେଥା ଭୟଶୂନ୍ୟ, ଉଚ୍ଚ ଯେଥା ଶିର,
ଜ୍ଞାନ ଯେଥା ମୁକ୍ତ, ଯେଥା ଗୃହେର ପ୍ରାଚୀର
ଆପନ ପ୍ରାଙ୍ଗଣ ତଳେ ଦିବସ ଶର୍ବରୀ
ବସୁଧାରେ ରାଖେ ନାଇ ଖଣ୍ଡ କ୍ଷୁଦ୍ର କରି,
ଯେଥା ବାକ୍ୟ ହୃଦୟେର ଉତ୍‌ସମୁଖ ହତେ
– ସହିତ ସ୍ୱପ୍ନାର କଣ୍ଠରେ–

"ବଧିର ନୁହଇ ବୀର,
ବୋଇଲା ତହିଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଲିପଡ଼ି ତୋ ଚରଣୁ
ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା ।"

ଏ ଗୀତ ଝରିପଡ଼ି ନ ଥାନ୍ତା ।

ଗଙ୍ଗା ଯମୁନା ହୋଇ ମିଶିଯିବାକୁ ବସିଲେ ବିମଳ ଓ ସ୍ୱପ୍ନା– ବଙ୍ଗ ଓ ଉତ୍କଳର ବଧୂ ଓ ବର ।

ବିନ୍ଦୁ ସେହି ପବିତ୍ର ଲଗ୍ନରେ ଶୁଭଶଙ୍ଖ ବଜାଇ କହିଥିଲା– ବନ୍ଧନ ସାର୍ଥକ ହେଉ ।

ଅଧ୍ୟାପକ ସୌରେନ୍ ଜଗନ୍ନାଥ ମନ୍ଦିରର ମୁକ୍ତ ପ୍ରାଙ୍ଗଣରେ ବସି ଆଲୋଚନା କରୁଥିଲେ–

"ହାତୀ ପ୍ରତିମୂର୍ତ୍ତି ଆକାରର ଗୋଟାଏ ପାହାଡ଼ ସାମ୍ନାରେ ଆସି ତା'ର ମସୃଣ ଶିଳାଗାତ୍ର ପାଖରେ ମଥା ନତକରି ଛିଡ଼ା ହୁଅନ୍ତୁ । ପାଷାଣର ବାଣୀ ଉଦାତ୍ତ ସ୍ୱରରେ ଆପଣଙ୍କ କାନରେ ଧ୍ୱନିତ ହେବ । ଦେବାନାଂ ପ୍ରିୟ ଶାଶ୍ୱତ ଆଶ୍ୱାସ ଦେଉଛନ୍ତି– ସବୁ ମଣିଷ ମୋର ସନ୍ତାନ । ମୋ ନିଜ ସନ୍ତାନ ପକ୍ଷରୁ ଯିମିତି ମୁଁ ଚାହେଁ ଯେ ସେମାନେ ଇହଲୋକ ଓ ପରଲୋକରେ ସମ୍ପୂର୍ଣ୍ଣ କଲ୍ୟାଣ ଓ ଆନନ୍ଦ ଲାଭ କରନ୍ତୁ, ସେହିପରି ସବୁ ମଣିଷ ପାଇଁ ମୁଁ ଏକାକଥା କାମନା କରେ ।" ରାଜର୍ଷି ଅଶୋକ ଚିରାୟତ ରାଷ୍ଟ୍ର ଶାସନର ଏହି ଆଦର୍ଶ ବାଣୀ ଅକ୍ଷର ଅକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି ଏଇ ଦେଶରେ, ଯେଉଁଠି "ବ୍ରହ୍ମଣ୍ୟ, ଶ୍ରମଣିକ ଓ ଅନ୍ୟାନ୍ୟ ପନ୍ଥାର ଭକ୍ତ ଓ ଗୃହୀଗଣ ବାସ କରନ୍ତି, ଯେଉଁମାନେ ଗୁରୁଜନ, ପିତାମାତା ଓ ଉପଦେଷ୍ଟାଙ୍କ କଥା ଶୁଣନ୍ତି, ଯାହାଙ୍କର ଶାଳିନ ଆଚରଣ ବନ୍ଧୁ, ଆତ୍ମୀୟ ଓ ସଖା, ଦାସ

କ୍ରୀତଦାସର ପ୍ରତି ଅନୁରକ୍ତି ପ୍ରଖ୍ୟାତ।" ପରାଜିତ ଶତ୍ରୁ ହେଲେ ମଧ୍ୟ କଳିଙ୍ଗବାସୀର ଚରିତ୍ର ଅତି ମହାନ୍ ବୋଲି ସ୍ୱୀକୃତ ହୋଇଛି।

— କି ଚାଟର୍ଜୀବାବୁ, ଏବର ଦୁର୍ଗୋପୂଜୋଟା...

ଚାଟର୍ଜୀବାବୁ ବିରକ୍ତି ସ୍ୱରରେ କହିଲେ— ପଙ୍କଜ ବାବୁ, ଆମେ ବଙ୍ଗାଳୀ। ଏ ସହରରେ ଶହେବର୍ଷ ହେଲା ରହି ଆସିଛୁ କି ତାଠୁ ବେଶୀ। ଆମେ ତ ଓଡ଼ିଆରେ କଥାବାର୍ତ୍ତା କରୁଛୁ। ଆପଣ ପଙ୍କଜ ବାବୁ 'ଦୁର୍ଗୋପୂଜୋଟା' କହୁଛନ୍ତି କାହିଁକି ? ଅବଶ୍ୟ ମୋର ଓଡ଼ିଆ ଶବ୍ଦ ଉଚ୍ଚାରଣ ଠିକ୍ ହୋଇ ନପାରେ; କିନ୍ତୁ ଏ ଭୂମିକୁ ଯେତେବେଳେ ଜୀବିକା ପାଇଁ ମାତୃଭୂମି କରିନେଇଛି, ମୁଁ ବଙ୍ଗାଳୀ ହେଲେ ବି ଓଡ଼ିଆରେ କହିବି, ମୁଁ ବି ଓଡ଼ିଆ।

ପଙ୍କଜ ବାବୁ ଲଜ୍ଜିତ ହେଲେ... କହିଲେ ମାଫ୍ କରନ୍ତୁ ଚାଟର୍ଜୀ... ଆପଣ ବ୍ୟତିକ୍ରମ— ତେବେ ଏଇ ଏକ୍‌ସପ୍ରେସ୍ ଟ୍ରେନ୍‌ରେ ଯେଉଁ ବଙ୍ଗାଳୀ ଶିକ୍ଷିତ ଯୁବକ ଯିବା ଆସିବା କରୁଛନ୍ତି, ସେମାନେ ଟିକିଏ ବେହୁସିଆରୀ ହୋଇଯାଉଛନ୍ତି। ଯାହା ଏତିକି ଦୁଃଖ।

ଚାଟର୍ଜୀ କହିଲେ— ବାପଧନ ବୁଝିବେ, ଏକ୍ଷଣି ବୁଝୁନାହାନ୍ତି, ବୁଝିବେ।

ସିଂହଦ୍ୱାର ଛକରେ ସେଦିନ ସନ୍ଧ୍ୟାରେ ଚଟ୍ଟୋପାଧ୍ୟାୟଙ୍କର ଭାଷଣ—

ତା'ର ପରେ ସମ୍ରାଟ ହର୍ଷବର୍ଦ୍ଧନର ବିକ୍ରମଶାଳୀ ଶତ୍ରୁ କର୍ଣ୍ଣସୁବର୍ଣ୍ଣର ମହାରାଜା ଶଶାଙ୍କ ସମୟରେ ଆମେ ପୁଣି ଓଡ଼ିଶାକୁ ବଙ୍ଗର ପାଖାପାଖି ଦେଖିବାକୁ ପାଉ। ଦ୍ୱିତୀୟ ମାଧବରାଜାର ଗଞ୍ଜାମ ତାମ୍ର ଶାସନ ଅନୁସାରେ ମନେହୁଏ ଯେ ଯେତେବେଳେ ଶଶାଙ୍କ ପରାଜିତ ହୋଇ ପଶ୍ଚିମବଙ୍ଗରୁ ହଟି ଆସିବାକୁ ବାଧ୍ୟ ହେଲେ, ସେତେବେଳେ ଓଡ଼ିଶାରେ ହିଁ ସେ ରାଜ୍ୟରକ୍ଷା କରିପାରିଥିଲେ। ଶଶାଙ୍କର ପରାକ୍ରମ ଏତେ ପ୍ରଖର ଥିଲା ଯେ ଚୈନିକ ପରିବ୍ରାଜକ ହୁଏନ୍‌ସାଂ ତାଙ୍କୁ ଦୈତ୍ୟ ବୋଲି ଅଭିହିତ କରିଥିଲେ; କିନ୍ତୁ ହୁଏନ୍‌ସାଂ ପ୍ରାୟ ବୌଦ୍ଧବିହୀନ କଳିଙ୍ଗର ଅଧିବାସୀଙ୍କ ଚରିତ୍ରର ପ୍ରଶଂସା କରି ଲେଖିଛନ୍ତି ଯେ ଏମାନେ ବିଶ୍ୱାସ ଓ ନ୍ୟାୟପରାୟଣର ମର୍ଯ୍ୟାଦା ଦିଅନ୍ତି, ଏମାନେ ଦ୍ରୁତ; କିନ୍ତୁ ମିଷ୍ଟଭାଷୀ।

ବଙ୍ଗଳା ଓ ଓଡ଼ିଶାର ଐତିହାସିକ ସୂତ୍ର କ୍ରମଶଃ ଅସ୍ପଷ୍ଟ ହୋଇଆସିଲେ ବି ଦୁଇ ପ୍ରାନ୍ତରେ ଯାତାୟତ ଓ ଭାବର ଆଦାନ ପ୍ରଦାନ କୌଣସି ଦିନ ବ୍ୟାହତ ହୋଇନାହିଁ। ଏପରିକି ବଙ୍ଗଳାର ଯେତେବେଳେ ବୌଦ୍ଧଧର୍ମ ଏକମାତ୍ର ପଥ ଏବଂ ଓଡ଼ିଶାର ଜୈନ ବା ହିନ୍ଦୁମତ ଅମିତ ପ୍ରଭାବଶାଳୀ, ସେତେବେଳେ ବି ନୁହେଁ। ଓଡ଼ିଶାବାସୀଙ୍କର ଗଙ୍ଗାସ୍ନାନ ଓ ବଙ୍ଗବାସୀର ପୁରୀରେ ତୀର୍ଥଯାତ୍ରା ଆବହମାନ କାଳରୁ ଏଇ ଦୁଇ ଜନପଦର ସୌଭ୍ରାତୃତ୍ୱ ଓ ସମଭାବକୁ ଅକ୍ଷୁଣ୍ଣ ରଖିଆସିଅଛି।

ଘନ ଘନ କରତାଳିରେ ସଭାମଣ୍ଡପ ଶବ୍ଦାୟିତ ହୋଇଉଠିଲା।

ବାସେଳୀ ସାହିର ବୃଦ୍ଧ ରଘୁନାଥ ମିଶ୍ରଙ୍କୁ ଧରି ଯେତେବେଳେ ଘଣ୍ଟା ବ୍ୟବସାୟୀ ଯୁବକ ପୁତୁଲ ସରକାର ତାଙ୍କୁ ତୀର୍ଥ ସକଳ ବୁଲାଇ ଆଣିବାକୁ ଯାତ୍ରା କରେ, ବୃଦ୍ଧ ତାଙ୍କର ପରିବାରବର୍ଗ ଆନନ୍ଦରେ ଉଚ୍ଛ୍ୱସିତ ହୋଇଥିଲେ। ପୁତୁଲ ସରକାର ଗୋଟିଏ ଛୋଟ ବ୍ୟବସାୟରେ ଜୀବିକା ଅର୍ଜନ କଲେ ବି ସେ ଥିଲା ମତିମାନ୍ ପୁତୁଲ୍। କାହାରି ଅଭାବ ଅସୁବିଧା ଦେଖିଲେ ସେ ଜୀବନ ପଣ କରିଦିଏ।

ବୃଦ୍ଧ ରଘୁନାଥ ତୀର୍ଥଯାତ୍ରାରୁ ଫେରିଆସି ପୁତୁଲ୍‌ର ମୁହଁରେ ମହାପ୍ରସାଦ ଗୁଞ୍ଜି ଦେଇ କହିଥିଲେ, ତୁ ମୋର ଧର୍ମପୁଅ।

ସାତଲହଡ଼ୀ ମଠର ପ୍ରାଙ୍ଗଣରେ ସୌରେନ୍ ଚଟ୍ଟୋପାଧ୍ୟାୟ ଗାଇଥିଲେ–

"ଏଇ ନା ବ୍ରାହ୍ମଣ ତେଜେ ଦେଖି ସୂର୍ଯ୍ୟସମ

ଶୂଦ୍ରେ ଆଲିଙ୍ଗିୟା କେନ କରେନ କ୍ରନ୍ଦନ।"

ଶ୍ରୀ ଚୈତନ୍ୟଙ୍କର ଭକ୍ତିଧର୍ମର ପ୍ଲାବନ ବଙ୍ଗ ଓ ଓଡ଼ିଶାର ପ୍ରାଚୀନ ବନ୍ଧନକୁ ନୂତନ ନୂତନ କୀର୍ତ୍ତିରେ ମଣ୍ଡିତ, ନୂତନ କୀର୍ତ୍ତନରେ ଧ୍ୱନିତ କରିଥିଲା। ଓଡ଼ିଶାର ମହାରାଜ ପ୍ରତାପରୁଦ୍ରଦେବଙ୍କ ପ୍ରଧାନମନ୍ତ୍ରୀ ରାମାନନ୍ଦ ରାୟଙ୍କୁ ଗୋଦାବରୀ ତୀରରେ ଶ୍ରୀଚୈତନ୍ୟ ଦେଖି ଆଲିଙ୍ଗନ କରି ଅଶ୍ରୁପାତ କରିଥିଲେ।

ଏ କଥା କହିବା ମାତ୍ରେ ଅଧ୍ୟାପକଙ୍କର ଆଖି ଅଶ୍ରୁସିକ୍ତ ହେଲା। ସେ କହିଲେ– ଏଇ ଆନନ୍ଦାଶ୍ରୁପାତ ଭାରତବର୍ଷରେ ନବଯୁଗର ପୁଷ୍ପିତ ପ୍ରକାଶକୁ ପ୍ରେମ ଓ ସାମ୍ୟର ଅପୂର୍ବ ଧାରାରେ ସଞ୍ଚିତ କରିଛି।

କେବଳ ଭକ୍ତିର ବନ୍ଧନ ନୁହେଁ, ନୂତନ ଆଦର୍ଶର ପ୍ରତିଷ୍ଠା କରିଥିଲେ ଶ୍ରୀଚୈତନ୍ୟ। ଓଡ଼ିଶାରେ ସେ ଥିଲେ ଅଠର ବର୍ଷ ଏବଂ ଓଡ଼ିଆ ଭାଷା ସେ ଖୁବ୍ ଭଲ ଶିକ୍ଷା କରିଥିଲେ। ଓଡ଼ିଆ ଭାଷାରେ ବୈଷ୍ଣବ ପଦ ପ୍ରାୟ ଆବୃତ୍ତି କରୁଥିଲେ।

... ଜଗନ୍ନାଥ ପ୍ରଭୁ ପରିମୁଣ୍ଡାହୁଁ। ଗୋବିନ୍ଦ ଦାସ ତାଙ୍କ କରଚାରେ ଲେଖିଛନ୍ତି–

ଏଇ ଦେଶେ ଭ୍ରମି ଦୀର୍ଘକାଳ

ସକଲେର ଭାଷା ବୁଝେ ଶଚୀର ଦୁଲାଳ।

ଆମେ ବିଂଶ ଶତାବ୍ଦୀର ଏଇ ଦୁଇ ଦେଶର ମିଳନ ରାଗିଣୀର ଇତିହାସ ସ୍ମରଣ କରି ସାରା ଭାରତମୟ ନବ ମିଳନ ସଙ୍ଗୀତ ରଚନା କରିବାକୁ ଚାହୁଁ ଏବଂ ସତ୍ୟ କଥା ଯେ ଅନ୍ତରର ଅନ୍ତସ୍ଥଳରେ ବଙ୍ଗାଳୀ କୌଣସି ଦିନ ସେ ମିଳନ ରାଗିଣୀ ଭୁଲିନାହିଁ। ସେଥିପାଇଁ ବଙ୍ଗର ଗ୍ରାମେ ଗ୍ରାମେ ପାଞ୍ଚାଳୀ ଗାନ ସମୟରେ ଦେବଗଣଙ୍କ ଆହ୍ୱାନ କରିବାବେଳେ ଗାୟକ ଗାନ କରନ୍ତି–

ପଶ୍ଚିମେ ବନ୍ଦିବୁ ଆମି ଉଡ଼ିଷ୍ୟାର ଜଗନ୍ନାଥ

ଯାହାର ପ୍ରସାଦେ ଲୋକେ ଭୁଲେ ଦୁଃଖ ତାପ

ଜଗନ୍ନାଥର ଲୀଳା କିନ୍ତୁ ବୁଝା ନାଇଁ ଯାୟ

ଶୂଦ୍ରେତେ ରାନ୍ଧିୟେ ଅନ୍ନ ବ୍ରାହ୍ମଣେ ତା ଖାୟ।

ଅଧ୍ୟାପକ ପୁଣି ଗାନ ଧରିଲେ ବାଉଲ୍ ଗାନ। "ଏକ ପାଗଲ ଶ୍ରୀକ୍ଷେତ୍ରେତେ ଜଗନ୍ନାଥ ଗୋସାଇଁ ବ୍ରାହ୍ମଣ ଆର ଚଣ୍ଡାଲେର କରଲେନ ଏକ ଠାଇଁ ଭାଇ ସାଇଁ, ପାଗଲେର ଦଲେ କଭୁ ମିଶେ ନାରେ ଭାଇ ଏ ଦଲେ ମିଶିଲେ ପରେ ଜେତେର ବିଚାର ନଇ।"

ଶ୍ରୋତୃମଣ୍ଡଳୀ ଧନ୍ୟ ଧନ୍ୟ କଲେ। ଦାର୍ଶନିକ ପଣ୍ଡିତ ଆଖି ପୋଛି ଆଣିଲେ।

ବିନ୍ଦୁ କେଉଁ ଦିନଠାରୁ ବରଣମାଳା ଲମ୍ବେଇ ଦେଇଛି ରତନ ପଟ୍ଟନାୟକଙ୍କ ଗଳାରେ।

ଶୁନହ ମାନୁଷ ଭାଇ

ସବାର ଉପରେ ମାନୁଷ ସତ୍ୟ

ତାହାର ଉପରେ ନାଇ।

ତୋଟାଗୋପୀନାଥ ଛାଇ ତଳେ ଉପବେଶନ କରି ପଣ୍ଡିତ ଚଟ୍ଟୋପାଧ୍ୟାୟ ଶେଷ ଭାଷଣ ଦେଲେ–

କେବଳ ଭଗବାନ ନୁହଁନ୍ତି, ମଣିଷ ବି ଏକ। ସର୍ବଦେଶ ସର୍ବକାଳରେ। ଏଇ ମହାଶିକ୍ଷା ମହାମାନବତାର ବନ୍ଦନା ଗାନ କଲେ କବି ଚଣ୍ଡିଦାସ ଆଉ ତାହାର ସବୁଠାରୁ ବ୍ୟାପକ ଓ ବାସ୍ତବ ପ୍ରକାଶ ମିଳିଲା ଓଡ଼ିଶାର ଶ୍ରୀକ୍ଷେତ୍ରରେ ଭଲ୍‌ଗାରୁ ଗଙ୍ଗାଯାଏ ଏତେ ବଡ଼ ମଣିଷର ଗାନ କେଉଁଠି ଅଛି କି ?

ଯୁଗ ଯୁଗ ଧରି ବଙ୍ଗାଳୀ ସେଇ ଅନ୍ତରର ଶିକ୍ଷାକୁ ହୃଦୟରେ ରଖିଛି। ସେଥିପାଇଁ ଓଡ଼ିଶାର ସମ୍ପର୍କକୁ ବି ସର୍ବଦା ସମାଦର କରି ଆସିଛି। ମରହଟ୍ଟା ଆକ୍ରମଣର· ହାତରୁ ଓଡ଼ିଶାକୁ ଉଦ୍ଧାର କରିବା ପାଇଁ ଲର୍ଡ଼ ୱେଲ୍‌ସଲିଙ୍କୁ ଯେତେବେଳେ ପୁରୀ ଅଧିବାସୀମାନେ କୃତଜ୍ଞତା ଜଣାଇ ଚିଠି ଲେଖିଥିଲେ, ସେମାନଙ୍କ ମଧ୍ୟରେ ଜଣେ ପ୍ରଧାନ ଥିଲେ ଶୀତଳାନନ୍ଦ ଦେବଗୋସ୍ୱାମୀ। ଏଥି ସହିତ ଆମେ ଶ୍ରଦ୍ଧାର ସହିତ ସ୍ମରଣ କରୁ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟିକ ଫକୀରମୋହନ ସେନାପତିଙ୍କ ଐତିହାସିକ ଉପନ୍ୟାସ ଲଛମା'କୁ। ଏ ଉପନ୍ୟାସରେ ବର୍ବର ଅତ୍ୟାଚାରରେ ଜନସାଧାରଣଙ୍କ ଯେ ବେଦନା ଫୁଟାଇଛନ୍ତି ଶିଳ୍ପୀ, ତାହାର ବାସ୍ତବ ପ୍ରକାଶ ଥିଲା ଶତାବ୍ଦୀ ପୂର୍ବର ଶୀତଳାନନ୍ଦଙ୍କ ହୃଦୟରେ।

ବଙ୍ଗ ଉତ୍କଳ ସଂସ୍କୃତିର ମିଳନ ମୃତ୍ୟୁଞ୍ଜୟୀ ହେଉ, ଜଗନ୍ନାଥ ଧର୍ମ ଅକ୍ଷୟ ସେତୁ ରଚନା କରୁ।

କରତାଳିର ଅକ୍ଷୟ ନିନାଦରେ ଟୋଟାଗୋପୀନାଥ ଅଞ୍ଚଳ କ୍ୱଣିତ ହୋଇ ଉଠିଲା। ସମସ୍ତେ ଏ ତତ୍ତ୍ୱ ଶୁଣିବାରେ ଉଲ୍ଲସିତ ହେଲେ। ଅପଲକ ନେତ୍ର ବୁଜି ହୋଇଗଲା।

କେବଳ ଉଲ୍ଲସିତ ହେଲାନି ଯୁଗ ପୁରୁଷ, ଯେ ଚାହିଁ ବସିଛି ସବୁ ସୁନ୍ଦରକୁ ଅସୁନ୍ଦର କରି ଦେଇ ଚାଲିଯିବ ତା'ର ବାଟରେ ଧ୍ୱଂସର ବୀଜ ବପନ କରି।

ରତନ ଚିତ୍କାର କରୁଛି— ବନ୍ଧୁଗଣ, କିଏ କଅଣ କେଉଁଠି ଗୋଟାଏ ପାଗଳ ପଦେ ଲେଖିଦେଲା, ସେଥିପାଇଁ ଶହ ଶହ ବର୍ଷ ଧରି ଆମର ବନ୍ଧୁତା ଏମିତି ନଷ୍ଟଭ୍ରଷ୍ଟ ହୋଇଯିବ !

ମାଆର ଜାତି, ତାକୁ ସମ୍ମାନ ଦେବାନାହିଁ ? ତାଙ୍କୁ ବିବସ୍ତ୍ର କରିବା ? କି ଘୃଣ୍ୟ କଥା କହିଲ ବନ୍ଧୁଗଣ...

ମୋ ନିଜ ସ୍ତ୍ରୀ ବଙ୍ଗ ଲଳନା। ସ୍ୱପ୍ନା ବୋଷ୍ ବିଭା କରିଛନ୍ତି ବିମଳ ମହାନ୍ତିଙ୍କୁ। ଅସଂଖ୍ୟ ବନ୍ଧନ ଭିତରେ ଏ ଗୋଟାଏ ଦୁଇଟା ମୋର ମନେପଡ଼ୁଛି। ପାଖ ପଡ଼ିଶା ଘର ବାନ୍ଧି ବଙ୍ଗାଳୀ ଓଡ଼ିଆ ସୁଖ ଦୁଃଖ, ଆନନ୍ଦ ବେଦନା ଭିତରେ ସହର ଗ୍ରାମରେ ସଂଖ୍ୟାହୀନଭାବେ ସଂସାର ପାତିଛନ୍ତି।

ଅଥଚ ଗୋଟାଏ ଅଗ୍ନିରୋଷ ଭିତରେ ସବୁ ପାଉଁଶ କରିଦେବା କି ? ଛିଃ ଛିଃ, କଅଣ କହିବେ ଦାର୍ଶନିକ ପଣ୍ଡିତ ସେହି ଚଟ୍ଟୋପାଧ୍ୟାୟ ? ଯେ ଲୋକ ଆମ ଜାତିକୁ ନ୍ୟୂନ କରିଛି ତାକୁ କୋଟ୍ କଚେରୀରେ ସାବ୍ୟସ୍ତ କରାଯାଇ ପାରିଥାନ୍ତା— କିନ୍ତୁ ତା' ପରିବର୍ତ୍ତେ ତମେମାନେ କଅଣ କଲ ? ହେ ବଙ୍ଗବାସୀ ଭାଇ ଭଉଣୀମାନେ, ଯେଉଁମାନେ ଏଯାଏ, ବିଂଶ ଶତାବ୍ଦୀର ଏ ଶତକରେ ବି ଓଡ଼ିଆମାନଙ୍କୁ ହୀନଦୃଷ୍ଟିରେ ଦେଖୁଛ, ସେମାନେ ଟିକିଏ ଇତିହାସକୁ ଦୃଷ୍ଟିଦିଅ। ଏ ପୃଥିବୀରେ ଘର କରି ରହିବାକୁ ହେଲେ, ସର୍ବଜାତି, ସର୍ବଧର୍ମ ଓ ସର୍ବ ସଂସ୍କୃତିକୁ ଏକ ଓ ଅଭିନ୍ନ ଦେଖିବାକୁ ହେବ। ତାହା ନ କଲେ ଧ୍ୱଂସ ଅନିବାର୍ଯ୍ୟ।

ଆଗରେ ସଶସ୍ତ୍ର ପୁଲିସ ବାହିନୀ। କେହି ବୁଝୁନାହାନ୍ତି କାହିଁକି କଅଣ ଘଟିଗଲା।

ନା, ଆଉ ମଣିଷର ପ୍ରକୃତିରେ ଶାନ୍ତ ସୁନ୍ଦରର ବିଶ୍ୱାସ ନାହିଁ। ତେବେ ବଞ୍ଚିବା କିପରି ? ଉତ୍ତର କିଏ ଦେବ।

ଯେ ଦେବ, ତାହାକୁ ପ୍ରଣାମ। ବୋଧହୁଏ ଆଗାମୀ ପ୍ରଭାତୀ ସୂର୍ଯ୍ୟ,... ବିନ୍ଦୁ ଓ ରତନର ଭାବୀ ସନ୍ତାନ।

■■■

# ସତ୍ୟ, ଶିବ, ସୁନ୍ଦର

ଲକ୍ଷ୍ମଣ ରକ୍ଷା କର...

ଲକ୍ଷ୍ମଣ ରକ୍ଷା କର...

ବନଶୈଳ ଭେଦ କରି ଏଇ ଗୋଟିଏ ଚିତ୍କାର। ଲକ୍ଷ୍ମଣ ରକ୍ଷା କର। କାହିଁ କେତେ ଅତୀତର ସେ ଆର୍ତ୍ତନାଦ। ଶତାବ୍ଦୀ ପରେ ଶତାବ୍ଦୀ ଏହିପରି ଘୋଷଣାରେ କେତେଥର ଯେ, କମ୍ପିତ ହୋଇଛି, କିଏ କହିବ ?

ଜୀବନ ରକ୍ଷା ପାଇଁ ଆକୁଳ ପ୍ରାର୍ଥନା। ହେମ ହରିଣୀ ପଛରେ ସେଇ ମୁହୂର୍ତ୍ତରେ ଲୋଭର ମହାରାକ୍ଷସ, ସ୍ତ୍ରୀର ଅଭିମାନଦ୍ୱାରା ଅନୁପ୍ରେରିତ ମୋହବିଳାସ, ତାହାରି ଏଇ ଯୁଗ ଚିରି ଧରିଥିବା ଗୋଟାଏ ଆତଙ୍କର ବିଦ୍ୟୁତ୍ କ୍ଷଣ !

ଓଃ, ମୁଁ ଅଲକ୍ଷଣୀ କଅଣ ନ କଲି ? ସୁବର୍ଣ୍ଣ ମୃଗୀ ପଛରେ ସ୍ୱାମୀଙ୍କୁ ଛାଡ଼ିଦେଲି ? ବନପର୍ବତ ଶ୍ୱାପଦ–ସେବିତ ଖର–ନିର୍ଝରର କୂଳେ ଧାଉଁଥିବେ ପତି, କେଉଁଠି ପାଦତଳେ ଫୁଟୁଥିବ ତୀକ୍ଷ୍ଣ କଣ୍ଟା, କେଉଁଠି ହଠାତ୍ ଗତି ବନ୍ଦ କରି ନ ପାରି ଭୂତଳେ ପଡ଼ି ଯାଇଥିବେ। କେଉଁଠି ବା ମସ୍ତକ ଉପର ତରୁ ଡାଳରୁ ବିଲମ୍ବିତ ଅହିରାଜ ଫଣା ଟେକି ଚାହିଁଥିବ ଏଇ ପଳାୟମାନ କ୍ରମ ଅପସୃତ ପୁରୁଷକୁ ଯେ ଅଙ୍କଲକ୍ଷ୍ମୀର ସୋହାଗ ପୂର୍ଣ୍ଣ କରିବା ପାଇଁ ଧାଉଁଛି କନକଶ୍ରୀରଞ୍ଜିତ ମୃଗ ପଛେ ପଛେ।

ଲକ୍ଷ୍ମଣ, ତୁମେ ଯାଅ, ଭାଇ ତୁମର ବିପନ୍ନ। ନ ହେଲେ ଏତେ ତୀବ୍ର ନିନାଦରେ ସେ ସାହାଯ୍ୟ ଭିକ୍ଷା କରୁ ନ ଥାନ୍ତେ। ତୁମେ ଯାଅ। ଯେତିକି ତୁମେ ଛିଡ଼ା ହୋଇ ରହିଥିବ, ସେତିକି ତାଙ୍କର ପ୍ରାଣ ବିନାଶର ଶେଷ ମୁହୂର୍ତ୍ତ ଆସିଯିବ। ମତେ ଏମିତି ବାକ୍‌ସ୍ଫୁର୍ତ୍ତିହୀନ ଅପଲକ ନେତ୍ରରେ ଚାହିଁଛ କଅଣ ? ଯାଅ।

ବୁଝିଲି, ତାଙ୍କର ଯଦି କିଛି ହୋଇଯାଏ, ତେବେ ମୁଁ ହୋଇଯିବି ତୁମର, ଅନାୟାସ ଓ ଅବଲୀଳାକ୍ରମେ। ଏଇ ହୀନ ଇଚ୍ଛା ତେବେ ତୁମର ଥିଲା ? ଦିବାରାତ୍ରି ବିନିଦ୍ର ରହି ଆମ ଦୁହିଁଙ୍କର ସେବା କରୁଛ କହି ଆତ୍ମବଡ଼ିମାରେ ଯେ ଆଚାର ଦେଖାଇ ଆସିଛ, ତାହା ତେବେ ଏଇ ପରିଣତି ଆଡ଼େ ଗତି କରିଛି ?

ନିସ୍ତବ୍ଧ ଅରଣ୍ୟ। ନିର୍ବାକ ଲକ୍ଷ୍ମଣ। କେବଳ ଜାନକୀ ପଦାରବିନ୍ଦରେ ନମିତ ଚାହାଣୀ ତାଙ୍କର ଯଥାରୀତି ବଢ଼ିଯାଇଥାଏ ଭକ୍ତି ଓ ବିନୟର ଅର୍ଘ୍ୟ।

"ଲକ୍ଷ୍ମଣ ରକ୍ଷା କର"। ପୁଣି ସେହି ହୃଦୟବିଦାର୍ଣ୍ଣ ଚିତ୍କାର। ପଶୁ, ପଶୁ, ତୁମେ ଲକ୍ଷ୍ମଣ, କି ଅଭିଳାଷ ପୋଷଣ କରିଛ, ତାହାହେଲେ ! ହେ ଭ୍ରାତୃହନ୍ତା ଲକ୍ଷ୍ମଣ।

ସ୍ଥିର ହୁଅ ପାବନୀ ଜାନକୀ। ତୁମକୁ ଏକାକିନୀ ଛାଡ଼ି ଯିବା ପାଇଁ ମୋ ପ୍ରତି ଆଦେଶ ନାହିଁ। ତୁମେ ତୁମର ଏ ଗଳିତ କ୍ରୋଧାନ୍ଧ ଅବସ୍ଥାରେ ମୋ ପ୍ରତି ଯେ ବଚନ ପ୍ରୟୋଗ କରୁଛ ତାହା ମୁଁ ଗ୍ରହଣ କରି ନେଉଛି। ମାତ୍ର ମୁଁ ତୁମକୁ ଏ ଅବସ୍ଥାରେ ଏକାକିନୀ ରଖି ଭାଇଙ୍କର ଜୀବନରକ୍ଷା ଉଦ୍ଦେଶ୍ୟରେ ଯିବା ମୋ ପକ୍ଷରେ ସମ୍ଭବ ନୁହେଁ। ତାହା ଛଡ଼ା ଶ୍ରୀରାମଚନ୍ଦ୍ରଙ୍କର ଯେ କେତେବେଳେ ଏ ପୃଥିବୀରେ ଜୀବନନାଶ ହେବାର ଭୟ ହୋଇପାରେ, ଏ କଥା ଲକ୍ଷ୍ମଣ ବିଶ୍ୱାସ କରିବ ନାହିଁ। ପରଂବ୍ରହ୍ମ ଶ୍ରୀରାମଙ୍କର ଜୀବନାବସାନ ପାଇଁ ନିମିତ୍ତ ରୂପରେ ଗୋଟାଏ ସୁବର୍ଣ୍ଣ ହରିଣୀ କେବେ ଚିତ୍କାର ବା ଆସ୍ଫାଳନ କରିପାରେ ? ତୁମେ ଭ୍ରାନ୍ତ ଜାନକୀ।

ସୀତାଙ୍କର ସେ ଉତ୍‌କଣ୍ଠିତ ମୁହୂର୍ତ୍ତଟି ପ୍ରଭାତ ପରେ ସନ୍ଧ୍ୟା ଆସିଲା ଭଳି ଅତିକ୍ରାନ୍ତ ହୋଇଗଲା।

ଜନ୍ମ ନେଲା ବିଶ୍ୱବିଶ୍ରୁତ କାବ୍ୟ–ଗ୍ରନ୍ଥ। ମାତ୍ର ବିଶ୍ୱବାସୀଙ୍କ ହୃଦୟରେ ଅଙ୍କିତ ରହିଗଲା ପତିପ୍ରେମବିହ୍ୱଳା ଏକ ମହୀୟସୀ ନାରୀହୃଦୟର ଉତ୍‌କଣ୍ଠାର ରୁଦ୍ରକାନ୍ତ ମୂର୍ତ୍ତି।

– ଆର୍ଯ୍ୟପୁତ୍ର ରକ୍ଷା କର
ରକ୍ଷା କର ଆର୍ଯ୍ୟପୁତ୍ର
ରକ୍ଷା କର ବୀରଶ୍ରେଷ୍ଠ ଭୀମସେନ
ରକ୍ଷା କର ଦଶଦିଗ ପାଳ...

ମୁଁ ଲାଞ୍ଛିତା। ଦୁଃଶାସନ ମତେ ବିବସ୍ତ୍ରା କରୁଛି। ଏ ଦୃଶ୍ୟ ଦେଖିବା ପାଇଁ ତୁମେ ପଞ୍ଚଭ୍ରାତ, ମୋର ସ୍ୱାମୀଗଣ, ନୀରବରେ ଅଧୋମୁଖ ହୋଇ ବସି ରହିଛ। ଦୁର୍ବୃତ୍ତ ଦୁଃଶାସନ ଆକର୍ଷଣ କରୁଛି ବସ୍ତ୍ର, ମତେ ରକ୍ଷା କର, ନାରୀର ଲଜ୍ଜାରୁ ତ୍ରାଣକର ଆର୍ଯ୍ୟପୁତ୍ର...

କାହିଁ? କେହି ତ ଶୁଣିଲେ ନାହିଁ? ନୀରବ କ୍ଷାତ୍ରତେଜ, ନିସ୍ତବ୍ଧ ନିଥର କୁରୁସଭା, ଯେଉଁଠି ପାପୀ ଦୁଃଶାସନ ଯାଜ୍ଞସେନୀର କେଶ ଆକର୍ଷଣ କରି ବିବସନା କରିବାକୁ ପ୍ରସ୍ତୁତ।

ଏହିଭଳି ପ୍ରସ୍ତୁତି ବିଶ୍ୱ ଜୀବନରେ ଥରେ ନୁହେଁ, ବହୁବାର ଦେଖା ଦେଇଛି। ଧର୍ମ ହୋଇଯାଇଛି ସଙ୍କୁଚିତ। ପୁଣି ଆକାଶରେ ବିଦ୍ୟୁତ୍‌ଲେଖା ଭଳି ତାହା ଉଦ୍‌ଭାଷୀ ଉଠିଛି।

ତେବେ କେହି ମତେ ରକ୍ଷା କରିବେ ନାହିଁ? ଯକ୍ଷ, ଗନ୍ଧର୍ବ, କିନ୍ନର ଦେବତା ମଣ୍ଡଳୀ? ପଚାରିଲେ ଅଶ୍ରୁମୁଖୀ ଦ୍ରୌପଦୀ।

ବିଶ୍ୱପ୍ରତି ଥିଲା ସେ ଚିତ୍‌କାର ସେ ଅଭିସମ୍ପାତ ଦ୍ରୌପଦୀଙ୍କର ଏକ ଆହ୍ୱାନ। ନାରୀ ନିଗ୍ରହର ଗୋଟାଏ ଜଳନ୍ତା ପିଣ୍ଡରେ ସମସ୍ତେ ଯିମିତି ଦଗ୍‌ଧ ହେବାକୁ ଯାଉଛନ୍ତି, ଅଥଚ ତୁଣ୍ଡରେ କଥା ନାହିଁ, ଚକ୍ଷୁରେ ଲୋତକ ନାହିଁ। ବୀର୍ଯ୍ୟ ହଜିଯାଇଛି। ଧନୁଶର ନିର୍ଜୀବ, ପୌରୁଷର ଉତ୍‌କ୍ଷିପ୍ତତା ଆଜି ଶୂନ୍ୟ।

ବିଶ୍ୱବନ୍ଦ୍ୟା ରମଣୀର ସେ ଥିଲା ଏକ କ୍ଷୁରଧାରଚାଳିତ ଉତ୍କଣ୍ଠାର ମୁହୂର୍ତ୍ତ! ସତେ କଅଣ ମୁଁ ଉଲଗ୍ନା ହୋଇ ଭୂମି ତଳେ ଲୋଟିଯିବି? ଆକାଶ ଚାହିଁଥିବ, ସୂର୍ଯ୍ୟ ଦେଖୁଥିବ, ସମସ୍ତେ... ସମସ୍ତେ...

ଆଉ ଏକ ଗ୍ରନ୍ଥ ଜନ୍ମ ନେଲା। ଦେହରେ ଧାରଣ କରି ଏହି ଦୃଶ୍ୟକୁ; କିନ୍ତୁ ସତ୍ୟର ଅବାରିତ ଗତିପଥଁ ଆଶ୍ରୟରେ ଏ ବିଶ୍ୱ ବ୍ରହ୍ମାଣ୍ଡରେ ସବୁ ଘୂରି ବୁଲୁଥିବା ଭଳି ସେ ମହା ଉତ୍କଣ୍ଠିତ ମୁହୂର୍ତ୍ତ ଆଖର ହୋଇଗଲା।

ଦୁଇ ହାତ ଉଠିଗଲା ଅମୋଘ ସମର୍ପଣ କାକୁତିରେ– ତୁମେ ଶେଷ ଆଶ୍ରୟ, ପ୍ରଭୁ ସଖା ଶ୍ରୀକୃଷ୍ଣ– ଆଉ କେହି ନାହିଁ... କେହି ନ ଥିଲେ... ରକ୍ଷା କର...

ଶୈଳସୂତା ଉମା... 'ନ ଯଯୌ ନ ତସ୍ଥୌ'– ଏ କଅଣ ଆଗ ଦୃଶ୍ୟଭଳି ମହା ମୁହୂର୍ତ୍ତ ଉତ୍କଣ୍ଠାର? ତୁଳନୀୟ କି? ହୋଇପାରେ ନ ହୋଇପାରେ। ଉତ୍କଣ୍ଠା... ଉତ୍କଣ୍ଠା... ଉତ୍କଣ୍ଠା।

ବାବୁଲା, ସାଇକେଲରେ ବ୍ରେକ୍ ଭଲ ଧରୁନି; ହୁସିଆର୍ ହୋଇଯିବୁ, ଏଇଟା ରଣ ବେଳଟି? ସାବଧାନରେ ଯିବୁ...

ଆବେଗରେ ଏତକ କହି ରାଧାନାଥ ବାବୁ ନିଜ ସାଇକେଲ୍ ଧରି ରାସ୍ତା ଉପରେ ଛିଡ଼ାହେଲେ ଅଫିସ୍ ଯିବାକୁ... ବାବୁଲାକୁ ପନ୍ଦର ଯାଇ ଷୋହଳ ହେଲା। ଡେଙ୍ଗାରେ ବେଶ୍ ବଢ଼ିଯାଇଛି। ଆଖିର ଭ୍ରୂରେ ଫୁଟି ଉଠିଲାଣି କିଶୋର ବୟସର କମ୍ର ମୃଦୁ ଭାବ। ବେକ, ଟିକିଏ ଲମ୍ବ ହେଲେ କଅଣ ହେବ, ଜଙ୍ଘ ଦୁଇଟା ବେଶ୍ ମୃଣାଳ। ତାକୁ ବଡ଼ ଖେଳୁଆଡ଼୍ କରିବି। ପାଠ ତ ଭଲ ପଢୁଛି। ଘରେ ଇଲେକ୍‌ଟ୍ରିକ୍ ବିଗିଡ଼ିଗଲେ ସଜାଡ଼ି ଦେଉଛି। ରାତି ଅଧରେ ଡାକ୍ତରଖାନା ଚାଲିଯାଏ ସାଇପଡ଼ିଶାର କାହାର କିଛି ଦରକାର ହେଲେ।

ବାଃ, ବାବୁଲା ମଣିଷ ଭଳି ମଣିଷ ହେବ। ଏ ଯାଏ ସିଗାରେଟ୍ ଫୁଙ୍କିନାହିଁ କି ଲଫଙ୍ଗା ଟୋକାଙ୍କ ସହିତ ବୁଲି ଶିଖିନାହିଁ। କେଜାଣି କହି ହେଉନି, ଭବିଷ୍ୟତରେ କଅଣ ହେବ?

ଏ ବାବୁଲା, ଅଫିସକୁ ଫୋନ୍ କରିଦେବୁ ପ୍ରିନ୍‌ସିପାଲଙ୍କ ଫୋନ୍‌ରୁ– ତୁ ପହଞ୍ଚିଲୁ ବୋଲି, ଶୁଣିଲା? ହେଃ... ଅମାନିଆଟା...

ରାଧାନାଥ ବାବୁ ରକ୍ତଟାଣରେ କେତେକଥା ଭାବିଗଲେ। ନିଜ ସାଇକେଲ ହ୍ୟାଣ୍ଡଲଟା ଏପଟ ସେପଟ ହୋଇଯାଇଛି। ଗୋଟାଏ ଛେଳିଛୁଆ ଉପରେ

ମାଡ଼ିଯାଇଥାନ୍ତା ଏଇଲାଗେ... ଅନ୍ୟମନସ୍କ– ପୁଅ ତାଙ୍କୁ ଅନ୍ୟମନସ୍କ କରି ଦେଉଛି... ଠିକ୍ ପୁଅ ନୁହେଁ ଯେ ତାଙ୍କର ଭବିଷ୍ୟତ...

– ଛୋପରି ହେଉଚୁ ନା କଅଣ ? ଏଡୁଟାଏ ହେଲୁଣି, ବାହାବେଦୀକୁ ଯିବାଯାଏ ମୁଁ ତତେ ଖୁଆଇ ଦେଉଥିବି ? ଦେ, ଜଲଦି ଖା, ସ୍କୁଲ ବସ୍ ଆସିଯିବ।

ନିତିଦିନିଆ– "ଖା"– "ନା, ମୁଁ ହାତରେ ଖାଇବିନି, ତୁ ହାତରେ ଖୁଆଇ ଦେ," ଏଇ ଅଳି ଆଉ ଝଗଡ଼ା। ବନାନୀ ଦେବୀ ଖୁଆଇ ଦେଉ ଦେଉ ଝିଅଟା ଆଡ଼େ ଭଲକରି ଚାହିଁଲେ...

ଭାବିଲେ, ଲାଜଦିଶା ଭାବଟା ଏମିତି... ଓଃ ସୁଷମା ଏମିତି କଅଣ ଗଣ୍ଡି ଛାଡ଼ି ଏତେ ଚଞ୍ଚଳ ବଢ଼ିଯାଉଛି ମ ? କାହାକୁ ଏ ପ୍ରଶ୍ନ ? ନା, ୟାକୁ ଆଉ ରଖିହେବନି, ଦି'ହାତ କରିବାକୁ ହେବ ଯିମିତି ହେଉ ପଛକେ...

ୟାଙ୍କୁ କହିବାକୁ ବେଳ କାହିଁ ? ଖାଲି ଟୁର୍...ଟୁର୍... ଦେହଟା କଳାକାଠ ପଡ଼ିଗଲାଣି, ଏତେ ବୁଲୁଛ କିଆଁ ? ନ ବୁଲିଲେ କଅଣ ଚାରା ଅଛି ? ମନ୍ତ୍ରୀ ଡାକୁଛନ୍ତି, ତାଙ୍କର ସେ ବ୍ୟକ୍ତିଗତ କର୍ମଚାରୀ। କାଲିଠୁ ଗଲେଣି।

ଜଙ୍ଗଲିଆ ମହୁ ଦି' ତିନି କିଲୋ ସେଆଡୁ ଆଣିବେ ବୋଲି କହିଛି। ମନେ ଥିଲେ ତ ? ମହାପ୍ରଭୁ, କିମିତି ଫେରି ଆସନ୍ତୁ। ଝିଅଟା କଅଣ ଆଜି ସେଇ ସ୍କୁଲରୁ ବଣଭୋଜି କରିଯିବାକୁ କହୁଥିଲା। ସାଙ୍ଗ ପିଲାମାନେ ଯିବେ, ନାହିଁ କରି ପାରିଲେନି ବନାନୀ ଦେବୀ।

ଏ ଶତାବ୍ଦୀର ଉତ୍କଣ୍ଠା... ଯେ ଯାଉଛି ସେ ଫେରୁଛି କି ନାହିଁ। ମାୟାମୃଗ କେତେଦୂରକୁ ନେଲା ? ଶାଢ଼ୀ କିଏ ଟାଣିଲା କି ? ଟାଣିବେ କଅଣ ? ଟାଣି ଟାଣି... ନାଃ, ଆଣ ତ ଚିଲମ... ଦୁଇଥର ଶୋଷିଦେଲେ ସ୍ନାୟୁଗୁଡ଼ାକ ସରସ ହୋଇଯିବ; ତେଣିକି ବାଟ ଦିଶିଯିବ।

ଅମ୍ଳଜାନ ଆଧାରରେ ଛିଦ୍ର ହୋଇଛି। ହେ ଈଶ୍ୱର, ତୋ ଲୋମକୂପେ ବ୍ରହ୍ମାଣ୍ଡ ମାଳ ମାଳ। ମଣିଷର ଅଭିଳାଷ ସେହି ମାଳ ମାଳ ବ୍ରହ୍ମାଣ୍ଡରେ ସନ୍ତରଣ କରିବ। ପରମାତ୍ମାର ରହସ୍ୟକୁ ଅଧିଗତ କରିବ।

ଭୂପୃଷ୍ଠର ନିମନ୍ତ୍ରଣକାରୀ ବୈଜ୍ଞାନିକଗଣ ସନ୍ତ୍ରସ୍ତ ହୋଇ ଉଠିଲେ। ଏ' ହେଲା କଅଣ ? ନଭଶ୍ଚର ତିନିଜଣ ରକ୍ତମାଂସ ଅସ୍ଥିପୂର୍ଣ୍ଣ ଶରୀରଧାରୀ ଏହି ତିନିଜଣ ମହାକାଶଚାରୀ ବଞ୍ଚିବେ କିପରି ? ଫେରିବେ କିପରି ମାଟିଧୂଳିଲଗ୍ନ ଧରିତ୍ରୀ ଉପରକୁ।

ସେମାନେ ଫେରୁଛନ୍ତି। ଜୀବନ ଓ ମୃତ୍ୟୁର ଦୋଳାରେ ବସି ସେମାନେ ଫେରୁଛନ୍ତି; କିନ୍ତୁ କେତେ ବିଘ୍ନ ରହିଛି; ମୂଳ ଯାନରୁ ଚନ୍ଦ୍ରଯାନ ବିଛିନ୍ନ ନ ହେଲେ ? କେତେ ବିପଦ।

ବିଶ୍ୱର କୋଟି କୋଟି ମାନବର ହାତ ଉଠିଲା ଉପରକୁ, ବିଜ୍ଞାନର ପରାକ୍ରମରେ ଅଭିଭୂତ ମଣିଷ ଆଜି ଯାଏ ନିଜ ତେଜରେ, ନିଜ ଗାରିମାରେ ଭୁଲିଥିଲା ପରମାତ୍ମାଙ୍କୁ। ଆଜି କୋଟି କଣ୍ଠରୁ ନିର୍ଗତ ହେଲା– ଏକହିଁ ଉପାସନା– ସମବେତ ପ୍ରାର୍ଥନା। ଏଠାରେ ମଣିଷର ପ୍ରଜ୍ଞା ଓ ମନୀଷା ପରାଭୂତ... ହେ ଅଚିନ୍ତନୀୟ ମହାଶକ୍ତି, ନିରାପଦରେ ତିନିଜଣ ମାନବଙ୍କୁ ଫେରାଇ ଆଣ, ସେମାନେ ପୁଣି ଫେରିଆସନ୍ତୁ ପରିବାର ଭିତରକୁ, ସମାଜ ଅନ୍ତରକୁ, ଏଇ ପୃଥିବୀର ରୂପରସ ଗନ୍ଧ ଶବ୍ଦ ସ୍ପର୍ଶ କୋଳରେ ସେମାନେ ସୁଷୁପ୍ତ ହୋଇଯାନ୍ତୁ କ୍ଷଣକ ପାଇଁ।

ବିଜ୍ଞାନ ଜ୍ୟୋତିପଥରେ ନେଇଥିଲା ସେମାନଙ୍କୁ ଲକ୍ଷ ଲକ୍ଷ ମାଇଲର ଦୂରତ୍ୱ ଉପରକୁ। ଫେରାଉଛନ୍ତି ପୂଜା ଅପୂଜା ମାଟି ପଥର, ଶାଳଗ୍ରାମ ଦାରୁଭୂତୋ ଜଗନ୍ନାଥ, ବା ହେ ଲର୍ଡ଼ ଯୀଶଶ୍, ପାଣ୍ଡବ ସଖା ଶ୍ରୀକୃଷ୍ଣ କିମ୍ବା ନିରୂପାଧିକ ପରଂବ୍ରହ୍ମ ! !

କିଛି ଶିଖିବାର ଅଛି କି ?

"ମାମି, ଡାଡି କେଉଁଠି ?" ପୁଅ ପଚାରୁଛି। ଟେଲିଭିଜନ୍ ସେଟ୍ ଉପରେ **ଅସ୍ପଷ୍ଟ** ଅବତରଣ କ୍ରିୟାର ପ୍ରତିଫଳନ।

ଶ୍ରୀମତୀ ଲେଭେଲ୍ ସେଇ ଏକା ହେମହରିଣୀର ଲୋଭରେ ସ୍ୱାମୀଙ୍କୁ ପଠାଇ ନ ଥିଲେ। ଲୋଭ ଥିଲା ବିଶ୍ୱର, ସମଗ୍ର ମାନବ ସଭ୍ୟତାର ମନୀଷା। ଏବେ

କିନ୍ତୁ ତାଙ୍କର ପ୍ରତ୍ୟେକଟି ଶୋଣିତ କଣା ଜମାଟ ବନ୍ଧା ତୁଷାର। ହୃତ୍‌ସ୍ପନ୍ଦନ ଅଛି କି ନାହିଁ! "ହେ ଈଶ୍ୱର, ହେ ଈଶ୍ୱର" ଶବ୍ଦ ଛଡ଼ା ସେ ପ୍ରାସାଦରେ ଅନ୍ୟ ଶବ୍ଦ ତରଙ୍ଗ ନାହିଁ।

ମୂକତ୍ୱ, ମୌନତା ଏତେ ଭୟଙ୍କର ହୋଇପାରେ? ଆଶା, ନୈରାଶ୍ୟର କ୍ଷେପଣଶୀଳ ଏତେ ବିକ୍ଷୁବ୍‌ଧ ହୋଇପାରେ? ଶ୍ରୀମତୀ ଲୋଭେଲ୍...

ତୁମେ ସେହି ପର୍ଣ୍ଣକୁଟୀରର ତପସ୍ୱିନୀ ସୀତା।

ଗୋଟିଏ ପ୍ରଶ୍ନ... ସ୍ୱାମୀ ଫେରିବେ କି ନାହିଁ? ନ ଫେରିଲେ... ନ ଫେରିଲେ... ଓଃ, ସ୍ମୃତିରକ୍ଷା ପାଇଁ; ସମାଧିରେ ସଞ୍ଚିତ ହେବାପାଇଁ ଟିକିଏ ବି ମାଂସ, ଧାରେ ରକ୍ତ, ଖଣ୍ଡେ ଛୋଟ ହାଡ଼ ବି ନ ଥିବ। ସବୁ ଯେମିତି ଅନନ୍ତ ଚକ୍ର ରେଖାବଳୀରେ ମହାଶୂନ୍ୟରେ ଘୂରୁଥିବ, ତାହାର ଶେଷ ନାହିଁ।

ଶ୍ରୀମତୀ ଲୋଭେଲ୍, ତୁମେ ସେଇ ଆସନ୍ନ–ବିବସ୍ତ୍ରା ରମଣୀ ପାଞ୍ଚାଳୀ। ସେ ଯୁଗରେ ସେଇ ଦୁଇଟି ଉତ୍କଣ୍ଠାର ମୁହୂର୍ତ୍ତ ଆଜି ପୁନରାବୃତ୍ତି ଧାରାରେ ପୁଣି ଦେଖାଦେଇଛି ତୁମ ଆଧୁନିକ ଜଗତରେ, ସମୟର କଟୀ ବନ୍ଧରେ... ଏକା–ଏକା– ଅନୁଭବ।

'ମାମି କେତେବେଳେ ଡାଡି ଘରକୁ ଆସିବେ?'

ଘର ବାହୁଡ଼ା ପ୍ରାଣମୟ ତୃପ୍ତି। ପାଖରେ ନା ଦୂରରେ? ଶ୍ରୀମତୀ ଲୋଭେଲ୍ ନିର୍ବିକଳ୍ପ ସମାଧିରେ ଭାବମଗ୍ନ। କେତେ ବିରାଟ ଏ ବିଶ୍ୱଜଗତ, କେତେ ବିଚିତ୍ର ଦୃଶ୍ୟଭରା ଏ ସଂସାର... ଆଜି କାହିଁକି ମନେହୁଏ ଏସବୁର ବିରାଟ ବିପୁଳ ବିଚିତ୍ର ସମ୍ଭାର ତଳେ ଗୋଟିଏ ସତ୍ୟ ଫୁଟି ଉଠେ... ଏଇ ମାଟି, ଏଇ ପୃଥିବୀ ଓ ତାହା ଉପରେ ସଂଜାତ ମାନବ ପ୍ରେମ, ମୈତ୍ରୀ, ସ୍ୱାମୀ... ସ୍ତ୍ରୀର ପରସ୍ପର ଅପେକ୍ଷା, ପ୍ରତୀକ୍ଷା; ପୁଅ ଝିଅଙ୍କର ଛଳ କ୍ରନ୍ଦନ... ଆଶ୍ୱସ୍ତି ତୃଷ୍ଣା ମେଣ୍ଟିବାର 'ଆଃ' ଶବ୍ଦ ସ୍ପନ୍ଦନ!!

ତିନିଜଣ ନଭଶ୍ଚର ପ୍ରଶାନ୍ତ ମହାସାଗରରେ ଅବତରଣ କଲେ। ବିଶ୍ୱର କୋଟି କୋଟି ଚକ୍ଷୁ ଆନତ ହେଲା। ଛାତି ଉପରେ 'କ୍ରସ' ଅଙ୍କିତ ହେଲା। ବିଜ୍ଞାନର ଅହମିକା, ଗଣିତର ଗଣନା, ସୌରମଣ୍ଡଳର ପରିକ୍ରମା, ପ୍ରକୃତିର ରହସ୍ୟ ଉଦ୍‌ଘାଟନରେ ମଣିଷର ପ୍ରବଣତାର ଊର୍ଦ୍ଧ୍ୱରେ ମହାସତ୍ୟ ସ୍ଫୁରିତ ହେଲା– ଈଶ୍ୱର, ତୁମେ ମହାନ୍, ତୁମେ ଅନିର୍ବଚନୀୟ?

ହାଲୋ, ହାଲୋ, ଶ୍ରୀମତୀ ଲୋଭେଲ୍, ଶ୍ରୀମତୀ ହେସ, ଆଉ ଷ୍ୱିବର୍ଟର ବୃଦ୍ଧ ପିତା ମାତା... ହାଲୋ, ଜୟ ହେଉ ଈଶ୍ୱରଙ୍କର କରୁଣା; ଜୟ ହେଉ ତିନିଜଣ ବୀରପୁରୁଷଙ୍କ ପାଇଁ ବିଶ୍ୱବାସୀର ମମତା...

ସେମାନେ ପାସିଫିକ୍‌ର ତରଙ୍ଗ ଉପରେ ଭାସି ଉଠିଲେ।

ପ୍ରତ୍ୟେକଟି କୋଠରୀକୁ ଦଉଡ଼ିଲେ ଶ୍ରୀମତୀ ଲୋଭେଲ, ବୋଧହୁଏ କିଛି କେଉଁଠି କାନ୍ଥ ବା ପ୍ରାଚୀର ନ ଥିଲେ ସେ ଶୂନ୍ୟକୁ ଲମ୍ଫ ଦେଇଥାନ୍ତେ... କହିଲେ– ହେ ଭଗବାନ୍, ତୁମେ କଅଣ ନ କଲ? ତାଙ୍କର ଗଣ୍ଡ ଦେଇ ଅଶ୍ରୁର ପ୍ଲାବନ।

ହେମ ହରିଣୀ ନିହତ ହୋଇଛି।

ଯାଜ୍ଞସେନୀଙ୍କୁ ଆବରଣ ଦେଲେ ଭକ୍ତବତ୍ସଳ ଶ୍ରୀକୃଷ୍ଣ, କିନ୍ତୁ ରାଧାନାଥ ବାବୁଙ୍କର ନେତ୍ର ସମ୍ପତ୍ତି ବାବୁଲା ଫେରିଲା ନାହିଁ। ସୁଷମାର ସ୍କୁଲ ବସ୍ ଆକ୍‌ସିଡେଣ୍ଟ କଲା– ସେ ହେଲା ଏକ ରକ୍ତ ପିଣ୍ଡ। ବାବୁଲାର ସେହି ପୀବର କିଶୋରୀୟ ଜଘନ ଉପରେ ଟ୍ରକ ଚାଲିଗଲା। ବାବୁଲା ନାହିଁ।

ଉତ୍କଣ୍ଠାର ଶେଷ ହେଲା। ଯୁଗ ଅଭିଶାପର ଏ ହେଲା ଆରମ୍ଭ ମାତ୍ର। ପୁଣି ଏ ଅଭିଶାପ ଉତ୍କଣ୍ଠା ସୃଷ୍ଟି କରିବ। ମଣିଷ ହେବ ପିତୁଳା, ଯନ୍ତ୍ରର ପିତୁଳା।

■■■

# ପଙ୍କରୁ ଜାତ ପଦ୍ମଶ୍ରୀମାନେ

ପୂର୍ଣ୍ଣମୀ ଚନ୍ଦ୍ର ।

ବିଭାସିତ ଓ ପରିବ୍ୟାପ୍ତ ।

ଆକାଶ ଅଙ୍ଗନ ଧାରଣ କରିଛି ଜ୍ୟୋତିର ଜୟନ୍ତୀ ଉତ୍ସବ ।

କୋଣାର୍କ ଶିଳାର ତଟ ଓ ଊର୍ଦ୍ଧ୍ୱ; ଚଉପାଶର ପ୍ରତିମା ନିର୍ଜୀବ, ନିଖୁଣ ।

ବର୍ଷା ବର୍ଷିଯାଏ । ଗ୍ରୀଷ୍ମ ଦିଏ ତାପ । ଶରତ୍ ସ୍ନିଗ୍ଧ କରେ ରୂପଶ୍ରୀଙ୍କୁ । ହେମନ୍ତରେ କ୍ରମେ ଆସିଥାଏ ହିମସ୍ପର୍ଶ, ଶୀତ ଆଣେ ଶିହରିତ ପ୍ରକମ୍ପ । ବସନ୍ତରେ ନୂପୁର ନିଷ୍ପନ୍ଦ ।

କୋଣାର୍କର ଶିଳାମୟ ରୂପମୂର୍ତ୍ତି । ଆଉ ଧୈର୍ଯ୍ୟ ନାହିଁ । ଶତ ଶତ ବର୍ଷର ସ୍ଥାଣୁତ୍ୱକୁ ନବନୀତ ତରଳ ଧାରାରେ ନିର୍ଝର କରିବାକୁ ପ୍ରତ୍ୟେକଟି ପ୍ରତିମାର ସେ କି ଉତ୍କଣ୍ଠା ଓ ଆୟାସ ।

ଶିଳ୍ପୀର ଚେତନାରେ ଥିଲା ସେମାନେ ଲାସ୍ୟ ରୀତିରେ ନୃତ୍ୟ କରିବେ । ଗଭାରେ ଖୋସିବେ ଚାରୁ ମଲ୍ଲିକା; ତୋଳିବେ ଶୈଳପୁଷ୍ପ, ଦେହାବରଣ ପାଷାଣ ଥିଲେ ବି ଅନ୍ତଃବ୍ରହ୍ମ ଥିବ ଚଳମାନ ।

ଏହାହିଁ ଥିଲା କଳିଙ୍ଗ ଶିଳ୍ପୀର ଚେତନପ୍ରସାରୀ ଅମୃତ ଭାବ । ରାଜରାଣୀ, ଲିଙ୍ଗରାଜ, ମୁକ୍ତେଶ୍ୱର କୋଣାର୍କ, ଚର୍ଚ୍ଚିକା ବା ଖିଚିଙ୍ଗ୍– ସର୍ବତ୍ର ଶୈଳାଗାରରୁ ସୁରତ ପ୍ରବାହ... ମାନବ ବୋଧିରେ ଏ ହେବ ଐଶ୍ୱର୍ଯ୍ୟ– ବିଶ୍ୱ ଭୂମାର ପ୍ରତୀକ ମାଧୁରୀ ।

ଅଇ ଧୃତି ନାହିଁ । ସହି ହେଉ ନାହିଁ । ଶତାବ୍ଦୀର ବିସ୍ମୃତ ଜାତି ମାନସ । ଅଳସ ନୀରାଜନାରୁ ତାଣ୍ଡବର ଉଚ୍ଚ କମ୍ପନକୁ ଉଠିବାକୁ ହେବ । ଅଫୁଟା ଫୁଲ ଫୁଟିବ ।

ସମସ୍ତେ... ସବୁ ନଟ ନଟୀ... ଶୈଳ ଉତ୍କୀର୍ଣ୍ଣ ଯେତେକ ବୁଦ୍ଧବିଗ୍ରହ, ଅବଲୋକିତେଶ୍ୱର ପ୍ରଜ୍ଞା ପାରମିତା, ନାରାୟଣ ରୂପ, ଅଶ୍ୱ ଗଜବୃନ୍ଦ, ବ୍ରତତୀ ପୁଷ୍ପଶାଖାର କୋକିଳ, ସୀମନ୍ତରେ ସିନ୍ଦୂର କାଠି ଧରି ଉଭା ନାୟିକାର ମୁଖବିମ୍ବର ମୁକୁରରେ ପ୍ରତିଫଳନର ଶୋଭା, ସ୍ୱୟଂ କାଳୀ କରାଳୀ, ତନ୍ତ୍ରଦେବୀ ଚାମୁଣ୍ଡୀ, ଦୁର୍ଗା ଓ ହିମାଳୟ ନନ୍ଦିନୀ... ବୈଷ୍ଣବୀ, ଭୈରବୀ, ଅଷ୍ଟପଦୀ, ସପ୍ତଶୃଙ୍ଗାର ଭଙ୍ଗିମାରେ ମିଳନ ଉତ୍ସବ... କେତେ ଏମିତି ପୁଣି ପାର୍ଶ୍ୱଚାରିକା, ଚାମରଧାରିଣୀ ତାମ୍ବୁଳରାଜଶୋଭିନୀ ଏଇ ଯେ ଉତ୍କଳ ଶିଳ୍ପ ବିଳାସର ଶିଳାମୟ ଶୋଭାଙ୍ଗର ଜାତିଗନ୍ତାଘର, ତାହା କ୍ରମେ ହେଲା ଉଚ୍ଚକିତ ସନ୍ତ୍ରସ୍ତ–

ମହାକାଳ ନିରେଖୁଥିଲେ, ଚକ୍ଷୁପଲ୍ଲବ ତାଙ୍କର ହେଲା ସଂଶୟ ଶଙ୍କିତ... ଭ୍ରୂକୁଟି ଜନ୍ମିଲା । ନେତ୍ର ହେଲା ରୋଷକଷାୟିତ । ସେ ତ ନିଜେ ବିଶ୍ୱମୟ ନଟରାଜ । ଉତ୍ଥିତ ପଦ ପ୍ରହାରରେ ଯଦି ସେ ଏ ଜାତିକୁ ଆଘାତ କରନ୍ତି, ତେବେ...

ପାପ, ପାପର ପରିକ୍ରମା ।

ଲୋଭାସକ୍ତ ଏ ଜାତି...

କର୍ପୂରର ଭଣ୍ଡାରରେ ଆଜି ପଚନ ଶବମାଳାର ଦୁର୍ଗନ୍ଧ ।

ଭୁଲିଛି ଏ ଜାତି ତା'ର ସଂରକ୍ଷଣ ଶକ୍ତିକୁ । ତା'ର ସମ୍ମାନ, ଭବ୍ୟତା ଓ ଭଦ୍ରଭାବକୁ ।

ମହାକାଳ ଲକ୍ଷ୍ୟ କରୁଥିଲେ ଏ ଜାତି ହାତ ଦେଇଛି ତାର ନିଜ ଗ୍ରୀବାମୂଳରେ, ତାହାର ନାଭିମଣ୍ଡଳ, ତା'ର ଷଡ଼ଚକ୍ର ଷୋଡ଼ଶ ପଦ୍ମଦଳ ଉପରେ ଯାହାର ମହିମା ଏ ଯାଏ ଦେଇଥିଲା ଉତ୍କଳୀୟ ଜାତିକୁ ପରମ ସଂଭ୍ରମ ।

ମହାଲକ୍ଷ୍ମୀ ପାର୍ଶ୍ୱବର୍ତ୍ତିନୀ ମହାକାଳଙ୍କର। ପାଖେ ପାଖେ ସୃଜନୀ ଓ କ୍ଷୟ... ଏକର ଆରକୁ ଆମନ୍ତ୍ରଣ। ତୁମେ ଶୁଭଙ୍କର ହୁଅ, ମୁଁ ହେବି ମଧୁକ୍ଷରା। ଯଦି ଦେଖ. ଏ ଜାତିର ଚଣ୍ଡାଳତ୍ୱ, ତେବେ ଅଜସ୍ର ପଟହ ନିନାଦରେ ଆକାଶଭଙ୍ଗା ରବରେ ଧ୍ୱଂସ କରିଦିଅ ଏ ଜାତିକୁ।

ପ୍ରାକ୍ତନ ବିଭୂତିକୁ ଘେନି ଜାତିସ୍ମର ହୁଏ ଦେଶ। ମହାକାଳ ରୁଷ୍ଟ ହେଲେ ନେତ୍ରତୀରେ ତାଙ୍କର ସ୍ଫୁରିଲା ଇନ୍ଧନ୍...

ଏ ଜାତି ଭାଇ ଭାଇ କହି ହାଣୁଛି ପରସ୍ପରକୁ। ଖାଦ୍ୟରେ ଦେଉଛି ହଳାହଳ। ଔଷଧରେ ନିହିତ କରୁଛି ମୃତ୍ୟୁ ଅନୁପାନ। ଶିଶୁ ମୁଖ ଓ ସନ୍ତାନସମ୍ଭବାର ଭୋଜ୍ୟକୁ କରୁଛି ଅପମିଶ୍ରିତ।

ଲୋଭ ଆକାଶ ଛୁଉଁଛି। ଜାଣୁନି ଗଲାବେଳକୁ ଛଅହାତ ପରିମିତ ସ୍ଥାନ ଓ କେତେଖଣ୍ଡି ଯଷ୍ଟି। ଅଥଚ ଦେଖ ତା'ର ଆସ୍ଫାଳନ– ପ୍ରତି ପଦରେ ସେ ଆତତାୟୀ ସାଜୁଛି। ନିର୍ବୋଧ, ଚାଣ୍ଡାଳ ସେ।

ଲକ୍ଷ୍ମୀ ଅସ୍ଥିରା ହେଲେ। ବାଗ୍‌ଦେବୀ ହେଲେ ବିଷର୍ଣ୍ଣା। ସ୍ଥପତି ଦେବୀ ହେଲେ ବିସ୍ମିତା। ଭୂଦେବୀ ହେଲେ ତଟସ୍ଥା।

ଏ ଜାତି କରୁଛି କଅଣ ?

'କରୁଛି କଅଣ, କରୁଛି କଅଣ' ଧ୍ୱନିରେ କୋଣାର୍କ ଅଙ୍ଗନରୁ ବୌଦ୍ଧ ବିହାର ଯାଏ ଆଲୋଡ଼ିତ ହେଲା ସହସ୍ର କଣ୍ଠ। ଖସିପଡ଼ିଲା ଶୈଳ ଉତ୍ତରୀୟ ନଟୀ ଗାତ୍ରରୁ। ନଟରାଜ ହେଲେ ଉନ୍ମତ୍ତ। କୋଣାର୍କ ଅଶ୍ୱ କ୍ଷୁରା ଉତ୍ତୋଳିଲେ। ଗଜ ଧାବମାନ।

ତଥାଗତଙ୍କର ଧ୍ୟାନମଗ୍ନ ହେଲା। ନାରାୟଣୀ ଧରିଲେ ଆୟୁଧ– ଓଡ଼ିଆ ଜାତିର ସର୍ବସମ୍ପଦ ଏଇ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଜଗତରେ ଘଟିଲା ଘୋର ବିଦ୍ରୋହ।

ବାଗ୍‌ଦେବୀ ଚପଳାଙ୍କୁ ଦେଲେ ଉତ୍ତର 'ଭଉଣୀ, କି ପ୍ରମାଦ କଲି ସତେ, କିଛି ସାଧନା କରୁଥିଲା ବୋଲି ସନ୍ତୁଷ୍ଟ ହୋଇ ପ୍ରାର୍ଥନା ପୂରଣ କଲି। ସଜାଇଦେଲି ତାକୁ **ପଦ୍ମଶ୍ରୀରେ।**

ଦରବାରରୁ ସେ ପାଇଲା ସନନ୍ଦ। ଅଜାତି ଅଶିକ୍ଷର ଲେଖା ଲେଖିଲେ ବି ଯୁଗପ୍ରବର୍ତ୍ତକ କହି ମୁଁ ଧରାଇଲି ତା' ହାତରେ ସମ୍ମାନର ଦଣ୍ଡ।

କିନ୍ତୁ ହାୟ, ପ୍ରକୃତ ଜାତିପ୍ରୀତି ନ ଥିଲା ତା'ର... ସବୁ ପେଖନା, ଛଳ ଓ କୌଶଳ। ପ୍ରଥମେ ଖୋଲିଲା ସେ ଯାଦୁଶାଳା। ଭାବିଲି ଗଚ୍ଛିତ କରୁଛି ନିଜ ଶକ୍ତି ଅନୁସାରେ କିଛି ମଣିମାଣିକ୍ୟ। ମାତ୍ର ଜାଣି ନ ଥିଲି ଯେ ଏଇ କୌଶଳରେ ସେ ହୋଇଉଠିବ ଧନାଢ଼୍ୟ। ଭଉଣୀ, ତମେ ଏମିତି ଲୋକକୁ ଚିହ୍ନି ନ ପାରି ପୁଣି ସାହାଯ୍ୟ କଲ ?

ଚପଳା ହସିଲେ... କହିଲେ, 'ମୃଗତୃଷ୍ଣା' ପଛରେ ଲୋକଟା ଧାଇଁଛି। ସୂତା ମୁଁ ଛାଡ଼ିଦେଇଛି। ପଦ୍ମଶ୍ରୀ ଭାବୁଛି ଏ ସୂତାଗଣ୍ଡି ଅନନ୍ତ। ଯେତେ ଟାଣୁଥିବ, ପାଉଥିବ।

ମୁଁ ଜାଣେ ଗୋଟାଏ ନଟରାଜ ମୂର୍ତ୍ତି ବିକ୍ରୀ କରି ସେ ପାଇଛି ଲକ୍ଷେଟଙ୍କା। ମନ୍ଦିରର ସିଂହାସନରୁ ବିଚ୍ଛିନ୍ନ ଏଇ ମୂର୍ତ୍ତି ଅପହରଣକାରୀର ଖୋଦନଯନ୍ତ୍ର ବାଜି ରକ୍ତ ଢାଳୁଥିଲେ ବି ସେ ଶୋଣିତକୁ ଦେଖି ଜାତୀୟ କବି ହସୁଥିଲା। କାରଣ ଉତ୍କଳରେ ଯେଉଁ ଛଉ ନୃତ୍ୟ ବିଶ୍ୱ ପ୍ରସିଦ୍ଧ, ସେଥିରେ ଯେଉଁ ମୁଖା ଆବରଣରେ ନୃତ୍ୟ କରାଯାଏ, ତାହା ହିଁ ଏ ଜାତିର ଅଧିକାଂଶ ସନ୍ତାନ ଏବେ ପରିଧାନ କରୁଛନ୍ତି।

କିଏ କବି, କିଏ ସମାଜ ସଂସ୍କାରକ, କିଏ ତପସ୍ୱୀ, କିଏ କର୍ମୀ, କିଏ ଦେଶସେବୀ, କିଏ ଆଜନ୍ମ ବ୍ରହ୍ମଚାରୀ, କିଏ ମନ୍ତ୍ରୀ ଏଇସବୁ ଭଦ୍ର ଓ ଆଭିଜାତ୍ୟମୟ ବେଶ ସମ୍ପଦରେ ସଜ୍ଜିତ ହୋଇ ଏମାନେ ଯେ ପ୍ରତିମା ଚୋରିଠାରୁ ନରହତ୍ୟା ପର୍ଯ୍ୟନ୍ତ ଜଘନ୍ୟ କର୍ମ କରୁଛନ୍ତି, ତାଙ୍କୁ ମୁଁ ଗୋଟି ଗୋଟି କରି ଜାଣେ। ହେଲେ କଳିକାଳ, ଘୋର କଳିର ଅନ୍ତିମ ପ୍ରଘଟ ନ ହେବାଯାଏଁ ମୁଁ ଶସ୍ତ୍ରଧାରିଣୀ ହୋଇପାରିବି ନାହିଁ। ତୁମେ ବ୍ୟସ୍ତ ହୁଅନି ଭଉଣୀ, ଦେଖୁଛି ଏ ଜାତିର ଦେବ ଦେଉଳ, ଆମ୍ର ବାଟିକା, ଗିରି ଗହ୍ୱର **ସର୍ବତ୍ର ଯେତେ ପ୍ରତିମା ବିଦ୍ୟମାନ, ସମସ୍ତେ ବିଳାପରତ।**

ଝୁରୁଛନ୍ତି ଅଶ୍ରୁବର୍ଷଣ ଭିତରେ ସେହି ପ୍ରାକ୍ତନ କଳିଙ୍ଗ ଶିଳ୍ପୀଙ୍କୁ ଯେ ଏମାନଙ୍କୁ ଅଧିଷ୍ଠିତ କରିଥିଲେ, ଅରୂପକୁ ରୂପ ଦେଇଥିଲେ, ଅସୀମକୁ କରିଥିଲେ ସସୀମ, ଆଉ ଶେଷରେ–

'ଶେଷରେ ବିଶ୍ୱାତ୍ମାକୁ ଆତ୍ମାରେ ସଂଯୁକ୍ତ କରିଥିଲେ, ଆଜି ଏ ସଂଯୋଗ ଛିନ୍ନହେବା ଉପରେ, ନୁହେଁ ଭଉଣୀ ?' ଭାରତୀ ଦେଲେ ଉତ୍ତର–

ସାୟନ୍ତନ ଚନ୍ଦ୍ର ନଭୋମଣ୍ଡଳରେ ନିଶାର୍ଦ୍ଧ ବିକାଶ ପଥରେ... ଅପୂର୍ବ ଏ ଜ୍ୟୋତିଃ ସଞ୍ଚାର। ପ୍ରତିମାର ଅଙ୍ଗଶ୍ରୀରେ ଏ ଆଲୋକର ତରଙ୍ଗ ସ୍ପନ୍ଦନ... ତଥାପି ବିମର୍ଷ... କାହା ଭାଗ୍ୟରେ କେତେବେଳେ ଲୁଣ୍ଠନକାରୀର ହାତ ଓ ଅର୍ଥଲିପ୍ସାର ଆଘାତ ନ ଲାଗିବ, କିଏ ଜାଣେ...

ଗୋଟାଏ ପ୍ରକାଣ୍ଡ ମେଘଛାୟା ଚନ୍ଦ୍ରକୁ ଆବୃତ କରିଦେଲା–

ଏତିକିବେଳେ ଚିତ୍କାର କଲା, ପ୍ରସାଧନରତା ନଟୀ ବିଚିତ୍ରାବିଭା, 'ସଖି ଦେଖ ଦେଖ, ମୋ'ରି ପାଖରୁ ରକ୍ତାକ୍ତ ବକ୍ଷ ଉରଜ, ନୂପୁର ସବୁ ଉତ୍‌ଖାତ କରି ନେଇ ପଳାଉଛି ଲୁଣ୍ଠନକାରୀ... ହେ ମହାକାଳ, ରକ୍ଷା କର... ରକ୍ଷା କର...।'

'କିଏ ସେ ?'

'ସେ ନୀରବମଲ୍ଲିକା, କୋଣାର୍କର ସୂର୍ଯ୍ୟଦେବଙ୍କ କିଙ୍କରୀ ଦାସୀ।'

"ପରମେଶ୍ୱର, ଏ କଅଣ ଘଟୁଛି ?"

ନୀରବମଲ୍ଲିକାର ବିଦେଶଯାତ୍ରା ଆରମ୍ଭ ହେଲା, ପଲ୍ଲୀ ପୁଷ୍କରିଣୀରେ ସେ ଲଭିଲା ବିଳୟ ପନ୍ଦରଦିନ– ସେଠାରୁ ବସ୍ତା ଭିତର ଆବର୍ଜ୍ଜନାମୟ କୁଟାକାଠିରେ ଆବଦ୍ଧ ରହି ସେ ଯାତ୍ରା କଲା ଟ୍ରକ୍ ଭିତରେ, ସେଠାରୁ ଟ୍ରେନ୍, ଜାହାଜ ଓ ଶେଷରେ ମାର୍କିନ ଶିଳ୍ପପତିର ଗୋଦାମ ଘରେ ପଡ଼ିରହିଲା ଅଶ୍ରୁମତୀ ହୋଇ।

ଚାଳିଶହଜାର ଟଙ୍କାର ଥଳି ଧରି ମଲ୍ଲିକାର **ଅପହରଣକାରୀ ଫେରିଆସେ ସ୍ୱଗୃହକୁ।**

"ପ୍ରୀତି, ଦେଖ, ଦେଖ ଚାଳିଶହଜାର ଟଙ୍କା ଗୋଟାଏ ରାତିର ମେହନତି"– ସାଙ୍ଗ ଦୁଇଜଣ।

ଅବଶ୍ୟ କିଛି ଅଂଶ ନେବେ ମାନେ ପାଞ୍ଚ ପାଞ୍ଚ ହଜାର–ଦଶହଜାର, ନେଟ୍ ଲାଭ ମୋର ତିରିଶ ହଜାର, କଅଣ ହସୁନା ଯେ। କେତେ ଟଙ୍କା ଦେଖୁଛ ?

ଠିକ୍ ମଥା ଉପରକୁ ଓଡ଼ିଶାର ପ୍ରଖ୍ୟାତ ଚିତ୍ରଶିଳ୍ପୀଙ୍କର ତୈଳଚିତ୍ର... ଯାତ୍ରା କରିଛନ୍ତି ପରପାରକୁ। ପ୍ରୀତି ତାଙ୍କରି ଆଡ଼କୁ ଚାହିଁ ପ୍ରଶ୍ନ କଲା–

"ତମେ ବାପାଙ୍କୁ ଚିହ୍ନିଛ ? ତାଙ୍କରି ସନ୍ତାନ ତମେ। ଯେଉଁ ଶିଳ୍ପୀ ଚିତ୍ର ଆଙ୍କି ଆଙ୍କି ବ୍ୟାଧିଗ୍ରସ୍ତ ହୋଇଗଲେ, ଆଜୀବନ ରହିଗଲେ ସ୍କୁଲର ଡ୍ରଇଂ ଶିକ୍ଷକ; କିନ୍ତୁ ମୁଣ୍ଡଟେକି ସେ ଚାଲୁଥିଲେ... ଏ ଜାତି ତାଙ୍କୁ ଭୁଲିବ ନାହିଁ। ମୁଁ ତୁମର ଧର୍ମପତ୍ନୀ ହେଲେ ବି କହିବି ତୁମେ ପାଷାଣ୍ଡ, ଚୋର ଓ ଜାତିଦ୍ରୋହୀ।"

ମାଡ଼ରେ ପ୍ରୀତିର ଗଣ୍ଡ ଫୁଲିଯାଇଥିଲା। ସେ କେବଳ ଚିତ୍କାର କରୁଥିଲା– କେଉଁ ବାପର କି ପୁଅ ?

ଦୃଶ୍ୟ ଅତିବାହିତ ହୋଇଗଲା।

ଉରଜ ଓ ବ୍ଲାଉଜ୍‌ର ସୀମା ଭିତରେ ମୁଁ ରଖିପାରିବି ପାଞ୍ଚଟା ଛୋଟ ପିତଳ ମୂର୍ତ୍ତି ଓ ଦୁଇଟା ପଥର ପ୍ରତିମା, ମିସେସ୍ ନାୟାର୍ ତମେ ପାରିବ ? ସେଥିପାଇଁ ଅବଶ୍ୟ ବ୍ଲାଉଜ୍‌ର କଟିଂକୁ ଅସାଧାରଣ କରିବାକୁ ହେବ। ଆମ ଦଳ ସାଙ୍ଗରେ ମିଶିଯାଅ ଭଉଣୀ ମିସେସ୍ ସାନ୍ୟାଲ... ଆମକୁ କେହି ସନ୍ଦେହ କରିବେ ନାହିଁ କାରଣ ଆମେ ସ୍ୱର୍ଗର ଦୁହିତା ଆଇ.ଇ.ଏସ୍. ଭଳି ଦେବତାଙ୍କର ଅଙ୍କଲକ୍ଷ୍ମୀ, ବଟ୍ ଉଇ ଡୁ ବିଜିନେସ୍... ରାକେଟିଙ୍ଗ୍... ତା' ଛଡ଼ା ଆମ ଆଖିରେ ଅଛି ବିଦ୍ୟୁତ୍ ଓ ବକ୍ଷରେ ଅଛି ଅମୃତ... ଟିକିଏ ସେଥିରୁ ଢାଳିଦେଲେ କ୍ଷତି କଅଣ ? ବିନିମୟରେ ଲାଖ୍ ଲାଖ୍ ଟଙ୍କା... ତା'ପରେ ଡ୍ରିଙ୍କ୍ ଆଉ ଫର୍ମିସିଭ୍ ସୋସାଇଟିର ଯେତେକ ଫୁଲ ଫଳ ଚନ୍ଦନ ଆମ ହାତମୁଠାରେ... ଜୀବନ ଧନ୍ୟ ହେବ ଭଉଣୀ..."

ମହିଳା କ୍ଲବର ନିଭୃତ କୋଠରୀରେ ଏ ଆଳାପ... ଦଳ ଗଢ଼ିଛନ୍ତି ବିଦେଶିନୀ ମହିଳା, ଏ ଜାତିର ଗର୍ବର ଧନକୁ ଲୁଣ୍ଠନ କରିବାପାଇଁ।

ଜାତି ହୁସିଆର... ନା, ସାମାନ୍ୟ ଗୋଟାଏ ଚୌକିଦାର ଗାଁ ଦାଣ୍ଡରେ ଯାଉଛି ସବୁଦିନିଆ ପହରା ଦେଇ... ସନିଆ ମଳିକ।

କିଏ ?

ଚମକି ପଡ଼ିଲେ କି ସାଆନ୍ତେ ? ଏତେ ରାତିରେ ଏ ପୋଖରୀ ହୁଡ଼ାରେ ଗାତ ଖୋଳି କଅଣ ପୋତୁଛ ମିଶ୍ରେ ?

"ଆରେ ତୁ କିରେ ସନିଆ, ଏ ହେଁ ନଡ଼ିଆ ତଳି ପକାଉଥିଲି। ଗାତ କରିସାରିଛି, ଭଲ କରି ପଙ୍କ ଢାଳି ଦେଲେ ପାଗ ହୋଇଯିବ। ହଉ, ତୁ ଯା, ତୋ ବାଟରେ ତୁ ଯା, ଚୌକିଦାର କାମ କି ନିଉଛୁଣା ସତେ ? ଅନିଦ୍ରା ରହି କର୍ତ୍ତବ୍ୟ କରୁଛୁ ? ନିମକସଚ୍ଚା କର୍ମଚାରୀ, ହଉ ଯା–"

ସନିଆ ଆଉ ଦେଖିଲା ନାହିଁ କିମିତି ଆଉ ଏକ ପଦ୍ମଶ୍ରୀ ମିଶ୍ରଙ୍କର ନଡ଼ିଆ ବଗିଚା ଫଳିଲା। ଫଳ ଦେଖିବା ଆଗରୁ ସେ ବିଚାରା ଆଖି ବୁଜି ଦେଇଥିଲା। ଚାଲିଗଲା ପରପାରିକୁ।

ପାଞ୍ଚବର୍ଷ ପରେ ଭାରତ ସରକାରଙ୍କ ଦରବାରରେ ଉଚ୍ଚ ପ୍ରଶଂସିତ ହେଲା, ମିଶ୍ରଙ୍କର ଆବିଷ୍କାର... ଖ୍ରୀ.ପୂ. ଦୁଇହଜାର ବର୍ଷ ପୂର୍ବରେ ଓଡ଼ିଶୀ ସଭ୍ୟତା ଯାହାକି ତାଙ୍କ ଗାଁ ମୁଣ୍ଡ ପଦ୍ମପୋଖରୀ କୂଳରେ ପ୍ରତିଷ୍ଠିତ ହୋଇଥିଲା, ତାହାର ବିବରଣୀ... ପ୍ରାଚୀନ ତାଳପତ୍ର ଗ୍ରନ୍ଥ... କି ଅସାଧ ସାଧନା– ସମସ୍ତେ ଧନ୍ୟଧନ୍ୟ କଲେ ଏହିଭଳି ଗବେଷକ ଓ ପ୍ରତ୍ନତାତ୍ତ୍ୱିକ ଯଦି ବହୁ ସଂଖ୍ୟାରେ ଧରା ହୁଅନ୍ତେ, ତେବେ ସ୍ୱର୍ଣ୍ଣଯୁଗ ଆସିଯା'ନ୍ତା।

ରାଜ୍ୟ ଅପେକ୍ଷା କରିଛି ଦେଖିବାକୁ ଆଉ କେତେ ପଦ୍ମଶ୍ରୀ ଜନ୍ମ ନେବେ... କିଏବା ଅଧବାଟଯାଏ ଆସି ଆଗରୁ ସମ୍ବାଦପତ୍ରରେ ପ୍ରଚାର କରି ଦେଇଛି– "ମୁଁ ହୋଇଗଲି। ଆଗାମୀ ଆଓ୍ୱାଡ୍ ମୋରି।"

ଦୃଶ୍ୟ ଅତିକ୍ରାନ୍ତ ହେଲା–

ମହାକାଳ ଜିଜ୍ଞାସା କଲେ–

'ଏ କିଏ ?'

ଭୂଦେବୀ ଈଶ୍ୱରୀ ପ୍ରବଚନ ଦେଲେ–

'ଏ ସେହି କରିତ୍‌କର୍ମା ସୁପୁରୁଷ, ଯେ ପାଦ ନ ଥାଇ ବି ନୃତ୍ୟ କରିପାରନ୍ତି, କଣ୍ଠ ନ ଥାଇ ବି ସଙ୍ଗୀତ ଗାୟନ କରିପାରନ୍ତି, ଅଙ୍ଗ ସବୁ ସ୍ଥିର ନ ଥିଲେ ବି ନିପୁଣ ଓ ନିଖୁଣ ଅଭିନୟ କରିପାରନ୍ତି। ସେ ଆଗାମୀ କାରୀଗର ମହାପଦ୍ମଶ୍ରୀ। ଓଡ଼ିଶୀ ସଂସ୍କୃତି ଯାଙ୍କ ପାଦତଳର ସେବିକା, ଦାସୀ।

ମହାକାଳ ହସିଲେ, କହିଲେ ଭୂଦେବୀ, ମୁଁ ଆଉ ଗୋଟିଏ କଥା ଯୋଗ କରି କହୁଛି– ତମେ କଅଣ ଭାବୁଛ ମୁଁ କିଛି ଜାଣେନି ?

"ଏ ସେହି କରିତ୍‌କର୍ମା ଯେ କେବଳ କହୁଛନ୍ତି ମୋ ପାଖରେ ମଣି ମାଣିକ୍ୟ ଅଛି, ମାତ୍ର ଅନ୍ଧାର ଘରେ ଆଲୁଅ ନ ଥିବାରୁ କେହି ବାହାରୁ କିଛି ଦେଖିପାରୁ ନାହାନ୍ତି...।

ଉଲଗ୍ନ ହୋଇ ରାଜା ଯେପରି କହୁଥିଲେ ସେ ସର୍ବମୟ ସବସ୍ତ୍ର ବିଭୂଷିତ ବ୍ୟକ୍ତି।"

ପ୍ରଭାତୀ ତାରା ଫୁଟି ଉଠୁଥାଏ ଦିଗ୍‌ବଳୟ ତଳେ। ଦେବ ଦେବୀ କ୍ରମେ ଲୁଚିଗଲେ ଅରୁଣିମାର ପ୍ରକାଶରେ। ଗଲାବେଳେ ସମସ୍ତେ ଏକସ୍ୱରରେ କହିଗଲେ–

'ଧନ୍ୟ ଏ ଓଡ଼ିଶା ରାଜ୍ୟ, ଧନ୍ୟ ଓଡ଼ିଆମାନେ... ଅତୀତ ଯେପରି ଏମାନଙ୍କ ମହିମାମୟ, ବର୍ତ୍ତମାନ ବି ହେବାକୁ ଯାଉଛି ସେହିଭଳି ଗାରିମାମୟ– ଅନ୍ୟକୁ ନିର୍ବୋଧ କହିବାକୁ ଏମାନଙ୍କର ସତେ କି ପ୍ରୟାସ ?

ଭୂଦେବୀ, ଚପଳା, ଭାରତୀଙ୍କ ସହିତ ମହାକାଳ ଉର୍ଦ୍ଧ୍ୱାୟନରେ ଉଠିଗଲେ।

ଏକ ନୂତନ ଦିବସର ଜନ୍ମ... ପାପ ପୁଣ୍ୟର ଶୋଭାଯାତ୍ରା...।

■■■

# ବ୍ରହ୍ମାଣ୍ଡ

ଏ' ଗଳ୍ପର ଘଟଣା—ମଣ୍ଡପ ହେଉଛି ରାଜଧାନୀ ବସ୍ ଯିବା ଆସିବା ସ୍ଥାନ। ମୁଁ ଜଣେ ଯାତ୍ରୀ ଭାବରେ ଛିଡ଼ା ହୋଇଥିଲି ମୋର ନିର୍ଦ୍ଦିଷ୍ଟ ଯାନ ଅପେକ୍ଷାରେ।

ସମୟ ଥିଲା, ତେଣୁ ପାଦ ଖେଳାଇଲି ରାଜଧାନୀ ବହି—ବିପଣୀ ଆଡ଼େ। ଦୁଇ ତିନୋଟି, ବହି ଓ ପତ୍ରିକାର ବିକ୍ରୟ କେନ୍ଦ୍ର। ମୁଁ କିନ୍ତୁ ଆକୃଷ୍ଟ ହେଲି ଗୋଟିଏ ପାଖକୁ।

ଏ ଆକର୍ଷଣର ମୁଖ୍ୟ ନାୟକ ଥିଲେ ଦୋକାନ୍‌ଦାର। କୃଷ୍ଣ ବର୍ଣ୍ଣ କାୟା। ବଳିଷ୍ଠ ଚେହେରାର ସେ ମଣିଷ ନ ଥିଲେ। ତାଙ୍କର ଲଲାଟରେ ଚନ୍ଦନ—ଚିତାର ତ୍ରିବଳୀ ରେଖା। ଲୋକଟି, ସଂଯତ, ଅଳ୍ପଭାଷୀ। ଧୂପ କେତୋଟି ଜଳୁଥିଲା ସ୍ଥାନଟିକୁ ସୁରଭିତ କରି।

କାନ୍ଥରେ ଶ୍ରୀ ଅନୁକୂଳ ଚନ୍ଦ୍ର ଠାକୁରଙ୍କର ଛବି। ପାଖେ ପାଖେ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କର। କେମିତି ଗୋଟିଏ ପରମାର୍ଥିକ ପରିବେଶ ମତେ ଅଭିଭୂତ କରେ।

ଦୁଇଜଣ ଆଧୁନିକା ତରୁଣୀ ଆସିଲେ। ବିରଳ ବସନା ଏମାନେ, ତାଙ୍କୁ ନିରୀକ୍ଷଣ କରି କରି ଯୁବକ କେତୋଟି ଆଗେଇ ଆସିଲେ। ସମୟ ଥିଲା ସକାଳ। ସୂର୍ଯ୍ୟ ଉଠି ଯାଇଛନ୍ତି ଦିଗ୍‌ବଳୟ ଛାଡ଼ି କିଛି ଦୂର।

ଅନେକ ପ୍ରକାର ଶବ୍ଦ ଶୁଣୁଛି। ମଣିଷକୁ ଅଶାନ୍ତ କରିବାର ଏ ଧ୍ୱନି ସକଳ ପ୍ରାଣକୁ ବାଧୁଛି। ମାତ୍ର ମାନବ ଗୋଷ୍ଠୀର ଉଚ୍ଛନ୍ନ ଚଳ ପ୍ରଚଳ ଯେଉଁଠି ପ୍ରତିନିୟତ ସମାହିତ ହେଉଛି, ସେଠାରେ ଅନ୍ୟ ଶାନ୍ତ ପରିବେଶର କଳ୍ପନା କରିବା ବୃଥା ଭାବି ମୁଁ ଚାହିଁ ରହିଲି ଶ୍ରୀଅରବିନ୍ଦଙ୍କର ଯୋଗାସନର ଅପୂର୍ବ ଚିତ୍ର ଶିଳ୍ପକୁ।

ତରୁଣୀମାନେ ସଦ୍ୟସ୍ନାତ ଶେଫାଳି ପୁଷ୍ପ ଭଳି ଖୋସା ପାରିଥିଲେ ଅତ୍ୟନ୍ତ କୃତ୍ରିମ ଆବରଣ, ପ୍ରଲେପ ଓ ଘଷାମଜାରୁ ଉତ୍ପନ୍ନ କାନ୍ତି ଘେନି। କିନ୍ତୁ ମନେହେଲା ଅନ୍ତର ସେମାନଙ୍କର ଶୁଷ୍କ, ଶୂନ୍ୟ, କଅଣ ତଥା କାହିଁକି କିଛି ଅନ୍ୱେଷଣ କରିବାରେ ଯେପରି ତାଙ୍କର ପ୍ରତିଟି ମୁହୂର୍ତ୍ତ ବ୍ୟଯିତ ହେଉଛି।

ବହି ଓ ପତ୍ରିକା ପୃଷ୍ଠା ଖୋଲି ଆଖି ଝଲସାଇବାର ପ୍ରବୃତ୍ତି ତଳେ ଯୁବକମାନଙ୍କୁ ନିଜ ରୂପର ସମ୍ମୋହନୀ ଶକ୍ତିର କଳନା କରିବାରେ ସେମାନଙ୍କର ଉତ୍ସାହ ଯେତେ ଥିଲା, ଯଥାର୍ଥରେ ପତ୍ରିକା କିଣିବା ବା କିଣିସାରି ଫେରିଯିବାର ଆନ୍ତରିକତା ସେତେ ନ ଥିଲା।

ଯୁବକମାନେ କଥା କହୁଥିଲେ ଅନର୍ଗଳ। ସେ ବାଣୀ ସ୍ରୋତରେ ରାଜେଶ ଖାନ୍ନା, ହେମାମାଳିନୀ, ଶତ୍ରୁଘ୍ନ ସିହ୍ନା, ହେଲେନ ଓ ମାଧବୀଙ୍କର ନାମ—ଭଉଁରୀ ଖେଳୁଥିଲା। ଝିଅମାନଙ୍କର ଚକ୍ଷୁ ତାରକା 'ଫେମିନା'ରୁ 'ଫିଲିମ୍ ଫେୟାର', ସେଥିରୁ 'ରାଜଧାନୀ ସମାଚାର' ସେଥିରୁ 'ଚକ୍ରାନ୍ତ' ଓ ଶେଷରେ ବଙ୍ଗଳା ମାଗାଜିନ୍ 'ମଧୁଶଯ୍ୟା' ପୃଷ୍ଠାରେ ମାଛି ଉଡ଼ି ଉଡ଼ି ବସିଲା ଭଳି, ବସୁଥାଏ, ରହୁଥାଏ ଓ ଉଡ଼ୁଥାଏ।

କେହି କିଛି କିଣିଲେ ନାହିଁ। ମନେ ହେଲା ଆଗରୁ ସଂଯୋଜିତ ଏହି ସାକ୍ଷାତ୍‌କାରର ରୋମାଞ୍ଚ ଉପଭୋଗ କରିବା ସଙ୍ଗେ ସଙ୍ଗେ ଆଗାମୀ କାଲର ସିନେମା ହଲ୍‌ରେ 'ଫିର୍ ମିଲୋଙ୍ଗି' ବଚନ ଚେତେଇ ଯେ ଯାହାର ଗନ୍ତବ୍ୟ ପଥରେ ଚାଲିଗଲେ।

ଥାକରେ ଦେଖିଲି ଶ୍ରୀ ଅରବିନ୍ଦଙ୍କର ଦିବ୍ୟଜୀବନ ଗ୍ରନ୍ଥ ଓ ଅନୁକୂଳ ଚନ୍ଦ୍ରଙ୍କର 'ସତ୍ୟାନୁସରଣ' ରହିଛି।

—ଦେବେ କି ? ଡାକିଲି ।

ଆଜ୍ଞା ? ଦୋକାନୀ କହିଲେ ।

'ସତ୍ୟାନୁସରଣ ଖଣ୍ଡେ' । ମୁଁ ମାଗିଲି ।

ପଚାରିଲି– ଏସବୁ ବହି ବିକ୍ରି ହେଉଛି ?

ନା–

ତେବେ ରଖିଛନ୍ତି ଯେ !

ଯଥେଷ୍ଟ ବିକ୍ରି ନ ହେଲେ ବି କେହି କେହି ନଉଛନ୍ତି, ଯିମିତି ଆପଣ ନେଲେ ।

– ଏଇ ଯେଉଁ ପୁଅଝିଅମାନେ ଆସିଲେ, କଅଣ ନେଲେ ? କିଣିଲେ ?

ଦୋକାନୀ କ୍ଷୀଣ ସ୍ୱରରେ କହିଲେ– ଏମାନେ କିଛି କିଣନ୍ତି ନାହିଁ । ଛିଡ଼ା ହୋଇ ହୋଇ ଚିତ୍ରଗୁଡ଼ିକ ଦେଖି ନିଅନ୍ତି । ଫେରି ଯାଆନ୍ତି । ତେବେ ଧନୀ ଘରର ପିଲାମାନେ କିଛି ପତ୍ରିକା କିଣି ଉପହାର ଦିଅନ୍ତି ସେମାନଙ୍କ ସାଙ୍ଗ ସାଥୀଙ୍କୁ ।

—ଆରେ, ଶଶଧର ବାବୁ ଯେ ! ବହୁତ ଦିନ ପରେ ଦେଖା । ଶୁଣିଛି ଅବସର ନେଇଛନ୍ତି । ନା... ଚେହେରାତ ଖୁବ୍ ଢଳ ଢଳ ଅଛି । ମନେପଡ଼େ ଆମେ ଏକା ସାଙ୍ଗରେ ପଢୁଥିଲୁ ରେଭେନ୍‌ସାରେ, ଥିଲୁ ଇଷ୍ଟ ହଷ୍ଟେଲରେ... ଆରେ ଭାଇ ତୁମ ଭାଗ୍ୟ ଭଲ– ଶାନ୍ତି ଓ ଆନନ୍ଦରେ ଜୀବନ କଟାଇ ଦେଲ । କି ମନ୍ତ୍ର ଜାଣିଛ କେଜାଣି ସବୁ ତ ଭଲରେ ଭଲରେ ତମର ଚାଲିଗଲା– ମୁଁ ଧନ୍ଦି ହୋଇଗଲି...

ଭଦ୍ରଲୋକ ପ୍ରୌଢ଼ । ପାନ ବୋଝେ କଳରେ ରଖିଛନ୍ତି । ପିକ ଚାରିଆଡ଼େ ବୋହି ଆସୁଛି । ପେଟର ପରିଧି ଅତ୍ୟଧିକ, ବେଶଭୂଷା ଗାଁ ମାମଲତକାରଙ୍କର ଅନୁରୂପ ।

ମୋର ମନେପଡୁ ନ ଥାଏ, ଏ କେବେ ମୋ ସଙ୍ଗେ ପଢୁଥିଲେ । ପିକ ଛିଟା ମୋ ଲୁଗାପଟାରେ ଚିତ୍ର ସୃଷ୍ଟି କରି ଚାଲିଛି । ଦିଟା ଖୁନ୍ଦା ସେ ପକାଇ ସାରିଛନ୍ତି ମଝେ, କାରଣ ମୋର ଏ ଦୟନୀୟ ପରିସ୍ଥିତିଜନିତ ଅନ୍ୟମନସ୍କ ଭାବ ତାଙ୍କୁ ବିରକ୍ତ କରିଛି । ତାଙ୍କର ଇଚ୍ଛା ଏତେ ଦିନ ପରେ ଦେଖାସାକ୍ଷାତ ହୋଇଛି, ମୁଁ ସବୁକଥା ଶୁଣିବି ।

ଦେଖଣାହାରୀମାନେ ଭଦ୍ରଲୋକଙ୍କର ଚିତ୍‌କାର ଶୁଣି ମାନେ ସସ୍ନେହ ଆଳାପର ବଜ୍ର ଶବ୍ଦ ଶୁଣି ମେଳା ବାନ୍ଧିଛନ୍ତି ଆମ ଚାରିପଟେ ।

ମୁଁ ଯାଇପାରୁ ନାହିଁ କି ରହିପାରୁ ନାହିଁ । ବହି ବିକାଳୀ ହସୁଛନ୍ତି, କାରଣ ସେ ଏଭଳି ବହୁ ବିଚିତ୍ର ଚରିତ୍ର ଦେଖିଛନ୍ତି ।

ଭଦ୍ରଲୋକ ନୂତନ କରି ମତେ ଧକ୍‌କାଏ ଦେଇ କହିଲେ– ଅବସର ନେଲି, ପ୍ରୋମୋଶନ ହେଲା ନାହିଁ– ଥୁଃ ଥୁଃ– ସେତେବେଳେ ହୋମ୍ ଡିପାର୍ଟମେଣ୍ଟରେ ସର୍ବେସର୍ବା ଜଣେ ଆଇ.ଏ.ଏସ୍. ଅଫିସର ପ୍ରାଣନାଥ ମହାନ୍ତି । ମୁଁ ଜଣେ ସାମାନ୍ୟ କର୍ମଚାରୀ ଥିବାରୁ ମୋ ବିରୋଧରେ ଗଲା । ମୁଁ ଠିକ୍ ଦଶଟା ବେଳକୁ ସେକ୍ରେଟେରୀଏଟ୍‌କୁ ଆସେ । କୋଉ ଶଳା କହିଦେବ ଯେ ମୁଁ ଲେଟ୍ କରି ଯାଏ । ଶୁଣୁଚ ନା ଶୁଣୁନ...

ମୁଁ କହିଲି– ବସ୍ ବେଳ ହୋଇଯିବ । ନା, ନା, ସାଙ୍ଗ ହୋଇ ଯିବା, କଟକକୁ କେତେ ବସ୍ ଅଛି । ମତେ ସସ୍‌ପେଣ୍ଡ କରାଗଲା । ଚିଫ୍ ସେକ୍ରେଟେରୀକୁ କହିଲି– ସେ ଆଲୁ ବୁଝିଲା । ବ୍ୟାକ୍ କରିଦେଲା ମୋର ଦରଖାସ୍ତକୁ ତାହାରି ପାଖକୁ ।

ସେ ତ ରାଗରେ ରକ୍ତ ଚାଉଳ ଚୋବଉଥିଲା, ମୋ ନାଁରେ ସାଂଘାତିକ ରିପୋର୍ଟ ଉପରକୁ ଛାଡ଼ିଦେଲା । ମୁଁ କୁଆଡ଼େ ଲାଞ୍ଚ ଖାଏ– ହେଇଟି ଶୁଣୁଚ (ଦୁଇ ଖୁନ୍ଦା)

ଖାଇବି ନାହିଁ ? ପୁଅ ମାଟ୍ରିକରେ ଦୁଇଥର ଫେଲ୍, ଝିଅକୁ ପାଠ ଆସିଲା ନାହିଁ, ଫେସନ୍ କଲା, ଶେଷରେ ଗ୍ରାମସେବିକା ହୋଇ ଦେଶସେବା କରୁଛି । ଶଳା ମାଇପି ଜାତିଟା ଏମିତି...

ମୁଁ ଭାବିଲି ଏ ଲୋକ ସହିତ ଆଉ କିଛି ସମୟ ରହିଲେ ମୁଁ ବ୍ରହ୍ମାଣ୍ଡ ବୁଲି ଆସିବି ।

ଲୋକଟା ମୋ ମନକଥା ଠଉରେଇ ମୋ ବାହୁକୁ ଧରି ଅଟକାଇ କଥା କହି ଚାଲିଲା–

ସ୍ତ୍ରୀର ପ୍ରତ୍ୟେକ ବର୍ଷ ସନ୍ତାନ ହେଲା । ଶେଷକୁ ଅଧାମରା ହୋଇଗଲା । ମୋ ପୌରୁଷ ମୁଁ ଛାଡ଼ିବି କାହିଁକି ? ପ୍ରାଣନାଥ ମହାନ୍ତି ଯୋଗୁ ମୁଁ ଅଣ୍ଡର–ସେକ୍ରେଟେରୀ ହୋଇପାରିଲି ନାହିଁ ।

ବିଦ୍ୟୁତ୍‌ରେ ରହିଲି, ଫାଇନାନ୍‌ସରେ ରହିଲି, ଗୋପାଳନରେ ରହିଲି... ଚେଞ୍ଜ କରୁଥାଏ ଜାଗା, ଖାଲି ଲୋଭରେ ଯେ କେଉଁଠି ଡେପୁଟି ସେକ୍ରେଟେରୀ ପଦ ପାଇଯିବି ।

ଏଇ, ଶଶଧର ବାବୁ, ତମ ହାତରେ କଲମ ଅଛି, କଅଣ ସାହିତ୍ୟ କରୁଛ, ଏ ଯେଉଁ ଚରିତ୍ର ପଞ୍ଜି ଗୋପନରେ ହାକିମମାନେ ଲେଖୁଛନ୍ତି ତାର ଗୋଟାଏ ହିସାବ ନିକାଶ କର । ମଣିଷ କାମ କରିବ, ତାର ଗୋଟାଏ କନ୍‌ଫିଡେନ୍‌ସିଆଲ ରେକର୍ଡ଼ କଅଣ ? ହଇଏ ଏ ଯେଉଁ ଅମୁକ, ଅମୁକ, ଅମୁକ ସାହେବମାନେ ଆମ ଚରିତ୍ର ସବୁ ଲେଖୁଛନ୍ତି, ତାଙ୍କ କଥା କିଏ ନ ଜାଣେ– ହେଇଟି ମୋ ପରିସରରେ ମୁଁ ଯେ ଦି'ପଇସା ନ କରିଛି, ତାହା ନୁହେଁ, ଆଗ ଚୋରି କରି ଆଣୁଥିଲି ପୁଅ ଝିଅଙ୍କ ପାଇଁ କାଗଜ, ଷ୍ଟେସନାରୀ, ଦୁଆତ, କଲମ, ଖୁବ୍ ଗୁଡ଼ାଏ ଆଣେ, ହେଇଟିମ, ମୁଁ କେବେ ସେଗୁଡ଼ାକ କିଣିନି । ଥୁଃ... ଥୁଃ...

ମୁଁ ଈଶ୍ୱରଙ୍କୁ ଡାକିଲି– ପ୍ରଭୁ ନିସ୍ତାର କଅଣ ନାହିଁ ? ମୁଁ ଗୋଟାଏ ସର୍କସ ଜୋକର୍ ହୋଇଯାଇଛି ଇତି ମଧ୍ୟରେ । ଥରେ ମୁଁ ହାତ ଛିଞ୍ଚାଡ଼ି ଦଉଡ଼ିବାକୁ ଇଚ୍ଛା କଲି । ସେ ମତେ ପୁଣି ଧରି ଆଣି କହିଲା–

ଯାଉଛ କି ଶଶଧର ? ମତେ ଟଙ୍କା ଅଣ୍ଟୁନି । କାଠ ବିକୁଛି ଛୋଟ ଗୋଦାମ କରି, ଭାବୁଛି ବାଇଗଣ ଲଗାଇ ବିକିବାକୁ ଆଣିବି କାପିଟାଲ ହାଟକୁ । ହେଲେ ସେଇ ଝିଅଟା କଲେଜରେ ପଢୁଥିଲା । ସେଇଟା ଅଲକ୍ଷଣୀ, ଗୋଟାଏ ପୁଅ ସାଙ୍ଗେ ପୀରତି କରି ଚାଲିଗଲା । ହଇଏ ହଇ... ସଂସାରର ବଜେଟ୍ କିଛି କମିଲାତ ?

ଆଉ ତମେ କିମିତି ଅଛ ?

ମୁଁ ଭାବିଲି– ଏତେବେଳକୁ ନିଆଁ ଲିଭି ଆସିଲା । ମୁଁ କହିଲି... ଭଲ... ଭଲ... ବସ୍ ଆସିଲା...

ନା ଆସିନାହିଁ– ହଇଏ ଶଶଧର, ତୁମ ପେନ୍‌ସନ୍ ଗଣ୍ଡାକ ତୁମକୁ ପାଉଛି ?

ମୁଁ କହିଲି– ଭଗବାନ ଚଳେଇ ନେଉଛନ୍ତି । ଉପରର ମାଲିକ ସବୁ ବିଧାନ କରିବେ ।

ସେ ହସିଲା– କହିଲା, ଭଗବାନ ? ସେ କିଏ ମ ? କାହିଁ ଭଗବାନ ତ ମୋ ପ୍ରୋମୋଶନ ବିଧାନ କଲେନି, ଏ ଶଳାଟା ମୋ ତଣ୍ଟି କାଟିଲା... ହଇଏ ଶଶଧର, ଗାଁରେ ମାମଲତି କରି ପଇସା କିଛି ପାଏ । ହୋମ ଡିପାର୍ଟମେଣ୍ଟରେ ରହି ଆଇନକାନୁନ ତ ଜାଣେ, ଯା ଘର ସହିତ ତା ଘର, ତା' ଘର ସହିତ ଯା ଘର କଳି ଲଗାଇ ଦିଏ... ହେଡ୍ ଆସିଷ୍ଟାଣ୍ଟ ତ ! ଖାତିରି କମ୍ ନାହିଁ...

ମୋର ମନେହେଲା, ପ୍ରଭୁ ମତେ ଜାଣିଶୁଣି କଷ୍ଟ ଦେଇଛନ୍ତି । ଆଗରେ ପବିତ୍ରାତ୍ମା ଅରବିନ୍ଦ, ଶ୍ରୀମା...

କେତେ ଶାନ୍ତି, ସାମ୍ୟ ଓ ଆନନ୍ଦର କଥା କହିଛନ୍ତି... ଏଇ ଏକା ମଣିଷ ଏଇ ଭଦ୍ରଲୋକ ସେ କେତେ ଅଶାନ୍ତ, କେତେ ଅସ୍ଥିର, କେତେ ନିର୍ବୋଧ, ଏ ତ ଏଠି ଏଇ ଚଳମାନ ଜନସମାଗମରେ ଏମିତି ଭାବୁଛି, ଚିତ୍କାର କରୁଛି, ଘରେ ତ ଅସହନୀୟ ଉତ୍ତାପରେ ସମସ୍ତଙ୍କୁ ପୋଡ଼ି ଜାଳି ଧ୍ୱଂସ କରୁଥିବ ?

ଏହାର ଝିଅ ପଳାତକ ନ ହେବ କାହିଁକି ? ଯାର ପୁଅ ଫେଲ୍ ନ ହେବ କାହିଁକି ? ଯାର ସ୍ତ୍ରୀ ବ୍ୟାଧିଗ୍ରସ୍ତା ନ ହେବ କାହିଁକି ?

ହେ ଶଶଧର, କଅଣ ଶୁଣୁନାହଁକି ? ମୋର ଛୋଟ ପୁଅର ଗୋଡ଼ରେ ଗୋଟାଏ ଘା ହୋଇ ଶୁଖୁନାହିଁ। ଡାକ୍ତର କହୁଛି ମୋ ରକ୍ତର ଦୋଷ। ହଇଏ ଆମେ ଫିଉଡାଲ୍ ଲର୍ଡ଼୍, ଆଗେ ଥିଲୁ ଅବଶ୍ୟ, ଗୋଟାଏ ଦି'ଟା ରକ୍ଷିତା ଆମର ସେତେବେଳେ ଥିଲେ... ରକ୍ତଦୋଷ ନ ହେବ କାହିଁକି ?

ଆଚ୍ଛା ଶଶଧର, ତୁମେ ଏମିତି ଶାନ୍ତ ସୁନ୍ଦର କିମିତି ରହିଛ ହେ ଏ ବୟସରେ, ମୋ ଆଗରୁ ରିଟାୟାର କରିଛ, ସେ ଗୁପ୍ତ ମନ୍ତ୍ରଟା କହି ଦିଅନା ?

ଭାବିଲି ଈଶ୍ୱର ତାହାହେଲେ ଯାଙ୍କ ପ୍ରାଣରେ ଆସ୍ପୃହାର ସ୍ପନ୍ଦନ ଦେଉଛନ୍ତି ! !

ବିକାକିଣା ବନ୍ଦ ହୋଇଛି ଏକପ୍ରକାର। ଦୋକାନୀ ବ୍ୟଥିତ ଦୃଷ୍ଟିରେ ଏ ଦୃଶ୍ୟ ଦେଖୁଛନ୍ତି, କଥା ଶୁଣୁଛନ୍ତି ଗୋଟାଏ ବିଷୟବାସନା ଦେହ ଛଟ୍‌ପଟ୍ ମଣିଷର।

ଶେଷରେ ଦୋକାନୀ କହିଲେ– ବାବୁ ଏ ଫଟୋକୁ ଦେଖୁଛନ୍ତି ? କିଛି ଧର୍ମଗ୍ରନ୍ଥ ପଢ଼ିଛନ୍ତି ? ଭାବନ୍ତୁ ଦେଖି ଏହି ଅଧଘଣ୍ଟା ହେଲା ଆମ ବାବୁଙ୍କୁ କି କଷ୍ଟ ଦେଉଛନ୍ତି ?

ଶାନ୍ତି ବାହାରେ ମିଳେନାହିଁ, ଭିତରକୁ ଚାହାଁନ୍ତୁ, ଅରବିନ୍ଦ, ବିବେକାନନ୍ଦ, ପରମହଂସଙ୍କର ଗ୍ରନ୍ଥ ପଢ଼ନ୍ତୁ। ଧ୍ୟାନ କରନ୍ତୁ। ଧୂପ ଜଳାନ୍ତୁ ପ୍ରତିମା ପାଖରେ। ଏ ଜୀବନ ଅନିତ୍ୟ ଭାବି ନିତ୍ୟ କଅଣ, ଖୋଜି ବୁଲନ୍ତୁ।

ଆପଣଙ୍କୁ ଦେଖିଲି ଗୋଟାଏ ନିଆଁଗଦାରେ ବସିଛନ୍ତି। ତେଣୁ ପୋଡ଼ିଜଳି ଯାଇଛନ୍ତି...ଶୀତଳ ହୁଅନ୍ତୁ।

ଭଦ୍ରଲୋକ ଏଁ...ଏଁ, କଅଣ କହିଲ, ଶଶଧର ଏ କଅଣ କହିଲେ... କହି କହି ମୁହଁକୁ ପୋଛି ପୋଛି ଆଗେଇ ଗଲେ...ଦୋକାନୀ ପଛରୁ ଡାକିଲେ– ବାବୁ, ଶଶଧର ବାବୁ ଆପଣଙ୍କୁ ଏ ବହିଟି ଉପହାର ଦେଇଛନ୍ତି, ନିଅନ୍ତୁ ପଢ଼ିବେ... ଓଡ଼ିଆରେ ଅନୁବାଦ ହୋଇଛି ଅରବିନ୍ଦଙ୍କର ଦିବ୍ୟ–ଜୀବନ ଗ୍ରନ୍ଥ। ଆଉ ଠାକୁରଙ୍କ 'ସତ୍ୟାନୁସରଣ' ନିଅନ୍ତୁ। ପଇସା ପଡ଼ିବ ନାହିଁ। ସେ ଦେଉଛନ୍ତି।

ଦେଖିଲି, ଭଦ୍ରଲୋକ ବହି ଦୁଇଟି ଗ୍ରହଣ କଲେ। ଏତେବେଳଯାଏ ମୁହଁ ଉପରେ ତାଙ୍କର ଯେଉଁ ବିଷ ଓ ବିରକ୍ତିର ପ୍ରଲେପ ଦେଖିଥିଲି, ତାହା ପରିଷ୍କାର ହୋଇଯାଇଛି କ୍ରମେ।

ଏତିକି ଦେଖି ଦୋକାନୀକୁ ନମସ୍କାର କରି ମୁଁ ଚାଲିଗଲି ମୋ ଗନ୍ତବ୍ୟ ପଥରେ... ଛୋଟ ବହି–ବିକ୍ରେତାଟିଏ ହେଉ ପଛକେ, ତତ୍ତ୍ୱ ସେ ଜାଣେ; ଆଶା ରଖିଛି ପ୍ରପଞ୍ଚ ସଂସାର ବିଷରେ ଘାରି ହେଉଥିବା ଏହି ଭଦ୍ରବ୍ୟକ୍ତିଙ୍କୁ ଆଉଥରେ ଦେଖିବି; ନିଶ୍ଚୟ ଦେଖିବି, ସେତେବେଳକୁ ସେ ଏମିତି ନ ଥିବେ। ରୂପାନ୍ତର ! ! ରୂପାନ୍ତର ! ! ପରିବର୍ତ୍ତନ ଘଟିଥିବ।

ଭାବିଲି, ଏ କ୍ଳେଶମୟ, ଆତ୍ମପୀଡ଼କ ଅଧଘଣ୍ଟା ସମୟ କଅଣ ବୃଥାଗଲା ?

ଭିତରର ଆଲୋକ ଚେତନା ଦେଲା– ନା, ବୃଥା ହୋଇନାହିଁ; ଦୁହିଁଙ୍କର ମଙ୍ଗଳ ହୋଇଛି। ଆଉ ଦୋକାନୀ ? ଶାନ୍ତି ଓ ଆନନ୍ଦର ଏକ ପ୍ରତୀକ ! ନମସ୍ୟ ସେ।

■■■

# ଦଗ୍‌ଧ ଡମ୍ବରୁ

ଅରବିନ୍ଦ ଓ ନଳିନୀ ମୋ ପାଖକୁ ସମୟେ ସମୟେ ଆସନ୍ତି। ଦୁହେଁ ସାହିତ୍ୟର ଅଧ୍ୟାପକ ଅଧ୍ୟାପିକା। ଏମାନଙ୍କର କଳଗୁଞ୍ଜନରେ ମୋର ଜୀବନ ସରସ ହୁଏ।

ସ୍ୱାମୀ ସ୍ତ୍ରୀ। ଯୌବନ–ଉଚ୍ଛଳ ଏମାନଙ୍କର ଅଙ୍ଗଶ୍ରୀ। ଅତି ଉଗ୍ର ଆଧୁନିକ ଆଧୁନିକା ଏମାନେ ହୋଇପାରି ନାହାନ୍ତି। ଚେଷ୍ଟା ବି ନାହିଁ। ପ୍ରକୃତି ଯେତିକି ସୁଷମାରେ ଗଢ଼ିଛି, ଏମାନେ ସେତିକିରେ ସନ୍ତୁଷ୍ଟ। ଏହି ସନ୍ତୋଷ ସେମାନଙ୍କର ମନ ଉଦ୍ୟାନରେ ମତେ ଆକର୍ଷଣ କରିଥାଏ ତାଙ୍କ ଆଡ଼କୁ ପ୍ରତିନିୟତ।

ସଞ୍ଜବେଳେ ଆସନ୍ତି, ସାହିତ୍ୟ କଥା କୁହନ୍ତି। ମୁଁ ଶୁଣେ, ବେଶି ସମୟ ସେମାନେ ହୁଅନ୍ତି ପ୍ରଗଲ୍‌ଭ।

ସେମାନେ କହନ୍ତି ସେମାନଙ୍କୁ କିଛି ଭଲ ଲାଗୁନାହିଁ। ଆଶ୍ଚର୍ଯ୍ୟ ହୁଅନ୍ତି ମୁଁ କିପରି ଏତେଗୁଡ଼ାଏ କାଳ ନିଷ୍ପନ୍ଦ ନିର୍ବିଘ୍ନରେ କଟାଇଦେଲି। ଆଖି, ମୁହଁରେ ମୋର କେବେ ବେଦନାର ସ୍ୱର୍ଶ ସେମାନେ ଦେଖିନାହାନ୍ତି ବୋଲି କହନ୍ତି। ଏହା ଅସତ୍ୟ ମୁଁ ଜାଣେ। ବେଦନା, କ୍ଳାନ୍ତି ଓ ବିରକ୍ତି କାହାକୁ ଛାଡ଼ିନାହିଁ। ମଣିଷର ଶରୀର ଓ ମନରେ ଏ ସବୁର ପ୍ରଲେପ ଅତି ସ୍ୱାଭାବିକ। ସେମାନଙ୍କୁ କାହିଁକି କିଛି ଏ ତରଳ ବୟସରେ ଭଲ ଲାଗୁନାହିଁ ବୋଲି ମୁଁ ପଚାରେ।

ସେମାନେ କାରଣ ଜଣାଇପାରନ୍ତି ନାହିଁ, କେବଳ କହନ୍ତି– ଏମିତି। ମୁଁ କହେ, 'ଜୀବନକୁ ଉପଭୋଗ କରିବାର ଗୋଟାଏ ନିର୍ଦ୍ଦିଷ୍ଟ କଳା ଅଛି।'

ନଳିନୀ ସନ୍ଦିତ ହେଲା, କହିଲା– କଳା? ଜୀବନକୁ ଉପଭୋଗ କରିବାର ଗୋଟାଏ କଳା କଅଣ ଥାଇପାରେ? ସାମାଜିକ ବହୁ ଉତ୍‌କ୍ଷେପ ଓ ବିକ୍ଷେପ ଭିତରେ ମଣିଷ ଅଣନିଃଶ୍ୱାସୀ ହେଲାବେଳେ ସେ ତ ଆତ୍ମହତ୍ୟା କରିବାକୁ ପ୍ରସ୍ତୁତ। ସେ 'କଳା' କାହୁଁ ପାଇବ? ଆପଣ ବୋଧହୁଏ ଗଜଦନ୍ତ ପଲଙ୍କରେ ଏବେ ବି ଶୋଇଛନ୍ତି। ଯଦି ଶୋଇଥାନ୍ତି, ତେବେ ଉଠନ୍ତୁ। ଦେଖିବେ ପ୍ରଜାପତିର ପକ୍ଷ ଛିଡ଼ିପଡ଼ିଛି, ବର୍ଣ୍ଣ ଝରିପଡ଼ିଛି, ସେ କେବଳ ଉଲଗ୍ନ।

ଅରବିନ୍ଦ କହିଲା– ନା, ସାର୍ ଯଥାର୍ଥରେ ଗଜଦନ୍ତ ପଲଙ୍କରେ ଶୋଇନାହାନ୍ତି। ବେଦନା–କ୍ଷୁବ୍‌ଧ ଜୀବନ ତାଙ୍କର, ଯେତିକି ଜାଣିଛି ମୁଁ ବୁଝିଛି, ହେଲେ କି ଅପରୂପ ଶକ୍ତି ଓ ସାମର୍ଥ୍ୟ ଦ୍ୱାରା ସେ ଯନ୍ତ୍ରଣାକୁ ପରିବର୍ତ୍ତନ କରିଦିଅନ୍ତି ଆନନ୍ଦରେ, ତାହାହିଁ ରହସ୍ୟାବୃତ୍ତ ହୋଇ ରହିଯାଏ।

ମୁଁ ବାଧାଦେଲି– କହିଲି, ଯନ୍ତ୍ରଣାକୁ ପରିବର୍ତ୍ତନ କରିହୁଏନି। ଯନ୍ତ୍ରଣା ତାହାର ଶତଶିଖାରେ ଅଗ୍ନି ଲଗାଇଦିଏ; କିନ୍ତୁ ଭିତର ଦଗ୍‌ଧ ହେଉଥିଲେ ବି ବାହାର କାହିଁକି ଅନୁରୂପ ଦହନରେ କାତର ହେବ?

ନଳିନୀ କହିଲା–ତେବେ ଏ ଏକପ୍ରକାର ଯୋଗ। ଅଲୌକିକ ଭାବ–ସମ୍ଭାର, ଯାହାକୁ ସାଧାରଣ ଲୋକେ ଆୟତ୍ତକୁ ଆଣିପାରିବେ ନାହିଁ।

ଅରବିନ୍ଦ କେତୋଟି ମୁହୂର୍ତ୍ତ ଜିଜ୍ଞାସୁ ଦୃଷ୍ଟିରେ ମତେ ଚାହିଁରହି କହିଲା– ଆପଣ ତେବେ କୁହନ୍ତୁ, ସାହିତ୍ୟ ଆପଣ ସୃଷ୍ଟି କରନ୍ତି କାହିଁକି?

ଆକାଶରେ ଚନ୍ଦ୍ରମୟୂଖ, ନଳିନୀର ଲପନରେ ସେହି ଶୋଭାର ଆନନ୍ଦମୟ ଅଭିବ୍ୟକ୍ତି। ଶିଳ୍ପୀ ଯାହା

ଚାହେଁ, ଅନନ୍ତ ଜୀବନର ଏହିଭଳି ଏକ ଆଭରଣ ଯେଉଁଥିରେ ଆନନ୍ଦ ବ୍ୟତୀତ ଆଉ କିଛି ରହିବ ନାହିଁ।

ମୁଁ କାହିଁକି ସାହିତ୍ୟ ସୃଷ୍ଟିକରେ ? ଏ ପ୍ରଶ୍ନ ବ୍ୟାସ, ବାଲ୍ମୀକିଙ୍କଠାରୁ ଆରମ୍ଭ କରି ଏକ କ୍ଷୁଦ୍ର ପଲ୍ଲୀର ଚାରଣ କବି ପର୍ଯ୍ୟନ୍ତ କେହି କହିପାରିବେ ନାହିଁ। ଅଥଚ ପୃଥିବୀରେ ଏହି ପ୍ରଶ୍ନର ପ୍ରଶ୍ନକର୍ତ୍ତାମାନେ ଅପ୍ରଚୁର ନୁହନ୍ତି।

ମୁଁ କହିଲି, ବରଂ ତମେ ଦୁଇଜଣ ଉତ୍ତର ଦିଅ। ସେମାନେ ବୋଧହୁଏ ପ୍ରଶ୍ନର ଉତ୍ତରଟିକୁ ଆଗରୁ ଭାବି ସ୍ଥିର କରିଥିଲେ। ଉଭୟେ କହି ଉଠିଲେ–

'ସାମାଜିକ କର୍ତ୍ତବ୍ୟ ଓ ଦାୟିତ୍ୱ ସାଧନ କରିବାକୁ।'

'ମାନେ ?' ମୁଁ ପଚାରିଲି–

'ସମାଜରେ ଯାହା ଯେଉଁଠି ନ୍ୟାୟ ଅନ୍ୟାୟ, ସତ୍ୟ ଅସତ୍ୟ, ପ୍ରବଞ୍ଚନା ପ୍ରତାରଣାର ଢଙ୍ଗ ମୁକୁଳିଯାଇଛି, ତାହାକୁ ପ୍ରକାଶ କରିବା ହେଉଛି ସାହିତ୍ୟର ଲକ୍ଷ୍ୟ। ତାହାହେଲେ ନାରକୀୟ ଜନ୍ତୁମାନଙ୍କର କୀର୍ତ୍ତିକଳାପ ଦିବାଲୋକରେ ଆଲୋକିତ ହୋଇଯିବ।' ଅରବିନ୍ଦ ଉତ୍ତର ଦେଲା।

ମୁଁ ଟିକିଏ ଉତ୍ତେଜିତ ଭାବରେ କହିଲି–ନା, ଅରବିନ୍ଦ, କିଛି ଲାଭନାହିଁ। କଥାରେ ଅଛି ଅସୀ ଅପେକ୍ଷା ମସୀର ଶକ୍ତି ଖୁବ୍ ବେଶୀ। କିନ୍ତୁ ସେଇଟା କଥାରେ ହିଁ ରହିଯାଇଛି।

ନଳିନୀ କଅଣ ଇସାରା କଲା ଅରବିନ୍ଦ ଆଡ଼େ। ମୁଁ ଭାବିଲି ସେମାନେ ଯିବାପାଇଁ ଉଠୁଛନ୍ତି। ମୁଁ ହଠାତ୍ କହିଲି– ଆଲୋଚନାର ଗଭୀରତା ଆସିବା ବେଳକୁ ତମେମାନେ ଯିବାପାଇଁ ପ୍ରସ୍ତୁତ ହେଉଛ ? ତା ହେବ ନାହିଁ। ତା ଛଡ଼ା ପ୍ରଜ୍ଞା ତୁମକୁ ଏ ଯାଏ ଦେଖିନାହାନ୍ତି; ସେ ଆସିବେ ରନ୍ଧାଘରୁ। ତୁମଙ୍କୁ ନ ଖୁଆଇ ସେ କଅଣ ଛାଡ଼ିବେ ?

ସଙ୍କେତର ଅର୍ଥ ମୁଁ ସତେ ସେତେବେଳେ ବୁଝିପାରି ନ ଥିଲି। କୋଠରୀର କାନ୍ଥରେ ପୁରୀ ସାଗରବେଳାର ଚିତ୍ର। ଅର୍ଦ୍ଧ ଉଲଗ୍ନ ନୋଳିଆ ଶିଶୁ ତତୋଽଧିକ ଉଲଗ୍ନ ବାପା ସହିତ ଡଙ୍ଗା ପାଖରେ ଛିଡ଼ା ହୋଇଛି। ଊର୍ମିମାଳାର ଶିଶିର ବିନ୍ଦୁ ଊର୍ଦ୍ଧ୍ୱକୁ ଉଠିଯାଇ ଦୁଇଟି ମଣିଷ ଉପରେ ଖସିପଡୁଛି। ଚକ୍ର ଦେଉଛି ଉପରେ ଏକ ଆକାଶଚାରୀ ବିହଙ୍ଗମ। ନୀଳ ଓ ଶ୍ୱେତରଙ୍ଗର ତୈଳଚିତ୍ର।

ସେ ଚିତ୍ର ପାଖରେ ବାପୁଜୀଙ୍କର ମୁଦ୍ରିତ ଚକ୍ଷୁରେ ଧ୍ୟାନ ଗମ୍ଭୀର ମୂର୍ତ୍ତି। ମନେହୁଏ ଯିମିତି ଗୋଟାଏ ନୀଳ କୁହୁଡ଼ିର ପ୍ରସାର ଭିତରୁ ସେ ମୋହମୁଗ୍ଧ ମୂର୍ତ୍ତି ଭାସି ଆସୁଛି ବିଶ୍ୱବାସୀଙ୍କ ନେତ୍ରପଥ ଉପରକୁ।

ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇଛି।

ଅରବିନ୍ଦ କଣ୍ଠ ପରିଷ୍କାର କରି କହିଲା– ସାର୍, କେବେ ଜଣେ ବିଦେଶିନୀ ମହିଳାଙ୍କ ଲେଖନୀ ସୃଷ୍ଟିକଲା ଏକ ଉପନ୍ୟାସ। ସାରା ବିଶ୍ୱରେ କ୍ରୀତଦାସ ପ୍ରଥା ବିରୋଧରେ ବିପ୍ଳବ ହେଲା। ସେ ଅମର ହୋଇଗଲେ। ପୃଥିବୀରେ କେହି କେହି ସାର୍ଥକ ଶିଳ୍ପୀ ନିଜ ଅବଦାନରେ କୁସଂସ୍କାରକୁ ସଂସ୍କାରରେ ପରିଣତ କରିଛନ୍ତି। ଏ ତ ଅତୀତର କଥା। କିନ୍ତୁ ଆମେ ଆଶ୍ଚର୍ଯ୍ୟ ହେଲୁ ଦେଖି ଯେ, ଆପଣଙ୍କର ଗୋଟିଏ ଛୋଟ ଗଳ୍ପ ସମୁଦାୟ ସହରର ସ୍ୱାସ୍ଥ୍ୟ ଓ ଶ୍ରୀକୁ ଦେଲା ଏକ ଅଭିନବ ରୂପ। ସମସ୍ତ ଅଶ୍ଳୀଳତା ଲୋପ ପାଇଗଲା।

ମୁଁ ଅବାକ୍। କେଉଁ ଗପ, କି ପ୍ରକାରେ ତାହା ସହରର ସ୍ୱାସ୍ଥ୍ୟ ଫେରାଇ ଆଣିଲା, ମୁଁ ତ କିଛି ଜାଣେ ନାହିଁ। ପ୍ରଥମ ସମ୍ବାଦ ଏଇମାନଙ୍କଠାରୁ ପାଇଲି।

ନଳିନୀର ଚକ୍ଷୁ ପ୍ରାନ୍ତରେ ଲାଜର ଭଙ୍ଗିମା। ତଥାପି ସେ କହିଲା– ହଁ ସାର୍, ଆପଣ ବୋଧହୁଏ ପାର୍ଥକ୍ୟଟା ଦେଖିନାହାନ୍ତି। ଆପଣଙ୍କ ଗଳ୍ପ "ବିଗଳିତ ମହମ"ର ପ୍ରକାଶ ପରେ ପରେ ଲୋକଙ୍କର ଆଖି ଉପରକୁ ଉଠିଲା– ସେମାନେ ଦେଖିଲେ କି ନିର୍ଲଜ ଅଶ୍ଳୀଳ ଭାବରେ ଜନ୍ମହାର କମାଇବା ପାଇଁ ପୁରୀ ସହରର ପ୍ରତ୍ୟେକ ଆଲୁଅ ଓ ଟେଲିଫୋନ୍ ଖମ୍ବ ଉପରେ ଝୁଲୁଛି ସେଇ ପନ୍ଦର ପଇସିଆ...

ହଁ, ମନେ ପଡ଼ିଲା। ଲେଖିଥିଲି ଅତି କ୍ଷୋଭରେ... ମୋର ମର୍ମକୁ ବାଧିଥିଲା; କିନ୍ତୁ କଅଣ ଘଟିଲା ପରେ ମୁଁ କିଛି ଜାଣି ନ ଥିଲି।

ଅରବିନ୍ଦ କହିଲା– ବୋଧହୁଏ ଜିଲ୍ଲା କର୍ତ୍ତୃପକ୍ଷଙ୍କ କାନକୁ ଗଲା ଏ ସାହିତ୍ୟ ସୃଷ୍ଟିର ସମ୍ବାଦ। ଆଜି ଦେଖନ୍ତୁ ସେଇ ସବୁ ଖମ୍ବରେ କି ସୁନ୍ଦର ସ୍ୱାସ୍ଥ୍ୟବାନ୍ ଓ ସ୍ୱାସ୍ଥ୍ୟବତୀ ବାପା ମା'ଙ୍କର ତ୍ରିରଙ୍ଗ ଚିତ୍ର ଓ ଦୁଇଟି ସନ୍ତାନ ଖେଳୁଛନ୍ତି ପାଖେ ପାଖେ ଅନନ୍ତ ବାତ୍ସଲ୍ୟରେ...

ମୁଁ ଅଭିଭୂତ ହେଲି। ଭାବିଲି ମୋ ଲେଖା କାରଣ ନ ହୋଇପାରେ। ଆଜି କଅଣ ସେ ପୃଥିବୀ ଅଛି, ଆଜି କଅଣ ମଣିଷର ସେ ସୁନ୍ଦର ହୃଦୟ ଅଛି ଯେଉଁଥିରେ ସାହିତ୍ୟିକ ଦେଖାଇଦେବା ନର୍ଦ୍ଦମାକୁ ସମାଜପ୍ରବାହିଣୀ ସ୍ୱଚ୍ଛ ନଦୀ ଧାରରେ ରୂପାନ୍ତର କରିନେବ ?

ମୁଁ ଅବଶେଷରେ କହିଲି– ଶୁଣ ଅରବିନ୍ଦ, ଯଦି ଏହା ସତ୍ୟ ହୋଇଥାଏ, ତେବେ ମୁଁ କହିବି ସାହିତ୍ୟର ଏକ ସାମାଜିକ କର୍ତ୍ତବ୍ୟ ରହିଛି। ଆଉ ମୋର ଅତି ଅଧୁନାତନ ଗଳ୍ପ 'ଦଗ୍‌ଧ–ଡମ୍ବରୁ' ସେହି ଭାବ ଘେନି ଜନ୍ମ ନେଇଛି। ପ୍ରକାଶ ପାଇଲେ ତମେ ଦୁଇଜଣ ମତେ କେବଳ କହିଦେବ ଏହାରି ମାଧ୍ୟମରେ ଲୋକଚରିତ୍ର ନିର୍ମଳ ହେବାକୁ ଶତାଂଶରୁ ଏକାଂଶ ଉଦ୍‌ବୋଧିତ ହେବ କି ? ହୁଏତ ଆଦୌ ନିର୍ମଳ ନ ହୋଇପାରେ। କିନ୍ତୁ ଚେତନା'ତ ଜନ୍ମ ନେବ ?

ଦିଲ୍ଲୀର ମୋର ଅସ୍ଥାୟୀ ବାସସ୍ଥଳ। ଟେଲିଫୋନ୍ ବାଜି ଉଠିଲା– ରିସିଭର ଧରିଲି–

ଓ, କିଏ ଚିତ୍ତରଞ୍ଜନ କହୁଛ ? କେବେ ଆସିଲ ?

ଉତ୍ତର ମିଳିଲା– କାଲି ସନ୍ଧ୍ୟାରେ, ସାଧାରଣ ବୈଠକ ହେବା ଆଗରୁ ଆପଣଙ୍କ ସଙ୍ଗେ ଯୋଗାଯୋଗ କରିବାକୁ ସ୍ଥିର କଲି। ଆପଣ ବୟସ୍କ, ସିନିୟର, ପ୍ରବୀଣ ସାହିତ୍ୟିକ। ତେଣୁ ସର୍ବଭାରତୀୟ ଜ୍ଞାନ ବିଜ୍ଞାନ ପରିଷଦର ପରିଚାଳନା ସମିତିରେ ଆପଣ ଓଡ଼ିଆ ଭାଷାର ପ୍ରତିନିଧିତ୍ୱ କରିବା ଉଚିତ। ମୁଁ ଆପଣଙ୍କ ନାଁ ପ୍ରସ୍ତାବ କରିବି। ଏହା ମୋର କର୍ତ୍ତବ୍ୟ। ଅନ୍ୟ ଭାଷାଭାଷୀମାନେ ନିଜ ନିଜ ଭିତରେ ସହଯୋଗ କରି ସ୍ଥାନ ମାଡ଼ି ବସୁଛନ୍ତି, ଆମେ ଓଡ଼ିଆ ଏତିକି ଅଭାବରୁ କଚାଡ଼ି ହୋଇପଡୁଛୁ। ଠିକ୍ ତାହାହେଲେ ଏଇଆ ହେବ। କଅଣ କହୁଛନ୍ତି ?

ମୁଁ କେବଳ ଉତ୍ତର ଦେଇଥିଲି– ଯାହା ତମେ କହୁଛ, ଶେଷ ପର୍ଯ୍ୟନ୍ତ କରିପାରିଲେ ହେଲା।

ଅରବିନ୍ଦ ଓ ନଳିନୀ କେତେଦିନ ହେଲା ମୋ ପାଖକୁ ଆସିନାହାନ୍ତି। ମୁଁ ଅସ୍ଥିର ହେଉଥାଏ। କାରଣ 'ଦଗ୍‌ଧ ଡମ୍ବରୁ' ପ୍ରକାଶ ପାଇଥାଏ। ସେମାନେ ଯଦି ପଢ଼ିଥାନ୍ତି, ତେବେ ସେମାନଙ୍କର ପ୍ରତିକ୍ରିୟା କଅଣ ହୋଇପାରେ ତାହା ଜାଣିବାକୁ ମୁଁ ଉଦ୍‌ବିଗ୍ନ ଥିଲି।

ସାଧାରଣ ପରିଷଦର ବୈଠକ। ଚିତ୍ତରଞ୍ଜନଙ୍କୁ ଦେଖିଲି ମୋ ପାଖରେ ନ ବସି ଟିକିଏ ଦୂରକୁ ବସିଲେ। ସଭାପତିଙ୍କର ଆହ୍ୱାନ ଓଡ଼ିଆ ଭାଷାରୁ ଜଣେ ପ୍ରତିନିଧି ନିର୍ବାଚିତ ହେବେ ପରିଚାଳନା ସମିତିକୁ। ଦୁଇଜଣ ସଭ୍ୟ ଉପସ୍ଥିତ ଥିବାରୁ– କଥା ସରୁ ନ ସରୁ ଆନ୍ଧ୍ରର ସାହିତ୍ୟିକ

ବିଶ୍ୱନାଥନ୍ ଉଠିପଡ଼ି କହିଲେ– ମୁଁ ଚିତ୍ତରଞ୍ଜନଙ୍କ ନାମ ପ୍ରସ୍ତାବ କରୁଛି । ନାଗାଲାଣ୍ଡର ସଭ୍ୟ କହିଲେ, ମୁଁ ସମର୍ଥନ କରୁଛି...

କହିରଖେ ଏ ଦୁଇଜଣ ସଭ୍ୟ ଚିତ୍ତରଞ୍ଜନଙ୍କ ପାଖାପାଖି ବସିଥିଲେ ।

ବୈଠକ ଶେଷରେ ମୋ ମୁହାଁମୁହିଁ ହୋଇଯିବାରେ ଚିତ୍ତରଞ୍ଜନଙ୍କର ଦୃଷ୍ଟି ଅତି ଉଚ୍ଚରେ ରଖାହୋଇଥିବା ପୁରୀ ସାହିତ୍ୟାତ୍ରାର ନାଗା ମୁକୁଟ ଉପରେ ଆବଦ୍ଧ ରହିଗଲା ଯିମିତି କି ଅତି ଗଭୀର ନିବିଡ଼ତାରେ ସେ କାନ୍ଥ ଉପରେ ଚିତ୍ରାବଳୀକୁ ସମର୍ଥନ କରୁଥାଆନ୍ତି ।

ଟାକ୍‌ସି ପାଖରେ ଦେଖା ହୋଇଗଲା, ସେଠାରେ ବି ଊର୍ଦ୍ଧ୍ୱଦୃଷ୍ଟି । ତାଙ୍କର ଏହି ଗ୍ଲାନିବୋଧକୁ ଦୂର କରିବା ପାଇଁ ଓଡ଼ିଶାକୁ ଫେରି ଆସି ମୁଁ ଗୋଟିଏ ଚିଠି ଦେଇଥିଲି– ମୋର ପ୍ରବୀଣତା, ବୟସ ଓ କୃତିତ୍ୱ ଅପେକ୍ଷା ତୁମର ଏସବୁ ବିଷୟରେ ବହୁ ଯୋଗ୍ୟତା ରହିଛି । ଈଶ୍ୱରଙ୍କ ଇଚ୍ଛା ଜୀବନରେ ପୂର୍ଣ୍ଣ ହେଉ । ତୁମେ ଆଉ ଅପ୍ରତିଭ ନ ହୋଇ ସହଜ ଦୃଷ୍ଟିରେ ମତେ ଦେଖ । ଆମେ ଦୁଇଜଣ ଓଡ଼ିଆ ଯଦିଓ, ମୁଁ ଭଲଭାବରେ ଜାଣେ ଓଡ଼ିଆ ଜାତୀୟ ଜୀବନ ନିର୍ମଳ ହେବାକୁ ଆଉ ଏକ ଶତାବ୍ଦୀର ସମୟ ବି ଯଥେଷ୍ଟ ନୁହେଁ । ମୋର ବେଶୀ ଦୁଃଖ ଯେ, ତୁମେ ସେହିଦିନଠାରୁ ଅପରାଧୀ ଭଳି ଗତିବିଧି ଦେଖାଉଛ । ମୁଁ ଅତି ସାମାନ୍ୟ ଲୋକ । ଏସବୁ ଭୁଲିଯାଅ । ତୁମର ଉପଯୁକ୍ତ ସ୍ଥାନରେ ତୁମେ ବସିପାରିଲ, ଏହା ଖୁବ୍ ଭଲହେଲା ।

ବିଚାରୀ ପ୍ରଜ୍ଞା ସେ ସନ୍ଧ୍ୟାରେ ପଲାଉ ଓ ମାଂସ କଟ୍‌ଲେଟ କରି ଅପେକ୍ଷା କରିଛି ଅରବିନ୍ଦ ଓ ନଳିନୀଙ୍କୁ ଖୁଆଇବା ପାଇଁ । ସେ ସନ୍ଧ୍ୟା ଅବଶ୍ୟ ତିମିରାଚ୍ଛନ୍ନ ଥିଲା ।

ସେମାନେ ଆସିଲେ । ହାତରେ ପତ୍ରିକା ଯେଉଁଥିରେ 'ଦଗ୍ଧ ଡମ୍ବରୁ' ରହିଛି ।

ବସିଲେ, ସମସ୍ତଙ୍କ ମୁଖ ମ୍ଲାନ । ସ୍ୱାଭାବିକ ଭାବରେ ସମ୍ଭାଷଣ ନାହିଁ ।

ମୁଁ କହିଲି– ଏ କଅଣ ? ପ୍ରଜ୍ଞା ଯେ ବହୁତ କିଛି ଆଜି ଆୟୋଜନ କରିଛନ୍ତି– ବସ ବସ, ଆନନ୍ଦ କର । 'ଦଗ୍ଧ ଡମ୍ବରୁ' ପଢ଼ିଛ ବୋଧହୁଏ ? ଆରେ ତାହା ତ କେବଳ ଗଳ୍ପଟାଏ । ସାମାଜିକ କର୍ତ୍ତବ୍ୟ ପରା ସାହିତ୍ୟ ସୃଷ୍ଟିର ଆଭିମୁଖ୍ୟ ? ପ୍ରଜ୍ଞା, ପ୍ରଜ୍ଞା, ଆସ ଆସ, ତୁମର ଅତିଥିମାନେ ଆଜି ବଡ଼ ଅପ୍ରସନ୍ନ ? ତୁମେ ତାଙ୍କୁ ସରସ କର ।

ଅରବିନ୍ଦ ଏତିକି ପଚାରିଲା– ଏ କଅଣ ସତ ? ଏମିତି ହୋଇପାରେ ? ପ୍ରତିଶ୍ରୁତି ଦେଇ ପ୍ରତିଶ୍ରୁତି ଭଙ୍ଗର ଦୃଶ୍ୟ ?

ନଳିନୀ କହିଲା– ଜୀବନ ଓ ସାହିତ୍ୟ– ଏତେ ନିବିଡ଼, ଏତେ ପାଖାପାଖି ? ବିଶ୍ୱାସ ହୁଏନି... ଓଡ଼ିଆ ଜାତିର ଅଧଃପତନ ପାଇଁ ଏଭଳି ମାନସିକତା ଦାୟୀ ନୁହେଁ କି ?

ମୁଁ ଚିତ୍କାର କଲି...ତମେ ଦୁଇଜଣ ଅକାରଣେ ଉତ୍ତେଜିତ ହେଉଛ । ଈଶ୍ୱରଙ୍କ ବିଧାନରେ ମୋର ଯାହା ପ୍ରାପ୍ୟ ନୁହେଁ ମୁଁ ପାଇବି କିପରି ?

ପ୍ରଜ୍ଞା ପାଟିକଲା– ଆରେ ବାବୁ ଏ ଲେଖା ଫେଖା କଥା କହି ମୋ ରାନ୍ଧଣାକୁ ନଷ୍ଟ କରନି, ନିଅ ନଳିନୀ ଗୋଟାଏ କାମଡ଼ା ଦିଅ ଏ ଚପ୍‌ଟାରେ...



# ଆକାଶ ତଳେ ବିକାଶ ଲଭେ

ଶ୍ରୀକ୍ଷେତ୍ରର ଗୁଣ୍ଡିଚାଘର ଆଡ଼େ ନ ଯାଇ ବାଟ କାଟି ଯାଆନ୍ତୁ ବଡ଼ ଶଙ୍ଖ ଉପରେ ଷ୍ଟେସନ ରାସ୍ତା ଦେଇ।

ସେ ପଥ ଉପରେ ବହୁ ସଦ୍‌ଗୁରୁ, ଜଗଦ୍‌ଗୁରୁ ନିରଞ୍ଜନ ସ୍ୱାମୀ ହରିହରାନନ୍ଦ, କେତେ ମହାନନ୍ଦ କେତେ ପ୍ରଣବାନନ୍ଦ ଦଣ୍ଡ ତ୍ରୀଶୂଳ ଧରି ଚାଲିଆସନ୍ତି ଟ୍ରେନ୍‌ରୁ ଅବତରଣ କରି।

ଶିଷ୍ୟ ଶିଷ୍ୟାଙ୍କ ମେଳରେ ଛତ୍ର ଚାମର ଆଲଟ ତଳେ ଏମାନେ ଯେ ଯାହାର ମଖମଲୀ ଆଶ୍ରମ ସୌଧକୁ ଆସନ୍ତି। ରାଜଯୋଗ ସହିତ ରାଜଭୋଗ; କିଛି ଊଣା ନାହିଁ। ସଞ୍ଜରେ ପ୍ରବଚନ ଦିଅନ୍ତି। ପ୍ରତ୍ୟକ୍ଷ 'ଯୋଗ' କଣ ବୁଝାଇ ଦିଅନ୍ତି।

ପୁଣି ଟ୍ରେନ୍‌ରୁ ଅବତରଣ କରି ଆସନ୍ତି ଭାରତବର୍ଷର ବହୁ ରାଜ୍ୟରୁ ଯାତ୍ରୀ। ସୁନା ଚଷମା, ସୁନା ଦାନ୍ତ, ବ୍ୟାଗ୍‌ରେ ଥାଏ ହଜାର ହଜାର ଟଙ୍କା ଟ୍ରାଭ୍‌ଲର୍ ଚେକ୍। ଗୋଟାଏ ରୀତିମତ ଶୋଭାଯାତ୍ରା... ସ୍ତ୍ରୀ, ପୁଅ ଝିଅ ଓ ଅନ୍ୟାନ୍ୟ ବଶମ୍ବଦଙ୍କ ସହିତ କ୍ୟାପିଟାଲିଷ୍ଟ, ଏମାନେ ଆଗରୁ ରିଜର୍ଭ କରିଥାନ୍ତି ରେଲବାଇ ହୋଟେଲର କକ୍ଷଗୁଡ଼ିକ। ନିଶ୍ଚିନ୍ତ ଆରାମରେ କେତେଦିନ ସେମାନେ କଟାଇବେ। ଟଙ୍କା ଉଡ଼ିବ ଡେଣାଲଗା ପ୍ରଜାପତି ହୋଇ।

ଚିଙ୍ଗୁଡ଼ି ଫ୍ରିଜ୍ ହେଉଛି। ଅସଂଖ୍ୟ ଚିଙ୍ଗୁଡ଼ି। ସାର୍ଥକ ଜୀବନ ଓ ଜନ୍ମ ଏମାନଙ୍କର। ମିଶ୍ର ବରଫ ଫ୍ୟାକ୍ଟରୀ, ଗୁପ୍ତା ଫ୍ରିଜିଂ ପ୍ଲାଣ୍ଟ, ଥମାସ୍ ଚିଙ୍ଗୁଡ଼ି କାରଖାନା... କେବଳ ଚିଙ୍ଗୁଡ଼ିମାନଙ୍କର ମୁଣ୍ଡହୀନ ଅଙ୍ଗ ଉପରେ ଢଳି ରହିଛି ବରଫ ପାହାଡ଼...

ରୋହୀ ଭାକୁର କୁଆଡ଼େ ଗଲେ। ଯୁଗ ବଦଳିଛି; ଖାଇବା ଲୋକର ରୁଚି ବଦଳିଛି। ରକ୍ତହୀନ କର୍କଶ କାତିମୟ ଚିଙ୍ଗୁଡ଼ି ଆଜି ମାର୍କିନ ଓ ବିଲାତ ବଜାରରେ ଆକର୍ଷଣୀୟ ଡିସ୍... ତା' ପୁଣି ପୁରୀ ତଟର ବଙ୍ଗୋପସାଗରର ରତ୍ନାକରର ଗର୍ଭରୁ ମିଳୁଥିବା ଚିଙ୍ଗୁଡ଼ି– ମାଳ। ବଡ଼ ସୁସ୍ୱାଦୁ ଓ ହଜମକାରକ।

ମିଶ୍ର, ପାଣ୍ଡେ, ଛୋଟରାୟ, ଗୁପ୍ତା ଓ ଆପ୍ଟା ତଥା ପାନ୍ତଲୁ ପ୍ରତିଯୋଗିତାର ସଂଗ୍ରାମ– କିଏ ହାରିବ କିଏ ଜିତିବ। ସେଇଟା ପ୍ରଶ୍ନ ନୁହେଁ, ପ୍ରଶ୍ନ ହେଉଛି ବିଦେଶୀ ବିନିମୟ ମୁଦ୍ରାର ରୋଜଗାର... ସରକାର ଚାହାନ୍ତି। ଲୋକେ ଚାହାନ୍ତି।

ସେଥିପାଇଁ ମିଶ୍ରେ କୌଳିକ ବ୍ୟବସାୟ ଯାତ୍ରୀ ଗୁମାସ୍ତାଗିରି ଛାଡ଼ିଲେ। ତାଙ୍କ ଶିରପାଟ ପତନି ପେଡ଼ିରେ ଅସରପା ଚକା ବାନ୍ଧିଲେ। ଆଜନ୍ମ ଚିତ୍ରଶିଳ୍ପୀ ଓ କବି ଛୋଟରାୟ ଗଣଗଣିଆ ମାଛି ଭରା ଚିଙ୍ଗୁଡ଼ି ଝୁଡ଼ି ଗଣିବାରେ ସମୟ ନେଇ କବିତ୍ୱକୁ ଗୌଣ କରିଦେଲେ। ଆଉ ଗୁପ୍ତା ଆସିଛନ୍ତି ବିଦେଶରୁ; ପାନ୍ତଲୁ ଆସିଛନ୍ତି ଆନ୍ଧ୍ରରୁ...

ପୁରୀରେ ଲେମ୍ବୁ ଫଳୁନି', ମାଛ ସ୍ୱପ୍ନ, ସରକାରଙ୍କର ଅଣ୍ଡା–ସମିତିର ଆଗ ଦୁଆରରେ କୋଳପ ଝୁଲୁଛି, ପଛ ବାଟ ଅବଶ୍ୟ ଖୋଲା। ଆନ୍ଧ୍ର ଅଣ୍ଡା, ଆନ୍ଧ୍ର ଲେମ୍ବୁ, ଆନ୍ଧ୍ର ପରିବା, ଆନ୍ଧ୍ର ରମଣୀ ସହିତ ଆମ ଆଖିକୁ ଅନ୍ଧକରି ପଇସା ରୋଜଗାରର ଉପାଦାନ ହୋଇଛନ୍ତି।

ପାଇକାରୀ ସମବାୟ ଷ୍ଟୋରରେ ଗହମ, ଚିନି, ତେଲ କିରାସିନି ମିଳୁଛି। ଠିକ୍ ବଡ଼ଶଙ୍ଖ ମୋଡ଼ ଉପରେ ସମନ୍ୱୟ ଓ ସମବାୟର ଲୋକ କଲ୍ୟାଣ ଦୋକାନ।

ବିପଣୀ ଚାଳକ ରସିଦ୍ ଦିଅନ୍ତି। ଆମ ସମାଜରେ ତିନିଜଣ ବ୍ୟକ୍ତି ରସିଦ୍ ଲେଖନ୍ତି ବଡ଼ ନିଷ୍ଠାପର ଭାବରେ। ଡାକ୍ତର... ତାଙ୍କ ରସିଦ୍ ପଢ଼ି ହୁଏନି, ବସ୍ କଣ୍ଡକ୍ଟର...ତାଙ୍କର ବି ପଢ଼ି ହୁଏନି, ଆଉ ସମବାୟ ଷ୍ଟୋରର କିରାଣୀ; ତାଙ୍କର ବି।

ପଚାରିଲେ, ତେରିମେରି ହୁଅନ୍ତି। ନ ପଢ଼ିବାବାଲା ଲାଜ ପାଏ। ସେହି ସମବାୟ ଷ୍ଟୋରର ରାସ୍ତା କରରେ ଏକ ବିରାଟ ସୌଧରେ କିଏ ବସବାସ କରନ୍ତି, ଜାଣନ୍ତି ? ଏତେ ବଡ଼ ଅଟ୍ଟାଳିକା, ଆଖିରେ ପଡ଼ିନାହିଁ ତ ? କିମିତି ପଡ଼ିବ ?

ଚଳମାନ ଜନସ୍ରୋତର ଠିକ୍ ଆଖି ଆଗରେ ସେ ମହାନିବାସର ଅଧିବାସିନୀର ନାମ ଜାଣନ୍ତି କି ? ତାଙ୍କ ନାମ ଖାନ୍‌କୀ...ଚମକି ପଡ଼ିଲେ କି ? ଦୁଇଟା ଘଟଣା ଭିତରେ ସଂହତି ରହିଲା ନାହିଁ ବୋଧହୁଏ !

ଏଡ଼େ ବଡ଼ ଆବାସ ଏବଂ ତାର ଏକମାତ୍ର ଅଧିବାସିନୀ ନାୟିକାର ନାମ ପୁଣି ଅଶ୍ଳୀଳ ଖାନ୍‌କୀ ! ! ଚମତ୍କାର।

ଓଡ଼ିଶାର ପ୍ରଖ୍ୟାତ ବିଶିଷ୍ଟ ଇଞ୍ଜିନିୟର ସେ ସୌଧର ତିଆରି କରିଥିଲେ ପ୍ଲାନ, ନିର୍ମାଣ ବିଭାଗର ବହୁ ନିର୍ବାହୀ ଯନ୍ତ୍ରୀ ଜାଗା ଉପରେ ଛିଡ଼ାହୋଇ କାମ ତଦାରଖ କରୁଥିଲେ।

ବଡ଼ ବଡ଼ ଗ୍ରୀଲ୍ ଲଗା କବାଟ ଝରକା। ପ୍ରଶସ୍ତ ବାରଣ୍ଡା। ଗେଷ୍ଟରୁମ୍। ସବୁ ମୋଜେଇକ୍, ପ୍ରଧାନ କକ୍ଷ ଅବଶ୍ୟ ଶ୍ୱେତକୃଷ୍ଣର ମାର୍ବଲ ଛାଉଣି। ଉଦ୍ୟାନ ଅଛି। ପଶୁପକ୍ଷୀ ସଂରକ୍ଷଣ କରି ଆନନ୍ଦ ପାଇବା ପାଇଁ 'ବିହାର' ମାନ ରହିଛି। ନ ରହିଛି କଅଣ ?

ମତେ କେବଳ ଏତିକି ଆଶ୍ଚର୍ଯ୍ୟ ଲାଗେ ଏତେ ବଡ଼ କୋଠା ଓ ତାହାର ଚାକଚକ୍ୟ ପରିପାଟୀ ଆପଣଙ୍କ ଆଖିରେ ନ ପଡ଼ିଲା କେମିତି ? ଆପଣ ବୋଧହୁଏ ଟିକିଏ ଦୂରକୁ ମିଶ୍ର ବରଫ କଳର ଝନ୍ ଝନ୍ ବରଫ ତିଆରି ଶବ୍ଦ ଶୁଣି ଶୁଣି ଆଉ ମଥାହୀନ ପଚା ଚିଙ୍ଗୁଡ଼ିର ଗନ୍ଧ ଆଘ୍ରାଣ କରି ଏତେ ବିମୁଗ୍ଧ ହୋଇଥାନ୍ତି ଯେ ପାଖ ରାସ୍ତା କରରେ, 'ଖାନ୍‌କୀ'ର ଆବାସକୁ ଦେଖି ନ ଦେଖିବା ଭଳି ଚାଲିଯାଇଛନ୍ତି।

ଜଗଦ୍‌ଗୁରୁ ଯେତେବେଳେ ଚାଲିଯାଇଛନ୍ତି ନିସ୍ପୃହ ଭଙ୍ଗୀରେ, ଜିଲାପାଳ ଯେତେବେଳେ ମନ୍ତ୍ରୀଙ୍କୁ ସ୍ୱାଗତ କରି ସେଇ ବାଟେ ମଟର ଛୁଟାଇଛନ୍ତି ଅଥଚ 'ଖାନ୍‌କୀ'ର ଆତିଥ୍ୟକୁ ଅପସନ୍ଦ କରି ମୁହଁ ମୋଡ଼ି ଦେଇଛନ୍ତି, ସେତେବେଳେ ଆମେ ଛୋଟ୍ କାଟ୍‌ର ଲୋକଙ୍କର କଥା କେତେକେ।

ଖାନ୍‌କୀର ମୋଟରକାର୍ ଅଛି। ନ ହେଲେ ଏତେ ମୋବିଲ୍ ଟିଣ ଦୃଶ୍ୟ ହୁଅନ୍ତା କିପରି ?

ଖାନ୍‌କୀର ତିନିମହଲା ଛାତ ଉପରେ ମାଳ ମାଳ ମୋବିଲ୍ ଟିଣର ସୁନ୍ଦର ସାଜ ଜାପାନୀ ରୀତିରେ ଫୁଲ ସଜାଇବା ରୀତି ଭଳି ଟିଣମାନଙ୍କର ଏ କୋଳାକୋଳି ବି ଅପୂର୍ବ ଲାଗେ। ଖାନକୀର ବାସ୍ତବିକ୍ ରୁଚିବୋଧ ଅଛି। ନିର୍ଜୀବ ଶୂନ୍ୟ ବସ୍ତୁରେ ସେ ଆରୋପ କରିଦିଏ କେତେ ସରସତା ସତେ। ଏଡ଼େ ବଡ଼ ପ୍ରାସାଦ, ଅଥଚ ଖାନ୍‌କୀ ଚାହେଁନି ତା' ଭିତରେ ଶୟନରତା ହୋଇ ଯାପିବ ଯାମିନୀ। ଉପରେ ନୀଳ ଆକାଶ, ଅଭିମାନରେ ଡାକେ ତାକୁ... କହେ, ମୋ ପାଇଁ ତ୍ୟାଗ କରିପାରିବୁ ? ଲୋକେ ଜାଣନ୍ତି ତୋ ପାଇଁ ଅଛି ବଡ଼ କୋଠାଘର, କିନ୍ତୁ ମୁଁ ତତେ ଡାକୁଛି ବାହାର ପ୍ରାଙ୍ଗଣରେ ଶୋଇ ମତେ ଚାହିଁଥା... ବିନ୍ଦୁ ବିନ୍ଦୁ ଶିଶିର ଯେତେବେଳେ ତୋର କୁନ୍ତଳଶ୍ରୀକୁ ସିକ୍ତ କରିବ, ଦେଖିବୁ କି ରମଣୀୟ ରୂପଶ୍ରୀ ତୁ ଧରିଛୁ।

ମୁକ୍ତକେଶିନୀ ଏଇ ଖାନକୀ ଆକାଶର ସ୍ନେହକୁ ଏଡ଼ି ନ ଦେଇ ରାତି ରାତି ଶୋଇଯାଏ ପ୍ରାସାଦର ବହିରାଙ୍ଗନରେ... କୁଆଁ ତାରା ଆଖି ମିଟି ମିଟିରେ ପ୍ରଭାତୀ ସୂର୍ଯ୍ୟ ବନ୍ଦନା କରେ– ସଖି, ରାତି ପାଇଲା... ଉଠ, ଉଠ...

—ଉଠ, ଏଥର ଯା, ଏତେ ରୂପ ତୋର, ମୁଁ ଅସମ୍ଭାଳ ହୋଇଗଲି... ଏଥର ଏମିତିରେ ଅସତୀ ହେବୁ ନାଇଁ ମ ? ମୁଁ ବାହା କରାଇଦେବି... ଆରେ ଏ ମହୀମଣ୍ଡଳରେ କାହ୍ନୁ ପଧାନ ଯାହା କହେ, କରେ...

ସେ ଥିଲା । ଏକ ଇତିହାସ... ଏ ଗୋଟାଏ ଅଖ୍ୟାତ ପଲ୍ଲୀର ଅଖ୍ୟାତ ରୂପ—ଯୌବନ ସମ୍ପନ୍ନା ବାଳିକା ଗୋଲାପର ଇତିହାସ... ଯେଉଁ ଇତିହାସ ବିଶ୍ୱବିଦ୍ୟାଳୟର ଇତିହାସ କ୍ଲାସରେ କେହି ପଢ଼ାନ୍ତି ନାହିଁ, କି ସ୍କୁଲ କଲେଜରେ ତାହା ଅଧାତବ୍ୟ ବିଷୟ ନୁହେଁ ।

କାହ୍ନୁ ପଧାନ ମନ୍ତ୍ରୀଙ୍କ ସହଚର । ବଡ଼ ଉଚ୍ଚାଭିଳାଷୀ । ମନ୍ତ୍ରୀ ଟାଉଟରଙ୍କର ସୋଦର ସମ ସେ ଟିକିଏ ନ୍ୟୁନ ଶ୍ରେଣୀର ଟାଉଟର । ତେଣୁ ପ୍ରତାପ ବେଶୀ, ଭୁଜଙ୍ଗର ଫଣା ହଲିଲା ଭଳି କାହ୍ନୁ ପଧାନଙ୍କର ଫଣା ହଲୁଥାଏ ଅନ୍ୟଠାରୁ ବିଷ ଧାର କରି । ଏ ହଳାହଳ ସେତିକିବେଳଯାଏ ହଳାହଳ ଥାଏ ଯେ ପର୍ଯ୍ୟନ୍ତ ମଣ୍ଡଳର ପତନ ନ ଘଟିଛି ।

ଗାଁଏ ଗାଁଏ ଏହିଭଳି ନରରାକ୍ଷସ କୁଦାମାରି ବୁଲୁଛନ୍ତି । କୁହାଟ ମାରୁଛନ୍ତି... କାହ୍ନୁର ଗୋଲାପ ଉପରେ ସେ ସନ୍ଧ୍ୟାର ନିର୍ଜନତାରେ ଅତ୍ୟାଚାର ଆଜି ତାକୁ ଅଧିବାସିନୀ କରିଛି । ପୁରୀ ଜେଲ୍‌ରେ ଗୋଟାଏ ନିରନ୍ଧ୍ର ଖୁଆଡ଼ରେ...

ଯୋଗାଯୋଗ ଏମିତି ଘଟିଥାଏ... ପ୍ରଥମ ପରିଚୟ ହେଲା ଗୋଲାପ ସହିତ ମୋର ଦୁଇବର୍ଷ ତଳେ ପୁରୀର କାରାଗାରର ଏକ ମଞ୍ଚ ଉପରେ । କଏଦୀମାନଙ୍କୁ ଧର୍ମ ଧ୍ୟାନର ଟିକିଏ କଥା କହିବା ପାଇଁ ଯାଇଥାଏ ପବିତ୍ର ଅଗଷ୍ଟ ପନ୍ଦର ତାରିଖରେ ।

ଯାହାତ କହିଲି କହିଲି... କିନ୍ତୁ ଅପଲକ ନେତ୍ରରେ ଦେଖିଥିଲି ଗୋଟିଏ କଏଦୀ ମହିଳାକୁ ଯିଏ ମତେ ପୁଷ୍ପହାର ପିନ୍ଧାଇଦେଇ କିଛି ସମୟ ପୂର୍ବରୁ ଅନ୍ତର୍ହିତ ହୋଇଯାଇଛି ଅନ୍ୟାନ୍ୟ ବନ୍ଦିନୀଙ୍କ ସହିତ । ଅତିଥିଙ୍କୁ ପୁଷ୍ପମାଳ ଦେବାର କର୍ତ୍ତବ୍ୟ କାହିଁକି ଗୋଲାପ ଉପରେ ଜେଲର୍ ଆରୋପ କରିଥିଲେ ଆଜି ବୋଧହୁଏ ତାହା ଦିବାଲୋକ ଭଳି ସ୍ପଷ୍ଟ ହୋଇଯାଇଛି... ନ ହେଲେ ଏ ଗଳ୍ପ ଏମିତି ଭାବରେ ରଚିତ ହୋଇ ନଥାନ୍ତା କି ଗୋଲାପର ପରବର୍ତ୍ତୀ ନାରୀ ସଂସ୍କରଣର ନାମଧେୟ ଖାନ୍‌କୀ ପାଇଁ ମୋର ଅଶ୍ରୁ ବିନ୍ଦୁଏ ଢଳିପଡ଼ି ନଥାନ୍ତା ।

ଏଭଳି ବ୍ୟର୍ଥ ଅଶ୍ରୁ ବୁନ୍ଦାଏ ଗଡ଼େଇବାର ଲାଭ କଅଣ ? ସେ ସଦାସର୍ବଦା ନୀଳଚକ୍ର ଧ୍ୟାନତତ୍ପର ପୁରୀବାସୀ ! ଥରେ ସେ ବଡ଼ଶଙ୍ଖ ପାଖ ଡାକଘର ବାଟ ଦେଇ ଉଠିଯାଆନ୍ତୁ ରାଜରାସ୍ତା ଉପରକୁ; ତାହାରି ତଳେ ଯେ ନର୍ଦ୍ଦମା ସଲିଳ ବହିଯାଇଛି ନାଳପରିଖା ଦେଇ, ସେହିଠାରେ ଗୋଟିଏ ମୁହୂର୍ତ୍ତ ଛିଡ଼ା ହୁଅନ୍ତୁ ।

ଶୁଣିବେ, ପିତା କାହ୍ନୁ ପଧାନ, ଗାନ୍ଧୀବାଦୀ, କଂଗ୍ରେସୀ, ଏକାଦଶବ୍ରତଧାରୀ ଓ ମାତା କୋଡ଼ିଏ ବର୍ଷର ଯୁବତୀ, ସରଳା ଗ୍ରାମ୍ୟ ବାଳିକାର ସନ୍ତାନ ନର୍ଦ୍ଦମା ପଙ୍କରେ ଅଟକି ରହିଗଲା; କାନ୍ଦି ପାରିନି ଜନ୍ମ ହେଉ ହେଉ ସେ ମୂର୍ଚ୍ଛାଗଲା କୋଡ଼ିଏଟି ବସନ୍ତରେ ଉଲ୍ଲସିତା ମାଆ ଗୋଲାପର ଦୁଇ ହାତର କର୍କଶ ଚାପରେ...

ତା'ପରେ ଇତିହାସ ତା'ପଥ ଧରିଲା—ନର୍ଦ୍ଦମାରେ ଜମିଯାଇଥିବା ପଙ୍କ ଗୋଟାଏ ତୋଡ଼ରେ ଭାସିଗଲା... ଆଉ ସେ ଶବଟା ବି...

ବାରବର୍ଷ କାଳ କାରାଗାରରେ କଟାଇବା ପରେ ଗୋଲାପ ସେହି ନାଳ ନର୍ଦ୍ଦମାର ଉପରେ ନିର୍ମାଣ କରିଛି ତାର ରାଜକୀୟ ପ୍ରାସାଦ । କାହ୍ନୁ ପଧାନକୁ ଦେଇଛି ମନେ ମନେ ଶାସ୍ତି, ଏପରିକି ସାରା ସମାଜକୁ, ସବୁ ଭୋଟ ଦାତାଙ୍କୁ, ସବୁ ପ୍ରଗତିଶୀଳ ଦଳଙ୍କୁ ।

ପ୍ରାତଃ ଭ୍ରମଣର ମାର୍ଗ ମୋର ଥାଏ ପ୍ରତିନିୟତ ସେହି ବରଫ କଳ ରାସ୍ତା, ସମବାୟ ଷ୍ଟୋରକୁ ଲାଗି ଜନପଥ । ମୁଁ ଦେଖେ ଗୋଲାପ ଶୋଇଯାଇଛି— ମୁହଁଟି ପରମ ଶାନ୍ତ । ଟିକିଏ ଛିଡ଼ା ହୋଇଯାଏ....

ଚିଙ୍ଗୁଡ଼ି ଟ୍ରକ୍ ଏତେ ସକାଳୁ ଆସି ଯାଇଥାଏ... ମାଇକ୍‌ରେ ହରିଚନ୍ଦନଙ୍କ 'ପ୍ରଭୁ ବଡ଼ ଦାରୁଣ' ରେକର୍ଡ଼ ବାଜିବାକୁ ଆରମ୍ଭ କରିଛି। ଆଉ ବେଦ ପାଠକ ବ୍ରାହ୍ମଣ ଗାଇ ଚାଲିଛନ୍ତି ଗୀତାର ଦ୍ୱିତୀୟ ସର୍ଗର ପାରାୟଣ....

ଡାକେ ମୁଁ – ଗୋଲାପ...

ଶୁଣେ ମୁଁ... ଉଁ....

କହେ ମୁଁ.... କେତେ ଦିନ ଆଉ ତୁ ବଞ୍ଚିବୁ ?

ସେ କହେ... ମରିନି ତ ?

ଗୋଲାପ ଠିକ୍ ଆତ୍ମନିର୍ମିତ ସମାଧି ଭଳି ଦେଇଛି ସ୍ନେହ ତାର ଘରକୁ। ଭୂଇଁ ଉପରୁ ଉଚ୍ଚତା ଦୁଇଫୁଟ, ଲମ୍ବ ଛଅଫୁଟ, ଛାତ ଉପରେ ଦୁଇ ତିନିଟା ଶୂନ୍ୟ ମୋବିଲ୍ ଟିଣ, ହାଣ୍ଡି ଖପରା, ଛିଣ୍ଡା ଅଖା, କାଠିକୁଟା।

ଏ ଘରର ଅବଶ୍ୟ କାନ୍ଥ ଅଛି। ଦୁଇ ଚାରିଟା ଇଟାର ଉଚ୍ଚ ନୀଚ ପ୍ରାଚୀର।

ପାଖରେ ସାଥୀ ଗୋଟାଏ କଳା ଖଇରିଆ କୁକୁର...

ଗହବାଏ ବାଳ ଖୁବ୍ କଳା, ତାର କପାଳ ଉପରେ ପଡ଼ିଥାଏ। ଦିଗ୍‌ବଳୟର ଅରୁଣିମା କ୍ରମେ ତାକୁ ସତେଜ କରେ।

–ବାବୁ, ବୁଲି ବାହାରିଲେ ?

– ହଁ।

–ଜେଲରୁ ଖଲାସ ହୋଇ ଗାଁ'କୁ ଗଲୁନି ? ମୁଁ ପଚାରେ...

– ଯାଇଥିଲି। କେହି କଥା କହିଲେ ନାହିଁ.... କହିଲେ ମୁ ଖାନ୍‌କୀ....

ଏ କଥୋପକଥନ ଆଜିର ନୁହେଁ, ଅତୀତର.... ଆଉ ଏବେ ମୁଁ ତାକୁ କିଛି କହେ ନାହିଁ। ଖାଲି ଦେଖି ଦେଇ ଚାଲିଯାଏ।

ଅନେକ ସମୟରେ ଭାବେ ମୋର ପ୍ରାତଃ ଭ୍ରମଣର ଗତିପଥ ବଦଳାଇ ଦେବି। କିନ୍ତୁ ପାରେନା। ଗୋଲାପର ଘୂମନ୍ତ ଶରୀର ଓ ତାର ଅରୁଣାୟିତ କେଶରାଶିକୁ ନ ଦେଖି ମୁଁ ସ୍ଥିର ରହି ପାରେନି।

ନର୍ଦ୍ଦମା ବହି ଚାଲିଛି।

ତାର ସନ୍ତାନ ସେଇଠାରେ ନିଶ୍ଚିହ୍ନ।

ଗର୍ଭ ତା'ର ବିଳାପ କରୁଛି। ରାଜରାସ୍ତା ଉପରେ ମଥା ଥୋଉଛି ପାରମାର୍ଥିକ ଯାତ୍ରୀ ଜଗନ୍ନାଥଙ୍କୁ ପ୍ରଣାମ ଉଦ୍ଦେଶ୍ୟରେ–

ମୋ ମଥା କିନ୍ତୁ ନଇଁ ପଡ଼ିଛି ଏଇ ମୃତ୍ୟୁପଥ ଯାତ୍ରିଣୀ ଗୋଲାପର ଅସ୍ତିତ୍ୱ ପାଖରେ।

ମୁଁ ଜାଣେ ଅସ୍ତିତ୍ୱ ଅତିଶୀଘ୍ର ବିଲୀନ ହୋଇଯିବେ। ତାର ଲକ୍ଷଣ ମୁଁ ଦେଖୁଛି ଗୋଲାପର ନିସ୍ତେଜ ମୃତ୍ୟୁ ଆବାହନ ନିଶ୍ଚଳ ଆଖିପତାରେ।

ନର୍ଦ୍ଦମା ନାଳ ଯେଉଁଠାରେ ତାର ସନ୍ତାନକୁ ସେ ହତ୍ୟା କରି ଠେଲି ଦେଇଥିଲା ଜଳ ସ୍ରୋତରେ, ସେହି ନର୍ଦ୍ଦମା ଭିତରକୁ ମ୍ୟୁନିସିପାଲଟି ମେହେନ୍ତର ତାର ଶବକୁ ହୁଏତ ଅଳ୍ପକାଳ ଭିତରେ ଭସେଇ ଦେବ; ସବୁ ନିଃଶେଷ ହୋଇପଡ଼ି ବି ରହିଥିବ ଏ ସମାଜ, ଏ ଜେଲ୍‌ଖାନା, ଏ ଜଗଦଗୁରୁଙ୍କ ଧର୍ମଧ୍ୱଜା.... ପାପ ପୁଣ୍ୟର ବିଚାରକ ସମାଜପତି ଦଳ।

ହେ ମୋର ଗୋଲାପ, ଯେତେଦିନ ଇଚ୍ଛା ଏଇ ଉନ୍ମୁକ୍ତ ଆକାଶ ତଳେ ବିକାଶ ଲାଭ କରୁଥା... ହେ ପୁରୀବାସୀ ! ଗୋଲାପ ମୃତ୍ୟୁ ଶୀତଳ ହେବା ପୂର୍ବରୁ ଥରେ ଆସି ଦେଖି ଯାଅ ତାକୁ ତାର ସୌଧ ମଧ୍ୟରେ ଓ ବାହାରେ; ସେ କେମିତି ଜୀବନକୁ ଛନ୍ଦୋମୟ କରି ଚାଲିଛି ତାର ନିଜ ବିଶ୍ୱାସରେ...

ଟିକିଏ ମହାପ୍ରସାଦ ନିର୍ମାଲ୍ୟ !

ଗୋଟିଏ 'ଆହା' ବଚନ !

ଏତିକି ତାର ପ୍ରାପଣୀୟ ନୁହେଁ କି ?

■■■

# ମା' ଯାଉଛି, ବାପା ଯାଉଛି

ସତ୍ୟସୁନ୍ଦର ବାବୁ ଯେତେବେଳେ ପୋଷାକ ପିନ୍ଧି ଅଫିସକୁ ଯିବା ପାଇଁ ପ୍ରସ୍ତୁତ ହେଉଥାନ୍ତି, ସେତେବେଳେ ସେ ପ୍ରାୟ ଏଇ ଦୁଇପଦ କଥା ଶୁଣନ୍ତି – "ମା ଯାଉଛି, ବାପା ଯାଉଛି, ଜେଜେ ଯାଉଛି।"

ସତ୍ୟସୁନ୍ଦର ହସି ଦିଅନ୍ତି। "ମା ଯାଉଛି, ବାପା ଯାଉଛି" କଥା ଦୁଇପଦରେ କେତେ ମାଧୁରୀ ସତେ! ସ୍ତ୍ରୀ ପଦ୍ମାଳୟା ହସି ହସି ସ୍ୱାମୀଙ୍କ ହାତକୁ ପାନବଟା ବଢ଼ାଇ କହନ୍ତି – ବାପା ପିଣ୍ଡାରେ ବସିଛନ୍ତି; ପ୍ରଣାମ କରିଯିବ। ଥରେ ଥରେ ତୁମେ ଭୁଲିଯାଅ।

ସତ୍ୟସୁନ୍ଦରଙ୍କ ସଂସାରରେ ସେ ଦୁଇ ପ୍ରାଣୀ ଓ ଗୌତମ ସହିତ ମଧୁମତି। ବଡ଼ ଚାକିରି ନୁହେ; ତଥାପି ସଦା ପ୍ରଶାନ୍ତ ସତ୍ୟସୁନ୍ଦର ଚାଲିଥାନ୍ତି ତାଙ୍କ ପଥରେ। ହୃଦୟରେ ଈଶ୍ୱର ବିଶ୍ୱାସ ଓ ପାଖରେ ପୁଣ୍ୟବତୀ ପଦ୍ମାଳୟା। ତାଙ୍କୁ ଘେରି ରହିଛନ୍ତି ଦଶ ବର୍ଷର ଗୌତମ ଓ ସାତ ବର୍ଷର ମଧୁମତି।

ବାପା ପ୍ରାୟ ପିଣ୍ଡାରେ ବସିଥାନ୍ତି। ନିର୍ଜନ ନୀରବ ସେ ଉପବେଶନ। ସତ୍ୟସୁନ୍ଦରଙ୍କ ପିତା, ଯିଏ ଯୌବନରେ ବକ୍‌ସି ଜଗବନ୍ଧୁଙ୍କ ସହକର୍ମୀ ଭାବରେ ଖୋରଧା, ନୟାଗଡ଼ ଦଶପଲ୍ଲା ଜଙ୍ଗଲରେ ଘୂରି ବୁଲିଥିଲେ, ସମ୍ବାଦ ଦେଉଥିଲେ କେଉଁଠି ବ୍ରିଟିଶ ବାହିନୀ ଅପେକ୍ଷା କରିଛି ବକ୍‌ସି ଜଗବନ୍ଧୁଙ୍କୁ ଗିରଫ କରିବାକୁ। ସେ କାଳର କଥା, ତାହା ଉପରେ କାଳର ମଳିନତା ହୁଏତ ଲେପି ହୋଇ ଯାଇଛି।

ସେହି ବୃଦ୍ଧ ପୁଣ୍ୟସୁନ୍ଦର ଆଜି ନବେ ବର୍ଷରେ ଅଟକି ଯାଇ ଅତୀତକୁ ଦେଖୁଛନ୍ତି। ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ବସି ସେ ଦୂରଦିଗ୍‌ବଳୟକୁ ଲକ୍ଷ୍ୟ କରୁଥାନ୍ତି ଯେଉଁଠି ବକ୍‌ସି ହଜି ଯାଇଛନ୍ତି, ହଜି ଯାଇଛନ୍ତି କେତେ ସ୍ୱାଧୀନଚେତା ଓଡ଼ିଆ ବୀର ପୁରୁଷ। ସେମାନଙ୍କର ସ୍ତୁତିଗାନ ଗାଇ ନାହାନ୍ତି ଭାଟ–ସମାଜ, ବା କବି କଣ୍ଠରେ ସଙ୍ଗୀତ ନିର୍ଝର ଝରିନାହିଁ, ସେମାନଙ୍କର ବୀରତ୍ୱକୁ ଅଭ୍ୟର୍ଥନା କରି।

ପୁଣ୍ୟସୁନ୍ଦର ଠିକ ଦଶଟା ବେଳକୁ ଶୁଣନ୍ତି "ମା ଯାଉଛି, ବାପା ଯାଉଛି।" ଗୌତମ ଆଗ ଦଉଡ଼ିଯାଏ, ଜେଜେଙ୍କୁ ମୁଣ୍ଡିଆ ମାରେ, ଆଉ କହେ– ବାପା ଯାଉଛି, ମାଆ ଯାଉଛି, ଜେଜେ ଯାଉଛି। ମଧୁମତି ପରେ ଆସେ ଆଉ କହେ "ବାପା ଯାଉଛି, ମାଆ ଯାଉଛି, ଜେଜେ ଯାଉଛି"....

ବୃଦ୍ଧ ପୁଣ୍ୟସୁନ୍ଦର ଦନ୍ତହୀନ, ଓଠତଳୁ ହସ ଧାରେ ହସି ଦିଅନ୍ତି। ପ୍ରଣତ ଗୌତମର ମଥା ଛୁଇଁ ସେ ଆଶୀର୍ବାଦ କରନ୍ତି ବଡ଼ ହେବୁ ଗୌତମ, ଈଶ୍ୱର ଭଲରେ ରଖିବେ। ମଧୁମତିକୁ ଟିକିଏ ବେଶୀ ଆଦର କରି କହନ୍ତି – ମଧୁ ଉଠ୍, କଲ୍ୟାଣ କରୁଛି।

ପୁଣି ତାଙ୍କର ସେଇ ଦିଗନ୍ତ **ସ୍ପର୍ଶୀ** ଦୃଷ୍ଟି ଖେଳିଯାଏ। କେଉଁଆଡ଼େ ତାର ଗତିପଥ କେହି ଜାଣି ପାରନ୍ତି ନାହିଁ, ମୂକ ଓ ନିଷ୍ପନ୍ଦ ଭାବରେ ବୃଦ୍ଧ ପୁଣ୍ୟସୁନ୍ଦର ବସିଥାନ୍ତି। ଖରା, ବର୍ଷା ହେମନ୍ତ ବସନ୍ତରେ ଏଇ ଏକ ସ୍ୱଭାବ।

ଗୌତମ ସ୍କୁଲକୁ ଯାଏ, ମଧୁ ବି ସ୍କୁଲକୁ ଯାଏ। ମାତ୍ର ତାଙ୍କ କଣ୍ଠରେ ନିନାଦିତ ଏଇ ବାଣୀ "ବାପା ଯାଉଛି, ମାଆ ଯାଉଛି, ଜେଜେ ଯାଉଛି" ଠିକ୍

ଦଶଟାବେଳେ ସୃଷ୍ଟି କରେ ଏକ ଅପରୂପ ମାୟା, ଯାହାକି ବୃଦ୍ଧଙ୍କ ହୃଦ–ତନ୍ତ୍ରରେ ବହୁ କଂପନ ଜଗାଇଦିଏ।

ସତ୍ୟସୁନ୍ଦର ପୋଷାକ, ପିନ୍ଧୁ ପିନ୍ଧୁ ପଦ୍ମାଳୟାକୁ କହନ୍ତି – "ପିଲାମାନଙ୍କର ଗୋଟାଏ ଅଭ୍ୟାସ ପଡ଼ି ଗଲାଣି, ସେମାନେ ସ୍କୁଲକୁ ଯାଉଛନ୍ତି... ଫେରି ଆସିବେ, କିନ୍ତୁ ଏ ବିଜୟ ବାଣୀରେ ଯେତିକି ଆନନ୍ଦ ଅଛି, ସେତିକି କୋହ ବି ଅଛି। ପିଲାଏ ବୁଝନ୍ତି ନାହିଁ, ଏ ସାମୟିକ ବିଦାୟ ପର୍ବ ବାପ ମାଆଙ୍କ ହୃଦୟରେ କେତେ ବ୍ୟଥା ଦିଏ।

'ଥାଉ ଥାଉ ଗୁଡ଼ାଏ ଦର୍ଶନ ବାଡ଼ ନାହିଁ' କହି ପଦ୍ମାଳୟା ସତ୍ୟସୁନ୍ଦରଙ୍କୁ ବାଟେଇ ଆସନ୍ତି। ମାତ୍ର କାହିଁକି କେଜାଣି ତାଙ୍କ ଆଖିପତାରେ ଲାଗିରହେ ଗୋଟିଏ ଅଶ୍ରୁବିନ୍ଦୁ। ଆଜି ସୋହାଗ ଅଛି, କାଲି ହୁଏତ ଦୀପରୁ ସଳିତା ସରିଯିବ। ପୃଥିବୀରେ ଏହାହିଁ ତ ନିୟମ। ତେଣୁ ଗୌତମର ଚିତ୍କାର... ବାପା ଯାଉଛି, ମାଆ ଯାଉଛି, ଜେଜେ ଯାଉଛି, କଅଣ କେବେ କେବଳ "ଯିବାରେ" ରହିଯିବ ?

ପଦ୍ମାଳୟା ସ୍ତବ୍ଧ ହୋଇଯାନ୍ତି। ଛିଃ, କି ଅମଙ୍ଗଳ କଥା ସେ ଭାବୁଛନ୍ତି ସତେ!!

ସ୍କୁଲଟା ଗୋଟାଏ ମାଇଲ ଦୂରରେ ରହିଛି। ସହର ଯାଗା। ଫୁଟପାଥ ନାହିଁ। ପିଲାଙ୍କ ସ୍କୁଲ ବୋଲି ଯାହା ଗୋଟାଏ ଖୁମ୍ବରେ ଟିଣ ପଟାରେ ଚିତ୍ର ହୋଇଛି ପିଲାଟିଏ ଦଉଡୁଛି, ଗୋଟିଏ ଗୋଡ଼ ଉଠିଛି, ଅନ୍ୟଟି ଉଠି ନାହିଁ.... ଏଇ ଭଙ୍ଗୀ....

ମଟର ଡ୍ରାଇଭର ସାବଧାନ ହୁଅ, ସମସ୍ତେ ସାବଧାନ ହୁଅ.... ଏ ପିଲାଙ୍କ ସ୍କୁଲ ଅଞ୍ଚଳ.... ଏଠି ସଂଯତ ହୋଇ ଚାଲ, ଛୋଟ ଛୋଟ ପିଲା ଯାଉଛନ୍ତି.... ତୁମେ ଆଉ ବାହାଦୂରୀ ଦେଖାଇ କ୍ଷିପ୍ରଗତିରେ ଯାନ ଚଳାଅ ନାହିଁ। କେତେବେଳେ କଅଣ ଥାଏ.....

ପଦ୍ମାଳୟା କବାଟ ଦେଇ ଫେରିଆସନ୍ତି ଶୋଇବା ଘରକୁ.... ସମସ୍ତେ ଚାଲିଗଲେ, ସ୍ୱାମୀ ଓ ସନ୍ତାନ... ସ୍ୱାମୀ ଗଲେ ଜୀବିକା ଅର୍ଜନ ପାଇଁ। ପୁଅ ଝିଅ ଗଲେ ପାଠ ପଢ଼ିବା ପାଇଁ। ଘରେ ସେ ଏକମାତ୍ର ପ୍ରାଣୀ। ପୁଣି ଚାରିଟା ବାଜିବା ଯାଏ ଅଳସ ମଧ୍ୟାହ୍ନ ଓ ଅପରାହ୍ନର ଶତ ରାଗ ରାଗିଣୀରେ ମୂର୍ଚ୍ଛିତ ହୋଇଯାଏ ସେ ନୀଡ଼.... ତାଆରି ଭିତରେ ସେ ପଦ୍ମାଳୟା ନାମକ ଜଣେ ନାରୀ.... କାହାକୁ ଖୋଜୁଛନ୍ତି ? କେହି ନାହିଁ।

ମନଟା ଯେତେବେଳେ ଖୁସୀ ଥାଏ, ବୋହୂ ବୋଧହୁଏ ଭଲ ତରକାରୀ ରାନ୍ଧି ଖୁଆଇଛନ୍ତି ବା ପାନରେ ଭଲ ମସଲା ଦେଇ ନିଜ ହାତରେ ଖୁଆଇ ଦେଇଛନ୍ତି, ସେହି ସମୟରେ ପିଲାଙ୍କ କଣ୍ଠରୁ ଭାସି ଆସିଛି – "ବାପା ଯାଉଛି ଜେଜେ ଯାଉଛି" ଆଉ ଜେଜେ ପୁଣ୍ୟସୁନ୍ଦର ବଡ଼ ପାଟିରେ କହନ୍ତି.... ଯାଅ, ଯାଅ, ଯାଅ କହି ଠୋ ଠୋ ହସନ୍ତି।

ପଦ୍ମାଳୟା ଆତଙ୍କରେ ଶିହରି ଉଠନ୍ତି। କାହିଁକି ଶ୍ୱଶୁର କହୁନାହାନ୍ତି.... ଯାଅ, ପୁଣି ଫେରିଆସ ? ଆରେ ଗୌତମ ସାବଧାନରେ ଯିବୁ, ଆରେ ମଧୁମତି, ସାବଧାନରେ ଯିବୁ; କାହିଁକି ଏ କଥା ଶ୍ୱଶୁର କହନ୍ତି ନାହିଁ ?

କେହି କଅଣ ଏ ସଂସାରରେ ନାହାନ୍ତି କହିବାକୁ ଆରେ ପିଲାଏ, ଯିବାକୁ ଯେମିତି ଉଚ୍ଛନ୍ନ ହେଉଛ, ଫେରିଆସିବାକୁ ସେମିତି ଉଚ୍ଛନ୍ନ ହେବ। ଡେରି କରିବ ନାହିଁ।

ନା, କେହି ନାହାନ୍ତି। ସ୍ୱାମୀ କହୁଛନ୍ତି ପିଲାଙ୍କର ଅଭ୍ୟାସ ପଡ଼ିଗଲାଣି। ହୁଏତ ପଡ଼ିଯାଇଛି। କିନ୍ତୁ ସେ ଯେ ଟ୍ରକ୍‌ଟା ଯାଇଛି, ବିରାଟ୍ ଆଉ ଭୟଙ୍କର, ତାର ତ ଅଭ୍ୟାସ ହୋଇ ଯାଇଛି ବାଟ ନ କଟେଇ ଦଉଡ଼ିବାକୁ। ବଡ଼ ଭୟ ଲାଗେ ଏଇ ଶିଖ ଡ୍ରାଇଭରଗୁଡ଼ାଙ୍କୁ। ଏମିତି

ଭାବି ପଦ୍ମାଳୟାଙ୍କର ଆଖିପତା ନଇଁ ଆସେ। ବର୍ଷାର ଝରଝର ଝରଣାରେ, ବୈଶାଖର ନିଥର ମୃଗତୃଷ୍ଣା ତଳେ ତାଙ୍କର ଯେତେବେଳେ ଆଖି ଦୁଇଟି ବୁଜି ହୋଇ ଆସେ, ସେ ସ୍ୱପ୍ନ ଦେଖନ୍ତି....

ଗୌତମର ଛାତି ଉପରେ... ଓଃ, ସେ ଚିତ୍କାର କରି ଉଠନ୍ତି। ଦେହ ତାଙ୍କର ଥରୁଥାଏ। ସ୍ୱାମୀ ତାଙ୍କୁ କୋଳରେ ଧରି ଆଶ୍ୱାସନା ଦେଉଛନ୍ତି.... କଅଣ ହେଲା ?

ପାଞ୍ଚଟା ବାଜିଥାଏ। ପିଲାମାନେ ଦାଣ୍ଡପାଖରେ ପାଟି କରି ଦଉଡ଼ି ଆସୁଥାନ୍ତି ମାତୃ କୋଳକୁ। ସେ କୋଳ ଏ ଯାଏ ଥିଲା ଶୂନ୍ୟ। ମାଆ, ଆମକୁ ଖାଇବାକୁ ଦିଅ; ଭାରି ଭୋକ। ଏ କଣ'ମ ସତେ କି ସ୍ୱର୍ଗରୁ ଝରି ଆସୁଥିବା ଅମୃତପ୍ରାୟ। ବରଡ଼ାପତ୍ର ଭଳି ଥରୁଥିବା ପଦ୍ମାଳୟାଙ୍କ ତନୁ କ୍ରମେ ଶାନ୍ତ ହୋଇ ଆସେ। ପିଲାଏ ତାଙ୍କ ପଣତରେ ମୁହଁ ପୋଛିଦେଇ ବସିଯାନ୍ତି ଆସନରେ ଆହାର ପାଇଁ।

ସୃଷ୍ଟିର ନିତ୍ୟ ଲୀଳା ଏ। ମାଆ ଆଉ ସନ୍ତାନ। ଆହାର ସାରି ଗୌତମ ଓ ମଧୁମତି ଦଉଡ଼ିଯାନ୍ତି ଖେଳିବାକୁ। ଦୁଃସ୍ୱପ୍ନର ସତ୍ତା ରହେନି। ପୁଣି ଚଳଚଞ୍ଚଳ ହୋଇଯାଏ ସତ୍ୟସୁନ୍ଦରଙ୍କ ସଂସାର।

ବୃଦ୍ଧ ପୁଣ୍ୟସୁନ୍ଦର ନାତି ନାତୁଣୀଙ୍କୁ ପାଖରେ ବସାଇ କେତେ କଥା କହନ୍ତି। କହନ୍ତି, ସେ ଯେତେବେଳେ ପୁଲିସ୍ ଚାକିରି କରୁଥିଲେ, ପୁରୀ ସମୁଦ୍ର କୂଳରେ ସେ ପହରା ଦେଉଥିଲେ। କୂଳେ କୂଳେ ଚାଲିଗଲେ ପଡ଼େ ରାମଚଣ୍ଡୀଙ୍କ ମନ୍ଦିର। ସେଇଠି ତାଙ୍କର ରାତି ଡିଉଟି ପଡ଼େ। ରାତି ଆଠଟାରୁ ପାହାନ୍ତା ପହରଯାଏ ଏକୁଟିଆ ସେ ବୁଲୁଥାନ୍ତି ସମୁଦ୍ର ବାଲି ଉପରେ... ଦିନେ କଅଣ ହେଲା କି....

ଗୌତମର ଆଖି ଏଡ଼େ ଏଡ଼େ ହୋଇଗଲା। ମଧୁମତିର ମୁହଁଟି କଳା ହୋଇଗଲା। କଅଣ ଘଟିଲା ଜେଜେ ?... ଦୁଇଟି ନିଷ୍ପାପ ସରଳ ଶିଶୁର ବିସ୍ମୟର ରାଗିଣୀ...

ଜେଜେ ଆରମ୍ଭ କଲେ– ଦେଖ ପିଲାଏ, ଠିକ୍ ରାତି ବାରଟା ବେଳେ ଆୟ ଅଳଙ୍କାରରେ ସଜେଇ ହୋଇ ଦେବୀ ରାମଚଣ୍ଡୀ ମନ୍ଦିର ଭିତରୁ ବାହାରି ଆସିଲେ। ତାଙ୍କ ଆଗେ ଆଗେ ଘୂରିଯାଉଥାଏ ଗୋଟାଏ ନିଆଁପିଣ୍ଡୁଳା। ଠାକୁରାଣୀ ଚତୁର୍ଦ୍ଧାମୂରତି ହୋଇ ଚାଲିଥାନ୍ତି। ଓଃ ସେ କି ଦୃଶ୍ୟ ! !

ଜେଜେ ପୁଣ୍ୟସୁନ୍ଦର ଟିକିଏ ସମୟ ନେଲେ; ହେଲେ ପିଲାଙ୍କର ବଢ଼ିଲା ଉତ୍କଣ୍ଠା। ପଚାରିଲା ଗୌତମ – "ଜେଜେ ତାପରେ କଅଣ ହେଲା ?"

ଜେଜେ ପୁଣି ଆରମ୍ଭ କଲେ – ବୁଝିଲୁ ମଧୁ, ଠାକୁରାଣୀଙ୍କ ଦୁଇ ହାତରେ ଥାଏ ଦୁଇଟା କଟା ମଣିଷମୁଣ୍ଡ। ଗୋଡ଼ରେ କଅଣ ବାନ୍ଧିଥାନ୍ତି ଯେ ଶୁଭୁଥାଏ.... ଝଣ... ଝଣ.... ଝଣ.... ମାଆଚଣ୍ଡୀ ଏମିତି ବେଶ ହୋଇ ଏମିତି କଟା ମୁଣ୍ଡ ଧରି ଦେଉଳ ଭିତରୁ ବାହାରି ଆସିଲେ।

ମୁଁ ସେତେବେଳେ ପୁଲିସ ପୋଷାକରେ ଥାଏ। ମୋ ଅଣ୍ଟାରେ ଚମଡ଼ା ପଟି। ହାତରେ ପୁଲିସ ବାଡ଼ି। ମୁଁ ଆଉ କିଛି ଭାବି ପାରିଲି ନାହିଁ। ମୋର ଦୁଇ ହାତକୁ ଠାକୁରାଣୀଙ୍କର ଚରଣ ଆଡ଼କୁ ବଢ଼ାଇଦେଇ ସାଷ୍ଟାଙ୍ଗ ପ୍ରଣିପାତ କରି ଶୋଇ ପଡ଼ିଲି।

ଗୌତମ ପଚାରିଲା – ପ୍ରଣିପାତ କଅଣ ଜେଜେ ? ଜେଜେ ଉତ୍ତର ଦେଲେ – ଗୋଡ଼ତଳେ ପଡ଼ିଯିବା, ନମସ୍କାର କରିବା।

ଗୌତମର ଆଖି ସତେ କି ସେ ରଣଚଣ୍ଡୀ ମୂର୍ତ୍ତିକୁ ଏଇ ମୁହୂର୍ତ୍ତରେ ଦେଖୁଛି। ପଲକହୀନ ଗୌତମର ଆଖିକୁ ଚାହିଁ ଦେଇ ମଧୁମତି ଭୟରେ ଜେଜେଙ୍କ କୋଳକୁ ଆଉଜି ଆସିଲା।

ଜେଜେ କିନ୍ତୁ ଅଭୟ ଦେଇ କହିଲେ – ଡରୁଛ କିରେ ପିଲେ? ନା ଡରନାହିଁ। ଠାକୁରାଣୀ ତାଙ୍କ ଗୋଡ଼ରେ ମତେ ଛୁଇଁଦେଇ ଆଜ୍ଞା ଦେଲେ – ଉଠ, ଉଠ, ଯା ଘରକୁ ଯାଆ, ଆଜି ପରା ଦିନରେ ତୋ ଆଖି ମୋ ଆଖି ଉପରେ ପଡ଼ିଗଲା। ଯାଆ....

ତାପରେ ମୋର ଚେତା ବୁଡ଼ିଲା। ସକାଳେ ଆଉ ସବୁ ପୁଲିସ୍ ଭାଇ ଆସି ମତେ ଉଠେଇ ନେଇଗଲେ। ପନ୍ଦର ଦିନ ଯାଏ ମତେ ଜ୍ୱର ହେଲା। ଲୋକେ ଭାବିଥିଲେ ଠାକୁରାଣୀଙ୍କ ସାଙ୍ଗରେ ଭେଟଣା ହୋଇଗଲା, ଆଉ ମୁଁ ବଞ୍ଚିବି ନାହିଁ। କିନ୍ତୁ ମୁଁ ବଞ୍ଚିଛି।

ପଦ୍ମାଳୟା ଆସି ଦୁଇଥର ଚାହିଁଦେଇ ଗଲେଣି। ଶ୍ୱଶୁର ପିଲାଙ୍କୁ ଗପ ଶୁଣାଉଛନ୍ତି। ତାଙ୍କର ଶୋଇବାବେଳ ହୋଇ ଯାଇଛି। ସେ ଡାକିଲେ – ଆସ ଗୌତମ, ଆସ ମଧୁ.... ଜେଜେଙ୍କୁ ଆଉ ବିରକ୍ତ କରନି, ସେ ବିଶ୍ରାମ ନିଅନ୍ତୁ।

× × ×

ରାଇ ଶୀତଳା ପର୍ବ। ପୁରୋହିତ ଓ ବାରିକ ଯେଝା କାମରେ ଲାଗିଛନ୍ତି। ଏକବସ୍ତ୍ର ମ୍ରିୟମାଣ ସତ୍ୟସୁନ୍ଦର ସେ ନିର୍ବାପିତ ଚିତା ଉପରେ ଦୃଷ୍ଟି ଆବଦ୍ଧ କରି ଚିତ୍ରପ୍ରତିମା ଭଳି ଛିଡ଼ା ହୋଇଛନ୍ତି। ତାଙ୍କ ପାଖକୁ ଲାଗି ଛିଡ଼ା ହୋଇଛି ଗୌତମ।

ତାର ବିସ୍ମୟଭରା ଆଖି ଦେଖୁଛି କେତେଖଣ୍ଡ ହାଡ଼ ଅଧାନିଆଁ ମିଶା ପାଉଁଶ ଉପରେ ପଡ଼ିଛି। ଆଉ ଖପୁରୀରୁ କେତୋଟି ପତଳା ପରଦା ଏଣେ ତେଣେ ଗଡୁଛି। ପୁରୋହିତ ବାପାଙ୍କୁ ଯାହା କରିବାକୁ କହୁଥାନ୍ତି, ବାପା ତାହା ତଳକୁ ମୁହଁପୋତି କରୁଥାନ୍ତି। ହଳଦୀ କନା କାଠି ଉପରେ ବାନ୍ଧିଦେଇ ନିଆଁ ଉପରେ ପାଣି ଛିଞ୍ଚିଦେଲେ ସତ୍ୟସୁନ୍ଦର। ଏସବୁ କାମ କରୁ କରୁ ବାପାଙ୍କ ଆଖିରୁ ଲୁହ ବୋହିଯାଇଥିବାର ଦୃଶ୍ୟ ଦେଖୁଥାଏ ଗୌତମ। ଦେହରେ ଚାଦର ଖଣ୍ଡିଏ, ମୁଣ୍ଡରେ ଫୁରୁ ଫୁରୁ କେଶ, ପଶିଲା ପଶିଲା ଆଖି, ଏମିତି ବାପା ତ କେବେ ଦେଖା ଯାଇ ନଥିଲେ? କେତେ ସରସ, ହସ ହସ ମୁହଁ ତାଙ୍କର, ଆଜି ଗଲା କୁଆଡ଼େ?

ଦଶ ବର୍ଷର ଗୌତମ ହୃଦୟରେ ମାନବର ଅନିତ୍ୟ ଶରୀର ଘେନି ହଠାତ୍ କି ଧାରଣା ହେଲା କେଜାଣି, ସେ ସମସ୍ତଙ୍କୁ ଚକିତ କରି କାନ୍ଦି ଉଠିଲା। ପୁରୋହିତ କହିଲେ ଶ୍ମଶାନକୁ କିଏ ପୁଅ ଝିଅଙ୍କୁ ଆଣନ୍ତି? ପିଲା ଲୋକ, କଅଣ ହେବ ନ ହେବ....

ସତ୍ୟସୁନ୍ଦର ପ୍ରଶାନ୍ତ କଣ୍ଠରେ କହିଲେ – ପୁରୋହିତେ ପିଲାବେଳୁ ଏମାନେ ଜାଣନ୍ତୁ ଜୀବନ ମୃତ୍ୟୁର ଲୀଳା କେତେ। ଏମିତି ଦୃଶ୍ୟ ଦେଖିତ ପୁଣି ସିଦ୍ଧାର୍ଥ ବନବାସ କଲେ, ଆଣିଲେ ସତ୍‌ଜ୍ଞାନ ଏ ସଂସାରକୁ। ପୁଅ ଇଚ୍ଛାକଲା, ମୁଁ ମନା କରି ପାରିଲି ନାହିଁ।

ଶେଷ ହେଲା ଅସ୍ଥି–ପଖଳା। ଗୋଟିଏ ମାଟି ପାତ୍ରରେ ତିନିଖଣ୍ଡ ଅସ୍ଥି ସଞ୍ଚୟ କରି ଶୋକାର୍ତ୍ତ ସତ୍ୟସୁନ୍ଦର ବାହୁଡ଼ି ଆସିଲେ।

ଜଣେ ଚାଲିଗଲା କେଉଁ ଅଦୃଶ୍ୟ ଲୋକକୁ। ନବେ ବର୍ଷର ଜୀବନ ଗ୍ରନ୍ଥ ଯେପରି ହଠାତ୍ ଶେଷପୃଷ୍ଠାରେ ପହଞ୍ଚିଗଲା। ଅଥଚ ତାର କେତୋଟି ଅସ୍ଥି ମାତ୍ର ରହିଲା ରକ୍ତଜ ପୁତ୍ର ପାଖରେ ଗୟାଶ୍ରାଦ୍ଧ ପାଇଁ। ପ୍ରାଣୀ ବୋଧହୁଏ ଚାହୁଁ ନାହିଁ ଏ ମର ଜଗତକୁ ଛାଡ଼ି ଏକାବେଳକେ ଅଦୃଶ୍ୟ ରହିଯିବ ସମୟର ସୀମାନ୍ତ

ପାଖେ । ଏତିକି... ଏଇ ତିନିଖଣ୍ଡି ଅସ୍ଥି, ଯାହା ତାହାଙ୍କର ସର୍ବଶେଷ ମରତ୍ୱର ସଙ୍କେତ, ସଞ୍ଚିତ ରହିଲା ସତ୍ୟସୁନ୍ଦରଙ୍କ ପାଖେ ଗଙ୍ଗୋତ୍ରିରେ ଉତ୍ସର୍ଗୀକୃତ ହେବାପାଇଁ । ସେତକ ହୋଇଗଲେ ବିଚ୍ଛିନ୍ନ ହୋଇଯିବ ସ୍ନେହର ଧାରା, କେବଳ ରହିଯିବ ଯାହା ସ୍ମୃତିର ମାଣିକ୍ୟ କୋଠାରେ....

ଚକ୍ର ଘୂରେ... ଘୂରିଯାଏ ପୃଥିବୀ । ମହାକାଳର ନିର୍ଦ୍ଦେଶ । ସବୁର ସମାପ୍ତି ଅଛି, ପୁଣି ସେଇ ଭାଗଶେଷରୁ ବାହାରିବ ଏକ ନବତମ ପୂର୍ଣ୍ଣସଂଖ୍ୟା । ସେ ସଂଖ୍ୟା ପୁଣି ମଉଳିଯିବ ଏହି ପରିଚିତ ରବି–ଶଶୀ–ତାରାମୟ ଆକାଶ ଆଉ ବୃକ୍ଷଲତା ପର୍ବତ ଘେରା ପୃଥିବୀକୁ ଆଶ୍ରୟ କରି । ଏ ଏକ ମହାନ୍ ପାର୍ବଣ । ଦଶହରା ଉତ୍ସବ ।

ପଦ୍ମାଳୟା ପାଟିକଲେ – ହେ ପିଲାଏ, ସ୍କୁଲ ଯିବାବେଳ ହୋଇଗଲାଣି । ଆଜି କିଆଁ ପାଠ ମଠ କିରେ ?

ଗୌତମର କାନ୍ଧରେ ବ୍ୟାଗ୍, ମଧୁମତିର ହାତରେ ଓହଳା ବ୍ୟାଗ୍ । ଦୁହେଁ ପ୍ରସ୍ତୁତ । କେବଳ ପଦିଏ ମିନତି ମାଆକୁ – ମାଆ ଅଣାଏ । ଅଣାଏ ପଇସା, ମାଆ ।

ସେତକ ଚାହିଁବା ମାତ୍ରେ ମିଳିଗଲା । ଗୌତମ ପ୍ରତିଦିନ ଅଭ୍ୟାସଗତରୁ ଡାକ ଛାଡ଼ିଲା – "ମାଆ ଯାଉଛି; ବାପା ଯାଉଛି; ଜେଜେ ଯାଉଛି ।" ମଧୁ ବି ପାଟିକଲା – "ମାଆ ଯାଉଛି, ଜେଜେ ଯାଉଛି, ବାପା ଯାଉଛି ।"

କାନରେ ବାଜିଲା ଏ ପୟାର ଛନ୍ଦ.... ଶିଶୁକଣ୍ଠର କାକଳି । ସତ୍ୟସୁନ୍ଦର ପୋଷାକ ପିନ୍ଧୁ ପିନ୍ଧୁ ସ୍ତବ୍ଧ ହୋଇଗଲେ... ଆଖିରୁ ଦୁଇବିନ୍ଦୁ ଅଶ୍ରୁ ଝରିଆସିଲା ମୃଦୁ ଧାରାରେ । ପଦ୍ମାଳୟା ବୁଝିପାରିଲେ ସ୍ୱାମୀଙ୍କର କାହିଁକି ଏ ଭାବାନ୍ତର । ପାନ ଡବାଟିକୁ ବଢ଼ାଇ ଦେଉ ଦେଉ କହିଲେ – ଗୌତମ ଆଉ ମଧୁକୁ ମୁଁ କହିଦେବି ସେ ଆଉ 'ଜେଜେ ଯାଉଛି' ବୋଲି କହିବେ ନାହିଁ । ପିଲାଲୋକ ।

ସତ୍ୟସୁନ୍ଦର ରୁମାଲରେ ମୁହଁ ଆଖି ପୋଛି ଆଣି ଖଣ୍ଡିତ ଆକାଶ ଆଡ଼କୁ ଚାହିଁଲେ । କହିଲେ ନା ପଦ୍ମା ମନା କରିବନି, ପିଲାମାନେ ସେମିତି ଛନ୍ଦରେ ସେମିତି ଧାରାରେ କହୁଥାନ୍ତୁ । ଆମ ପାଖରେ ଯାହା ସତ, ପିଲାଙ୍କ ଆଗରେ ତାହା ବହୁ ଗୁଣରେ ସତ୍ୟ । ତାକୁ ଜାଣି ଜାଣି ନଷ୍ଟ କର ନାହିଁ ।

ଏ କଥାରେ ପଦ୍ମାଳୟା ହଠାତ୍ ଶକ୍ତି ହରାଇ ବସିଲେ । ତାଙ୍କ ଆଖିରୁ ବି ଗୋଟିଏ ନିଭୃତ ଧାର ଖସି ଆସିଲା । ସେ ଭାବୁଥିଲେ କାଲି ପୁଣି ଠିକ୍ ଦଶଟାବେଳେ ଗୌତମ ଆଉ ମଧୁମତି ଡାକିବେ– ଜେଜେ ଯାଉଛି, ବାପା ଯାଉଛି, ମାଆ ଯାଉଛି.... ହାୟ ଭଗବାନ ।



# ଆସନ୍ନ ଅବସ୍ୱର

ମଟରଗାଡ଼ିଟା ଲେଭେଲ କ୍ରସିଂ ନିକଟରେ ଛିଡ଼ା ହେଲା। ଆଗକୁ ଯିବାର ବାଟ ନାହିଁ। ଅର୍ଗଳ। ସଚଳ ଜୀବନ ଯେପରି ମରଣ ପାଖରେ ପହଞ୍ଚିଗଲା। ଖଣ୍ଡିଏ ମାତ୍ର ଲମ୍ବ କାଠ, ଦେହରେ ତା'ର ଲୁହାପାତିଆ, ଏହି ଲୁହାପାତିଆ ସବୁ ପୁଣି ତା ଦେହରୁ ଉପରକୁ ଉଠି ଛନ୍ଦା ଜାଲ ଭଳି ଶୋଭା ପାଉଛି।

ଏହାର ପୁଣି ଏତେ ଶକ୍ତି ଯେ ଧନୀ, ନିର୍ଦ୍ଧନ, ବଡ଼, ଛୋଟ, ଅପାର ମହିମାନ୍ୱିତ କୃପାର କଣାପ୍ରାର୍ଥୀ ସର୍ବପ୍ରକାର ମାନବଗୋଷ୍ଠୀକୁ ଦଣ୍ଡେ ଛିଡ଼ା କରାଇ ଦେଇଛି। ଏହିସବୁ ଦର୍ଶନ ବିଷୟରେ ଭାବୁ ଭାବୁ କିଏ ଜଣେ ଦଣ୍ଡାୟମାନ ପାଖ ରିକ୍‌ସାରୁ ଡାକ ପକାଇବାର ଶବ୍ଦ ଶୁଣିଲି– "କି ମହାନ୍ତି, ନୂଆ ଗାଡ଼ି କି ? କିମିତି ଚାଲୁଛି ?"

ଦେଖିଲି ଏଭଳି ଗଦ୍‌ଗଦ୍‌ଭାଷୀ ରିକ୍‌ସାରୋହୀ ବାଙ୍ଗର ଲୋକ ମୋର ପୂର୍ବ ଜୀବନର ସହକର୍ମୀ। ଚିହ୍ନିଲି, ଶୁଭକାମନା କରି ପଚାରିଲି – 'କୁଆଡ଼େ ? କଣ କଲେଜକୁ ?' ଏତକ କହି ଗାଡ଼ିଟା ନୂଆ କି ପୁରୁଣା, ମୋର କି କାହାର, ଚାଲିଛି କି ରହିଛି... ଏ ବିଷୟରେ କିଛି ଉଲ୍ଲେଖ ନ କରି ଆଗକୁ ଚାହିଁ ରହିଲି।

ଦୁଇ ମୁହୂର୍ତ୍ତପରେ ଗାଡ଼ିର ଦରଜାଟା ଧଡ଼୍‌କିନା ଖୋଲି ଯେ ପଶିଆସି ମୋ ପାଖରେ ବସିପଡ଼ିଲେ, ସେ ହେଉଛନ୍ତି ସେଇ ଲୋକ କେତେବେଳୁ ରିକ୍‌ସା ବିଦାୟ କରି ଏତକ କାମ କରିଦେଲେ ଆଖି ପିଛୁଳାକେ। ଗାଡ଼ିର ଗଦିକୁ ସେ ଆଉଁସିଲେ; ମୋ ଆଡ଼କୁ ବିଶ୍ୱାସ ଚାହାଣିରେ ବି ସେ ଚାହିଁଲେ, ଭାବଟା ଏଇଆ ଯେ ଜୀବନଟାଯାକ ଯାହା ବିରୁଦ୍ଧରେ କୁତ୍ସାରଚନା କରି ସବୁ ପ୍ରଚାରରେ ସଫଳକାମ ହୋଇ ଦୂରଦୂରାନ୍ତ ଜାଗାକୁ ବଦଳି କରାଇ ଯେ ବୋଧହୁଏ ଅସୂୟାମଣ୍ଡିତ କୀର୍ତ୍ତି ଅର୍ଜି ଆସିଛନ୍ତି, ସେ ଆଜି ଦେଖିଲେ ଯେ ମୁଁ ଗୋଟାଏ ମଟାରଗାଡ଼ିରେ ଯାତ୍ରା କରୁଛି ମୋର କର୍ତ୍ତବ୍ୟ ସମ୍ପାଦନ କରିବାକୁ।

ସେ ହସିଲେ, ଯେଉଁ ହସ ସହିତ ଆପଣଙ୍କର ବେଶ୍ ପରିଚୟ ଥିବ। ଭିତରଟା କତୁରୀ ହେବାବେଳେ ଯେ ପ୍ରକାର ଯନ୍ତ୍ରଣାମିଶା କୃତ୍ରିମ ହସର ଝରଣା ଝରେ, ସେଇ ହସ। କହିଲେ – 'ଡକ୍‌ଟର ଶ୍ରୀପତିଙ୍କୁ ମୁଁ ପରା ଆପଣଙ୍କ କଥା ବାରମ୍ବାର କହେ, କହେ ତମେ ସବୁ ଟଙ୍କା ସଞ୍ଚୟ କରି କେବଳ ବ୍ୟାଙ୍କରେ ଜମାଉଥାଅ, ଆଉ ମହାନ୍ତି ? ସେ ଜାଣେ ଜୀବନକୁ କିପରି ସର୍ବାଙ୍ଗୀନ ଉପଭୋଗ କରିବାକୁ ହୁଏ। ତେଣୁ ସେ ଯଶସ୍ୱୀ। ଭଲ କରିଛ ମହାନ୍ତି.... "ଋଣଂ କୃତ୍ୱା ଘୃତଂ ପିବେତ୍।" ମୁଁ କହିଲି – ସତକଥା, ଯଦିଓ ଘୃତ ପିଇବା ମୋର ଇଚ୍ଛା ନୁହେଁ, ମୁଁ ଗୁଡ଼ାଏ ଋଣ କରିଦେଇଛି।

ଅର୍ଗଳ ଖୋଲିଲା। ପଥଚାରୀ ଓ ଗାଡ଼ି ମଟର ଝାଡ଼ିଝୁଡ଼ି ହୋଇ ପୁଣି ଚାଲିଲେ। କଲେଜ ଛକରେ ବନ୍ଧୁ ବିଦାୟ ମାଗି ଚାଲି ଯାଉଥିବାବେଳେ ମୁଁ ଅନୁଭବ କଲି ଏ ପୃଥିବୀରେ କେତେଗୁଡ଼ିଏ ଲୋକ ଏମିତି ଅଛନ୍ତି ଯେଉଁମାନଙ୍କ ସହିତ ଦୁର୍ଭାଗ୍ୟକୁ ମୁହୂର୍ତ୍ତେ ସହାବସ୍ଥିତ ହୋଇଗଲେ ମନରେ ଅଶାନ୍ତି ଭରିଯାଏ। ସେମାନଙ୍କର ଚାଲି ଚାହାଣୀ ଓ କଥାରେ ଏତେ ଛିଟିକା (Jerks) ଥାଏ ଯେ ମଣିଷ ସେତେବେଳେ ସାବଲୀଳତା ଓ ଅନ୍ତରଙ୍ଗ ଭାବକୁ ଭୁଲିଯାଏ।

ପ୍ରାୟ ଦେଖାଯାଏ ଏ ଦେଶରେ ଅଦକ୍ଷ ଲୋକର ପଦୋନ୍ନତି ଘଟେ। ଆଜି ମୁହଁ ଫିଟାଇ ଏ ସବୁ କହିବାକୁ ମୋର ଭୟ ନାହିଁ। ଭୟ ମୁଁ କାହାକୁ ଜୀବନରେ କରିନାହିଁ। କେବଳ ଈଶ୍ୱରଙ୍କ ରୋଷକୁ ମୋର ଯାହା ଭୟ। ତା'ଛଡ଼ା ଅବସର ମୋର ଆସନ୍ନ। ଚାରିପାଖ ନାଗଫାଶର ଶକ୍ତ ମରଣାନ୍ତକ ବନ୍ଧନକୁ ମୁଁ ଯେତେବେଳେ ମୁକ୍ତ ହୋଇଯିବି, ଯେତେବେଳେ ସହଜ ଓ ସ୍ୱାଭାବିକ ଭାବରେ ନିଃଶ୍ୱାସ ପ୍ରଶ୍ୱାସ ମାରି ଗୋଟିଏ ବୃଦ୍ଧ ପ୍ରବୃଦ୍ଧ ବଟବୃକ୍ଷମୂଳେ ଛିଡ଼ା ହେଇ ପ୍ରଶାନ୍ତ ଉଦାର ଆକାଶକୁ ଆଉ ଥରେ ନୂଆ କରି ଅବଲୋକନ କରିବି, ସେତେବେଳେ ଏ ମୁହଁ ଆହୁରି ଫିଟିବ, ଏ ଲେଖନୀ ଆହୁରି ବିଚ୍ଛୁରିତ କରିବ କେତେ ଚିତ୍ର, କେତେ ଦୃଶ୍ୟ, ଯାହାକୁ ପଢ଼ିଲେ ଦେଖିଲେ ଲୋକ ଶିହରି ଉଠିବ– ଏତିକି ଭାବି ଯେ ମଣିଷ ପୁଣି ମଣିଷକୁ ଏପରି ଆଘାତ କରିପାରେ ?

ଏତେ ବିଜ୍ଞାନ, ଏତେ ସୃଷ୍ଟି ? ଏତେ ଆଧୁନିକତାର ଚର୍ଚ୍ଚା ତଳେ ବି ମଣିଷ ଆଜି ରହିଯାଇଛି ସେଇ ଆଦିମ ପ୍ରାୟାନ୍ଧକାରର କାତିମୟ, ସରୀସୃପ, ମାତ୍ର ଏଇ ଆତତାୟୀ ହନ୍ତାରମାନଙ୍କୁ ମନେ ରଖିବାକୁ ହେବ ଯେ ଉର୍ଦ୍ଧ୍ୱରେ ଜଣେ ସର୍ବାଧୀଶ୍ୱର ଅଛନ୍ତି; ତଳେ ତାଙ୍କର ସୃଷ୍ଟିର ମାୟା ଜାଲ ପ୍ରସାରିତ। ଏହା ଠିକ୍ ମାୟା ନୁହେଁ, ଆପାତମାୟିକ ଅନୁରଞ୍ଜନ ଅନ୍ତରାଳରେ ରହିଛି ସତ୍ୟ ଓ ସାଧୁତାର ଗୋଟିଏ ସୁନିୟନ୍ତ୍ରିତ ବିଧି। ସର୍ବଶେଷରେ ଏ ବିଧି ଅନୁଶାସନ ଦେଇଦେବ କିଏ ପୁଣ୍ୟମୟ ଆଉ କିଏ କ୍ଳେଦାକ୍ତ; କିନ୍ତୁ ସେ ପର୍ଯ୍ୟନ୍ତ ବିଚାରପ୍ରାର୍ଥୀକୁ ପ୍ରଶାନ୍ତ ଧୈର୍ଯ୍ୟସହକାରେ ଅପେକ୍ଷା କରିବାକୁ ହେବ ଏହି ନୈତିକ ବିଧାନ ଉପରେ ଅଗାଧ ବିଶ୍ୱାସ ରଖି.... ତାହାହିଁ କରିବାକୁ ହେବ, କାରଣ ଅନ୍ୟ ପନ୍ଥା ନାହିଁ।

ହଁ, କହୁଥିଲି ଏ ଦେଶରେ ଅଦକ୍ଷ ଲୋକର ଉନ୍ନତି ହୁଏ। ଯଦି ସେ ଲୋକ ଗୋଟିଏ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଅଦକ୍ଷ ପ୍ରମାଣିତ ହେଲା, ତାକୁ ସେଠାରୁ ବାହାର କରି ଆଣିବା ନିଷ୍ପତ୍ତି ସଙ୍ଗେ ସଙ୍ଗେ ଗୋଟିଏ ଉଚ୍ଚତର ପଦବୀରେ ତାକୁ ଅଧିରୂଢ଼ କରି ଦେଲେ, ଦୁଇ ପକ୍ଷରୁ ଆଉ ବିଶେଷ କିଛି ଚିନ୍ତା କରିବାର ନ ଥିବ; କିନ୍ତୁ ସେ ଦକ୍ଷ, ଯେ ସାହସୀ, ସେ ନବ ନବ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଓ କାର୍ଯ୍ୟକ୍ଷମ ତା'ଉପରେ ସମସ୍ତଙ୍କର ଚକ୍ଷୁପାତ, କିନ୍ତୁ ଏ ଦୃଷ୍ଟି ଯଦି ଯୋଗ୍ୟତା ଓ ପ୍ରତିଭା–ସମର୍ଥନକାରୀ ଅବଲୋକନ ହୋଇଥାନ୍ତା, ତେବେ ଏ ଧରା ସ୍ୱର୍ଗରେ ପରିଣତ ହୋଇଯାନ୍ତା। ତାହା ହେବାର ନୁହେଁ।

ଆପଣ ଜାଣିଥିବେ ଅନେକ ଦେହ ଉପରେ ଛିଣ୍ଡା ଗେଞ୍ଜି ପିନ୍ଧି ଉପରେ ସଫା ସୁନ୍ଦର କମିଜ ପଞ୍ଜାବୀ ଧାରଣ କରିଥାନ୍ତି। ସେମାନେ ଜାଣନ୍ତି; ଦେଖଣାହାରୀଙ୍କର ଅନ୍ତର୍ଭେଦୀ ଦୃଷ୍ଟି ନାହିଁ ଏ ମାଳିନ୍ୟକୁ ଦେଖିବା ପାଇଁ; ମାତ୍ର ଏ ସୁନ୍ଦର ଖୋଳଟାକୁ କାଢ଼ି ଦେଲେ ମହାଦୈନ୍ୟପ୍ରତୀକ ଆମୂଳ ଆପ୍ରାନ୍ତ ଛିନ୍ନ ଗେଞ୍ଜିଟି ତା'ର ସ୍ୱରୂପ ପ୍ରକାଶ କରିଦେବ। ମୋର ସ୍ନେହମୟୀ ଅରୁଣିମା ଲୋକଙ୍କର ଏଇ ସୁନ୍ଦର ଖୋଳ କଥା ବିଶେଷଭାବରେ କହିଥାଏ, କାରଣ ସେ ବି ଆତତାୟୀଙ୍କର ଜ୍ୱାଳାରେ ଜର୍ଜରିତ ହୋଇପଡ଼ିଛି। କେତେ ରୂପରେ ଏଇ ଖୋଳ, ଏଇ ମୁଖା, ଏଇ ପ୍ରସାଧନ କରି ଲୋକ ବାଟ ଚାଲୁଛନ୍ତି, ତାର କଳନା କରି ହେବ କି ?

ଥରେ ସେକ୍‌ସପିୟର ନାଟକ ଦେଖୁଥିଲି ଚଳଚିତ୍ର ଗୃହରେ। ମୁଁ ଜାଣି ନଥିଲି ଯେ ମୋର ଉପର ହାକିମ ସସ୍ତ୍ରୀକ୍ ମୋ ବସିବାର ଧାଡ଼ି ତଳେ ଉପବେଶନ କରିଥିଲେ। ତାଙ୍କୁ ବଢେଇ ଦେଲେ ମୋର ଆଜନ୍ମ ଶତ୍ରୁମାନେ ଯେ ମୁଁ ଜାଣିଶୁଣି ମୋର ହାକିମଙ୍କୁ

ଅବମାନନା କରିବା ଅଭିପ୍ରାୟରେ ଉପର ଶ୍ରେଣୀର ଟିକଟ କିଣିଛି। ଚଳଚ୍ଚିତ୍ର ଗୃହରେ ବି ଏ ସ୍ପୃଶ୍ୟ ଅସ୍ପୃଶ୍ୟ ଭାବ। ହାକିମ ଜଣକ ପ୍ରଭାବିତ ହେଲେ ଓ ମୋର କ୍ଷତି କଲେ।

ଆଉ ଜଣେ ହାକିମ ମୁଁ କାହିଁକି ଲେଖାଲେଖି କରୁଛି ଓ ଏତେ କହୁଛି ବୋଲି ମତେ ଜିଜ୍ଞାସାବାଦ କଲେ। କହିଲେ – "ଆପଣ ଏତେ କଥା କହନ୍ତି, କିମିତି କହନ୍ତି, ସେଥିରେ କିଛି ନୂଆ କଥା ଥାଏ ?" ଅବଶ୍ୟ ତାଙ୍କ ଓଠରେ ଧାରେ ପ୍ରଶ୍ନ ପଚାରି କୃପା କଲାଭଳି ହସ ଲାଗି ରହିଥାଏ। ଏଇ ହାକିମ ପୁଣି ମାଗିଥିଲେ କୈଫିୟତ ମୋର ଲେଖା ଉପରେ, କାରଣ ଆଜନ୍ମ ସରକାର ସୁଗନ୍ଧ ଅନୁରକ୍ତ ଏହି ମହୋଦୟଙ୍କୁ ସେ ଲେଖାଟି ବାଧିଥିଲା। ଅଥଚ ଅନ୍ୟ କେଉଁ ଦେଶ ହୋଇଥିଲେ ଏହାର ମୂଲ୍ୟାୟନସୂତ୍ରେ ଉତ୍ସାହ ଓ ପ୍ରେରଣା ମିଳୁଥାନ୍ତା।

ଅସହିଷ୍ଣୁ ସହକର୍ମୀମାନେ ମୋର କର୍ମକୁଶଳତାରେ ଈର୍ଷାତୁର ହୋଇ ଚରିତ୍ର ସଂହାର ଭଳି ଗୋଟିଏ ଆନନ୍ଦମାର୍ଗ ଅବଲମ୍ବନ କରି ସର୍ବପ୍ରକାର ନିନ୍ଦାବାଦ କରି ଆସିଛନ୍ତି ଜୀବନସାରା। ଆଜି ଜୀବନର ପଶ୍ଚିମ ଉପାନ୍ତରେ ବସି ମୁଁ ବିଚାରୁଛି ଭଗବତ ଶକ୍ତି ବୋଲି ଗୋଟିଏ ମହୀୟସୀ ଶକ୍ତି ବିଶ୍ୱରେ ଅହରହ ଜ୍ୟୋତି ବିତରଣ କରୁଛି। ଏହି ଭଗବତ୍‌ଶକ୍ତି ବିଶ୍ୱାସରେ ମୁଁ ଆଜି ସମାହିତ; କିନ୍ତୁ ସେମାନେ ?

ମୋର ଜଣେ ହାକିମ ମତେ ଆଦୌ ସହି ପାରୁ ନ ଥିଲେ। ସେ ଯାହା ଇଚ୍ଛା କରୁଥିଲେ ତାହା ମୋ ପ୍ରକୃତିବିରୁଦ୍ଧ ବିଷୟ.... ତୋଷାମଦ ଓ ଚାଟୁବାକ୍ୟ... ତେଣୁ ତାଙ୍କ ହାତରେ ଯେଉଁ କ୍ଷମତା ଥିଲା, ତାହା ସେ ପ୍ରୟୋଗ କରି ମତେ ଅହେତୁକ ଜର୍ଜରିତ କରୁଥିଲେ। ଚକ୍ର ଘୂରିଗଲା। ସେ ଅବସର ନେଲେ। ଅବଶ୍ୟ ଅବସର ନେବା ପରେ ତାଙ୍କର ଲୋଭର ସୀମା ବିସ୍ତୃତ ହେଲା।

ମୁଁ ଯେଉଁ ପଦରେ ରହିଲି ସେହି ପଦର ସୁପାରିଶରେ ତାଙ୍କର ଆବାସ ବହୁ ଅର୍ଥ ପରିମାଣରେ ସରକାର କିପରି ନେବେ; ତାହାରି ବ୍ୟବସ୍ଥା କରିବାକୁ ମତେ କହିଲେ, ମାତ୍ର ସେତେବେଳକୁ ଅନ୍ୟ ଘରେ ଦପ୍ତର ବସି ସାରିଥାଏ। ମତେ ସେ ମହାଭାଗ ପରାମର୍ଶ ଦେଲେ ପୂର୍ବୋକ୍ତ ଚୁକ୍ତିପତ୍ରକୁ ନ ମାନି ବେଆଇନ୍ କାର୍ଯ୍ୟ କରିଯିବାକୁ। ଜୀବନରେ ସେ ଏଥିରେ ଅଭ୍ୟସ୍ତ ଥିବାରୁ ତାଙ୍କର ଏମିତି କଥା କହିବା ତାଙ୍କ ପକ୍ଷରେ ସହଜ ଅନୁଭବ ହେଲା ମାତ୍ର ମୁଁ ପାରିଲି ନାହିଁ। ଏ ଯେ ଅନ୍ୟାୟ କହି ମୁଁ ମୋ ସିଦ୍ଧାନ୍ତରେ ଅଟଳ ରହିଲି। ଏତେ ଲୋକ ଆସି ହାକିମଙ୍କ ଇଚ୍ଛା ପୂରଣ କରିବା ପାଇଁ ମୋ ଉପରେ ଚାପ ଦେଲେ ଯେ ମୁଁ ହତ୍‌ବାକ୍ ହୋଇଗଲି। ଯେଉଁ ବ୍ୟକ୍ତିର ପ୍ରତ୍ୟେକ ବଡ଼ ସହରରେ ଗୋଟାଏ ଗୋଟାଏ ସୌଧ, ଯାହାର ପୁତ୍ର ହଜାର ହଜାର ଟଙ୍କା ଆୟ କରେ, ଯାହାର ପରିଣୀତା କନ୍ୟା ସୁଖ–ସମୃଦ୍ଧିରେ ବିହ୍ୱଳା, ମଟର, ଟେଲିଫୋନ, ଆସବାସ ଆଦି ସର୍ବବିଧି ନିଧିରେ ଯାହାର ସଂସାର ପରିମଣ୍ଡିତ, ସେ ବ୍ୟକ୍ତି ଲୋଭ ସମ୍ବରଣ କରି ନ ପାରି ଯାଇଛନ୍ତି ଏତେ ଦୂରକୁ ଯେ ନ୍ୟାୟ ଅନ୍ୟାୟର ପାର୍ଥକ୍ୟ ବି ସେଠାରେ ସ୍ଥିର ରହୁନାହିଁ। ଏଇମାନେ ପୁଣି ଦିନେ ଶାସନତନ୍ତ୍ରରେ ରହି ନ୍ୟାୟ ବିତରଣ କରୁଥିଲେ ! ଏଇମାନଙ୍କ ବଂଶଧର ବି ଏବେ ଦେଶରେ ସକ୍ରିୟ ରହିଛନ୍ତି।

ଗରିବ ଚାଷୀ ଦିନାନ୍ତ କାର୍ଯ୍ୟ ସମାପନ କରି ପଖାଳ ଗଣ୍ଡେ ଖାଇ ଆରାମରେ ସ୍ୱପ୍ନହୀନ ନିଦ୍ରା ଯିବାଭଳି ମୁଁ କେତେ ସହଜ ଓ ସ୍ୱାଭାବିକ ଭାବରେ ପଞ୍ଚାବନ ବର୍ଷର ବୋଝକୁ ବୋହିନେଲି ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି। ଆନନ୍ଦ, ଶାନ୍ତି ଓ ଶୋଭାରେ ଚିତ୍ତକୁ ଶୋଭନୀୟ ରଖିବାକୁ ହେଲେ ପର ପ୍ରତି ଅସୂୟା ବର୍ଜନ କରିବାକୁ ହୁଏ, ଏ ତ ଶାସ୍ତ୍ରବାଣୀ।

ପୁଣି ଶିଳ୍ପୀର ସୃଜନୀଶକ୍ତି ସମନ୍ୱିତ ସେ ଚିତ୍ତରୁ ବିପୁଳ ନ ହେଲେ ବି ଝରି ଆସିଛି କେତୋଟି କ୍ଷୀଣ ଅଥଚ ଶାନ୍ତ ସୃଷ୍ଟିସ୍ରୋତ। ତାହା ହିଁ ଭଗବାନଙ୍କ ଉଦ୍ଦେଶ୍ୟରେ ମୋର ମହାପ୍ରୟାଣବେଳେ ପାଥେୟ ହୋଇ ରହିବ, ଏ ବିଶ୍ୱାସ ମୋର ଅଛି।

କେହି ମୋ ପାଖେ ଘୃଣ୍ୟ ନୁହନ୍ତି। ମୁଁ ହୁଏତ ବହୁ ଲୋକଙ୍କ ସପକ୍ଷରେ ଘୃଣ୍ୟ। ଏ ବିଚାରର ଆପେକ୍ଷିକ ସତ୍ୟ ଆଡ଼କୁ ମୁଁ ଯାଇନାହିଁ। ମୁଁ କେବଳ କହୁଛି ଶ୍ମଶାନରେ ଯେଉଁ ସମତା, ଯେଉଁ ନିର୍ବିଚାର, ଯେଉଁ ବୋଧିରେ ଜୀବନ ମୃତ୍ୟୁର କଳନା କରାଯାଏ, ସେ ପରିମାଣ ଜୀବନରେ ସମ୍ଭବ ହେଉନି କାହିଁକି, ଯଦିଓ ଶ୍ମଶାନ ସବୁ ଜୀବ ସ୍ପନ୍ଦନର ଅନ୍ତିମତାକୁ ବହନ କରେ।

ଆମେ ଅନ୍ୟମାନଙ୍କ ବିଷୟରେ ଯେତେ ଚିନ୍ତା କରୁ, ଯେତେ କୌତୂହଳ ପ୍ରକାଶ କରୁ ନିଜ ବିଷୟରେ ସେତିକି ଚିନ୍ତା କୌତୂହଳ ଥିଲେ, ଗଭୀର ଭାବରେ ଆତ୍ମପରୀକ୍ଷା ଆମ ପକ୍ଷରେ ସମ୍ଭବ ହୁଅନ୍ତା। ବହୁ ସମୟ ବ୍ୟୟିତ ହୋଇଯାଏ ଅକାରଣେ ଗଳ୍ପଗୁଜବ ସୃଷ୍ଟି କରିବାରେ। ଏହା ଜାତୀୟ ଶକ୍ତିର ଅପଚୟ ନୁହେଁ କି ? ଆମର ଅସହିଷ୍ଣୁ ପରଶ୍ରୀକାତର ମନୋଭାବ ଆମକୁ ସତତ ବିବର୍ଣ୍ଣ ଓ ବିଦୀର୍ଣ୍ଣ କରୁଅଛି।

ଥରେ ମୋର ଜଣେ ହାକିମ କୌଣସି ପରୀକ୍ଷା କେନ୍ଦ୍ରରେ ମୋର କର୍ମଦକ୍ଷତା (ଯାହାକି ଲୋକମୁଖରେ ତଥା ସମ୍ବାଦପତ୍ରରେ ବିଜ୍ଞାପିତ ହୋଇଥିଲା) ଦେଖି ଯେପରି କାର୍ଯ୍ୟାନୁଷ୍ଠାନ କଲେ ତାହା ମତେ ଘୋର କଷ୍ଟ ଦେଲା। ପ୍ରଶ୍ନପତ୍ର ନେଇଯିବା ପୂର୍ବରୁ ଆତ୍ମପ୍ରୌଢୀ ଓ କ୍ଷମତା ନିଶାରେ ବିଭୋର ଏଇ ଦୟନୀୟ ହାକିମ ମୋ ନିଯୁକ୍ତିକୁ ବାତିଲ କରି ଜଣେ ଅନଭିଜ୍ଞ ଅଳ୍ପବୟସ୍କ ବ୍ୟକ୍ତିକୁ ସେ ସ୍ଥାନକୁ ପଠାଇଲେ। ସେ କେନ୍ଦ୍ରରେ ମୁଁ ଶୃଙ୍ଖଳା ଆଣିଥିଲି ଜୀବନକୁ ବିପନ୍ନ କରି। ପରୀକ୍ଷା ଚାଲିଥିବାବେଳେ ସେଠାରେ କାଉ କୋଇଲିର ରାବ ନ ଥିଲା। ଈର୍ଷାତୁର ହୋଇ ହାକିମ ଯେଉଁ କାର୍ଯ୍ୟଟି କଲେ ତାହା ଯୋଗୁ ପୁଣି ସେ କେନ୍ଦ୍ରରେ ବିଶୃଙ୍ଖଳା ଦେଖାଗଲା। ଯେଉଁ ବ୍ୟକ୍ତି ସେଠାରେ ମୋ ପରିବର୍ତ୍ତେ ନିଯୁକ୍ତି ହେଲେ ସେ ପରୀକ୍ଷା ଶେଷ ହେବା ପୂର୍ବରୁ ସବୁ କାମ ଅଧସ୍ତନଙ୍କ ଉପରେ ପକାଇ ଗୃହକୁ ବାହୁଡ଼ି ଆସୁଥିଲେ। ଏତକ କୀର୍ତ୍ତି କରି ମୋ ପ୍ରତି ଅନ୍ୟାୟ ବିଧାନ କରି ସେ ହାକିମ ଏ ପ୍ରସଙ୍ଗର ଦୁଇଦିନ ପରେ କି ପ୍ରାୟଶ୍ଚିତ କଲେ, ତାହା ସେ ଜାଣନ୍ତି। ସେ ଶାନ୍ତିରେ ଥିଲେ କି ? ମନ କର୍ମରେ ଏଇ ଶାନ୍ତିର ଜାହ୍ନବୀ ଯଦି ପ୍ରବାହିତ ନ ହେଲା, ସେ ଜୀବନର ଧ୍ୟେୟ ଆଉ କଅଣ ରହିଲା ? ମୁଁ ସେତେବେଳେ ବିଚଳିତ ହୋଇ ନ ଥିଲି। କାରଣ ଏ ଦୁନିଆକୁ ଦେଖିବାକୁ ମୋର ବାକି ନାହିଁ।

ଏଭଳି ଦୁର୍ଭାଗ୍ୟ ଯେ ମୁଁ ଏକା ଭୋଗିଛି ଆଉ ଆପଣ ଭୋଗି ନାହାନ୍ତି, ତାହା ନୁହେଁ। ଆପଣ ବି ଭୋଗିଛନ୍ତି। କେବଳ ଆପଣ ଅପ୍ରିୟ ସତ୍ୟକୁ କହିବାକୁ ସାହସ ସଞ୍ଚୟ କରିନାହାନ୍ତି। ତେଣୁ ସେ ଲେଖାର ନାୟକ ମୁଁ ନୁହେଁ ଆପଣ। ଶତ ଅନ୍ୟାୟଜର୍ଜରିତ ମାନବଗୋଷ୍ଠୀ ଏହାର ନାୟକ।

ଜୀବନର ରହସ୍ୟ ଯେ କେତେ ଅନ୍ତର୍ଲୀନ ବସ୍ତୁ ତାହା ଆସ୍ୱାଦନ କରିବାକୁ ହେଲେ ଈଶ୍ୱର, ପ୍ରକୃତି ଓ ମାନବିକତା ସହିତ ସଂଯୋଗ ଓ ସାମ୍ୟ ରଖିବାକୁ ହେବ। ପ୍ରଭାମୟୀ କଲ୍ୟାଣୀ ନାରୀର କରସ୍ପର୍ଶ ଏ ଲଲାଟରେ ରେଖିତ ହୋଇଛି ବୋଲି ଏ ଜୀବନ ଅନୁଭବ କରିଛି ଓ କରୁଛି ସୂକ୍ଷ୍ମ ସୁକୁମାର ପ୍ରବୃତିର ଗଭୀର ସଂବେଦନା ଯାହାର ପ୍ରସାରଣ ରହିଛି ଦିବ୍ୟ ଅଧ୍ୟାତ୍ମ୍ୟ ଦିଗକୁ। ଆଉ ଯେଉଁମାନେ ନାରୀର ଅମୃତମୟ ହୃଦୟ ସମର୍ପଣକୁ ଘେନି ମଧ୍ୟ ତାକୁ ଶତଛିନ୍ନ ପୁଷ୍ପଦଳରେ ଧରାଲଗ୍ନ କରି ଦିଅନ୍ତି, ଅବା ସେହି ନାରୀର ନିକଟକୁ ଆସିବା ପାଇଁ ମେରୁଦଣ୍ଡହୀନ ପୌରୁଷର ବଡ଼ାଇ କରନ୍ତି, ସେମାନେ କାହୁଁ ଜାଣିବେ ଅନ୍ତର୍ମଧୁମୟ ରସୋଚ୍ଛଳ ସିନ୍ଧୁର ଶେଷ

ଶାନ୍ତ ଧରିତ୍ରୀଲଗ୍ନ ଊର୍ମିଟି ଭଳି ତାହା କେତେ ଆଶ୍ୱସ୍ତ ଓ ଅବାଙ୍‌ମାନସଗୋଚର ?

ଏ ମଥାକୁ ନତ କରିବାକୁ ମୁଁ ସବୁବେଳେ ପ୍ରସ୍ତୁତ ଥିଲି ସେଇ ସୁପୁରୁଷ ବ୍ୟକ୍ତିତ୍ୱ ନିକଟରେ ଯେ ବ୍ୟକ୍ତିତ୍ୱ ମୋର ବ୍ୟକ୍ତି ପୁରୁଷକୁ ସମ୍ମୋହିତ କରି ମୋତେ ଉଚ୍ଚ ପାରମାର୍ଥିକ ଆକାଙ୍‌କ୍ଷା ଭିତରକୁ ନେଇଯିବ । ପ୍ରାଚୀନ ଗ୍ରନ୍ଥକୁ ନମସ୍କାର କରେ ସେଥିପାଇଁ କାରଣ ସେଥିରେ ସୁଭାଷିତ ରହିଛି, ମାତ୍ର ବ୍ୟକ୍ତିତ୍ୱ ? ବ୍ୟକ୍ତିତ୍ୱ କହିଲେ ଆମ ଉପରେ ଯେଉଁମାନେ ଆସନ ମାଡ଼ି ବସିଛନ୍ତି ସେମାନଙ୍କ ଆଦର୍ଶ ତ ? କି ଆଦର୍ଶ ସେଠାରେ ଅଛି ? ବାରାଙ୍ଗନାର ତନୁକୁ ପଣ୍ୟ କରିବା ଭଳି ଏଇମାନେ ଏତେ ସ୍ୱାର୍ଥଜଡ଼ିତ, ଏତେ କ୍ଷମତାଲିପ୍ସୁ ଯେ ସ୍ୱଳ୍ପମାତ୍ର ସନ୍ତୋଷ–ଶିହରଣ ପାଇଁ ନିଜ ଆଦର୍ଶ ଓ ସଂସ୍କୃତିରୁ ବିଚ୍ୟୁତ ହେବାକୁ ଏମାନେ ତିଳେମାତ୍ର ଦ୍ୱିଧା ବୋଧ କରନ୍ତି ନାହିଁ ।

ଆଜି ନବୀନ ଲେଖକକୁ ଦେଖିଲେ ମୁଁ ଆନନ୍ଦ ପାଏ, ଆଶୀର୍ବାଦ କରେ, ନବୀନ ଶାସକକୁ ଉତ୍ସାହିତ କରେ, ନବୀନ ଯୁବ କର୍ମୀକୁ ଦେଖିଲେ ଦେଶର ଆଦର୍ଶରେ ତାଙ୍କୁ ଅନୁପ୍ରାଣୀତ କରିବାକୁ ଚେଷ୍ଟା କରେ । ତାହା ମୋ ଜୀବନର ଧର୍ମ । ଅଥଚ ଅନ୍ତିମ ଶୋଭାରେ ରଞ୍ଜିତ ମୋ ଜୀବନ ଯେତେବେଳେ ଆଦ୍ୟ, କିଶୋର ଓ ଯୌବନ ଶ୍ରୀରେ ରସାଣିତ ଥିଲା, ସେତେବେଳେ ମତେ ସାମାନ୍ୟ ମାତ୍ର ଉତ୍ସାହ, ପ୍ରେରଣା ଓ ଜୀବନନିଷ୍ଠ ସମ୍ବେଦନା ଦେବାକୁ କେହି ବାହାରି ଆସି ନଥିଲେ । ଏକଥା ଆଜି ଜୀବନ ପ୍ରାୟ ଅରୁଣିମା ତଳେ ମତେ ସ୍ମରଣ କରିବାକୁ ପଡୁଛି । ନିଃସ୍ୱଭାବରେ ଦାଣ୍ଡେ ଦାଣ୍ଡେ ବୁଲି ମୁଁ ମାଟି ଧୂଳିରୁ ସଂଗ୍ରହ କଲି ସାର୍ଥକ ବଞ୍ଚିବାର ଅଭୀପ୍‌ସା । ମୋର ସଦ୍‌ଗୁରୁ କେତେଜଣ କର୍ମନିଷ୍ଠ ଓ ପ୍ରଜ୍ଞାବାନ୍ ତଦାନୀନ୍ତନ ଶିକ୍ଷକ ଓ ଅଧ୍ୟାପକଙ୍କ ବ୍ୟତୀତ ଅନ୍ୟ କେଉଁ ଉତ୍ସରୁ ଏ ମହାର୍ଘ ଅନୁଭବ ମୁଁ ପାଇ ନ ଥିଲି ।

ଆଜି ଯେଉଁମାନେ ମୋ ଭାବନାକୁ ମୋଠାରୁ ଛଡ଼ାଇ ନେଇ ସହୃଦୟ ଭାବ ଅଭିବ୍ୟକ୍ତିରେ କହୁଛନ୍ତି, "ହଃ– କେତେଦିନ ଏ ଟାଣ ରହିବ ? ରିଟାୟାର୍ କଲେ ସବୁ ମଉଳି ଯିବନି କି ?" ସେମାନଙ୍କୁ ମୋର ବିନୀତ ପ୍ରାର୍ଥନା ଯେ ସୃଷ୍ଟିର ମୂଳ ସୂତ୍ରକୁ ସେମାନେ ବିସ୍ମୃତ ହୁଅନ୍ତୁ ନାହିଁ । ପ୍ରକାଶ ଯେଉଁଠି ଅଛି, ଉଦ୍‌ଭାସ ଯେଉଁଠି ଅଛି, ତା' ସହିତ ଅତି ରହସ୍ୟାବୃତ ହୋଇ ରହିଛି ମଉଳିବାର ସ୍ୱାଭାବିକ ଶୋଭା । ଏ ଆପଣଙ୍କର ମନ କଥା ମୁଁ ଲେଖୁଛି । ଯେ ବ୍ୟକ୍ତି ଜୀବନର ପ୍ରତ୍ୟେକ କ୍ଷଣଟିକୁ ସର୍ବମୟ କଳା ନୈପୁଣ୍ୟ ଓ ଚେତନାରେ ଅତିବାହିତ କରେ ଏବଂ ସେହି କ୍ଷଣର ଝଡ଼ଝଞ୍ଜା, ସୁଖ–ଦୁଃଖ, ଶାନ୍ତି–ଅଶାନ୍ତିକୁ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପଣ କରି ନିଶ୍ଚିନ୍ତମାନସରେ କର୍ତ୍ତବ୍ୟ କରିଯାଏ, ତା'ପକ୍ଷରେ ଅବସର ହେଉ ବା ଅନବସର ହେଉ, ହତଚକିତ ହେବାର ଆଶଙ୍କା ରହିବ କି ?

କେତେବେଳେ ଆମେ ବିଭ୍ରାନ୍ତ ହେଉ ? ଯେତେବେଳେ ଜୀବନ –ନୌକା କାଣ୍ଡାରୀହୀନ ହୋଇ ଗତି କରୁଥାଏ । ପଞ୍ଚାବନ ବର୍ଷର ପ୍ରଜ୍ଞା, ବୋଧି ଓ ସହ୍ୟ ଅସହ୍ୟ ଅନୁଭବ କଅଣ ଏତିକି ଦିଗ୍‌ଦର୍ଶନ ଦେବ ନାହିଁ ? ସୂର୍ଯ୍ୟାସ୍ତର ସେହି ସୂର୍ଯ୍ୟ ଓ ଉଦୟକାଳୀନ୍ ସେହି ବାଳଭାନୁ ଏକା ତ ? ତଥାପି ମଣିଷ ଭୁଲ୍ ବୁଝେ ଓ ଦୁଃଖ କରେ ଏବଂ କହେ "ମୁଁ କାହିଁକି ଅସ୍ତ ଯିବି ?" କାରଣ ଅସ୍ତଦୃଶ୍ୟ ସହିତ ନୈରାଶ୍ୟ ଓ ବେଦନାକୁ ସେ ମିଶାଇଦିଏ । ଶେଷ ହେବାର ପୂର୍ବ ମୁହୂର୍ତ୍ତରେ ଯେ ଉତ୍‌ଫୁଲ୍ଲତା ରହିଛି, ତାହା ହିଁ ଜୀବନର ସବୁ ପଥଚଲାର ଅନ୍ତିମ ବେଣୁଧ୍ୱନି ନୁହେଁ କି ?

■■■

# ପୂଜାପୁଷ୍ପ ଓ ଉଷାର ଆବାହନ

ମୁହୂର୍ତ୍ତକ ଭିତରେ ସବୁ ଘଟି ଯାଇଥିଲା।

ଏ ଜୀବନ ମୁହୂର୍ତ୍ତମୟ। ନୁହେଁ କି ? କ୍ଷଣ କ୍ଷଣ ହୋଇ ବହୁ କ୍ଷଣ। ଏହି ଗୋଟିଏ କ୍ଷଣ– ପରିଧିରେ ମହାକାଳ ବିଶ୍ୱ–ବିଶ୍ରୁତ ଇତିହାସ ରଚନା କରିଦିଏ।

ନା, ମୁଁ ସେ ସବୁ କଥା କହୁ ନାହିଁ। ସେ ତ ଦର୍ଶନର କଥା। ମୋ ଭଳି ଅଳ୍ପ ଜ୍ଞାନୀ ବ୍ୟକ୍ତି ତାହାର ସମୀକ୍ଷା କରିପାରିବ ନାହିଁ। କିନ୍ତୁ ଏତିକି ମନେ ହୁଏ, ବାସ୍ତବ ଦର୍ଶନର ଏତେ ପାଖାପାଖି ଯେ ଦୁଇଟାରୁ ଗୋଟିକୁ ବିଚ୍ଛିନ୍ନ କରିହେବ ନାହିଁ ସହଜରେ....

ପୁଣ୍ୟତୋୟା ମହାନଦୀର ତଟ ପ୍ରାନ୍ତରେ ବିରାଜିତ ବିଶାଳ ବିଦ୍ୟାସୌଧ। ସେହିଠାରୁ ଚାହିଁଦେଲେ ଅନ୍ତରୀକ୍ଷସ୍ପର୍ଶୀ ଏହି ଜଳାଧାର ମାନବ ମନର କଳୁଷ ସଂହାରକ ବୋଲି ମନେହୁଏ।

ଶ୍ରାବଣରେ ପୂର୍ଣ୍ଣଗର୍ଭା, ବୈଶାଖରେ କ୍ଷୀଣଧାରା, ବସନ୍ତରେ ଜ୍ୟୋତ୍ସ୍ନା ମଣ୍ଡିତ ଏହାର ପାଲଧରା କ୍ଷେପଣୀ, ଆଉ ସନ୍ଧ୍ୟାରେ ଅନ୍ତିମ ସୂର୍ଯ୍ୟସ୍ନାନ ବର୍ଣ୍ଣଳ ମନୋରମ ଆବେଗ ଯେପରି ଦେହ ମଧ୍ୟଦେଇ ଆତ୍ମାକୁ ସ୍ପର୍ଶ କରିଯାଏ, ଏଇ ଅନୁଭବ ଆସେ।

ଚନ୍ଦ୍ରାକୁ ଦେଖିଲି। ଅଧ୍ୟାପିକା। ମୋରି କୁଟୀର ପାଖେ ତାର ବାସ। ସେ ଚାଙ୍ଗୁଡ଼ିଟିଏ ଧରି ଫୁଲ ତୋଳିବାକୁ ଚାଲି ଆସିଛି ତାର ସଯତ୍ନ ପାଳିତ ଛୋଟ ଉଦ୍ୟାନ ଭିତରକୁ। ସବୁ ପ୍ରଭାତରେ ସେ ନିର୍ଦ୍ଦିଷ୍ଟ ସମୟରେ ପୁଷ୍ପ ଚୟନ କରେ। ଫୁଲ ସେ ଭଲ ପାଏ, ଆଉ ଭଲପାଏ ତାର ଦେବତାକୁ।

ଦେଖିଲି ଅଦୂରରେ ଝଙ୍କାଳିଆ ଆମ୍ବଗଛ ମୂଳେ ଯାହାର କୁଟୀର, ସେ କୁଟୀରର ବି କବାଟ ଖୋଲା। ଏ ଆମ୍ବଗଛର ମହିମା ଯେପରି, ଯେତେ ଏହାର ଅଭ୍ୟନ୍ତରକୁ ନିରୀକ୍ଷଣ କରୁଥିବ, ସେତିକି ରହସ୍ୟ ଘନ ନୀଳିମାରେ ତାର ବକ୍ଷକୁ ତୁମର ନେତ୍ର ପାଖେ ସେ ଉନ୍ମୁକ୍ତ କରୁଥିବ।

ବିଭୋର ହୋଇ ମୁଁ ଦେଖେ ଏ ନୀଳିମ ପ୍ରସାରକୁ। ସେହି କୁଟୀର ବାସିନୀ ପଦ୍ମାକୁ ଦେଖିଛି ବହୁବାର। ଆମ୍ରବୀଥିର ଘନ ଉତ୍କଣ୍ଠା ସହିତ ପଦ୍ମାର ନିଜ ତନୟା ପ୍ରତି ଉତ୍କଣ୍ଠାକୁ ତୁଳନା କରିଛି... ହସିଛି...

ଝିଅଟି ପାଇଁ ତାର ମମତାଭରା ଆପ୍ୟାୟନ....

—ପବନ କେଡ଼େ ବେଗରେ ବହୁଛି, ଦେଖୁଛ ତ ?

—କାଇଁ ନା ତ ?

—କଅଣ ତମେ ଜାଣି ପାରୁନ ? କାହିଁକି ଯେ ବାପ ହେଲ ?

—ପବନର ବେଗ ମାପିବା କଅଣ ବାପତ୍ୱର ପରିଚୟ ?

—ଥଟ୍ଟା ଥାଉ; ଏତେ ପବନରେ ଟିକିଲିକୁ କାନ୍ଧ ଉପରେ ବସାଇଛ ?

ଘରକୁ ଆସ।

ପଦ୍ମାର ସ୍ୱାମୀ ପ୍ରତି ଏ ଅଭିନବ ତିରସ୍କାର ମୋ ପ୍ରାଣରେ ଦିଏ ଆନନ୍ଦ।

ସ୍ୱାମୀ ଅଧ୍ୟାପକ; ଜ୍ଞାନଗର୍ଭ କଥା କୁହନ୍ତି; କହିବା ବି ସ୍ୱାଭାବିକ।

— ଏମିତି କରି କରି ତାକୁ ଶେଷରେ ପଙ୍ଗୁ କରିଦେବେ। ସେ ଆଲୁଅ ଦେଖିଲେ ଡରିଲା, ଅନ୍ଧାର ଦେଖିଲେ ଡରିଲା, ପାଣି ଦେଖିଲେ ଚିତ୍କାର କଲା, ପବନ ଦେହରେ ବାଜିଲେ ତମେ ଚିତ୍କାର କଲ। ସେ

ମଣିଷ ହେବ କେମିତି ? ରୁଷୋଙ୍କ ଏମିଲି ବହିପଢ଼ ଥରେ, ଜାଣିବ ପିଲାଙ୍କୁ ଯେତିକି ପ୍ରକୃତି ସହିତ ମିଶେଇବ, ଯେତିକି ଖରା, ବର୍ଷା, ଶରତ, ବସନ୍ତରେ ତାଆରି ବକ୍ଷ ଭିତରେ ପାଳନ କରିବ, ସେତିକି ସେ ଶିଶୁ ହେବ ସବଳ ଓ ସମର୍ଥ। ତମେ ଯାହା କରୁଛ ନା ?

ବେଶ୍ ଲାଗେ ସନ୍ତାନ ପାଇଁ ଦୁଇ ବୀପରିତ ମାର୍ଗରୁ ଦୁଇ ସ୍ନେହ—ଝରଣାର କୁଳୁକୁଳୁ ତାନ ଶୁଣିବାକୁ। ବହୁବାର ଶୁଣିଲି ଏମାନଙ୍କ ମନର ଝଙ୍କାର ଟିକିଲିକୁ କେନ୍ଦ୍ରକରି.... ଆନନ୍ଦ ମଧୁର ସେ ପରିବେଶ।

ତୃତୀୟ କୁଟୀର। ଶାନ୍ତ ସ୍ତବ୍ଧ। ସମୟେ ସମୟେ ଦେଖେ ପତି—ପତ୍ନୀ ବଗିଚାକୁ ପରିଷ୍କାର କରୁଛନ୍ତି। ଛୋଟ ପୁଅ ଝିଅ ଘୂରି ବୁଲୁଛନ୍ତି ତାଙ୍କ ଚାରିପଟେ।

ଏପଟେ ଗଢ଼ି ଉଠୁଛି ଉତ୍ତୁଙ୍ଗ ସୌଧ; ଛାତ୍ରାବାସ, ଛାତ୍ରୀନିବାସ, ପୁସ୍ତକାଗାର କେତେ କଅଣ। ଇଟା, ସିମେଣ୍ଟ, ମାଟି, କାଠ, ଲୁହାର ଜଙ୍ଗଲ। କେତେ ଉଚ୍ଚ ହେବ କିଏ କହି ପାରିବ ? କେତେ ଦୈର୍ଘ୍ୟ କେତେ ପ୍ରସ୍ଥ ! !

ଦିନ ରାତି ଚାଲିଛି ନିର୍ମାଣ କାର୍ଯ୍ୟ। ରାଜମିସ୍ତ୍ରୀ, ବଢ଼େଇ, ରଙ୍ଗକାରୀ, ସ୍ଥପତି— ସମସ୍ତେ ନିର୍ମାଣ କରୁଛନ୍ତି ଅନୁଷ୍ଠାନକୁ। ଏବେ ପ୍ରକୋଷ୍ଠଗୁଡ଼ିକ ଶୂନ୍ୟଗର୍ଭ ଦେଖାଯାଉଛି; ସମୟ ଆସିବ ଚହଲି ଉଠିବ ଏଗୁଡ଼ିକର ଅଭ୍ୟନ୍ତର।

କେବଳ ନିର୍ମାଣ ବ୍ୟତୀତ ଆଉ ତ କାହିଁ କିଛି ମୋ ଆଖିରେ ପଡୁ ନଥିଲା ? କାହାପାଇଁ ଏ ଆକାଶଚୁମ୍ବୀ ସୌଧ, କେଉଁମାନେ ଏଥିର ହେବେ ବିଦ୍ୟାର୍ଥୀ ? ଜ୍ଞାନାର୍ଜନ ସହିତ ଏଡ଼େ ବିଶାଳ ବୃହଦାକାର ନିକେତନର କି ସମ୍ବନ୍ଧ ?

ଥରେ ବୋଧହୁଏ ଉତ୍କଳମଣି ଏହି କଥା ଭାବି ବନ—ନିକୁଞ୍ଜକୁ ଗ୍ରହଣ କରିନେଲେ ଶିକ୍ଷାଦାନର ସାର୍ଥକ ଭୂମି ଭାବରେ। ସେ ଚିନ୍ତା କଲେନି ବିରାଟ ଦେବାଳୟର କଥା; ସେ ଚିନ୍ତାକଲେ ପ୍ରଥମ ବିଗ୍ରହର ରୂପ ଓ ତାହାର ଅନ୍ତର୍ନିହିତ ସାତ୍ତ୍ୱିକତାର କଥା।

ସେ ମନ୍ଦିରରୁ ଯେଉଁମାନେ ଉତ୍ତୀର୍ଣ୍ଣ ହେବେ, ସେମାନେ ହେଲେ ତ୍ୟାଗୀ, ସେମାନେ ହେଲେ ସେବକ। ମାଟିରୁ ସେମାନେ ଜନ୍ମ ନେଇଥିଲେ, ପ୍ରକୃତିକୁ ଗୁରୁ କରିଥିଲେ, ଈଶ୍ୱରଙ୍କୁ ନମସ୍କାର କରୁଥିଲେ।

ପୁରୁଷ ସ୍ତ୍ରୀ ଶ୍ରମିକ। ଉପରକୁ ଉଠାଇଛନ୍ତି ଇଟା ସ୍ତୂପ। ଉପରେ... ଉପରେ.... ଆହୁରି ଉପରେ....

ସେଦିନ ପ୍ରଭାତଟି ଅତି ମଂଜୁଳ ଥିଲା। ଚାରିଆଡ଼େ ସ୍ତବ୍ଧ ଶାରଦ ଆପାୟନ। ଝିଅ ଅଳକା ହାତରେ ଅଞ୍ଜଳିବଦ୍ଧ ସଦ୍ୟ ବୃନ୍ତଚ୍ୟୁତ ପୁଷ୍ପରାଜି। ପ୍ରତିବେଶିନୀ ଚନ୍ଦ୍ରାର ଚାଙ୍ଗୁଡ଼ିରେ ଗୋଲାପ, ମନ୍ଦାର ଓ କନିଅର ଗୁଚ୍ଛ।

ମହାନଦୀର ବକ୍ଷରୁ ଶୀତ ସମୀରର ପ୍ରବାହ ସ୍ପର୍ଶ କରୁଛି ଦେହ ମନକୁ। ସୂର୍ଯ୍ୟ ଉଠିନାହାନ୍ତି। ଅଥଚ ବିଦ୍ୟା ନିକେତନର ଇଂଜିନିୟର ଯେ ଏହାକୁ ଉତ୍ତୁଙ୍ଗ କରି ଗଢୁଛନ୍ତି, ସେ ଉପସ୍ଥିତ କର୍ମକ୍ଷେତ୍ର ଉପରେ। ପ୍ରାୟ ଶତାଧିକ ଶ୍ରମିକ, ପୁରୁଷ ନାରୀ ଆରମ୍ଭ କରିଛନ୍ତି ନିର୍ମାଣ କାର୍ଯ୍ୟ।

ସେମାନଙ୍କ ନୀରବ କଥାବାର୍ତ୍ତା କ୍ରମେ କୋଳାହଳକୁ ଆସିଗଲା ହଠାତ୍। ସବୁ ଆଡ଼େ ରେ... ରେ...ରାବ, ଧର, ଧର, ମାର, ମାର, ପିଟ, ହତ୍ୟାକର, ମାର... ମାର।

ମୁଁ ସ୍ତବ୍ଧ ନିର୍ବାକ। ପ୍ରଭାତର ଅରୁଣିମା ମ୍ଳାନ ହୋଇଗଲା। ମହାନଦୀର ଜଳକଲ୍ଲୋଳ ହେଲା ସ୍ତିମିତ, ପ୍ରକୃତି ଭୟାର୍ତ୍ତ। ଏ କଅଣ ହେଲା ?

ଏ ପରିପ୍ଲାବନ ପ୍ରଭାତରେ ଏତେ ଲୋକଙ୍କ ଏ ହିଂସାର କାରଣ କଅଣ ? କାହିଁକି ଏମାନେ ଏପରି ହାଣ, ହାଣ, ମାର, ମାର ଶବ୍ଦରେ ଏ ଭୂମିକୁ ପ୍ରକମ୍ପିତ କରୁଛନ୍ତି ?

ଚନ୍ଦ୍ରା ଆସନ୍ନ—ପ୍ରସବା। ଅଳକାର ହୃଦୟରେ ଦେବପୂଜାର ଭକ୍ତିରସ ତୁଷାରସମ ଜମାଟ ବାନ୍ଧି ହୋଇଛି। ଯେଉଁ ଚନ୍ଦ୍ରା ନବଜାତକର ଧରଣୀ ସ୍ପର୍ଶକୁ ଆବାହନ କରି ପୁଷ୍ପ ଗୁନ୍ଥେ, ଦେବପୂଜା କରେ, ସେ ଏକ୍ଷଣି ହିମ

ଶୀତଳ । ସେପଟେ ପଦାଘର ଭିତରକୁ ଦଉଡ଼ି ପଳାଇଛି, ଅବଶ୍ୟ ଟିକିଲିକୁ ସ୍ୱାମୀ କାନ୍ଧରୁ ଝାଂପି ନେଇଛି ।

ସବୁଜ ସ୍ନିଗଧ ଦୂର୍ବାଦଳର ଆଘ୍ରାଣ ପାଇ ଏବଂ ସାମାନ୍ୟ ମେଘ ମେଦୁର ଆକାଶକୁ ଦେଖି ପଥହୁଡ଼ା ଗୋଟିଏ ନିରୀହ ଶଶକ ମହାନଦୀ ପଠା ଉପରୁ ଚାଲି ଆସିଛି ପାଞ୍ଚଶତ ବିଶିଷ୍ଟ ଜନସଂଖ୍ୟାସେବିତ ବିଦ୍ୟାମନ୍ଦିର ନିର୍ମାଣ କାର୍ଯ୍ୟରେ ରୋମାଞ୍ଚକ ଏଇ ଭୂମି ଉପରକୁ ।

ଅନନ୍ତ ହିଂସାରେ ବୁଭୁକ୍ଷିତ ଏଇ ଜନସମାଜର ଆଖିରେ ପଡ଼ିଗଲା ନିରୀହ ଅସହାୟ ଠେକୁଆଟି । ଆଉ କିଏ ସମ୍ଭାଳେ ?

ଯେଉଁ ହାତ ଲୁହାଛଡ଼ ଭାଙ୍ଗେ ମାଂସପେଶୀର କର୍କଶ ଆକର୍ଷଣରେ, ଯେଉଁ ହାତ ପଥର କାଟେ ଆୟୁଧ ଘେନି, ଯେଉଁ କଣ୍ଠ ହୁଁକାର ବଡ଼ କାଠଗରକୁ ଉଠାଇ କାନ୍ଧରେ ରଖିବାକୁ ଶକ୍ତି ଯୋଗାଇ ଥିଲା, ସେହି ହାତ ଆଉ କଣ୍ଠରେ ରେ କାର ରବ କରି ହତ୍ୟା କରିବାକୁ ଉଦ୍ୟତ ହେଲା ଗୋଟିଏ ଠେକୁଆକୁ ।

ଚକ୍ରବତ୍ ଘୂରି ବୁଲିଲା ପ୍ରାଣୀଟି । ଶତାଧିକ ଲୋକ ଯେଉଁଠି ତାର ପଛରେ ହ୍ରେଷାରବ କରି ଧାଇଁଛନ୍ତି, କାହା ହାତରେ ଲୁହାଛଡ଼, କାହା ହାତରେ ଭଙ୍ଗାଇଟା, କାହା ହାତରେ ଗୋଟା ବାଉଁଶ– ହିଂସାର ପ୍ରଳୟ ଝଡ଼ ବହିଗଲା ।

ଧୀରେ ଧୀରେ ସ୍ତିମିତ ହୋଇ ଆସିଲା ପ୍ରକୃତି ପକ୍ଷର ଗୋଟିଏ ଛୋଟ କୋମଳ ପ୍ରାଣୀର ହାତ ଗୋଡ଼ର ଗ୍ରନ୍ଥିରାଜି । କ୍ଷିପ୍ରତା କ୍ରମେ କମି ଆସିଲା ।

ଏତିକିବେଳେ କେଉଁ ଶକ୍ତିଶାଳୀ ଜୁଆନର ଗୋଟିଏ ଟେକା ମାଡ଼ରେ ତାର ଗୋଡ଼ଟି ଛୋଟା ହୋଇଗଲା । ସେହିଠାରେ ସେ ପଡ଼ିଗଲା, ଦୁଇଥର ମାତ୍ର ସେ ମଥା ଉଠାଇ ପ୍ରମାଣ କଲା ତାର ସୃଷ୍ଟିକର୍ତ୍ତାଙ୍କୁ ଆଉ ଏଇ ଜନତାକୁ, ଯେଉଁମାନେ ଗୋଟିଏ କ୍ଷୀଣପ୍ରାଣ ପ୍ରାଣୀକୁ ନିଧନ କରିବା ପାଇଁ ରଣସଜ୍ଜା କରିଥିଲେ ଏତେବେଳ ଯାଏ ।

ତାପରେ ସେ ଧରଣୀ ସ୍ପର୍ଶ କଲା ବୋଧହୁଏ ଟିକିଏ ହସି ଦେଇ । ସେତିକିରେ ତାର ଭାଗ୍ୟଲିପି ଶେଷ ହେଲାନାହିଁ ।

ତାର ଲାଙ୍ଗୁଡ଼କୁ ଟେକି ବୀର ଦର୍ପରେ ଇଂଜିନିୟର ଆସିଲେ ମୋ ଆଡ଼େ । ପଛରେ ଶତାଧିକ ଦେଖଣାହାରୀ ଓ ନିଧନକାରୀ ।

ସୂର୍ଯ୍ୟ ମ୍ଳାନିମା ପରିତ୍ୟାଗ କରି ଉଠିଲେ ସବୁଦିନିଆ ଚଲା ପଥରେ...

ମୋ କ୍ୱାଟର ସାମ୍ନା କାନ୍ଥ ଉପରେ ତାକୁ ଶୁଆଇ ଦେଲେ ଇଂଜିନିୟର, ଯେଉଁ କ୍ୱାଟରର କାନ୍ଥରେ ଏବେ ବି ଛିଟା ଚିହ୍ନ ଲାଗି ରହିଛି । ସେତେବେଳେ ଶିକାରୀମାନେ ଶଶକ ଶିକାର କରୁ ନଥିଲେ, କରୁଥିଲେ ସ୍ୱୟଂ ଅଧିକର୍ତ୍ତାଙ୍କୁ, କଲେଜର ତତ୍ତ୍ୱାବଧାରଙ୍କୁ ।

ଆସନ୍ନ–ସଂଭବା ଚନ୍ଦ୍ରା ଚିତ୍‌କାର କରି ଫେରି ପଡ଼ିବା ମାତ୍ରେ ହେଲା ମୂର୍ଚ୍ଛିତା । ଅଳକା ହାତରୁ ପୂଜାପୁଷ୍ପ ଖସି ପଡ଼ିଛି । ମୋର ଆଖି କୋଣରେ ଗୋଟିଏ ସାର୍ଥକ ବିନ୍ଦୁ ପରମପୁରୁଷଙ୍କ ଉଦ୍ଦେଶ୍ୟରେ ଖଚିତ ହୋଇଗଲା ।

ମହାନଦୀର ସମୀର ମୃତ ଶଶକର ଅନୁପମ ଲୋମଗୁଡ଼ିକୁ ଉଡ଼ାଉଥାଏ ଧୀରେ....

ସେହିକ୍ଷଣରେ ଭାବିଲି... ପ୍ରଭୁ ତୁମେ ସର୍ବ ପ୍ରକାର ବିକାଶ ପଥରେ ପୂର୍ଣ୍ଣଛେଦ ପକାଇ ଦେଲ... ଯେଉଁଠି ଈର୍ଷା, କୁତ୍ସା, ଅମନୁଷ୍ୟତାର ଏତେ ପ୍ରାବଲ୍ୟ, ସେଠାରେ ଗୋଟିଏ ଛୋଟ ପଶୁ ଶିଶୁକୁ ବି ମୁକ୍ତି ମିଳିବ କିପରି ?

ଅଭିଶପ୍ତ, ଅଭିଶପ୍ତ, ଅଭିଶପ୍ତ ।



# ଚାଲ ମନ ବୃନ୍ଦାବନ

ସମର ସିଂହ ମଧ୍ୟବର୍ତ୍ତୀ ନିର୍ବାଚନରେ ହାରି ଯାଇଛନ୍ତି ।

ସମର ସିଂହ ବାସ୍ତବରେ ସିଂହ । ସେ ପୁଣି ହାରିଗଲେ ? କଅଣ ତାଙ୍କର ଅଭାବ ଥିଲା ? ଆତ୍ମ–ବିଶ୍ୱାସ ? ନା ତା ବୁଦ୍ଧି ? ନା ତା ନେଇ ଆଣି ଥୋଇବା ବ୍ୟାପାରରେ କସରତ୍ ? ନା ତା ଅର୍ଥ ? ତା ବି ନୁହେଁ ।

ବନ୍ଧୁବର୍ଗ ଯେଉଁମାନେ ଉସୁକାଇ ଆସିଛନ୍ତି ସିଂହ ଛିଡ଼ା ହେବା ମାନେ ଜିତିବା, ସେମାନେ ତାଙ୍କର ପରାଜୟରେ କହୁଛନ୍ତି – ଭଲ ହୋଇଛି, କାରଣ ଆରଥରକୁ ସେ ଜିତିବେ, ନହେଲେ ଆରଥରକୁ ।

ସମର ସିଂହ ଯେଉଁଦିନ ଏ ଅଗ୍ନି ଝଲସକୁ ଡେଇଁଲେ, ସହଧର୍ମିଣୀ ବିଶାଖା ସିଂହ କହିଥିଲେ – 'ତମେ ଏ ପଶା ଖେଳକୁ ଡିଅଁ ନାହିଁ, ସବୁ ହାରିବ ଆଉ ଶେଷକୁ ମତେ ବି ଦ୍ରୌପଦୀ ପରି ବିବସନା କରି ଛାଡ଼ିବ ।' ସିଂହ ସେତେବେଳେ ସାମାନ୍ୟ ଏକ ନାରୀର ତୁଚ୍ଛ ତାତ୍ସଲ୍ୟକୁ ଖାତିର କରି ନଥିଲେ ।

ବରଂ ବିରକ୍ତ ହୋଇ କହିଥିଲେ – ପାର୍ଟି ଫଣ୍ଡରୁ ଟଙ୍କା ଆସିବ, ଅଧା ରଖି ଅଧାରେ ବଣିଜ କରିବି, ତୁମେ ମତେ ସାହାଯ୍ୟ କରିବ କଅଣ, ମତେ ପୁଣି ପଛକୁ ଟାଣୁଛ, ହଇଏ ପୁରୁଷ ଯେତେବେଳେ ମୁଁ, ଆକାଙ୍କ୍ଷା କରିବି ନାହିଁ ମନ୍ତ୍ରୀ ପଦକୁ ?

ପ୍ରଶ୍ନଟା ହେଲା କେଉଁ ଦଳରେ ସେ ନାଆଁ ଲେଖିବ ? ନିର୍ଦ୍ଦଳୀୟ ? ନା, ସେଥିରେ ତୁରନ୍ତ ମନ୍ତ୍ରୀ ହେବାର ଅବକାଶ ନାହିଁ । ଏ ଜୀବନରେ ଯଦି ଗୋଟାଏ ମନ୍ତ୍ରୀ ଭୋଗ ନ ମିଳିଲା, ସେ କି ଜୀବନ ! ତେବେ କେଉଁ ଦଳ ?

ଅନ୍ଧକାର ରାତ୍ରି । ନୀରବ ହୋଇ ବସିଛନ୍ତି ସମର ସିଂହ । ମଥାଟା ତାଙ୍କର ଗରମ ଚୂଲୀ । ଭାବନାଗୁଡ଼ାକ ସେ ଚୂଲୀ ଭିତରେ ପୋଡ଼ି ଛାରଖାର ହୋଇ ଯାଇଛି; ପୁଣି ନୂଆ ଭାବନାର ସ୍ରୋତ । ପୁଣି ପୋଡ଼ାଜଳା... ହା.... ହୁତାଶ ।

କାହା ବା କେଉଁ ଦଳ ସାହାଯ୍ୟରେ ସେ ନିର୍ବାଚନ ଲଢ଼ିବେ ? ଆଚ୍ଛା ତାଙ୍କର କଅଣ ଚରିତ୍ରଗତ କିଛି କଳଙ୍କ ଅଛି ? ପ୍ରତିପକ୍ଷ ତ ନିଶ୍ଚୟ ସଂଗ୍ରହ କରିବ ତାଙ୍କ ଅତୀତର ଭୁଲା ଅଭୁଲା ସ୍ମୃତି....

ପୁଲିସ ଲକ୍ ଅପ୍ ଭିତରେ ତରୁଣ ସମର ସିଂହ । ସେ ସଞ୍ଜ ଥିଲା ରଜତଶୁଭ୍ର । ପଛକୁ ମୁହଁ ଫେରାଇଲେ ସିଂହ । ସ୍ପଷ୍ଟତଃ ଦେଖା ଯାଉଛି କୁମୁଦିନୀର ମୁହଁ । ଆଃ, କି ସାବଲୀଳ ସୁଠାମ ମୁହଁଟି । ମଥା ଉପରୁ ଦୁଇଧାର ବେଣୀ ଲମ୍ବି ଆସିଛି । ଚମକି ପଡ଼ିଲେ ସମର ସିଂହ ।

"ନା ନା, କୁମୁଦିନୀ, ତୁ ପୁଲିସକୁ ଆଉ କିଛି କହ ନାହିଁ । ତୋର ସତୀତ୍ୱ ମୁଁ ନଷ୍ଟ କରିଛି, ମୁଁ ତତେ ବିବାହ କରିବି । ମୁଁ ମାଟ୍ରିକ୍ୟୁଲେସନ ପାଶ୍ କରିଛି, ଯିମିତି ହେଲେ ତତେ ପୋଷି ପାରିବି ।"

ଧଡ଼ାସକିନା ସିଂହଙ୍କର ଗଣ୍ଡଦେଶରେ ପ୍ରଚଣ୍ଡ ଆଘାତ ପଡ଼ିଲା ପୁଲିସର । କୁମୁଦିନୀର ବାପା ଗର୍ଜି ଉଠିଲେ – ତାକୁ ଗୁଳିକରି ଦିଅ । ମୋ ଝିଅ ଖରାବେଳେ କୂଅମୂଳକୁ ପାଣି ଆଣିବାକୁ ଯାଇଥିଲା, ସେତିକିବେଳେ ସେ ରାକ୍ଷସ...

ସିଂହ ଦେଖିଲେ ଆକାଶ ତାରାହୀନ। ଏତେ ଶୁଭ୍ରତା ଭିତରେ ସେଗୁଡ଼ାକର ଆତ୍ମବିଲୁପ୍ତି ଘଟିଯାଇଛି, ଯିମିତି ତାଙ୍କର ଦିନେ ଘଟିଥିଲା ବନ୍ଧୁ ସନାତନ ସହିତ। ଚାଲିଗଲେ ସମର ସେଇ ଅନୁତାପଦଗ୍ଧ ସମୟ ଭିତରକୁ।

ବନ୍ଧୁ ସନାତନ ! ପାନପାତ୍ରର ସମବିଳାସୀ। ଏକ ଦୁର୍ଦ୍ଦାନ୍ତ ଅସାମାଜିକ ବ୍ୟକ୍ତି। ତା'ର ରହିଥିଲା କଲିକତାରେ ବ୍ୟବସାୟ ଓ ଆଡ୍‌ଡ଼ା। ସେ ଖୋଜୁଥିଲା ସମର ସିଂହଙ୍କୁ, ଯେ କି ଗ୍ରାମ୍ୟବଧୂ ଓ କନ୍ୟାଙ୍କୁ ଅପହରଣ କରି କଲିକତାରେ ବିପଣୀ ଖୋଲିବାରେ ତାକୁ ସାହାଯ୍ୟ କରିବ।

ମହାନଗରୀ କଲିକତାର ସେହି ରୂପଜୀବିକାଙ୍କର ଅର୍ଦ୍ଧାଲୋକିତ ଗଳିପଥ। ସନାତନ ଓ ସମର ସିଂହ। ଜଡୁଆ ଗହଣାରେ ପରିପୂର୍ଣ୍ଣା ବିଦଗ୍ଧମୟୀ କଳାବତୀର ବାହୁପାଶରେ ଆବଦ୍ଧ ରହି ସନାତନ ସ୍ୱପ୍ନ ଦେଖୁଥିଲା, ଏ ଗୁଡ଼ାକ ଯଦି ସେ ପାଇଯାଏ, ତେବେ...

ସ୍ୱପ୍ନଟା ବାସ୍ତବରେ ପରିଣତ ହେବାପାଇଁ ଇସାରା ଦେଲା ତାହାରି କମରବନ୍ଧା ଶାଣିତ ଛୁରାଟା। ସିଂହଙ୍କର କାନପାଖରେ ସନାତନ ପ୍ରସ୍ତାବ ବାଢ଼ିଲା। ଦୁହେଁ ପରସ୍ପରକୁ ଚାହିଁଲେ କ୍ଷଣମାତ୍ର।

ପୁଣି ପୁଲିସ ଲକ୍‌ଅପରେ କଲିକତାରେ ଜଣେ ବାରବନିତାର ହତ୍ୟାକାରୀ ଭାବରେ ସିଂହ ଓ ସନାତନ ଉଭାହେଲେ ଜୀବନ ରଙ୍ଗମଞ୍ଚ ଉପରେ। ହଜାର ହଜାର ଅର୍ଥ ବ୍ୟୟରେ ଓ ଓଡ଼ିଆ ଗଜପତି ପ୍ରଦତ୍ତ ସିଂହ ପଦବୀ ସହିତ ଜାୟଗିରି ଜମିର ବିକ୍ରୟଲବ୍ଧ ଧନରେ ସିଂହ ମୁକୁଳିଗଲେ ଭାଗ୍ୟବଳରୁ, ସନାତନ ଜୀବନବ୍ୟାପୀ ରହିଗଲା କାରାରୁଦ୍ଧ।

ଚୋରି, ଲୁଣ୍ଠନ, ଗୃହଦାହ, ଲୋକଙ୍କୁ ମାରି ଆତ୍ମହତ୍ୟା କହି ଯେଉଁ ପାଶବଲୀଳା ସିଂହ ରଚିଗଲେ, ଦେଶର ସ୍ୱାଧୀନତା ପ୍ରାପ୍ତି ପରେ ତାଙ୍କୁ ମିଳିଲା ନୂତନ ପଦବୀ ଏବଂ ସେଇ ପଦବୀ ସାହାଯ୍ୟରେ ସେ ହେଲେ ବୈଷ୍ଣବ ରାଜନୀତିକ ବୈଷ୍ଣବ। ବାର ଜାତି ତେର ଗୋଳା ଏକତ୍ର ହୋଇଗଲେ।

ସିଂହ ହେଲେ ରାଜନୀତିକ ବ୍ୟକ୍ତି। ମୁହଁରେ ଉଦାସ ଚାହାଣି। ପହରଣରେ ମୋଟା ଧୋତି ଓ କୁର୍ତ୍ତା। ହାତଟା ସବୁବେଳେ କାହାକୁ ଆଶୀର୍ବାଦ କରିବା ଭଙ୍ଗିରେ ଉପରକୁ ହଠାତ୍ ଚାଲିଯାଏ। କଥା କହୁ କହୁ ସେ ଶୋଇପଡ଼ନ୍ତି, ପଚାରିଲେ କହନ୍ତି, ସେତେବେଳେ ସେ ଭାରତୀୟ ଶହୀଦ୍‌ମାନଙ୍କର ଆତ୍ମାଗୁଡ଼ିକ ସହିତ କଥାବାର୍ତ୍ତା କରୁଥାନ୍ତି। ସେମାନଙ୍କଠାରୁ ସେ ଚାହାନ୍ତି ପଥ–ନିର୍ଣ୍ଣୟର ଇଙ୍ଗିତ।

ବିଶାଖା ମହାନ୍ତିଙ୍କୁ ସେ କଇଁଫୁଲ ସାଉଁଟିବା ଭଳି ଲୋଡ଼ି ଆଣିଥିଲେ ଗୋଟାଏ ଶାରଦ ସୁଷମା ଭିତରେ। କଲେଜ କୁମାରୀ ଏହି ବିଶାଖା – ବୁଦ୍ଧି, ଚତୁରତା ଓ ଶିକ୍ଷାରେ ସିଂହଙ୍କଠାରୁ ଲୌକିକ ମତରେ ପାରଦର୍ଶିନୀ ଥିଲେ ବି, ଏ ଯେ ଜଣେ ରାଜନୀତିକ ଜ୍ୟୋତିର୍ମୟ ପୁରୁଷ ଅବଶେଷରେ ହୋଇପାରିବେ, ଏହାଭାବି ଫୁଲହାର ପିନ୍ଧାଇ ଦେଇଥିଲେ ବିଶାଖା ଏକ ଦୁର୍ବଳ ମୁହୂର୍ତ୍ତରେ ସିଂହଙ୍କ ଗଳାରେ।

ସିଂହଙ୍କର ଚେତନା ଫେରି ଆସିଲା। ଗୁଡ଼ାଏ ଲୋକ ତାଙ୍କରି ଆଡ଼କୁ ଆସୁଛନ୍ତି।

–ଆଜ୍ଞା, ଆମେ ଆସିଗଲୁ।

–ଆରେ, ତମେମାନେ ଯେ, କି ଭାଗ୍ୟ ! ତମ ପଥକୁ ଚାହିଁ ବସିଥିଲି। ନିର୍ବାଚନରେ ଯଦି ମୋର ଜିତିବାକୁ ଭାଗ୍ୟରେ ଥାଏ, ତେବେ ତମରି ସାହସ ଓ ବଳ ଘେନି। ଆସ ବାବା। କଅଣ ଦରକାର ? ସବୁ ଖାଇ ଆସିଛ ତ ?

ଲାଲସେନାନୀ ଦଳର ପ୍ରଧାନ ପ୍ରତିଭୂ ମହେଶ୍ୱର ଦାସ କହିଲା – ଜାଣନ୍ତି ଆଜ୍ଞା, ତରୁଣ ସମାଜ ଆପଣଙ୍କ ପଛରେ ରହିଛି। ଆପଣଙ୍କର ବିପକ୍ଷ ଡାକ ଛାଡ଼ିଛି, "ଆରେ ତୁମେମାନେ ଏ ଆଡ଼କୁ ଆସ, ସେପଟେ ଯାଅନି', କିନ୍ତୁ ଆଗ ଆମେ ଆପଣଙ୍କ ପାଖକୁ ଆସିଛୁ। ତାରୁଣ୍ୟର ଏ ଜୟଯାତ୍ରା, ତରୁଣୀ ବି ସାଙ୍ଗରେ ଅଛନ୍ତି। ଆପଣଙ୍କୁ ଶେଷରେ ଥୋଇଦେବେ ଚୂଡ଼ା ଉପରେ।

ସିଂହ କହିଲେ – ଚୂଡ଼ା କାହିଁକି ଖୋଜୁଛ ? କେତେ ଜଣ ଅଛ ବାବାମାନେ ? ଏକ....ଦୁଇ....ତିନି

ପନ୍ଦର... ଆଚ୍ଛା, ପନ୍ଦର। ମୁଁ ବରାଦ ଦେଉଛି ସବୁଥିରୁ କିଲୋ ଲେଖାଏଁ, ଛେନା ପୋଡ଼ପିଠା, ପୁରୀ, ତରକାରୀ... ସବୁ।

– ଆଚ୍ଛା ଟଙ୍କା କେତେ ଦେବେ ?

– ତମେମାନେ ବାବା ନିଜେ କୁହ, ତେବେ କଅଣ କି କେଉଁ ପାର୍ଟିରେ ମିଶିବି ଏ ଯାଏ ଠିକ କରିନାହିଁ। ଟଙ୍କାର ପରିମାଣଟା କେଉଁ ଆଡ଼ୁ କେତେ ଆସିବ ନ ଜାଣିବା ଯାଏ....

ପିଲାଏ ଏକ ସ୍ୱରରେ କହିଲେ –

ହାଉଆ ଯେଉଁ ଆଡ଼ୁ ବୋହୁଛି, ସେଇଆଡ଼େ ମିଶିଯାନ୍ତୁ.... ଆଜ୍ଞା ଟଙ୍କାବି ଆସିବ। ଜିତି ବି ଯିବେ।

ଖାଇ ପିଇ ସନ୍ତୋଷରେ ଗଲେ ନିର୍ବାଚନ ବୈତରଣୀ ପାରି କରି ଦେବାର ଏହି ମାଝିମାନେ। କିଛି ଟଙ୍କା ବି ସିଂହ ଦେଲେ। ଏଇ ହେଲା ପ୍ରଥମ ମଣିଷ ରକ୍ତର ସ୍ୱାଦ ଗ୍ରହଣ ବ୍ୟାଘ୍ରକୁଳର।

ସିଂହ ପ୍ରଭାତରେ ଉଠି ଆଦ୍ୟ ନିତ୍ୟକର୍ମ କଲେ ତାଙ୍କ ଗ୍ରାମର ଯେତେ ବସତରୀ ଥିଲେ ସମସ୍ତଙ୍କୁ କଅଁଳ ଦୁର୍ବା ଖୁଆଇ। ସିଂହଙ୍କୁ ଗ୍ରାମବାସୀ ସତର୍କ ନୟନରେ ଚାହିଁଲେ – କହିଲେ, ଏ କି ରୀତି ? ଉଠିଲେ ପୁଣି ଗୋଧନ–ସେବାରେ ବ୍ରତୀ ?

ସମର ସିଂହ ସେହିଦିନଠାରୁ ଦୁଧିଆଳୀ ଗାଈଙ୍କ ଗୋଠରେ ପଶିଲେ। ସମସ୍ତଙ୍କୁ ଆଉଁସିଲେ। ଗଉଡ଼ମାନେ ଏ ଆଚମ୍ବିତ ବ୍ୟବହାର ଦେଖି ସିଂହଙ୍କର ମଥା ଖରାପ ହୋଇଛି କି ଭାବି ଗ୍ରାମବାସୀଙ୍କୁ ଜଣାଇଲେ। ସମର ସିଂହ ଗାଈର ପହ୍ନା ପାଖରେ ବାଛୁରୀ ଲଗାଇ ଦୁଗ୍ଧ ଦୋହନ କଲେ। ଗ୍ରାମବାସୀ ବୁଝିଲେ ସମର ସିଂହ ଜୀବନଯାକ କୌଣସି ଅବ୍ୟାପାର କାମ କରି ନାହାନ୍ତି, ଯାହା କରିଛନ୍ତି ସବୁ ବ୍ୟାପାର କାର୍ଯ୍ୟ। ଏ ବି ସେହି ପ୍ରକାର ଏକ କାର୍ଯ୍ୟ।

ପରେ ପରେ ସବୁ ଜଣା ପଡ଼ିଗଲା ସମର ସିଂହ କେଉଁ ଦଳରେ ମିଶିଗଲେ।

ଜୀପ୍ ଦଉଡ଼ିଲା –

ପତାକା ଉଡ଼ିଲା –

ରାଜନୀତିକ ବୈଠକ ବସିଲା –

ଗୀତ ବନ୍ଧା ହେଲା –

ତରୁଣମାନେ ଗାନ କଲେ – ନାଚିଲେ – ବାଦ୍ୟ ବଜାଇଲେ।

ଅପର ପକ୍ଷରୁ ପ୍ରଶ୍ନ ହେଲା –

କୁମୁଦିନୀ କିଏ ?

କଳାବତୀର ହତ୍ୟାକାରୀ କିଏ ?

ମଝିରେ ଥୋକେ ରହି ସବୁ ଆଡ଼କୁ ଦୃଷ୍ଟି ଦେଇ ଏ ପକ୍ଷରୁ କିଛି ସେ ପକ୍ଷରୁ କିଛି ପକାଇ କହିଲେ – ସମର ସିଂହ ଜଣେ ସାଧୁ ବ୍ୟକ୍ତି। ବର୍ତ୍ତମାନ ଧର୍ମକାର୍ଯ୍ୟରେ ମତି ଦେଇଛନ୍ତି। ଗୋଧନ ସେବାରେ ବ୍ରତୀ ଅଛନ୍ତି। ତାଙ୍କୁ ଭୋଟ ଦିଆଯାଉ।

ତରୁଣମାନଙ୍କର ଜିଦ୍ ବଢ଼ିଲା–

"ଆଜ୍ଞା, ଭାରତମାତା ହୋଟେଲର ପ୍ରୋପ୍ରାଇଟ୍‌ର ଆଉ ଆମକୁ ଖାଇବାକୁ ଦେଉନାହିଁ। ତାହେଲେ, ଆମେ ଚାଲିଲୁ ଅପର ପକ୍ଷକୁ। ସେ ଏମିତି କଞ୍ଜୁସ୍ ଆପଣଙ୍କ ଭଳି ନୁହନ୍ତି।"

ସମର ସିଂହ ବୁଝିଲେ ଯେ ଭାରତମାତା ହୋଟେଲ ମାଲିକ ହିମାଚଳଠାରୁ କନ୍ୟାକୁମାରୀ ଯାଏ ଶତ ଶତ ତରୁଣ ପ୍ରଚାରକଙ୍କୁ ଭୋଜନ ଦେଇ ଦଶହଜାର ଟଙ୍କାର ବିଲ୍ ସଜାଡ଼ି ରଖିଛି। ସେ କପାଳରେ ହାତ ମାରିଲେ।

– ନାନୀ

– କିଏ ମ ? ନାନୀ ଡାକୁଛି ?

ମୁହଁ ସଞ୍ଜବେଳେ ବିଶାଖା ଦେଖିଲେ କଳା ଚଷମା ଆଖିରେ ଦେଇ ଜଣେ ଯୁବକ ଲହୁଣୀ ଭଳି ତରଳି ଯାଇ ଆଖି ମିଟିକା ମାରି କଅଣ କହୁଛି। ସିଂହ ନାହାନ୍ତି। ନିର୍ବାଚନ ଗ୍ରସ୍ତରେ ଯାଇଛନ୍ତି।

– ମୁଁ ପରା ପ୍ରଚାରକ ପାର୍ଥ ଧନୁର୍ଦ୍ଧର। ମୁଖିଆ ମୁଁ, ସିଂହଙ୍କର ପ୍ରଚାରବାହିନୀର ମୁଖ୍ୟ କାରପଟ୍‌ଦାର।

– ମୋ ପାଖରେ କଅଣ କାମ ଅଛି ? ବିଶାଖା ପଚାରିଲେ।

– ହଁ, ଟଙ୍କା। ସିଂହ କହିଗଲେ ସ୍ତ୍ରୀଙ୍କଠାରୁ ହଜାରେ ଟଙ୍କା ନେଇଆସ। ପୋଷ୍ଟରଗୁଡ଼ାକ ନୂଆ ଲାଗିବ। ଛାପା ଚାଲିଛି। ଶୀଘ୍ର।

"– ମୋ ପାଖେ ତ ଟଙ୍କା ନାହିଁ, ସେ ମୋ ପାଖରେ ତହବିଲ ରଖନ୍ତି ନାହିଁ" – ବିଶାଖା ଦେବୀ ଏତିକି କହି ମୁଖ ଗମ୍ଭୀର କଲେ।

– ଆଚ୍ଛା ଆପଣଙ୍କ ପାଖେ ଆଉ କଅଣ ଅଛି ? ଟଙ୍କା ତ ନାହିଁ, ଆଉ କଅଣ ଅଛି ?

– ମାନେ ? ବିଶାଖା ଚକ୍ଷୁ ବିସ୍ଫାରିତ କଲେ।

– ମାନେ, ଯୌବନ !

– କଅଣ କହିଲେ ? ବାହାରି ଯାଆନ୍ତୁ, ଅଭଦ୍ର, ଅଶ୍ଳୀଳ... ବାହାରି ଯାଆନ୍ତୁ।

"ହୋଃ... ହୋଃ... ନିର୍ବାଚନ ଋତୁରେ ଏସବୁ ଚଳେ ବିଶାଖା ଦେବୀ, ଏସବୁ ଚଳେ। ଆଉ ମିଛରେ ଜିତିଯିବେ ସମର ସିଂହ ? ପୁଣି ମନ୍ତ୍ରୀ ହେବେ ? ସେତେବେଳେ ବିଶାଖା ଦେବୀ ରାଜରାଣୀ ଭାବରେ ଶୋଭା ପାଉଥିବେ, ଆଉ ଆମେ ଯେଉଁ ହିପ୍‌ପି ମାର୍କାକୁ ସେଇ ହିପ୍‌ପି ମାର୍କା ବାଇ.... ବାଇ... ମନେ ରଖନ୍ତୁ ସମର ସିଂହଙ୍କଠାରୁ ଆମେ ପ୍ରତିଶ୍ରୁତି ପାଇଛୁ ଅନେକ ବିଷୟରେ, ତାହା ଭିତରେ ଗୋଟିଏ ହେଉଛି ଆପଣଙ୍କର.... ହିଃ... ହିଃ.... ହିଃ

ପାର୍ଥ ଧନୁର୍ଦ୍ଧର ବଜ୍ରଫଟା ହସ ହସି ଚାଲିଗଲେ।

ଗଭୀର ରାତିରେ ଫେରିଲେ ସମର ସିଂହ। ଅଧାପୋଡ଼ା କାଠଭଳି ସେ ଚେହେରା ଧରିଛନ୍ତି। ବିଶାଖା ଦେବୀ ଦୁଆର ମୁହଁରୁ ଝଙ୍କୃତ କଲେ ତାଙ୍କର କଣ୍ଠସ୍ୱର ଆଉ କହିଲେ –

ତୁମର ସେ ବଜାରୀ ଟୋକାଙ୍କୁ କହି ମୋଠାରୁ ହଜାରେ ଟଙ୍କା ମଗାଇ ପଠାଇଥିଲ ?

– କାହିଁ ନା ତ ?

– ଆଉ ମୋର ଯୌବନକୁ ?

– କ–କ– କଅଣ କହିଲ ବିଶାଖା ?

ତୁମେ ପାଗଳ ହୋଇନ ତ ?

– ନା, ମୁଁ ପାଗଳ ହୋଇନି, ମୁଁ ଗ୍ରାଜୁଏଟ୍, ତୁମେ ତୃତୀୟ ଶ୍ରେଣୀ ମାଟ୍ରିକ୍ୟୁଲେଟ୍; ପାଗଳ ତୁମେ ହୋଇଛ। ତୁମେ ପୁଣି ମନ୍ତ୍ରୀପଦ ଲୋଭରେ

ନିର୍ବାଚନରେ ମଜ୍ଜି ରହି ଗୋମାତାର ପହ୍ନା ପାଖରେ ମୁଣ୍ଡିଆ ମାରୁଛ। ସମାଜବାଦ କରିବ। ଏଣେ ସମାଜବାଦ କରୁ କରୁ ତୁମ ଟଙ୍କା ତୁମେ ବରବାଦ କର, ମୋର ଚିନ୍ତା ନାହିଁ; କିନ୍ତୁ ମୋ ଯୌବନଟାକୁ କଅଣ ବିକ୍ରି କରିଦେବ ? ତୁମର ଅତୀତଟା ଖୁବ୍ ସାଂଘାତିକ ମୁଁ ଜାଣେ, ମାତ୍ର ରାଜନୀତିରେ ପଶି ଭବିଷ୍ୟତଟାକୁ ବି ଭୟଙ୍କର କରିଦେବ ?

ସମର ସିଂହ ସ୍ତବ୍ଧ ହୋଇଗଲେ। କିଛିକ୍ଷଣ ପରେ କହିଲେ – ମୁଁ ତ କିଛି ବୁଝିପାରୁ ନାହିଁ ଏସବୁର ଅର୍ଥ କଅଣ। ଖିଆ ନାହିଁ ପିଆ ନାହିଁ ମୁଁ ବୁଲୁଛି, ମୋର ଆଶା ଲୋକେ ସେଇ ଦଳକୁ ଭୋଟ୍ ଦେବେ ଯିଏ ଗରିବ ଧନୀ ଭିତରେ ପାଚିରୀ ଭାଙ୍ଗିବେ, ରହିବାକୁ ଘର ଦେବେ, ସୁଖଶାନ୍ତି ଅଜାଡ଼ି ହୋଇପଡ଼ିବ। ଏ ହାଓ୍ୱା ବୋହୁଛି। ମୁଁ ଜିତିବି; କା'ର ମୁଁ ବ୍ୟକ୍ତି ନୁହେଁ। ମୁଁ ମିଶିଯାଇଛି ଦଳ ସହିତ। ଆହା, କେବେ କୁଷ୍ଠରୋଗୀ ରଥିଆ, ମୋଟେ ୨୫ ବର୍ଷର ଟୋକାଟା ସେକ୍ରେଟେରୀଏଟ୍‌ରେ ଚାକିରି ପାଇବ, ଆହା କେବେ ବନା ବାଉରି ଗଛତଳ ପଲାରୁ ଉଠିଯାଇ ଗାଁ ଚୈତନ୍ୟ ମଠର ମହନ୍ତ ହୋଇଯିବ, ଆହା କେବେ ସୁନା ମେହେନ୍ତାଣୀ ଏ ଗାଁରୁ ଉଠିଯାଇ ଭୁବନେଶ୍ୱରର ମହାମହିଳା ସଂଘର ସଭାନେତ୍ରୀ ହୋଇ ଗୁଣ୍ଡଦୁଧ ଓ ବିସ୍କୁଟ ଟିଣ କାରବାର କରିବ– ଏମିତି ଗୋଟିଏ ଅଧେ ନୁହେଁ ବହୁ ସୁଅ ମୁହଁରେ ସମାଜବାଦର ପାଣି ମାଡ଼ି ଆସିବ, ତାହା ହିଁ ଦେଖିବାକୁ, ସେଥିରେ କାର୍ଯ୍ୟ କରିବାକୁ, ମୋର ପୈତୃକ ସମ୍ପତ୍ତି ସବୁ ବିକ୍ରି କରିଦେଇ (ଏବେ ଏ ବଜାରୀ ଟୋକାମାନେ ମୋର ତରୁଣ ପ୍ରଚାରକଙ୍କୁ କେବଳ ଖୁଆଇବା, ପିଆଇବା, ପିନ୍ଧାଇବାରେ ମୁଁ ହୃତସର୍ବସ୍ୱ ହୋଇଗଲି। ବିଶାଖା, ତୁମେ କଅଣ କିଛି ବୁଝିପାରୁନ ?

ବିଶାଖା ଦୁଃଖ କଲେ – କହିଲେ, ହଉ ଆସ, ଖାଇବ ଆସ। କଅଣ ତମ ଦେହ ହେଲାଣି, ମନ୍ତ୍ରୀ ହେଲାବେଳକୁ ତ ତୁମ ଶରୀରରେ ଆଉ କିଛି ନ ଥିବ। ଆସ, ଆସ ଖାଇବ ଆସ।

"ରାମ ନାମ ସତ୍ୟ, ରାମ ନାମ ସତ୍ୟ" ସମର ସିଂହ ଖାଇବାକୁ ଯିବା ବାଟରେ ଅଟକିଗଲେ। କହିଲେ ଓହୋ ଗାଁଟାରୁ କିଏ ଖସିପଡ଼ିଲା। କିଏ ଚାଲିଗଲା ବିଶାଖା ଦେଖିଲ। ରାମ ନାମ ସତ୍ୟ ଭିତରେ ଆଉ ଖାଇବି କଅଣ ଉପାସ ରହିଯାଏ।

ଚିତ୍କାର ହେଲା –

ରାମ ନାମ ସତ୍ୟ ହେ... ସମର ସିଂହ ମରିଗଲେ, ଏ ଜଗତ ଛାଡ଼ି ବିଦୃଷ୍ଟାରେ ସେ ଚାଲିଗଲେ। ସମର ସିଂହ ମରିଗଲେ। ତାଙ୍କୁ ଯେଉଁମାନେ ଭୋଟ୍ ଦେବାକୁ ଇଚ୍ଛା କରୁଥିଲେ, ସେ ସବୁ ଭୋଟ୍ ଅନନ୍ତ ମହାପାତ୍ରଙ୍କୁ ଦିଅ। ଆଉ ମନେରଖ ମୃତ ସମର ସିଂହ ଭୂତ–ପ୍ରେତ–ରୂପରେ ଦେଖାଦେବେ, କାରଣ ଭୋଟ ପାଇବା ଲାଳସା ତାଙ୍କର ମରଣ ପରେ ବି ଯାଇ ନ ଥିବ। ତେଣୁ ପ୍ରେତ ରୂପରେ ତାଙ୍କୁ ଦାଣ୍ଡରେ ହାଟରେ ଦେଖିଲେ ବି ଡରିବ ନାହିଁ। ତାଙ୍କ ଉପରକୁ ଟେକା ପକାଇବ ଆଉ ତୁମଆଡୁ ତୁମେ ଭୋଟ ପକାଇବ ଅନନ୍ତ ମହାପାତ୍ରର ମାଟିଆଚିଲ ଛବି ଉପରେ ମୋହର ଦେଇ। ବୋଲ୍ ରାମ ନାମ ସତ୍ୟ ହେ... ସମର ସିଂ ମରିଗଲେ। ହଠାତ୍ ତାଙ୍କ ଛାତି ଫାଟିଗଲା।

କେବଳ ରୋଳ ନୁହେଁ, କୀର୍ତ୍ତନ ବାଜଣା ମଧ୍ୟରେ ପାର୍ଥ ଧନୁର୍ଦ୍ଧର ଓ ମହେଶ୍ୱର ଦାସଙ୍କ ନେତୃତ୍ୱରେ ଚାଲିଛି ଶୋକ–ଶୋଭାଯାତ୍ରା।

ସମର ସିଂହ ଥକ୍କା ହୋଇ ବସିପଡ଼ିଲେ – କହିଲେ, ବିଶାଖା, ଶୁଣୁଛ, ରାଜନୀତି କରିବ ବୋଲି କଅଣ ଅନନ୍ତ ମହାପାତ୍ର ମତେ ଜୀଇଁ ଥାଉଁ ଥାଉଁ

ମାରିଦେବ ? ମତେ ଛୁଅଁ ବିଶାଖା, ମତେ କହ ମୁଁ ମରିଛି ନା ମୁଁ ବଞ୍ଚିଛି। ତମ ଆଖିରେ ତ ସଂଶୟ, ବିଶାଖା, ତୁମେ ଶେଷକୁ ବିଶ୍ୱାସ କଲ ମୁଁ ମରିଛି ବୋଲି। ଆଉ ଏଇ ତରୁଣ ପ୍ରଚାରକ ଦଳ ମୋ'ଠାରୁ ହଜାର ହଜାର ଟଙ୍କା ନେଇ ଆଉ ତିନିଟା ଦିନ ନିର୍ବାଚନ ଅଛି ଓଲଟି ପଡ଼ିଲେ ଅନନ୍ତ ମହାପାତ୍ର ଆଡ଼କୁ, ଶେଷରେ ମୁଁ ବଞ୍ଚି ଥାଉଁ ଥାଉଁ ମତେ ମାରିଦେଲେ ?

କି ଉତ୍ତର ଦେବେ ବିଶାଖା ? କେବଳ କହିଲେ– ନିଜ କୃତକର୍ମ ତମର। ହଉ ଯାଅ ସେ ଶୋକ ଶୋଭାଯାତ୍ରା ଆଡ଼କୁ, ଆଉ କହ ଯେ ତୁମେ ବଞ୍ଚିଛ ସ୍ୱ– ଶରୀରରେ। ତୁମକୁ ଦେଖି ସେମାନେ ଜାଣିବେ ଯେ ତୁମର ପରଲୋକ ହୋଇନି, ତୁମେ ଏବେ ବି ଇହଲୋକରେ ଅଛ।

ସମର ସିଂହ ଭୟାର୍ତ୍ତଚକ୍ଷୁରେ ବିଶାଖାଙ୍କୁ ଚାହିଁ କହିଲେ – ଅଧମାଇଲିଏ ଲମ୍ବ ଶୋକ – ଯାତ୍ରାରେ ମୁଁ ଯାଇ କହିବି ମୁଁ ବଞ୍ଚିଛି ବୋଲି ? ମତେ ଭୂତ ପ୍ରେତ କହି ଟେକା ପକେଇବେ ନି ସେମାନେ ? ସେଇଆ ପରା ତାଙ୍କର ସ୍ଲୋଗାନ୍; ହେ ଅନନ୍ତ ମହାମାତ୍ର, ତୋର ମୁଁ କଅଣ କରିଥିଲି ଯେ ତୁ ମତେ ଏତେ ବଡ଼ ଆଘାତ ଦେଲୁ ? ହଉ, ମୁଁ ଜିତିଯାଏ ତୋର ମୋର ପୁଣି ଦେଖାଦେଖି ହେବା, ଯେ !

ପାଣି ବୋହିଯାଏ, ଆଉ ଫେରେ ନାହିଁ। ରାଜନୀତିକ ଗଗନରୁ ନିର୍ବାଚନ ଝଡ଼ ବାତ୍ୟା ଅପସରିଗଲା। ସମର ସିଂହ ହାରିଗଲେ। କେବଳ ହାରିଯାଇ ଥିଲେ ଦୁଃଖ କରିବାର କିଛି ନଥିଲା, ସେ ଏକାବେଳକେ ହଜିଗଲେ।

କିଏ କହିଲା ସେ ବଦ୍ରିନାଥ ଚାଲିଗଲେ।

କିଏ କହିଲା ସେ ସନ୍ନ୍ୟାସୀ ହୋଇଗଲେ।

କିଏ କହିଲା ସେ ଗୋରକ୍ଷା ସମିତିର ସଂପାଦକ ହୋଇ ବୃନ୍ଦାବନ ବ୍ରଜଧୂଳି ଅଙ୍ଗରେ ଲେପନ କରି ସବସ୍ଥ ଗୋମାତାଙ୍କୁ ଦେଖିବା ମାତ୍ରେ ଅଶ୍ରୁସମ୍ବରଣ କରୁଚନ୍ତି।

ସବୁ ସତ୍ୟ ପୁଣି ସବୁ ମିଥ୍ୟା। ହେଇ ଦେଖ, ରାମ ତିଳକ ଗୋସେଇଁ ଏକତାରା ବଜାଇ ଗାଇ ଗାଇ ଯାଉଛନ୍ତି – ପାପତାପଭରା ଜଗତକୁ ସେ ଶୁଣାଉଛନ୍ତି –

ରେ ମନୁଆ, ଚାଲ ମନ ବୃନ୍ଦାବନ,<br>
ଗାଇ ଛେଳି ଚିଲ କୁଡ଼ିଆ ତାରାରେ<br>
ବାଡ଼େଇ ଚିହ୍ନ<br>
ହେବୁ କି ତୁ ମହୀୟାନ<br>
ଚାଲ ମନ ବୃନ୍ଦାବନ।<br>
ହୃଦୟ ତୋ ବିଷଭରା,<br>
ମନ ତୋ କପଟ–କାରା,<br>
(ସବୁ) ସମାନ କରିବୁ, ପାଚେରୀ ଭାଙ୍ଗିବୁ<br>
ପରତେ ନ ଯାଏ ମନ<br>
ଚାଲ ତୁହି ବୃନ୍ଦାବନ.... ରେ ମନ...



# ପାତାଳ

ମଧୁସୂଦନ ହଠାତ୍ କାହିଁକି ଝିଅ ଆଡ଼କୁ ଚାହିଁଲେ ନିର୍ନିମେଷ ନୟନରେ; କିଛି ବୁଝିପାରିଲେ ନାହିଁ; କାହିଁକି ଏ ଚାହିଁବା ଏତେ ତୀକ୍ଷ୍ଣ ହୋଇଯାଉଛି । ସ୍ତ୍ରୀ ହେମମାଳିନୀ ଏପାଖ ସେପାଖ ହେଉଥିଲେ । କାରଣ ଏଇ ସମୟଟାକୁ ସମ୍ଭାଳି ନ ନେଲେ ଯାହା ଘଟିବ, ତାହା ଅକଥନୀୟ ଯନ୍ତ୍ରଣାର କାରଣ ହେବ ।

ସମୟଟା ହେଉଛି ସିନେମା ଦେଖିବା ପାଇଁ ଝିଅ ରୀତାର ପ୍ରସ୍ତୁତି । ଏ ପ୍ରସ୍ତୁତି ଅପରାହ୍ନରୁ ଆରମ୍ଭ ହୋଇଛି, ସନ୍ଧ୍ୟା ହେଲା । ଦାଣ୍ଡଦୁଆରେ ବୟ ଫ୍ରେଣ୍ଡର ମଟର ହର୍ଣ୍ଣ ବାଜୁଛି ଘନଘନ । କାରଣ ଡେରି ହୋଇଗଲେ ଯଦି ନିଉଜ୍ ରୀଲ୍ ଆରମ୍ଭ ହୋଇ ଯାଇଥାଏ, ତେବେ ରୀତାକୁ ମଡ଼ର୍ଣ୍ଣ ଗାର୍ଲର ପରିପାଟୀରେ ଦେଖିବା ପାଇଁ ଦର୍ଶକମାନଙ୍କ ଆଖିରେ ଅନ୍ଧାର ଜମି ଯାଇଥିବ । ରୀତାର ବୟଫ୍ରେଣ୍ଡ ଏକଥା ଚାହେଁ ନାହିଁ ।

ଏ ଦୃଶ୍ୟ ଘଟୁଛି ଓଡ଼ିଶା ରାଜଧାନୀ ଭୁବନେଶ୍ୱର ଉପରେ । ଏପାଖେ ଲିଙ୍ଗରାଜ ମନ୍ଦିର, ସେପାଖେ ବୌଦ୍ଧ–ଜୈନଗୁମ୍ଫା । ମଝିରେ ରାଜଧାନୀ, ମଧୁସୂଦନ ସେକ୍ରେଟେରୀୟେଟ୍‌ରେ କାମ କରନ୍ତି । ସକାଳ ଦଶଟାରେ ଯାଆନ୍ତି, ଫେରନ୍ତି ରାତି ଆଠଟାରେ । ସାଥୀରେ ଯାଇଥାଏ ବଜାରଥଳୀ, ଆସେ ସେଥିରେ ଦିଇଟା ପରିବାପତ୍ର ଓ ଅଭିରାମ ବାବାଙ୍କ ଫଟପୂଜା ଉଦ୍ଦେଶ୍ୟରେ ଫେଣାଏ ପାଚିଲା କଦଳୀ ।

ଆଉ ସଂସାର ସହିତ ପରିଚୟ ବା ସେ ବିଷୟରେ ଗୁଡ଼ାଏ ଗଭୀର ଜ୍ଞାନ, କି ଉଚ୍ଚତର ଚିନ୍ତା ଆଧ୍ୟାତ୍ମିକ, ରାଜନୀତିକ ଅବା ସାମାଜିକ କ୍ଷେତ୍ରରେ ଏସବୁ ମଧୁସୂଦନଙ୍କର ନ ଥାଏ; କାରଣ ସମୟ ତାଙ୍କ ପାଖେ ଛକ କଟାହୋଇ ରହିଛି ।

ମଧୁସୂଦନ ଧର୍ମ କର୍ମ କରନ୍ତି । ଆଖି ବୁଜି ଧ୍ୟାନ କରନ୍ତି । ତାଙ୍କ ଚରିତ୍ରରେ କଠୋରତା ନାହିଁ । ତେବେ କିମିତି ଗୋଟାଏ ଅସହାୟ ବ୍ୟକ୍ତି–ପୁରୁଷ ସେ । ସ୍ରୋତର ବିପରୀତ ଦିଗରେ ଭାସିଯିବାକୁ ସାହସ ନ ଥାଏ, ଫଳରେ ହେମମାଳିନୀ ପ୍ରକୃତ କର୍ତ୍ତ୍ରୀଭାବରେ ମଧୁସୂଦନଙ୍କର ଜୀବନ–ବେଦୀ ଉପରେ ଆସନ ପାତିଛନ୍ତି ।

ସିନେମା ଦେଖା ଛବିଳ ପ୍ରସ୍ତୁତି ଭିତରେ ରୀତାର ଏମିତି ଏକ ପୁରୁଷ–ସଂହାରକାରୀ ରୂପ ଫୁଟି ଉଠୁଥାଏ ଯେ ସେ ପ୍ରାୟାନ୍ଧକାରରେ ଠିଆ ହୋଇ ମଧୁସୂଦନଙ୍କର ଆଖିରେ ବି ଲାଗିଗଲା ମୋହ–ପ୍ରଜାପତିର ବର୍ଣ୍ଣସୁରା । ସେ ଆଖିକୁ ଦୁଇଥର ମକଚି ଦେଇ ପାଟିକଲେ–

ରୀତା... ଏଣିକି ଶାଢ଼ୀ ପିନ୍ଧ୍ । ହେମ ଏସବୁ କଅଣ ? ଏ ଝିଅକୁ ମୁଁ ବାହାଦେଇ ସଂସାରରେ ରହିବି କି ବିଲାତ ପଠାଇବି ହରୀଶ୍ ସାଙ୍ଗରେ ? ଝିଅଟାକୁ ଚାହିଁ ହେଉନି, ତୁମେ – ତୁମେ ହେମ ମତେ ପାଗଳ କରିଦେବ । ମାଆ ହୋଇ ତୁମେ ଝିଅକୁ ଟିକିଏ ରୁଚି ଶିଖାଇ ପାରୁନ ?

ରାଜଧାନୀରେ ସିନିଅର କେମ୍ବ୍ରିଜ୍ ଛାତ୍ରୀସଂଖ୍ୟା ଦିନକୁ ଦିନ ବଢୁଛି । ମିସେସ୍ ବ୍ରାଉନ୍, ମିସେସ୍ ଆୟାଙ୍ଗାର, ଶ୍ରୀମତୀ ସୋହାନୀ, ଶ୍ରୀମତୀ ମୁଖାର୍ଜୀ ସହିତ ଶ୍ରୀମତୀ ହେମମାଳିନୀ ମହାନ୍ତି । ପୁଷ୍ପମାଳାର ଗୋଟିଏ ପୁଷ୍ପ । ଏମାନେ ଝିଅମାନଙ୍କୁ ସାଧାରଣ ବାଳିକା

ବିଦ୍ୟାଳୟରେ ପଢ଼ାଇବାକୁ ନାକ ଟେକନ୍ତି । ତାହାହେଲେ ସେ ଝିଅଗୁଡ଼ାକ ଭାରତୀୟା ହୋଇଯିବେ, ଯୁଗ ଚାହୁଁଛି ଆନ୍ତର୍ଜାତିକା । ଝିଅ ଯଦି ସିନିୟର କେମ୍ବ୍ରିଜ ପାଶ ନ କଲା, ସେ କି ଝିଅ ?

"ବାପା ତମେ ନିଶ୍ଚୟ ୟା' ଭିତରେ ଜାଣିପାରିଛ ଯେ ତମେ ଖୁ....ଉ....ବ୍ ପୁରୁଣାକାଳିଆ, ଆଉ ସେଇ ସଂସ୍କାରଟା ଏ ଜୀବନରେ ତମର ଯିବନି".... ଏତିକି କହି ମାଆକୁ (ସାଙ୍ଗରେ ବାପାଙ୍କୁ ବି) ଟାଆଟା ଟା...ଆ...ଟା କହି ସୁନ୍ଦରୀ ରୀତା ଅଦୃଶ୍ୟ ହୋଇଗଲା ।

ମଧୁସୂଦନଙ୍କର ମନେହେଲା ସେ ଏସବୁ ପରିସ୍ଥିତିରେ ବଡ଼ ଅସହାୟ । ଗୁଡ଼ାଏ କ୍ରୋଧ ଜମା ହୋଇଗଲା ତାଙ୍କ ମନରେ; କିନ୍ତୁ ସେସବୁକୁ ସେ ପ୍ରକାଶ କରିପାରୁ ନାହାନ୍ତି ।

ହେମମାଳିନୀ ହସିଦେଇ କହିଲେ – ରୀତା ଫେରିଲାବେଳେ ହରୀଶ୍‌କୁ କହିବୁ, ତୁ ଯେମିତି ଖାଲି ହାତରେ ନ ଫେରୁ ।

—ଦୁଇ—

ସିନେମାଟା ଭୂସ୍ୱର୍ଗ କାଶ୍ମୀରର ବହୁ ପ୍ରାକୃତିକ ଦୃଶ୍ୟରେ ଭରପୂର । ନୌକାବିହାର, ଫୁଲ–ଶଯ୍ୟା ଉପରେ ନାୟକ–ନାୟିକାର ଦୋଳନ ଓ ପ୍ରତିଦୋଳନ, ନୀଳିମ ଆକାଶତଳେ ସେ ଦୁହିଁଙ୍କର ପ୍ରୀତି ଅର୍ପଣ ଦେଖି ହରୀଶ୍ ରୀତାର ଗଣ୍ଡ ନିକଟରେ ଚୁପ୍ ଚୁପ୍ ହୋଇ କହିଲା – 'ଏଇ ମୁହୂର୍ତ୍ତଟାକୁ ଆମେ ଏଇଠି ଉତ୍ସବମୁଖର କରିବା ସେମାନଙ୍କ ସହିତ ତାଳ ଦେଇ ଏଇ ଅନ୍ଧାରରେ....' ରୀତାର ଗଣ୍ଡଧୌତ ହରୀଶ୍‌ର ଉତ୍ସବମନ୍ଦିର ନିଃଶବ୍ଦ ସ୍ରୋତରେ ହଠାତ୍ କିଏ ଯେମିତି ଗୋଟାଏ ପର୍ବତକୁ ଥୋଇଦେଲା ଆଦ୍ୟପ୍ରାନ୍ତ ।

– ଇଉ ବ୍ରୁଟ୍..... ପଶୁ, ଏ କଅଣ ହେଉଛି ? ବାହାରକୁ ଆ, ମୁଁ ଦେଖି ଦେଉଛି । ପଛ ଧାଡ଼ିରେ ଜଣେ ହିପ୍‌ପି ମାର୍କା ଯୁବକ ହରୀଶ୍‌ର ଟାଇ ସହିତ କଲରକୁ ଭିଡୁଛି । ପାଖାଆଖ ଦର୍ଶକମାନେ ଅଧା ବସା ଅଧାଠିଆରେ । 'ଚୁପ୍, ବସ୍‌ବେ' ଇତ୍ୟାଦି ସମ୍ଭାଷଣରେ ପ୍ରେକ୍ଷାଳୟକୁ ମୁଖରିତ କରୁଛନ୍ତି । ରୀତା କେବଳ ଏତିକି କହୁଛି– 'ଭାଇ, ସେ ମୋ ବୟଫ୍ରେଣ୍ଡ୍ ରହୀଶ୍ ପାଟ୍ରିକ୍ (ପଟ୍ଟନାୟକ), ଆମେ ଏକା ଶ୍ରେଣୀରେ ପଢୁ; ଭାଇ ତୁମେ ଚୁପ୍ କର । ଗଣ୍ଡଗୋଳ କରନି–'

ଏଇ ହେଲେ ମଧୁସୂଦନ ମହାନ୍ତିଙ୍କର ଆଉ ଏକ ସନ୍ତାନ । ହାଇସ୍କୁଲ ପରୀକ୍ଷାରେ ଫେଲ୍ ହୋଇ ବ୍ୟବସାୟରେ ହାତ ଦେଇଛି । ଠିକ୍ ବ୍ୟବସାୟ ନୁହେଁ, ତେବେ କଟକର ଏକ ପ୍ରସିଦ୍ଧ ହୋଟେଲ ସଂଲଗ୍ନ 'ବାର'ରେ ସେ ସାମୟିକ ବିକାଳୀ । ବିକୁ ବିକୁ ବୋତଲଟାର ଖରିଦ୍‌ଦାରକୁ କହିଥାଏ ରୁବେନ୍ (ରବୀନ୍ଦ୍ରନାଥ ଶବ୍ଦର ରୂପାନ୍ତର) 'ବନ୍ଧୁ, ସବୁତକ ଶୋଷିନେବ ନି, କିଛି ତଳେ ରଖିଥିବ ।'

ଏଇ କିଛି ରଖିବା ସୁଧାରୁ ରୁବେନ୍ ତୃଷା ମେଣ୍ଟାଇ ଧୀରେ ଧୀରେ ଏକ ମସ୍ତ ବଡ଼ ମାତାଲ ହୋଇଛି । ହିପ୍‌ପି ପୋଷାକରେ ବୁଲେ, ମୁହଁରେ କଳା ଦାଢ଼ି, ଅତ୍ୟଧିକ ଆକାଶର ରଙ୍ଗିନ୍ କଳ୍ପନାକୁ ଚାହିଁ ଚାହିଁ ବେକଟା ସରୁ ହୋଇଯାଇଛି । ସବୁ ରଙ୍ଗର କନା ତା'ର ଗୋଡ଼ରୁ ବେକର ଶେଷ ପ୍ରାନ୍ତଯାଏ ଶୋଭା ପାଉଥାଏ ।

ଦର୍ଶକମାନେ ଚିତ୍କାର କଲେ । ଆଲୁଅ ଜଳି ଉଠିଲା । ଅସଲ ଜାଗାରେ ଯତିଭଙ୍ଗ । ଡିଉଟିରେ ଥିବା ହାବିଲଦାର ଡାକିଲେ – ଆଜ୍ଞା, ତିନିଜଣଯାକ ଏଆଡ଼େ ଆସନ୍ତୁ, ବାବୁ ଡାକୁଛନ୍ତି ।

ପ୍ରାୟ ବର୍ଷକ ତଳେ ମିଷ୍ଟର ଚୋପ୍ରା ହେମମାଳିନୀଙ୍କ ରୂପବହ୍ନିରେ ପତଙ୍ଗ ସମ ପଡ଼ି ଯେତେବେଳେ ସାମାଜିକ ମହିଳାମାନଙ୍କର ଦେଶସେବା କାର୍ଯ୍ୟରେ ସହାୟତା କରିବାକୁ ଏକ କ୍ଲବ ଉଦ୍‌ଘାଟନ

କଲେ, ସେତେବେଳେ ଚନ୍ଦ୍ରମା ଉପରେ ମଣିଷ କେହି ପାଦ ଦେଇ ନଥିଲେ । ସେଇ ଶାଶ୍ୱତ, ଅନାଘ୍ରାତ, ସୁସ୍ଥ ଓ ମାନବ ପଦ ଲାଞ୍ଛନ ବିରହିତ ଚନ୍ଦ୍ରଟି ସେତେବେଳେ ରାଜଧାନୀର ଆକାଶରେ ସର୍ବମୟ ରଜତ ରାଜପୁରୁଷ ଭଳି ରାଜତ୍ୱ କରୁଥିଲେ ।

ମିଷ୍ଟର ଚୋପ୍ରା ଅଧା ପେଗ୍‌ର ସବୁଜ ଗ୍ଲାସ୍‌ଟିକୁ ଚନ୍ଦ୍ରକିରଣରେ ହେମମାଳିନୀଙ୍କ ଅଧରରେ ଛୁଆଁଇ କହିଥିଲେ, 'ଶୁଣ ହେମ, ମଧୁସୂଦନ ମୋ' ଅଣ୍ଡରରେ କାମ କରେ, ଖୁବ୍ କର୍ତ୍ତବ୍ୟପରାୟଣ, ମୁଁ ତାକୁ ବହୁତ ଉପରକୁ ଉଠାଇଦେବି । (ଚୋପ୍ରା ସାହେବ ଢଳୁଥାନ୍ତି ଆଉ କହୁଥାନ୍ତି ।) ଏଇ ସେଦିନଯାଏ ମୁଁ ଜାଣି ନ ଥିଲି ତୁମେ ମଧୁସୂଦନର ଦ୍ୱିତୀୟ ପକ୍ଷା ସ୍ତ୍ରୀ, ସନ୍ତାନହୀନା, ଖୁବ୍ ଉତ୍ତମ କଥା । ହୀରାଟା ବ୍ରାଇଟ ରହିବ କିମିତି ? ଟିକିଏ ଘଷାମଜା ଦରକାର । ସେଥିପାଇଁ ମୁଁ ଅଧମ ସେବକ ରହିଛି ପାଖେ ପାଖେ । ଏଥିରୁ ଟିକିଏ ଚାଖ ହେମ, ଦେଖିବ ତୁମେ ହଠାତ୍ ଅନ୍ୟ ଏକ ନାରୀ ହୋଇଯାଇଛ, ବିଶ୍ୱକୁ ଆନନ୍ଦ ଦେବାକୁ ତୁମର ଜନ୍ମ । ହଁ, ମୋ' ପାଖକୁ ଟିକିଏ ଲାଗିଆସ ।

ସେଦିନ ରାତ୍ରିର ଗଭୀରତା କେତେ ହେଉଥାଏ ହେମ ଜାଣିପାରିଲେ ନାହିଁ । ସାମାଜିକା ହେବାରେ କାହାର କଅଣ ଆପତ୍ତି ଥାଇପାରେ ? ଚୋପ୍ରା ସାହେବ କାର୍ ଚଳାଉ ଥିଲେ । ଏତେ ଶୀଘ୍ର ଘର ଗୋଟାଏ କଅଣ ? ସିଧା ଘରକୁ ନ ନେଇ ଚୋପ୍ରା ଆଣିଲେ ହେମଙ୍କୁ ଜୈନଗୁମ୍ଫା ଦେଖାଇବାକୁ । ଚନ୍ଦ୍ରରାକାର ଉଚ୍ଛ୍ୱସିତ ପ୍ଲାବନ । ବାହାରେ ଅନ୍ଧକାର ନାହିଁ କି ମନ ଭିତରେ ନାହିଁ । ସବୁ ସଫେଦ, ସବୁ ନିର୍ମଳ ।

ଜୈନଗୁମ୍ଫାରୁ ବାହାରି ଆସୁଥିବାବେଳେ ଏଇ' ଦୁଇଜଣ ନାରୀ ପୁରୁଷ ବୋଧହୁଏ, ଟିକିଏ ବାଚାଳ ଓ ବେତାଳ ହୋଇ ଯାଉଥିଲେ । ଡିଉଟିରେ ଥିବା ପୁଲିସ୍ ଅନୁରୋଧ କଲା – ଆଜ୍ଞା ଟିକିଏ ଏଆଡ଼େ ଆସନ୍ତୁ ।

—ତିନି—

ସେଦିନ ରବୀନ୍ଦ୍ର ମଣ୍ଡପରେ ଯୋଗୀ ଅରବିନ୍ଦ ଦର୍ଶନ ମେଳା । ବହୁ ଭକ୍ତ ଯୋଗ ଦେଇଛନ୍ତି । ନାରୀ ପୁରୁଷ ସମାବେଶରେ ଆଲୋକଦୀପ୍ତ ଏଇ ମଣ୍ଡପଟି ବଡ଼ ବିଚିତ୍ର ମନେ ହେଉଥାଏ । ମନ୍ତ୍ରୀ ମହୋଦୟ ସଭାପତି ହୋଇଛନ୍ତି । ନିଜେ ଧାର୍ମିକ ପୁରୁଷ । ପ୍ରବଚନ ଦେଉଛନ୍ତି । କହିଲେ – 'ଆପଣମାନେ ବର୍ତ୍ତମାନ ଘୋର ଦୁର୍ଦ୍ଦିନରେ ପଡ଼ିଛନ୍ତି, ମୁଁ ଜାଣେ । ଏ ଜଡ଼ଜଗତ ବଡ଼ ଭୟଙ୍କର । ଆମକୁ ଉପରକୁ ଯିବାକୁ ହେବ । ଧର୍ମ–କର୍ମରେ ମତି ଦିଅନ୍ତୁ । ପରିବାରର ସମସ୍ତଙ୍କୁ ବୁଝାନ୍ତୁ, ଦେଖିବେ ପଥ ପରିଷ୍କାର ଦେଖାଯିବ ।'

ସଭାଗୃହରେ ଗୋଟାଏ କଣକୁ କିଛି ଅସ୍ଥିରତା ଦେଖାଗଲା । କିଏ ଜଣେ କଅଣ କହିବାର ଶୁଣାଗଲା । ମନ୍ତ୍ରୀ ମହୋଦୟ କାନ ଡେରିଲେ – ହଁ କିଏ କଅଣ କହୁଛନ୍ତି । ସେ ଆଶ୍ୱାସ ଦେଇ କହିଲେ, ଆପଣ କୁହନ୍ତୁ, କଅଣ କହିବାର ଅଛି କୁହନ୍ତୁ....

ମୁଁ କହୁଛି ଯେ ଏସବୁ ମିଛ କଥା । ଆଜ୍ଞା ଧର୍ମ–କର୍ମରେ ମୁଁ ଅନେକଦିନୁ ମତି ଦେଇଛି । ନିତ୍ୟ ପୂଜା ପାଠ କରେ, ମାତ୍ର ମୋ' ଝିଅ, ମୋ' ସ୍ତ୍ରୀ, ମୋ' ପୁଅ...

'ଆରେ ଏ ତ ମଧୁସୂଦନ ବାବୁ'....

'ଆଃ, ବିଚାରା, ଏଇ କେତେଦିନ ହେଲା ତାଙ୍କର ମୁଣ୍ଡ ଗୋଳମାଳ'....

ଏମିତି କେତେଗୁଡ଼ିଏ ମନ୍ତବ୍ୟ ସୁଶ୍ରାବ୍ୟ ଭାଷାରେ ଝରିଆସିଲା । ମନ୍ତ୍ରୀ କହିବାର ଶୁଣାଗଲା – ହଁ ହୋଇଥିବ ।

ମନ୍ତ୍ରୀ ଚୁମ୍ବକରେ ଇସାରା ଦେଲେ । ମଧୁସୂଦନ କହୁଥାନ୍ତି – ମୁଁ ପାଗଳ ନୁହେଁ, ମୋ' କଥା ଶୁଣନ୍ତୁ ।

ଡିଉଟିରେ ଥିବା ପୁଲିସ୍ ତାଙ୍କୁ ମଣ୍ଡପ ବାହାରକୁ ଅନ୍ୟ ବନ୍ଧୁମାନଙ୍କ ସାହାଯ୍ୟରେ ନେଇଗଲେ – କହିଲେ, ଯଦି କିଛି ମନେ ନ କରିବେ, ତେବେ ଏଆଡ଼େ ଟିକିଏ ଆସନ୍ତୁ, ଜିପ୍‌ରେ ଯିବେ ।

–ଶେଷ–

ଧର୍ମପ୍ରାଣ ମଧୁସୂଦନ ଦେଖିଲେ ତାଙ୍କ ଆସିବା ପୂର୍ବରୁ ପୋଲିସ ଷ୍ଟେସନରେ ତାଙ୍କ ସ୍ତ୍ରୀ, ତାଙ୍କ କନ୍ୟା, ହରିଶ୍ ପାଟ୍ରିକ୍ ଓ ରୁବେନ୍ ନାମକ ପୁତ୍ର ଆଗରୁ ରହିଛନ୍ତି । ହରୀଶ୍ ସିଗାରେଟ୍ ଟାଣୁଚି; ରୁବେନ୍ ପିତାଙ୍କୁ ଦେଖି ପେଣ୍ଟତଳ ମୋଜାରୁ ଛୋଟ କଙ୍କତିକା ବାହାର କରି ମଥା ସାଉଁଳୁଛି ।

ଆପଣ ସାର୍ ? ଚୋପ୍ରାଙ୍କୁ ଦେଖି ପଚାରିଲେ ମଧୁସୂଦନ । "ହଁ, ମହାନ୍ତି ମୁଁ ପୋଲିସ ଷ୍ଟେସନଟା ଇନ୍‌ସପେକସନ୍ କରିବାକୁ ଆସିଥିଲି । ଆସି ଦେଖିଲି, ଆପଣଙ୍କ ପରିବାରର ସମସ୍ତେ ଏଠାରେ ରହିଛନ୍ତି । କଥା କଅଣ ?"

ମଧୁସୂଦନ ଚାରିଆଡ଼କୁ ଚାହିଁଲେ । କପାଳ ଉପରୁ ଝାଳ ପୋଛି କହିଲେ – ସାର୍, ମୋ' ସ୍ତ୍ରୀ ଜେଲ୍ ପରିଦର୍ଶିକା, ବେସରକାରୀ ସଭ୍ୟା । ମଝିରେ ମଝିରେ ଜେଲ ପରିଦର୍ଶନ କରନ୍ତି, ପୁଲିସ୍‌ଥାନା ଆଉ ଜେଲ ଭିତରେ ତ ପାର୍ଥକ୍ୟ ନାହିଁ, ତେଣୁ ସେ ପରିଦର୍ଶନ କରିବାକୁ ଆସିଥିବେ ।

ଚୋପ୍ରା ସାହେବ କହିଲେ – ଗୁଡ୍‌ବାଇ, ହୋଇପାରେ, ହୋଇପାରେ... ଗୁଡ୍‌ବାଇ....

ମଧୁସୂଦନ ସାହେବଙ୍କର କାର୍ ପଛଆଡ଼କୁ ଚାହିଁ ରହିଲେ କିଛିକ୍ଷଣ । ଫେରି ପଚାରିଲେ ଇନ୍‌ସପେକ୍ଟରଙ୍କୁ "ଆମେ ଯାଇପାରୁ ?"

ଇନ୍‌ସପେକ୍ଟର ହସି କହିଲେ – 'ସଉକ୍‌ସେ...'



# ଚାଉଳ

ସହପାଠୀ କେଶବ ସହିତ ସମୁଦ୍ରକୂଳ ନିକାଞ୍ଚନ ଝାଉଁବଣ ପାଖରେ ଦେଖା ହୋଇଗଲା ।

ପୁରୀକୁ ଆସିବା ପରେ ଏଇ ବୋଧହୁଏ ମୋର ଦ୍ୱିତୀୟ ଥର ସମୁଦ୍ର ସାକ୍ଷାତ । ପ୍ରଥମ ଥର ଗାନ୍ଧୀଜୟନ୍ତୀ ଦିବସରେ ପ୍ରାତଃ–ପ୍ରଣାମ ଜଣାଇବା ପାଇଁ ଆସିଥିଲି ବାପୁବିଗ୍ରହ ତଳକୁ ।

କେଶବ ପ୍ରୌଢ଼ ହୋଇଯାଇଛି । ପଢୁଥିଲୁ ରେଭେନ୍‌ସା କଲେଜରେ ଏକା ଶ୍ରେଣୀରେ । ଅଣ୍ଟା ତାର ନଇଁଯାଇଛି ଟିକିଏ । ମହଁ ଉପରେ ଶ୍ମଶ୍ରୁଭାର । ବୋଧହୁଏ ଦାଢ଼ି ଛାଡ଼ିଦେଇଛ ।

ସେ ମତେ ଦେଖି କିମିତି ଲୁଚିବା ଛଳନା କରୁଥିଲା । ମୁଁ ତାକୁ ଚିହ୍ନିପାରିଥିଲି । ପ୍ରାୟାନ୍ଧକାର । ଶୀତଳକଣାବାହୀ ସମୀର ପ୍ରବାହିତ ହେଉଥିଲା । ଅନତିଦୂରରେ ସାଗରର ଉଚ୍ଛ୍ୱାସ ।

ପିଲାଦିନୁ ଏ ସାଗର ହୃଦୟ ସହିତ ମୋର ମଣିଷ ହୃଦୟ ମିଶିଯାଇଛି । ଲେଖା ବା କହିବାରେ ଯେଉଁଠି ମୁଁ ବିରାଟତ୍ୱର ଅବତାରଣା କରିବାକୁ ଯାଏ, ସେଠି ଆଗ ସମୁଦ୍ରର କଥା ମନେ ପଡ଼ିଯାଏ ।

ଜୀବନରେ ଏକାକୀ ନିଃସଙ୍ଗ ଯେତିକି ଏହାର ତଟ ଉପରେ ବସି ମୁଠା ମୁଠା ବାଲିକୁ ଚିରି ଏହାର ଅଭ୍ୟନ୍ତରକୁ ଅନାଇଛି, ତାହାଠାରୁ ଅନେକ ଥର ସାଥୀ ସହିତ ବସି କାହାକୁ କାହାକୁ ଆତ୍ମା ଅର୍ପଣ କରିଦେଇଛି ।

ସାବିତ୍ରୀ, ତ୍ରିବେଣୀ, ସୁରାଙ୍ଗନା, ମୁକ୍ତବେଣୀ– ଏମାନେ ଆଜି ଛାଇ ଭଳି ଏଇ ଝାଉଁବଣ ପାହାଡ଼ରେ ଲୁଚିଯାଇଛନ୍ତି । କିନ୍ତୁ ମତେ ସେମାନେ କଥା ଦେଇଥିଲେ ଆଦୌ ଲୁଚିବେ ନାହିଁ । ସତ ଯେମିତି ସୂର୍ଯ୍ୟ, ସତ୍ୟ ଯିମିତି ଦିବାଲୋକ, ସିମିତି ଶପଥ–ଶିହରିତ ହୋଇ ସେମାନେ ମତେ ସ୍ପର୍ଶ କରିଥିଲେ ।

ଆଜି ସେମାନେ କାହାନ୍ତି ? କିନ୍ତୁ ଏ ଜୀବନ ସହିତ କିଛି ସମୟ ଲୁଚୁକାଳି ଖେଳୁଥିଲେ ବୋଲି ତ ଆଜି ସେମାନଙ୍କୁ ଏ ଲେଖାରେ ମୁଁ ସ୍ୱୀକୃତି ଦେଇପାରୁଛି ।

କେଶବ ଧରା ପଡ଼ିଗଲା ।

ମୁଁ ଡାକିଲି – କିଏ ? କେଶବ ତ ?

ସେ ନୀରବ, ମୁଁ ତାର ପାଖକୁ ଗଲି । ହଁ ସେ କେଶବ । ଅନେକ ଦିନ ପରେ ଦେଖା, ପ୍ରାୟ କୋଡ଼ିଏ ବର୍ଷ ପରେ । ଶୁଣିଥିଲି ସେ କିରାଣୀ ଚାକିରି କରୁଥିଲା । ଏବେ କିନ୍ତୁ ଯାହା ଦେଖୁଛି, ତାର ଯେ ସ୍ୱଚ୍ଛଳ ଅବସ୍ଥା ନାହିଁ, ବୁଝିପାରିଲି ।

ସେ ମତେ ଅନାଇଲା । ତାର ଗୋଟାଏ ହାତ ପ୍ୟାଣ୍ଟ ପକେଟରେ .... ମୁଁ ତାକୁ ଅଭିବାଦନ ଜଣାଇବା ପାଇଁ ତା'ର ଦୁଇ ହାତକୁ ଧରିବା ପାଇଁ ଚେଷ୍ଟା କଲି ।

ସେ ଟାଣିଆଣିଲା ପକେଟରୁ ଗୋଟାଏ ମଦ ବୋତଲ । ମୁଁ ଦୁଇପାଦ ପଛକୁ ଘୁଞ୍ଚିଆସିଲି ।

–ରହ ଭାଇ, ଏତେଦିନ ପରେ ଦେଖା, ମୁଁ ଉତ୍ସବ କରିବି, କିନ୍ତୁ ଆଗ ପିଇନିଏ, କାରଣ ଭାରି ଶୋଷ । ଘରେ ତ ବଢ଼ନ୍ତା ଝିଅ, ଯାଗା ବି ନାହିଁ । ଟିକିଏ ନିରୋଳାରେ ପିଇବା ପାଇଁ । ଏମିତି ପ୍ରତିଦିନ ଏତିକିବେଳେ ଏଠାକୁ ଆସେ । ନିଛାଟିଆ ଝାଉଁବଣ । ଆଶ୍ରୟ ଦିଏ ମଣିଷକୁ । ଯେ ଖୋଜେ ସେ ପାଏ । ମୁଁ ଖୋଜିଆସିଛି ଏଇଭଳି ବିଶ୍ରାମର ସ୍ଥାନକୁ ।

ମନେ ପଡ଼ିଲା କେଶବ ରେଭେନ୍‌ସାଭିୟାନରେ ତାର କିଶୋର ଅବସ୍ଥାରେ କବିତା ଲେଖୁଥିଲା । ଆଜି ବି ଶୁଣିଲି ତାର କହିବା ଢଙ୍ଗରେ ସେଇ କବି–ଆଭିଜାତ୍ୟ ରହିଛି ଯଦିଓ ସୁରଲକ୍ଷ୍ମୀ ବହୁ କାଳରୁ ତାର ଅଙ୍କ ଛାଡ଼ି, ବିଦାୟ ନେଇଛନ୍ତି ।

'ତୁ ପୁଣି ଯାକୁ ଧରିଲୁ ? କାହିଁକି ? ବସ୍ ବସ୍, କହି ମୁଁ ତାକୁ ବସାଇଲି ।

ସେ ବସିପଡ଼ିଲା । ବୋତଲକୁ ଆଗ୍ରହରେ ମୁହଁ ଉପରକୁ ଟେକିନେଇ ନିଃଶେଷ କରିଦେଲା ତାର ଧାରାଟିକୁ ।

ଚାରିଆଡ଼କୁ ଚାହିଁଲି । ଏଇ ସେଇ ପରିଚିତ ଝାଉଁବଣର କୁଦ । ଦିନେ ଏକ ଅପରାହ୍ନରେ ଏହିଠାରେ ବସିଥିଲି । ବସିଥିଲା ମୋ ପାଖରେ କୁନ୍ତଳା । କଥା ଥିଲା ସେ ମତେ ସେହିଠାରେ କହିଯିବ ତାର ଅତୀତର ଯେତେକ ପାପ ଓ ପୁଣ୍ୟର ଇତିବୃତ୍ତ ଏବଂ ଯେଉଁ ଦଲିଲ ଦେଖାଇ ତାକୁ ଦ୍ୱିତୀୟା ପରିଣିତା ସ୍ତ୍ରୀ କରିବାକୁ ନରରାକ୍ଷସ ଚତୁର୍ଭୁଜ ବଳିୟାର ସିଂହ ଚକ୍ରାନ୍ତ କରିଥିଲା, ସେହି ଦଲିଲ ମତେ ସେହିଠାରେ କୁନ୍ତଳା ଦେଖାଇଥିଲା ।

ପଚାରିଥିଲି – ଏ କଅଣ ସତ ? ତମେ ଦସ୍ତଖତ କରିଛ, ଠିକ ତମ ଦସ୍ତଖତ ଭଳି ତ ଦେଖାଯାଉଛି । ତାପରେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟଙ୍କର ବି ସେଇ ମୋହର ଅଛି । ତେବେ ତ ତୁମେ ବଳିୟାର ସିଂହର ଆଇନତଃ ସହଧର୍ମିଣୀ, ପ୍ରଥମ ବା ଦ୍ୱିତୀୟ– ସେ ପ୍ରଶ୍ନ ଅବାନ୍ତର । ମୁଁ ଏ ପରିସ୍ଥିତିରେ କଅଣ କରିବି ?

କୁନ୍ତଳା କାନ୍ଦୁଥାଏ । କେବଳ କହୁଥାଏ 'ମତେ ରକ୍ଷାକର, ଏ ବିପଦରୁ ରକ୍ଷାକର ।' କୋର୍ଟ କଚେରୀ କଲେ ସେ ରାକ୍ଷସ ଏହାରି ବଳରେ ପ୍ରମାଣ କରିଦେବ ଯେ ମୁଁ ତାର ସ୍ତ୍ରୀ; କିନ୍ତୁ ତା ଘରେ ତାର ସ୍ତ୍ରୀ ପିଲା ଅଛନ୍ତି । ମୁଁ ଭଙ୍ଗାଖେଳଣାକୁ ଯୋଡ଼ିବାକୁ ଚାହୁଁଛି । ମୁଁ ବି.ଏ. ପଢୁଛି, ଏମ୍.ଏ ପଢ଼ିବି । ସାଧମତେ ଉଠିବାକୁ ଚେଷ୍ଟା କରିବି, ମାତ୍ର ଏଇ ବାଧା ମତେ କାତର କରିଦେଉଛି । ତମେ ରକ୍ଷା କର ।

ସଂସାରରେ ବଳିୟାରସିଂହ ଭଳି ଜନ୍ତୁର ଅଭାବ ନାହିଁ । ବୋଧହୁଏ କୁନ୍ତଳା ଅଭିଭୂତ ଅବସ୍ଥାରେ ଦଲିଲରେ ଦସ୍ତଖତ କରିଦେଇଛି ଯେଉଁ ସମୟରେ ପଞ୍ଚ ପବନରେ ଭାସିଆସେ ସ୍ୱୀକାରୋକ୍ତି – "ମୁଁ ତୁମର, ତୁମେ ମୋର... ଜନ୍ମ.... ଜନ୍ମାନ୍ତର ।"

ମୁଁ ଜାଣେନା କୁନ୍ତଳାକୁ ରକ୍ଷା କରିବା ପାଇଁ ମୋର ଶକ୍ତି ଥିଲା କି ନାହିଁ, ତେବେ ତାର ଭବିଷ୍ୟତ ଜୀବନରେ ସେ ପ୍ରତିଷ୍ଠା ପାଇଛି । ଆଧୁନିକା ସାମାଜିକା ମହିଳାଭାବରେ ଆଜି ସେ ପରିଚିତା । ଶୁଣିଲି ସେ ବିବାହ କରିଛି ।

ସେଇ ଝାଉଁବଣ । କେଶବ ମତେ ଚାହିଁ ରହିଛି । ତାକୁ ନିଶା ଲାଗି ଆସୁଛି–

କହିଲା – ତୁ ଭାଇ କୁଆଡ଼େ ? ଶୁଣିଛି ତୁ ବାନପ୍ରସ୍ଥୀ । ଶ୍ରୀକ୍ଷେତ୍ରରେ ରହିବୁ ବୋଲି ଠିକ୍ କରିଛୁ । ମତେ ଘୃଣା କଲୁ କି ? ମୁଁ ମଦ ପିଏ । ଏକଥା ପୁଅ ଝିଅ ଜାଣନ୍ତି, ସ୍ତ୍ରୀ ଜାଣେ । ଆଗ ଆଗ ସ୍ତ୍ରୀ ନିଜ ଛାତିକୁ ବିଦାରିଦେଇ କାନ୍ଦୁଥିଲା, ମତେ ଅଭିଶାପ ଦେଉଥିଲା, ଏବେ ଶାନ୍ତ ହୋଇ ଯାଇଛି ।

ପଚାରିଲି – ଚାକିରି ଅଛି ତ ?

– ନାଇଁ ଭାଇ, ଚାକିରି ରହିବ କୁଆଡୁ, ଭିଖ ମାଗୁଛି ।

ଭିଖ ମାଗୁଛୁ ? ମୁଁ ଅବାକ୍ ହୋଇଗଲି । ଭିଖ ମାଗି ତୁ ମଦ ପିଉଛୁ ? ପିଲାପିଲି କିମିତି ଚଳୁଛନ୍ତି ?

କେଶବ ଅଟ୍ଟହାସ୍ୟ କଲା – କହିଲା, ଭାଇ ତମମାନଙ୍କ ଭଳି ସଂଯମୀ ପୁରୁଷଙ୍କ ପାଇଁ ଏ ସଂସାରର ରୂପ ଯାହା, ଆମ ପାଇଁ ତାହା ନୁହେଁ । ମୋର ଦୁଇଟା ଝିଅ, ଅଭିନେତ୍ରୀ, ମାନେ ଆକ୍‌ଟ୍ରେସ; ଗୋଟିଏ ପୁଅ ମେଲୋଡ଼ି ଗ୍ରୁପ୍‌ର କାରପଟଦାର । ବାସ୍ ସଂସାର ଏତିକି; ଆଉ ସ୍ତ୍ରୀ ଏଇ ଝାଉଁଗଛରୁ ଡାଳ ଭାଙ୍ଗେ, ରାତିରେ ଲୁଚାଇ ବିକ୍ରିକରେ ।

ପୁଣି ସେଇ ଅଟ୍ଟହାସ୍ୟ.... କେଶବ କହିଲା – ରାଧାମଣି ଆସେ ଅଭିସାରରେ ଝାଉଁବଣକୁ କାଠ ଭାଙ୍ଗିବାକୁ; ମୁଁ ଆସେ ମଦ ବୋତଲ ଧରି ଏଠି ନିରୋଳାରେ ପିଇବାକୁ। ଆମେ ଏଇଠି ଧକ୍କା ଖାଉଁ ଆପଣା ଆପଣା ଭିତରେ। ସୁରତ କରୁ ଧକ୍କା ଟିକିଏ ଜୋର ହୋଇଗଲେ। ଏଇ ସମୁଦ୍ର ସାକ୍ଷୀରେ ଭାଇ !

କାହିଁକି ଏମିତି ହେଲା ? ତୁ ତ ଜାଣିଛୁ ପଢ଼ିଲାବେଳେ କଲେଜରେ ମୋର ଆଶା ଆକାଙ୍‌କ୍ଷା କମ୍ ନ ଥିଲା; ଭଲ ମଣିଷ ହେବି; ଗାନ୍ଧୀ ଗୋପବନ୍ଧୁ ଦେଶରେ ଜନ୍ମିଛି, ନିଜେ ମହତ୍ ହେବି, ଅନ୍ୟକୁ ମହିମା ଶିଖାଇବି। କିନ୍ତୁ ହେଲା ନାହିଁ। ସତ୍ୟରେ ରହିବାର ଅପରାଧ ମୋର, ନ୍ୟାୟରେ ରହିବାର ଅପରାଧ ମୋର, ତେଣୁ ମାଟି ସହିଲା ନାହିଁ। ମୁଁ ମାଟିରେ ମିଶିଗଲି।

କେଶବ ନିଃଶ୍ୱାସ ମାରିଲା। ପ୍ୟାଣ୍ଟ, ପକେଟକୁ ଦରାଣ୍ଡିଲା – କହିଲା, ଆଉ ନାହିଁ। ତୋ ସାଙ୍ଗେ ଦେଖାହେବାର ଜାଣିଥିଲେ ମୁଁ ଆଉ ଗୋଟାଏ ଆଣିଥାନ୍ତି। ବେଶ୍ ଜମିଥାନ୍ତା। ତୁ ନିଶ୍ଚୟ ଆଉ ଗୋଟାଏ ବୋତଲ ପିଇବାକୁ ଟଙ୍କା ଦେବୁ। ଆମର ମିଳନ ଉତ୍ସବ ସାର୍ଥକ ହେବ।

ଦେଖିଲି କେଶବ କ୍ରମେ ଆୟତ୍ତର ବାହାରକୁ ଚାଲିଯାଉଛି।

ହଠାତ୍ ସେ କହିଲା – ଆରେ ଝିଅ କଥା ପଚାରୁନାହୁଁ ଯେ !! ଭାରି ସୁନ୍ଦରୀ ସେମାନେ। ଅଭିନେତ୍ରୀ। ଓଡ଼ିଶାଯାକ ବୁଲୁଛନ୍ତି, ଅଭିନୟ କରୁଛନ୍ତି। ଆରେ ଅଭିନୟ କରୁ କରୁ କେବେ କେବେ ସତରେ ବି ସେମାନଙ୍କର ସବୁକିଛି ଦେଉଛନ୍ତି.... ଯାହା କୁହ ଭାଇ ସେଇସବୁ ସୁଯୋଗରେ ସେମାନେ ମୋଟା ଟଙ୍କା ପାଆନ୍ତି। ମୋର ବି ପିଇବା ମାତ୍ରା ବଢ଼ିଯାଏ।

ପୁଅଟାର ପ୍ରତିଭା ଥିଲା ମ୍ୟୁଜିକରେ... ଲକ୍ଷ୍ନୌ ପଠାଇବାକୁ ଇଚ୍ଛା କରିଥିଲି... ହେଲେ ମୋର ଚାକିର ଯିବା ପରେ ପରେ ସେ ଆଶା ମଉଳିଗଲା। ସେ ମେଲୋଡ଼ିର ରିକ୍ ମାଷ୍ଟର.... ବେଶ୍ ବଜାଏ ଆକାର୍ଡ଼ିନ....

ଗଭୀର ଦୁଃଖରେ ମୁଁ ପଚାରିଲି– କେଶବ, ତୋର ଜୀବନ ଏମିତି କାହିଁକି ହେଲା ?

କାହିଁକି ହେଲା ? ଆରେ ମୋ ଭଳି ହଜାର ହଜାର ଏମିତି ଫଟା ଜୀବନ ଘେନି ମଦ ବୋତଲରେ ମିଶିଯାଉଛନ୍ତି। ଚାଉଳ– ଚାଉଳ !!

ଚାଉଳ କଅଣ କେଶବ ? ମୁଁ ପଚାରିଲି – ତା ସାଙ୍ଗକୁ।

କମ୍ବଳ, କାନାଡ଼ିୟାନ କମ୍ବଳ; ଆରେ ଭାଇ ଯଦି ସେଇ ଦୁର୍ଦ୍ଦିନ ରାତିରେ ମୁଁ ଖାଲି 'ହଁ' କରିଦେଇ ୱାଗନଟାକୁ କଲିକତା ମାର୍କେଟକୁ ଛାଡ଼ିଦେଇଥାନ୍ତି, ତେବେ ଆଜି ଲକ୍ଷପତି ହୋଇ ବସିଥାନ୍ତି; ସେଇ କଥା ହେଲା, ଯେ କଲା ସେ ମୋ ସାଥୀ କିରାଣୀ। ସେ ଆଜି ଧନପତି। ମୁଁ ବରଖାସ୍ତ ହେଲି; କାରଣ ମୁଁ ଅପାରଗ।

ଆରେ ଓଡ଼ିଶାରେ ଯେ ବଢ଼ି, ମରୁଡ଼ି ଘଟୁଛି, ତାହା ତ ମହା ସୁଯୋଗ। ବଡ଼ ହାକିମମାନେ ଗରିବ କିରାଣୀଙ୍କୁ ଧରି ହାତସଫେଇ କରନ୍ତି।

ମୁଁ ଅଧୀରଭାବରେ କହିଲି – କେଶବ, ତୋର ନ୍ୟାୟ ଓ ସତ୍ୟତାକୁ କେହି ମୂଲ୍ୟ ଦେଲେନି ? କୋର୍ଟ କଚେରୀ କଲୁନି ?

ସେ ବିରକ୍ତି ଓ ଘୃଣାରେ ତାର ଖାଲି ବୋତଲଟାକୁ ଝାଉଁବଣ ଭିତରକୁ ଫୋପାଡ଼ିଦେଇ କହିଲା – ଏ ଯୁଗରେ ସତ୍ୟ, ନ୍ୟାୟ ? ଅସମ୍ଭବ। ହାରିଗଲି ଭାଇ ! ପୁଣି ଯଦି ଜନ୍ମ ନିଏ, ତେବେ ବିଚାରିବି ସେତେବେଳେ କଅଣ କରିବି।

ଉଠିପଡ଼ି ସେ ହସି ହସି ଚାଲିଗଲା। କହିଗଲା – ଦିନେ ଏଇ ସମୁଦ୍ର ଦେଖି ମୁଁ ବିଭୋର ହେଉଥିଲି, ଆଜି ସେହି ସମୁଦ୍ର–କ୍ଷୁଧା ମତେ ଗ୍ରାସ କରିଛି। ଚାଉଳ... ଚାଉଳ... ନା... ମଦ... ମଦ।

■■■

# ଜୀବନ ରଙ୍ଗ

ଗୋଟିଏ ନିର୍ଦ୍ଦିଷ୍ଟ ବସ୍‌ରେ ଛୁଟିଦିନ ଛଡ଼ା ପ୍ରତ୍ୟେକ ଦିନ ମୁଁ ମୋର କର୍ମକ୍ଷେତ୍ରକୁ ଯାଏ । ସେଥିପାଇଁ ବସ୍‌ଟି ମୋର ପରମ ଆତ୍ମୀୟ ହୋଇଯାଇଥାଏ ଓ ତାର ଚାଳକ, ପରିଷ୍କାରକ ଓ ପରିଚାଳକ ବ୍ୟକ୍ତିଗୁଡ଼ିକ ମୋର ବେଶ୍ ଜଣାଶୁଣା ହୋଇଯାଇଥାନ୍ତି । ମୁଁ ଆରାମରେ ଯାଏ, କାରଣ ମୁଁ ଗୋଟିଏ ଛକଯାଗାରୁ ବସ ଚଢ଼ିଲେ ବି ମୋ ପାଇଁ ପଛ, ଆଗ ବା ମଧ୍ୟ ଭାଗରେ ଗୋଟିଏ ନିଶ୍ଚିତ ସିଟ୍ ପରିଚାଳକ ରଖିଥାନ୍ତି ।

ମୁଁ ପ୍ରତ୍ୟେକ ଦିନ ମୋ ଛକଯାଗାରୁ ଚଢିବାମାତ୍ରେ ପରିଚାଳକଙ୍କୁ ଧନ୍ୟବାଦ ଜଣାଏ; କେତେବେଳେ ହସିଦେଇ, କେତେବେଳେ ମୁଣ୍ଡ ହଲାଇ ଅବା କେତେବେଳେ ଚକ୍ଷୁ ତାରକା ଖେଳାଇ ମୁଁ ଧନ୍ୟବାଦ ଜଣାଏ । ସେ ଅତି ପ୍ରସନ୍ନ ଭାବରେ ମତେ 'ବସନ୍ତୁ' କହି ମୋର ନିର୍ଦ୍ଧାରିତ ସ୍ଥାନକୁ ହାତ ବଢ଼ାଇ ଦିଅନ୍ତି ।

ଯାତ୍ରୀମାନେ ଜାଣନ୍ତି ଯେ ମୁଁ ସଦାବେଳର ଆରୋହୀ, ତେଣୁ ସେମାନେ ବି ମତେ ସଂଭ୍ରମ ଦେଖାନ୍ତି ଓ ମୁଁ ସମସ୍ତଙ୍କ ସହିତ ସାମାଜିକତା ରକ୍ଷାକଲା ଭଳି ଗୋଟିଏ ମୁହୂର୍ତ୍ତକୀୟ ଅବିଚ୍ଛନ୍ନ ଚାହାଣୀରେ ସମସ୍ତଙ୍କୁ ଆପ୍ୟାୟନ କରି ଗମ୍ଭୀର ଭାବରେ ମୋ ସିଟ୍ ଉପରେ ବସିଯାଏ ।

ଲୋକେ ଭାବନ୍ତି ମୁଁ ଗୋଟିଏ ବଡ଼ ଚାକିରି କରୁଛି । ଅଧାଶୁଣା ନଶୁଣା ଭାବରେ ଯାତ୍ରୀମାନେ ପଚାରାପଚରି ହୁଅନ୍ତି । "ଏ କିଏ" ? ମାତ୍ର କ୍ରମେ ସେମାନେ ଜାଣିନିଅନ୍ତି ଯେ, ଯେଉଁ ପ୍ରକାର ଚାକିରି କଲେ ଗୋଟାଏ ଫିଆଟ୍ ବା ଆମ୍ବାସାଡ଼ାର ମଟରରେ ହାକିମମାନେ ଚଲାବୁଲା କରନ୍ତି, ସେ ପ୍ରକାର ଚାକିରି ମୁଁ କରେ ନାହିଁ । ମୋ ଧରଣର ଚାକିରିରେ କେବଳ ସାଇକେଲ ଖଣ୍ଡେ ମୋର ଯାନ ହେବା ପାଇଁ ଯୋଗ୍ୟ, ତାହାଠାରୁ ଅତିରିକ୍ତ ମୋର ଭାଗ୍ୟରେ ନାହିଁ । ମାତ୍ର ସାଇକେଲ ମୁଁ ଆଉ ଚଢୁନାହିଁ । ବୟସ ଓ ମନ ଉଭୟ ଦିଗରୁ ତାହାକୁ ପରିତ୍ୟାଗ କରିଛି ବହୁଦିନ ହେଲା । ଅବଶ୍ୟ ଗୋଟାଏ ସ୍ମୃତି କୋହମିଶା ମିଉଜିୟମର ସାମଗ୍ରୀ ଭାବରେ ମୋର ଅଧୁନା ପରିତ୍ୟକ୍ତ ଟାୟାର ଟିଉବ୍ ହୀନ, ଫ୍ରେମ୍ ସର୍ବସ୍ୱ ସାଇକେଲ ନାମଧାରୀ ଗୋଟିଏ ଏକଦା ମଣିଷଚଢ଼ାଯନ୍ତ୍ର ମୋ ଆବର୍ଜନ୍ୟ ଜଞ୍ଜାଳ ରକ୍ଷିତ ଗୋଦାମ ଘରେ ଅଶ୍ରୁସଜଳ ନୟନରେ ମତେ ଚାହିଁ ରହିଥାଏ ।

ବୟସ ହେଲାଣି; ମନ ବି ସଂକୁଚିତ । ପଦେ ପଦେ ଭୟ ଓ ସଂକୋଚ । ଯେତେ ପରିମାଣରେ ଆତ୍ମବିଶ୍ୱାସ ଥିଲେ ଗର୍ତ୍ତବହୁଳ ମ୍ୟୁନିସ୍‌ପାଲିଟି ରାସ୍ତା ଉପରେ ପାଦରେ ଚାଲି ବା ସାଇକେଲ ଆରୋହଣ କରି ଯାତ୍ରା କରାଯାଇପାରେ, ସେତେ ପରିମାଣର ଆତ୍ମବିଶ୍ୱାସ ମୋର ନାହିଁ । ତେଣୁ ଏଇ ବସ୍ ଯାନରେ ଯାଏ ଓ ସେଥିରେ ଯିବାଦ୍ୱାରା ମୁଁ ମୋର ଛୋଟ ସଂସାରଟିଏ ସେଠାରେ କରିନେଇ ଥାଏ । ମନ୍ଦ ଲାଗେ ନାହିଁ ଏ ସଂସାର । ବରଂ ମୁଁ କହିବି ମୋର ମୌଳିକ ସଂସାରର ଦାବାନଳଠାରୁ ବସ୍ ମଧ୍ୟସ୍ଥ ସଂସାରଟି ସ୍ନିଗ୍ଧ ଶୀତଳ ବୋଲି ମନେହୁଏ ।

ଏ ଜଗତରେ ସବୁ ପରିବର୍ତ୍ତିତ ହୋଇଯାଏ । ଆଜି ନିର୍ଦ୍ଧୂମ ଖରା ତ କାଲିକି ଅଚାନକ ବର୍ଷା । ଆଜି ଏ

ମଣିଷଟି ବଞ୍ଚିଛି ତ, କାଲିକି ତାର ହାଟ ସଉଦା ସାଉଁଟି ସେ ଚାଲିଯାଇଛି। ଆଜି ଯୁଦ୍ଧ ତ କାଲି ଆଉ ଯେମିତି ଯୁଦ୍ଧ ନ ହେବ, ସେଥିପାଇଁ ଆୟୋଜନ – ଏମିତି ଦେଖିଲେ ଏଇ ମହାପରିବର୍ତ୍ତନର ତାଳେ ତାଳେ ମୋ ବସ୍‌ର ବି ବଦଳା ବଦଳି ହୋଇଯାଏ। କେତେବେଳେ ନୂଆ ଛନ୍‌ଛନୀ ତରୁଣୀ ଭଳି ଲାଜମିଶା ସାଇଁ ସାଇଁ ପବନରେ "ସୁ" କରି ଗଡ଼ିଆସୁଛି ତ ଆଉ କେଉଁଦିନ ତ୍ରିପଣ୍ଡ କଳା ମହିଷାସୁର ଦୈତ୍ୟ ଭଳି ମହାଗର୍ଜନ କରି ପାହୁଲ ପକାଇ ଆସୁଛି, ଆଉ କେଉଁଦିନ ତାର ଗର୍ଜନ ଅନାଦିକାଳ ଯାଏ ଲମ୍ବି ରହିଛି, ଥରେ ସେ ଚୁପ୍ କରି ରହିଗଲେ, ଏ ପୃଥିବୀରେ କାହାର ସାଧ ନାହିଁ ତାକୁ ଜୀବନ୍ୟାସ ଦେଇ ପୁଣି ଗଡ଼ାଇଦେବ।

ଏଇ ବସ୍ ବଦଳିରେ ମୋର ମିଜାସ୍ ବି ଥରେ ଥରେ ବଦଳିଯାଏ। କାରଣ ବସ୍‌ର ଶରୀରଟା ବଦଳି ଗଲେ କିଛି ଅସୁବିଧା ନ ଥିଲା ତାର ଆତ୍ମାଟି ବି ସେଥି ସଙ୍ଗେ ସଙ୍ଗେ ବଦଳିଯାଏ। ତରୁଣୀ ବସ୍‌ରେ ତରୁଣ ଡ୍ରାଇଭର ବଦଳିରେ ଗୋଟାଏ ୟାଃ ବଡ଼ ମାଗୁରମାଛିଆ ନିଶଧାରୀ ପ୍ରୌଢ଼ କୃଷ୍ଣକାୟ ଡ୍ରାଇଭର, ଗୋଟିଏ ମାଇଚିଆ ମିହିଭାଷୀ ଟୋକା ପରିଷ୍କାରକ ବଦଳରେ ଗୋଟାଏ ରୁକ୍ଷ ଦୀର୍ଘକାୟ ଟିଂ ଟିଂ ମିଜାସର ଯୁଆନ ଆସି ମିଳିଯାଏ। ଆଉ କେତେବେଳେ ସବୁକଥାରେ "କିସ୍‌ସ" କହୁଥିବା ବ୍ରହ୍ମପୁରୀ ବ୍ରାହ୍ମଣ ପରିଚାଳକ ଯାଗାରେ ଆସିଗଲେ ଜଣେ ଗୌଡ଼ୀୟ ବୈଷ୍ଣବ ନାମାବଳୀ ଧାରୀ ବୃଦ୍ଧ ଯେ କି ଗୋଡ଼ ବାଜୁ କି ନ ବାଜୁ କହୁଥାନ୍ତି "ବୋଇଲା ରାଧେକୃଷ୍ଣ, ଗୋଡ଼ ବାଜିଗଲା କିହେ ?"

ଏମାନେ ହଠାତ୍ ମୋ ମୁଣ୍ଡକୁ ଗରମ କରିଦିଅନ୍ତି। ମୋ ପାଇଁ ସିଟ୍ ନ ଥାଏ। ମତେ ପୁଣି ପଚାରନ୍ତି "କେପିଟେଲ ?" ଅବା "ଓଲଡ୍ ଭୁବନେଶ୍ୱର କେଉଁଠିକି ଟିକିଟ୍ ?" ଏତିକିରେ ସରେ ନାହିଁ। ମୋ ଦେହରେ ହାତମାରି ପଚାରନ୍ତି "ପାଶ୍ ନମ୍ବର ?"

ମୁଁ ଗମ୍ଭୀର ହୋଇ ଛିଡ଼ା ହୋଇଥାଏ। କାରଣ ମୁଁ ତାଙ୍କ କେପିଟେଲ, କି ଓଲଡ୍ ଭୁବ୍‌ନେଶ୍ୱର, କିମ୍ବା କେତେ ନମ୍ବର ପାଶଧାରୀ ଯାତ୍ରୀ ନୁହେଁ। ମୁଁ କଲେଜ ଛକ ଯାଏ ଯିବି, ତେଣୁ ସେ ପର୍ଯ୍ୟନ୍ତ ଟିକଟ ନ ଥାଏ କି ଟିକଟ ବହି ଛପା ହୁଏନି। ଅପରିଚିତ ପରିଚାଳକ ପଚାରିଦିଏ, "ଆପଣ ଭୁଲ କଲେ, ଏଇଟା ତ ଆଉ ଟାଉନ ବସ୍ ନୁହେଁ ?"

ମୋ ମୁହଁ ରାଗରେ ଲାଲ୍ ହୋଇଯାଏ କେଡ଼େ ଅଭଦ୍ର ଏ ସତେ, ଏଇ କଣ୍ଡକ୍ଟରଟା। ଯେଉଁ ଲୋକ ଏ ବସ୍ ଭିତରେ ମାତ୍ର ପନ୍ଦର ମିନିଟର ସଂସାର ପାତି ଆଜିକୁ ତିନିବର୍ଷ ହେଲା ଗଡ଼ି ଚାଲିଛି, ତାକୁ ପୁଣି ଏମିତି ଅପମାନ ? ମୁଁ କଣ ଏତିକି ପାଠ ପଢ଼ିନି ଯେ ଟାଉନ୍ ବସ୍ କେଉଁଟା, ଓ.ଆର୍.ଟି. ବା ଷ୍ଟେଟ୍ ଟ୍ରାନ୍‌ସ ପୋର୍ଟ କେଉଁଟା ଚିହ୍ନି ପାରିବିନି ?

ମୋ ରାଗ ଶିଖକୁ ବଢ଼ିବା ଆଗରୁ ସବୁ ଯାତ୍ରୀ ଝଙ୍କାର ଦେଇ ଏକା ସାଙ୍ଗରେ କଣ୍ଡକ୍ଟରକୁ ଆକ୍ରମଣ କରନ୍ତି, କହନ୍ତି "କାହାକୁ କଅଣ କହୁଛ, ବାବୁଙ୍କୁ ଚିହ୍ନିନ ? ଛିଃ ଏମିତି କହନ୍ତି ? ନୂଆ ଆସିଛ, ଜାଣିନ, ସଦାଦିନେ ଯାଆନ୍ତି, ଆସନ୍ତୁ ଆମେ ଆପଣଙ୍କ ପାଇଁ ସିଟ୍ ରଖିଛୁ।"

ପରିଚାଳକ ଚୁପ ହୋଇଯାଏ। ସେ ଯେ ନୂଆ ବଦଳିରେ ଆସିଛି, ଏ କଥା ଏଇଠି ସେ ଜାଣିପାରେ। ମୁଁ ଦେଖେ ଗୋଟିଏ ସିଟ ଉପରେ କାହାର ଗୋଟିଏ ପ୍ଲାସ୍‌ଟିକ ବ୍ୟାଗ ରହିଥିଲା। ସେଇଟି ଉଠିଗଲା ଆଉ ମୁଁ ସେଠି ବସିପଡ଼ିଲି। ମୋର କ୍ରୋଧ କମିଆସିଲା, ମୁଁ ଜଣେ ପର୍ବତାରୋହଣ ଅଭିଯାତ୍ରୀ ଭଳିଆ ନିଜର ମାନ ଗୌରବରେ ପୁନଃ ପ୍ରତିଷ୍ଠିତ ହୋଇଗଲି।

ତହିଁ ଆରଦିନ ମୋର ତରୁଣୀ ଯାନକୁ ଦେଖି ମୁଁ ପରମ ପ୍ରୀତିରେ ଆଲିଙ୍ଗନ କଲି। ମୁଁ କହିଲି, "ହଇୟେ, ତମେ ଗୋଟାଏ ଦିନ ଅଭିସାରରେ ନ ଆସିବାରୁ ତୁମର

ବର୍ଷ ବର୍ଷର ପ୍ରେମିକ ମୁଁ କିମିତି ବିଡମ୍ବିତ ହୋଇଗଲି ଜାଣିଛ ? କାଲି ଘଟଣା ପରା ! ମତେ ସେ କଣ୍ଡକ୍ଟରଟା କହିଲା ମୁଁ କେଉଁଠି ଟାଉନବସ୍, କେଉଁଟା ଚିହ୍ନିପାରୁନି, ନା ତୁମେ ଆଉ ଏମିତି କରିବନି। ଯେଉଁଦିନ ନ ଆସିବ, ମତେ ଆଗରୁ ଜଣାଇଦେବ। ସେଦିନ ମୁଁ ଛୁଟି ନେବି। କାଲି କଅଣ ତମର ଦିହ ଖରାପ ଥିଲା ?"

ଲାଜ ଓ ହସ ଉଭୟ ଢଙ୍ଗରେ ମନ ଦେହଟାକୁ ସଜାଡ଼ି ଦେଇ ମୋର ତରୁଣୀ ବସ୍‌ଟି "ସୁ" କରି ଚାଲିବାକୁ ଆରମ୍ଭ କରିଦେଲା ଓ ଯେମିତି ମତେ କହିଦେଲା, "ତୁମକୁ ଥରେ ଥରେ ଏମିତି ଶାସ୍ତି, କହି ପାରିବ ତୁମେ ମୋର ଏକାନ୍ତ ?"

ଟିଂ.... ଥରେ ଟିଂରେ ବସ୍ ରହିଲା; ପୁଣି ଟିଂ ଟିଂ ଚାଲିଲା; ପୁଣି ଟିଂ ରହିଲା... ଏ କି ଲୀଳା ? ଆଜି ଏ ତରୁଣୀ ବସ୍ ବୋଧହୁଏ ଲିପସ୍‌ଟିକ ଲଗାଇଛି। ଦେଖୁନ କିମିତି ଯାଉଛି, ରହୁଛି; ପାଦରେ ଯେମିତି କେଳି ମନ୍ଦିରର ନୂପୁର ?

କ୍ଲିନ୍‌ର୍‌ର ଜୟ ହେଲା। କଣ୍ଡକ୍‌ଟର ହାରିଗଲେ। ଯାହାଙ୍କ ପାଇଁ ଏ ଟିଂ ଟିଂ ଲୀଳା, ସେ ଜଣେ ତରୁଣୀ, ଉପରକୁ ଚଢ଼ି ଆସୁଛନ୍ତି। ମେଡ଼ିକାଲ ଛକ। ତାଙ୍କ ହାତରେ ଷ୍ଟେଥିସକୋପ ଓ ଧଳା ଗାଉନ୍।

କଣ୍ଡକ୍‌ଟର ଟୋକା ଲୋକ। ତା' ଆଖିରେ କେବଳ ସୁନ୍ଦରର କଳ୍ପନା। ନିଶ ରଖିଛି। ଟେରିଲିନ୍‌ର ହ୍ୟାଓ୍ୟାନି ପିନ୍ଧିଛି। ମଣିବନ୍ଧରେ ଘଣ୍ଟାଟିଏ ବାନ୍ଧିଛି। ସେ ଦେଖିଲା ଜଣେ ତରୁଣୀ ବସ୍ ଉପରକୁ ଉଠି ଆସୁଛନ୍ତି। କାହିଁକି କେଜାଣି କହିଦେଲା – ସିଟ୍ ନାହିଁ।

ଅଥଚ ସ୍ଥାନ ଥିଲା। ଆମେ ସମସ୍ତେ ଦେଖିଲୁ ମହିଳାଙ୍କ ସଂରକ୍ଷିତ ସ୍ଥାନ ଅଛି।

ସେ ତରୁଣୀଙ୍କୁ ମୁଁ ଏକା କାହିଁକି କେହି ରୂପବତୀ କହିବେ ନାହିଁ। ବିଚାରୀ ରୂପ ପ୍ରସଙ୍ଗରେ ସେ ସବୁବେଳେ ସଂକୁଚିତା ଭଳି ମନେ ହେଲେ। କେବଳ ଶରୀରଟିକୁ ସେ ବୁହାଇଛନ୍ତି ସିନା, ଟିକିଏ ଲାବଣ୍ୟ କେଉଁଠି ଚହଟୁ ନାହିଁ। ଯେ କୌଣସି ପୁରୁଷ ଯେ ପ୍ରକାର ଭାବନା ଘେନି ତାଙ୍କୁ ଦେଖୁ ପଛକେ, ତା'ର ନାରୀରୂପ ପ୍ରତି ନିଶ୍ଚୟ ବିକାର ଆସିବ।

ଛାମୁଦାନ୍ତ ତିନୋଟି ଆଗକୁ ବାହାରି ଆସିଛି ବଡ଼ କଦର୍ଯ୍ୟ ଭାବରେ; ଗୋଟିଏ ଆଖିର ତାରକା ତାର ସ୍ୱାଭାବିକ ସ୍ଥିତି ହରାଇ ବାଁ ପଟକୁ ଢଳି ରହିଛି, ଅନ୍ୟ ତାରକାଟି ଡାହାଣ ପାଖକୁ ଢଳି ରହିଛି, ଯିମିତି ମନେ ହେଲା ନକ୍ଷତ୍ର ଦୁଇଟି ଭିତରେ ଆଦୌ ସୌହାର୍ଦ୍ଦ୍ୟ ନାହିଁ। ଏହି ପ୍ରକାର ଅସହଯୋଗ ଅବସ୍ଥାରୁ ଏତିକି ଶେଷରେ ସାର ହେଲା ଯେ ରମଣୀର ଆଖି ଦୁଇଟି ଯାହାକି ପୁରୁଷର ରୋମାଞ୍ଚ ଜନ୍ମାଇବାରେ ସୃଷ୍ଟିକର୍ତ୍ତାଙ୍କର ଅପୂର୍ବ ସୃଷ୍ଟି, ସେଇ ଦୁଇଟି କୁତ୍ସିତ; ଫଳରେ ଡାକ୍ତରୀ ପଢୁଥିବା ଏଇ ଝିଅଟିର ଅବୟବର ପରିପୁଷ୍ଟିର ସର୍ବପ୍ରକାର ଶୋଭାବନ ସଙ୍ଗତି ଥିବା ସତ୍ତ୍ୱେ ସମଗ୍ର ଚିତ୍ରଟି ଆଦୌ ଆକର୍ଷଣୀୟ ନ ହୋଇ ବରଂ ପ୍ରକଟ ଓ ପ୍ରଗାଢ଼ ଭାବରେ ବିକର୍ଷଣର କେନ୍ଦ୍ର ହୋଇଯାଇଛି।

ବର୍ତ୍ତମାନ ବୁଝାଗଲା କାହିଁକି ତରୁଣ କଣ୍ଡକ୍‌ଟରଟି ଅବଚେତନ ସ୍ତରରୁ ଧକ୍‌କା ଖାଇ ମୁହଁ ଫିଟାଇଦେଲା – 'ସିଟ୍ ନାହିଁ'। ମାତ୍ର କ୍ଲିନର ଜଣକ ପୋଖତ ଅଭିଜ୍ଞ ଲୋକ। କର୍ତ୍ତବ୍ୟ କରିବାରେ ରୂପସୀ କୁରୂପୀର ବିଚାର ନାହିଁ। ସ୍ଥାନ ଥିଲେ ସ୍ଥାନ ଦିଅ ବସ୍‌ରେ। ସେଠାରେ କେବଳ ମଣିଷ ହେଲେ ହିଁ ଚଳିଲା। ତେଣିକି ଦାନ୍ତ, ନାକ, କାନର ବେଭାର ସେଇମାନେ ବୁଝନ୍ତୁ। କହିଲା ପରିଷ୍କାରକ ଏ.ଟି.ଏମ୍ କହୁଥିଲେ ମେଡିକାଲ ଛକରୁ ଜଣେ ଡାକ୍ତରୀ ଛାତ୍ରୀ ଉଠିବେ, ନୂଆ ପାଶ ନମ୍ବର ତାଙ୍କର ହୋଇଛି। ତାଙ୍କୁ ଉଠାଇ ନେବ। ମୋର ମନେ ପଡ଼ିଲା। କଅଣ ଭାଇନା ଉଠେଇବି ?

ଭାଇନା ଦୁଃଖରେ 'ହଁ' ଭରିଲେ। ଝିଅଟି ଉଠି ଆସିଲା ବସ୍ ଭିତରକୁ। ହଠାତ୍ ସମସ୍ତେ ଜିତେନ୍ଦ୍ରିୟ ହୋଇଗଲେ, କେହି ତାଙ୍କୁ ଥରକରୁ ଦୁଇଥର ଚାହିଁଲେ ନାହିଁ, ବଡ଼ ଅବାଞ୍ଛିତ ପଦାର୍ଥକୁ ଧରିତ୍ରୀ ବୋହୁଛି ବୋଲି ଭାବି ସେଇ ଧରିତ୍ରୀ ଉପରେ ବସ୍ ଚାଲିଲା ପଛକେ କାହାର ଅନୁକଂପାର ଅପାଙ୍ଗ ସେ ଝିଅଟି ପାଇଁ ଢଳିଲା ନାହିଁ।

ତେଣିକି ସେ ଝିଅ ହେଲା ଆମ ସାଙ୍ଗ ଓ ସବୁଦିନର ଯାତ୍ରିଣୀ; ଷ୍ଟେଥିସ୍କୋପ୍ ଓ ଧଳା ଗାଉନ୍‌କୁ ଗୋଟିଏ ହାତରେ ଚାପିଧରି ସେ ସଂକୋଚନରେ ଉଠିଆସେ ଓ ଠିକ୍ ସ୍ଥାନରେ ସେ ଅବତରଣ କରେ। କୁଷ୍ଠରୋଗୀକୁ ଛୁଇଁବା ଭଳି କଣ୍ଡକ୍ଟର, "ଇହି କଅଣ କଲି" ଭାବ ଦେଖାଇ ଝିଅଟି ହାତରୁ ପାଶ୍ ନମ୍ବର କାଗଜ ନେଇ ଆସେ ଓ ତତ୍‌କ୍ଷଣାତ୍ ଫେରାଇ ଦିଏ। ଶେଷରେ ମୁଖସ୍ଥ କରିନେଲା ନମ୍ବରଟିକୁ, ଅଣାନବେ।

ସମୟ ବହି ଚାଲିଲା। ମୁଁ ବି ଗଡ଼ି ଚାଲିଲି, ଯୁବକ କଣ୍ଡକ୍ଟର ହାତ ଆଙ୍ଗୁଠିରେ ହଠାତ୍ ଶୋଭା ପାଇଲା ପାଞ୍ଚଟି ସୁନାମୁଦି, ଆଉ ସେ ନିଜ ଅର୍ଜିତ ଘଣ୍ଟା ପିନ୍ଧୁ ନାହିଁ। ସୁନା ପାଣିଦିଆ ଶ୍ୱଶୁର ଘର ଆଡ଼ର ଘଣ୍ଟା ପିନ୍ଧି ସେ ଟିକଟ୍ କାଟେ; ଚଞ୍ଚଳ ମତି ତା'ର ସ୍ଥିର ହୋଇଯାଇଛି। ଗୋଟିଏ ପରିବାରର ସେ ଗୃହସ୍ଥ; ଦାୟିତ୍ୱ ବଢ଼ୁଛି, ସେ ହୋଇଛି ବହୁ ସୁଖ ଦୁଃଖ ଭୋଗର ମଣିଷଟିଏ।

ମେଡିକାଲ ଛକ। ଗ୍ରୀଷ୍ମ, ବର୍ଷା ବସନ୍ତ ଦେଇ ସେଇ ବାଟେ ବସ୍ ଯାଏ; ପାଣି ପବନ କାକର ତଳେ ଛିଡ଼ା ହୁଅନ୍ତି ଯାତ୍ରୀଦଳ।

ସେଦିନ କାହିଁକି ଅନ୍ୟମନସ୍କ ଥିଲି। ଜାଣେ, ଏ ଛକରୁ କିଏ କିଏ ଉଠିବେ। ସାପ୍ତାହକୀ ଯାତ୍ରୀ, ଗୁରୁବାରିଆ ବେପାରୀ, ଶନିବାରିଆ ଅଫିସ୍ ଫେରା ବ୍ୟକ୍ତିମାନେ....

ସେ ଝିଅଟିକୁ ପ୍ରାୟ ପନ୍ଦର ଦିନ ହେବ କେହି ଦେଖି ନାହାନ୍ତି। ଶେଷ ପରୀକ୍ଷାରେ ପାଶ କରି ଚାଲି ଯାଇଥିବେ। ସୁନ୍ଦରୀ ହୋଇଥିଲେ ତାର ଅଭାବ କାହା ଆଖିରେ ପଡ଼ିଥାନ୍ତା; ସେ ସମ୍ବଳତ ତା'ର ନ ଥିଲା। କଥା ବି ସେ କହୁ ନଥିଲା, ମୂକ ଉଦାସ, ସେ କେବଳ ଚାହୁଁଥିଲା ଦୂରକୁ। ସତେ ଅବା ସେଇଠି ତାର ଜୀବନର ସବୁ ସାର୍ଥକତା ରହିଛି।

ମୁଁ କିନ୍ତୁ ତା'ର ଅଭାବ ଅନୁଭବ କରୁଥିଲି। ସିଏ ଆସେ ବୋଲି ରୂପର ଅପର ପାଖଟିର ରହସ୍ୟ ମୁକୁଳିଯାଏ, ତା'ର ଅନ୍ତର ବ୍ୟଥାରେ ମୋ' ହୃଦୟ ବିଳାପ କରେ।

ହଁ, କହୁଥିଲି, ସେଦିନ ମୁଁ ଅନ୍ୟମନସ୍କ ଥିଲି। ହଠାତ୍ ଦେଖିଲି ସେ ଝିଅଟିକୁ। ସେ ଯେ ସାମାନ୍ୟ ହସୁଥିଲା ? ଏ କଅଣ ?

ମଥା ଉପରେ ଓଢ଼ଣା। ସୀମନ୍ତରେ ରେଖିତ ସିନ୍ଦୂର ଧାର। ସର୍ବାଙ୍ଗରେ ଅପ୍ରତ୍ୟାଶିତ ପ୍ରାପ୍ତିର ଗୋଟାଏ ଐନ୍ଦ୍ରଜାଲିକ ମୁଗ୍‌ଧ ଶାନ୍ତଭାବ। କୁମାରୀ ଜୀବନର ତିନୋଟି ଦାନ୍ତ କଳଙ୍କ ହୁଏତ ସେମିତି ଉଚ୍ଚ ହୋଇ ରହିଛି। ରୂପହୀନାର କେମିତି ଗୋଟାଏ ନବ ନିର୍ମିତ ରୂପ, ଚକ୍ଷୁରୋଚକ ରୂପ, ଅନ୍ଧକାର ତଳେ ପ୍ରଦୀପ ଜଳୁଛି।

ମୁଁ କେବେ କିଛି କହେ ନାହିଁ।

ଡାକ ଦେଲି, "ଆସନ୍ତୁ। ଏତେଦିନ କୁଆଡ଼େ ଥିଲେ ?" କହି ଦେଇ ଜିଭ କାମୁଡ଼ି ଦେଲି। ତା' ଜୀବନରେ ଏତେବଡ଼ ବସନ୍ତର ଉତ୍ସବ। ମୁଁ ଲଘୁ କରି ଦେଲି କି, ଏଇ ପଦ କଥାରେ ?

ସେ ହସିଲା। ବୁଝିବାକୁ ବାକୀ ରହିଲା ନାହିଁ ଯେ ତା' ଭଳି ଏକ ରୂପହୀନା ପାଇଁ ବି ଜଣେ ମଣିଷ ଆଗରୁ ଏ ବିଶ୍ୱରେ ଜନ୍ମି ସାରିଥିଲା। ଆମେ ଯେତେ ବେସୁରାରେ କୋଳାହଳ କଲେ ବି, ସେ କିନ୍ତୁ ଜାଣିଥିଲା

ତା' ପାଇଁ ମଣିଷ ଆସିଛି ପୃଥିବୀକୁ, ସେ ନିଶ୍ଚିତରେ ଧରିନେବ ତା'ର ହାତକୁ, ଚଳାଇ ନେବ ଦିଗନ୍ତକୁ। ଯେତେ ବେସୁରା ରାଗିଣୀ ହେଉ, ତାକୁ ସେ କରିବ ସୁରଛନ୍ଦରେ ଛନ୍ଦାୟିତ।

କ୍ଲିନର ତାଙ୍କୁ ସଂଭ୍ରମ ଦେଖାଇଲା। କଣ୍ଡକ୍ଟର ସମ୍ମାନ ଦେଲା। ବିସ୍ମୟ, ଆନନ୍ଦ ଓ ଆସ୍ୱସ୍ତି ସମସ୍ତଙ୍କ ପ୍ରାଣକୁ ଥରେ ଥରେ ପରଶିଗଲା। କି ଅଦ୍ଭୁତ ପରିବର୍ତ୍ତନ!! ଯାତ୍ରୀମାନେ ଚକିତ ହେଲେ।

ଚାରିବର୍ଷ ପୂରିଗଲା। ମୁଁ ଆଉ କଲେଜ ଛକ ଆଡ଼େ ଯିବି ନାହିଁ। ଜୀବନରେ ଛକ ପରେ ଛକ ପାରିହୋଇ ଏବେ ଭାବୁଥିଲି କେମିତି ଗୋଟାଏ ସିଧା ରାସ୍ତା ମିଳିଯାନ୍ତା କି? ସେ ରାସ୍ତା ଲମ୍ବି ଯାଇଥାନ୍ତା ବନମାଳ ଭିତରେ ସବୁଜ କ୍ଷେତର ଗର୍ଭଦେଇ ଗୋଟାଏ ପାହାଡ଼ର ଶିଖ ଉପରକୁ ଯେଉଁଠି ଚାନ୍ଦ ଓ ସୂର୍ଯ୍ୟର ଆଲୋକଧାରା ଅବାରିତ ଖସି ପଡୁଥାନ୍ତା ମୋ' ଅଙ୍ଗ ଉପରେ।

ଛକ ମତେ ଶେଷରେ ଛାଡ଼ିଲା; ମୁଁ ବଦଳି ହୋଇଗଲି।

ଶେଷ ବସ୍ ଯାତ୍ରା। ସେଇ ମେଡ଼ିକାଲର ଛକ। ନମସ୍କାର ତୁମକୁ ହେ ମେଡିକାଲ ଛକ, ନମସ୍କାର ତୁମକୁ....

— ନମସ୍କାର

"—ଶୁଣିଲି ଆପଣ ବଦଳି ହୋଇ ଯାଉଛନ୍ତି। ଆଉ ଆମ ବସ୍‌ରେ ତ ଯିବେନି...." ସେଇ ଝିଅଟି ପଚାରିଲା।

ମୁଁ ନିର୍ବାକ୍, ଯେ ଦୀର୍ଘକାଳ କାହା ସାଙ୍ଗରେ ପଦେ ବି କଥା କହି ନାହାନ୍ତି ଯାନ ଭିତରେ ସେ ଆଜି ଅର୍ଥାତ୍ ମୋର ଅନ୍ତିମ ବସ୍ ଯାତ୍ରା ଦିନରେ ମୋ' ସାଙ୍ଗେ କଥା କହିବେ, ଏ କଥା କି ସମ୍ଭବ?

ଦେଖିଲି ସେଇ ଏକା ଭଙ୍ଗୀରେ ଷ୍ଟେଥିସ୍‌କୋପ୍ ଓ ଧଳା ଗାଉନ୍ ଧରାଯାଇଛି ଗୋଟିଏ ହାତରେ... ଅନ୍ୟ ହାତଟି ଧରିଛି ବସ୍‌ର ପାହାଚ ବାଡ଼କୁ ଆଉ ସେ ଦେହର ଦଣ୍ଡଧାର ନାହିଁ। ତାହା ବାଙ୍କି ଯାଇଛି। ଗତି ଅଳସ; ନିଃଶ୍ୱାସ କ୍ଷିପ୍ର। ଆରୋହଣରେ କଷ୍ଟ ହେଉଛି।

ସ୍ୱାଗତ ନବ ମୁକୁଳିତ ମାତୃତ୍ୱର ସମସ୍ତ ଲକ୍ଷଣ ତାଙ୍କ ଅଙ୍ଗେ ଅଙ୍ଗେ ଚିହ୍ନିତ। ଗୋଟିଏ ଚଳନ୍ତା ମନ୍ଦିରର ପବିତ୍ରତା ଓ ତାହାର ଗର୍ଭସ୍ଥ ବିଗ୍ରହର ଶୁଚିତାର ସୁରଭିରେ ସମଗ୍ର ଯାନଟି ସୁରଭିତ ହୋଇଯାଇଥିଲା। ରୂପହୀନାର ନବରୂପ ନିର୍ମାଣ କରିବାରେ ତପସ୍ୟାକୁ ନମସ୍କାର କରି ମୁଁ ସେଦିନ ଶେଷଥର ପାଇଁ ସେ ତରୁଣୀକୁ ଛାଡ଼ି ଆସିଥିଲି।

ଆଜି ତାଆରି ସ୍ମୃତି ମନେ ପଡ଼ିଗଲା। ମୁଁ ଦୂରରେ। ସେ ହୁଏତ ଆଉ ବସ୍‌ରେ ଯାଇ ନ ଥିବ ଓଡ଼ିଶାର କେଉଁ ଗ୍ରାମାଞ୍ଚଳରେ ମଣିଷର ବ୍ୟାଧିକଷ୍ଟକୁ ଦୂର କରିବାକୁ, ସେ ମହନୀୟା ପାତିଥିବ ଆଶ୍ରମ, ଯେଉଁ ଆଶ୍ରମରେ ସେ ଥିବ, ଆଉ ଥିବେ ଜଣେ ଯେ କି ଏହି ରୂପହୀନାକୁ ହିଁ ନିର୍ବାଚନ କରିନେଲେ ତାଙ୍କର ଜୀବନ ସଙ୍ଗିନୀ ଭାବରେ, ଆଉ ଥିବ ଏକ ନବଜାତକ, ପୁଅ କି ଝିଅ କହି ପାରିବିନି।

ହାୟ, ଏ ଜୀବନ, ଓ ତା'ର କେତେ ରଙ୍ଗ! ଏଇ ତ ଜୀବନ ରଙ୍ଗ!! ଏହା ଯେତିକି ରହସ୍ୟାଚ୍ଛନ୍ନ ସେତିକି ସ୍ୱଚ୍ଛ ପ୍ରସନ୍ନ!! ମନେ ମନେ ପ୍ରାର୍ଥନା କଲି ସେହି ଭଙ୍ଗିମାର ଜୟହେଉ, ରହସ୍ୟ ଆହୁରି ରହସ୍ୟାବୃତ ହେଉ।



# କଞ୍ଚା ମାଟିର ତଳେ

ଶୀତ ସକାଳ। ଗୋଲାପ ଫୁଲଗୁଡ଼ିକ ଉପରେ ଶିଶିରକଣା ଲାଗିଥାଏ। ବେଶ୍ ଗୁଡ଼ିଏ ଗୋଲାପ ଫୁଲ, ସତେଜ ଓ ସୁନ୍ଦର। ରାଜା ଯେ ଏଗୁଡ଼ିକ ସଂଗ୍ରହ କରି ଆଣି ପାରିଲା, ତା'ର କାରଣ ସେ ମନେ ମନେ ଭାବି ନେଇଥିଲା ହଠାତ୍ ଫୁଲ ଦରକାର ପଡ଼ିଲେ ସେ କେଉଁଠୁ ଆଣିବ।

ତା'ର ଶୈଳ ମାଉସୀର ବଗିଚା କଥା ସେ ଭୁଲିନାହିଁ। ଶୈଳ ମାଉସୀର ଜୀବନ ଯେମିତି ଗଛ ଲଗାଇବା, ଫୁଲ ଫୁଟେଇବା, ଲତା ମଡ଼େଇବାରେ ହିଁ ସାର୍ଥକତା ପାଇଛି। ଘରକରଣା ଭିତରେ ସୃଷ୍ଟିର ଏଇ ମହା ଐଶ୍ୱର୍ଯ୍ୟ ଫୁଲଗୁଡ଼ିକୁ ଲତାବୃନ୍ତରେ ଖେଳିବାର ଦେଖିଲେ ଶୈଳ ମାଉସୀ ଆନନ୍ଦରେ ଅଧୀରା ହୋଇଯାନ୍ତି।

ଦଶବର୍ଷର ରାଜାର ଅନୁଭବ କମ୍ ନୁହେଁ। ଫୁଲ ପାଇଁ ଶୈଳମାଉସୀ ଯେମିତି ତା' ଆଗରେ ଉଭା ଦେବୀ ପ୍ରତିମା। ଘର ପାଖ ବଗିଚା, ଖେଳି ବୁଲି ଗଲେ ରାଜାର ଆଖିରେ ପଡ଼େ ଏଇ ପୁଷ୍ପସ୍ନେହୀ ନାରୀର ମମତାଭରା ଚାହାଣି। ଦେଖିଲେ ଡାକନ୍ତି– "ଆ, ରାଜା ଫୁଲ ନେ, ଦେଖିଲୁ କିମିତି ସୁନ୍ଦର।"

ଫୁଲ ଯେ ସୁନ୍ଦର ଏ କଥା ରାଜା କେବଳ ଦେଖିନାହିଁ, ମନ ଭିତରେ ବି ଦେଖିଛି। ସେଥିପାଇଁ ମାଆ ଯେତେବେଳେ କହିଲେ ରାଜା, ଫୁଲ ଆଣିବୁ। ଫୁଲ ଭିତରେ ଯାକୁ ସଜେଇ ଆମେ ନେଇଯିବା, ସେତେବେଳେ ମାଆଙ୍କର ଦୁଇଧାର ଅଶ୍ରୁ ସହିତ ଏ ବାଣୀକୁ ବୁଝିବାକୁ ରାଜାକୁ ହୁଏତ ସମୟ ଲାଗିଲା।

ମନର ଆନନ୍ଦ ସହିତ ଫୁଲର ପ୍ରୟୋଜନ ରାଜା ବୁଝିଛି; କିନ୍ତୁ ଏ ମୁହୂର୍ତ୍ତରେ ଏହାର ବ୍ୟତିକ୍ରମ ସେ ଦେଖିଲା।

ସମସ୍ତଙ୍କ ଆଖିରେ ଲୁହ। ଛୋଟ ଭଉଣୀ କାନ୍ଦୁଛି। ବଡ଼ ମାଆଙ୍କର ତ ଆବାରିତ ଲୁହ ଧାର। ବାପା ଗମ୍ଭୀର ଓ ଶୋକାର୍ତ୍ତ; କିନ୍ତୁ ତାଙ୍କ ଆଖିରେ ଲୁହ ନାହିଁ।

ଧାଇଁଗଲା। ଶୈଳମାଉସୀଙ୍କ ଘରକୁ।

ରିକ୍ସାରେ ଆମେ ବସିଲୁ। ଆମ ଦୁହିଁଙ୍କ କୋଳରେ ରହିଲା ସେ। ତା'ର ଦେହକୁ ଆବୃତ କରିଥିଲୁ ଆମେ ଖଣ୍ଡେ ନୂଆ କନାରେ। ତା'ର ଜନ୍ମ ହେଲା ଦିନରୁ ଯେଉଁ ଶରୀରକୁ ଆମେ ବହୁବାର କୋଳରେ ଧରି ପରମ ବାତ୍ସଲ୍ୟରେ ଆଣୁଥିଲୁ, ସେହି ଶରୀର ଉପରେ ନୂଆ କନା ଆଉ ସଦ୍ୟ ଗୋଲାପ ଫୁଲର ସମ୍ଭାର ରଖିଦେଲୁ।

ଗେଟ୍ ଖୋଲି ରିକ୍ସାବାଲା ଟାଣିନେଲା ରିକ୍ସାକୁ। ସୂର୍ଯ୍ୟଦେବ ଉପରକୁ ଉଠି ଆସୁଥିଲେ। ଶେଷ ଦେଖା ଦେଖିନେଲେ ସମସ୍ତେ। ରିକ୍ସା ଚାଲିଲା। ରାଜାର ଆଖିରୁ ଲୋତକ ଧାର ଗଡ଼ି ଆସିଲା।

ମୁଁ ଆଉ ସୁଲତା। ଆମ କୋଳରେ ଗୋଟିଏ ପ୍ରାଣହୀନ ଶରୀର....

ସୁଲତା କହିଲେ – "ତା' ନାକ ଚାରିପଟେ ଲୁଗା ଗୁଡ଼ାଇ ଦେଲ ଯେ ସେ ନିଶ୍ୱାସ ନେବ କିମିତି ?

ରିକ୍ସା ଚାଲୁଥାଏ।

ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି – ସୁଲତା, ତୁମେ ହୋସ୍‌ରେ ଅଛ ତ ? ଏ ଯେ ମଡ଼ା, ଗତ ରାତି ଦୁଇଟା ପଇଁଚାଳିଶ ମିନିଟରେ ଏହାର ଆତ୍ମା ଶରୀରକୁ ଛାଡ଼ି ଚାଲି ଯାଇଛି। ଏହାର ନିଶ୍ୱାସ ପ୍ରଶ୍ୱାସ ଆସିବ କେଉଁଠୁ ?

ସୁଲତାଙ୍କର ଆଖି ଫୁଲି ଯାଇଛି। ଚାରିଦିନ ହେଲା କୋଳରେ ଧରି ଖିଆପିଆ ଭୁଲି ସେ ସେବା କରିଛନ୍ତି। ଆଖିରେ ଲୁହ, ହୃଦୟରେ ପରମ ପ୍ରୀତି, ପ୍ରାଣରେ ମୃତ୍ୟୁର ଆଶଙ୍କା ବ୍ୟତୀତ ଆଉ କୌଣସି ଅନୁଭବ ତାଙ୍କର ସେ ଦିନଗୁଡ଼ିକରେ ଥିଲା ବୋଲି ମୁଁ କହିପାରିବି ନାହିଁ।

କୋରାମିନ୍, ଗ୍ଲୁକୋଜ୍, ପେନିସିଲିନ, ଆଣ୍ଟିବାୟୋଟିକ୍, ନିଆଁ ସେକ ଯାହା କିଛି ଚିକିତ୍ସକ କହିଲେ, ସେ ଚିକିତ୍ସା ଚାଲିଥିଲା। ପିଲାମାନେ ଚାହିଁ ଦେଇ ଯାଆନ୍ତି। ଚିକିତ୍ସା ତ ଚାଲିଛି। କେତେ ଜୀବ, କେତେ ପ୍ରାଣୀଙ୍କ ଦେହ ଖରାପ ହେଉଛି, ପୁଣି ସେମାନେ ଭଲ ହେଉଛନ୍ତି। ଏ ବି ବଞ୍ଚିବ। ସେମାନଙ୍କ ସାଙ୍ଗରେ ଖେଳିବ। ଏଇ ଆଶା ସେମାନଙ୍କର ଥିଲା।

ଦେହ ଅଚଳ। କେବଳ କଣ୍ଠର ଘଡ଼ ଘଡ଼ ଶବ୍ଦ। ସୁଲତାର କୋଳରେ ଶୋଇ ରହିଛି।

ଚିକିତ୍ସାଳୟରେ ଚିକିତ୍ସକମାନେ ଆଶ୍ଚର୍ଯ୍ୟ ହେଲେ। ଏତେ ମମତାରେ କେହି କେବେ ରୋଗୀକୁ ସେବା କରେ ନାହିଁ। ଡାଇରିଆରେ ଅପରିଷ୍କୃତ କନାକୁ ନିଜ ହାତରେ ସୁଲତା ସଫା କରନ୍ତି।

ଆଜି ସେ ଛାଡ଼ି ଚାଲିଗଲା।

ସୁଲତା କହିଲେ – ହଁ, ମୁଁ ଭୁଲି ଯାଇଥିଲି ସେ ମଡ଼ା। ତମର ମନେ ଅଛି ନା ଏତେ ଟିକିଏ ହୋଇଥିଲା ସେହିଦିନଠାରୁ ତା'ର ଅଭ୍ୟାସ ମୋ କୋଳରେ ଶୋଇବ। ତୁମେ ବିରକ୍ତ ହୁଅ, ଏଡ଼େ ବଡ଼ ହେଲାଣି, ମାଆ ପାଖେ ଶୋଉଛି। ହଉ ପଛେ ସେ ମଡ଼ା, ତା' ନାକ ଉପରେ ଲୁଗା ରଖନି। ତାକୁ କଷ୍ଟ ହେବ।

କଅଣ କହିବି ଏ ଶୋକାର୍ତ୍ତ ନାରୀକୁ ? ମନେ ପଡ଼ିଲା ଅନେକ କଥା।

ନୂଆ ହୋଇ ଆସିଥିଲୁ ଏ ସହରକୁ। ବାଟ ଘାଟ ବିଶେଷ ଜଣା ନ ଥିଲା। ରାତିରେ ଆମେ ଦୁହେଁ କୁଆଡ଼େ ବୁଲି ଯାଇଥିଲୁ। ଫେରି ଆସି ଦେଖିଲୁ ସେ ନାହିଁ। ଆମକୁ ନ ଦେଖି ସେ ବୋଧହୁଏ ଠୁକୁ ଠୁକୁ ଗୋଡ଼ ପକାଇ ବାହାରକୁ ଚାଲିଗଲା। ସେ ଶୋଇଥିଲା, ଆମେ ଭାବିଲୁ ଆମେ ଫେରିବାଯାଏ ସେ ସେମିତି ଶୋଇଥିବ।

ସେଇ ରାତିରେ ଆମେ ଦୁହେଁ ପାଗଳ ହୋଇ ତାକୁ ଖୋଜିଲୁ। ରାତି ସାରା ଖୋଜିଲୁ। ଦୁଇଦିନ ଯାଏ ଖୋଜିଲୁ। କାହା ତୁଣ୍ଡକୁ ଦାନା ଗଲା ନାହିଁ। ସୁଲତା ତାକୁ ଝୁରି ଝୁରି କେବଳ କାନ୍ଦିଲେ।

ମୁଁ ଅନ୍ୟ ଉପାୟ ନ ଦେଖି ଖବର କାଗଜରେ 'ହଜିବା' ସ୍ତମ୍ଭରେ ବିଜ୍ଞାପନ ଦେଲି।

ଗୋଟିଏ ଦିନ ପରେ ଖବର ପାଇଲି, ସେ ଜଣେ ସଦାଶୟ ବ୍ୟକ୍ତିଙ୍କ ଘରେ ଆଶ୍ରୟ ପାଇଛି।

ଆଉ କି ସମ୍ଭାଳା ପଡ଼ନ୍ତି ସୁଲତା ? ରିକ୍ସାରେ ଚଢ଼ି ଦୁହେଁ ଗଲୁ ସେ ଆଶ୍ରୟଦାତାଙ୍କ ଆବାସକୁ।

ମାତା ଓ କନ୍ୟାର ମିଳନରେ ଯାହା ଦୃଶ୍ୟ ସୃଷ୍ଟି ହେଲା, ସେତେବେଳେ ସେ ଦୃଶ୍ୟରେ ଦେଖଣାହାରୀଙ୍କ ଆଖି ବି ଲୋତକାପ୍ଲୁତ ହୋଇଗଲା।

ଏ ଏମିତି ନିଧି ଆମର।

ଭଗବାନ ତାକୁ କି ମମତାଦୀପ୍ତ ଆଖି ଦୁଇଟି ଦେଇଥିଲେ ଯେଉଁ ଆଖିର ତାରା ଦୁଇଟି ଢ଼ଳି ଯାଉଥାଏ ସର୍ବକ୍ଷଣରେ ଆମରି ଆଡେ। ହସ, ଅଶ୍ରୁ, ବିରକ୍ତି, ବେଦନା ସବୁ ସେ ବୁଝି ପାରୁଥିଲା। କିଏ ଶତ୍ରୁ ରୂପରେ

ଆସିଛି ବା କିଏ ମିତ୍ର ରୂପରେ ଆସିଛି, ଏହା ବି ସେ ଜାଣି ପାରୁଥିଲା।

ଭଗବାନ ତାକୁ କି ସୁନ୍ଦର ହାତ ଦୁଇଟି ଦେଇଥିଲେ ଯେଉଁ ହାତରେ ସେ ଆଲିଙ୍ଗନ କରେ ଆମକୁ। ତା'ପ୍ରତି ଆମ ମନର ଗଭୀର ପ୍ରେମକୁ ଜାଣି ନିଏ ଥରଟିଏ ମାତ୍ର ସେ ହାତ ଦୁଇଟିକୁ ଆମ ଉପରେ ରଖି।

ସେଇ ଦୁଇଟି ହାତ ଉପରେ ସୁଲତା ଅଶ୍ରୁସିକ୍ତ ନୟନରେ ଦୁଇଟି ଗୋଲାପ ଫୁଲ ରଖି ନିରୀକ୍ଷଣ କରୁଛନ୍ତି। ପଥଚଲା ପଥିକ ଦେଖୁଛନ୍ତି ଓ ଜାଣୁଛନ୍ତି ଯେ, ଗୋଟିଏ ଜୀବନ ଶେଷ ହୋଇ ଯାଇଛି। ଶୋକର ଦୁର୍ବାର ବେଗ ଆମ ଦୁଇଜଣଙ୍କୁ ଅସ୍ଥିର କରୁଛି।

"ମା', କୁଆଡ଼େ ନେବି ?" ରିକ୍‌ସାବାଲା ପଚାରିଲା। ସତେ ତ ! କେଉଁ ଶ୍ମଶାନ ? କେଉଁଠି ଦେହ – ରକ୍ଷା ?

ମୁଁ କହିଲି – ସତୀଚଉରା।

ସମାଧିକୀର୍ଣ୍ଣ ଏଇ ଶ୍ମଶାନରେ ରାଜାଧିରାଜ, ସାହିତ୍ୟିକ, ଶିଳ୍ପୀ ଓ ଜନନାୟକଙ୍କର ଶେଷ ରକ୍ଷା ଭୂମିକୁ ସ୍ପର୍ଶ କରିବ ଏଇ ସ୍ପନ୍ଦନହୀନ ଶରୀର, ମୋର ତାହା ହିଁ ଇଚ୍ଛା ଥିଲା।

କିନ୍ତୁ ସେ ତ ସାହିତ୍ୟ ସାଧକ ନୁହେଁ, ଶିଳ୍ପୀ ନୁହେଁ, ସମାଜ ସଂସ୍କାରକ ନୁହେଁ ? ଏଠାରେ ତାର ଶେଷ ରକ୍ଷା କଲେ ଏମାନେ ଏଇ ସମାଧିତଳର ଆତ୍ମାଗଣ କ୍ଷୁର୍ଣ୍ଣ ହେବେ ନାହିଁ କି ? ଜୀବନରେ ସଗୋତ୍ରୀ ଏମାନେ ମରଣରେ ସଗୋତ୍ର ଖୋଜିଲେ। ଏଠାରେ କୃଷକର ମରଦେହ ଜଳିଛି କି ? ଅଖ୍ୟାତ ପଲ୍ଲୀର ପ୍ରସୂତୀର ଶରୀର ଭସ୍ମରେ ପରିଣତ ହୋଇଛି କି ?

ଜୀବନରେ ପ୍ରାଚୀର ପକାଇ ସ୍ୱରାଷ୍ଟ୍ର ରଚନା କଲା ଭଳି ମରଣରେ ସ୍ୱରାଷ୍ଟ୍ର ରଚନା ପୀଠ ଏଇ ସତୀଚଉରା....

ଶୀତକାଳର ସୂର୍ଯ୍ୟ... ଉଠୁଛି ଧୀରେ ମଧ୍ୟ ଆକାଶକୁ। ସମାଧି ଉପରେ ନୀଳ ପ୍ରଶାନ୍ତ ଆକାଶ। ଗତ ନିଶୀଥର ଜୁଇ ସ୍ଫୁଲିଙ୍ଗ ତାତି ଧରି ରହିଛି। ଶ୍ମଶାନର ଶୋଭା ଦୁଇଟା ଶ୍ୱାନ ଓ ଗୋଟିଏ ଶୃଗାଳ ମୁହଁ ମାରୁଥିଲେ ଚିତା ଗାତ ପାଖରେ...

ସୁଲତା କହିଲେ – ଏଠିକି ନ ଆଣିଥିଲେ ଭଲ ହୋଇଥାନ୍ତା। ଏମାନେ ପୂର୍ବ ପୁରୁଷ, ସାର୍ଥକ କୃତି ପରେ ଦେହତ୍ୟାଗ କରି ଏଠାରେ ବିଶ୍ରାମ ନେଇଛନ୍ତି। ଏମାନଙ୍କ ଗହଣରେ ଯାକୁ....

ମୁଁ କହିଲି – ସୁଲତା, ଶ୍ମଶାନ, ଶ୍ମଶାନ। ଏଠାରେ ବିଭେଦ ନାହିଁ। ଅବଶ୍ୟ ଏମାନେ ମହତ୍ ଜୀବନର ଆକାଂକ୍ଷା ପୂରଣ କରି ବିଶ୍ରାମ ନେଇଛନ୍ତି; ଯା ବୋଲି ଗୋଟିଏ ଅସାର୍ଥକ, ଅଖ୍ୟାତ ଜୀବନକୁ ଏମାନେ ଗ୍ରହଣ କରି ନେବେ ନାହିଁ ? ମୋର ବିଶ୍ୱାସ ଏଇ ପ୍ରେତଗଣଙ୍କ ମନରେ ଛୋଟ ବଡ଼, ସାର୍ଥକ ଅସାର୍ଥକ, ଯାହାକି ଜାଗତିକ ନିକିତିରେ ଦିନେ ହୁଏତ ଏଇମାନେ ତଉଲୁଥିଲେ, ସେମିତି ଭାବ ଆଉ ନ ଥିବ। ଏ ପ୍ରାଣୀଟି ପ୍ରତି ଆମ ଦୁହିଁଙ୍କର ପ୍ରେମମୟ ଅନ୍ତରର ଭାବନାକୁ ଯଦି ଏହି ଅଦେହୀମାନେ ବୁଝୁଥିବେ, ତେବେ ଆମର ଏଇ ସନ୍ତାନକୁ, ଯେଉଁ ସନ୍ତାନ ତାର ସ୍ୱଳ୍ପ ପରିମିତ ଜୀବନ କାଳରେ ଉନ୍ନତତର ମାନବିକତା ଦେଖାଇ ଆସିଛି, କାହାକୁ ଅଯଥାରେ କଟୁ କଥା କହିନାହିଁ, ତାର ଯାହା ପୂର୍ବ ନିର୍ଦ୍ଦିଷ୍ଟ ସଂସ୍କାର ସେଇ ସଂସ୍କାରରେ ଚଳି ଆସିଛି ବରଂ ଏ ଘଟଣାଠାରୁ ଅଧିକ ଆଶାପ୍ରଦ ଭୂୟୋବିକାଶ ପଥରେ ଉତ୍ତମ ଆଚରଣ ସମାହିତ କରିଛି, କୃତଜ୍ଞତାରେ ଭରପୂର ଯାହାର ଅନ୍ତର ସୌଖ୍ୟ କଅଣ ଯେ ବୁଝିଛି, ସେଭଳି ସନ୍ତାନକୁ ପାଖରେ ଶୁଆଇବା ପାଇଁ ଏମାନେ କୁଣ୍ଠିତ ହେବେ କାହିଁକି ?

ରିକ୍ସା ପାଖରେ ଦଶ କୋଡ଼ିଏ ପଥଯାତ୍ରୀ ରୁଣ୍ଡ । ପ୍ରାଣହୀନ ଶରୀରକୁ ସେମାନେ 'ଆହା' ପଦ କହି ଦେଖୁଥିଲେ । ଗୋଲାପ ଫୁଲର ପରିସୀମା ଭିତରେ ତାର ଦେହ ଲୋଟିଯାଇଛି ।

ସୁଲତାଙ୍କ ଆଖିରୁ ଶେଷ ଅଶ୍ରୁ ଯେପରି ଗଡ଼ି ଆସୁଥିଲା ।

ଆମେ ଠିକ୍ କରିଥିଲୁ ତାକୁ ଚିତାଗ୍ନିରେ ଦେବୁ ନାହିଁ । ଜନ୍ମଭୂମି ମାଟିର ଲବଣ କ୍ଷାରରସନୀର କୋମଳତାରେ ତା'ର ଶରୀର ଧୀରେ ଧୀରେ କ୍ଷୟିତ ହେଉ, ଏଇ ଥିଲା ଆମର କାମନା ।

ମାଟି ଯେ ଖୋଳୁଥିଲେ ସେ ମାଟି ଖୋଳିବା ଅବସରରେ ପ୍ରାର୍ଥନା କରୁଥିଲେ ।

– ମାଆ, ପ୍ରଭୁ ୟାକୁ ଆହୁରି ଭଲ ଜନ୍ମ ଦେବେ । ମୋ ମନକୁ କିମିତି ଆସୁଛି, ଏହାର ଆତ୍ମା ଶାନ୍ତି ପାଇଛି । ଆପଣମାନଙ୍କର ସ୍ନେହ ଦେଖି ମୁଁ ଅବାକ୍ ହୋଇଯାଇଛି । ଏମିତି କେହି ଆସନ୍ତି ନାହିଁ । ହଁ.... ହଁ.... ମୋ ମନ କହୁଛି ଏ ଭଲ ଜନ୍ମ ପାଇବ । ପ୍ରଭୁ ଦୟା କରିବେ ।

ବୁଢ଼ା ଲୋକଟି ମାଟି ଖୋଳି ମୃତ ପ୍ରାଣୀର ଆକାର ଦେଖି ଗାତଟିକୁ ପ୍ରସ୍ତୁତ କରିଦେଲା ।

ବର୍ତ୍ତମାନ ଶେଷ କ୍ଷଣ ! ସେ ଚାଲିଯିବ ଧରିତ୍ରୀର ଅନ୍ତର ରସଧାରା ଭିତରକୁ । ସେଇଠାରେ ଆକାଶ, ସେଇଠାରେ ଅରଣ୍ୟ, ସେଇଠାରେ ସିନ୍ଧୁ, ସେଇଠାରେ ପାପ ପୁଣ୍ୟର ଜୟ ପରାଜୟର ଅନ୍ତିମ ଲୀଳା ।

ସୁଲତାକୁ ସମ୍ଭାଳିବା ମୋ ପକ୍ଷରେ କଠିନ ହେଇପଡ଼ିଲା କ୍ରମେ ।

ମୁଁ କହିଲି – ତୁମେ ରିକ୍ସାରେ ବସ, ମୁଁ ତାହାର ଦେହରକ୍ଷା କରିନିଏ । ତୁମର ଆସିବା ଉଚିତ ହେବନାହିଁ । ଟିକିଏ ଧୈର୍ଯ୍ୟ ଧର ।

ସୁଲତା କୋହପୂର୍ଣ୍ଣ କଣ୍ଠରେ କହିଲେ, ନା ତା ହେବ ନାହିଁ । ମୁଁ ନିଜେ ଦେଖିବି ସମାଧି ଭିତରେ ସେ ଆରାମ ପାଇବ କି ନାହିଁ । ଏତେ ଦିନ ଧରି ମୁଁ ତାକୁ ନିଜ କୋଳରେ ଶୁଆଇ ଆସିଲି । ସେ ନ ଖାଇଥିଲେ ମୁଁ ଖାଏନି, ତାକୁ ନ ଦେଖିଲେ ମୁଁ ଅନ୍ଧ ହୋଇଯାଏ, ଆଜି ତାର ଏଇ ଶେଷ କାମରେ ମୁଁ ନିଜେ ତାକୁ କୋଳ କରି ନେବି ନାହିଁ ?

ଏହା କହି ସୁଲତା କୋଳରେ ଧରିଥିବା ଶରୀରକୁ ଧୀରେ ଆଣି ଚାଲି ଆସିଲେ ନୂଆ ମାଟିର ଗନ୍ଧ ବାହାରୁଥିବା ସମାଧିର ଗାତ ପାଖକୁ ।

ଆଖିରେ ପାଣି ନାହିଁ । ଗୋଟିଏ ମହାନ୍ କର୍ତ୍ତବ୍ୟର ଦୀପ୍ତି ଯିମିତି ତାଙ୍କ ଲଲାଟରେ ଝଲସି ଯିବାର ମୁଁ ଦେଖିପାରିଲି ।

ଅଦୂରରେ ରିକ୍ସାବାଲା ତା ଆଖିର ଲୁହ ପୋଛି ଆଣୁଥିଲା ।

ମାଟି ଖୋଳୁଥିବା ବୁଢ଼ାଟି ହାତ ବଢ଼ାଇଦେଲା ସୁଲତାଙ୍କ ଆଡ଼େ । ଦିଅନ୍ତୁ ମାଆ, ଗାତର ଅତି ନିକଟକୁ ଆସନ୍ତୁ ନାହିଁ । ମୁଁ ବାକୀ କାମତକ କରିଦେବି ।

ସୁଲତା ମନା ମାନିଲେ ନାହିଁ । ମୁଁ ବି ବୁଝାଇଲି, ସେ ମାନିଲେ ନାହିଁ । ଏ ଯେ ସ୍ତ୍ରୀ ଲୋକର କାମ ନୁହେଁ, ସେକଥା ବି ମୁଁ କହିଲି । ସବୁ ବୃଥା ।

ସମାଧି ଗର୍ତ୍ତ ଉପରକୁ ଝୁଙ୍କି ରହିଲା ସୁଲତା । ଦୁଇ ହାତରେ ତାଙ୍କର ମୃତ୍ୟୁ ପଥର ଯାତ୍ରୀ । ହଠାତ୍ ସେ ଗାତ ଭିତରକୁ ଖସିପଡ଼ିଲା ନିଷ୍ପ୍ରାଣ ଶରୀର ଉପରେ ରହିଥିବା କେତେଗୁଡ଼ିଏ ଗୋଲାପ ପୁଷ୍ପ । ଆଗତୁରା ମରଣ ଅର୍ଘ୍ୟ ! !

ବୁଢ଼ା ପାଟିକଲା – ଶୁଭ, ଶୁଭ ଭଲ ହୋଇଛି । ଏ ଭଲ ଜନ୍ମ ପାଇବ ।

ଧୀରେ ସୁଲତା ଆଣ୍ଠୁ ପକାଇ ଖସାଇ ଆଣିଲେ ଶବକୁ। ନବବସ୍ତ୍ର ଆଉ ନୂଆ ଫୁଟିଲା ଫୁଲ ଗହଣରେ ସେ ଦେହ ଏତିକି ମାତ୍ର ଜାଗତିକ, ପଦାର୍ଥକୁ ସମ୍ବଳକରି ଖସିଆସିଲା ଗର୍ତ୍ତର ଶେଷ ସ୍ତରକୁ।

ଆଗ ସୁଲତା ଆଖି ବନ୍ଦ କରି ପ୍ରଥମ ମାଟି ମୁଠାକ ମୁହଁ ଉପରେ ଝରାଇଦେଲେ।

ତାପରେ ମୁଁ....

ତାପରେ ବୁଢ଼ା....

ତାପରେ ରିକ୍‌ସାବାଲା....

ସୁଲତାର ଅଶ୍ରୁ ସିନ୍ଧୁ ଉଦ୍‌ବେଳିତ। ମୁଁ କହିଲି – ଚାଲ ସୁଲତା, ଫେରି ଚାଲ।

ସୁଲତା କହିଲେ – "ନାଇଁ, ଆଉ ଟିକିଏ, ସେ ଯେଉଁ ପଥରଟା ଅଛି, ତାକୁ ସମାଧି ଉପରକୁ ନେଇଆସ ବୁଢ଼ା, ଗୋଟିଏ ଚିହ୍ନ ଥାଉ... ମୁଁ ପୁଣି କେବେ ଆସି ଦେଖିଯିବି।"

ପୁଣି ଥରେ ଅଶ୍ରୁତରଙ୍ଗ। ଅସମ୍ଭାଳ କୋହ। ସୁଲତା ଅସ୍ପଷ୍ଟ ସ୍ୱରରେ କହିଲେ –

"ଯାଉଛି ଜୁଲିଏଟ, ତେରବର୍ଷ କାଳ ମୋର ନିଜ ପୁଅ ଝିଅଠାରୁ ଅଧିକ କରି ତତେ ବଢ଼ାଇ ଆଣିଥିଲି। ଗୋଟାଏ ତୁଚ୍ଛ କୁକୁରୀ ଭାବରେ, ସାମାନ୍ୟ ପଶୁ ଭାବରେ ମୁଁ କେବେ ତତେ ଦେଖିନାହିଁ। ମତେ ଟିକିଏ ବିରକ୍ତିରେ ରାଗରେ କେହି କଥା କହିଲେ ତୁ ତାକୁ କ୍ଷମା କରିନାହୁଁ। ପରିହାସରେ ମୋ ହାତ ଉପରେ କିଏ ହାତ ରଖିଲେ ଏପରିକି ପିଲାମାନେ ହାତ ରଖିଲେ ତୁ ସହି ପାରୁ ନଥିଲୁ। ତୋ ଆଖି ବୁଝୁଥିଲା ମୋ ମନର ବ୍ୟଥା ଅବା ଆନନ୍ଦ। ସେ ଚାହାଣୀ, ପଶୁ ହୋଇ ମଣିଷ ଭଳି ଏତେ ବୁଝିବାର ଶକ୍ତି, ମୁଁ ଆଉ କେଉଁଠୁ ଦେଖିବି ?"

ତୁ ଉନ୍ନତ ଜୀବନ ପାଆ। ମୋ ସ୍ମୃତିରେ ତୁ ଚିରଦିନ ରହିବୁ ଜୁଲିଏଟ। ମୁଁ ତତେ ଭୁଲି ପାରିବି ନାହିଁ। ଭୁଲି ପାରିବି ନାହିଁ।



# ଶବ-ଶିବାନୀ

ବୃତ୍ତି ଘେନି କୌଣସି ପାପ ନ ଥାଏ । ଗୀତାପାଠୀ ବ୍ରାହ୍ମଣ ମାଛ ବ୍ୟବସାୟ କରେ । ଘରେ ଆଉ ପିମ୍ପୁଡ଼ିଙ୍କୁ ପ୍ରତ୍ୟେକ ପ୍ରଭାତରେ ଭୋଜନ ଦେଇ କଳାବଜାରୀ ଖାଦ୍ୟରେ ମିଶାଏ ବିଷ ।

ଅରୁନ୍ଧତୀ ସେହି·ବାପର ଝିଅ ଯିଏ ବିଲାତୀ ମଦ ଦୋକାନର ମାଲିକ । ନିଅନ ଆଲୁଅ ତଳେ ଯେତେବେଳେ ବୋତଲଗୁଡ଼ାକ ଚିକ୍ ଚିକ୍ କରେ, ବର୍ଣ୍ଣିଳ ଆଭା ଧରେ, ଗରାଖ ଆସି ସେଥିରୁ ଗୋଟାଏ ଗୋଟାଏ ନେଇ ମଟର, ରିକ୍‌ସା ବା ପଦଯାତ୍ରାରେ ଚାଲିଯାଏ, ସେତେବେଳେ ଅରୁନ୍ଧତୀର ମାଆ ଆଉ ତା ନିଜ ବେକରେ ଯେଉଁ ସୁନାହାର ଚିକ୍ ଚିକ୍ କରେ, ତାହାକୁ ଉପଢୌକନ ଦେଇ ନଥାନ୍ତି, ଦେଇଥାଏ ଅଦୃଷ୍ଟ ।

ଏବଂ ଏହି ମଦ ବ୍ୟବସାୟ ତାହାରି ମାଧ୍ୟମ । ରାଜୀବ ଅଧାବୟସରୁ ବେଶୀ ଖସି ଗଲେଣି । ବୋତଲର କର୍କ ଫିଟା ଗନ୍ଧରେ ତାଙ୍କର ନାକପୁଡ଼ା ସୁରଭିତ ହେଉଥିଲେ ବି ପବିତ୍ର ପାପୀ ଭଳି ସେ କେବଳ ଚାହିଁ ରହନ୍ତି ସେଇ ମସୃଣ ଛୋଟ ବଡ଼ ବୋତଲଗୁଡ଼ିକୁ ଆଉ ଚାହିଁ ଦିଅନ୍ତି ଉପର ମହଲାକୁ ଯେଉଁଠି ଏହି ବ୍ୟବସାୟର ପ୍ରସାଦରୁ ସେ ଅର୍ଜନ କରିଛନ୍ତି ବର୍ଣ୍ଣମୟ ଆଭିଜାତ୍ୟ ।

ପିଲାଦିନେ ପାଠ ହେଲାନି । ସେଆଡ଼େ ମନ ଦେଇ ପାରିନାହାନ୍ତି ରାଜୀବ । ଖୋଜି ବୁଲିଲେ ପୌରୁଷକୁ । ଦୈବ ନା ପୌରୁଷ ? ମେହନତ ନା ଆଳସ୍ୟ ?

ମାରୁଆଡ଼ି ଆସନ୍ତି ମାରଓ୍ୱାଡ଼ରୁ, ବେପାରି ଆସନ୍ତି ଆନ୍ଧ୍ରରୁ, ଗୁଜୁରାଟୀ, କଚୀ, ପଞ୍ଜାବୀ, ଆସନ୍ତି ଯେଝା ରାଜ୍ୟରୁ । ସାଙ୍ଗରେ ଥାଏ ମୂଳଧନ କେତୁଟା ଟଙ୍କା ମାତ୍ର । ଆଉ ସାଙ୍ଗରେ ଥାଏ ଖଣ୍ଡେ ତଉଲିଆ, ଗୋଟାଏ ଲୁଙ୍ଗି, ଏକ ଗେଞ୍ଜି, ଦୁଇଟା ସାନ ବଡ଼ ପ୍ୟାଣ୍ଟ ବା ଧୋତି । ଆଶ୍ରୟ କେଉଁଠି ନାହିଁ । ଅନିର୍ଦ୍ଦିଷ୍ଟ ଭବିଷ୍ୟତ । ଅଜଣା ସହର ।

କିନ୍ତୁ ସେମାନେ ଦେଖି ନିଅନ୍ତି ପ୍ରଥମ ସାକ୍ଷାତରେ କେଉଁଠି ସହରରେ ଶ୍ମଶାନ ଅଛି । ଦ୍ୱିତୀୟରେ ହାସପାତାଳ । ଯଦି ଅଦୃଷ୍ଟ ନ ଫିଟିଲା, ରୋଗଗ୍ରସ୍ତ ହେଲା ତେବେ ଡାକ୍ତରଖାନା ଆଡ଼େ ରିକ୍‌ସା ଚାଲିବ, ଯଦି ପୌରୁଷକୁ ଉଦ୍‌ବୋଧକ ଦେଇ ଦେଇ କାଳ ପୂରିଗଲା, ତେବେ ଶ୍ମଶାନ ହିଁ ଶେଷ ଉତ୍ତର ।

ଶକ୍ତି ଆସେ ସେମାନଙ୍କର ଗୋଷ୍ଠିଗତ ଭ୍ରାତୃତ୍ୱରୁ । ମାରୁଆଡ଼ିର ଲୋଟା କମ୍ବଳକୁ ଚୁମ୍ବନ କରେ ଭାଇ ମାରୁଆଡ଼ି; ସ୍ୱାଗତ କରେ ତାର ଏ ପରିବ୍ରାଜକତ୍ୱକୁ । ଅଭ୍ୟର୍ଥନା ଦିଏ ସାହସ ଓ ରୋମାଞ୍ଚକୁ ।

କିନ୍ତୁ ଓଡ଼ିଆ ? ନବବଧୂ ବେଶରେ ସବୁବେଳେ ବାସର ପ୍ରଦୀପ ଜଳାଇ ରହିଗଲା । ଛୋଟ ଛାତିକୁ ଧରି । ସରୁ ରକ୍ତଧାର ଧମନୀରେ ବୁହାଇ ସେ କେବଳ 'ଚୁ, ଚୁ' କଲା – ଖୋଜିଲା ସାଥୀ, ଯିଏ ତାର ହାତଧରି ଉଠାଇ ଟିକିଏ ଚଳେଇନେବ... ସେତିକିରେ ତାର ଜୀବନର ସାର୍ଥକତା ଓ ପ୍ରଦୀପ୍ତି ।

ରାଜୀବ ଛିନ୍ନମୂଳ ହୋଇଗଲେ ପ୍ରଥମରୁ । ଆକ୍ରୋଶ ଆସିଲା । ଭାବିଲେ ଏମିତି ଗୋଟାଏ ବ୍ୟବସାୟ ଧରିବ ଯେ ବିକ୍ରିବଟା କଲାବେଳେ ଦେଖିବେ କିମିତି ତାଙ୍କର ଗ୍ରାହକଗଣ ପାଗଳ ହୋଇଯାଇଛନ୍ତି । ରାସ୍ତା

ଦାଢ଼ରେ ଗଡ଼ି ପଡୁଛନ୍ତି। ଜହରର କ୍ରିୟା ତାଙ୍କୁ ବେହୁସିଆର କରୁଛି ଆଉ ସେ ସୁସ୍ଥ ଦେହ ଓ ଅସୁସ୍ଥ ମନରେ ଗୋଟାଏ ଗୋଟାଏ ହୁଇସ୍କି, ରମ୍, ସାଁପେନ, ଜିନ ବୋତଲ ତାକୁ ଧରେଇ ଦେଇ ଅଟ୍ଟହାସ କରୁଛନ୍ତି।

"ବୃତ୍ତି, ଏ ମୋ ପୋଷେ କୁଟୁମ୍ବ".... ଝୁଲଣ ବେଳର ଗୋଟିପୁଅ ବୈଦେହୀଶବିଳାସରୁ ଗାଇଥିବାର ସେ ବହୁବାର ଶୁଣିଛନ୍ତି ସେଇ କୁଟୁମ୍ବ ପୋଷାର... ବୃତ୍ତିରେ ଆଜି ସେ ସହରର ବିଖ୍ୟାତ ବିଶେଷ ମଦ୍ୟ ବ୍ୟବସାୟୀ।

ସେ ଜାଣନ୍ତି ପଥଚାରୀ ତାଙ୍କର ସୌଧକୁ ଆଡ଼ ନୟନରେ ଚାହିଁ କହିଯାଏ "ଛିଃ ଛିଃ, ଶେଷକୁ ପଟ୍ଟନାୟକ ବଂଶର କୁଳ ଚନ୍ଦ୍ରମା ଧରିଲା 'ମଦ ବିକା ବ୍ୟବସାୟ ? ସଂଭ୍ରମ ଓ ସମ୍ମାନହୀନ ଏ ପେଷାରେ ଯାହା ଅଲିଖିତ ଇତିହାସ ସେ ରଚନା କଲା, ଯୁଗ ଯୁଗକୁ ରହିଗଲା ତାର ନିଜ ରକ୍ତରେ, ପିଲାଙ୍କ ଧମନୀରେ ଆଉ–"

ଆଉ କିଛି ନ ଥିଲା। ନୀଳିମ ଆଲୋକ ଜାଳି ସେ ଯେଉଁ ଛୋଟ ବଖରାଟି ନିର୍ଦ୍ଦିଷ୍ଟ କରିଛନ୍ତି, ତାଙ୍କର ଗ୍ରାହକମାନଙ୍କୁ ଥଇଥାନ କରିବାକୁ ଦୋକାନ ପାଖରେ, ସେଠି ଜଗତ ବିଚିତ୍ର ବେଶରେ ଫୁଟି ପଡ଼େ ଶ୍ରାବ୍ୟ, ଅଶ୍ରାବ୍ୟ, କାକୁତି, ମିନତି, ଗର୍ଜନ ଓ କ୍ରନ୍ଦନରେ, ଲୋକଗୁଡ଼ାକ କେଉଁ ଦୁଃଖରେ ପିଉଛନ୍ତି ବୋଲି କହି ଯେତେବେଳେ ରାଜୀବର ଶରୀରକୁ ଆଲିଙ୍ଗନ କରନ୍ତି ଟିକିଏ ସ୍ନେହ ସୋହାଗର ସ୍ପର୍ଶ ପାଇବାକୁ ସେହି ପରିସର ଓ ସାରି ସାରି ବୋତଲଗୁଡ଼ାକର ଆମନ୍ତ୍ରିତ ଚାହାଣୀ ତଳେ ବଢ଼ି ଆସିଛନ୍ତି ତାଙ୍କର ପୁଅ ଅଜୟ, ବିଜୟ, ସଞ୍ଜୟ ଆଉ ଝିଅ ଅରୁନ୍ଧତୀ, ବେଦବତୀ, ଅଗ୍ନିରତି।

ଏମାନଙ୍କର ଜନ୍ମ ?

ବାଲ୍ୟକାଳ ?

କିଶୋର କିଶୋରୀ ବୟସ ! ଆଜି ସେମାନେ ଯୁବକ ଯୁବତୀ... ବର୍ଷେ ଛାଡ଼ ବାଡ଼ ଛଅଟି ସନ୍ତାନ।

କଲେଜରେ ଏମାନେ ସୋପାନ ପରେ ସୋପାନ ଉଠିଯାଇଛନ୍ତି... ମନେ ପଡ଼େ ଅଜୟର ପ୍ରିନସପାଲଙ୍କ ଦପ୍ତରରେ ପରୀକ୍ଷା ଫର୍ମ ପୂରଣ କଲାବେଳର କଥା...

ସବୁ ଲେଖିଲା, କିନ୍ତୁ ଅକୁପେସନ ମାନେ ବ୍ୟବସାୟ ଘରେ କଅଣ ସେ ଲେଖିବ ? ପାଞ୍ଚଗୋଟି ଭାଇଭଉଣୀଙ୍କର ଏଇ ଏକା ବିପତ୍ତି.... ବାପାଙ୍କ ଅକୁପେସନ....

"ବାପା, ସବୁ ପୂରଣ କଲି, ଏଇ ଅକୁପେସନ ଘରଟା" ଅଜୟର ବିଷର୍ଣ୍ଣ ବଦନର କଳାଛାଇ ଦେଖି ରାଜୀବ ହସିଥିଲେ ସେଦିନ।

କହିଥିଲେ ଆବେଗଭରା କଣ୍ଠରେ....

"ମତେ କହ ଅଜୟ, ପାଣ୍ଡୁ ମଳିକ ଯେ କି ଆମ ଡିଷ୍ଟ୍ରିକ୍ଟରେ ଆଜି ଆଇ.ଏ.ଏସ. କଲେକ୍ଟର, ସେ ପରୀକ୍ଷାର ଫର୍ମ ପୂରଣ କଲାବେଳେ ବାପର ଅକୁପେସନ କଅଣ ଲେଖିଥିବ ?"

ଏ ପ୍ରଶ୍ନର ଉତ୍ତର ଏତେ ହୀନିମାନ ଯେ ଅଜୟର କଣ୍ଠ ରୁଦ୍ଧ ହୋଇଗଲା....

ରାଜୀବ ଯୋଗାଇଦେଲେ – 'ସେ ଲେଖିଥିବ, ବ୍ୟବସାୟ ପଶୁର ଛାଲ ଉତାରି ତାର ମାଂସର ଭକ୍ଷକ, ଏଇଆ ନା ?'

'ବାଃରେ ସେମାନେ ତ ସିଡ୍ୟୁଲଡ଼ କାଷ୍ଟ, ଅନରେବଲ୍ ଷ୍ଟାଟସ, ଅଜୟର ସନ୍ତୋଷ ବଚନ।

'– ତେବେ ଭାବିନେ, ମୁଁ ତାହାଠାରୁ ହୀନ ନୁହେଁ, ମୁଁ ଚମଡ଼ା ଉତାରି କାହାର ମାଂସ ଖାଏନି, ମୁଁ ସ୍ୱାଧୀନ ସ୍ୱଚ୍ଛନ୍ଦ ବ୍ୟବସାୟ କରେ, ଦାମିକିଆ ମଦ ବିକ୍ରି କରେ, ଯିଏ ମୋର ଗ୍ରାହକ ସେମାନେ ଲାଟସାହେବ,

ମାଜିଷ୍ଟ୍ରେଟ, ଡାକ୍ତର, ଇଞ୍ଜିନିୟର, ଅଧ୍ୟାପକ, କଣ୍ଟ୍ରାକ୍ଟର, ବୌଦ୍ଧ ବିହାର, ତକ୍ଷଶୀଳା, ପୁଷ୍ପଗିରି ବିଦ୍ୟାଳୟର ତଦାନୀନ୍ତନ ବିଧାତାଙ୍କର ଉତ୍ତର ପୁରୁଷ ଏବର ସ୍କୁଲ କିଶୋର ବହୁ ଛାତ୍ର ଛାତ୍ରୀ।

ତୁ ମୋର ପୁଅ, ବେଶୀ ଆଉ କଅଣ କହିବି... ନିଃସଂକୋଚରେ ଲେଖିଦେବୁ ଅକୁପେସନ ସ୍ତମ୍ଭରେ...

"ବାପା ବିଦେଶୀ ମଦ ବ୍ୟବସାୟୀ", କିନ୍ତୁ ମନେରଖ "ବିଦେଶୀ" ଲେଖିବାକୁ ଭୁଲିବୁନି। ଆପଣା ଛାଏଁ ସମ୍ଭ୍ରମ ଆସିଯିବ।

ଏଇ ଏକ କଥା ଲେଖିଛନ୍ତି ଅରୁନ୍ଧତୀ, ବେଦବତୀ ଓ ଅଗ୍ନିରତି ଭିନ୍ନ ଭିନ୍ନ ପାଠ ପଢ଼ା ଓ ପରୀକ୍ଷା ପର୍ଯ୍ୟାୟରେ।

କିନ୍ତୁ ସମସ୍ୟା ଆସିଛି ଅରୁନ୍ଧତୀର ବିବାହ ପ୍ରସଙ୍ଗ ନେଇ... ଯେତେବଡ଼ ଶକ୍ତିଶାଳୀ ବ୍ୟକ୍ତି ହେଉ ଲୋକ ନରମି ଯାଏ ଯେତେବେଳେ ତା'ର ସଂସାରରେ ଅନୂଢ଼ା କନ୍ୟା ଅନ୍ୟୂନ ତିନିଜଣ ରହିଥାନ୍ତି।

ଶିକ୍ଷିତା ଏଇ ବାଳିକାମାନଙ୍କର ଜୀବନ ଦର୍ଶନ ସହିତ ବାପାଙ୍କ ମଦ ବ୍ୟବସାୟ କେଉଁଦିନ ଅଗ୍ନିବର୍ଷା କରିନାହିଁ। ବରଂ ସମନ୍ୱୟ, ସନ୍ତୋଷରେ ଆଚରିତ ଜୀବନ ସମସ୍ୟା ସମାହିତ ହୋଇଯାଏ ସାବଲୀଳ ଭାବରେ।

ରାଜୀବ ଶ୍ରାନ୍ତ କ୍ଲାନ୍ତ ହୋଇ ପଡ଼ିଛନ୍ତି। ପ୍ରଥମ କନ୍ୟା ଅରୁନ୍ଧତୀକୁ ଉଠେଇବେ କିପରି? ଏହାର ବି ଏକ ଅଲିଖିତ ଫର୍ମ ଅଛି। ଯେଉଁ ଯୁବକମାନେ ରୁମାଲରେ ମୁହଁ ଲୁଚାଇ ଏଣେ ତେଣେ ଚାହିଁ, "ଓଃ କେଡେ କଡ଼ା ଆଲୁଅ ଲଗେଇଚିବେ" କହି ବୋତଲଟାକୁ ପ୍ୟାଣ୍ଟ ପକେଟରେ ଦିଗହଜା କରି ଦଉଡ଼ି ପଳାନ୍ତି, ସେଇ ଯୁବକମାନେ ଅରୁନ୍ଧତୀକୁ କଣ ଆଖିରେ ଚାହିଁ ପ୍ରେମ ନିବେଦନ କଲାବେଳେ ଯାହା ରୋମାଞ୍ଚିତ ହୁଅନ୍ତି, ବିବାହ ପ୍ରସଙ୍ଗ ଭୂତ ଦେଖି କହି ଦିଅନ୍ତି "ହୋଇଥାନ୍ତି ଯେ, ବାପା ପରା ତାର ମଦ ବ୍ୟବସାୟୀ?"

ତଥାପି ରାଜୀବର ଲଲାଟ କୁଞ୍ଚିତ ହୁଏନି। ସ୍ଥିର ଲକ୍ଷ୍ମୀ ତା'ର ଚପଳା ହଏ ନାହିଁ।

ଏଇ ଯେ ନାଗଫେଣୀ ଜଙ୍ଗଲ ମଦ ବିକା ବ୍ୟବସାୟ ଘେରି ରହିଲା ସମସ୍ତଙ୍କୁ... ତାକୁ କାଟି ସଫା କରିବେ କିପରି?

ଚିନ୍ତିତ ରାଜୀବ। ସେ ତ ଆଉ ଢୋଲ ବଜାଇ କହି ପାରିବେ ନାହିଁ ଯେ ସେ ମଦ ଟୋପାଏ ବି ଗଳା ଦେଇ ଭିତରକୁ କେବେ ଛାଡ଼ି ନାହାନ୍ତି। ଯେ ପାନ, ବିଡ଼ି, ଚାହା, ସିଗ୍ରେଟ୍ ଖା'ନ୍ତି ନାହିଁ, ଆଉ ଯେଉଁ ପରିବାର ଦେବୀମନ୍ଦିରର ବାହାର ପ୍ରାଙ୍ଗଣରେ କେବଳ ବୃତ୍ତି ଛଡ଼ା ସୁରାର ପ୍ରକୋପ ଆଉ କେଉଁଠି ନାହିଁ, ସେ ପରିବାର ଝିଅକୁ ବଧୂ ବେଶରେ ଘେନିଯିବା ପାଇଁ ସାମାଜିକ ଅନ୍ୟାୟ ବିରୋଧରେ ୟୁନିଭର୍ସିଟି କ୍ୟାମ୍ପସରେ ତମ୍ଭୁ ତୋଫାନକାରୀ ଭଦ୍ରଯୁବକ କାହାର ସାହସ ରହେ ନାହିଁ କାହିଁକି?

ଡାକ ଥଳୀରୁ ପିଅନ ବହୁତ କାଗଜ ପତ୍ର ବାହାର କରି ଦିନବେଳେ ଥୋଇ ଯାଇଛି। ସନ୍ଧ୍ୟା ହେଲା। ୱାଇନ୍‌ର ପ୍ରାଇସ ଲିଷ୍ଟ, ତାହାର ବିଭିନ୍ନ ସାହିତ୍ୟ ଓ ସମାଚାର, ବିଲ୍ ଓ ବକେୟା ପ୍ରସ୍ଥତା ଭିତରେ ଗୋଟିଏ ଲଫାପାର ବର୍ଣ୍ଣ ବୈଭବ ଏମିତି ଥିଲା ଯେ ଆଗ ରାଜୀବ ସେଇଟିକୁ ଖୋଲି ଆରାମ ଚୌକିରେ ଅଧାଶୁଆ ଅବସ୍ଥାରେ ପଢ଼ିଲେ—

"ଭାବୀ ସମୁଦି ମହାଶୟ, ନମସ୍ତେ। ଆପଣଙ୍କ ଝିଅ ଅରୁନ୍ଧତୀର ଜାତକ ମୋ' ପୁଅର ଜାତକ ସହିତ ପୂର୍ଣ୍ଣାଙ୍ଗ ମିଳିଯାଇଛି। ଏହା ଅବଶ୍ୟ ଅତି ଆନନ୍ଦର କଥା।"

ରାଜୀବ ହଠାତ୍ ଚମକି ଯାଇ ଚୌକି ଉପରେ ସିଧାସଳଖ ବସି ପଡ଼ିଲେ।

"ଏହା ହେଲା ଏକାଦଶ–ତୃତୀୟ ରାଜ ଯୋଟକ। ତେଣୁ ସବୁ ଦିଗରୁ ଏ ବିବାହ କରଣୀୟ।"

ରାଜୀବ ଦୁଇଥର ଦେହକୁ ଏପଟ ସେପଟ ହଲାଇ ଦେଇ ଆନନ୍ଦରେ କେନ୍ଦ୍ର ଖୋଜି ନେଇ ଟାଣରେ ବସି ପଡ଼ିଲେ–

"ଯଦି ଆପଣ ରାଜି ହୁଅନ୍ତି ତେବେ ଅନୁଗ୍ରହ କରି ନିମ୍ନଲିଖିତ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଆପଣଙ୍କ କନ୍ୟାର ବିବରଣୀ ପ୍ରଦାନ କରନ୍ତୁ।"

ରାଜୀବର ମନେହେଲା ସେ ମାଟ୍ରିକୁଲେଶନ ପରୀକ୍ଷାର ପ୍ରଶ୍ନ ପତ୍ର ପଢୁଛି। 'କ' ବିଭାଗରେ ନିମ୍ନଲିଖିତ...

କନ୍ୟାର ଶୈକ୍ଷିକ ବୟଃସନ୍ଧି କେଡ଼େ?

ଗୌରବର୍ଣ୍ଣ, ମଝି ମଝିଆ ରଙ୍ଗ, କଳା – ଏଥିରୁ ଯେଉଁଟା ଝିଅ ପାଇଁ ପ୍ରଯୁଜ୍ୟ, ତାହାକୁ ରେଖାଙ୍କିତ କରନ୍ତୁ।

ତାହାର ସ୍ୱାସ୍ଥ୍ୟ କିମିତି? ମୋଟା, ମଝିଲା, ପତଳା। ଯେଉଁଟା ଝିଅ ପାଇଁ ପ୍ରଯୁଜ୍ୟ, ତାହାକୁ "ଟିକ୍" ଦିଅନ୍ତୁ।

ତାହାର ଶିକ୍ଷାଗତ ଯୋଗ୍ୟତା କେତେ? ମାଟ୍ରିକୁଲେଶନ ପରୀକ୍ଷାରେ କେଉଁ ଡିଭିଜନରେ ପାସ୍ କରିଛି? ପି.ଉ., ଫାଷ୍ଟ, ସେକେଣ୍ଡ ଏବଂ ଥାର୍ଡ଼ ଇତ୍ୟାଦି।

ଯଦି ସେ ଜଣେ ସ୍ନାତକା ତେବେ ସେ କେଉଁ ବର୍ଷ କେଉଁ ଡିଭିଜନରେ ପାଶ କରିଛି? ପୁଣି କଳା ନା ବିଜ୍ଞାନରେ?

"– ଆଜ୍ଞା, ଜଲଦି ରମ୍ ବୋତଲେ..."

ଗ୍ରାହକର ରାଜୀବ କାନପାଖେ ଫୁସ୍ ଫୁସ ଆବାଜ।

ରାଜୀବ ଚିଠି ଉପରୁ ମୁହଁ ଉଠାଇ ବିରକ୍ତିରେ କହିଲେ –

"ନୋ, ଆଉଟ୍ ଅଫ ଷ୍ଟକ୍" ଏକ ମୁହୂର୍ତ୍ତପରେ–

ନା, ନା, ଅଛି, ଡ୍ରିଙ୍କ, ଡ୍ରିଙ୍କ, ଯେତେ ଇଚ୍ଛା; ଆପଣ ପରୀକ୍ଷା ଦେଇଛନ୍ତି କେବେ? ପରୀକ୍ଷାର ପ୍ରଶ୍ନ ପତ୍ର?"

"ପରୀକ୍ଷା?"

"ହଁ, ପରୀକ୍ଷା, କଳା ନା ବିଜ୍ଞାନ?"

ଭଦ୍ର ଗ୍ରାହକଟି ନିଶ୍ଚିତରେ ଭାବିଲେ ଏତେଦିନେ ବିଦେଶୀ ମଦ ବ୍ୟବସାୟୀ ପରମ ବୈଷ୍ଣବ ଗଙ୍ଗୋଦକ ସେବୀ ରାଜୀବ ଆଜି କିନ୍ତୁ ପାନୀୟ ଗଳାଧଃକରଣ କରିଛନ୍ତି।

କହିଲେ। ବ୍ରାଭୋ, ମାଇ ବୟ, ଗୋଟାଏ ମସ୍ତବଡ଼ ପାଟେରି ତମ ଆମ ଭିତରେ ଛିଡ଼ା କରାଇଥିଲ, ଏବେ ସାଫ୍। ଉଇ ଆର୍ ଓ୍ୱାନ।

ରାଜୀବ ନିଜର ମଥାକୁ ଝାଙ୍କି ଦେଇ କହିଲେ – "ମୁଁ କିଛି କହୁଥିଲି? ଆପଣ ଚାହିଁଲେ ଏକ ବୋତଲ ରମ୍, ମୁଁ ଦେଇନାହିଁ?"

"–ନୋ ମାଷ୍ଟର, ମୋର ତୃଷ୍ଣା ବଢ଼ିଯାଇଛି, ପ୍ରଶ୍ନ ଟ୍ରସ୍ନ କଅଣ କହୁଥିଲେ, ନୋ କ୍ୱୋଶ୍ଚିନ୍, ବଟ୍' ଅଲ୍ ଆର ରିପ୍ଲାଇଜ୍।"

ବୋତଲେ ରମ୍ ନେଇ ଭଦ୍ରଗ୍ରାହକ ଚାଲିଗଲେ ହୁଇସିଲ୍ ବଜାଇ ବଜାଇ...

ରାଜୀବ ଚାରିଟା ବାରଲାଇଟରୁ ଦୁଇଟା ଲିଭାଇ ଦେଇ ଯାଇ ଦୁଇଟାରେ ଚିଠିଟି ପଢ଼ିବାକୁ ଆରମ୍ଭ କଲେ;

କାରଣ କେନ୍ଦ୍ରିଭୂତ ଆଲୋକ ସମ୍ପାତରେ ଚିଠିଟା ଆହୁରି ପରିଷ୍କାର, ଆହୁରି ଉଜ୍ଜ୍ୱଳ ହୋଇ ଉଠିବ।

ଯଦି ସେ କନ୍ୟା ଆଉ କିଛି ଉଚ୍ଚ ଶିକ୍ଷା ପାଇଥାଏ, ତେବେ ସେ ଦୂରତ୍ୱ କେତେ ? ସେ ସଂପୂର୍ଣ୍ଣ ଭାବରେ କୋର୍ସ ସାରିଛି କି ଅଧାପନ୍ତରିଆ ରହିଛି। ସକାରଣ ବିବୃତ କରିବେ।

"ଅନ୍ୟାନ୍ୟ ଯୋଗ୍ୟତା କିଛି ଅଛି କି ? ମାନେ ଧର ସଙ୍ଗୀତ, ସିଲେଇ, କନାରେ ଫୁଲ ଫୁଟାଇବା ବା ତ୍ରଇଁ ?"

"ହାଉ ଡୁ ଇଉ ଡୁ ରାଜୀବ୍ ? ବାକୀରେ ଲେଖିଦିଅ, ଗୋଟାଏ ଥ୍ରି ହର୍ସ– ମୁଁ ଏଇ ନୀଳିମ ଆଲୋକ ତଳେ ବସିଯାଇ ଥ୍ରି ହର୍ସ ଉପରେ ରାଇଡ୍ କରିପାରିବି କି ? ଓ ନୋ, ଆପତ୍ତି କିଛି ନାହିଁ ବନ୍ଧୁ ଦିଅ ଗୋଟାଏ ଅନ୍ କ୍ରେଡିଟ।"

"–କନାରେ ଫୁଲ ଫୁଟାଇବା, ଫୁଟାଇବା ଅର୍ଥ ? ଟୁ ସୁଟ୍... ମୁଁ ତାକୁ ଗୁଳି କରିବି, ଏଇ ଚିଠିର ଲେଖକଟାକୁ – ଭାବୀ ସମୁଦି ! ... ହାଃ... ହାଃ" ରାଜୀବର ଉତ୍ତରକ ହସରେ ଦୋମହଲା କୋଠାର ପ୍ରତି କକ୍ଷ କ୍ୱଣିତ ହୋଇଗଲା।

ଗ୍ରାହକ ବନ୍ଧୁ ଭୟ ପାଇଗଲେ। କହିଲେ – "ରାଜୀବ, ତୁମେ ହୋସ୍‌ରେ ଅଛ ତ ? ବଟ୍ ଆଇ ନେଭର ଫାଉଣ୍ଡ ଇଉ ଡ୍ରଙ୍କ୍। ତୁମକୁ ଟିପ୍‌ସୀ ତ କେବେ ଦେଖିନି– ଆରମ୍ଭ କରିଛ ବୋଧହୁଏ। ଦିଅ ମତେ ବୋତଲଟା। ନାଃ ନୀଳିମ ଆଲୁଅ ତଳେ ଆଜି ଆଉ ଜମିବନି; ଯାଏଁ ଷଷ୍ଠବାର୍ଷିକ ସାଇକୋଲଜି ଛାତ୍ରୀ ମିସ୍ ମନିକାର ଝରକା ତଳେ ବସିପଡ଼େ– ଟୁ ଆଓ୍ୟାର ହେଲ୍‌ଥ।"

"ଗେଟ୍ ଆଉଟ"– ରାଜୀବଙ୍କ ଚିତ୍କାର...

ମନିକାର ପ୍ରଣୟ ପ୍ରାର୍ଥୀ ଛାତ୍ର ବନ୍ଧୁଟି ପ୍ରାଣ ଭୟରେ ଦଉଡ଼ି ଯାଇ ଅନ୍ଧକାରରେ ମିଶିଗଲା।

ତା'ପରେ ?

ତୁମ କନ୍ୟାର ଦୈହିକ ଉଚ୍ଚତା କେତେ ?

ମୋର ପୁତ୍ର ଜଣେ ଇଲେକ୍‌ଟ୍ରିକାଲ ଇଞ୍ଜିନିୟର, ତାର ହାଇଟ୍ ପାଞ୍ଚ ଫୁଟ ଦୁଇ ଇଞ୍ଚ।

ରାଜୀବ ଉପରକୁ ଅନେଇଲେ। ଧାରଣା କଲେ ଇଲେକ୍‌ଟ୍ରିକ୍ ଖମ୍ବଗୁଡ଼ାକ ପ୍ରାୟ କେତେ ଉଚ୍ଚର ହୋଇଥାଏ। ଟିକିଏ ପରେ ଆଖି ଦୁଇଟା ଖସି ଆସି ଚିଠିର ଦଶନମ୍ବର ପ୍ରଶ୍ନ ଉପରେ ଲାଖି ରହିଲା।

ତୁମେ ପୁରୀ ଟାଉନର ବାସିନ୍ଦା କି ଅନ୍ୟ ଗ୍ରାମର ? ଯଦି ଗ୍ରାମର ହୋଇଥାଅ, ତେବେ ତୁମ ଗ୍ରାମର ନାମ ପ୍ରକାଶ କର ଏବଂ ଏହା ଭିତରକୁ ପ୍ରତ୍ୟେକ ଋତୁରେ ବାହାର ଜଗତକୁ ଯିବାପାଇଁ ସୁଗମତା ଅଛି କି ନାହିଁ ବୁଝାଇ ଲେଖ।

ରାଜୀବଙ୍କର ମନକୁ ଆସିଲା ସ୍କୁଲ ପଢ଼ା ଦିନର ସଂସ୍କୃତ ପଣ୍ଡିତଙ୍କ ଶ୍ଳେଷୋକ୍ତି ଅମନୋଯୋଗୀ ଛାତ୍ରଙ୍କ ପାଇଁ ରାମଚନ୍ଦ୍ରଙ୍କ ସ୍ତ୍ରୀ ସାବିତ୍ରୀର ସମୁଦ୍ର ପ୍ରବେଶ ଦ୍ୱାରା ସେ କିପରି ଅଗ୍ନିରେ ଦଗ୍ଧ ହୋଇଥିବା ବରଫ ଭଳି ଶୁଦ୍ଧ ହୋଇଗଲେ ସେ ବିଷୟରେ ଏକ ପ୍ରବନ୍ଧ ଲେଖ।

"ଗୋଟାଏ ପେଗ୍ ଏଇଠି ବସି ପିଇ ପାରିବି ?"

"ଆରେ ଜୟନ୍ତ ବାବୁ ଯେ, ଆପଣଙ୍କର କେତେ ବର୍ଷ ଅଭିଜ୍ଞତା ହେଲା ପ୍ରଶ୍ନକର୍ତ୍ତା ଭାବରେ ?"

ରାଜୀବଙ୍କର ଚଟୁଳ ହାସ୍ୟ।

"ରାଜୀବ ବାବୁ, ଆପଣ ହଠାତ୍ ପରୀକ୍ଷା ଓ ପ୍ରଶ୍ନ ବିଷୟରେ ଏତେ ବିବ୍ରତ କାହିଁକି ? ମୋର ତ ପ୍ରଥମ ବର୍ଷର ଅଧାପକ ଜୀବନରୁ ମୁଁ ପ୍ରଶ୍ନ କରି ଆସୁଛି ଟିଲ ଟୁ ଡେଟ୍– ଦିଅନ୍ତୁ ନା ଖୁବ୍ ଶୋଷ ହେଉଛି। ଗୋଟାଏ ପେଗ୍, କିଏ ଯଦି ଛାତ୍ର ଟାତ୍ର ଆସି ଯାଆନ୍ତିନା ତେବେ ତ ତ୍ତୁ, ଢା ହୋଇଯିବ।

ରାଜୀବ ବରାବର ଏଇ ଅଧ୍ୟାପକ ଜୟନ୍ତବାବୁଙ୍କୁ ବାରଣ କରି ଆସିଛନ୍ତି। ସେ ଶିକ୍ଷକ, ପବିତ୍ରାତ୍ମା, ସେ ଯଦି ଏପରି ମାତାଲ ହେବେ, ବୋତଲ ଧରିବେ, ତେବେ ନା, ସେ ପ୍ରଗଲ୍‌ଭ ହେବେନି, ଆଜି ସନ୍ଧ୍ୟାରେ ତାଙ୍କର ଚିରାଚରିତ ଗାମ୍ଭୀର୍ଯ୍ୟ ନଷ୍ଟ ହୋଇଯାଇଛି। ଯେ କେହି ଜାଣିପାରିବେ ସେ ନିଶ୍ଚୟ ସୁରାପାନ କରିଛନ୍ତି। ଅଥଚ ଈଶ୍ୱର ଜାଣନ୍ତି ସୁରା ଲକ୍ଷ୍ମୀ ଏମାନଙ୍କର ଲୀଳା ରଚନା କଲେ ବି ସେ ଜିତେନ୍ଦ୍ରୀୟ।

ଏପରିକି ଘର ପିଲାମାନଙ୍କୁ ବାରଣ, ଏ ଦୋକାନ ବାଟେ ଯିମିତି କେହି ନ ଯାଆନ୍ତି। ବଞ୍ଚିବାକୁ ଗୋଟାଏ ଧନ୍ଦାମାତ୍ର.... ନହେଲେ...

ରାଜୀବ ଚୌକୀରୁ ଉଠିଲେ– କହିଲେ, "ମନାକରିଥିଲି, ପୁଣି ଆସିଲେ ? ମୁଁ ଟିକିଏ ବ୍ୟସ୍ତ ଅଛି, ଜୟନ୍ତବାବୁ, ଫେରିଯାଆନ୍ତୁ। ଆପଣମାନଙ୍କୁ ପିଇବାର ଦେଖିଲେ ମୋର ବ୍ୟବସାୟ ପ୍ରତି ଧିକ୍‌କାର ଆସୁଛି.... ଆପଣ ଫେରିଯାଆନ୍ତୁ।"

ଜୟନ୍ତବାବୁ ବିରକ୍ତ ହେଲେ... ଆଖିରେ ଅନଳ.... "ଦେଖନ୍ତୁ, ଆପଣ ବ୍ୟବସାୟ କରିଛନ୍ତି, ମାଲ ରଖିଛନ୍ତି, ଗରାଖ ଆସୁଛି, ମାଗୁଛି, ଦେଶ, ଜାତି, ଭବିଷ୍ୟତ କହି ତା ମନରେ ନିରାନନ୍ଦ ଆଣୁଛନ୍ତି, ଅଥଚ ସେ ଆସିଛି ଫୁର୍ତ୍ତି କରିବାକୁ। ଆପଣ ନ ଦେଲେ, ମୁଁ ଅନ୍ୟତ୍ର ଯିବି, ଏ ସହରରେ ଆପଣ ଏକା ବିଲାତୀ ମଦ ବ୍ୟବସାୟୀ ନୁହଁନ୍ତି।"

ଜୟନ୍ତ ଫେରି ଯାଉଛନ୍ତି – ରାଜୀବ ହାତ ଧରିପକାଇଲେ "ଦେଖନ୍ତୁ ମୋ ମୁଣ୍ଡ ଆଜି ଠିକ୍ ନାହିଁ। ଗୋଟାଏ ଚିଠି ଯେମିତି ଖୁବ୍ ଦାମିକା ବିଲାତୀ ମଦ ବୋତଲର ରୂପ ନେଇ.... ସେ ଚିଠିର ଲେଖକଟା କି କୁତ୍ସିତ... କି ଜଘନ୍ୟ– ବରଂ ମୁଁ ଗୋଟାକଯାକ ବୋତଲ ଦେଉଛି... କେଉଁଠି ସହରର ନିର୍ଜନ ଭୂଇଁ ଦେଖି ସେତକ ସାରିଦିଅ।"

"ଦେବେ ?" ଅଧ୍ୟାପକ ଜୟନ୍ତଙ୍କର ଅମାୟିକ ହସ– ଲାବଣ୍ୟର ଝରା ବଉଳ ଫୁଟିପଡ଼ିଲା ଚାରିଆଡ଼େ ନିଅନ୍ ଲାଇଟ୍ ଦୀପ୍ତି ଭିତରେ।

ଫେରି ଆସି ରାଜୀବ ଗୋଟାଏ ଦୀର୍ଘଶ୍ୱାସ ପକାଇ ୧୧ ନମ୍ବର ପ୍ରଶ୍ନ ଉପରେ କରାଙ୍ଗୁଳି ରଖି ପଢ଼ିଲେ–

ଆପଣଙ୍କ ଗ୍ରାମକୁ ଯିବାପାଇଁ କେଉଁ ପ୍ରକାର ଯାନ ମିଳିପାରେ ?

ଟ୍ରେନ୍, ବସ୍, ଟାକ୍‌ସି, ଶଗଡ଼, ପାଦ – କେଉଁଟା ଯଥାର୍ଥ ତାହା ଠିକ୍ କରି ସେଟାକୁ ଗୋଟାଏ ରେଖା ଦେଇ କର୍ତ୍ତନ କରନ୍ତୁ। ଯଦି "ପାଦ" ହୋଇଥାଏ, ତେବେ କେତେଦୂର ପଦଯାତ୍ରା କରିବାକୁ ହେବ ? ଆନୁମାନିକ କିଲୋମିଟର ପ୍ରଦାନ କରନ୍ତୁ।

ବସଷ୍ଟାଣ୍ଡ ବା ରେଳ ଷ୍ଟେସନରୁ ତାହା କେତେ ବାଟ ? ଆପଣ କଅଣ ସରକାରୀ କର୍ମଚାରୀ, ବ୍ୟବସାୟୀ, ଜମିଦାର ? ଯେଉଁଟା ଆପଣଙ୍କ ପ୍ରତି ପ୍ରଯୁଜ୍ୟ, ସେଥିରେ ଗୋଟାଏ ମୁଣ୍ଡଳା ବୁଲାଇ ଦିଅନ୍ତୁ।

ଆପଣଙ୍କ ବଂଶ ପରିବାରରେ ଯଦି ଅତୀତରେ ବା ବର୍ତ୍ତମାନ କେହି ଅନ୍ୟତମ ସରକାରୀ କର୍ମଚାରୀ ଥାଆନ୍ତି, ତେବେ ସେମାନଙ୍କର ନାମୋଲ୍ଲେଖ କରନ୍ତୁ।

ଦୁଇଜଣ ହିପ୍‌ପୀ ଯୁବକ ଯୁବତୀ। ଯୁବତୀର ନଗ୍ନ ବକ୍ଷ ଉପରେ ଖଣ୍ଡିଏ ସରୁ ପାଟବସ୍ତ୍ର ଜଡ଼ିତ ରହିଛି।

ପିନ୍ଧା ସାର୍ଟ... ଯୁବକର ମୁହଁ ଉପରେ ଶ୍ମଶ୍ରୁ ତଳେ ମିଟି ମିଟି ଦୁଇଟି ଆଖି ବେଶ୍ ନୀଳ ପ୍ରଭାର ଗୋଲକ।

ଯୌବନଦୀପ୍ତ ଏଇ ତରୁଣ ତରୁଣୀଙ୍କ ଚାହାଣୀରେ ରାଜୀବ ପଟ୍ଟନାୟକଙ୍କର ଦାମିକା ବିଲାତୀ ମଦ ବୋତଲଗୁଡ଼ାକ ଯିମିତି ନାଚି ଉଠିଲେ... ସମାର୍ଥକ ବିଭୂତି ବୋଧହୁଏ।

ଗୋଟାଏ ଆଡ଼େ ନିଟୋଳ ଦେହ ବଲ୍ଲରୀ ରମଣୀର, ଯୁବକର ପ୍ରଶାନ୍ତ ପୌରୁଷ। ଅନ୍ୟଆଡ଼େ ସେ

ଦେହକୁ ଦଗ୍‌ଧ କରି ଧୂସର ରଙ୍ଗରେ ସଜାଇବାକୁ ରହିଛି ପଟ୍ଟନାୟକଙ୍କର କକ୍ଷରେ ସରକାରଙ୍କର ସମ୍ଭାର।

କିନ୍ତୁ ସେମାନେ ତାହା ଚାହିଁଲେ ନାହିଁ।

— ମାର୍ଜୁନିଆ ? ହାଉ ଇଉ ? ହଏସା ? ହ୍ୟାଉ ଇଉ ? ପୁରୁଷ କଣ୍ଠରେ ପ୍ରଶ୍ନ...

ରାଜୀବ କହିଲେ, — "ସରି, ନୋ ଏନଫ୍ ୱାଇନ୍" ତରୁଣୀ ପୁରୁଷ ଆଡ଼େ ନେତ୍ର ବିନିମୟ କରି କହିଲା.... ନୋପ୍, ଦିସ୍ ଇଜ୍ ଟ୍ରାସ୍, ଲେଟ୍ ଅସ୍ ୱାଣ୍ଡର୍...

ଚିଠିଟା କେତେ ଲମ୍ବା ସତେ ?

ଆପଣଙ୍କର ପୁଅ ଝିଅ ସଂଖ୍ୟା କେତେ ? ଆଉ ସେ ସଂଖ୍ୟା ଭିତରେ ଏ ବିବାହଯୋଗ୍ୟା ଝିଅଟିର ସ୍ଥାନ କଅଣ ?

ଆପଣଙ୍କ ପୈତୃକ ସମ୍ପତ୍ତିର ଯଥାଯଥ ବିବରଣୀ ପ୍ରଦାନ କରନ୍ତୁ। ଚିଠିର ଶେଷ ଦଫା ହିଁ ବଡ଼ ଆକର୍ଷଣୀୟ ଦଫା.... କେତେ ସଂକ୍ଷିପ୍ତ ! କେତେ ସୂଚନାତ୍ମକ !

ରାଜୀବ ପଢ଼ିଲେ —

ଆପଣ ଆପଣଙ୍କର କନ୍ୟା ଓ ଜାମାତାଙ୍କୁ ବିବାହରେ କଅଣ ଦେବେ ? ଅବଶ୍ୟ ଆମ୍ବାସାଡ଼ାର କାର୍‌ଟା ଗୌଣ... ସେଟାତ ରହିଛି... ବିସ୍ତୃତ ବିବରଣୀ ସହ ସତ୍ୟପାଠ ସହକାରେ ପତ୍ର ଲେଖନ୍ତୁ।

ଦ୍ରଷ୍ଟବ୍ୟ.... ବହୁ ଆଉ ବହୁ ପ୍ରାର୍ଥୀ ଆସୁଛନ୍ତି। ଶୀଘ୍ର ଉତ୍ତର ଅପେକ୍ଷା କରୁଛି।

ଆପଣଙ୍କର
ଅନ୍ତରଙ୍ଗ ବିଶ୍ୱସ୍ତ
ସୂର୍ଯ୍ୟକାନ୍ତ

ମହାପାତ୍ର, ବାଲେଶ୍ୱର

ଫାଇନାଲ୍ ବର୍ଷ ଏମ୍.ବି.ବି.ଏସ୍. ଛାତ୍ରୀ ଅରୁନ୍ଧତୀର ସାରା ଶରୀରଟା ଘୃଣାରେ ଚହଲି ଉଠିଲା। ରଙ୍ଗ ଟିକିଏ କମ୍ କିନ୍ତୁ ନିଟୋଳ ଅଙ୍ଗଶ୍ରୀରେ ଯୌବନ ତରଙ୍ଗିତ। ଟେଥିସକୋପଟାକୁ ଟେବୁଲ ଉପରେ ଫୋପାଡ଼ି ଦେଇ ସଙ୍ଗୀତାକୁ କହିଲା — ବାପାଙ୍କୁ ମନାକଲି ମୋ ବିଷୟରେ ମୁଣ୍ଡ ଘୂରାନ୍ତୁ ନାହିଁ। ମୁଁ ଡାକ୍ତରାଣୀ, ମୁଁ କାହାର ଗଳଗ୍ରହ ହେବିନାହିଁ। ଅଥଚ ବାପା ମା' ବୁଝୁନାହାନ୍ତି, ଯେତେକ ବଜାରୀ, ଲୋଫର୍, ସ୍କାଉଣ୍ଡ୍ରେଲଙ୍କୁ ଚିଠି ଲେଖି ମୋର ବିବାହ ପ୍ରସ୍ତାବ ପଠାଉଛନ୍ତି। ଦେଖ୍ ସଙ୍ଗୀତା, ଗୋଟାଏ ଚିଠିର ଆକାର ପ୍ରକାର। ଚୋରେଇ କରି ନେଇ ଆସିଛି, ବାପା ଖୋଜିବା ପୂର୍ବରୁ ଯେମିତି ସେଇଟା ଯଥା ସ୍ଥାନରେ ରଖିଦିଏଁ।'

ରୁମାଲରେ ମୁହଁ ପୋଛି ଅରୁନ୍ଧତୀ ଗୋଟାଏ ଗଭୀର ବେଦନାର୍ତ୍ତ ଶ୍ୱାସ ଝରାଇଲା। ବାନ୍ଧବୀ ସଂଗୀତା ଚିତ୍କାର କଲା ତାଳି ମାରି।

ଏଃ ଅରୁ — ଗୋଟାଏ ମଜା କରିବା.... ଠିକଣା ତ ଅଛି। ଲେଟ୍ ଅସ୍ ରାଇଟ୍ ଏ ରିପ୍ଲାଇ ଟୁ ଦି ଲୋଫର... ଗୋଟାଏ ଉତ୍ତର ଦେବା ତାର ମନ ବୁଝୁଥିବ। ସଂଗୀତାର ମଜା କରିବାର ଦୁର୍ବାର ପ୍ରଲୋଭନ।

'ବାପା ଯଦି ଜାଣିବେ' ? ଅରୁନ୍ଧତୀର ଆଶଙ୍କା।

'ଜାଣନ୍ତୁ, ଏ ବାହାଘର କଅଣ ହେଉଛି ଯେ, ପୁଣି ଲୋକଟା "ଏକାଦଶ—ତୃତୀୟ ରାଜଯୋଟକ" ହୋ... ହୋ ହୋଇ ଦୁଇ ତରୁଣୀ ହସି ଉଠିଲେ।

ହାଇଟ୍ ପାଞ୍ଚ ଫୁଟ ଦୁଇ ଇଞ୍ଚ ଯୁବକର ପିତା ସୂର୍ଯ୍ୟକାନ୍ତ ମହାପାତ୍ରଙ୍କ ଅଫିସ ଘରେ ସେ ଏକାକୀ। ହାତରେ ଏକ ପତ୍ର। ସ୍ୱପ୍ନ ଦେଖୁଥିଲେ ଭାବୀ ସମୁଦି ରାଜୀବ ପଟ୍ଟନାୟକଙ୍କର ସୁବିସ୍ତୃତ ବିବରଣୀ ତଥା ଶେଷ ଦଫାର ଉତ୍ତର କେତେ ଯେ ଆକର୍ଷଣୀୟ ହେବ, କହିହେବ ନାହିଁ।

ଉତ୍ତର ଠିକ୍ ଆସିଛି, କିନ୍ତୁ ବିଖ୍ୟାତ ବିଦେଶୀ ମଦ ବ୍ୟବସାୟୀ ରାଜୀବ ପଟ୍ଟନାୟକଙ୍କଠାରୁ ନୁହେଁ। ଲେଖିକାର ନାମ ତଳେ ଅଛି — "ଶିବ—ଶିବାନୀ"

ଦ୍ରଷ୍ଟବ୍ୟରେ ଲେଖା ଅଛି... "ଆଜି ନାରୀ ନୃମୁଣ୍ଡମାଳିନୀ, କରାଳ ବଦନୀ, ଖର ଖର୍ପର ଧାରିଣୀ, ଅହିଭୂଷଣିନୀ ପ୍ରଚଣ୍ଡା ଯୋଗିନୀ ଭାବରେ ତମ ପାଖକୁ ଆସିଛି ତମର ହାଇଟ୍ ପାଞ୍ଚଫୁଟ ଦୁଇ ଇଞ୍ଚ ପୁଅର ଶବ ଉପରେ ଆରୋହଣ କରି ସେ ସାଜିବ ଶିବାନୀ, ତାର ଲହ ଲହ ରୁଧିର ସ୍ରାବ ଭିତରେ ସେ ବିନାଶ କରିବ ମାଇଚିଆ, ବଟିକା ଭକ୍ଷକ, ପୌରୁଷହୀନ ବ୍ଲାଉଜ୍‌କନା ବିଭୂଷିତ ତମର ପୁଅ ଭଳି କେତେ ଇଲେକ୍‌ଟ୍ରିକ୍ ଇଞ୍ଜିନିୟରଙ୍କୁ। ସାବଧାନ ହୁଅ।

ପୁରୀ, ୭–୯–୭୩

ପୁଅର ବାପା ମହୋଦୟ,

ଆପଣଙ୍କର ପତ୍ର ଯଥା ସମୟରେ ମୋର ପିତାଙ୍କର ହସ୍ତଗତ ହୋଇଛି। ସେ ତାର ଉତ୍ତର ସମୟ କରି ଦେବେ। ଆପଣଙ୍କର ପତ୍ରକୁ ଶିବଙ୍କ ବେଲପତ୍ରି ନ୍ୟାୟରେ ମୁଁ ମୋ ମଥାରେ ଛୁଆଇଁ ଏ ଉତ୍ତର ଲେଖୁଛି କି ଦରକାର ବେଳେ ଆପଣଙ୍କର କର୍ମରେ ଆସିବ। ଆପଣ ବୋଧହୁଏ ଜାଣନ୍ତି ନାହିଁ ମୁଁ ଜଣେ ଚିକିତ୍ସିକା, ତେଣୁ ଶରୀର ସମ୍ବନ୍ଧରେ ମୋର ଜ୍ଞାନ କମ୍ ନାହିଁ କି ମନ ସମ୍ବନ୍ଧରେ ମୋ ଜ୍ଞାନର ଅଭାବ ନାହିଁ।

ଏ ପ୍ରଶ୍ନଗୁଡ଼ିକ ଆପଣଙ୍କ ପାଞ୍ଚ ଫୁଟିଆ ସନ୍ତାନ ପାଇଁ ଉଦ୍ଦିଷ୍ଟ। ଆପଣ ନିଜେ ନ ପାରିଲେ, ପୁଅ ପ୍ରବରଙ୍କୁ ପଚାରି ଉତ୍ତର ଦେବେ। ସବୁ ଏପଟେ କନ୍‌ଫିଡେନସିଆଲ୍ ରହିବ।

ଆପଣଙ୍କ ପୁଅଙ୍କର କେଉଁ ଋତୁରେ, ଦିବା ବା ରାତ୍ରରେ କେତେଥର ପୁରୁଷ ଦୋଷ ଘଟିଥାଏ ତାହାର ସତ୍ୟପାଠ ପୂର୍ବକ ବିବରଣୀ ଦେଇ ଏକ ସନ୍ଦର୍ଭ ଲେଖିବେ।

ବାଲ୍ୟକାଳରେ ସେ କାଛୁ କୁଣ୍ଡିଆ ରୋଗରେ ଆକ୍ରାନ୍ତ ହୋଇଥିଲେ କି ? ଯଦି ହୋଇଥାନ୍ତି ତେବେ କି ପ୍ରତିକାର ସେତେବେଳେ ହୋଇଥିଲା, ଦର୍ଶାଇବେ।

ଝିଅଙ୍କୁ ଦେଖିଲେ ଯାଙ୍କର ତୁଣ୍ଡ କେତେ ଡିଗ୍ରୀରେ ୫,୧୦,୪୫,୯୦,୧୦୦ ଆଁ ହୋଇଯାଏ ? ତାଙ୍କୁ ଯେଉଁଟା ପ୍ରଯୁଜ୍ୟ ସେଥିରେ ମୁଣ୍ଡଳା ଚଢ଼େଇ ଦେବେ।

ଯାଙ୍କର ପୁରୁଷଶକ୍ତିର ଗୋଟାଏ ଆନୁମାନିକ ମେଡିକାଲ ବିଚାର ସମ୍ମତି ରିପୋର୍ଟ ପଠାଇ ଦେବେ। (ଯେ କୌଣସି ଡାକ୍ତରଖାନାରେ ଏହା ପରୀକ୍ଷିତ ହୋଇପାରିବ)।

ସେ ଇଲେକ୍ଟ୍ରିକ୍ ଇଞ୍ଜିନିୟର ଥିବାରୁ ତାଙ୍କର ଶରୀରରେ ସକ୍ ଇମ୍ୟୁନ୍ ହୋଇଛି କି ନାହିଁ ତାର ଗୋଟାଏ ପରୀକ୍ଷା ବାଞ୍ଛନୀୟ। ଗାଲରେ ଯୋତା ଦେଲେ ଦେହର କେତେ ଗଭୀରତାକୁ ସକ୍ ଯାଏ, ଜଣାଇବେ। ଶ୍ୱଶୁର ଆଡୁ ଯୌତୁକ ପାଇଥିବା ଆମ୍ବାସାଡ଼ାର ଗାଡ଼ିକୁ ପ୍ରଥମ ବୀକ୍ଷଣରେ ଆଉଁସିଲାବେଳେ ଯାଙ୍କର ମୁଖ ବିବରର ଟେମ୍ପେରେଚର ବିବରଣୀ ପଠାଇବେ। (ଏଇଟା ଏବଠୁ ଭାବିଦେଲେ ପାଞ୍ଚ ଯୁବକର ଆପେ ଆପେ ଟେମ୍ପେରେଚର ଆସିଯିବ)।

ଶେଷ ଦଫା – ଯାଙ୍କର ରସଜ୍ଞାନ ଓ କାବ୍ୟକଳାର ଗଭୀରତାକୁ ମାପିବାକୁ (ଯଦିଓ ଇଞ୍ଜିନିୟର) ସେ ତାଙ୍କର କଳପିତ ମଧୁଯାମିନୀର ସର୍ବ ଅନୁଭାବକୁ ଓଡ଼ିଆ ଭାଷାରେ ଲେଖି ମୋ ପାଖକୁ ପଠାଇ ମତେ ସୁଯୋଗ ଦିଅନ୍ତୁ।

ଟିକିଏ ରହିଗଲା – ସେ ରାତ୍ରିରେ ମତେ କିମିତି ଓ କଅଣ ଡାକିବେ, ତାହା ଉଲ୍ଲେଖ କରି ପୁଣି ପ୍ରତିକୂଳ ଅବସ୍ଥାରେ ମୋ ଠାରୁ ଚପଲ ମାଡ଼ ଖାଇ ସେ ଡାକରେ କି ପରିବର୍ତ୍ତନ କରିବେ, ଜଣାଇଲେ, ପରବର୍ତ୍ତୀ ପତ୍ର ବିନିମୟ ଘଟିବ।

ଆପଣଙ୍କର ବିଶ୍ୱସ୍ତା
ଭାବୀ ବଧୂ

■■■

# ଯୁଗ ପୁରୁଷର କାହାଣୀ

"– ଆସ, ବାବା, ତମକୁ ଦେଖାଇଦିଏ ଶହେବର୍ଷ ଧରି ଆଲୁଅ ଅନ୍ଧାର ଭିତରେ ଗୁଡ଼ାଏ ଲୋକ ଏକା ମାଆ ପଣତ ତଳେ କେମିତି ନିଜକୁ ତିଆରି କରୁଛନ୍ତି। ତମେ ତ ଏବର ଶୁକ୍ରତାରା, ଦେଖିନିଅ। ତମ ପୂର୍ବେ ଏ ଗଗନ କିମିତି ଜ୍ୟୋତିର୍ମୟ ଥିଲା।"

ଆପଣ କିଏ ?

ମୁଁ ଯୁଗ ପୁରୁଷ। ଭଙ୍ଗାଗଢ଼ା କେତେ ବିଚିତ୍ର ଦୃଶ୍ୟ, କେତେ ସଙ୍ଗୀତର କଳତାନ ତଳେ ମୁଁ ଦେଖିଛି ଶୁଣିଛି।

ଏ କଅଣ କରୁଛନ୍ତି ?

ଏ ପ୍ରଣାମ କରୁଛନ୍ତି ତାଙ୍କ ଗୁରୁଦେବଙ୍କୁ। ଏ ଗୋଟିଏ ଗୋଟିଏ ଗୁରୁ ଶହେ ବର୍ଷର ନୀଳ ଦିଗନ୍ତ ତଳେ ଗୋଟିଏ ଉଦ୍‌ଭାସିତ ଆତ୍ମା।

ଯୁବକ ପଚାରିଲା –

ଏ ଏମିତି କସରତ କରୁଛନ୍ତି କିଆଁ ? ଏ ଭଳି ଭଙ୍ଗୀ ପ୍ରଣାମ ଆଗେ ଥିଲା କି ?

ଏ କସରତ୍ ନୁହେଁ ବାବା, ଯାହାକୁ ତୁମେ ଏପରି କରୁଛ, ତାହା ସଭକ୍ତି ପ୍ରଣାମ। ପୂଜ୍ୟ ଗୁରୁଙ୍କ ପାଖେ ଅଣ୍ଟା ଭାଙ୍ଗି ଯୋଡ଼ହସ୍ତରେ ନମସ୍କାର। କଥା ନ କହିଲେ ବି ଗୁରୁ ଆଶୀର୍ବାଦ କରନ୍ତି। ଶିଷ୍ୟ ଗ୍ରହଣ କରନ୍ତି।

"କିନ୍ତୁ ଏବେ ଆମେ ଯେଉଁ ନମସ୍କାର କରୁଛୁ, କେତେ ତଫାତ; ଆମ ହାତ ଖାଲି ନ ଥାଏ, ଯୁଗ ପୁରୁଷ, ଯୋଡ଼ିବୁ କିମିତି ? ସିଗାରେଟ୍ ଥାଏ, ପୁଣି କଳା ଚଷମାକୁ ହଲାଇ ହଲାଇ ଆମକୁ ବାଟ ଚାଲିବାକୁ ହୁଏ, ପ୍ରେମିକା ଉଦ୍ଦେଶ୍ୟରେ ଆଖିଠାରି ଚାଲିଲା ବେଳେ ଅନ୍ୟମନସ୍କ ରହିବାକୁ ପଡ଼େ। ପୁଣି ସାଇକେଲରେ ଗଲାବେଳେ ନା ନମସ୍କାର ନୁହେଁ, କେବଳ ବିଧିରକ୍ଷା କରିବାକୁ ହାତଟାକୁ କୁରାଢ଼ୀ ଉଞ୍ଚେଇବା ଭଳି ଉଞ୍ଚେଇ 'ହାଲୋ' କହିଦେଉ। ଅଧୁନାତନ ନମସ୍କାର ପ୍ରଣାଳୀ ତ ଏଇଆ।"

ଯୁଗ ପୁରୁଷ ହସିଲେ, କହିଲେ – ହଁ, ଯୁଗ ବଦଳିଛି, ଦେଖିବ ସେ ପ୍ରାଚୀନ ଗୁରୁମାନଙ୍କୁ ? ଦେଖ, ପୂଜ୍ୟ ଆର୍ତ୍ତବଲ୍ଲଭ ମହାନ୍ତି, ନିରଞ୍ଜନ ନିୟୋଗୀ, କେ.ପି. ସିହ୍ନା, ବାବା କର୍ତ୍ତାର ସିଂ, ନିର୍ମଳ ଚନ୍ଦ୍ର ବାନାର୍ଜୀ, ଲକ୍ଷ୍ମୀକାନ୍ତ, ନାରାୟଣ ମିଶ୍ର, ଘନଶ୍ୟାମ ଦାସ ଏମିତି କେତେ... ଦେଖୁଛ ?

'ବାବା, କି ଗମ୍ଭୀର, କି ବ୍ୟକ୍ତି ପୁରୁଷ ଏମାନେ, ଭୟ ଲାଗୁଛି – ଯୁବକ ଶିହରି ଉଠିଲେ –'

'ନା – ଭୟର କଥା କିଛି ନାହିଁ। ଯାଙ୍କ ଆଗରେ ମଥା ନଇଁଯାଏ, କାରଣ ଏମାନେ ଜ୍ଞାନଗର୍ଭ ଥିଲେ, ଛାତ୍ରବତ୍ସଳ ଥିଲେ, ଗମ୍ଭୀର ଥିଲେ, କୌଣସି ପ୍ରକାର ନୀଚତା ଏମାନଙ୍କୁ ସ୍ପର୍ଶ କରୁ ନଥିଲା। ଗୁରୁର ଯାହା ସତ୍ୟ, ଜ୍ଞାନ ତାହା ରହିଥିଲା ଏମାନଙ୍କ ପାଖରେ। ତେଣୁ ଏମାନଙ୍କ ଅଧ୍ୟାପନା ଶ୍ରେଣୀ ବଡ଼ ଆକର୍ଷଣୀୟ ହୋଇଯାଏ। ମୃତ ବୈଜ୍ଞାନିକ, ଦାର୍ଶନିକ, କବି, ନାଟ୍ୟକାର, ସମସ୍ତେ ସମାଧିରୁ ଫେରି ଆସି ଜୀବନ୍ତ ହୋଇଯାନ୍ତି ଏମାନଙ୍କ ଅଧ୍ୟାପନା ଚାତୁରୀରେ –

ଯୁବକ ହସିଲେ – କହିଲେ ଦୁଃଖ ଲାଗୁଚି କହିବାକୁ, ହେ ଯୁଗ ପୁରୁଷ, ଆଜି ଏମାନେ ଅଚଳ। ଆଚ୍ଛା, ପୂର୍ବର ଏହି ଗୁରୁମାନେ କେଉଁ କେଉଁ

ହୋଟେଲରେ ଖାଉଥିଲେ, କେଉଁ ସିନେମା ଦେଖୁଥିଲେ ?

ହୋଟେଲ ? ସିନେମା ? ଛି, ଛି, କେଉଁ ଦୁଃଖରେ ସେମାନେ ହୋଟେଲକୁ ଯିବେ ?

ଯୁବକ କହିଲେ – ପିଲାମାନଙ୍କୁ ମାନେ ଛାତ୍ରମାନଙ୍କୁ ସାଙ୍ଗରେ ଧରି ସିନେମା ନ ଦେଖିଲେ, କି ହୋଟେଲରେ ନ ଖୁଆଇଲେ କ୍ଲାସରେ ଡିସିପ୍ଲିନ ରହିବ କେମିତି ? ପାଣ୍ଡିତ୍ୟ ଘରେ ତ ଶୂନ୍ୟ, ଅବଶ୍ୟ ସମସ୍ତେ ନୁହନ୍ତି ଯେ, ଅଧିକାଂଶ, ତେଣୁ କୌଣସିମତେ ନିରୂପଦ୍ରବ ଜୀବିକାର୍ଜନ ପାଇଁ ଛାତ୍ରମାନଙ୍କୁ ବଶ କରିବାକୁ ହେବ।

– ବାବା, ତମ କଥା ବେଶ୍ ଭଲ ଲାଗୁଛି, ଏବେ କଅଣ ଏଇଆ ସବୁ ଚାଲିଛି ?

ହଁ, ଶୁଣନ୍ତୁ, ବଶ କରିବାକୁ ପଡ଼େ, ନାନା ଉପାୟ ଅଛି, ଅବଶ୍ୟ ସେମାନଙ୍କୁ ଦୋଷ ଦେଇ ହେବନି। ସମାଜର ଆବର୍ତ୍ତଟା ସେଇଆ ହୋଇଯାଇଛି। ଶିକ୍ଷାଦାନ ଜୀବିକା ହୋଇଯାଇଛି। ତେଣୁ ତଦୁର୍ଦ୍ଧ୍ୱ ଆଉ କିଛି ନାହିଁ। ଅନୁରୋଧ କଲେ ସେମାନେ ପାଶ୍ କରାଇ ଦିଅନ୍ତି।

ସତେ ?

ହଁ, ଏଇଟାତ ମାନବିକ ବୋଧ।

– ନିଶ୍ଚୟ, ନିଶ୍ଚୟ।

– ପୁଣି ନିଜ ପ୍ରିୟ ଛାତ୍ରପାଇଁ ଅନ୍ୟ ପରୀକ୍ଷକଙ୍କୁ କହିପାରନ୍ତି।

'ଏଇଟା କଅଣ ମୈତ୍ରୀ ?'

'ନିଶ୍ଚୟ, ନିଶ୍ଚୟ'

– ଆଉ ଯଦି ଶିକ୍ଷକଙ୍କ ରାଜନୀତି ଦଳ ସହିତ ଛାତ୍ର ପଟୁଆରରେ ଯାଉଥାଏ, ତେବେ ତ ହୋଇଗଲା, ଚିନ୍ତା ନାହିଁ।

ସତେ ? ବଡ଼ ଅଦ୍ଭୁତ ଲାଗୁଛି, ଶିକ୍ଷକମାନେ ରାଜନୀତି କରନ୍ତି ? କରିବେ ନି ? ମଣିଷ ଜୀବନ ସହିତ ରାଜନୀତି ଅଙ୍ଗାଙ୍ଗୀ ଜଡ଼ିତ, ଦୋଷ ତ ନାହିଁ ?

ଯୁଗ ପୁରୁଷ ଦୀର୍ଘଶ୍ୱାସ ପକାଇ କହିଲେ – ହୁଏତ ଦୋଷ ନାହିଁ।

'ଧା' ତିନ୍ ତିନ୍ ଧା, ତେରେକେଟେ ତାକ୍, ତାକ୍।'

– ଏ କଅଣ ଆଜ୍ଞା ? ଯୁଗ ପୁରୁଷ କହିଲେ – ନାଚ। ପିଲାମାନେ ନାଚୁଛନ୍ତି। ନାଟକ ହେବ, ପ୍ରସ୍ତୁତି ଚାଲିଛି। ଆର୍ତ୍ତବଲ୍ଲଭ ବସିଛନ୍ତି, ନାରାୟଣ ମିଶ୍ର ଆନନ୍ଦରେ ଗଦ୍ ଗଦ୍, ଘନଶ୍ୟାମ ବିହ୍ୱଳ, ଲକ୍ଷ୍ମୀକାନ୍ତ ଚୌଧୁରୀ ଦିଗ୍‌ଦର୍ଶନ ଦେଉଛନ୍ତି। ନାଟକ କିନ୍ତୁ ଐତହାସିକ ଆଉ ପୌରାଣିକ। ବଡ଼ ଧୂମ୍‌ଧାମ୍ –

– କିନ୍ତୁ ପୁଅଗୁଡ଼ାକ ନାଚୁଛନ୍ତି ଯେ ?

ଆଉ କିଏ ନାଚନ୍ତେ ?

– ଝିଅ

– ଝିଅ କାହାନ୍ତି ?

– ମେଳା ମେଳା, ରାସ୍ତାରେ ବାଡ଼େଇ ହୋଇ ଯାଉଛନ୍ତି।

– ସେତେବେଳେ ଏମିତି ନଥିଲା, ଗୋଟିଏ କି ଦୁଇଟି ସୁରକ୍ଷିତ ଜିହ୍ୱା ଭିତରେ ଆବଦ୍ଧ ବନ୍ଦିନୀ। ତେଣୁ ପୁଅମାନେ ନାଚୁଥିଲେ। ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ।

–ଏଁ, ଛିଃ ଛିଃ, ଯୁବକ ନାକ ଟେକିଲେ।

– ଶୁଣ ବାବା, ଖୋଲି ଦେଉଛି ଯୁଗ ତୋରଣ, ଦେଖ ଆଲମଗିରିର ଅଭିନୟ, ଦେଖ ଦେବାସୁର ସଂଗ୍ରାମ, କେତେ କଅଣ, କଅଣ ଦେଖୁଛ ?

– ଯୁବକ କହିଲେ – ଦେଖୁଛି, ରାଜକିଶୋର ରାୟ, ଦୀନବନ୍ଧୁ ସାହୁ, ବିବୁଧେନ୍ଦୁ ମିଶ୍ର, ଅସୀତ୍ ଦାସ

ପ୍ରଭୃତି ନାରୀ ଭୂମିକାରେ କିନ୍ତୁ କ୍ଷମା କରିବେ, ଏମାନେ ବାସ୍ତବରେ ପୁଅ ନା ଝିଅ।

ଯୁଗ ପୁରୁଷ ହସିଲେ। କହିଲେ – ଏମାନେ ପୁଅ, ଏବେ ପ୍ରୌଢ଼; କିନ୍ତୁ କି ଚମତ୍କାର ଅଭିନୟ କରୁଛନ୍ତି, ଏମାନେ।

ବାସ୍ତବିକ୍ ଅଦ୍ଭୁତ। ଏବେ କିନ୍ତୁ ଝିଅମାନେ ଅଭିନୟ କରୁଛନ୍ତି। ସେଥିପାଇଁ ମହାଭିଡ଼। ବାପା ମାଆ ଆଗେଇ ଦେଉଛନ୍ତି ସେମାନଙ୍କୁ, ବିଭା–ବଜାର ତ ପୁଣି ଗୋଟାଏ ଅଛି ? ଏ କଅଣ ? ଏମିତି ରୁଷି ବସିଛନ୍ତି କାହିଁକି ? ଆଗରେ ଖାଲି ଥାଳି ଗିନା, ଖାଇବାକୁ ବସିଛନ୍ତି ବୋଧହୁଏ।

ଯୁଗ ପୁରୁଷ ଉତ୍ତର ଦେଲେ – ଠିକ୍ କହିଛ ଯୁବକ, ସେମାନେ ରୁଷି ବସିଛନ୍ତି। କାରଣ ରାନ୍ଧୁଣୀ ଭୁଲରେ ଅରୁଆ ଭାତ ଯାଗାରେ ଉଷୁନା ରାନ୍ଧି ଦେଇଛନ୍ତି। ଏମାନେ ସମ୍ବଲପୁର ଆଡ଼ ପଶ୍ଚିମ ଓଡ଼ିଶାର ଛାତ୍ର। ଅରୁଆ ଖାଇବାରେ ଅଭ୍ୟସ୍ତ। ତେଣୁ କ୍ଷୋଭ ପ୍ରକାଶ କରୁଛନ୍ତି।

ଯୁବକ ହଠାତ୍ ଧ୍ୱନି ଦେଲେ –

– ତାହାହେଲେ ଉଷୁନା ଭାତ ମୁର୍ଦାବାଦ, ଅରୁଆ ଭାତ ଜିନ୍ଦାବାଦ, ସମ୍ବଲପୁର, ହୁଅ ଏକଯୁଟ୍, ପଶ୍ଚିମ ଓଡ଼ିଶା ବିଚ୍ଛିନ୍ନ ହେଉ, ପଶ୍ଚିମ ଓଡ଼ିଶା ବିଚ୍ଛିନ୍ନ ହେଉ। ଆମେ ଚାହୁଁ, ଅରୁଆ ଭାତ, ଇନ୍‌କିଲାବ ଜିନ୍ଦାବାଦ।

– ଆରେ, ଆରେ ଏ କଅଣ ?

–କ୍ଷମା କରିବେ ଏଇଟା ଅଭ୍ୟାସ ହୋଇଯାଇଛି, ଟିକିଏ ବିପ୍ଳବର ସୁରାକ୍ ପାଇଲେ ସ୍ଲୋଗାନ୍ ଦେଇ ଆମେ ଏମିତି ଗର୍ଜିଉଠୁ।

ଏମାନେ ଧର୍ମଘଟ କଲେନି; ବସ୍, ଟ୍ରାମ୍ ପୋଡ଼ିଲେନି ?

– ଶୁଣ ବାବୁ। ଅଧୀର ହୁଅନି, ଧର୍ମଘଟ ବୋଲି ସେମାନେ କିଛି ଜାଣି ନଥିଲେ; କେବଳ ରଷି ବସିଲେ। ଅରୁଆ ଭାତ ରନ୍ଧା ହେଲା; ସେମାନେ ଆନନ୍ଦରେ ଖାଇଲେ। ସେତେବେଳେ କଟକ ସହର ଅରଣ୍ୟମୟ, ବସ୍ କାହିଁ ? କେତୁଟା ଘୋଡ଼ାଗାଡ଼ି, ଅବଶ୍ୟ ମହାତ୍ମା ଗାନ୍ଧୀଙ୍କ ଡାକରେ ୧୯୪୨ ଅଗଷ୍ଟ ଆନ୍ଦୋଳନ। ଡକ୍ଟର ପରିଜା, ପ୍ରିନ୍‌ସପାଲ, ପାର୍କିନ୍ ସାହେବ ଆଇ.ଜି. ପୁଲିସ, ରେଭେନସା କଲେଜ ଅଫିସରେ ନିଆଁ, ପାର୍କିନ ସାହେବ ମିଲିଟାରୀ ପୁଲିସ ଧରି କମ୍ପାଉଣ୍ଡରେ ଛିଡ଼ା ହୋଇଛନ୍ତି ଶ୍ରୀ ପରିଜାଙ୍କ ଇସାରା ଅପେକ୍ଷାରେ; ଗୁଳି ଚାଲିବ ଯଦି ପରିଜା ସାହେବ....।

ପରିଜା ପାଗଳ ଭଳି ଚିତ୍କାର କରୁଛନ୍ତି – ନୋ, ପାର୍କିନ, ନୋ। ସମସ୍ତ କଲେଜ ଜଳିଯାଉ ପଛକେ ନୋ ଫାୟାରିଙ୍ଗ....

ସ୍ୱର୍ଗୀୟ କରୁଣାକର କରଙ୍କ ବେକରେ ଫୁଲମାଳ। ଚାକିରୀ ଛାଡନ୍ତୁ। ନାରାୟଣ ମିଶ୍ର ନସର ପସର ଦଉଡୁଛନ୍ତି ଲାବୋରେଟରୀ ଆଡ଼େ– ଆରେ ଚଣ୍ଡାଳ, ସବୁ ପୋଡ଼ରେ କିନ୍ତୁ ଲାବୋରେଟରୀକୁ ରକ୍ଷାକର... ଆ ବାବୁ ଦାରୁଭୂତେ ବୈଷ୍ଣବ ମୂର୍ତ୍ତି। ସମାନ୍ତରାଳ ଶାସନ ଚାଲିଛି ଇଷ୍ଟ ଓ ଓଏଷ୍ଟ ଛାତ୍ରାବାସରେ... ଏଇ ବିକ୍ଷୋଭ, ମହାଭାରତୀୟ ବିକ୍ଷୋଭ କିନ୍ତୁ ଛୋଟ ଛୋଟ କଥାରେ ସେତେବେଳେ ଯୁବଶକ୍ତି ଅପଚିତ ହେଉ ନଥିଲା।

ଯୁବକ ହଠାତ୍ ଦେଖିଲେ ଗୋଟିଏ ଦୃଶ୍ୟ। ଶୁଣ ମ, କବିତା ଲେଖିଛି ତୁମକୁ ଉତ୍ସର୍ଗ କରିବି। ତରୁଣ କବି ଏ କଥା କହିଲେ ଛାତ୍ରୀ ତରୁଣୀକୁ।

– କର।

– ତୁମେ ହସ,

– ହସୁଛି ତ ? ଦେଖ ଆର୍ତ୍ତବାବୁ ସେବାଟେ ଆସୁଛନ୍ତି, ଦେଖିବେ।

– ସେ ଜାଣନ୍ତି। କେବେ ଟିକିଏ କଥାବାର୍ତ୍ତା।

– ଶେଷ ପିରିଅଡ଼ରେ। ସୁପ୍ରୀତି ସେତେବେଳେ ନ ଥିବେ।

– ଯୁଗପୁରୁଷ ହସିଲେ – କଅଣ ଦେଖିଲ ?

ପ୍ରଣୟ।

ଠିକ୍, କିନ୍ତୁ ଏ ପ୍ରଣୟ ସେତେବେଳେ ଛାତ୍ରକୁ କରୁଥିଲା– କବି, କାବ୍ୟକାର, ଉଚ୍ଚକାଙ୍‌କ୍ଷୀ। ମୋଟେ ଦୁଇଜଣ ୧୯୩୩ରେ, ଆଜି କେତେ ?

– ଅସଂଖ୍ୟ ଆଜ୍ଞା।

– ପ୍ରଣୟ ?

– ଖୁବ୍ ଶସ୍ତା

– ଦୁର୍ଘଟଣା

– ଅନେକ

– ଯାକୁ କହୁଛ ପ୍ରଗତି ?

– ନିଶ୍ଚୟ, ନିଶ୍ଚୟ, କାରଣ ନଗ୍ନତା ହିଁ ପ୍ରଗତି, ଯେତିକି ପ୍ରେମ ନଗ୍ନ ହେବ, ସେତିକି ଆମେ ବିଶ୍ୱ ସହିତ ପାଦ ମିଳାଇ ଚାଲିବୁ।

ଯୁଗପୁରୁଷ ଗମ୍ଭୀର ଭାବରେ କହିଲେ – ଶୁଣ ବନ୍ଧୁ, ରେଭେନ୍‌ସା କଲେଜ ଇତିହାସରେ ସେତେବେଳେ ଦୁଇ ତିନୋଟି ପ୍ରଣୟ ଉଚ୍ଛ୍ୱାସ ଆଜି ଐତିହାସିକ ହୋଇ ରହି ଯାଇଛି। ନାରୀ କେବଳ ତରୁଣଙ୍କୁ କରିଛି ତାର ସୁଖ ପାଇବ ଦାନରେ କବି, ମୂଳରେ ସେଇ ଅଚିନ୍ତ୍ୟ ଅନନ୍ତ ରସ ଥିଲା। ଆବରଣଯୁକ୍ତ ସଂସ୍କାର ପିହିତ ସେଇ ପ୍ରାଣ ବିନିମୟରେ ଉଚ୍ଚ ସୃଜନୀ ଶକ୍ତିର ଉଦ୍ଭବ ଘଟିଥିଲା।

– କୁହନ୍ତୁ କେହି ଈର୍ଷାତୁର ହେଉ ନ ଥିଲେ ?

– ହେଉଥିଲେ, ମାତ୍ର ତାହା ଶାନ୍ତ ଈର୍ଷା, ସେଥିରେ କ୍ଷୟ କରିବାର କିଛି ନ ଥିଲା।

– ଏ କଅଣ ?

– କୁକୁର।

– ବାଃ, ଚମତ୍କାର ଲୋମଶ ପ୍ରାଣୀ।

– ହଁ, ପ୍ରିନସପାଲ ଡବଲଭି ଭି.ଡ଼ି.ଉକ୍‌ଙ୍କର।

ଏ ଦୃଶ୍ୟ ଦେଖାଇବାର ଅଭିପ୍ରାୟ ?

– ପ୍ରିନ୍‌ସପାଲ କ୍ଷମା ମାଗିଥିଲେ।

– କଥାଟା କୁହନ୍ତୁ ନା ?

– ଶୁଣ, ସାହେବ ପ୍ରିନ୍‌ସପାଲ ସାଧାରଣ ଜ୍ଞାନ ପଢ଼ାନ୍ତି। ପୁରୁଷ ସିଂହ ସେ ଥିଲେ। ଥରେ ତାଙ୍କ ପୋଷା କୁକୁର ପଶି ଆସିଲା କ୍ଲାସକୁ। ପିଲାଏ ନାକ ବନ୍ଦକଲେ କୁକୁର ମଦ ପିଇଥିଲା, ତାର ସ୍ୱାସ୍ଥ୍ୟ ପାଇଁ। ପ୍ରିନ୍‌ସପାଲ ଜାଣିଲେ – କହିଲେ ଗୋ, ଗୋ, ତୋର ଆସିବାର ଯାଗା ଏହା ନୁହେଁ। ତୁ ଡ୍ରିଙ୍କ୍ କରିଛୁ ତୋର ସ୍ୱାସ୍ଥ୍ୟ ପାଇଁ। ପିଲାମାନେ, ମତେ କ୍ଷମା କରିବ, ତମକୁ ଅସୁବିଧାରେ ପକାଇଲି।

ଯୁବକ କହିଲେ – ଖୁବ୍ ଉଦାର ତ ?

ଯୁଗ ପୁରୁଷ କହିଲେ – ସେତେବେଳେ ଚଳଣୀ ତାହା ହିଁ ଥିଲା, ସେ ଥିଲା ସ୍ୱର୍ଣ୍ଣଯୁଗ। ମାନବ ପ୍ରାଣରେ ସତ୍ୟ ଶିବ ସୁନ୍ଦରର ଆରାଧନାର ଘଣ୍ଟ ପ୍ରତିଧ୍ୱନିତ ହେଉଥିଲା। ହେବନି ? ଜାତିର ଜନକଙ୍କ ନେତୃତ୍ୱରେ ସଂଗ୍ରାମ ଚାଲିଥିଲା ଏ ଦେଶକୁ ବିଦେଶୀ ବନ୍ଧନରୁ ମୁକ୍ତ କରିବା ପାଇଁ। ମୁକ୍ତ ହେଲା ଦେଶ। ଏବେ କଅଣ ଘଟୁଛି ?

ଯୁଗ ପୁରୁଷ ଦେଖିଲେ.... ଯୁବକ ନାହାନ୍ତି। ଶତବର୍ଷର ଉଚ୍ଛ୍ୱାସମୟ ସଂସ୍କାର ଓ ଅତୀତ ସମୃଦ୍ଧି ଭିତରେ ସେ ଆତ୍ମଗୋପନ କରିଦେଲେ। ମହାକାଳର ଚକ୍ର ବିଘୂର୍ଣ୍ଣିତ, କିଏ କହିବ କେଉଁ ସମୟ, କେଉଁ ମୂଲ୍ୟବୋଧ, କେଉଁ ଜୀବନ, କେଉଁ କୀର୍ତ୍ତି ସତ୍ୟ ଓ ଋତୁ।

■■■




କଳିଙ୍ଗ-ଶିଳ୍ପୀ • ବିଶ୍ୱ ଦେବତା

ବଳଦ ବରଗଛ ଓ ବିନୋଦିନୀ

ନବତାରକା • ରକ୍ତଜବା ହିମାଦ୍ରି

# ନିଜକଥା

ପାଞ୍ଚଗୋଟି ଏକାଙ୍କ ନାଟକକୁ ପଲ୍ଲବିତ କରି ଏକ ପତ୍ର ସ୍ତବକରେ ବାନ୍ଧିଦେବା ମୋର କଳ୍ପନାତୀତ ଥିଲା। ଆଲୋକ ସାହିତ୍ୟ ପ୍ରତିଷ୍ଠାନର ଉଦ୍ୟମୀ ଯୁବକ ପ୍ରକାଶକ ଶ୍ରୀ ସତ୍ୟସୁନ୍ଦର ମିଶ୍ର ସେହି କଳ୍ପନାକୁ ବାସ୍ତବ ରୂପ ଦେଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଜଣାଉଛି।

ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ପାଥେରପୁରୀ ଛାତ୍ରାବାସର ଛାତ୍ର ଓ ଅଧ୍ୟକ୍ଷମାନେ ସେମାନଙ୍କର ବର୍ଷପୂର୍ତ୍ତି ଉତ୍ସବ ପାଳନ କରିବା ବେଳରେ ମତେ ହଇରାଣ କରିଥାନ୍ତି। ଏ ହଇରାଣ ଆଉ କିଛି ନୁହେଁ; ମଞ୍ଚସ୍ଥ କରିବାପାଇଁ ଗୋଟିଏ ନାଟକର ପ୍ରୟୋଜନ।

ଏହି ପ୍ରୟୋଜନ ଓ ସେମାନଙ୍କର ସ୍ନେହାନୁବନ୍ଧନରୁ ଜନ୍ମ ନେଇଛି 'ପଞ୍ଚପଲ୍ଲବ'ରୁ ତିନିଗୋଟି ଏକାଙ୍କ ନାଟକ। କଳିଙ୍ଗଶିଳ୍ପୀ–୧୯୬୦, ବିଶ୍ୱଦେବତା–୧୯୬୧ ଏବଂ ବଳଦ ବରଗଛ ଓ ବିନୋଦିନୀ ୧୯୬୨। ଯେଉଁମାନେ ଏଗୁଡ଼ିକର ସାର୍ଥକ ରୂପାୟନ ପାଇଁ ଯତ୍ନ କରିଥିଲେ ସେମାନଙ୍କୁ ମୁଁ ଏହି ଅବସରରେ ଧନ୍ୟବାଦ ଜଣାଉଛି। ବିଶେଷରେ ଅଧ୍ୟାପକ ରାମଚନ୍ଦ୍ର ମହାନ୍ତି ଓ ଶଚୀନ୍ଦ୍ରଚନ୍ଦ୍ର ଦାସଙ୍କର ସହଯୋଗ ସ୍ମରଣୀୟ ରହିବ।

ନବତାରକାର ସୃଷ୍ଟି ହୋଇଛି ୧୯୪୮ରେ। ଶୈଳବାଳା ମହିଳା ଅନୁଷ୍ଠାନରେ ସେତେବେଳେ ଅଧ୍ୟକ୍ଷା ଶ୍ରୀଯୁକ୍ତା ଆଇ.ଏଲ. ସିହ୍ନା ନାରୀମାନଙ୍କର ମହତ୍ତ୍ୱ ଓ ଦେଶାତ୍ମବୋଧକୁ ସଂଜୀବିତ କରି ଗୋଟିଏ ନାଟକ ଲେଖିବା ପାଇଁ ମତେ ଅନୁରୋଧ କରିଥିଲେ। ସେହି ଅନୁରୋଧର ଫଳ ସ୍ୱରୂପ 'ନବତାରକା' ପ୍ରଥମରେ କଟକର ନାରୀ ସେବାସଂଘ ସଦନରେ କଲେଜର ଛାତ୍ରୀମାନଙ୍କଦ୍ୱାରା ସାର୍ଥକ ଭାବରେ ଅଭିନୀତ ହୋଇଥିଲା। ତା'ପରେ ଏହା ବହୁ ଶିକ୍ଷାନୁଷ୍ଠାନରେ ଅଭିନୀତ ହୋଇ ଆସିଛି।

ମୋ ଜାଣିବାରେ ଯେଉଁମାନେ 'ନବତାରକା'କୁ ନିର୍ଦ୍ଦେଶ ଦେଇଥିଲେ ସେମାନେ ହେଉଛନ୍ତି– ଶ୍ରୀ ବିମଳଚନ୍ଦ୍ର ଘୋଷ (ମହିଳା କଲେଜ ଅଭିନୟ): ପ୍ରଖ୍ୟାତ ନାଟ୍ୟଶିଳ୍ପୀ ସ୍ୱର୍ଗୀୟ ଶ୍ରୀ ରାମଚନ୍ଦ୍ର ଦାଶ (ପୁରୀ ନାରୀ ସେବା ସଂଘର ଅଭିନୟ–ତା୧୫-୧୦-୧୯୫୦) ଓ ବାଲେଶ୍ୱରର ସୁରଶିଳ୍ପୀ ଶ୍ରୀ ସୁକୁମାର ସାହୁ (ଫକୀର ମୋହନ କଲେଜ ଛାତ୍ରୀ ନାଟ୍ୟ ସଂସଦର ଅଭିନୟ– ୮-୨-୧୯୫୯) ସେମାନଙ୍କର ନାମ ମୁଁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି।

"ପଞ୍ଚପଲ୍ଲବ"ର ପଞ୍ଚମ ପଲ୍ଲବଟି ସାଂପ୍ରତିକ ଭାରତ-ଚୀନ ସଂଘର୍ଷ ଭିତ୍ତିକ ଏକ ନାଟ୍ୟ ରଚନା। ଏହା ଏପର୍ଯ୍ୟନ୍ତ ମଞ୍ଚସ୍ଥ ହୋଇନାହିଁ। ମାତ୍ର ମୋର ବିଶ୍ୱାସ, ଏହା ମଞ୍ଚସାଫଲ୍ୟ ଲାଭ କରିବାରେ ଏବଂ ଦେଶପ୍ରେମୀ ଦର୍ଶକମାନଙ୍କର ଚିତ୍ତାକର୍ଷକ ହୋଇପାରିବ।

ସର୍ବଶେଷରେ ମୁଁ ପୁରୀ କଲେଜର ଅଧ୍ୟକ୍ଷ ଡକ୍ଟର ଶ୍ରୀ ଦାମୋଦର ମିଶ୍ରଙ୍କୁ ଆନ୍ତରିକ କୃତଜ୍ଞତା ଅର୍ପଣ କରୁଛି। ସେ ମତେ ନାଟକ ରଚନା କରିବା ଦିଗରେ ଓ ସେଗୁଡ଼ିକର ମଞ୍ଚସାଫଲ୍ୟ ପରେ ଅକୁଣ୍ଠ ପ୍ରଶଂସା କରି ଉତ୍ସାହିତ କରିଛନ୍ତି। ଏ ବିଷୟରେ ତାଙ୍କର ଉଦ୍‌ବୋଧନ ମୋର ସ୍ମରଣୀୟ ରହିବ।

ପୁରୀ

ତା୨୧।୧୨।୬୨ — ରାଜକିଶୋର ରାୟ

# କଳିଙ୍ଗ ଶିଳ୍ପୀ

## ପ୍ରଥମ ଦୃଶ୍ୟ

[ ଉଦ୍ୟାନ–କଳିଙ୍ଗସମ୍ରାଟ୍ ବସୁଭୂମା ବୟସ୍ୟଙ୍କ ସହିତ ଉଦ୍ୟାନଗୃହରେ ପଦଚାରଣ କରୁଥିଲେ ]

ବସୁ– ବୟସ୍ୟ! ଦେଖ, ଭୁବନେ ଭୁବନେ କିପରି ବସନ୍ତଶ୍ରୀ ବିଳାସ କରୁଅଛି। ଚୂତମଞ୍ଜରୀ ପତ୍ର–ଶାଖାରେ ମୁକୁଳିତ। ଅଳିକୁଳ ଉଦ୍‌ଭ୍ରାନ୍ତ। ଦେଖ, ପୁଣି ଆକାଶର ତୀରେ ତୀରେ ମନୋହର ବାସନ୍ତିକାର ଉଜ୍ଜ୍ୱଳ ଆଭା। ମନେହୁଏ, ସମସ୍ତ ପୃଥିବୀ ଆନନ୍ଦ ଉଲ୍ଲାସରେ ପରିପୂର୍ଣ୍ଣ। କଳିଙ୍ଗର ଶ୍ରୀକ୍ଷେତ୍ର, କୋଣାର୍କ, ଭୁବନେଶ୍ୱରର ଦେବମନ୍ଦିର ଉପରେ ଯେଉଁ ରକ୍ତଧ୍ୱଜା ପବନର ଛନ୍ଦେ ଛନ୍ଦେ ଆନ୍ଦୋଳିତ, ତାହା ଦେଖ, କି ଅପୂର୍ବ ଭଙ୍ଗୀରେ ନୃତ୍ୟ କରୁଛି। ଆସ ବୟସ୍ୟ ଆସ, ଆଜି କାହିଁକି ମନରେ ଶିହରଣ ଖେଳିଯାଉଛି। ଆସ ଏଇ ଉଦ୍ୟାନ ବାଟିକାରେ ପ୍ରତ୍ୟେକଟି ବୃକ୍ଷ ଓ କୁସୁମିତ ପୁଷ୍ପକୁ ସ୍ୱାଗତ କରିବା। (ପଦଚାରଣା)

ବୟସ୍ୟ– ସମ୍ରାଟ୍, ଏ ଦୀନ ବ୍ରାହ୍ମଣ ବସନ୍ତରସରୁ କ'ଣ ପାଇବ। ଅନ୍ନରସ ବିନା ପେଟ ଘୁ'ଘୁ ଡାକିଲାଣି। ବ୍ରାହ୍ମଣୀ ଚୂଲିରେ ହାଣ୍ଡି ବସାଉଥିଲା– ଏତିକିବେଳେ ରାଜ–ଆଦେଶ ମିଳିଗଲା, ଏଣିକି ଟାଣିହୋଇ ଆସିଲି। ବିଚାର କରନ୍ତୁ ମହାରାଜ, ଏ ବ୍ରାହ୍ମଣ ଆଉ 'ପାଦମେକମ୍ ନ ଗଚ୍ଛତି'। (ବସିପଡ଼ିବା)

ବସୁ– ଉତ୍କଳର ଜଣେ ବ୍ରାହ୍ମଣ ସମ୍ରାଟ ବସୁଭୂମାଙ୍କ ସହିତ ପାଦ ମିଳାଇ ଚାଲୁଛନ୍ତି ଅଥଚ ପେଟରେ କିଛି ନାହିଁ– ଏ ଅପବାଦ ମୁଁ ପ୍ରକୃତିରଞ୍ଜକ ସମ୍ରାଟ ହୋଇ କିପରି ସହ୍ୟ କରିବି ବୟସ୍ୟ? ଆସ, ଏଇ ଉଦ୍ୟାନ ଗୃହରେ ସୂପକାର ଅନେକ ଭୋଜ୍ୟ ପଦାର୍ଥ ପ୍ରସ୍ତୁତ କରୁଛି। ଅବିଳମ୍ବେ ରସନାତୃପ୍ତି ସହିତ ଉଦର ପୂର୍ଣ୍ଣ ହେବ।

ବୟସ୍ୟ– (ଉଠି) ଆଃ କି ସମ୍ବାଦ ଦେଲେ ସମ୍ରାଟ! ଭଗବାନ ଆପଣଙ୍କୁ ଦୀର୍ଘାୟୁ କରନ୍ତୁ। ଶତ ସମ୍ବତ୍ସର ଦୀର୍ଘାୟୁ କରନ୍ତୁ ଧନ ଜନ ଗୋପ ଲକ୍ଷ୍ମୀ...

ବସୁ– ଲକ୍ଷ୍ମୀ...? (ହସିଲେ)

ବୟସ୍ୟ– ହସିବେ ତ।– ଦେଖିବେ ସେ ଆସିବେ, ଆସୁଛନ୍ତି କେତେଦିନ ଦୂବ, ବରକୋଳି ପତ୍ରକୁ ଆଡ଼େଇ ଦେଇ ବାବନଭୂତିଆ ହୋଇ ରହିଥିବେ? ସାମ୍ରାଜ୍ଞୀ ଥିଲେ ସିନା ଏ ବ୍ରାହ୍ମଣର ଉଦର–ଚର୍ମକନ୍ଦୁକ ପରିସ୍ଫୀତ ହୁଅନ୍ତା। ନାନା ଭୋଜ୍ୟରସରେ ପ୍ରାଣମନ ପରିତୃପ୍ତ ହୁଅନ୍ତା–ହେ ନିଳାଦ୍ରୀ ବିହାରୀ! ସତେ ସେ ସୁଦିନ କେବେ ଆସିବ–ସତେ ଲକ୍ଷ୍ମୀ ସ୍ୱରୂପିଣୀ...

(ଦୁର୍ଗରକ୍ଷକର ପ୍ରବେଶ)

ବସୁ–କିଏ ?

ଦୁର୍ଗ–ମଣିମା, (ଅଭିବାଦନ କରି) ଜଣେ ନାରୀ ଛାମୁଙ୍କର ଦର୍ଶନ ପ୍ରାର୍ଥିନୀ। ଦ୍ୱାରଦେଶରେ ସେ ଅପେକ୍ଷା କରିଛନ୍ତି।

ବସୁ– ନାରୀ ! ଜଣେ ନାରୀ ମୋର ଦର୍ଶନପ୍ରାର୍ଥିନୀ ?

ବୟସ୍ୟ– ହଠାତ୍ ଲକ୍ଷ୍ମୀ ଆବିର୍ଭାବ !

ବସୁ– ପରିହାସ କର ନାହିଁ ବୟସ୍ୟ। (ଦୁର୍ଗରକ୍ଷକକୁ ଚାହିଁ) ଭିତରକୁ ଘେନିଆସ।

ଦୁର୍ଗ– ଉଦ୍ୟାନଗୃହକୁ ନା ଦରବାରକକ୍ଷକୁ ?

ବସୁ– ନା, ନା, ଏଇଠାକୁ। (ଦୁର୍ଗରକ୍ଷକର ପ୍ରସ୍ଥାନ– ବୟସ୍ୟଙ୍କୁ) ଜାଣ ବୟସ୍ୟ, ଜୀବନରେ ନାରୀ ପ୍ରତି ଅନୁରକ୍ତି ମୋର ବିସ୍ୱାଦର ବିଷୟ। ମୁଁ ଜାଣିଶୁଣି ତା'ର ଦୃଷ୍ଟିରେଖା ଭିତରକୁ ଯିବାପାଇଁ ଶଙ୍କା କରେ। ବୟସ୍ୟ, ଏ ମୋ'ର ପ୍ରକୃତିଗତ ଭୀରୁତା ନୁହେଁ; ଦୁର୍ଦ୍ଦମ ଅଭିଳାଷ...

(ବିନ୍ଧ୍ୟାର ପ୍ରବେଶ)

ବିନ୍ଧ୍ୟା– ଭାରତର ଗୌରବ– କଳିଙ୍ଗ–ସମ୍ରାଟ ବସୁଭୂମାଙ୍କର ସେ ଅଭିଳାଷକୁ ମୁଁ ସସମ୍ଭ୍ରମେ ଅଭିବାଦନ ଜଣାଉଛି। ସମ୍ରାଟ ବସୁଭୂମାଙ୍କର ଜୟ ହେଉ। (ପ୍ରଣତ ହେବା)

ବୟସ୍ୟ– ବାବାରେ, କି ସିଂହବାହିନୀ ମୂର୍ତ୍ତି ! (ଆଖି ବୁଜିଦେବା)

ବସୁ– (କାନପାଖରେ) ବୟସ୍ୟ ମନେ ହେଉଚି ଏ ନାରୀ ଦୌତ୍ୟ ବ୍ୟାଜରେ ଆସିଚି। ତୁମେ ଉପଜନପ୍ରାନ୍ତ ଅତିଥିଶାଳାରେ କିଛି ସମୟ ଅପେକ୍ଷା କର। ଏ ରାଜକାର୍ଯ୍ୟ, ମୁଁ ଏକାକୀ ରହିବାକୁ ଚାହେଁ।

ବୟସ୍ୟ– (ଯାଉ ଯାଉ) ସୂପକାରର ବ୍ୟବସ୍ଥାଟା ମାଟି ହୋଇଗଲା ସିନା–

(ପ୍ରସ୍ଥାନ)

ବସୁ– ନାରୀ, (ଅପଲକ ନେତ୍ରରେ ଚାହିଁ) କିଏ ତୁମେ ?

ବିନ୍ଧ୍ୟା– ମୁଁ ସାମାନ୍ୟ ନାରୀ ମାତ୍ର, କଳିଙ୍ଗର ରମଣୀ।

ବସୁ– କିନ୍ତୁ ତୁମ ତନୁରେ ରଣବର୍ମ୍ମ– ବେଶ ସଶସ୍ତ୍ର ସୈନିକର ! ଲଳନାର ଲାଳିତ୍ୟ ପରିବର୍ତ୍ତେ ସମର–ପ୍ରମତ୍ତା ନାରୀର ରୂପ ଦେଖୁଛି ଯେ ? ଏହାର ଅର୍ଥ ?

ବିନ୍ଧ୍ୟା– ପ୍ରଥମେ ଆପଣଙ୍କର କୁଶଳ ଜିଜ୍ଞାସା କରେ। କଳିଙ୍ଗର ସମ୍ରାଟ ! କଳିଙ୍ଗର ଜନପଦ, ତପଃଆଶ୍ରମ, ଗୃହସ୍ଥଳୀର ସବୁ କୁଶଳ ତ ?

ବସୁ– ତୁମର ପରିଚୟ ?

ବିନ୍ଧ୍ୟା– ମୋର ପରିଚୟ ତ ଅତିସ୍ପଷ୍ଟ, ଅଙ୍ଗାଭରଣରୁ ତ ସବୁ ବୁଝିପାରୁଥିବେ। ବହୁ ଯୁଦ୍ଧ ଭୂମିରେ ସୈନିକ ବେଶ ଧରି ମୁଁ ରଣତାଣ୍ଡବ ଦେଖିଛି, ରୁଧିରପ୍ଲାବିତ ଶବ ଉପରେ ମୁଁ ପାଦ ଦେଇଚି– ରଣ–ଉନ୍ମାଦିନୀ ଚଣ୍ଡିକାର ପ୍ରଳୟନୃତ୍ୟ ମୁଁ ଦେଖିଛି; କିନ୍ତୁ ଆଉ ନୁହେଁ, ମୁଁ କ୍ଳାନ୍ତ, ମୁଁ ବିଶ୍ରାମ ଇଚ୍ଛା କରେ– ମୁଁ ଉପଯାଚିକା ଭାବରେ ସମ୍ରାଟଙ୍କର ଚରଣତଳକୁ ଆସିଛି– ମତେ ଆଜ୍ଞା ଦିଅନ୍ତୁ– ମୁଁ ଆପଣଙ୍କର ଅନ୍ତଃପୁରରେ କିଛି କାଳ ଅନ୍ତଃପୁରବାସିନୀ ହୋଇ ଯୁଦ୍ଧକ୍ଲେଶ ପାସୋରି ପକାଇବି। ଦେବେ... ?

ବସୁ– (ଆଶ୍ଚର୍ଯ୍ୟ ବୋଧକରି) ଅନ୍ତଃପୁରବାସିନୀ ?

ବିନ୍ଧ୍ୟା– ହଁ ପ୍ରଭୁ– ଯୁଦ୍ଧମତ୍ତ ପୃଥିବୀ ଆଉ ଭଲ ଲାଗୁ ନାହିଁ। ମତେ ଅନ୍ତଃପୁରରେ ଆଶ୍ରୟ ଦିଅନ୍ତୁ।

ବସୁ– (କିଛି ସମୟ ଭାବି) ବେଶ୍, ମୋର ଅନ୍ତଃପୁର ଶୂନ୍ୟ ପଡ଼ିଚି– ଆଉ ମୁଁ ବି...

ବିନ୍ଧ୍ୟା– ବୁଝିଚି– (କଟାକ୍ଷ ପକାଇ) କଳିଙ୍ଗର କେହି ଭାଗ୍ୟବତୀ ନାରୀ– କଳିଙ୍ଗ କାହିଁକି, ପୁଣ୍ୟ ଭାରତର କେହି ଭାଗ୍ୟବତୀ ବୀରାଙ୍ଗନା ଆଜିଯାଏଁ କଳିଙ୍ଗ–ସମ୍ରାଟ୍ ବସୁଭୂମାଙ୍କ ବକ୍ଷଦେଶରେ ପ୍ରେମର ବରମାଲ୍ୟ ଅର୍ପଣ କରିନାହାନ୍ତି, ଆଶ୍ଚର୍ଯ୍ୟ !

ବସୁ– (ସାମାନ୍ୟ ବିରକ୍ତ ହୋଇ) ଦେଖ ନାରୀ, କଳିଙ୍ଗସମ୍ରାଟ ସମକ୍ଷରେ ତୁମ୍ଭେ ସମ୍ଭ୍ରମ ରକ୍ଷା କରି କଥାବାର୍ତ୍ତା କର।

ବିନ୍ଧ୍ୟା– (ନତ ହୋଇ) ଯଥାଦେଶ, ଆପଣଙ୍କ ମୁଖମଣ୍ଡଳ ଉପରେ ସଂଶୟର ଅନୁଚ୍ଛାୟା କିପରି ମୁଖଶ୍ରୀକୁ ମଳିନ କରିଦେଇଛି। ବୋଧହୁଏ ଭାବିଛନ୍ତି ଏଇ ରମଣୀ କୌଣସି ଶତ୍ରୁପକ୍ଷ ଦ୍ୱାରା କଳିଙ୍ଗର କଳଙ୍କ ରଟାଇବା ପାଇଁ ସନ୍ଧାନୀଭାବେ ଛୁଟି ଆସିଛି, ଆପଣଙ୍କର ଅନ୍ତଃପୁରରେ ରହି ଆପଣଙ୍କୁ ହିଁ ଦଂଶନ କରିବାକୁ। ନୁହେଁ ?

ବସୁ– ତୁମେ କିପରି ଜାଣିଲ ?

ବିନ୍ଧ୍ୟା– ଅତି ସ୍ୱାଭାବିକ, ନାରୀ ଯଦି ଗୁପ୍ତ କାର୍ଯ୍ୟ କରିବାକୁ ତତ୍ପର ହୁଏ, ତେବେ ସେ ହୁଏ ମାରାତ୍ମିକା।

ବସୁ– କିନ୍ତୁ ତୁମ ଉପରେ ମୋର ବିଶ୍ୱାସ ଆସିଚି। ତୁମର ସୁବିଧା ଅସୁବିଧା ଦେଖିବା ପାଇଁ ମୁଁ କଞ୍ଚୁକୀକୁ ନିଯୁକ୍ତ କରୁଚ। ତୁମର ଯେତେଦିନ ଇଚ୍ଛା ମୋର ଅନ୍ତଃପୁରରେ ବିହାର କରିପାର। କିଛି ଆବଶ୍ୟକ ହେଲେ କଞ୍ଚୁକୀ ହାତରେ ସମ୍ବାଦ ଦିଅ।

ବିନ୍ଧ୍ୟା– କଳିଙ୍ଗ–ସମ୍ରାଟ୍ ବସୁଭୂମାଙ୍କର ଜୟ ହେଉ। (ପ୍ରଣତ ହେବା)

(ପଟ୍ଟ ପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ

ଭୁବନେଶ୍ୱରର ଏକାମ୍ର କାନନ– କାନନମଧ୍ୟସ୍ଥ ଏକ କୁଟୀର– କଳିଙ୍ଗଶିଳ୍ପୀ ଶ୍ରୀଧର ମହାରଣା ଶିଳ୍ପକର୍ମ–ନିରତ।

କାଖ ଉପରେ ଭରା କଳସୀ ଦେଇ ଶ୍ରୀଧର ମହାରଣାଙ୍କ ସ୍ତ୍ରୀ କଳାବତୀ କକ୍ଷ ଭିତରକୁ ପ୍ରବେଶ କଲେ।

କଳା– ଶୁଣୁଚ, ଶୁଣୁଚ–– ମଲା, ଶୁଣୁନ କାହିଁକି ମ ?

ଶ୍ରୀଧର– (ନୀରବ)

କଳା– କାମରେ ମନ ଲାଗିଥିଲେ ତ ହଜାରେ ଲୋକ ଫାଟିଫୁଟି ପଡ଼ିଲେ ଶୁଣିବ ନାହିଁ। ମଲା ଶୁଣୁଚ ?

ଶ୍ରୀଧର– (କାହା ଆଡ଼କୁ ନ ଚାହିଁ) ହୁଁ।

କଳା– କ'ଣ ହୁଁ ମ, ମଲା ଟିକିଏ ଚାହଁ।

ଶ୍ରୀଧର– (ନଚାହିଁ) ଚାହିଁଚି ପରା–

କଳା– କେଉଁଆଡ଼େ ?

ଶ୍ରୀଧର– ଚରଣ–ପଦ୍ମ ଆଡ଼େ।

କଳା– କାହିଁ, ମୋ ଚରଣରେ ତ ପଦ୍ମ ନାହିଁ ?

ଶ୍ରୀଧର– ତମର ନୁହେଁ, ମୂର୍ତ୍ତିଟିର।

କଳା– ଓହୋ, ମୁଁ ଭାବିଲି ମୋରି ଆଡ଼େ। ଏଡ଼େ ଭାଗ୍ୟ ପୁଣି କେବେ ହେବ ? ମୋ' ଚରଣପଦ୍ମକୁ– (କଳସୀ ଥୋଇଦେଲେ)

ଶ୍ରୀଧର– ତୁମ ଚରଣପଦ୍ମ ତ ସବୁବେଳେ ମୋ ଅନ୍ତରରେ ବିଳାସ କରୁଚି। ତେବେ ମୁଁ ଯେଉଁ ମୂର୍ତ୍ତିଟିକି ରୂପ ଦେଉଛି– ଯାର ଚରଣତଳେ ପଦ୍ମ ଫୁଟାଇବା ସୃଷ୍ଟି କ୍ରିୟା– ସେଥିପାଇଁ ଆନନ୍ଦମୟ ମୋର ନିତ୍ୟବିଳାସୀ ରୂପମୁଗ୍ଧ ମନ ଥରେ ଥରେ ଏତେ ବିଭୋର ରହିଥାଏ ଯେ କାହାକଥା, ଏପରି କି ତୁମ କଥା କଳା, ମୁଁ ଧ୍ୟାନ ଦେଇ ଶୁଣିପାରେନି। ରାଗିଲ କି ?

କଳା– କାହିଁକି ? ରାଗିବି କାହିଁକି ମ ? ମୁଁ ଜାଣେ ତୁମ ମନ ଭିତରେ ଏକର ନୁହେଁ, ବହୁର ରୂପ ଖେଳ କରୁଚି। ତୁମେ ଶିଳ୍ପୀ।

ଶ୍ରୀଧର– କଳା ! (ବିମୁଗ୍ଧ ଦୃଷ୍ଟିରେ ଚାହିଁ ରହିବା)

କଳା– ଏମିତି ଡାକିଲ କାହିଁକି ?– କିଛି କଷ୍ଟ ଦେଲି କି ?

ଶ୍ରୀଧର– କଷ୍ଟ ? ନାଁ, କିନ୍ତୁ ହଠାତ୍ ମନେହେଲା ତୁମେ ରକ୍ତମାଂସର ଶରୀର ଧରି ମୋ ପାଖରେ ଛିଡ଼ାହୋଇନ, ତୁମର ନୟନଯୁଗଳ, ତୁମର ଭ୍ରୂ, ତୁମର ଚରଣ, ତୁମର ମୁଖଶ୍ରୀ କି ଅପୂର୍ବ ଶିଳ୍ପରସରେ ଉଦ୍ଭାସିତ ହୋଇଯାଇଚି (ଛିଡ଼ାହେଲେ) ଦେଖେଁ, ଆଃ, ସମଗ୍ର ସୃଷ୍ଟିର ରୂପବିକାଶ ଏହି ମୂର୍ତ୍ତିଟି ପାଖରେ– (ଚିବୁକ ଧରି) ମୋର କଳାବତୀର ପାଖେ କେତେ ଅନିନ୍ଦ୍ୟ– ହଁ କୁଆଡ଼ୁ ଆସିଲ ? କେଦାରଗୌରରୁ ? (ପୁଣି ବସିପଡ଼ିଲେ)

କଳା– ମୋ ବାପା ବୋଉ ନାଁ ଦେଲେ ସେବତୀ, ଆଉ ତୁମ ଘରକୁ ଆସି– ସେଇ ମଧୁରାତିରେ ତୁମେ ଆଦରରେ ନାଁ ଦେଲ କଳାବତୀ। ମୋ ଦେହ ଚମ୍ପାଫୁଲ ପରି ଗୋରା। ସାଇ ମାଇପେ ମତେ ସୁନ୍ଦରୀ କହି ବସେଇ ଉଠେଇ ଦେଉ ନ ଥିଲେ, ଆଉ ତୁମେ ନାଁ ଦେଲ କଳା। ମୁଁ କ'ଣ ସତରେ କଳା; କିନ୍ତୁ ତୁମ କଳା ଡାକ ଭାରୀ ସୁଖ ଲାଗେ।

ଶ୍ରୀଧର– (ହସି) ରୂପରେ ତୁମେ ଯେ କଳା ନୁହଁ, ସେ କଥା ଜଗତ ଜାଣେ। କିନ୍ତୁ ମୋ' ଧ୍ୟାନ ପାଇଁ କଳା, ମୋ'ର ଶିଳ୍ପସାଧନା ପାଇଁ କଳା। କଳାବତୀ, ତୁମେ କାହୁଁ ବୁଝିବ, ଏଇ ଦୁଇଟି ହାତରେ ପଥର ଉପରେ ମୁଁ ଯେତେବେଳେ ରୂପ ଫୁଟାଏ, ତୁମେ ଶକ୍ତିମୟୀ ମତେ କଳାର ଭାବଜଗତକୁ ଟାଣିନିଅ। ମୁଁ ସବୁକଥା ଭୁଲିଯାଏ। କେବଳ ଆନନ୍ଦ... ଆନନ୍ଦ, ସେଥିପାଇଁ ତ ତୁମ ଡାକ ସମୟେ ସମୟେ ଶୁଣିପାରେ ନି।

କଳା– ଏତେ ଗହୀରିଆ ବଡ଼ ବଡ଼ କଥା ମୁଁ ବୁଝେନି। ମତେ ଯଦି କଳା ଡାକି ତୁମର ମୂର୍ତ୍ତି ଗଢ଼ିବାରେ ଲାଭ ହେଉଥାଏ, ମୋତେ କଳା ଡାକ, ଆହୁରି କିଟିମିଟିଆ କଳା କହ, ନାକଚେପେଟୀ, ନଳିଗୋଡ଼ୀ, ଅଷ୍ଟବାଙ୍କୀ କି ଓଟବେକୀ ଯାହା ମନକୁ ପାଇବ ଡାକ, ମୁଁ କିଛି କହିବି ନାହିଁ। ଏବେ ମତେ କହିବଟି, ତୁମେ ଗୁଡ଼ାଏ ଲଙ୍ଗଳା ମୂର୍ତ୍ତି ଗଢ଼ି ଶ୍ରୀମନ୍ଦିର, କୋଣାର୍କ, ଭୁବନେଶ୍ୱରର ଦେଉଳରେ କାହିଁକି ଥୋଉଚ ? ଏ କଥା ଯାଉଣୁ ଆସୁଣୁ ବିମଳା, ଜେମା, ସୁଲକ୍ଷଣୀ ମତେ କହି

ଶୁଣାଉଛନ୍ତି। କହୁଚନ୍ତି, "ହଇଲୋ, ତୋ ମିଣିପଟା ଏଡ଼ିକି ବେହିଆ। ଛି, ଛି, ଏ କି ଅଭିଆଣ କଥା ଲୋ ମା।" ମତେ ଆଗ କହ, ଏଗୁଡ଼ାକ କାହିଁକି ଆଙ୍କୁଚ? ଜଗନ୍ନାଥଦେଉଳ, କି କୋଣାର୍କ କି ଭୁବନେଶ୍ୱର ଅବା ରାଜରାଣୀମନ୍ଦିର ଏପରିକି କଳିଙ୍ଗଦେଶର ବଣ ପାହାଡ଼ରେ ଯେତେ ପଥର ଉପରେ କମକଳା ରହିଚି ଏସବୁ ତୁମ ହାତର ଗୌରବ। କେତେ ଲତା, କେତେ ରୂପ, କେତେ ଫୁଲ, କେତେ ଚକ୍ର, କେତେ ପଦ୍ମ– ଯେ ଦେଖୁଚି ସେ ଧନ୍ୟ ଧନ୍ୟ କରୁଚି– ଅଥଚ ମଝିରେ ମଝିରେ ଏଇ ଯେଉଁ ଲଙ୍ଗଳା ମୂର୍ତ୍ତି ତିଆରି କରୁଛ, ସେଥିପାଇଁ ମୁଁ ବାଟଘାଟରେ ଚାଲିପାରୁନି। ଦେଖ ଏ ଯେ କେଦାରଗୌରୀ କୁଣ୍ଡରୁ କଳସୀଏ ପାଣି ଆଣିବାକୁ ଏତେ ଉଛୁର ହେଲା କାହିଁକି କହିଲ? ସମସ୍ତେ ବାଟଯାକ ଅଟକେଇ ମତେ ଏଇ କଥା ପଚାରୁଛନ୍ତି।

ଶ୍ରୀଧର– (ଅନ୍ୟମନସ୍କ ଭାବରେ) କେଉଁ କଥା?

କଳା– ଏବେ ହେଲା! ହେ ଲିଙ୍ଗରାଜ, ଆଉ କାହାକୁ କହିବି? ସାତକାଣ୍ଡ ରାମାୟଣ ଶୁଣେଇଲି, ସୀତା...

ଶ୍ରୀଧର– ଓହୋ, ଏଇ ଉଲଗ୍ନ ମୂର୍ତ୍ତି ବିଷୟରେ କ'ଣ ଗୁଡ଼ାଏ କହୁଥିଲ ନା? ତୁମକୁ ଚଲେଇ ବସେଇ ଦେଉନାହାନ୍ତି– ଏଇ ଅଭିଯୋଗ ତ?

କଳା– ମଲା ଶୁଣୁଥିଲ ତ– ଏତେ ଛଇ କାହିଁକି ମ? ମୁଁ କ'ଣ ଜାଣେନି କି ତୁମେ ଶୁଣି ନ ଶୁଣିଥିବ–ଚାହିଁ ନ ଚାହିଁଥିବ, ହସି ନ ହସିଥିବ।

ଶ୍ରୀଧର– (ହସି) ତା ନୁହେଁ କଳା, ବରଂ ନ ଶୁଣି ଶୁଣୁଥିବି।

କଳା– ଏ କେମିତିକା ଓଲଟା କଥା ମ?

ଶ୍ରୀଧର– ଠିକ୍ ସେହିପରି ଯୋଗପ୍ରଣାଳୀ ଓଲଟା କଥା। କାହିଁକି ଦେବମନ୍ଦିର ଶିଳାରେ ଉଲଗ୍ନ ମୂର୍ତ୍ତି ସ୍ଥାପିତ ହୁଏ ଓ ସେ ଭାସ୍କର୍ଯ୍ୟର ଯୋଗସାଧନା ବାଟରେ କି ମାହାତ୍ମ୍ୟ, କି ଉଚ୍ଚକୋଟୀର ଦର୍ଶନ ନିହିତ ଅଛି, ଶେଷରେ ଶିଳ୍ପ ଓ କାମଶାସ୍ତ୍ରର ସମନ୍ୱୟରେ ଏପରି ଏକ ଲୌକିକ ଓ ଅଶ୍ଳୀଳ ବ୍ୟାପାରରେ କି ବ୍ରହ୍ମାନୁଭୂତି ନିହିତ, ତାହା ତୁମକୁ ମୁଁ କିପରି ବୁଝାଇବି କହିଲ?

କଳା– ତେବେ ଏତେ କଥା ଭିତରେ ଅଛି? କିନ୍ତୁ କଥା କ'ଣ କି ଯିବା ଆସିବା ଲୋକେ ମୂର୍ତ୍ତିଗୁଡ଼ିକୁ ଦେଖି ମନରେ ବିକାର ଆଣିବେ ନି?

ଶ୍ରୀଧର– ଆଣି ପାରନ୍ତି– ସେଇ ଉଦ୍ଦେଶ୍ୟରେ ତ କରାଯାଇଛି ଅତି ସାଂସାରିକ ଜୀବନ–ଧର୍ମର ଅଙ୍କନ। ସାଧକ ଯଦି ସାଧନାର ପ୍ରଥମ ସୋପାନରୁ ତଳରୁ ତଳକୁ ଖସିପଡ଼େ, ତେବେ ତା'ର ଆତ୍ମଶୁଦ୍ଧି ହୋଇ ନାହିଁ ଜଣାପଡ଼ିବ।

(ବୟସ୍ୟଙ୍କର ପ୍ରବେଶ)

ବୟସ୍ୟ– ମହାରଣେ, ମୋର ତ ପେଟଶୁଦ୍ଧି ଏ ପର୍ଯ୍ୟନ୍ତ ହୋଇ ନାହିଁ, ଆଉ ଆତ୍ମଶୁଦ୍ଧି କଥା କ'ଣ କହୁଚ? କିଏ ମା? କଳା? ଆହା, ଆଖି ଦୁଇଟି ପରା ନୀଳକଇଁ...

କଳା– ସତେ ? କ'ଣ ନୂଆ ଦେଖିଲେ କି ସାଆନ୍ତେ ?

ବୟସ୍ୟ– ଆଲୋ ମା, ଶ୍ରୀଧର କଳିଙ୍ଗଦେଶଟା ଉପରେ କି ରୂପର କାଉଁରୀ କାଠି ବୁଲେଇଆଣିଛି ଯେ ଯେଉଁଆଡ଼େ ଚାହିଁବ ସବୁଠି ରୂପର ସାଧନା– ସୌନ୍ଦର୍ଯ୍ୟର ଆବାହନ–

ଶ୍ରୀଧର– ଲଜ୍ଜା ଦିଅନ୍ତୁ ନାହିଁ ରାଜବିଦ୍ୱାନ୍ ! ସବୁ ଲିଙ୍ଗରାଜଙ୍କ ଅଶେଷ କରୁଣା। ମୁଁ ଦୀନାତିଦୀନ ମାତ୍ର। କଳା, ତୁମ ସାଆନ୍ତଙ୍କ ପାଇଁ କିଛି...

ବୟସ୍ୟ– କ'ଣ ଆହାରଟି। ଏ ବି ଲିଙ୍ଗରାଜଙ୍କର କରୁଣା। ଜାଣିଛୁ ମା, କେତେବଡ଼ କଷ୍ଟକଥା, ସୂପକାର କେତେ ପ୍ରକାର ଭୋଜ୍ୟବସ୍ତୁ ପ୍ରସ୍ତୁତ କରି ଚାହିଁବସିଚି। ଖାଲି ଆସନ ପକାଇ ଚଳୁ କରିବା ମାତ୍ରେ କାମଟା ଆରମ୍ଭ ହୋଇଯିବ। ସବୁ ଇନ୍ଦ୍ରିୟ ନିରୋଧ କରି ପଦ୍ମାସନରେ ବସି କେବଳ ଜିହ୍ୱା ଇନ୍ଦ୍ରିୟଟାକୁ ଲଗାମଛଡ଼ା କରିବାକୁ ହେବ। ଠିକ୍ ଏତିକିବେଳେ ଯେବେ ଆଦେଶ ହୁଏ– "ବୟସ୍ୟ ମନେ ହେଉଛି, ଏ ନାରୀ ଦୌତ୍ୟବ୍ୟାଜରେ ଆସିଛି। ଏ ରାଜକର୍ମ, ତୁମେ ଉପବନପ୍ରାନ୍ତ ଅତିଥିଶାଳାରେ କିଛି ସମୟ ଅପେକ୍ଷା କର, ଯାଅ।" ସେତେବେଳେ ମା' କହ ଏ ଉଦରସର୍ବସ୍ୱ ବ୍ରାହ୍ମଣ ମନରେ ଯେ କି ବ୍ୟଥା ନ ହୋଇଥିବ।

କଳା– ଏ କଥା ଶୁଣି ମୋ ଆକ୍ଷିରୁ ଲୁହ ବୋହିଆସୁଚି। କ'ଣ କରିବି, ଆହାର ମୁହଁରେ ପାହାର।

ବୟସ୍ୟ– କେବଳ ତୋ'ରି ଆଖିରୁ ଲୁହ ? ସମଗ୍ର ଜଗତ ସେତିକିବେଳେ ହୃଦୟ ଫଟାଇ କଇଁ କଇଁ ତାପରେ ଭେଁ ଭେଁ ହୋଇ କାନ୍ଦି ଉଠିଲା। ସେତିକିବେଳେ ନଦୀରେ ବନ୍ୟା, ସାଗରରେ ତରଙ୍ଗ, ମେଘରେ ବର୍ଷା ଓ ଶେଷକୁ ଆଗ୍ନେୟଗିରିରୁ ଅଗ୍ନି ପ୍ରବାହ...

କଳା– (ହସି ଉଠିଲେ)

ଶ୍ରୀଧର– ନିଆଁ ପାଣିକୁ ଆପଣ ଏକାଠି କରିଦେଲେ ?

ବୟସ୍ୟ– ଆହା, ମୁଁ ସିନା ନିଆଁ ପାଣିକୁ ଏକାଠି କରିଦେଲି, ତେଣେ ଘିଅ ଆଉ ନିଆଁ ଯେ ଏକାଠି ହେଲେଣି। ହେ ପ୍ରଭୁ ଲିଙ୍ଗରାଜ, ସତେ କ'ଣ ଘିଅ ନିଆଁ ଏକାଠି ହୋଇ କ୍ଷିରୀ, ପାୟସ, ମିଠେଇ, ରସାବଳୀ ସ୍ରୋତରେ ଏ କଳିଙ୍ଗ ଭାସିଯିବ।

କଳା– କ'ଣ ସାଆନ୍ତେ, ଗୋଟାଏ ଗୁମର କଥା କହିଲାପରି ମନେହେଉଚି, କହନ୍ତୁ ନା–

ଶ୍ରୀଧର– ସତେ ରହସ୍ୟ ପରି ଜଣାପଡୁଚି।

ବୟସ୍ୟ– ଗୋଟାଏ ନାରୀ ଦେହରେ ଯୁଦ୍ଧବର୍ମ୍ମ ପିନ୍ଧି କଳିଙ୍ଗସମ୍ରାଟ୍ ବସୁଭୂମାଙ୍କୁ କହିଲା, "ମୁଁ ବହୁ ଯୁଦ୍ଧରେ ସୈନିକବେଶ ଧରି ରଣତାଣ୍ଡବ ଦେଖିଚି– ରୁଧିରପ୍ଲାବିତ ଶବ ଉପରେ ମୁଁ ପାଦ ଦେଇଛି–ରଣୋନ୍ମାଦିନୀ ଚଣ୍ଡିକାର ପ୍ରଳୟ ନୃତ୍ୟ ଦେଖିଚି–

କଳା– ଇଲୋ ମା ଲୋ, କି ଭୟଙ୍କର କଥା !

ଶ୍ରୀଧର– ତା'ପରେ

ବୟସ୍ୟ– ତା'ପରେ ସେ ନାରୀ କହିଲା, "ଆଉ ନୁହେଁ। ମୁ କ୍ଳାନ୍ତ। ମୁଁ ବିଶ୍ରାମ ଚାହେଁ। ମୁଁ

ଉପଯାଚିକା ଭାବରେ ସମ୍ରାଟଙ୍କର ଚରଣତଳକୁ ଆସିଚି। ମତେ ଆଜ୍ଞା ଦିଅନ୍ତୁ, ମୁଁ ଅନ୍ତପୁରବାସିନୀ ହୋଇ, ଆପଣଙ୍କ ଅନ୍ତଃପୁରରେ ରହି ଯୁଦ୍ଧକ୍ଲେଶ ପାସୋରି ପକାଇବି।"

କଳା– ମହାରାଜ କହିଲେ ହବ ବୋଲି।

ବୟସ୍ୟ– ଖାଲି ହବ ବୋଲି କହିଲେ ? କହିଲେ, "ତମର ସୁବିଧା ଅସୁବିଧା ଦେଖିବା ପାଇଁ ମୁଁ କଞ୍ଚୁକୀକୁ ନିଯୁକ୍ତ କରୁଚି। ତୁମର ଯେତେଦିନ ଇଚ୍ଛା ସେତେଦିନ ମୋ'ର ଅନ୍ତପୁରରେ ବିହାର କରିପାର।"

ଶ୍ରୀଧର– ଦେଖିବାକୁ ରୂପ କିପରି।

ବୟସ୍ୟ– ରୂପ ବଚନରେ କହିହେବ ନାହିଁ ମହାରଣା, ସମଗ୍ର କଳିଙ୍ଗ ମଧରେ ଏପରି ଗୋଟାଏ ମୂର୍ତ୍ତି...

ଶ୍ରୀଧର– ବାଃ, ବେଶ୍ ତ, ତେବେ ମୋ ହାତରେ ସେ ରୂପ–ସମ୍ପଦ ଶିଳାଗାତ୍ରରେ କେବେ ଫୁଟିବ, ସେ କଥା ଲିଙ୍ଗରାଜ ଜାଣନ୍ତି। ମୁଁ ଯେ ରୂପର ସନ୍ଧାନୀ–

କଳା– ସାଆନ୍ତେ, ଦେଖା ନାଇଁ, ଦେଖ ଜିଭରୁ କିମିତି ଯାଙ୍କର ଲାଳ ବୋହିଲାଣି, ଠିକ୍ ଯେମିତି ଆମ୍ବର ଆଚାର ମୁହଁ ପାଖରେ ଦେଖାଇଲେ– ଏଥିପାଇଁ ମୁଁ ଯାଙ୍କ ଉପରେ ଚିଡ଼ି ଚିଡ଼ି ହୁଏ। କାହିଁ, ମୁଁ କ'ଣ ସୁନ୍ଦରୀ ନୁହେଁ? ମତେ ଗଢୁନ? ନା, ତା ହେବ ନାହିଁ। ମୁଁ ଯାଙ୍କର ଖାଲି ତେଲ ଲୁଣ ସଂସାର କରିବି ମ! ଧନ୍ୟ ଏ ମଣିଷଜାତି!

ଶ୍ରୀଧର– କଳା, କେତେଥର କହଚି, ତୁମେ ମୋର କଳା ଉଦ୍ଦୀପନାର ପ୍ରଖର ଜ୍ୟୋତି।

ବୟସ୍ୟ– ହରିବୋଲ (ତାଳିମାରି) କଜିଆ ଆରମ୍ଭ ହୋଇଗଲା। ବେଶ୍ ଭଲଲାଗେ ତମର କଳି ଶୁଣିବା ଲାଗି। ଶିଳ୍ପୀ ଓ ଶିଳ୍ପ– ଏ ଦୁଇଟା ଭିତରେ କେବେ ତ କଳି ହୁଏନା– ହେଲେ ତ ଶିଳ୍ପୀ ମରିଯାଏ।

କଳା-- ସାଆନ୍ତେ, କି ଅଲକ୍ଷଣା କଥା କହୁଚ ମ?

ଶ୍ରୀଧର– କଳା କେବେ ଶିଳ୍ପ ନୁହେଁ। ସେ ତା'ର ବହୁ ଊର୍ଦ୍ଧ୍ୱରେ– ଅସୀମତାର ବିକାଶ– ତେଣୁ ଶ୍ରୀଧର ମରିବ ନାହିଁ କି କଳା ତାକୁ ଛାଡ଼ିବ ନାହିଁ।

ବୟସ୍ୟ– ଠିକ୍ କଥା ଶ୍ରୀଧର, ତା ନ ହେଲେ କଳିଙ୍ଗର ପ୍ରତି ଧୂଳିକଣାର୍ ଏତେ ଶିଳ୍ପ, ଏତେ ପବିତ୍ରତା ନ ଥାନ୍ତା।

ବୟସ୍ୟ– ଛାଡ଼ ସେ କଥା, ଏ ଝିଅଟି ଏବେ କେଉଁଠି ?

ବୟସ୍ୟ– କେଉଁଠି ? ଅନ୍ତଃପୁରରେ। ଆସିଲାବେଳେ ଦେହ ଉପରେ ଯୁଦ୍ଧବର୍ମ୍ମ ଥିଲା, ଏବେ ସାଧାରଣ ବେଶରେ ଯୌବନଜ୍ୟୋତିକୁ ବିକୀରଣ କରି ଅନ୍ତଃପୁର–ଉଦ୍ୟାନର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏ ଚିତ୍ରିତ ପ୍ରଜାପତି ଭଳି ଘୂରୁଚି। ଥରେ ଦେଖିଲି, ମରାଳଖଚିତ ନୀଳସରର ସୋପାନଶ୍ରେଣୀକୁ ଭରା ଦେଇ ସେ ଗୋଟିଏ ନୀଳପଦ୍ମକୁ ନିଜ ମୁଦ୍ରିତ ଚକ୍ଷୁ ଦୁଇଟିରେ ଧୀରେ ଧୀରେ ସଞ୍ଚାର କରୁଚି, ବକ୍ଷ ଅନାବୃତ, କର୍ଣ୍ଣାଳଙ୍କାର ପଦ୍ମକୋରକ, କଟୀଦେଶରେ କେବଳ ଝୀନ ଉତ୍ତରୀୟ ଖଣ୍ଡେ...

ଶ୍ରୀଧର– ବାଃ, ଚମତ୍କାର, ରୂପର କି କୋଣାର୍କ!!!

କଳା– ମଲା, ଇମିତି ପାଟି କରୁଚ କାଇଁକି ମ? ଆଖିରେ ଖାଲି ନୀଳକଇଁ ଘଷିଲେ ଚମତ୍କାର, ବେଶ୍, ଓଃ କୋଣାର୍କ ? ?

ଶ୍ରୀଧର– (ଲାଜରେ ତଳକୁ ଚାହିଁ) ତୁମେ କାଇଁକି କଳା ବୁଝୁନ ଯେ ମୁଁ ରୂପଚର୍ଚ୍ଚା କଲାବେଳେ ପ୍ରକୃତିସ୍ଥ ହୋଇ ରହିପାରେ ନା।

କଳା– (ଦୁଃଖରେ) ନା, ମୁଁ ତୁମକୁ ଆଘାତ ଦେଇଛି। ମତେ କ୍ଷମା କର।

ବୟସ୍ୟ– ଆରେ ପାଗଳୀ, କ୍ଷମା କଥା କାଇଁ କହୁଚ? ଶିଳ୍ପୀ ଓ ଶିଳ୍ପର ଲୀଳାର ତରଙ୍ଗ କଳିଙ୍ଗର ବାଟଘାଟ ଜନପଦ ସର୍ବତ୍ର ବାଜୁଚି। ଖାଲି ଏଇ ଉଦରଟାରେ ଯାହା ବାଜୁନି।

ଶ୍ରୀଧର– କଳା ତମ ସାଆନ୍ତଙ୍କ ପାଇଁ କିଛି... ଏତେ ବେଳଯାଏ କିଛି ବ୍ୟବସ୍ଥା!

କଳା– ମଲା ମୋ ନିଆଁ ଲଗା ମନ– ଆସନ୍ତୁ ସାଆନ୍ତେ, ଆସନ୍ତୁ।

ବୟସ୍ୟ– ଓହୋ! ଏତେବେଳକୁ ମନେପଡ଼ିଲା– ରୂପ ଫୁପ ଚର୍ଚ୍ଚାରେ ଏୟା ପରା ହୁଏ। (ପ୍ରସ୍ଥାନ)

## ତୃତୀୟ ଦୃଶ୍ୟ

[ ଉଦ୍ୟାନ ବିହଙ୍ଗବିହାର– ନାନା ଜାତି ପକ୍ଷୀର ଆବାସ, ସୋମାନଙ୍କ କଳକୂଜନରେ ଚତୁର୍ଦ୍ଦିଗ ଶବ୍ଦାୟିତ– ବସୁଭୂମା ବୃଦ୍ଧ ପକ୍ଷୀପାଳକ ସହିତ ରଙ୍ଗମଞ୍ଚକୁ ପ୍ରବେଶ କଲେ। ]

ବସୁ– ପକ୍ଷୀପାଳକ, ବିହଙ୍ଗବିହାରରେ କେତେ ପକ୍ଷୀ ଅଛନ୍ତି?

ପ:ପା– ନିଜର ସାଥୀ ଘେନି ଯେତେ ପକ୍ଷୀ ଅଛନ୍ତି ସେମାନଙ୍କର ସଂଖ୍ୟା ବେଶୀ। ଯେଉଁମାନଙ୍କ ସାଥୀ ନାହାନ୍ତି ସେମାନେ ପ୍ରାୟ ବିମର୍ଷ। ତାଙ୍କ କଣ୍ଠରେ କାକଳି ନାହିଁ।

ବସୁ– ଏହା କ'ଣ ଜଗତନିୟମ?

ପ:ପା– ସମ୍ରାଟ, ତାହା ମୁଁ କହିପାରିବି ନାହିଁ। ତେବେ ପ୍ରକୃତି ଶିକ୍ଷା ଦିଏ– ଯୁଗଳର ସଙ୍ଗୀ ଜୀବନକୁ ସୁନ୍ଦର କରନ୍ତି।

ବସୁ– ସବୁ ମିଥ୍ୟା।

ପ:ପା– ହୋଇପାରେ। ସମ୍ରାଟଙ୍କ ଜ୍ଞାନ ପାଖରେ ଏ ଅକିଞ୍ଚନର ଜ୍ଞାନ କିଛି ନୁହେଁ। ଭୁଲ କରିଥିଲେ ଯେପରି ରାଜରୋଷରେ ନପଡ଼େ ତାହାହିଁ ବିଚାର କରିବେ।

ବସୁ– ନା ରାଜରୋଷ କଥା ନୁହେଁ। କିନ୍ତୁ ପକ୍ଷୀପାଳକ, ତୁମର ଏତେ ଜ୍ଞାନ ଜନ୍ମିଲା କିପରି? ପ୍ରାୟ ଦେଖେ ତୁମେ ଯାହା କହ ସେଥିରେ ସତ୍ୟତା ଥାଏ। ଏହା କେବଳ ବୟସର ଅଭିଜ୍ଞତା ନା ଆଉ କିଛି?

ପ:ପା– ତା ଜାଣେନି ପ୍ରଭୋ! ଦୀର୍ଘକାଳ ବଞ୍ଚିକରି ବହୁତ ଅନୁଭୂତି ହେଲାଣି, ହୋଇଥିବ; କିନ୍ତୁ ସୃଷ୍ଟିର ପରମ ସମ୍ପଦ ପକ୍ଷୀମାନଙ୍କ ସହିତରେ ଜୀବନର ଅର୍ଦ୍ଧାଂଶ କଟାଇ ଆଣିଲି, ତାହା ହିଁ ମତେ ଜୀବନର ରହସ୍ୟ ଶିଖାଇଛି। ଏମାନେ ମୁକ୍ତ; ମଣିଷ ଭଳି ବାଚାଳତା ଏମାନଙ୍କ କଣ୍ଠରେ ଫୁଟେ ନାହିଁ। ଉନ୍ମୁକ୍ତ ନୀଳିମ ଆକାଶର ପଥଚାରୀ– କେତେ ପ୍ରଶସ୍ତ, କେତେ ବିସ୍ତୃତ ଏଇ ଗଗନର କ୍ଷେତ୍ର! ମନଇଚ୍ଛା ସେମାନେ ସବୁଆଡ଼କୁ ଉଡ଼ିଯିବେ, ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷଣ– ନା ନା

ଏମାନଙ୍କ ପାଇଁ ଦଗର ସୂଚନା ନାହିଁ। ଏମାନଙ୍କ ସାଙ୍ଗରେ ଦିନରାତି ରହି ମୁଁ ଜୀବନର–ରହସ୍ୟ ଜାଣିଛି ସମ୍ରାଟ।

ବସୁ– ଅପୂର୍ବ ତୁମେ, ବହୁ ଶାସ୍ତ୍ରର ଅଧିକାରୀ ମନେହୁଏ। ଇଚ୍ଛା କରି ଏପରି ନୀଚ କାର୍ଯ୍ୟ କାହିଁକି ଗ୍ରହଣ କଲ? ତୁମେ ତ ରାଜସଭାର ପଣ୍ଡିତ ହୋଇ ପାରିଥାଆନ୍ତ?

ପ:ପା– କ୍ଷମା କରିବେ ସମ୍ରାଟ। ରାଜସଭାର ଅଳଙ୍କାର ଅପେକ୍ଷା ପ୍ରକୃତିର ପୂଜାରୀ– ଏଇ ବିହଙ୍ଗମାନଙ୍କ ପରିପାଳନା ବହୁ କାମ୍ୟ।

ବସୁ– କିନ୍ତୁ ମୁଁ ଯେ ଏମାନଙ୍କୁ ପିଞ୍ଜରା ମଧ୍ୟରେ ଆବଦ୍ଧ କରି ରଖିଛି। ଏମାନଙ୍କୁ କଷ୍ଟ ହେଉଥିବ।

ପ:ପା– ମୁଁ ବୁଝିଚି– ଆପଣ ସିନା ବନ୍ଦ କରି ରଖିଛନ୍ତି– ମୁଁ ଏମାନଙ୍କୁ ଥରେ ଥରେ ମୁକ୍ତ କରିଦିଏ। ଆକାଶର ପ୍ରାଙ୍ଗଣ ଉପରେ ଏମାନେ ଯେତେବେଳେ ପକ୍ଷ ପିଟି ସନ୍ତରଣ କରନ୍ତି ଧଳା, କଳା, ନୀଳ– ବହୁରଙ୍ଗରେ ଚିତ୍ରିତ ପୁଚ୍ଛ ଯେତେବେଳେ ପବନରେ ଭାସିଯାଏ ଏବଂ ତା ଉପରେ ସୂର୍ଯ୍ୟରଶ୍ମି ଓ ଇନ୍ଦ୍ରଧନୁର ବର୍ଣ୍ଣ ପ୍ରତିଫଳିତ ହୁଏ, ସେତେବେଳେ ମନୁଷ୍ୟର କ୍ଷୁଦ୍ରଭାବ କଟିଯାଇ ଆସେ ଅଖଣ୍ଡ ଭାବ–

ବସୁ– ତୁମେ ଏମାନଙ୍କୁ ସମୟେ ସମୟେ ମୁକ୍ତ କରିଦିଅ ନା?

ପ:ପା– ନିଶ୍ଚୟ, ତା' ନ ହେଲେ ସେମାନେ ବଞ୍ଚିବେ ନାହିଁ ଯେ।

ବସୁ– ସେମାନେ କ'ଣ ପୁଣି ପିଞ୍ଜରାକୁ ବାହୁଡ଼ି ଆସନ୍ତି?

ପ:ପା– ହଁ, କାରଣ ସେମାନେ ଜାଣନ୍ତି ବନ୍ଧନ ଓ ମୁକ୍ତି ଦୁଇଟା ଦରକାର। କେବଳ ବନ୍ଧନ ଯନ୍ତ୍ରଣା ଦିଏ, କେବଳ ମୁକ୍ତି ନିରୁତ୍ସାହିତ କରେ– କିନ୍ତୁ ଦୁଇଟାଯାକ ଧାରା ମନକୁ ସମ ଶୀତୋଷ୍ଣ କରି ରଖେ।

ବସୁ– ଖୁସୀ ହେଲି। ଆଚ୍ଛା ମୋର ପ୍ରିୟ ବିମ୍ବୋଷ୍ଠ କାଇଁ?

ପ:ପା– ଅଛି, ତା'ର ସାଥୀ ନାହିଁ। ସେଥିପାଇଁ ପ୍ରାୟ ସେ ଉଦାସୀନ ଆସନ୍ତୁ, ଦେଖାଇଦେବି।

ବସୁ– ଚାଲ। (ବସୁଭୂମା ଓ ପକ୍ଷୀପାଳକଙ୍କର ପ୍ରସ୍ଥାନ)

(ନେପଥ୍ୟରେ) ବିମ୍ବୋଷ୍ଠ, ଫେରି ଆ।

ବସୁ– (ପ୍ରବେଶ କରି), ବିମ୍ବୋଷ୍ଠ, ତୁ ଫେରି ଆ। ତମାଳପତ୍ରର ଶ୍ୟାମଳିମା ଭିତରେ ମୁଁ ତୋତେ ଦେଖିପାରୁନି। ତୁ ଫେରି ଆ– ଏ ଯେ ଅନ୍ତଃପୁରର ସୀମା ଦେଖୁଚି। ତେଣିକି ମୁଁ ଯେ ଆଉ ଯାଇପାରିବି ନାହିଁ। ମୂର୍ଖ ବିମ୍ବୋଷ୍ଠ, ମୋର ପ୍ରିୟ ବିମ୍ବୋଷ୍ଠ, ତୁ ଫେରି ଆ। ବିନ୍ଧ୍ୟାର ଉଦୟ ହେବା ଦିନଠୁ ମୋର ଅନ୍ତଃପୁର ଆଡ଼େ ଯିବା ସମ୍ଭବ ନୁହେଁ। ନିର୍ବୋଧ ଶୁକପକ୍ଷୀ, ତୋତେ-ଏ କଥା ମୁଁ କିମିତି ବୁଝାଇବି?

(ବିନ୍ଧ୍ୟାର ପ୍ରବେଶ)

ବିନ୍ଧ୍ୟା– ସମ୍ରାଟ୍!

ବସୁ– କିଏ? ଓ, ତୁମେ? (ନ ଚାହିଁ)

ବିନ୍ଧ୍ୟା– ଉଦ୍ୟାନର ପୁଷ୍ପବାଟୀ ତଳେ ମରାଳଖଚିତ ନୀଳ ସରୋବରର ସୋପାନଶ୍ରେଣୀ ଉପରେ ବସି ନୀଳପଦ୍ମର ଶୋଭା ଦେଖୁଥିଲି। ହଠାତ୍

ଶୁଣିଲି ଆପଣଙ୍କର ଉତ୍ତେଜିତ କଣ୍ଠସ୍ୱର– "ବିମ୍ୱୋଷ୍ଠ", "ବିମ୍ୱୋଷ୍ଠ"।

ବସୁ– (ବିନ୍ଧ୍ୟାଆଡ଼କୁ ନ ଚାହିଁ) ମୂର୍ଖ ବିମ୍ୱୋଷ୍ଠ, ଶୀଘ୍ର ଫେରି ଆ!

ବିନ୍ଧ୍ୟା– ଓ, ବିମ୍ୱୋଷ୍ଠ ଉଡ଼ିଯାଇଛି– କିଛି ଚିନ୍ତା ନାହିଁ, ସେ ଫେରିଆସିବ ଯେ–

ବସୁ– ବିମ୍ୱୋଷ୍ଠ, ବିମ୍ୱୋଷ୍ଠ– (ଏକ ଲକ୍ଷ୍ୟରେ ପକ୍ଷୀଆଡ଼କୁ ଚାହିଁରହିଲେ)

ବିନ୍ଧ୍ୟା– ଏତେଦିନେ ମହାରାଜ ମୋତେ ସ୍ମରଣ କଲେ– ମୁଁ ଯେ ନିତି ଅପେକ୍ଷା କରି ବସିଥାଏ–

ବସୁ– ମୂର୍ଖ ବିମ୍ୱୋଷ୍ଠ, କେତେ ମୁଁ ତୋତେ ଡାକିବି– ଯେତିକି ଡାକୁଚି ତୁ ଆହୁରି ଲତା ଭିତରେ ଲୁଚିଯାଉଛୁ। ମୁଁ ନିରୂପାୟ।

ବିନ୍ଧ୍ୟା– ମୁଁ ଉପାୟ କରିଦେଉଚି। ବିମ୍ୱୋଷ୍ଠ, ତୋ'ର ସାଥୀ ତତେ ବଡ଼ କାତରପ୍ରାଣରେ ଡାକୁଚି, ତୁ ଫେରି ଆ–

ବସୁ– ତା'ର ସାଥୀ କାଇଁ ଯେ ତାକୁ ଡାକିବ? (ବିନ୍ଧ୍ୟାପ୍ରତି ଦୃଷ୍ଟି ନ ଦେଇ)

ବିନ୍ଧ୍ୟା– ଠିକ୍ ସେହିପରି ସମ୍ରାଟ୍! ଅଥଚ ସାଥୀ ଆପଣଙ୍କର ରହିଛି– ଆଜି ଯେପରି ସମ୍ରାଟ୍ ବିମ୍ୱୋଷ୍ଠକୁ କାତର ପ୍ରାଣରେ ଡାକୁଚନ୍ତି ମୁଁ ଠିକ୍ ସେହିପରି ଆପଣଙ୍କୁ ଡାକିଥାଏ।

ବସୁ– ବିମ୍ୱୋଷ୍ଠ...(ସାମାନ୍ୟ କ୍ରୁଦ୍ଧ ସ୍ୱରରେ)

ବିନ୍ଧ୍ୟା– କିନ୍ତୁ ଆପଣ ଆସନ୍ତି ନାହିଁ।

ବସୁ– ଚୁପ୍‌କର ବିନ୍ଧ୍ୟା!

ବିନ୍ଧ୍ୟା– (ହସି) ବ୍ରତଭଙ୍ଗ ହୋଇଯାଉଛି ନା– ଆଚ୍ଛା, ଏକ୍ଷଣି ମୁଁ ବିମ୍ୱୋଷ୍ଠକୁ ନେଇଆସୁଛି। (ନିଷ୍କ୍ରାନ୍ତ)

ବସୁ– ଏ କ'ଣ? ବିନ୍ଧ୍ୟାର ଏପରି ଚାତୁରୀ କାହିଁକି? ମୋ ହୃଦୟରେ ଏପରି କମ୍ପନ ବା କାହିଁକି ଆସୁଚି? ବିନ୍ଧ୍ୟା ଆସିଲାବେଳେ ଯେଉଁ ଯୁଦ୍ଧ–ବେଶରେ ମୋତେ ଅଭିବାଦନ କରିଥିଲା, ତାହା ତ ଆଉ ଦେଖୁ ନାହିଁ। (ନେପଥ୍ୟ) ଆଃ... ସମ୍ରାଟ୍, ରକ୍ଷା କରନ୍ତୁ– ବିମ୍ୱୋଷ୍ଠ ଲତା ଉହାଡ଼ରୁ ଉଡ଼ିଆସି ମୋର କର୍ଣ୍ଣଭୂଷା ପଦ୍ମକୋରକକୁ ଛିନ୍ନଭିନ୍ନ କରି ଗଣ୍ଡକୁ କ୍ଷତବିକ୍ଷତ କରୁଅଛି। ରକ୍ଷା କରନ୍ତୁ ମହାରାଜ! ଦେଖନ୍ତୁ କିପରି ରକ୍ତସ୍ରାବ।

ବସୁ– (ଚମକି) ବିନ୍ଧ୍ୟା, କେଉଁଠି? ବିମ୍ୱୋଷ୍ଠ, ବିନ୍ଧ୍ୟା, ବିନ୍ଧ୍ୟା... (ନିଷ୍କ୍ରାନ୍ତ)

(ପଟ୍ଟ ପରିବର୍ତ୍ତନ)

## ଚତୁର୍ଥ ଦୃଶ୍ୟ

[ରାଜକକ୍ଷ, ସମ୍ରାଟ୍ ବସୁଭୂମା ସିଂହାସନରେ ଉପବିଷ୍ଟ– ପାଖରେ ଶ୍ରୀଧର ମହାରଣା ଯୋଡ଼ହସ୍ତରେ ଦଣ୍ଡାୟମାନ]

ବସୁ– ତେବେ ତୁମେ କହୁଚ ନେତ୍ରଯୁଗଳରେ ନୀଳପଦ୍ମର ଠାଣି ଦେବ?

ଶ୍ରୀଧର– ଆଜ୍ଞା, ମଣିମା–

ବସୁ– କର୍ଣ୍ଣଭୂଷାପାଇଁ କିଛି ଅଳଙ୍କାର ଦେଇପାର?

ଶ୍ରୀଧର– ତା'ବି ଦେବି–

ବସୁ– ଆଚ୍ଛା, ଅଙ୍ଗୁଷ୍ଠିର ନଖପ୍ରାନ୍ତରେ ଗୋରୋଚନାର ବିନ୍ଦୁ କମନୀୟ ହେବ କି ?

ଶ୍ରୀଧର– ଗୋରୋଚନାର ବିନ୍ଦୁ ଭାଲପଟରେ ଆଙ୍କିଲେ ସୁନ୍ଦର ହେବ; କିନ୍ତୁ ସ୍ୱର୍ଣ୍ଣ ପ୍ରତିମାର ଲଲାଟରେ ଗୋରୋଚନାର ଚିତା ଅସ୍ୱଷ୍ଟ ରହିଯିବ। ବରଂ ସୀମନ୍ତରେ ସିନ୍ଦୂର ଗାରେ ଦେବି।

ବସୁ– ହଁ ଭ୍ରୂଯୁଗର ଭଙ୍ଗୀ ଯେପରି ଭୀତିବିହ୍ୱଳ ନ ହୁଏ– ତାପାଇଁ ଦୃଷ୍ଟି ଦେବ।

ଶ୍ରୀଧର– ଦେବି, ମଣିମା–

ବସୁ– ଆଚ୍ଛା, ନାଭିବିନ୍ଦୁର କେତେ ତଳକୁ ଝୀନବାସର ବେହରଣ ଦେବ ?

ଶ୍ରୀଧର– ନାଭିବିନ୍ଦୁ ଓ କଟୀବନ୍ଧ ମଧ୍ୟରେ ଯେତିକି ସ୍ଥାନ ମୁଁ ରେଖାଙ୍କିତ କରିବି ତା'ର ଏକ ତୃତୀୟାଂଶ ପରିମିତ ସ୍ଥାନ ମୁଁ ଊର୍ଦ୍ଧ୍ୱକୁ ରଖି ବେହରଣ ବସାଇବି। ଆପଣ ସେ ବିଷୟରେ ନିଶ୍ଚିନ୍ତ ଥାନ୍ତୁ–

ବସୁ– ଦେଖ ମହାରଣା, ମୋ'ର ଚିନ୍ତାଧାରା ଆଉ ତୁମ ଚିନ୍ତାଧାରା ସମାନ ହେବ ତ ?

ଶ୍ରୀଧର– ମଣିମା, ଶିଳ୍ପୀକୁ ତା ବାଟରେ ଯିବାପାଇଁ ଛାଡ଼ିଦିଅନ୍ତୁ, ଦେଖିବେ ଫଳ କ'ଣ ହେଉଚି।

ବସୁ– କହ, ଅନ୍ୟ କେଉଁ ବିବରଣର ପ୍ରୟୋଜନ ଅଛି ?

ଶ୍ରୀଧର– ମୂର୍ତ୍ତିଟି ନିର୍ଭୁଲ ହେବାପାଇଁ ଏ ଅଧମଶିଳ୍ପୀ ମଣିମାଙ୍କର ଚରଣତଳେ ଶରଣ ଭିକ୍ଷା କରେ। କହନ୍ତୁ, ବିନ୍ଧ୍ୟାକୁ ମୃତା ବା ଜୀବିତାବସ୍ଥାରେ ରୂପ ଦେବି– ଅର୍ଥାତ୍ ପ୍ରତିମାକୁ ଦେଖିଲେ ହେଁ ମନେ ହେବ ମୂର୍ତ୍ତି ଜୀବନ୍ୟାସରେ ଅଛି, ଜଡ଼ ନୁହେଁ।

ବସୁ– ତାହା ତୁମେ କରିପାର ?

ଶ୍ରୀଧର– ଦେବ, କଳିଙ୍ଗର କାରିଗର ପାଖେ ଏ ଯେ ବଡ଼ ତୁଚ୍ଛ ପରିପାଟୀ। ପୁଣି ଏ ତ ଆମ ବାପ ଅଜାଙ୍କର ବ୍ୟବସାୟ–

ବସୁ– ଶ୍ରୀଧର, ମୁଁ ତାହା ବିଶ୍ୱାସ କରେ– କହିପାର ବିନ୍ଧ୍ୟାର କାନ୍ତିକୁ କି ରଙ୍ଗରେ ତୂଳି ଦେବ ?

ଶ୍ରୀଧର– ସ୍ୱର୍ଣ୍ଣର ଆଭା ତ ହରିଦ୍ରା–ଗୌର–

ବସୁ– ନା ମହାରଣା, ସେ ଯେ ଶ୍ୟାମାଙ୍ଗୀ ଥିଲା।

ଶ୍ରୀଧର– ଓହୋ, ତା'ହେଲେ ସ୍ୱର୍ଣ୍ଣପିଣ୍ଡ ପରିବର୍ତ୍ତେ କୃଷ୍ଣଶିଳା ହିଁ ଏ ସ୍ଥାନରେ ବେଶୀ ପ୍ରୟୋଜନ ମହାରାଜ !

ବସୁ– କୃଷ୍ଣଶିଳା ? ନା ଶ୍ରୀଧର, ସାମାନ୍ୟ ଶିଳାଖଣ୍ଡ ଉପରେ ବିନ୍ଧ୍ୟାର ବନ୍ଧୁରତ୍ୱ ଆଣିବ ସିନା– ପ୍ରଭାମୟ ତ କରିପାରିବ ନାହିଁ–

ଶ୍ରୀଧର– ମଣିମା, ଏହିକ୍ଷଣି ଯେ କହିଲେ ସେ ଥିଲେ ଶ୍ୟାମାଙ୍ଗୀ ବୋଲି; କିନ୍ତୁ ସ୍ୱର୍ଣ୍ଣପିଣ୍ଡରେ ଘନବର୍ଣ୍ଣ ଫୁଟାଇବା ଅସାଧ୍ୟ ନ ହେଲେ ବି ସମୟସାପେକ୍ଷ–

ବସୁ– ଦେଖ, ସମୟ ବିଷୟ ଭାବ ନାହିଁ। ଅନନ୍ତକାଳ ବହିଗଲେ ବି ମୋ ମନରେ ଦୁଃଖର କାରଣ କିଛି ନାହିଁ।

ଶ୍ରୀଧର– କିନ୍ତୁ ମହାରାଜ–

ବସୁ– କ'ଣ ? କହ ଶ୍ରୀଧର–

ଶ୍ରୀଧର– ହଁ ସେ ବିଧି– ଅର୍ଥାତ୍ ଆପଣ ଉଦ୍ୟାନ ସମୀପ ତୁଳସୀ ବୃକ୍ଷ ଚଉତରା ଉପରେ ଏକ

ବଂଶଦଣ୍ଡ ପ୍ରୋତ୍‌ଥିତ କରାଇ ପ୍ରତି ରାତ୍ର ଅର୍ଦ୍ଧଯାମରେ ଗୋଟିଏ ତାମ୍ରପେଟିକା ଭିତରେ ଦୀପାବଳୀଟିଏ ଜଳାଇ ନମସ୍କାର ନ କରିବା ପର୍ଯ୍ୟନ୍ତ ଜଳସ୍ପର୍ଶ କରିବେ ନାହିଁ। ଏ ଶାସନ ଶିଳ୍ପ–ଗ୍ରନ୍ଥରେ ଲିପିବଦ୍ଧ ରହିଚି। ମୁଁ ସେଇ ଶାସନର ଶିଷ୍ୟ ଓ ସେବକ ମାତ୍ର। (ପ୍ରଣତ ହେଲେ)

ବସୁ– ତଥାସ୍ତୁ–

ଶ୍ରୀଧର– ତେବେ ମୁଁ ଆସୁଛି, ମହାରାଜ–

ବସୁ– ଆସ ଶ୍ରୀଧର। (ଶ୍ରୀଧର ନିଷ୍କ୍ରାନ୍ତ)

(ପଟ୍ଟ ପରିବର୍ତ୍ତନ)

## ପଞ୍ଚମ ଦୃଶ୍ୟ

[ ବିନ୍ଦୁ ସରୋବର– କମଣ୍ଡଳୁ ଧରି ଶ୍ରୀଧର ମହାରଣା ସ୍ନାନ ସାରି ଓଁ କାର ତୋଳି ପ୍ରଣାମ କଲେ। ପାଖରେ ଗୈରିକବସନା ଜଣେ ରୂପସୀ ଯୋଗିନୀ ]

ଶ୍ରୀଧର– "ଜବାକୁସୁମସଂକାଶମ୍ କାଶ୍ୟପେୟମ୍ ମହାଦ୍ୟୁତିମ୍।"

ଯୋଗିନୀ– ଆପଣ କାହା ସ୍ତୋତ୍ର ଧ୍ୟାନ କରୁଛନ୍ତି ?

ଶ୍ରୀଧର– କାହିଁକି ମା, ଏ ଯେ ସୂର୍ଯ୍ୟଙ୍କର ସ୍ତୋତ୍ର–

ଯୋଗିନୀ– ସୂର୍ଯ୍ୟସ୍ତୋତ୍ର ? ଶୁଣିଛି, କଳିଙ୍ଗଶିଳ୍ପ ସାରା ଭାରତରେ ପ୍ରତିଷ୍ଠା ପାଇଛି– କୋଣାର୍କ ପରା ସୂର୍ଯ୍ୟଦେବଙ୍କର ମନ୍ଦିର ?

ଶ୍ରୀଧର– ହଁ ମା, ପଚାରିପାରେ କି ଆପଣ କେଉଁ ଅଭିପ୍ରାୟରେ ତୀର୍ଥାଟନ କରୁଛନ୍ତି ? ଦେଖିଲେ ମନେହୁଏ ଆପଣ ଜଣେ ବିଦୁଷୀ–

ଯୋଗିନୀ– ତୀର୍ଥାଟନ ଅଭିପ୍ରାୟ ? କଳିଙ୍ଗର ପ୍ରତି ଶିଳାଖଣ୍ଡ କି ମୁକ୍ତିବାଣୀ ଜଗତକୁ ଶୁଣାଏ– ସେଇୟା ଶୁଣିବା ପାଇଁ ମୁଁ କଳିଙ୍ଗର ଦ୍ୱାରଦେଶରେ ଭିକ୍ଷାର୍ଥିନୀ।

ଶ୍ରୀଧର– ମା, ଏଠାରେ ବିଶ୍ରାମ କରିବାର ସମସ୍ତ ସୁବିଧା ପାଇଛନ୍ତି ? ନା ମୁଁ କିଛି ସାହାଯ୍ୟ କରିପାରେ ?

ଯୋଗିନୀ– ଭଦ୍ର, କହିଛି ପରା କଳିଙ୍ଗର ପ୍ରତିବୃକ୍ଷ, ପ୍ରତିଲତା ଅନ୍ତରାଳରେ ବିମୋହନ ବିଶ୍ରାମର ସ୍ଥାନ ଅଛି– ମୁଁ ପ୍ରକୃତି ପୂଜାରିଣୀ– ତେଣୁ ଖଣ୍ଡଗିରିର ନିର୍ଜନ ଗୁମ୍ଫାରେ ମୁଁ କିଛିଦିନ ପାଇଁ ଅବସ୍ଥାନ କରୁଛି।

ଶ୍ରୀଧର– ମା, ଗୁହା ନିକଟରେ ପହଞ୍ଚାଇ ଦେଇପାରେ– ଯଦି ଅନୁମତି ଦିଅନ୍ତି–

ଯୋଗିନୀ– ତୁମର ପରିଚୟ ତ ଦେଲ ନାହିଁ ଭଦ୍ର !

ଶ୍ରୀଧର– ମୁଁ କଳିଙ୍ଗ ଶିଳ୍ପୀ– ଶ୍ରୀଧର ମହାରଣା–

ଯୋଗିନୀ– ଶିଳ୍ପୀ, ତାହାହେଲେ ମୁଁ ବୁଝୁଚି– ଭୁବନେଶ୍ୱର ଓ ଖଣ୍ଡଗିରିର ଅଜସ୍ର ଶିଳାଦେହରେ ଏହି ହାତର ନୈପୁଣ୍ୟ ସଙ୍କେତ ଅଛି ନା ?

ଶ୍ରୀଧର– ମା, ଶିଳ୍ପ ସୂକ୍ଷ୍ମକଳା, ପ୍ରତିଦିନ ଟିକିଏ ଅଭ୍ୟାସ ନ କଲେ ଚକ୍ଷୁ ଓ ହସ୍ତର ଶୈଳୀ ମୂର୍ତ୍ତି ଉପରେ ଠିକ୍ ରୂପ ଧରେ ନାହିଁ।

ଯୋଗିନୀ– ବେଶ୍, ମୁଁ ଯାହା ଖୋଜୁଥିଲି ତାହା ପାଇପାରିଛି ବୋଧହୁଏ–

ଶ୍ରୀଧର– ମା, ଅନୁମତି ଦିଅନ୍ତୁ, କି ଭଳି କାର୍ଯ୍ୟରେ ମୁଁ ଆପଣଙ୍କୁ ସାହାଯ୍ୟ କରିପାରିବି ?

ଯୋଗିନୀ— ଦେଖ ଭଦ୍ର, ଯୋଗିନୀ ପାଖରେ ମୂର୍ତ୍ତିପୂଜାର ମୂଲ୍ୟ ନାହିଁ। ତଥାପି ମର୍ମେ ମର୍ମେ ଜୀବନର ଯେଉଁ ଶେଷ ଅଭିନୟଟିକ ବଡ଼ ଯତ୍ନରେ ହୃଦୟରେ ଧରି ଚାରିଣୀ ହୋଇଛି, ସେଇ ଛବିକୁ, ସେଇ ଧାରଣାକୁ ବା ସେଇ ଭାବନାକୁ ରୂପରେଖ ଦେଇପାରିବ କଳିଙ୍ଗଶିଳ୍ପୀ ?

ଶ୍ରୀଧର— ମା, ମୂର୍ତ୍ତି ଦେଖି ମୂର୍ତ୍ତିଗଠନ ଶିଳ୍ପ—କଳାର ନିମ୍ନସ୍ତରର କଥା— କିନ୍ତୁ ଲିଙ୍ଗରାଜଙ୍କ ଆଶୀର୍ବାଦରୁ ମୋ ପକ୍ଷରେ ଛବିର ଭାବହିଁ ଯଥେଷ୍ଟ— ପ୍ରକାଶ କରନ୍ତୁ।

ଯୋଗିନୀ— ତେବେ ଶୁଣ ଭଦ୍ର, ତମାଳଶାଖାରୁ ତ୍ରସ୍ତା ଶୁକ ପକ୍ଷୀଟିଏ ଗୋଟିଏ ରମଣୀର ସ୍କନ୍ଧଦେଶକୁ ଉଡ଼ି ଆସିଲା— ରମଣୀର କର୍ଣ୍ଣଭୂଷା ପଦ୍ମକୋରକକୁ ଚଞ୍ଚୁଦ୍ୱାରା କ୍ଷତ କଲା। ସେ ଚିତ୍କାର କରି ଅତି ନିକଟରେ ଏ ମଧୁର ଅଭିନୟ ଦେଖୁଥିବା ସୁଠାମ ଯୁବକକୁ ଏ ବିପଦରୁ ରକ୍ଷା କରିବା ପାଇଁ ଅନୁରୋଧ କଲା। ସୁଶ୍ରୀ ଯୁବକଟି ଶୁକପକ୍ଷୀକୁ ରମଣୀର ସ୍କନ୍ଧ ଦେଶରୁ ଛିନ୍ନ କରି ନେଇଯିବା। ନେଇଯିବା ଅଭିପ୍ରାୟରେ ଆକର୍ଷଣ କରନ୍ତେ ତାହା ବିହ୍ୱଳ ହୋଇ ଯୁବକର ପ୍ରଶସ୍ତ ବକ୍ଷଉପରେ ଚଞ୍ଚୁ ଓ ନଖଦ୍ୱାରା ଏପରି ଆଘାତ କଲା, ଯାହା ଫଳରେ...

ଶ୍ରୀଧର— ମା, ଚୁପ୍ ହୋଇଗଲେ ଯେ—

ଯୋଗିନୀ— ଫଳରେ ଏକ ରକ୍ତସ୍ରାବ ଦେଖାଗଲା— ରମଣୀ ଏ ଆକସ୍ମିକ ବିପତ୍ତି ଦେଖି ନିଜର ଅଧର ବସାଇ କ୍ଷତସ୍ଥଳରୁ ରକ୍ତଧାର ବନ୍ଦ ନ ହେବା ପର୍ଯ୍ୟନ୍ତ ଉଷ୍ଣରକ୍ତ ଟାଣି ଆଣୁଥାଏ— ସେଇ ଭଙ୍ଗୀ, ସେଇ ହୃଦୟର ହୃଦୟମିଶା ଯୁବତୀର ରକ୍ତାଧାର— ଯୁବକର ବିସ୍ମୟ— ଭାବାବେଶ—ପକ୍ଷୀର କୋରକ ଦଂଶନ— ସବୁ ଯେପରି ଏକ ନିପୁଣ ଶିଳ୍ପଚାତୁରୀରେ ଜୀବନ୍ତ ହେବ— କରିପାରିବ ଶିଳ୍ପୀ ?

ଶ୍ରୀଧର— ମା, ଆପଣଙ୍କର ସନ୍ତାନ ଏ ଚିତ୍ର ପରିବେଷଣ କରିପାରିବ—

ଯୋଗିନୀ— କରିପାରିବ ? ଧନ୍ୟହେଲି। ତେବେ ମୁଁ ଆସେ। ଆଃ, ଆଜି ମୋର କି ଯେ ଆନନ୍ଦ। ଆଃ, କି ଯେ ଆନନ୍ଦ ! !

(ଧୀରେ ଅଦୃଶ୍ୟ ହୋଇଗଲେ)

(ପଟ୍ଟ ପରିବର୍ତ୍ତନ)

## ଷଷ୍ଠ ଦୃଶ୍ୟ

[ ରାଜକକ୍ଷ, ସମ୍ରାଟ୍ ବସୁଭୂମା ଓ ତାଙ୍କ ପଛେ ପଛେ ଶିଳ୍ପୀ ଶ୍ରୀଧର ମହାରଣାଙ୍କ ପ୍ରବେଶ ]

ବସୁ— ଶ୍ରୀଧର, ତୁମର ଗଢ଼ା ପ୍ରତିମୂର୍ତ୍ତିଟି ଦେଖିଲି। ସେ ତ ପ୍ରତିମା ନୁହେଁ, ଜୀବନ୍ତ ବିନ୍ଧ୍ୟା—

ଶ୍ରୀଧର— ମଣିମା, ଆପଣଙ୍କର ଭ୍ରମ ହିଁ ମୋର ଯଥାଯୋଗ୍ୟ ପୁରସ୍କାର। ଏ ବିନ୍ଧ୍ୟାର ପ୍ରତିମୂର୍ତ୍ତି କଳିଙ୍ଗଶିଳ୍ପୀ ଶ୍ରୀଧର ମହାରଣାର ରୁକ୍ଷ କର ଦୁଇଟିରେ ମୂର୍ତ୍ତିମନ୍ତ ହୋଇଚି।

ବସୁ— କର୍ଣ୍ଣର ଭୂଷଣ ଯେଉଁ ପଦ୍ମକୋରକ ଖଞ୍ଜିଛ ତାହା ସେ ଦୁଷ୍ଟ ବିହ୍ୱୋଷ୍ଟଦ୍ୱାରା ଛିନ୍ନ ଭିନ୍ନ ହୋଇଥିଲା, ମୋର ଠିକ୍ ସ୍ମରଣ ଅଛି; କିନ୍ତୁ ହେ କଳିଙ୍ଗଶିଳ୍ପୀ ! ଅକ୍ଷୁଣ୍ଣ ଜୀବନ୍ତ ପ୍ରତିମାରେ

ଚନ୍ଦ୍ରଠାରେ କଳଙ୍କ ନ୍ୟାୟରେ– ଏ ଭୁଲ କଲ କାହିଁକି ? ବିନ୍ଧ୍ୟା ତାମ୍ବୁଳ ସେବନ କରେ ନାହିଁ, ଅନ୍ତତଃ ମୁଁ କେବେ ଦେଖି ନାହିଁ। ତା'ର ଅଧର ଯେ ରକ୍ତବର୍ଣ୍ଣ ଦିଶୁଛି–

ଶ୍ରୀଧର– କଳିଙ୍ଗଶିଳ୍ପୀର ଭୁଲ୍। ଏ ଭୁଲ୍‌କୁ ମୁଁ ଭୁଲ୍ ବୋଲି ସ୍ୱୀକାର କରେ ନାହିଁ। ବିନ୍ଧ୍ୟାର ପ୍ରତିମାଗଠନ ମୁଁ ଯେଉଁଦିନ ଶେଷ କଲି, ସେଦିନ ଘଟଣାଚକ୍ରରେ ଅନ୍ୟ ଏକ ଗ୍ରାହକଙ୍କଠାରୁ ଏକ ଶିଳ୍ପଯୋଜନାର ନମୁନା ପାଇଲି। ସେ ଯାହା ଚିତ୍ରର ଭାବ ଦେଲେ ତାହା ମୋତେ ଅସାମାନ୍ୟ ବୋଧ ହେଲା। ତାଙ୍କର ଚିତ୍ରକଳ୍ପନା ମୋ ହୃଦୟରେ ଘନୀଭୂତ ହୋଇ ରୂପାକାର ହେବା ସମୟରେ ମୁଁ ବିନ୍ଧ୍ୟା ପ୍ରତିମାର ଅଧରରେ ଶେଷଥର ତୁଳି ଦେଇଛି। ଜାଣେ ନା କାହିଁକି ତୁଳି ମୋ'ର ଏକଧାର ରକ୍ତ ଏଭଳି ସୁଷମାଯୁକ୍ତ ଅଧରରେ ବୋଳିଦେଲା– ଅପରାଧ କ୍ଷମା କରିବେ।

ବସୁ– ଶୁଣ ଶ୍ରୀଧର ! ବିନ୍ଧ୍ୟାର ସେଇ ଡାକ, "ବିମ୍ବୋଷ୍ଠ, ତୋ'ର ସାଥୀ ତତେ ବଡ଼ କାତରପ୍ରାଣରେ ଡାକୁଛି ତୁ ଫେରି ଆ–" ଏଇ ଏକକଥା ବାରମ୍ବାର ଉଦ୍ୟାନଗର୍ଭରେ ପ୍ରତିଧ୍ୱନିତ ହେଲା ଓ ପ୍ରତିଥର ବିନ୍ଧ୍ୟା ମୋ ଆଡ଼େ କଟାକ୍ଷ ନିକ୍ଷେପ କରି ମୋତେ ବ୍ରତଭଙ୍ଗ ଉଦ୍ଦେଶ୍ୟରେ ବିଚଳିତ କରୁଥାଏ– ମୁହୂର୍ତ୍ତକ ପରେ ଦେଖିଲି ବିମ୍ବୋଷ୍ଠ ପକ୍ଷ ବିସ୍ତାର କରି ବିନ୍ଧ୍ୟାର ସ୍କନ୍ଧ ଉପରକୁ ଉଡ଼ିଆସିଲା ଓ ବାରମ୍ବାର ତା'ର କର୍ଣ୍ଣଭୂଷା ପଦ୍ମକୋରକକୁ ଚଞ୍ଚୁରେ ଆଘାତ କଲା–

ଶ୍ରୀଧର– ମଣିମା, ଏତିକି ଶିଳ୍ପୀ ପକ୍ଷରେ ଯଥେଷ୍ଟ– ତା'ପରେ ଯାହା ଘଟିଚି ତାହା ହିଁ ଶିଳ୍ପରେ ଫୁଟି ଉଠିଛି।

ବସୁ– କି ଆଶ୍ଚର୍ଯ୍ୟ କଳିଙ୍ଗଶିଳ୍ପୀ, କାହିଁକି ଏ ଭୁଲ କଲ ?

ଶ୍ରୀଧର– ପ୍ରଭୋ, ତା'ପରେ ଘଟଣା ଏ ଚିତ୍ର ବ୍ୟକ୍ତ କରିବ।

(ରଙ୍ଗମଞ୍ଚ ମଧ୍ୟସ୍ଥଳରେ ଆଲୋକସଂପାତ ମଧ୍ୟରେ ଦେଖାଗଲା ବିନ୍ଧ୍ୟାର ଜୀବନ୍ତ ମୂର୍ତ୍ତି)

ବସୁ– ଏ ଯେ ମୋର ବିନ୍ଧ୍ୟା– ପ୍ରାଣର ବିନ୍ଧ୍ୟା। (ଅତୀନ୍ଦ୍ରିୟ ଭାବାବେଶରେ ଢଳି ପଡ଼ିଲେ)

(ଦୁଇଜଣ ବୌଦ୍ଧ ସନ୍ନ୍ୟାସୀ ହାତରେ ଖଣ୍ଡିଏ ପ୍ରସ୍ତର ଧରି ପ୍ରବେଶ କଲେ। ଦୁହିଁଙ୍କର କଣ୍ଠରୁ ଶୁଣାଯାଉଥିଲା 'ବୁଦ୍ଧଂ ଶରଣଂ ଗଚ୍ଛାମି' 'ଧର୍ମ୍ମଂ ଶରଣଂ ଗଚ୍ଛାମି' 'ସଂଘଂ ଶରଣଂ ଗଚ୍ଛାମି' ସ୍ତୋତ୍ର)

ପ୍ରଥମ ଭିକ୍ଷୁ– କଳିଙ୍ଗ ସମ୍ରାଟ୍ ବସୁଭୂମା ଏଠାରେ ଉପସ୍ଥିତ ବୋଧହୁଏ।

ଶ୍ରୀଧର– ହଁ ସନ୍ନ୍ୟାସୀ, କିନ୍ତୁ ସମ୍ରାଟ୍ ଏ ମୁହୂର୍ତ୍ତରେ....

ବସୁ– (ଧୀରେ ଉଠି) ନା ଶ୍ରୀଧର, ମୁଁ ସମ୍ପୂର୍ଣ୍ଣ ପ୍ରକୃତିସ୍ଥ, ଭବିଷ୍ୟତର ଦିଗ୍‌ବଳୟତଳେ କଳିଙ୍ଗ–ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଯେ ବିଶ୍ୱବିଶ୍ରୁତ ହେବ, ତାହାରି ଆଚ୍ଛନ୍ନ ରୂପକୁ ମୁଁ ଉପଲବ୍ଧି କରୁଥିଲି। କେତେ ବିଦେଶୀ ତୀର୍ଥ–ପରିବ୍ରାଜକ କଳିଙ୍ଗର ବାଟେ ଘାଟେ ପବିତ୍ର ଧୂଳି ଉଡ଼ାଇ ଆସି ତା'ର ଦେବ ଦେଉଳ ଗିରିଗାତ୍ର ଚତ୍ୱର ମଣ୍ଡପକୁ ପର୍ଯ୍ୟବେକ୍ଷଣ କରିବେ। ଆଉ ଦେଖିବେ ମୃତ୍ୟୁଞ୍ଜୟରୂପ

ଏଇ କୋଣାର୍କ, ଭୁବନେଶ୍ୱରର ଭାସ୍କର୍ଯ୍ୟକୁ। ମୁଁ ଚାଲିଯାଇଥିବି ଶ୍ରୀଧର, ତୁମେ ବି କାଳର ଆହ୍ୱାନରେ ଅନ୍ତର୍ହିତ ହୋଇଯାଇଥିବ; କିନ୍ତୁ ରହି ଯାଇଥିବ ତୁମର ଓ ତୁମର ବଂଶଧରମାନଙ୍କର ଶିଳାକୀର୍ଣ୍ଣ କଳାସମ୍ଭାର। ଶ୍ରୀଧର, ତୁମକୁ କିପରି ଭାବରେ ବନ୍ଦନୀୟ କରିବି, କିପରି କଳିଙ୍ଗ ଶିଳ୍ପୀର ଜୟଗାନ କରିବି ମୁଁ ସ୍ଥିରକରିପାରୁ ନାହିଁ। ତୁମେ ମତେ କହିଦିଅ ଶିଳ୍ପୀ !

ଶ୍ରୀଧର– ମୁଁ କୃତଜ୍ଞ ସମ୍ରାଟ, ଏତିକିରେ କୃତଜ୍ଞ, ମୋ'ର ଆଉ କିଛି ଅଭିଳାଷ ନାହିଁ। ମୋର ମନ ଚାହୁଁଥିଲା ଏଇ "ଶୁକପକ୍ଷୀ" ଶିଳ୍ପକୁ ମୁଁ ଆପଣଙ୍କ ଚରଣତଳେ ମୋ'ର ସାଧନାର ସ୍ୱାକ୍ଷର ଭାବରେ ନିବେଦନ କରିବି କିନ୍ତୁ ନା, ଏ ଶିଳ୍ପଟିର ଗ୍ରାହକ ଅଛନ୍ତି, ସେ ଯେ କୌଣସି ମୁହୂର୍ତ୍ତରେ ଉପସ୍ଥିତ ହୋଇ ମୋଠାରୁ ତାହା ନେଇଯିବେ।

ଦ୍ୱିତୀୟ ବୌଦ୍ଧଭିକ୍ଷୁ– ସେ ଆଉ ଆସିବେ ନାହିଁ। ଆପଣ ନିଶ୍ଚିନ୍ତ ରହନ୍ତୁ।

ଶ୍ରୀଧର– ଆସିବେ ନାହିଁ ?... ସେଇ ଯେ ସେ ଯୋଗିନୀ, ପ୍ରଭାତରେ ଅସ୍ପଷ୍ଟ ଆଲୋକତଳେ ଯାହାଙ୍କର ଦିବ୍ୟକାନ୍ତି, ମାତୃରୂପ ଏବେ ବି ମୋ'ର ହୃଦୟରେ ଅଙ୍କିତ ରହିଛି, ସେ ଆସିବେ ନାହିଁ ? ଶିଳ୍ପଟିର ଭାବ ଯେତେବେଳେ ସେ ପରିବେକ୍ଷଣ କରୁଥିଲେ ସେତେବେଳେ ତାଙ୍କ ଆଖି ଦୁଇଟି ଅଶ୍ରୁସିକ୍ତ ଥିଲା। ଅଧର ଘନ ଘନ କମ୍ପିତ ହେଉଥିଲା, ବକ୍ଷ ଭିତରୁ ଉଦ୍‌ଗତ ପ୍ରଶ୍ୱାସକୁ ପ୍ରାଣପଣେ ଦମନ କରି ସେ...

ବସୁ– ସେ କିଏ ? କହ ଶ୍ରୀଧର, ସେ କିଏ ? ସେ କଅଣ ସେହି ?

ପ୍ରଥମ ଭିକ୍ଷୁ– ମୁଁ କହୁଛି ସମ୍ରାଟ୍, ସେଇ ପବିତ୍ର କର୍ମର ଦାୟିତ୍ୱ ଘେନି ଆମେ ଦୁହେଁ ରାଜ ସମକ୍ଷରେ ଉପସ୍ଥିତ। କାଳର ଗଭୀର ଅବକ୍ଷୟତଳେ ଏ ବାର୍ତ୍ତା ହୁଏତ ଲୁଚିଯିବ; କିନ୍ତୁ କଳିଙ୍ଗଶିଳ୍ପୀର ଶିଳ୍ପଚାତୁରୀକୁ କାଳ ପୋଛିପାରିବ ନାହିଁ। ଲିଙ୍ଗରାଜ ଦେବାଳୟର ଶ୍ରୀକୁ ନିଜ ଅଙ୍ଗରେ ପ୍ରତିବିମ୍ବିତ କରୁଥିବା ବିନ୍ଦୁସରୋବର ଆଜି ଅଛି, ଭବିଷ୍ୟତରେ ରହିଥିବ, ଅଥଚ ଏଇ ଶିଳ୍ପୀର କୁଟୀରର ଚିହ୍ନ ନ ଥିବ କିମ୍ବା ଯେଉଁ ଭୂମି ଉପରେ ପଦ୍ମାସନରେ ଉପବେଶନ କରି ଯୋଗିନୀ 'କଳିଙ୍ଗଶିଳ୍ପୀ'କୁ ଶୁକପକ୍ଷୀ ଗଚ୍ଛ ନିର୍ମାଣ ପାଇଁ ନିବେଦନ କରୁଥିଲେ, ସେ ଭୂମି ଆଉ ନଥିବ, ସବୁ କାଳର ଅମୋଘ ନିର୍ଦ୍ଦେଶରେ ବିଲୀନ ହୋଇଯାଇଥିବ।

ଶ୍ରୀଧର– ତେବେ ସେ ଗଲେ କୁଆଡ଼େ ?– ସେଇ ଯେ ଯୋଗିନୀ ?

(ଅସ୍ଥିରତା ପ୍ରକାଶ କଲେ)

ଦ୍ୱିତୀୟ ଭିକ୍ଷୁ– ତାଙ୍କର ତ ଏଇମାତ୍ର ଯାତ୍ରାର ଆରମ୍ଭ ହେଲା; କିନ୍ତୁ ଏ ଯାତ୍ରାର ଆଦ୍ୟ ପ୍ରେରଣା ସେ ପାଇଲେ ମହାନ୍ ପ୍ରେମାନୁଭୂତିରୁ। ଆତ୍ମୋତ୍ସର୍ଗ ଉପରେ ପ୍ରତିଷ୍ଠିତ ଏଇ ପବିତ୍ରତମ ପ୍ରେମ ଆଜି ତାଙ୍କୁ ନୀରବ କରିଦେଇଛି; କେବଳ ଶୁଭୁଛି ତାଙ୍କର ଚରଣପାତ କଳିଙ୍ଗର ବନ ପର୍ବତ ଜନପଦ ଭୂମି ଉପରେ– ସେ ଶେଷ ହୋଇଯାଇ ଅଶେଷ ହୋଇଯାଇଛନ୍ତି ଏବଂ ଏହା ହିଁ ତଥାଗତ ବୁଦ୍ଧଙ୍କ ବାଣୀ, ତାହା ହିଁ କଳିଙ୍ଗ ଜୀବନର ମନ୍ତ୍ର ହେଉ।

ଶ୍ରୀଧର– ତେବେ ସମ୍ରାଟ୍, ଆପଣଙ୍କର ଜୀବନର ଏଇ ସୁନ୍ଦର କରୁଣ ଅଧାୟଟିକୁ ରୂପ ଦେଇଥିବା ଏଇ ନଗଣ୍ୟ କଳିଙ୍ଗଶିଳ୍ପୀ ଆଜି ବିନମ୍ର ନିବେଦନ କରୁଛି– ଏଇ ଶିଳ୍ପଟିକୁ ଆପଣ ଗ୍ରହଣ କରନ୍ତୁ।

ପ୍ରଥମ ଭିକ୍ଷୁ– ନା, ନା, ଆମେ ସେ କାର୍ଯ୍ୟ କରିବାକୁ ଆସିଛୁ, ଆମକୁ ବଞ୍ଚିତ କରନ୍ତୁ ନାହିଁ– ଏଇ ଦେଖନ୍ତୁ ଯୋଗିନୀଙ୍କର ନିର୍ଦ୍ଦେଶ ଏଥିରେ ରହିଛି... 'କଳିଙ୍ଗଶିଳ୍ପୀ, କଳିଙ୍ଗର ରାଜା ବସୁଭୂମାଙ୍କୁ ଯୋଗିନୀ ପାଇଁ ଉଦ୍ଦିଷ୍ଟ ଶୁକପକ୍ଷୀ ଶିଳ୍ପକୁ ଉପହାର ଦିଅନ୍ତୁ'...

ବସୁ– ସେ ଯୋଗିନୀ କାହାନ୍ତି ? ଥରେ ମାତ୍ର ଯଦି... ନା, ନା, ସେ କାହାନ୍ତି ? ହାୟ, ଅଦୃଷ୍ଟ ! (କଣ୍ଠ ଅଶ୍ରୁସିକ୍ତ)

ପ୍ରଥମ ଭିକ୍ଷୁ– କହିଛି ସମ୍ରାଟ୍, କାଳ ତାଙ୍କୁ ଗ୍ରହଣ କରିନେଇଛି, ତା'ର ଅନନ୍ତ ମୂର୍ତ୍ତି ଭିତରେ। ଏଇ ଶୁଣନ୍ତୁ ସମ୍ରାଟ୍, ସାଗରର ଉଲ୍ଲସିତ କଲ୍ଲୋଳର ଭାଷା, ଏଇ ଭାଷା ମଧ୍ୟରେ ଆଦିମ ମନୁଷ୍ୟ ଠାରୁ ସଭ୍ୟଜଗତର ଭାଷା ଲୁଚିଯାଇଛି। ତାଙ୍କର ବାଣୀ ସେଇଥିରେ ମିଶିଯାଇଛି।

ଶ୍ରୀଧର– କୁହ ଭିକ୍ଷୁ ! ତୁମେ ତାଙ୍କୁ ଦେଖିଛ, ସେଇ ଯୋଗିନୀକୁ ଦେଖିଛ, କ'ଣ ତାଙ୍କର ଶେଷ ନିବେଦନ ଥିଲା ? ମୋ ପ୍ରତି କିଛି ବକ୍ତବ୍ୟ ଥିଲା କି ?

ପ୍ରଥମ ଭିକ୍ଷୁ– ସେ କେବଳ ଏତିକି କହି ଆମମାନଙ୍କଠାରୁ ଅନ୍ତିମ ବିଦାୟ ନେଉଥିଲେ... କହିଥିଲେ– କଳିଙ୍ଗଶିଳ୍ପୀର ଜୟ ହେଉ, ଉଦାର ମାନବିକତାରେ କଳିଙ୍ଗର ଧୂଳିକଣା ପରିପୂର୍ଣ୍ଣହେଉ–

ବସୁ– ଆଉ ? ଆଉ ?

ପ୍ରଥମ ଭିକ୍ଷୁ– ସାଶ୍ରୁଲୋଚନା ସେଇ ଯୋଗିନୀ ଆଉ ଗୋଟିଏ ମାତ୍ର ପଦ କହିଥିଲେ– ବିନ୍ଧ୍ୟାର ମୃତ୍ୟୁ ହୋଇଛି– ସେଇ ମୃତ୍ୟୁରୁ ଜନ୍ମ ନେଇଥିଲା ଯୋଗିନୀ, ସେ ବି ଆଜି କାଳର ତିମିରିତ ତୀରରେ ମିଶିଯାଇଛି– କଳିଙ୍ଗ ସମ୍ରାଟ ବସୁଭୂମାଙ୍କର ଜୟ ହେଉ।

ବସୁ– (ଅସ୍ପଷ୍ଟ ସ୍ୱରରେ)– ବିନ୍ଧ୍ୟା ! ଯୋଗିନୀ !

(ଦୁଇ ଭିକ୍ଷୁ "ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି" ଗାୟନ କରି ଧୀରେ ଚାଲିଯାଇଥିଲେ। ସେହି ଆଡ଼କୁ ଲକ୍ଷ୍ୟ କରି ସାଶ୍ରୁଲୋଚନ ବସୁଭୂମା ଓ ସ୍ତବ୍ଧ ଶ୍ରୀଧର ମହାରଣା ଚିତ୍ରପ୍ରତିମା ଭଳି ଛିଡ଼ା ହୋଇ ରହିଥିଲେ। ଏକ କରୁଣ–ଆବହ ସଙ୍ଗୀତର ମୂର୍ଚ୍ଛନା ରଙ୍ଗଭୂମିର ବାହାରେ ଓ ଭିତରେ ଅଭିନବ କାରୁଣ୍ୟ ଢାଳିଯାଇଥିଲା।)

(ଯବନିକା)



# ବିଶ୍ୱ ଦେବତା

## ପ୍ରଥମ ଦୃଶ୍ୟ

[ ଯନ୍ତ୍ରର ଏକ ମହାକାୟ ଚକ୍ର ତଳେ ଜଣେ ବ୍ୟକ୍ତି ରକ୍ତାକ୍ତ ଅବସ୍ଥାରେ ଭୂଇଁରେ ଲୋଟୁଛି। ଦୃଶ୍ୟ ଭିତରେ ଗୋଟାଏ ଯନ୍ତ୍ର କାରଖାନା। କେତେଜଣ ଯନ୍ତ୍ରଚାଳକ 'ହାୟରେ ହାଏଁ' କରି ଆଗକୁ ଝୁଙ୍କି ପଡୁଛନ୍ତି; ପୁଣି ପଛକୁ ଝୁଙ୍କି ଆସୁଛନ୍ତି। ସେମାନଙ୍କର ଶରୀର କୃଷ୍ଣବର୍ଣ୍ଣ, ଆଖି କୋଟରଗତ, ହାତର ଓ ଗୋଡ଼ର ଶିରା ମୋଟା ଓ ଫୁଲା; ଅନ୍ୟ ଦିଗରେ କେତେଜଣ ଶ୍ରମିକ, କେହି ଗୋଟାଏ ହାତ ହରାଇଛି, କାହାର ଗୋଟିଏ ଗୋଡ଼ ନାହିଁ, କାହାର ଆଖି ଡୋଳା ବାହାରି ପଡ଼ିଛି– ଏହି ଅବସ୍ଥାରେ କଳର ଫର୍ଣ୍ଣେସ ଭିତରେ କୋଇଲା ଢାଳୁଛନ୍ତି। ପାଖରେ ମ୍ୟାନେଜର ଛିଡ଼ା ହୋଇଛନ୍ତି– ବଡ଼ ବଡ଼ ନିଶ, ମୁଣ୍ଡରେ ହ୍ୟାଟ, ହାତରେ ଚାବୁକ– ସଟାଂ ସଟାଂ ଚାବୁକ ମାରୁଛନ୍ତି। ପ୍ରତିଥର ଚାବୁକ୍ ପ୍ରହାରରେ ଲୋକଙ୍କ ମୁହଁରୁ ଆର୍ତ୍ତଚିତ୍କାର ଉଠୁଛି। ଯନ୍ତ୍ରର ଘର୍ଘର ଶବ୍ଦ, ମ୍ୟାନେଜରଙ୍କର ଠୋ ଠୋ ହସ, ଲୋକମାନଙ୍କର ମର୍ମାନ୍ତିକ ଚିତ୍କାର– ସବୁ ମିଶି ଗୋଟାଏ ପ୍ରଚଣ୍ଡ ରୋଳ ଉଠୁଛି। ]

(ଅନ୍ଧକାର ମଧ୍ୟରେ ସ୍କ୍ରିନ ଉଠିଲା)

ମ୍ୟାନେଜର– ହୁସିଆର୍, ହୁସିଆର୍ ଚଳା ଯନ୍ତ୍ର; ଫାଙ୍କିଦେବ ତ ଏଇ ଚାବୁକ୍! (ଚାବୁକ ଉଞ୍ଚାଇଲେ)

(ସମବେତ କଣ୍ଠରୁ 'ମରିଗଲୁ, ମରିଗଲୁ' ଶବ୍ଦ)

ମ୍ୟାନେଜର– ମରିବାପାଇଁ ତମର ଜନ୍ମ। ତମେ ଯେତିକି ମରିବ, ଯେତିକି ଯନ୍ତ୍ରର ଚକତଳେ ଛିନ୍ନଭିନ୍ନ ହୋଇଯିବ ସେତିକି ମୋର ମାଲିକର ପୁଞ୍ଜି ବଢ଼ିବ। (ଭିତରକୁ ଚାହିଁ) ଚଳାଅ ଯନ୍ତ୍ର।

(ହାଏରେ ହାଏଁ ଶବ୍ଦ କରି ଲୋକଗୁଡ଼ାକ ଆଗକୁ ଝୁଙ୍କି ପଛକୁ ହଟି ଆସୁଥିଲେ।)

ଜଣେ ବ୍ୟକ୍ତି– ହଜୁର, ଗୋଟାଏ ଲୋକ ଚକତଳେ ମରିଗଲା।

ମ୍ୟାନେଜର– ମରିଗଲା, ହାଃ ହାଃ, ବଡ଼କଥା ନୁହେ। ମଲାଣି ଯେତେବେଳେ ତାକୁ ଭିଡ଼ିନେଇ ଫୋପାଡ଼ି ଦିଅ; ବାସ୍, କାମ ଶେଷ।

ଦ୍ୱିତୀୟ ବ୍ୟକ୍ତି– ମରିଗଲା, ଫୋପାଡ଼ି ଦେବୁ? କେଡ଼େ ସହଜରେ ଏ କଥା କହିଦେଲେ ମ୍ୟାନେଜର ବାବୁ!

ମ୍ୟାନେଜର– ଚୁପ୍‌କର (ଚାବୁକ ଉଠାଇଲେ) ସହଜ? ତାହାଠାରୁ ଆହୁରି ସହଜ କଥା କହୁଛି; ଶୁଣିବ? ଶୁଣିବ?

(ସମସ୍ତେ ନୀରବ)

ତମଭଳି ଗୁଡ଼ାଏ ପୋକ ମାଛି ମରିଗଲେ ଏ ଦୁନିଆରେ କିଛି ଓଲଟ ପାଲଟ ହେବ ନାହିଁ। ପୁଞ୍ଜିପତି ଅଛନ୍ତି ତ ପୁଞ୍ଜି ଅଛି। ଯନ୍ତ୍ର ଅଛି ତ ଲୋକ ଆସିବେ, ମରିବେ। ତାଙ୍କର ଭାତ,

ରୁଟି ଲୋଡ଼ା, ଯନ୍ତ୍ର ଦେଇଛି ଏସବୁ। ନିମକହାରାମ୍, ଖଟି କାମକର। କାମ କରୁ କରୁ କାହାର ମୁଣ୍ଡ ଫାଟିଲା, କାହାର ହାତ ବଙ୍କା ହେଲା କି ଗୋଡ଼ ଛିଣ୍ଡିଗଲା କ'ଣ ହେଲା ସେଠୁ? ମରିଥାଆନ୍ତ, ମଲ। ସୁନାମୁଣ୍ଡା ନେଇ ଆସିଛ କି? ଚଲାଅ ଯନ୍ତ୍ର (ବନ୍ଦ ହୋଇଥିବା ଘର୍ଘର ଶବ୍ଦ ଚାଲୁ ହେଲା। ପୁଣି ଚାବୁକର ଶବ୍ଦ, ପୁଣି ଗଣ୍ଡଗୋଳ)

ପ୍ରଥମ ବ୍ୟକ୍ତି– ଏ ପାପ କ'ଣ କାଳ ସହିବ? କାଳ ସବୁ ଦେଖୁଛି ସବୁ ଜାଣୁଛି। କାଳ ସହିବ ନାହିଁ।

ମ୍ୟାନେଜର– କାଳ? ହାଃ, ହାଃ, କାଳ ଏଠି ସ୍ଥିର। କାଳ କିଛି ବଦଳି ନାହିଁ। ମୂର୍ଖ ଦେଖୁନ, କାମ ତମର ଯମ, ଆଜି ସେ ମାଲିକ, ପୁଞ୍ଜିପତି। ଇଛାକଲେ ସେ କାଳକୁ ଆଗକୁ ଯିବାକୁ ଦେବନି।

ଦ୍ୱିତୀୟ ବ୍ୟକ୍ତି– ଦେବ ନି?

ମ୍ୟାନେଜର– ଦେବ ନି, ଚୁପ୍‌କର, ମୁଁ ଯାହା କହୁଛି ଶୁଣ। ମୋଠୁଁ ତୋ ଜ୍ଞାନ ବେଶି? ଶୁଣ, କୋଟିପତି ହାତରେ ଆଜି ରହିଛି ଏ ଦେଶର ଶାସନ; ତା'ରି ମୂଳଧନ କିଛି ନେଇଛି ଖବରକାଗଜର ସ୍ୱାଧୀନତା, କିଣିନେଇଛି ହାଟବିପ୍‌ପଣୀର ସବୁ ଦ୍ରବ୍ୟ। ଇଛାକଲେ ତମ ପାଖକୁ ସବୁ ସେ କାଢ଼ିନେବ ତମେ ଭୋକରେ ମରିଯିବ। ତା'ର ଶକ୍ତି ପାଖରେ କାହାର ଶକ୍ତି ନାହିଁ। ସେ ଆଜି ତମର ଈଶ୍ୱର, ସେ ଆଜି ତମର ଅନ୍ନଦାତା। ନିମକହାରାମ୍, ଯେ ତୁମକୁ ରୁଟି ଦେଇଛି ତାକୁ ଗାଳି ଦେଉଛ?

(ନେପଥ୍ୟରୁ ଜଣେ ଶ୍ରମିକର ଚିତ୍କାର ଶୁଣାଗଲା– ମତେ ଛାଡ଼ିଦିଅ, ମତେ ଛାଡ଼ିଦିଅ, ସମସ୍ତେ ସେ ଆଡ଼କୁ ଲକ୍ଷ୍ୟ କଲେ।

ମ୍ୟାନେଜର– କିଏ? କୁଆଡ଼େ?

ଶ୍ରମିକ– ମୋ ମାଳ... ମୋ ମାଳ କାହି?

ମ୍ୟାନେଜର– ମାଳ, କୋଉ ମାଳ? କାହାର ତିରିଲା? ଓ, ବୁଝିଲି– ସେହି ଯେ ଲୋକଟା ପୋଡ଼ିହୋଇ ମରିଗଲା, ଯାହାକୁ ତମେ ସବୁ ଘୋଷାଡ଼ି ନେଇ ଫୋପାଡ଼ି ଦେଲ, ତା'ରି ତିରିଲା ?

ଶ୍ରମିକ– ଫୋପାଡ଼ି ଦେଲ ମୋ ସନିଆକୁ? ତମେ ସବୁ ତାକୁ କାହିଁକି ପୋଡ଼ିଦେଲ?

ମ୍ୟାନେଜର– କାହିଁକି? ସେଗୁଡ଼ାକ ପୋଡ଼ି ନ ମଲେ ତମ ଜଠର ନିଆଁ ଲିଭିବ କୁଆଡୁ? ଭାତ, ରୁଟି ଖାଇବ କେଉଁଠୁ? ଘରକୁ ଯାଆ, ତୋ ଝିଅକୁ କହିବୁ ନୂଆ ମଣିଷକୁ ଖୋଜି ନଉ, ହାତରେ ଛନ୍ଦିଧରୁ– ଘରକରୁ– ମଣିଷଗୁଡ଼ାକ ମଲେ ତାଙ୍କ ପିଲା କବିଲା ଏତେ କାନ୍ଦନ୍ତି କିଆଁ?

ବୁଢ଼ା ଶ୍ରମିକ– ହେ ଧର୍ମଦେବତା, ହେ କାଳ, ତୁ ଏସବୁ ସହିଛୁ କେମିତି? ସନିଆ ଚାଲିଗଲା– ମାଳ ମୋର ବଞ୍ଚିବ କେମିତି?

ମ୍ୟାନେଜର– ଦେଖ ହୋ, ଯା ଝିଅ ବଞ୍ଚିବ କେମିତି ତାକୁ କହ। ଆଖିରୁ ଲୁହ ପୋଛିଦେଉ, କଜଳଗାର ପିନ୍ଧୁ, ମଥାରେ ଫୁଲ ଖୋସୁ, ଆଖିରେ ଡାକୁ, ଆସିବେ ବହୁତ ଲୋକ ଆସିବେ। ପୁଣି ମାତି ଉଠିବ, ସେ ପୁଣି–

ଶ୍ରମିକ– ଚୁପ୍‌କର ସଇତାନ, ତତେ ମାରିଦେବି, ତୋ ଆଖି ଫୁଟାଇ ଦେବି, କୁକୁର, ମାଲିକର କୁକୁର।

ମ୍ୟାନେଜର– (ଚାବୁକ ମାରି) କିଏ କୁକୁର? ହାରାମଯାଦା, ପଳା, ନେ ପାଞ୍ଚଟଙ୍କା ମିଳିଛି। ମାଲିକ ଦୟାକରି ପାଞ୍ଚଟଙ୍କା ଦେବାକୁ ହୁକୁମ କରିଛି, ନେ ତୋ ଝିଅକୁ ଦେବୁ। ଯାଃ, ପଳା, ଯାଉଛୁ ନା ଦେଖିବୁ?

ଶ୍ରମିକ– ମୁଁ ଯାଉଛି, କାଳ ସହିବ ନାହିଁ। ମାଳତୀର ନିଶ୍ୱାସରେ ତୋ ଯନ୍ତ୍ର, ତୋ କଳ ପାଉଁଶ ହୋଇଯିବ। ତା ନିଶ୍ୱାସ ପଡ଼ିବ। ସନିଆକୁ ମାରିଛୁ, ପୋଡ଼ିଛୁ, ସେଥିରେ ଯେଉଁ ନିଆଁ ବାହାରିବ ତୋ ଭଳି ଅତ୍ୟାଚାରୀକୁ ପୋଡ଼ି ଛାରଖାର କରିଦେବ। ଆମେ ଛୋଟଜାତି ହୋଇପାରୁ, ହେଲେ ମୋ ମାଳର ଆତ୍ମା ଯାହା ଡାକୁଛି ତାହା ଫଳିବ। ତୁ ମରିବୁ। ତୋ ସଂସାର ଉଚ୍ଛନ୍ନ ହେବ।

ମ୍ୟାନେଜର– (ଚାବୁକ ଉଠାଇ) ଭାଗ୍–

(ଶ୍ରମିକ ଧୀରେ ଧୀରେ ଚାଲିଗଲା)

(ପୁଣି ଯନ୍ତ୍ରର ଘର୍ଘର ନାଦ... ପୁଣି ଚାବୁକ ପ୍ରହାର)

[ହଠାତ୍ ନେପଥ୍ୟରୁ ଦୁଇଜଣ ତରୁଣ ବାବାଜୀ ଧଇଁସଇଁ ହୋଇ ଦଉଡ଼ି ଆସିଲେ– ଯନ୍ତ୍ର କାରଖାନାକୁ ଦେଖି ଚକିତ ହୋଇ ଛିଡ଼ାହୋଇଗଲେ, ସେତିକିବେଳେ ଯନ୍ତ୍ରର ସିଟି ବାଜି ଉଠିଲା। ବାବାଜୀ ଦୁଇଜଣ ଶଙ୍କିଉଠି କାନ ବନ୍ଦକରି ଚିତ୍କାର କଲେ ... ଉଃ...]

ମ୍ୟାନେଜର– କିଓ, ବାବାଜୀମାନେ, ଭାବିଲ କି ଏଠି ସଦାବ୍ରତ ଖୋଲିଛି? କାମ କରିବ? ମଜୁରିଆ ହେବ?

ପ୍ରଥମ ବାବାଜୀ– (ଭୟ ଚକିତ ହୋଇ) ଏ କଅଣ?

(ପୁଣି କଳର ତୁରୀ ବାଜିଲା)

ମ୍ୟାନେଜର– ଏ ଯନ୍ତ୍ର, ଇସ୍‌କୁ ପରନାମ କରୋ। ଯେ ଭୁଖୋଁ ଜନତାକୋ ଖାନା ଦେତା ହେ...

ଦ୍ୱିତୀୟ ବାବାଜୀ– ଖାନା? କୈସେ?

ମ୍ୟାଜେନର– ତେରେ ବାବା, କୈସେ କ୍ୟା? ଚଲୋ ବାତ୍‌ଚିତ୍ ହୋଗା, ଅନ୍ଦର ଚଲୋ। (ସମସ୍ତେ ନିଷ୍କ୍ରାନ୍ତ)

(ପଟ୍ଟ ପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ

[ରାଜପଥ– ମ୍ୟାନେଜର ଓ ଦୁଇ ବାବାଜୀଙ୍କର ପ୍ରବେଶ]

ମ୍ୟାନେଜର– ଆଓ ଆଓ, ଏମିତି ଚୋରଭଳି ଅନଉଚ କିଆଁ? ଆପଣମାନେ କେଉଁ ବାବା, କେଉଁ ଆଶ୍ରମର ବାବା? ବାୟା, ଖେଚଡ଼, ଗାରଡ଼, ବାହାପିଆ, କେଉଁ ବାବା ଆପଣମାନେ?

ପ୍ରଥମ– ତମେ ଆମକୁ ଏମିତି କାହିଁକି କହୁଛ?

ମ୍ୟାନେଜର– କାହିଁକି କଅଣ? ଯାକୁ ଚିହ୍ନିଚ? (ଚାବୁକ ଦେଖାଇ) ନା ଚିହ୍ନିନ? ତମ ଜନ୍ମ ବୃଥା। ତମ ଗୁରୁ ଚିହ୍ନିଥିବେ। ତମେ ଯେତେ ପରାଙ୍ଗପୁଷ୍ଟ ଜୀବ, ବାବାଜୀ ହେଇଚ କେଉଁ ଦୁଃଖରେ କହିଲ ବାପଧନ?

ପ୍ରଥମ– ଦୁଃଖ, ଆମର କି ଦୁଃଖ?

ମ୍ୟାନେଜର– ନାଁ, ତମର କାଇଁ ଦୁଃଖ ହେବ? ମଠରେ ଖାଇ ଖଟରେ ଗଡୁଛ, ଭୁଆଷୁଣୀଙ୍କୁ ପାନ ଅଇଁଠା ଦେଇ ଗୋଡ଼ ଘଷାଉଛ। ବଦମାସ ଦଳ, ଖଟି ଖାଇବାକୁ ପଡୁନି? ଆସ ମୋ ମିଲ୍‌ରେ କାମ କର ମେହନତ କର।

ଦ୍ୱିତୀୟ– ତମେ କିଏ? ତମକୁ କଅଣ ଧର୍ମ ଜଣାନାହିଁ? ଈଶ୍ୱରଙ୍କୁ ଜାଣ ନାହିଁ? ସାଧୁ ସନ୍ଥ?

ମ୍ୟାନେଜର– ମାର ଗୁଲି ତମ ସାଧୁ ସନ୍ଥ ଈଶ୍ୱର। ଆବେ, ଈଶ୍ୱର କେଉଁଠି? ମୋ ଈଶ୍ୱର ମୋ ମାଲିକ; ମୋର କ୍ରୋଡ଼ପତି ଲହଲହ ରାମ ଲଛମନ ଭରତ ଶତ୍ରୁଘ୍ନ ରାଧାକୃଷ୍ଣ ହରହର ସାଗରମଲ୍ଲ ବିଶ୍ୱେଶ୍ୱର ଦୟାଲ ହୈ....

ବାବାଜୀ ଦୁଇଜଣ– ବାଃ, ବାଃ, କୈସା ନାମ...

ମ୍ୟାନେଜର– (ନିଶ ମୋଡ଼ି) ଶୁନ୍‌ଲିଆ?

ପ୍ରଥମ ବାବାଜୀ– ଶୁନଲିଆ। ଆମେ ଯାଉଛୁ, ଆମର ଗୁରୁ କେଉଁଠି ରହିଛନ୍ତି ଖୋଜୁଛୁ।

ମ୍ୟାନେଜର– ହାଲୋ କହି ଏକ୍‌ସଚେଞ୍ଜକୁ ପଚାର ଠିକଣା ପାଇବ।

ବାବାଜୀ– ସେ କଣ?

ମ୍ୟାନେଜର– ତମେ ସବୁ କେଉଁ ଯୁଗର ଲୋକ? ଏକ୍‌ସଚେଞ୍ଜ, ଟ୍ରାମ୍, ମଟର, ଏରୋପ୍ଲେନ– ଏ ସବୁ ଜାଣ ନାହିଁ?

ବାବାଜୀ– ନା' ତ।

ମ୍ୟାନେଜର– ତେବେ କୋଉ ଯୁଗର ଲୋକ ତୁମେ?

ବାବାଜୀ– ଆମେ ଆଶ୍ରମ ଯୁଗର ଲୋକ; ଆମର ମହାମାନ୍ୟ ଗୁରୁ ଆମକୁ ନିର୍ଦ୍ଦେଶ ଦେଇଛନ୍ତି ଅତୀତର ଯବନିକା ଖୋଲି ତାଙ୍କୁ ଖୋଜିବାପାଇଁ। ସେ କେଉଁଠି ଆତ୍ମଗୋପନ କରି ରହିଛନ୍ତି। ଆମେ ବାଟରେ ଯାଉ ଯାଉ ହଠାତ୍ ଦେଖିଲୁ ଜଣେ ନାରୀ କାନ୍ଦି କାନ୍ଦି ଗଡ଼ିଯାଉଛି; ଆଉ କହୁଛି– 'ମୋ ମଣିଷକୁ ମାରିଦେଲେ। ତାକୁ ପୋଡ଼ି ଦେଲେ। ଯେ ମାରିଛି ତାକୁ କାଳ ସହିବ ନାହିଁ।' ଆଚ୍ଛା; ଏ ଯୁଗରେ କଅଣ ଲୋକେ ମରାମରି ହେଉଛନ୍ତି? ଖୁଣଖିଲାପି ହେଉଛନ୍ତି? ସ୍ନେହ କରୁ ନାହାନ୍ତି...

ମ୍ୟାନେଜର– ହେ ହେ ପାଗଳା ବାବାଜୀ, ଗଞ୍ଜେଇ ମାତ୍ରା ବେଶୀ ହୋଇଛି କି? ମରାମରି? ଆରେ ଏ ଯୁଗରେ ସାମନା ମରାମରି ଦେଖାଦେଖି ନାହିଁରେ ବାବା, ଏକଦମ ପଛୁଆ ହତ୍ୟା, ମଲାଲୋକ ଜାଣିବ ନାହିଁ କିଏ ସେ ତା'ର ହୃଦୟର ବନ୍ଧୁ ଯେ ପଛୁଆ ଛୁରା ଭୁଷି ଦେଇ ତାକୁ ସ୍ୱର୍ଗକୁ ପଠାଇଦେଲା। ହେଲେ ମରାମରି କଥା କଅଣ କହୁଛ? ହେଇଟି ବୁଝିଲ ଏ ଯେଉଁ ଗୋଲ ବଦନ ସବୁ ବନେଇଛ ତମକୁ ଏ ହଜାର ଫୁଟିଆ କୋଇଲା ଖଣି ଭିତରେ ପୂରେଇ ସାନ୍ଧିଦେଲେ ସେଇଠି ଖୋଜୁଥିବ ତମ ଗୁରୁଙ୍କୁ; ଆଉ ସେ ଈଶ୍ୱରଙ୍କୁ।

ବାବାଜୀ– ଆଚ୍ଛା, ସେ ମାଇପିଟିର ସ୍ୱାମୀକୁ ମାଇଲ କାହିଁକି? ବିଚାରୀ ସେ କେତେ କାନ୍ଦୁଥିଲା?

ମ୍ୟାନେଜର– ଆରେ ମୂର୍ଖ, ଏ ସଭ୍ୟତା ସେଇଆ। ଏଠାରେ ଯେତିକି ମାରୁଥିବ, ଯେତିକି

ଛଡ଼େଇ ନେଇ ଅନ୍ୟକୁ ଭୋକରେ ଗଡ଼େଇବ, ସେତିକି ଭଲ। ତା ଛଡ଼ା ଏ ସାଧାରଣ ଲୋକଗୁଡ଼ାକ ମଲେ କାହାର କଅଣ ହେଇଯିବ ? ଅଥଚ ଗୋଟାଏ କ୍ରୋଡ଼ପତି ହାତରେ ଛୁଞ୍ଚ ପଶିଗଲେ ଏ ଦେଶରେ ହା–ହାକାର ପଡ଼ିଯିବ, ଜାଣ ? ହଁ, ହା–ହାକାର ପଡ଼ିଯିବ।

ବାବାଜୀ– କାହିଁକି ?

ମ୍ୟାନେଜର– କାହିଁକି ? ତା ପାଖରେ ପଇସା ଅଛି।

ବାବାଜୀ– ପଇସା କଅଣ ?

ମ୍ୟାନେଜର– କିରେ, ପଇସା ବୁଝିନ ? ଗେଫା ମିଳୁଛି କେଉଁଠୁ ?

ବାବାଜୀ– ଦାନ, ଦାନ ଦେଉଛନ୍ତି।

ମ୍ୟାନେଜର– ମାଗଣା ତମକୁ ଲୋକେ ଖାଇବାକୁ ଦେଉଛନ୍ତି ?

ବାବାଜୀ– ହଁ। ଦେଉଛନ୍ତି, ଗୁରୁ ଆମର କହିଛନ୍ତି– ଯୁଗ ବଦଳି ଯାଇଛି ସତ, ମାତ୍ର ଧର୍ମ ଅଛି, ଦାତା ଅଛନ୍ତି... ଭଲ ମଣିଷ ଅଛନ୍ତି।

ମ୍ୟାନେଜର– ତମର ସେ ଗୁରୁଙ୍କୁ ମତେ ଦେଖେଇବ ? ତାଙ୍କ ନାକ କାନ ଧରି ଦି'ଥର ଉଠୁ ବସ କରିଦେଲେ ସେ ବୁଝିବେ ବାବାଜୀ ହେବା କେଡ଼େ ମଜା...

ବାବାଜୀ– ତମର କଥାବାର୍ତ୍ତା ଭଦ୍ରଭାବାପନ୍ନ ହେଉନାହିଁ।

ମ୍ୟାନେଜର– କେବଳ ମୋର ? ଏ ଯୁଗରେ କେହି ଭଦ୍ର ନାହାନ୍ତି ଜାଣ ?

ବାବାଜୀ– ଭଦ୍ର ନାହାନ୍ତି ନା ? ଆମେ ଯେ ଦେଖୁଛୁ ବେଶ ଭଦ୍ର ପୋଷାକ ପିନ୍ଧି ବୁଲାଚଲା କରୁଛନ୍ତି, କଥା କହୁଛନ୍ତି ସରୁ, ବଡ଼ ବଡ଼ ସଭା ବସାଇ ସେହି ଓଁ ଶାନ୍ତିଃ ଶାନ୍ତିଃ ହେଉଛନ୍ତି।

ମ୍ୟାନେଜର– ହଉଛନ୍ତି ନା ? ଦେଖିଆସିଛ ତେବେ ? ଏଁ ? ବେଶ୍ ଭଲ କଥା। ତାଙ୍କୁ ଏ ଶାନ୍ତି କହିବା ପାଇଁ କିଏ ଶିଖେଇଛି ଜାଣ ?

ବାବାଜୀ– କିଏ ?

ମ୍ୟାନେଜର– ପଇସା।

ବାବାଜୀ– ଏ ସବୁ କଅଣ ପଇସା କରଉଚି ?

ମ୍ୟାନେଜର– ଅଲବତ୍, ପଇସା ଆଜି ଈଶ୍ୱର ଏବଂ ଏଦେଶର ଈଶ୍ୱର ଆଜି ଲହଲହ ରାମ ଲଛମନ ଭରତ ଶତ୍ରୁଘ୍ନ ରାଧାକୃଷ୍ଣ ହରହର ସାଗର ମଲ୍ଲ ବିଶ୍ୱେଶ୍ୱର ଦୟାଲ ହୈ।

ବାବାଜୀ– ଏ ଦୟାଲ କିଏ ?

ମ୍ୟାନେଜର– ତାଙ୍କ ପ୍ରସାଦ ପାଇବ ?

ବାବାଜୀ– ଏଁ, ପ୍ରସାଦ ?

ମ୍ୟାନେଜର– ବାଃ, ଜିଭଟା ଥଣ୍ଡାଳିଆ ହୋଇଆସିଲା, ନା ?

(ଏତିକି ବେଳେ ଜଣେ ଶ୍ରମିକ ଦଉଡ଼ି ଆସି କହିଲା)

ଶ୍ରମିକ– ହଜୁର, ଯନ୍ତ୍ର ବନ୍ଦ, ଯନ୍ତ୍ର ଚାଲୁ ନାହିଁ।

ମ୍ୟାନେଜର– ଯନ୍ତ୍ର ଚାଲୁ ନାହିଁ କି ଚଲେଇ ପାରିଲ ନାହିଁ ? ହାରାମଯାଦା।

ଶ୍ରମିକ– ସବୁ ଚେଷ୍ଟା ବୃଥା।

ମ୍ୟାନେଜର– ବୃଥା ? ଏତେ ବଡ଼ ସାହସ। ଯନ୍ତର ଚକ ଚାଲିବ ନାହିଁ ?

ଶ୍ରମିକ– ସେ ମାଇପିଟିର ଅଭିଶାପ ପଡ଼ିଲା ନା କଅଣ ?

ମ୍ୟାନେଜର– ଚୁପ୍ କର, ସେମିତି ହେଲେ ମୋ ଚାକିରି ଚାଲିଯିବ।

ଶ୍ରମିକ– ହେଁ। ହଜୁର ତାହାହେଲେ ଚାକିରିଆ, ଗୋଲାମ୍?

ମ୍ୟାନେଜର– ଆବେ ହଁ... ମାନେ କଣ କହିଲୁ ମୁଁ ଚାକିରିଆ– ନା, ମୁଁ ନୌକର ନୁହେଁ। ମୁଁ ମାଲିକ, ମୁଁ ପ୍ରଭୁ।

ଶ୍ରମିକ– ତେବେ ଯନ୍ତ୍ରକୁ ଚଳାନ୍ତୁ।

ମ୍ୟାନେଜର– ବୋଲଟ୍ ଖରାପ ହୋଇଛି? ନଟ୍ ହୁଗୁଳିଛି? ଅଏଲ ନାହିଁ? ଫର୍ଣ୍ଣେସ୍‌ରେ ନିଆଁ ଜଳୁନି?

ଶ୍ରମିକ– କେମିତି ମନେହେଲା ସବୁ ହୁଗୁଳି ଯାଇଛି। ହଜୁର ତଦାରଖ କରନ୍ତୁ, ଯନ୍ତ୍ର ଅଚଳ।

ମ୍ୟାନେଜର– ଅଚଳ! ଯଦି ଯନ୍ତ୍ର ଅଚଳ, ଯଦି ପଇସା ଅଚଳ, ଯଦି ଲହଲହ ରାମ ଲଛମନ ଭରତ ଶତ୍ରୁଘ୍ନ ରାଧାକୃଷ୍ଣ ହରହର ସାଗରମଲ୍ଲ ବିଶ୍ୱେଶ୍ୱର ଦୟାଲ ଅଚଳ, ତେବେ କିଏ ସେ ସଚଳ?

ବାବାଜୀ– କାଳ ସଚଳ; ଦେଖ, କାଳର ଯବନିକା ସେ ପଟେ ସେଇ ସଚଳ ଶକ୍ତିକୁ ସେଇ ମହାକାଳର ପଦସଞ୍ଚାରକୁ ଦେଖ, ଦେଖ... ଆଖି ବନ୍ଦ କର, ଏକ୍ଷଣି ଅନ୍ଧକାର ଘନେଇ ଆସିବ, ତା'ପରେ ଆଖି ଫିଟାଇ ଦେଖିବ; କିନ୍ତୁ ଦେଖି ପାରିବ କି? ତା' ପୂର୍ବରୁ ଯଦି ମୃତ୍ୟୁ...

ମ୍ୟାନେଜର– (ଭୟରେ) ମୃତ୍ୟୁ! (ଛାତିରେ ହାତ ରଖି) ନା, ନା, ମୁଁ ମରିବାକୁ ଚାହେଁନା...

ବାବାଜୀ– ଅମର ରହିବ? କେହି ରହି ନାହିଁ–

ମ୍ୟାନେଜର– ତେବେ?

ବାବାଜୀ– ଆଖି ବନ୍ଦ କର, ତୁମେ ବି ଶ୍ରମିକ... ସମସ୍ତ ବିଶ୍ୱବାସୀଙ୍କ ନେତ୍ରକୁ ଆମେ ଏଇ କରମୁଦ୍ରାରେ ଆଚ୍ଛନ୍ନ କରି ଦେଉଛୁ। ସେମାନେ ଫେରିଯାନ୍ତୁ ସେଇ ଯୁଗତୋରଣ ଭିତରକୁ, ଯେଉଁଠି କାଳ–ମହାକାଳ; କାଳ–ମହାକାଳ।

(ପଟ୍ଟ ପରିବର୍ତ୍ତନ)

## ତୃତୀୟ ଦୃଶ୍ୟ

[ଏକ ଗହ୍ୱର, ସେ ଗହ୍ୱର କ୍ରମେ ଆଲୋକିତ ହେଲା। ଗହ୍ୱର ପାଖରେ ଆଶ୍ରମ। ଧୀରେ ଆଶ୍ରମରୁ ବାହାରି ଆସିଲେ ଋଷି, ହାତରେ ପୁଷ୍ପଗୁଚ୍ଛ ଏବଂ କମଣ୍ଡଲୁ, ପାଖରେ ନାରୀ ରୂପରେ ନଦୀ ବେଦବତୀ, ଗହ୍ୱର ଭିତରେ, ଜରାଜୀର୍ଣ୍ଣ, ଲୋଳିତ– ଅଙ୍ଗ କାଳ ବାହାରି ଆସୁଛନ୍ତି। ତାଙ୍କର ମସ୍ତକ ଉପରେ ଏକ ବହ୍ନିଚକ୍ର ସ୍ଫୁଲିଙ୍ଗ ଝରାଉଛି। ସେ ଧୀର, ଶାନ୍ତ; ଋଷି ପ୍ରଣାମ କଲେ ବେଦବତୀ ପ୍ରଣାମ କଲେ।]

କାଳ– ତୁମେ କିଏ ନାରୀ?

ବେଦବତୀ– ଆପଣଙ୍କର ସ୍ମରଣ ନାହିଁ? ଆପଣ ମୋତେ ସୃଷ୍ଟି କରିଛନ୍ତି, ମୋ ବକ୍ଷରେ ଅଶେଷ ବାରିପ୍ଳାବନ ଦେଇଛନ୍ତି, ମୋତେ ଚିହ୍ନିପାରୁ ନାହାନ୍ତି?

କାଳ– ଚିହ୍ନିଛି– ତଟିନୀ; ତେବେ ଯେଉଁ ନଦୀତଟରେ ଧ୍ୟାନନିଶ୍ଚଳ ଋଷିଗୋଷ୍ଠୀ

ବେଦଗାୟନ କରୁଥିଲେ ସେ ନଦୀ ତୁମେ ନୁହଁ ?

ବେଦ– ହଁ, ପ୍ରଭୁ, ମୁଁ ସେହି ଆଦି ତରଙ୍ଗିଣୀର ଶାଖା ଉପଶାଖା ପ୍ରଶାଖା, ଅନନ୍ତ ଆଦିମ ଜଳଧାରାର ବିନ୍ଦୁ ବିନ୍ଦୁ ସଞ୍ଚୟ କରି ମୋ ବକ୍ଷକୁ ପୂର୍ଣ୍ଣ କରିଛି ।

କାଳ– ତୁମେ କିଏ ? (ଋଷିକୁ ଲକ୍ଷ୍ୟ କରି)

ଋଷି– ମୁଁ ଋଷି, ଆଦିମ ମାନବଗୋଷ୍ଠୀ ଭିତରେ ମୋ'ରି ପୂର୍ବ ପୁରୁଷ, ତପସ୍ୱୀ ଆଶ୍ରମ ସ୍ଥାପନ କରି ଏ ଦେଶର ଆଧ୍ୟାତ୍ମିକ ଶକ୍ତିକୁ ଅପରାଜୟ କରିଥିଲେ । ତୁଷାରକିରୀଟୀ ହିମାଳୟର ଶୃଙ୍ଗେ ଶୃଙ୍ଗେ ତା'ର ଅଭ୍ୟନ୍ତର ଗହ୍ୱର ଭିତରେ ସେମାନେ ସମାଧିସ୍ଥ ରହୁଥିଲେ ।

କାଳ– ଏବେ ସେ ତପସ୍ୱୀକୁଳ ରହିଛନ୍ତି କି ?

ଋଷି– ଅଛନ୍ତି, ମାତ୍ର ଅଗ୍ନି ଲିଭିଯାଇଛି; ଆପଣ ନିଜେ ଜାଣନ୍ତି କାଳସ୍ରୋତରେ କେତେ କ'ଣ ଭାସି ଯାଇଛି; କେତେ ସଭ୍ୟତା, କେତେ ସଂସ୍କୃତି ଏ ଦେଶକୁ ଆସିଥିଲା, ପୁଣି ସବୁ ମିଳାଇ ଗଲା ।

କାଳ– ବର୍ତ୍ତମାନ ସମୟ କ'ଣ ?

ବେଦ– ବର୍ତ୍ତମାନର ସମୟ ଗଣନା ଜଣେ ମହାପୁରୁଷଙ୍କର ଜନ୍ମତିଥିରେ ପାଞ୍ଚବର୍ଷ ପରେ ସ୍ଥିର କରାଯାଇଛି । ସେହି ହିସାବରେ ଆଜି ବିଂଶ ଶତାବ୍ଦୀ ।

କାଳ– ଋଷି, ଏ ଶତାବ୍ଦୀର ବିଶେଷ ବିଶେଷ ଚିହ୍ନ କ'ଣ ?

ଋଷି– ଅବିଶ୍ୱାସ ।

କାଳ– ଅବିଶ୍ୱାସ ? ଅବିଶ୍ୱାସ ଭିତରେ ଗୋଟାଏ ଶତାବ୍ଦୀ ଗଢ଼ିହୋଇ ଉଠିଛି । ନା– ତୁମେ ଭୁଲ୍ କହୁଛ ।

ବେଦ– ନା ପ୍ରଭୁ, ସେ ଭୁଲ୍ କହୁନାହାନ୍ତି । ଆପଣ ତ ନିର୍ଲିପ୍ତ ରହି ସବୁ ଦୃଶ୍ୟ ସୃଷ୍ଟି କଲେ, ବୁଝିବେ କୁଆଡୁ ? ତେବେ ବିଜ୍ଞାନ ବୋଲି ଗୋଟାଏ ଶାସ୍ତ୍ର ଆଜି ମଣିଷ ଉଦ୍ଭାବନ କରି ନିରଙ୍କୁଶ ପ୍ରଭୁତ୍ୱ ଦେଖାଉଛି । ଏପରି କି...

ଋଷି– ଏପରିକି ଈଶ୍ୱରଙ୍କୁ ମଧ୍ୟ ସେ ସ୍ୱୀକାର କରୁ ନାହିଁ ।

କାଳ– କ'ଣ କହୁଛ ଋଷି ! (ହସି ହସି) ଈଶ୍ୱରଙ୍କୁ ମାନୁ ନାହିଁ, ତେବେ ମାନୁଛି କାହାକୁ ?

ଋଷି– ନିଜର ଚିନ୍ତାଶକ୍ତିକୁ; ଅବଶ୍ୟ ପ୍ରକୃତିବଶ ହୋଇପଡ଼ିଛି । କିନ୍ତୁ ପ୍ରଭୁ ! କାଳ ଆଉ ପ୍ରକୃତି ନିରବଚ୍ଛିନ୍ନ ଧାରାରେ...

କାଳ– ଦୁହେଁ ବହି ଚାଲିଛନ୍ତି ନା ? ମଣିଷ ତା'ହେଲେ ପ୍ରଚଣ୍ଡ ହୋଇଛି, ହିଂସାରେ ଉନ୍ମତ୍ତ ହୋଇଛି ନା ?

ବେଦ– ହଁ ପ୍ରଭୁ ।

କାଳ– ମୁଁ ଜାଣେ; ତେଣୁ ତା'ର ଚୈତନ୍ୟ ଉଦିତ ହେବାପାଇଁ ମଝିରେ ମଝିରେ ସେମାନଙ୍କ ମନ ଭିତରେ ସୃଷ୍ଟି କରେ କଳହ; କିନ୍ତୁ ଏ କଳହ ଏତେ ଉଗ୍ର ହୋଇଉଠେ ଯେ ଭାଇ ଭାଇ ମଧ୍ୟରେ ରକ୍ତପାତ ନ କରି ସେମାନେ ଛାଡ଼ନ୍ତି ନାହିଁ ।

ବେଦ– ଏ ବିଧାନ କାହିଁକି କରନ୍ତି ?

କାଳ– କାଳର ପ୍ରଭାବରେ ଏହା ସୁନିଶ୍ଚିତ ।

ବେଦ– ହଠାତ୍ ଆପଣଙ୍କର ରୂପଘନ ଆବିର୍ଭାବରେ ଏ ଭୂଲୋକ ଚକିତ ହୋଇଛି। ଆପଣ ତ କେବେ ପ୍ରବାହ ଛଡ଼ା ପାର୍ଥିବ ରୂପ ଧରନ୍ତି ନାହିଁ ?

କାଳ– ତା' ସତ ତଟିନୀ ? ଇଚ୍ଛା ହେଲା ଯାହା ମୋ ଗର୍ଭରେ ବିଲୀନ କରି ଦେଇଛି ତାକୁ ପୁଣି ଆଉ ଥରେ ଆଖିରେ ଦେଖିବି। ତୁମେ ତ କହୁଛ କେତେ ସଭ୍ୟତା କେତେ ସଂସ୍କୃତି ମୁଁ ସୃଷ୍ଟି କରିଛି। ତା'ର ଚିହ୍ନ ଦେଖାଇ ପାରିବ ?

ଋଷି– ଆପଣଙ୍କର ଇଚ୍ଛା ତ ଅପୂର୍ଣ୍ଣ ରହିବ ନାହିଁ।

କାଳ– କେଉଁଠୁ ଆରମ୍ଭ କରିବ ?

ଋଷି– ସରସ ନିର୍ମଳ ଆଦିମ ହସକାନ୍ଦଭରା ମଣିଷ, ଯେ କି ନିଃସର୍ଗ ପ୍ରକୃତି ଭିତରେ ଜୀବନ କଟାଉଥିଲା। ସେଇ ମଣିଷକୁ ଆଗ ଆମେ ଦେଖାଇବୁ। ଆପଣ ଏଇ ଜରାଜୀର୍ଣ୍ଣ ସ୍ୱତନ୍ତ୍ର ରୂପରେ ଥିବେ ନା ନିଜେ ସେଇ ଆଦିମ ମାନବ ସତ୍ତାରେ ଲୁପ୍ତ ହୋଇଯିବେ।

କାଳ– ମୁଁ ଲୁପ୍ତ ହେବାକୁ ଭଲ ପାଏ।

ବେଦ– ଭଲ କଥା; ଆସ ଋଷି, କମଣ୍ଡଳରୁ କାଳପ୍ରବାହର ବାରି ସେଚନ କର। ତମିସ୍ରା ଭିତରୁ ଆଲୋକିତ ଆଦିମ ନରନାରୀ ସୃଷ୍ଟି କର।

ଋଷି– ତଥାସ୍ତୁ !

[ କାଳ, ଋଷି ଓ ବେଦବତୀ ଅଦୃଶ୍ୟ ହୋଇଯିବା। ରଙ୍ଗମଞ୍ଚ ଉପରେ ଓହ୍ଲାଇ ଆସିଲା ଅରଣ୍ୟର ଶୋଭା। ଏକ ଶୂକର ପଛରେ ତୀର ହସ୍ତରେ ଆଦମ କାଳର ନର ଓ ନାରୀ ନୃତ୍ୟଛନ୍ଦରେ ଧାବିତ; ନୃତ୍ୟ ସଙ୍ଗୀତ ସହ ]

(ନୃତ୍ୟ ପରେ ଋଷି ଓ ବେଦବତୀର ପ୍ରବେଶ)

ଋଷି– ଦେଖିଲ ତଟିନୀ, କାଳର ଆଉ ସ୍ୱତନ୍ତ୍ର ସତ୍ତା ନାହିଁ। ସେଇ ଯେ ଆଦିମ ଶବର ଭିତରେ ଲୁଚିଗଲେ ଆଉ ବାହାରି ଯିବାକୁ ଇଚ୍ଛା ନାହିଁ। ମୁଁ ଜାଣେ ପରା ସ୍ମୃତି–ବିଭୋର କାଳ ଏଇଆ କରିବେ।

ବେଦ– ଋଷି, ମନେହେଉଛି, କାଳ ଅପେକ୍ଷା କରୁଛନ୍ତି କାଳସ୍ରୋତରେ ଆଉ କିଛି ଦୃଶ୍ୟ ସେ ଦେଖିବେ– ଆଉ କିଛି ଦେଖାଇବା କି ?

ଋଷି– ମୁଁ ଟିକିଏ ଭାବେ, ଆଚ୍ଛା, ତଟିନୀ ବିଶ୍ୱକଲ୍ୟାଣ ପାଇଁ ଭଗବାନ ଯେ ଆହବ ସୃଷ୍ଟି କଲେ, କୁରୁକ୍ଷେତ୍ରରେ ସେ ଦୃଶ୍ୟ ଦେଖାଇବା ସମ୍ଭବ ହେବ କି ? ମନ ଚାହେଁ, ଦେଖନ୍ତି ସେ ନବଘନଶ୍ୟାମ କୃଷ୍ଣ, ମିତ୍ର ଅର୍ଜୁନ– ଯାହାଙ୍କର କଥୋପକଥନରୁ ପରମଶାସ୍ତ୍ର ଗୀତାର ଅଭ୍ୟୁଦୟ...

ବେଦ– ଦେଖାଇ ହେବ, କିନ୍ତୁ...

ଋଷି– କିନ୍ତୁ କଅଣ ?

ବେଦ– ଜୀବନ୍ତ ନୁହେଁ, ସୂଚନାରେ। ତେବେ ପ୍ରସ୍ତୁତ ରହନ୍ତୁ ଋଷି, ମୁଁ ସେ ଦୃଶ୍ୟ ଦେଖାଉଛି।

(ଦୃଶ୍ୟ ପଟରେ ଦେଖାଗଲା ଈଶ୍ୱରଙ୍କ ବିଶ୍ୱରୂପ)

ବେଦ– ଦେଖ ଋଷି, ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଗୀତାତତ୍ତ୍ୱ ବୁଝାଉଛନ୍ତି ଦେଖନ୍ତୁ ଏଇ ବିଶ୍ୱରୂପ...

(ଗୀତାରୁ ବିଶ୍ୱରୂପଦର୍ଶନର ଶ୍ଳୋକ ଆବୃତ୍ତି)

(ପଟ୍ଟ ପରିବର୍ତ୍ତନ)

# ଚତୁର୍ଥ ଦୃଶ୍ୟ

[ ରାଜପଥ– ମ୍ୟାନେଜର ବାବୁ ଏହା ଭିତରେ ବୁଢ଼ା ହୋଇ ଯାଇଛନ୍ତି। ମଇଳା ପ୍ୟାଣ୍ଟ, ହ୍ୟାଟ୍, ମୁହଁରେ କଳା ଦାଗ, ବାବାଜୀଙ୍କ ସହିତ ଆସିଲେ। ]

ସନ୍ନ୍ୟାସୀ– କ'ଣ ସବୁ ଦେଖିଲେ ? କାଳ ସହିତ ପରିଚୟ ହେଲା ?

ମ୍ୟାନେଜର– ... (ଭୟରେ) ହଁ ହେଲା।

ସନ୍ନ୍ୟାସୀ– କାଳ ଆଉ କାଳ– କେତେଦିନ ଏଥିରେ ମାତିବ ? ସମୟ ହେଲା, ଧର୍ମ କର୍ମ କର।

ମ୍ୟାନେଜର– ଏ ଜୀବନଟା ଭୁଲ୍ ଭ୍ରାନ୍ତିରେ କଟିଗଲା। ଗରିବ ଲୋକଙ୍କ ଉପରେ କେତେ ଅତ୍ୟାଚାର କରିଛି, କେତେ ମାଡ଼ ଦେଇଛି। ସେଇ ମାଇପି ଲୋକର ଅଭିଶାପ ଫଳିଲା।

ସନ୍ନ୍ୟାସୀ– ଦୁଃଖ କର ନାହିଁ, ତୁମକୁ ଆଉ ଟିକିଏ କାଳ ପରିକ୍ରମା କରାଇ ଦିଏ।

(ମ୍ୟାନେଜର ମଝିରେ ମଝିରେ ଅଭ୍ୟାସବଶତଃ ଚାବୁକ ପ୍ରହାର କରି 'ଯନ୍ତ୍ର ଚଳାଅ' ଚିତ୍କାର କରୁଥାନ୍ତି)

ସନ୍ନ୍ୟାସୀ– କିହୋ, ଏ କଅଣ ? ଏମିତି କାହିଁକି ହେଉଛ ?

ମ୍ୟାନେଜର– (ଦୁଃଖରେ) ଅଭ୍ୟାସ ହୋଇ ଯାଇଥିଲା ନା, ସେଇଥିପାଇଁ।

ସନ୍ନ୍ୟାସୀ–ଏବେ କଳ କାରଖାନାରେ ଅଛ ନା ଆଉ କିଛି ବ୍ୟବସାୟ କରୁଛ ?

(ମ୍ୟାନେଜର ଆଉ ଥରେ ଚାବୁକ୍ ଉଠାଇଲେ)

ସନ୍ନ୍ୟାସୀ– କିହୋ, ସେମାନଙ୍କୁ ମାରିବ ନା କଅଣ ?

ମ୍ୟାନେଜର– ଅଭ୍ୟାସ, କ୍ଷମା କରିବେ।

ସନ୍ନ୍ୟାସୀ– ତମର ସେ ଲହ ଲହ ରାମ ଲଛମନ ଭରତ ଶତ୍ରୁଘନ ରାଧାକୃଷ୍ଣ ହରହର ସାଗରମଲ୍ଲ ଦୟାଲ ହେି– ସର୍ବାଙ୍ଗ କୁଶଳରେ ଅଛନ୍ତି ତ ?

ମ୍ୟାନେଜର– ଆଉ କୁଶଳ ? ସେ ଏବେ ଜେଲ୍‌ରେ ସଶ୍ରମ କାରାବାସ।

ସନ୍ନ୍ୟାସୀ– ଏ ବିପତ୍ତି କାହିଁକି ? ତାଙ୍କୁ ତ ତୁମେ ଈଶ୍ୱର କହୁଥିଲ ?

ମ୍ୟାନେଜର– ସେ ଆମକୁ ସେମିତି ନିଜରୂପ ଦେଖାଉଥିଲେ।

ସନ୍ନ୍ୟାସୀ– ତୁମେ ଜାଣ, ମୃତ୍ୟୁ ନିଶ୍ଚୟ ଆସିବ।

ମ୍ୟାନେଜର– ମୋ'ର କିନ୍ତୁ ଆସି ଯାଇଛି।

ସନ୍ନ୍ୟାସୀ– (ହସି) ନା, ନା, ଆସି ନାହିଁ।

(ମ୍ୟାନେଜର ପୁଣି ହାତ ଉଠାଇ କାହାକୁ ମାରିବାକୁ ବସିଲେ)

ସନ୍ନ୍ୟାସୀ– ଆହା, ମତେ ମାରିବ ନା କଅଣ ?

ମ୍ୟାନେଜର– ଅଭ୍ୟାସ, କ୍ଷମା କରିବେ–

ସନ୍ନ୍ୟାସୀ– ତୁମେ ଏବେ କଅଣ କରୁଛ ?

ମ୍ୟାନେଜର– ମୁଁ ଜଙ୍ଗଲ ରେଞ୍ଜର...

ସନ୍ନ୍ୟାସୀ– ତାହାହେଲେ ବଣ ଭିତରେ ରହିଛ। କିନ୍ତୁ କିଛି କାମ କରି ପାରୁଛ କି ?

ମ୍ୟାନେଜର– ନା, ନା, ଅକର୍ମଣ୍ୟ ହେବାରୁ ମତେ ଏଠାରେ ରଖିଛନ୍ତି। ମୁଁ ବେଶି କାମ କରେନି.....

ସନ୍ନ୍ୟାସୀ– ବଣ ଭିତରେ ଅଛ, ମନରେ ଆନନ୍ଦ ଆସେ କି ?

ମ୍ୟାନେଜର– ହଁ, ମୁଁ ଏବେ ଗୋଟିଏ ହରିଣଛୁଆ ଦେଖିଲେ ଆଦର କରେ। ଚଢ଼େଇଟିଏ କୁ କୁ କରୁଥିଲେ ମୁଁ ଅନାଇ ରହିଥାଏ। ବଣର ହାତୀ ଚାଲିଯାଏ; ମୁଁ ଭାବେ କି ସୁନ୍ଦର ଏ ଜୀବ। ଯେ ଯାକୁ ତିଆରି କରିଛି ସେ...

ସନ୍ନ୍ୟାସୀ– ସେ ଲହଲହ ରାମ ଲଛମନ ଶତ୍ରୁଘ୍ନ....

ମ୍ୟାନେଜର– ତେବେ ମନକୁ ଆନନ୍ଦ ଆସିଛି, ଶାନ୍ତି ଆସିଛି ? ପ୍ରକୃତିର ଇନ୍ଦ୍ରଜାଲ ତୁମଭଳି କଠୋର ହୃଦୟ ଲୋକ ଉପରେ କଲ୍ୟାଣ ବର୍ଷୁଛି, ନା ?

ମ୍ୟାନେଜର– ଏ କଥା ବୁଝିପାରୁ ନାହିଁ।

ସନ୍ନ୍ୟାସୀ– ନ ବୁଝ, କିନ୍ତୁ ତୁମେ ଏବେ ଅନୁତପ୍ତ ହୋଇଛ। ସେତିକି ମୋର ଆନନ୍ଦ। ଆଚ୍ଛା ଆସ, ତୁମକୁ ଅରଣ୍ୟର ଆହୁରି ଚମତ୍କାର ଶୋଭା ଦେଖାଇବି। ପର୍ବତ, ନଦୀ... ଆଉ ତା'ସଙ୍ଗେ କାଳର ପଦକ୍ଷେପ...

(ପଟ୍ଟ ପରିବର୍ତ୍ତନ)

## ପଞ୍ଚମ ଦୃଶ୍ୟ

[ ଏକ ଦିଗରୁ ପାନ୍ଥ ଓ ବେଦବତୀ ପ୍ରବେଶ କଲେ ]

ବେଦବତୀ– ଆସ ପାନ୍ଥ, ବନଭୂମି ଛୁଇଁ ତୁମେ ବହୁପଥ ଅତିକ୍ରମ କରିଛ। ଏବେ ସ୍ପର୍ଶକର ମୋ'ର ଜଳସ୍ରୋତ, କେତେ ସ୍ନିଗ୍ଧ ଓ ସ୍ଫଟିକଜିତ ଏଇ ବାରିପ୍ରବାହ... ସ୍ପର୍ଶକର... ସ୍ପର୍ଶକର।

ପାନ୍ଥ– ବେଦବତୀ, କିଛି ଭଲ ଲାଗୁ ନାହିଁ, ଶକ୍ତ ଧରିତ୍ରୀ ଉପରେ ଛିଡ଼ା ହୋଇଛି, ସେଠି ଶାନ୍ତି ପାଇଲି ନାହିଁ। ଦେଖିଲି ମାନବ ବୋଲି ଯେଉଁ ଜୀବ, ତା'ର ଚଣ୍ଡତା ଅପରିମେୟ, ତା'ର ନୃଶଂସତାର ଅବଧି ନାହିଁ। ଆସିଛି ନିଥର ଅରଣ୍ୟ ଭିତରକୁ।

ବେଦ– କୁହ ପାନ୍ଥ, ତୁମ କଥା ଭାରି ଭଲ ଲାଗୁଛି– ଏ ଯେମିତି ମୋ' ମନ କଥା ତୁମେ କହୁଛ।

ପାନ୍ଥ– ଯେଉଁଠି ଛାୟାଲୋକ ଖେଳ ଖେଳୁଛି, ବନବିହଙ୍ଗ ଯେଉଁଠି ଉଡ଼ିଯାଏ ଦିଗନ୍ତ ଛୁଇଁ ସେଇ ନିବିଡ଼ ଅରଣ୍ୟକୁ ଆସିଛି; କିନ୍ତୁ ବୃକ୍ଷମାଳା, ପତ୍ରର ମର୍ମର ଧ୍ୱନିରେ ଏଇ ଯେ ବନରାଣୀର କାତର ଧ୍ୱନି, ମତେ ତାହା ଅଥୟ କରୁଛି। ନା, ବେଦମତୀ ମତେ କିଛି ଭଲ ଲାଗୁ ନାହିଁ। ମୁଁ ଅଶାନ୍ତ।

ବେଦ– ମୁଁ ଜାଣେ ପାନ୍ଥ, ତୁମେ ଆସ, ଯେଉଁଠି ମାଟି ଦେଲା ନାହିଁ ତୁମକୁ ଶାନ୍ତି, ସେଠାରେ ମୋ'ର ନୀର ଦେଉ ଆନନ୍ଦ ଓ ପ୍ରୀତି। ଚାଲିବାରେ ଯେଉଁଠି ଅନୁଭୂତ ହେଲା ଶ୍ରମ, ସନ୍ତରଣରେ ତାହା ହେଉ ସାବଲୀଳ। ହେ ପାନ୍ଥ ତୁମେ ଯେଉଁଆଡ଼େ ଚାହିଁଛ ମୁଁ ଜାଣେ– ଭାବୁଛ, ମାଟି ଆଉ ଜଳର ବ୍ୟବଧାନ ଭିତରେ ରହିଗଲା ସେଇ ପାଷାଣ ମୂର୍ତ୍ତି, ଅଥଚ ଏହାରି ନିର୍ମାଣରେ ଲାଗିଛି ମାଟି ଆଉ ପାଣିର ସ୍ପର୍ଶ।

ପାନ୍ଥ– ଏ ମୂର୍ତ୍ତିଟି ସୁନ୍ଦର ! ଦେଖ ବେଦବତୀ, ସୁନ୍ଦର ଶିଳା ଉପରେ ଖୋଦିତ ଏ ମୂର୍ତ୍ତି, ପାଷାଣୀ

ନାରୀ, ବୀଣାବାଦନରତା ଏଇ ନାରୀ, ଏଇ ଶିଳା–ରମଣୀ ଟଣା ଆଖିରେ ଚାହିଁ ରହିଛି ଶୂନ୍ୟକୁ ଆଖିର ପତ୍ର ଉପରେ ମଦିରା, ମହାକାଳ ଯାକୁ ସ୍ପର୍ଶ କରି ବି କରି ନାହିଁ। ଅକ୍ଷତ ରହିଛି ଶିଳା।

ବେଦ– ଦେଖି କିଛି ମନେହୁଏ ଏ ମୂର୍ତ୍ତିଟି କଅଣ ?

ପାନ୍ଥ– କେଉଁ କାଳର ଏ ରମଣୀ, କାହାର ପ୍ରତୀକ୍ଷାରେ ବା ଏ ବୀଣା ବାଦନ କରୁଛି– ତନ୍ତୁଗୁଡ଼ିକ ସ୍ଥିର, ଅଚଳ, ଅଙ୍ଗୁଷ୍ଠିର ପ୍ରାନ୍ତରେ ଲାଖିରହିଛି ଦୁଇଟି ତନ୍ତୁ... ମୁଖରେ ଢଳି ପଡ଼ିଛି ଆସନ୍ନ ସନ୍ଧ୍ୟାର ଛାୟା, ବନଭୂମି ନିଥର।

ବେଦ– ହେ ପାନ୍ଥ, ସେ ମୂର୍ତ୍ତିଟିକୁ ଦୂରରୁ ଦେଖିପାରନ୍ତି ଅଶ୍ୱାରୋହୀ, ଗଜାରୋହୀ, କେତେ ଚଳନ୍ତି ଜୀବ। ପୁଣି ଦେଖି ପାରନ୍ତି ପଥ ଉପରେ କେତେ ଚଳନ୍ତି ପଥିକ; କିନ୍ତୁ ଆଶ୍ଚର୍ଯ୍ୟ ପାଖକୁ ଆସିଲେ ସେ ପାଷାଣୀ ଯୁବତୀ ରହିଯାଏ ଅଦୃଶ୍ୟ ମସୀ ତଳେ ସତେ ଯେପରି ତାହା ଆତ୍ମଗୋପନ କରେ– ଏହିପରି ଚାଲିଛି କାଳସ୍ରୋତ, ଏହିପରି ଚାଲିଛନ୍ତି କେତେ ପ୍ରାଣୀ ନିର୍ଜନ ବନକୁ ମୁଖର କରି କେତେ ବିହଗ, କେତେ ଶ୍ୱାପଦ ଥରେ ଥରେ ଏହାର ଚତୁଃପାର୍ଶ୍ୱରେ ବୁଲିଆସନ୍ତି। ମାତ୍ର କୃଷ୍ଣଶିଳାର ଏଇ କଳାବତୀ ରହିଯାଏ ରହସ୍ୟାବୃତ।

ପାନ୍ଥ– କେହି ନାହିଁ ଯାକୁ ଯେ ଚିହ୍ନିବ ?

ବେଦ– ନା, କିଏ ବା ଅଛି ଯେ ଯୁଗର ତମିସ୍ରାବରଣକୁ ଉନ୍ମୋଚନ କରି ଦେଖାଇ ଦେବ, ଏ ରମଣୀ କିଏ ? ଅବା ଏହାର କପାଳ ଉପରେ ଏଇ ରେଖାଟି କଅଣ ?

ପାନ୍ଥ– ସତେ ତ, ଏ ରେଖାଟି ଏ ସୁନ୍ଦର କପାଳରେ ଏମିତି...

ବେଦ– ଆସ୍ତେ ପାନ୍ଥ...ଅଙ୍କିତ ଏଇ ରେଖାଟିକୁ କିଏ କେତେ ଦେଖିଯାଆନ୍ତି, ଶିହରଣ ଜାଗେ, ରୋମାଞ୍ଚ ଜନ୍ମେ... କିନ୍ତୁ କି ଅବ୍ୟକ୍ତ ମାଧୁରୀରେ ବନଛାୟା ଝଲସିଯାଏ, ସବୁ ବୋଧହୁଏ ବିପର୍ଯ୍ୟସ୍ତ... ସବୁ ଆତଙ୍କିତ...

ପାନ୍ଥ– ମୁଁ କିଛି ବୁଝିପାରୁ ନି, ବେଦବତୀ, ଏହାର ରହସ୍ୟ କଅଣ।

ବେଦ– ପାନ୍ଥ ମୁଁ ଯୁଗାଶ୍ରୟୀ; ଅଥଚ ଯୁଗ ବହିର୍ଭୂତ...ମୁଁ ଅନାଦି କାଳରୁ ଶୋଇଛି। କେତେବେଳେ ପ୍ରକମ୍ପ ନେଇ ନିଜ ବକ୍ଷକୁ ଦୋଳିତ କରୁଚି। ମୁଁ ଜାଣେ ଏ ପ୍ରସ୍ତରୀଭୂତା ଲଳନା କିଏ ? କେତେ ଅଶ୍ରୁ ଢାଳି ସେ ତା'ର ବନ୍ଦନୀୟକୁ ସେଇ କାଳକୁ ଅନ୍ୱେଷଣ କରୁଛି, ମୁଁ ସବୁ ଜାଣେ।

ପାନ୍ଥ– ହେ ତଟିନୀ, କି ଦୁର୍ବାର ଉଚ୍ଛ୍ୱାସରେ ତୁମେ ଫାଟି ପଡୁଛ...ତୁମ ଦର୍ଶନ ଲଭି ମୁଁ ଧନ୍ୟ ହେଲି।

ବେଦ– (ଅଶ୍ରୁ ପୋଛି) ଦେଖ ପାନ୍ଥ, ତୁମେ ଜୀବ, ମୁଁ ସଲିଳବତୀ ନଦୀ ମାତ୍ର, ଆଗରେ ନିବିଡ଼ ଅରଣ୍ୟ, ଉପରେ ପ୍ରଶାନ୍ତ ଅନ୍ତରୀକ୍ଷ... ଆଉ ସେଇ ଦୂରରେ ପାଷାଣୀ ବୀଣା ଧାରିଣୀ... ଏଇ ତ !

ପାନ୍ଥ– (ଦୀର୍ଘନିଃଶ୍ୱାସ ପକାଇ) ଏ କେଉଁ ଯୁଗ, ସମୟ କେତେ ଆଖର ହେଲା, ଏ କାଳକୁ ମାପିବାପାଇଁ କିଛି ଯନ୍ତ୍ର ଅଛି କି ?

ବେଦ– ନା, ଯନ୍ତ୍ରଦ୍ୱାରା ପରମାପ ସମ୍ଭବ ନୁହେଁ, ଏ ଆଲୋକବାହୀ ବର୍ଷ ଏହାର ସମୟକୁ ତମେ ଅନୁଭବ କରିପାରିବ ନାହିଁ। ଦେଖ ପାନ୍ଥ, ଦିଗନ୍ତରେ କଳାମେଘ ଉଠିଆସୁଛି... ଦେଖ ପୁଣି ତାହା ଧୀରେ ନିବିଡ଼ ହେବ, ଏବେ ଝଟିକା ଉଠିବ ଅରଣ୍ୟ ଭେଦ କରି, ତା' ସଙ୍ଗେ ଝଲସିଯିବ ବିଦ୍ୟୁତ୍ ରେଖା। ଝରଝର ଝରିପଡ଼ିବ ସଲିଳକଣିକା, ବନଭୂମି ହୋଇଯିବ ସ୍ନିଗ୍ଧ।

ପାନ୍ଥ– ଆଶ୍ଚର୍ଯ୍ୟ ଲାଗେ... ଏ କାଳପ୍ରବାହ କେତେ ରହସ୍ୟମୟ।

ବେଦ– ହଁ ପାନ୍ଥ, ଏଇ କାଳପ୍ରବାହ ଭିତରେ କିଏ କେତେ ନ ଆସିଛନ୍ତି, କେତେ ଅଭିଯାନ, କେତେ ବାଦ୍ୟବାଜଣା, କେତେ ସଂଘର୍ଷ, କେତେ ନିଷ୍ଠୁର ଆକ୍ରମଣ! ପୁଣି ଆସି ଚାଲିଗଲେ କାଳର ଉପତ୍ୟକା ଉପରେ ପାଦ ପକାଇ ଆଦି ପୁରୁଷ ଋଷିଗୋଷ୍ଠୀ। ପ୍ରକୃତିର ସେଇ ସ୍ନିଗ୍ଧ ମଧୁର ରୂପ ଦେଖି ସେମାନେ ହେଲେ ଅଭିଭୂତ।

ପାନ୍ଥ– ତା'ପରେ–।

ବେଦ– ତା'ପରେ ପଂକ୍ତି ବାନ୍ଧି ଆସିଲେ ଶକ, ହୁନ, ମୋଗଲ, ପଠାଣ– ସମସ୍ତେ ଏ ଉପତ୍ୟକା ପାଇଁ। ଲକ୍ଷ୍ୟ କିଛି ନାହିଁ, କେବଳ ଆକ୍ରମଣ।

ପାନ୍ଥ– ବୁଝିଲି, ଏଇ ଆକ୍ରମଣ ତଳେ ମାନବର ଦୁର୍ବାର ଲାଳସା– ତାହା ରାଷ୍ଟ୍ରଜୟ ହେଉ ବା ମଣିଷକୁ ପଦାନତ କରିବାର ଜୟ ହେଉ, ବହୁରୂପରେ ସୃଷ୍ଟି କଲେ ଗ୍ଲାନି, ଆଉ ବୀଭତ୍ସତା... ନୁହେଁ କି?

ବେଦ– (ଅଶ୍ରୁପ୍ଲାବିତ ମୁଖମଣ୍ଡଳ) ଏଇ ଯେ ଶିଳୀଭୂତା ରମଣୀ, ଏଇ ଆଦି ସନାତନ ନାରୀତ୍ୱ, ଯୁଗେ ଯୁଗେ ଖୋଜି ଆସିଛି ତା'ର ପ୍ରିୟତମ ପୁରୁଷକୁ। ଆଜି ସିନା ସେ ପଥର ନିଷ୍ପ୍ରାଣ, କିନ୍ତୁ ଦିନେ ଏଇ ବନଛାୟା ତଳେ ସେ ଟହଟହ ହସି ଘୂରି ବୁଲୁଥିଲା।

ପାନ୍ଥ– ତା'ପରେ–

ବେଦ– ତା'ପରେ ଆଉ କଅଣ? ସେ ଆଜି ସ୍ଥିର, ନିଷ୍କମ୍ପ। ଜଗତରେ ଯେତେବେଳେ ସ୍ନିଗ୍ଧ ଶୀତଳତା ବିରାଜୁଥିଲା, ଯେତେବେଳେ ପ୍ରାଣ ଉତ୍ସଙ୍ଗରେ ଶତସହସ୍ର ଶତଦଳ ପ୍ରସ୍ଫୁଟିତ ହେଉଥିଲା, ଆରଣ୍ୟ–ଶ୍ରୀ ଯେତେବେଳେ ଆଦିମ ଶାନ୍ତିରେ ସମାହିତ ଥିଲା, ସେତେବେଳେ ବନ୍ୟନାରୀ, ବନ୍ୟପୁରୁଷର ବିହାର ଆଉ ଆମୋଦର ସୀମା ନ ଥିଲା। ଆଜି ଜଗତ୍ ଚଞ୍ଚଳ, ବେଗ ହିଁ ତା'ର ମହାସମ୍ପଦ, ଆଉ ଆକର୍ଷଣ।

ପାନ୍ଥ– କିନ୍ତୁ ତଟିନୀ, ଏଇ ବେଗ, ଏଇ ଉଚ୍ଛନ୍ନ ଗତିପ୍ରବାହ ଭିତରେ ସେ ଆଦିମ ମନ ଆଉ ରହିଛି କି?

ବେଦ– ଠିକ୍ କହିଛ ନା, ସେ ମନ ଆଉ ନାହିଁ, ଦେଖ, ଯୁଗତୋରଣ ଫିଟାଇ କିପରି ଯନ୍ତ୍ରର ଘୋଷଯାତ୍ରା ଭାସି ଆସୁଛି। (ଯନ୍ତ୍ରର ଶବ୍ଦ...) ଯନ୍ତ୍ର... ଯନ୍ତ୍ର... ମାନବ ଯନ୍ତ୍ର ପାଲଟିଛି। ତା'ର ଚିତ୍ତବୃତ୍ତିରେ କୋମଳତା ନାହିଁ। ଛାଡ଼, ଆସ ପାନ୍ଥ, ମୋ ଜଳଧାରାରେ ନିଜକୁ ବୁଡ଼ାଇଦିଅ।

ପାନ୍ଥ– ମୁଁ ବହୁଦୂର ଯିବି। ମୋ'ର ଯାତ୍ରାର ଶେଷ ନାହିଁ, କିନ୍ତୁ; ହେ ବେଦବତୀ, ତୁମକୁ ଛାଡ଼ିଯିବା ପୂର୍ବରୁ ମୁଁ ଜାଣିବାକୁ ଚାହେଁ ଏଇ ପାଷାଣୀ କନ୍ୟାର କାହାଣୀ।

ବେଦ– କାହାଣୀ ବୋଲି ସେମିତି କିଛି ନାହିଁ। ମୋ'ରି ଆଗରେ ସେ ଦୁର୍ଘଟଣା ଘଟିଗଲା। ବିଶ୍ୱାସଭଙ୍ଗର, ମୋହ ଭଙ୍ଗର କଠୋର ଦୃଶ୍ୟ ମୁଁ ଦେଖିଛି।

ପାନ୍ଥ– ପ୍ରକାଶ କର ବେଦବତୀ, ମୁଁ ଜାଣିବାକୁ ଚାହେଁ ଏ ବିଶ୍ୱାସ ଭଙ୍ଗର କିଏ ସ୍ରଷ୍ଟା...

ବେଦ– ତେବେ ଶୁଣ ପାନ୍ଥ, (ଦୀର୍ଘନିଃଶ୍ୱାସ ପକାଇ) ଦିଗ ପ୍ରଭାତର ଅରୁଣିମାରେ ଆରକ୍ତ ଉଜ୍ଜ୍ୱଳ ବନଭୂମି ଯେତେବେଳେ ଶିହରିତ ଥିଲା, ନବ ପ୍ରସୂନର ଦୋଳାରେ ଦୋଳାରେ କିଶଳୟର ନିଭୃତ ବକ୍ଷ ଭିତରେ ପିକ ସ୍ୱନ ତୋଳୁଥିଲା ଦେଖାଗଲା ଏକ କ୍ଷୁଦ୍ର ଚିହ୍ନ ଚକ୍ରବାଳ ସ୍ପର୍ଶ କରି, ସେ ସଂକେତ କ୍ରମେ ବଡ଼ ହେଲା, ଧୀରେ ଧୀରେ ତାହା ବିଗ୍ରହ ଲଭି ଆଗକୁ ମାଡ଼ିଆସିଲା।

ପାନ୍ଥ– ତା'ପରେ... ?

ବେଦ– ତା'ପରେ...

(ଜଙ୍ଗଲ ଦୃଶ୍ୟ। ରାଜପୁତ୍ର ରତ୍ନଚନ୍ଦ୍ର ଓ ସାଗରିକା। ରାଜପୁତ୍ର ରତ୍ନଚନ୍ଦ୍ର ଓ ସାଗରିକାକୁ ବୁଲି ବୁଲି ଖୋଜୁଥିଲେ)

ରତ୍ନଚନ୍ଦ୍ର– ସାଗରିକା...ସାଗରିକା !

ସାଗରିକା– ହଁ ପ୍ରିୟ, ମୁଁ ଏଇଠାରେ ଅଛି।

ରତ୍ନ– ମନେପଡ଼େ, ସେଇଦିନ...

ସାଗରିକା– ସବୁ ମନେଅଛି.....

ରତ୍ନ– କଅଣ କହିଲ ?

ସାଗରିକା– ସେ କଥା କଅଣ କହିହୁଏ ? ସେ ତ ଅବ୍ୟକ୍ତ।

ରତ୍ନ– ହଁ ସାଗରିକା, ପ୍ରେମର ଭାଷା ଅବ୍ୟକ୍ତ, କାହିଁ ମୁଁ କେଉଁଠି ଥିଲି। ମୁଁ ରାଜପୁତ୍ର, ଦୀର୍ଘକାଳ ହେଲା ରାଜ୍ୟ ଛାଡ଼ି ଏଇ ଅରଣ୍ୟ ଭିତରେ ତୁମ ସହିତ...

ସାଗରିକା– ମୋ ସହିତ ?

ରତ୍ନ– ଓଃ ବୁଝିଲି... ଭାବୁଛ କେତେଦିନ ବା ତୁମ ସହିତ ?... ଅବିଶ୍ୱାସ ହେଉଛି ନା ?

ସାଗରିକା– ନା, ଅବିଶ୍ୱାସ ନାହିଁ; ତେବେ ତୁମେ ପୁରୁଷ, ସହଜରେ କ୍ଳାନ୍ତି ଆସିଯାଏ...

ରତ୍ନ– କେଉଁଠି ? ନିଜ ଆତ୍ମାର ସଙ୍ଗିନୀ ପାଖରେ ?

ସାଗରିକା– ମନ ହୁଏ, ତୁମକୁ ନିବିଡ଼ ଆଶ୍ଳେଷରେ ବାନ୍ଧି ରଖନ୍ତି; ଏଇ ଲତା ପଲ୍ଲବ ଅନ୍ତରାଳରେ ତୁମର ସତ୍ତାକୁ ଯୁଗ ଯୁଗ ଧରି ଆଚ୍ଛନ୍ନ କରି ଘୂରି ବୁଲନ୍ତି ବେଦବତୀର କୂଳେ କୂଳେ...

ରତ୍ନ– ବେଦବତୀ ? କିଏ ସେ ?

ସାଗରିକା– (ହସି) ବାଃ, ଏତେ ଶୀଘ୍ର ଭୁଲିଗଲ ? ବେଦବତୀ ନଦୀ– ମନେ ପଡୁନାହିଁ ? ସେ ଯେ କେତେ ସୁନ୍ଦର ପ୍ରଭାତ ଥିଲା... ନବ ଅରୁଣିମାରେ ଦିଗନ୍ତ ସିନ୍ଦୂରବର୍ଣ୍ଣ ଧରିଥିଲା। ମୁଁ ବୁଡ଼ି ରହିଥିଲି– ବେଦବତୀର କଳକଳ ସ୍ରୋତରେ। ମୁହଁଟି ଥିଲା ଉପରକୁ– ତନୁ ଉପରେ ମୋ'ର ସେ ଯେ କି ଶୀତଳ ପ୍ରବାହ...

ରତ୍ନ– ତା'ପରେ... ?

ସାଗରିକା– ତା'ପରେ– ତୁମେ। ଦେଖିଲି ତୁମେ ଏକ ଅଶ୍ୱଚାଳକ ରାଜପୁତ୍ର... ଯୋଦ୍ଧୃବେଶମଣ୍ଡିତ, ବପୁଶ୍ରୀ ଅତୁଳନୀୟ। କଟୀରେ ଖଡ୍‌ଗକୋଷ, ତୁମରି ଅଶ୍ୱଖୁରାରେ ଶ୍ରାନ୍ତ ଅରଣ୍ୟ ଶବ୍ଦାୟିତ ହେଲା। ମନେ ପଡ଼େ?

ରତ୍ନ– ମନେପଡ଼େ ସାଗରିକା– ସେତେବେଳେ ବେଦବତୀର ତରଙ୍ଗମାଳାରେ ତୁମର ତନୁକୁ ମାଜି ଦେଉଥିଲି। ପ୍ରସ୍ଫୁଟିତ ପଦ୍ମସମ ଏଇ ମୁହଁଟି ତା'ଉପରେ ଭାସି ରହିଥିଲା–

ସାଗରିକା– କାହିଁକି ଅସଭ୍ୟ ଭଳି ସେତେବେଳେ ମୋ ଆଡ଼କୁ ତୀକ୍ଷ୍ଣ କଟାକ୍ଷ ଢାଳିଥିଲ? ବୁଝି ନଥିଲକି ନାରୀ ସେତେବେଳେ ସ୍ନାନରତା?

ରତ୍ନ– ବୁଝିଥିଲି, ସବୁ ବୁଝିଥିଲି... ମାତ୍ର କଅଣ ତା'ପରେ ଘଟିଥିଲା ମୁଁ ଆଉ ଜାଣିପାରିଲି ନାହିଁ...

ସାଗରିକା– ଘଟଣ ଅଘଟଣ ତୁମର କି ମୋ'ର ଆୟତ୍ତରେ ନାହିଁ, ଯାହା ଘଟୁଛି କାଳ ତାକୁ ସମର୍ଥନ କରୁଛି ବୋଲି ଘଟୁଛି। କାଳକୁ ପ୍ରଣାମ କର ରାଜପୁତ୍ର...

ରତ୍ନ– କାଳ? ସେ କଅଣ? ଏଠାରେ ଅରଣ୍ୟେ ପ୍ରକୃତି ଭିତରେ ତୁମେ ଆଉ ମୁଁ... ଏ ଦୁଇଟି ସତ୍ତା ଛଡ଼ା କାଳ ଅକାଳ କଥା ମତେ କହ ନାହିଁ। କାଳ? ସେ ଆସି ଆମ ମଝିରେ ଛିଡ଼ା ହେବ? ସେ କଅଣ ମଣିଷ, ନା ଜୀବ ନା ଗୋଟାଏ କିଛି ଅନୁଭବ, ଯାହାର ପ୍ରଚଣ୍ଡତା ଆମ ହୃଦୟକୁ ସ୍ତବ୍ଧ କରିଦେବ? ଆସୁ ସେ କାଳ....

ସାଗରିକା– ଏ କଅଣ? ଏ କି ଦୁର୍ବୁଦ୍ଧି– ଯାହା ଅନନ୍ତ ଅମୀମାଂସିତ, ଯାହାର ରୂପ ନାହିଁ, ଯାହାର ଐଶ୍ୱର୍ଯ୍ୟ ନାହିଁ, ଅଥଚ ସବୁ ଅଛି– ଯେ ନିଜେ ସନାତନ, ତାକୁ ତୁମେ ବିନାଶ କରିପାରିବ? କେତେ ଆସିଲେ, କେତେ ଗଲେ, ସେ କିନ୍ତୁ ରହିଛି ଶାଶ୍ୱତ ଧାରାରେ। ତୁମେ ତାକୁ ସଂହାର କରିବ?

ରତ୍ନ– ତାକୁଇ ନେଇ ତ ତୁମର ଯେତେ ଅବିଶ୍ୱାସ। ସେ କାଳ ମୋତେ ପଳିତ ଗଳିତ କରିବ, ସେଇ କାଳ ମତେ ଦୁର୍ବଳ କରିବ; ମୁଁ ଏହା ସହିପାରିବି? ମୁଁ ଚାହେଁ ନିତ୍ୟ ଯୌବନ ନିତ୍ୟ ସମ୍ଭୋଗ, ତୁମେ... ମୁଁ, ଆଉ ବେଦବତୀ। ଏହା ଛଡ଼ା ମୁଁ କାହାର ଉପସ୍ଥିତି ସହିବି ନାହିଁ। ସେ ଆସୁ ମୁଁ ତାକୁ ମୋ'ର ଏଇ ଶାଣିତ ଅସିରେ... (କୋଷମୁକ୍ତ କରି) ଭୂଲୁଣ୍ଠିତ କରିବି।

ସାଗରିକା– (ଭୟରେ) ନା, ନା, ତୁମେ ତାହା କର ନାହିଁ। ସେ ଚିନ୍ତା ବି ଅସହ୍ୟ... ମୁଁ ନାରୀ, ମୋ ରକ୍ତରେ ସୃଷ୍ଟିଧର୍ମ, ମୁଁ ଜାଣେ କାଳର ବାର୍ତ୍ତା କଅଣ। ସେ ସୃଷ୍ଟି କରେ, ବୃନ୍ତରେ ଦିଏ ପୁଷ୍ପ, ତଟିନୀରେ ଦିଏ ପ୍ରବାହ, ଶୈଳରେ ଦିଏ ଶିଳା, ନାରୀ ମନରେ ଦିଏ ସୃଷ୍ଟିର ଦୁର୍ବାର ମୋହ...

ରତ୍ନ– ଆଉ ପୁରୁଷ ମନରେ ଦିଏ ସଂହାର?

ସାଗରିକା– ନା, ନା, ତା' ତୁମେ ଭାବ ନାହିଁ। ମୋ'ର କାହିଁକି ଦକ୍ଷିଣ ଚକ୍ଷୁ ସ୍ପନ୍ଦିତ ହେଉଛି। କିଛି ଅକଲ୍ୟାଣ ଘଟିବ କି? ହେ ପ୍ରିୟ, ହେ ମୋ'ର ସନାତନ ପୁରୁଷ, ମୋ ହୃଦୟର

ସତ୍ତା, ତୁମେ ଭୁଲ ବୁଝୁଛ– କାଳକୁ ସଂହାର କରି ହୁଏନା, ତୁମେ ସ୍ତବ୍ଧ ହୁଅ।

ରତ୍ନ– ମୁଁ ସ୍ତବ୍ଧ ହେବି, ତୁମ ଓ ମୋ ଭିତରେ, ଏ କାଳର କ୍ଷମତାକୁ ମୁଁ ସହିବି ? ମୁଁ ଆହ୍ୱାନ କରୁଛି ସେ କାଳକୁ; ସେ ଆସୁ, ମୁଁ ତାକୁ... ମୁଁ ତାକୁ...

ସାଗରିକା– ହେ ରାଜପୁତ, ହେ ଅରଣ୍ୟ, ହେ ମହାସାଗର, ତୁମେ ସମସ୍ତେ ମତେ ରକ୍ଷା କର; ମୁଁ ଦୁର୍ବଳା, କାଳ ପାଖରେ ମୁଁ ମୋ'ର ଏଇ ପ୍ରିୟ ରାଜପୁତ୍ରକୁ ସମର୍ପି ଦେଲି। ହେ ମହାକାଳ, ତାଙ୍କୁ ରକ୍ଷାକର।

ରତ୍ନ– ମତେ ରକ୍ଷା କରିବ ? ଅବାଧ ନାରୀ, ପ୍ରେମରେ ଆଲିଙ୍ଗନ କରିଛି ବୋଲି ତୋ'ର ଚରଣ ତଳେ ଏ ପୌରୁଷ ବିକ୍ରୟ କରିଦେବି ? ନିର୍ଲ୍ଲଜ ରମଣୀ... ଯଦି ଏଇ ମୁହୂର୍ତ୍ତରେ ବଶୀଭୂତ ନ ହେଉ, ଯଦି ଏଇ ମୁହୂର୍ତ୍ତରେ ଏଇ କାଳର ଆବାସ ଅରଣ୍ୟ ଭିତରୁ ବାହାରି ଆସି ଅଶ୍ୱପୃଷ୍ଠରେ ମୋର ରାଜଧାନୀକୁ ନ ଯାଉ, ତେବେ...

ସାଗରିକା– ଅରଣ୍ୟରୁ ଚାଲିଯିବି ? ମୁଁ ଯେ ଆଦିମ ନାରୀ, ତୁମଭଳି ଦୁର୍ଦ୍ଧର୍ଷ ରାଜପୁତ୍ର, ଶାସକ ଆଜି ଏତେ ବଡ଼ ପୃଥିବୀରେ କେଉଁଠି ହେଲେ ତିଳେ ମାତ୍ର ଶ୍ୟାମଦୁର୍ବାଦଳ ରଖିଲ ନାହିଁ। ଯାହା କିଛି ଆଦିମତା ରହିଛି ସେ ଏଇ ଅରଣ୍ୟ ଭିତରେ ଏଇ ନଦୀର ପ୍ରବାହରେ... ମୁଁ ଯାଇପାରିବି ନାହିଁ, ମୋର ଯିବା ସମ୍ଭବ ନୁହେଁ... ତେବେ ବୁଝିଲି– ଏତେ ଶୀଘ୍ର ମହାକ୍ଲାନ୍ତି ଆସିଗଲା ? ଧନ୍ୟ ପୁରୁଷ !

ରତ୍ନ– ସାଗରିକା, ତୁମେ ଯିବ ନାହିଁ ?

ସାଗରିକା– କେଉଁଠିକି ?

ରତ୍ନ– ସହର, ସୌଧମାଳା-ରଞ୍ଜିତ ସହର।

ସାଗରିକା– ନା, ନା...

ରତ୍ନ– ତେବେ ଏତେ ପ୍ରେମ ....

ସାଗରିକା– ଯେଉଁ ପ୍ରେମ ନିଗ୍ରହ ଦିଏ, ଲାଞ୍ଛନା ଦିଏ, ସେ ପ୍ରେମକୁ ମୁଁ ସ୍ୱୀକାର କରେ ନା।

ରତ୍ନ– ଶେଷଥର ପଚାରୁଛି ଯିବ କି ନାହିଁ ?

ସାଗରିକା– ନା, ନା...

ରତ୍ନ– (ରାଗରେ) ତାହାହେଲେ ତୁମେ ଯିବ ନାହିଁ ? ଏଇ ତୁମର ପ୍ରାପ୍ୟ। (ଚାବୁକରେ ମୁଣ୍ଡ ଉପରେ ଆଘାତ କଲେ)

ସାଗରିକା– ଓଃ... (ଅନ୍ତର୍ଦ୍ଧାନ ହୋଇଗଲେ) (ମଞ୍ଚ ଅନ୍ଧକାର)

(ପୂର୍ବଦୃଶ୍ୟ ଭିତରେ)

ବେଦ– (ଦୀର୍ଘ ନିଃଶ୍ୱାସ ପକାଇ) ହଁ, ଏମିତି ଦୁର୍ଘଟଣା ଘଟିଗଲା ତା'ପରେ ସେ ରାଜପୁତ୍ର ଏ ବଧୂକୁ ଛାଡ଼ି ଉଭେଇଗଲେ।

ପାନ୍ଥ– ବିନ୍ଦୁ ବିନ୍ଦୁ ସମସ୍ତ ରସ ନିଷ୍କାସିତ କରି; ନୁହେଁ କି ?

ବେଦ– ମୁଁ ଜାଣେ ନା ପାନ୍ଥ, କିନ୍ତୁ ଏଇ ବିଚିତ୍ର କଳାକୁ ଲୋକେ କହନ୍ତି ପୁରୁଷର ପୌରୁଷ। ଚାବୁକର ପ୍ରହାରରେ ପାଷାଣୀ–କନ୍ୟାର କପାଳଚିହ୍ନକୁ ଏବେ ବି ଅରଣ୍ୟ ଭିତରେ ସଂପାଦି ରଖିଛି ମହାକାଳ। ସମସ୍ତ ଆଜି ଶିଳୀଭୂତ... କି ନାରୀ, କି ପୁରୁଷ, ତାହା ହିଁ ଏ ଯୁଗର ସ୍ୱାକ୍ଷର।

ପାନ୍ଥ– (ନମସ୍କାର କରି) ବେଦବତୀ, ଫେରିବା ବାଟରେ ପୁଣି ଦେଖା ହେବ ?

ବେଦ– ପାନ୍ଥ, ବଡ଼ କଷ୍ଟ, ବଡ଼ ଯନ୍ତ୍ରଣା, ନା, ନା, ମୁଁ ଆଉ ପାରିବି ନାହିଁ। ଆଉ ମୁଁ ଧରି ରଖିପାରିବି ନାହିଁ ନିଜକୁ। ବହୁ କଷ୍ଟରେ ସହି ଆସିଛି। ଆଉ ଏଣିକି ପାରିବି ନାହିଁ।

ପାନ୍ଥ– କାହିଁକି ? ତୁମେ ତ ଆଦିମାତା, ତୁମେ ନ ସହିଲେ କିଏ ସହିବ ?

ବେଦ– ନା, ନା, ସେମାନେ ଆସୁଛନ୍ତି, କାହାକୁ ରଖିବେ ନାହିଁ। ମୋ ତରଙ୍ଗ, ମୋ ଜଳରାଶି ଉପରେ ମନୁଷ୍ୟ ପ୍ରଲୁବ୍‌ଧ ହୋଇ ଉଠିଚି। ମୋତେ ଶୁଖାଇ ଦେବେ (ଭୟରେ) ଅବା ମୋ ଉପରେ ବନ୍ଧ ବାନ୍ଧି ଦେବେ। ମୁଁ ବା କାହିଁକି ବଞ୍ଚିବି ? ଏ ଅରଣ୍ୟ ବା କାହିଁକି ବଞ୍ଚିବ ? କିଏ ବା କାହିଁକି ବଞ୍ଚିବ ? ଯାଅ ପାନ୍ଥ, ଯାଅ, ଆଗକୁ କଅଣ ଅଛି କିଏ ଜାଣେ ? କିନ୍ତୁ ଯାଅ– ବିଶ୍ୱାସଭରା ପ୍ରାଣରେ ଯାଅ।

ପାନ୍ଥ– ତେବେ ଯାତ୍ରା ଆରମ୍ଭ କରେ ବେଦବତୀ–

ବେଦବତୀ– (ମୁଣ୍ଡ ହଲାଇ) ବେଶ୍‌।

–ପଟ୍ଟପରିବର୍ତ୍ତନ–

[ ହଠାତ୍‌ ଚାରିଆଡୁ କୋଳାହଳ, ବହୁ ଲୋକଙ୍କ କଣ୍ଠଧ୍ୱନି, ଚାରିଗୋଟି ଲୋକ କୁରାଢ଼ି ଉଞ୍ଚାଇଛନ୍ତି ଗଛ କାଟିବା ଉଦ୍ଦେଶ୍ୟରେ, ମ୍ୟାନେଜର ବାବୁ ଚାବୁକ ଧରି ପାଟି କରୁଛନ୍ତି। ]

ମ୍ୟାନେଜର– ଲଗାଅ ଚୋଟ, ଗଛ କାଟ, ସଫା କର ବଣ ଜଙ୍ଗଲ। ଏଠି କଳ ବସିବ, ଯନ୍ତ୍ର କାରଖାନା ତିଆରି ହେବ।

[ ନେପଥ୍ୟରୁ– ହଁ ଏଇଠି କଳ କାରଖାନା ବସିବ– ଯନ୍ତ୍ରର ଶବ୍ଦ– ଚାରିଆଡ଼େ ପାଟି–

ରଙ୍ଗମଞ୍ଚକୁ ଆସିଲେ ଜଣେ ସନ୍ନ୍ୟାସୀ, ତାଙ୍କ ଦାଢ଼ିକୁ ଧରି ଜଣେ କର୍ମଚାରୀ ଟାଣି ଟାଣି ଆଣୁଛନ୍ତି ]

ମ୍ୟାନେଜର– ହୋ ହୋ ବାପଧନ ବାବାଜୀ, ଆସିଛ ? ମୋ ଆଗରେ କଅଣ ଧରେଇ ଦେଇ ମତେ ଅନ୍ଧ କରିଦେଇଥିଲ ହେ ବାବାଜୀ ? ତୁମେ ଗାରଡ଼, ଖେଚଡ଼, ମାରଡ଼, ବାହାପିଆ ଯାହା ହୁଅ ପଛକେ ତମ ବଂଶ ଧ୍ୱଂସ ନ କଲେ ଆଉ ଏ କାଳରେ ପ୍ରଗତି ହେବନି– ପରାଙ୍ଗପୁଷ୍ଟ ଜୀବ, ସାଧୁ ବନିଚ–

ସନ୍ନ୍ୟାସୀ– ମତେ ଛାଡ଼– ମତେ ଛାଡ଼– ସାଧୁ ସନ୍ନ୍ୟାସୀମାନଙ୍କୁ ଭକ୍ତି କରିବ ନାହିଁ ? ଆମେ ସବୁ କାହାର କଅଣ କରୁଛୁ ? (ଭୟରେ) ମତେ ଛାଡ଼ିଦିଅ।

ମ୍ୟାନେଜର– ହୁଁ, ଛାଡ଼ିବି, ନୁହେଁ ? ଗେରୁଆ ଛାଡ଼ି କାଟ ଏ ଗଛ। ଦିନକୁ ଟଙ୍କାଏ ପାଇବ, ତେଣିକି ରାତିରେ ଗଞ୍ଜେଇ ଟାଣି ଗଡୁଥା’।

ସନ୍ନ୍ୟାସୀ– ଏଇ ଭଲ କଥା ନୁହେଁ। ଭାବିଥିଲି ତମର ଜ୍ଞାନ ଫେରିଛି, ତମ ମାଲିକ କଅଣ ଜେଲରୁ ଫେରିଲେଣି ?

ମ୍ୟାନେଜର– ଚୁପ୍‌ କର, ମାଲିକ କଅଣ, କହ ଈଶ୍ୱର। ରାମ ଲଛମନ ଭରତ ଶତ୍ରୁଘ୍ନ ରାଧାକୃଷ୍ଣ ସାଗରମଲ୍ଲ ବିଶ୍ୱେଶ୍ୱର ଦୟାଲ ହେ– ହଇରେ ସେ ଫେରିବେ ନାହିଁ ? ସେ ପରା ଜେଲ ପରିଦର୍ଶନ କରିବାକୁ ଯାଇଥିଲେ। ଅଶ୍ରମ କାରାବାସ। ଶୀତତାପ–ନିୟନ୍ତ୍ରିତ କୋଠରୀ, ବୁଝିଲୁ ମୂର୍ଖ ! (ତା ଦାଢ଼ି

ହଲାଇ) ଯୁଗ କୁଆଡ଼େ ଯାଉଛି ବୁଝିଲା ନାହିଁ ବାବାଜୀ।

(ନେପଥ୍ୟରୁ ବେଦବତୀର କଣ୍ଠଧ୍ୱନି)

ବେଦ– ମୋତେ ଛାଡ଼ିଦିଅ, ମୋତେ ଛାଡ଼ିଦିଅ– (ପ୍ରବେଶ)

ମ୍ୟାନେଜର– ଏତେବେଳକୁ ଆସିଲ, ଦେଖାଅ ବକ୍ଷ, ଦେଖାଅ।

ବେଦ– ହେ ପ୍ରଭୁ କାଳ, ଏମାନେ କଅଣ କରୁଛନ୍ତି ?

ମ୍ୟାନେଜର– ଦେଖାଅ ଛାତି, ଆମେ ତୋ ଉପରେ ବନ୍ଧ ବାନ୍ଧିଦେବୁ– (ଭିତରକୁ ଚାହିଁ) ଆରେ ଇଟାବାଲା, ଆରେ ସିମେଣ୍ଟବାଲା, ମିସ୍ତ୍ରୀଗୁଡ଼ାକ କୁଆଡ଼େ ଗଲେ ? ଆରେ ଯାକୁ ପୋତିଦିଅ। ବନ୍ଧ ତିଆରି କର।

(ନେପଥ୍ୟରୁ ପାଟି)

ହଁ ବନ୍ଧ ବାନ୍ଧିଦିଅ, ଡ୍ୟାମ କରିଦିଅ।

ବେଦ– ନା, ନା, ମୁଁ ସଲିଳବତୀ ନଦୀ, ମୋ ଉପରେ ବନ୍ଧ ବାନ୍ଧ ନାହିଁ। ହେ ଯୁଗ, ହେ କାଳ, ରକ୍ଷାକର।

ମ୍ୟାନେଜର– ଏ ଯୁଗ ତ ସେଇଆ ଚାହୁଁଛି, ବନ୍ଧ ବାନ୍ଧିଦିଅ।

(କାଳର ପ୍ରବେଶ)

କାଳ– ଆଉ କାହାକୁ ବାନ୍ଧୁଛ ?

ବେଦ– (କାଳର ପାଦତଳେ ନତଜାନୁ ହୋଇ) ପ୍ରଭୁ ମହାକାଳ, ଆସିଛ ?

କାଳ– (ବେଦବତୀକୁ ଉଠାଇ) ଆସିଛି ବେଦବତୀ, ଆଉ ସହି ପାରିଲି ନାହିଁ। ଏଣିକି ସବୁ ମୁଁ ନିଜେ ଭାଙ୍ଗିଦେବି। ନିଜେ ସଂହାର କରିବି। ଭାବୁଥିଲି ଅବୋଧ ଶିଶୁଭଳି ... ମଣିଷଗୁଡ଼ାଙ୍କର ଦୁଷ୍କୃତିକୁ ମୁଁ ସାମୟିକ କ୍ଷମା କରିଦେବି; କିନ୍ତୁ ଏମାନେ କ୍ଷମାର ଅଯୋଗ୍ୟ। ଏଇ ମୁହୂର୍ତ୍ତରୁ ମୁଁ ପ୍ରଳୟ ନଟନ– ନଟରାଜର ନୃତ୍ୟରେ ଉନ୍ମତ୍ତ ହେବି। ଥରେ ମୁଁ ଏହିପରି ସଂହାର ମୂର୍ତ୍ତି ଧରିଥିଲି, ଆଜି ପୁଣି ଆଉ ଥରେ ଧରିବି। ଏତେ ହିଂସା, ଏତେ ବିଦ୍ୱେଷ, ଏତେ ଶଠତା, ଏତେ ଲୋଭ, ଏତେ କ୍ରୋଧ–ସୁନ୍ଦର, ନିର୍ମଳ, ପ୍ରେମମୟ କିଛି ରଖିଦେବେ ନାହିଁ ଏମାନେ। କେବଳ କାଟ, ହାଣ, ମାର, ବାନ୍ଧ, ଧ୍ୱଂସ– ଏଇ ବାର୍ତ୍ତାରେ ଏ ପୃଥିବୀ ପୂରିଯିବ ? ନାଃ– ଅସମ୍ଭବ... ଏଇ ମୁହୂର୍ତ୍ତରେ ମୁଁ ବିଶ୍ୱଦେବତାଙ୍କ ଅନ୍ତରାଳରେ ଲୀନ ହେଲି। ହେ ମୂର୍ଖ ମଣିଷ, ବୁଝିବାକୁ ଚାହଁ– ଏବେ ବି ସମୟ ଅଛି। ବିଶ୍ୱ ଜନତାର କଲ୍ୟାଣ ଚାହଁ ନା ମୃତ୍ୟୁ ? ପ୍ରେମ ଚାହଁ ନା ଘୃଣା ? ମୁକ୍ତି ଚାହଁ ନା ବନ୍ଧନ ... ନିର୍ବୋଧ ମନୁଷ୍ୟ ଭିତରକୁ ଚାହଁ। ଦେଖିବୁ ବିଶ୍ୱଦେବତା ତୋ ଅନ୍ତର ଭିତରେ ପ୍ରଚ୍ଛନ୍ନ ଅଛି। ସାବଧାନ କରିଦେଲି; ଏ ଚଣ୍ଡତା ପରିହାର କର। ଯାଅ– ବିଶ୍ୱଦେବତା ପାଖରେ ନତଜାନୁ ହୁଅ– ପାଇବ ବିଶ୍ୱାସ; ପାଇବ ଶାନ୍ତି–

(ପଟ୍ଟପରିବର୍ତ୍ତନ– ବିଶ୍ୱଦେବତାର ମନ୍ଦିର ... ପୂଜାରିଣୀର ନୃତ୍ୟ)

● (ଯବନିକା) ●

■■■

# ବଳଦ ବରଗଛ ଓ ବିନୋଦିନୀ

## ପ୍ରଥମ ଦୃଶ୍ୟ

[ ଗାଁ ପାଖ ବାଟ। କେଳା–କେଲୁଣୀ ବା ସେହି ପ୍ରକାର କୌଣସି ଗ୍ରାମ୍ୟ ନୃତ୍ୟ ହେଉଛି। ଦେଖଣାହାରୀଏ ଭିଡ଼ କରିଛନ୍ତି। କେତେକ ଯାଉଛନ୍ତି ଆସୁଛନ୍ତି। ଏଇ ମେଳି ଭିତରେ ଗୋଟିଏ ଝିଅ, ଗୋଟିଏ ପୁଅ ନାଚ ଦେଖୁଛନ୍ତି। ଝିଅଟିର ନାଁ ବିନୋଦିନୀ। ନାଚ ଶେଷ ହେବା ପରେ ଲୋକେ ଚାଲିଗଲେ। ସେମାନଙ୍କ ସଙ୍ଗେ ଚାଲିଯାଉଥିଲେ ବିନୋଦିନୀ ଓ ସେ ବାଳକ। ଜ୍ଞାନାଞ୍ଜନ କେତେବେଳୁ ନାଚ ଦେଖୁଥିଲେ। ସେ ଏ ପିଲା ଦୁହିଁଙ୍କୁ ଡାକିଲେ। ]

ଜ୍ଞାନାଞ୍ଜନ– ଶୁଣ, ଶୁଣ, ପିଲାଏ! (ପିଲାମାନେ ପାଖକୁ ଆସିଲେ, ସାମାନ୍ୟ ଭୟମିଶା ଚାହାଣୀରେ ଅନାଇଲେ) ତୁମେ ଆଜି ଭୋଟ ଦେବ ?

ବିନୋଦିନୀ– ଆମକୁ ଏକୋଇଶି ବର୍ଷ ହୋଇନି। ଆମେ କେମିତି ଦବୁ ? ବାପା ବୋଉ ଭୋଟ ଦେବାକୁ ଆସିବେ।

ଜ୍ଞାନାଞ୍ଜନ– ତୁମେମାନେ ସ୍କୁଲରେ ପଢୁଛ ?

ବାଳକ– ହଁ, (ହାତ ବଢ଼ାଇ ଦେଇ) ଏଇ ମାଇନର ସ୍କୁଲରେ ଆମେ ପଢୁଛୁ। ଭୋଟ କଅଣ– ଦିନେ ଏ ବିଷୟରେ ମାଷ୍ଟ୍ରେ ଆମକୁ ବୁଝାଇ ଦେଇଛନ୍ତି।

ଜ୍ଞାନାଞ୍ଜନ– କଅଣ ବୁଝିଛ କହିଲ ?

ବିନୋଦିନୀ– ତିନିମାସ ହେଲା ଗାଁ ପରା ଉଠୁଛି ପଡୁଛି। ସୋସିଆଲିଷ୍ଟମାନେ ଆସି କେତେ କଥା କହୁଛନ୍ତି; କଂଗ୍ରେସବାଲା ଆଉ କେତେ କଥା କହୁଛନ୍ତି। ଖାଲି କହୁଛନ୍ତି ଯୋଡ଼ି ବଳଦରେ ଭୋଟ ଦିଅ। ଆଜ୍ଞା, ଆଗେ ଆମ ଗାଁକୁ ମଟର କେବେ ଆସୁ ନ ଥିଲା, ଏବେ ଦିନକେ ଦଶ ବାରୁଟା; ବାବୁ–ଭୟା କେତେ ଆସୁଛନ୍ତି।

ଜ୍ଞାନାଞ୍ଜନ– ମିଟିଙ୍ଗ୍ କରି ସମସ୍ତେ ଯେ ଯାହା କଥା କହୁଛନ୍ତି; ନା ?

ବାଳକ– ହଁ, ଆମେ ସବୁ କଥା ବୁଝିପାରୁନୁ, ତେବେ–

ବିନୋଦିନୀ– ତେବେ ସମସ୍ତେ କହୁଛନ୍ତି ତାଙ୍କ ଦଳକୁ ଭୋଟ ଦେଲେ ଦେଶରେ ଘିଅ ମହୁ ଭାସିଯିବ।

ବାଳକ– ଘିଅ ମହୁ ଭାସିବ କଅଣ ?

ଜ୍ଞାନାଞ୍ଜନ– ମାନେ ସେମାନେ ଦେଶର ଉନ୍ନତି କରିବେ। ଆମର ଆୟ ବଢ଼ିବ। ଦେଶରେ କଳ କାରଖାନା ବସିବ। ଲୋକେ ସୁଖରେ ରହିବେ

ବିନୋଦିନୀ– ଆପଣ କାହାକୁ ଭୋଟ ଦେବେ ?

ଜ୍ଞାନାଞ୍ଜନ– (ହସି) ନା, ନା, ମୁଁ କାହିଁକି ଭୋଟ ଦେବି ? ମୁଁ ଆସିଛି ଭୋଟ ଗ୍ରହଣ କରିବାକୁ।

ମୁଁ ପ୍ରିଜାଇଡ଼ିଂ ଅଫିସର୍ । ଭୋଟବାବୁ ।

ବାଳକ– ଭୋଟବାବୁ, ଏ ଭୋଟକଥା ଭାରୀ ମଜା ନା ?

ଜ୍ଞାନାଞ୍ଜନ– ହଁ, ତମକୁ ମଜା ଲାଗୁଥିବ, ହେଲେ ଯେଉଁମାନେ ଏ ଭୋଟ–ଯୁଦ୍ଧକୁ ଡେଇଁ ପଡ଼ିଛନ୍ତି, ସେମାନେ ଭାରୀ ଚିନ୍ତାରେ ପଡ଼ିଥିବେ ।

ବିନୋଦିନୀ– କିଏ ଜିତିବ, କିଏ ହାରିବ, ଏଇଆ ଭାବି ତ ?

ଜ୍ଞାନାଞ୍ଜନ– ହଁ, ନୁହେଁ କଅଣ ?

ବାଳକ– ବୁଝିପାରୁନୁ ବିନ ? ଆମେ ଯେମିତି ଖେଳରେ ହାରିଯାଉ ସେମିତି କେତେ ହାରିଯିବେ । ହେଲେ, ହାରିଲାବାଲା କଅଣ ଜିତିଲାବାଲା ସାଥିରେ ହାତ ମିଳାଏ ନାହିଁ ? ମାଷ୍ଟ୍ରେ ଆମକୁ କହିଛନ୍ତି ଯୁଦ୍ଧ କରୁଥିବା ଯାଏ ହାର–ଜିତ୍, ଯୁଦ୍ଧ ସରିଗଲେ ପରସ୍ପର ବନ୍ଧୁ ।

ଜ୍ଞାନାଞ୍ଜନ– (ମୁଗ୍ଧ ହୋଇ) ବାଃ ସୁନ୍ଦର କଥା ତ ଶିଖିଛ । ତମ ସ୍କୁଲରେ ଭଲ ପଢ଼ାପଢ଼ି ହୁଏ ବୋଧେ । ଝିଅ, ତମ ନାଆଁ ବିନୋଦିନୀ ?

ବିନୋଦିନୀ– ହଁ ଖୁବ୍ ଭଲ ପଢ଼ା ହୁଏ ।

ଜ୍ଞାନାଞ୍ଜନ– (ନେପଥ୍ୟକୁ ହାତ ଦେଖାଇ) ଏ ଆମ୍ବପତ୍ର ଗଦେଇଛ, କଅଣ ଘରକୁ ନେବ ?

ବାଳକ– ହଁ ଆଜ୍ଞା । ମାଷ୍ଟ୍ରେ କହିଛନ୍ତି କୌଣସି ପ୍ରକାରେ ବାପା ବୋଉଙ୍କୁ ସାହାଯ୍ୟ କରିବା ଦରକାର । ଆମେ ଆମ୍ବପତ୍ର ଗୋଟେଇ ନେଉ, ବୋଉ ଚୁଲୀରେ ଜାଳନ୍ତି । କାଠ ଏତେ କେଉଁଠୁ ଆସିବ ? ବେଶୀ ପଇସା ଦରକାର ।

(ଦୁଇ ଜଣ ଗାଁ ମୁରବି ଲୋକ ଆସିଲେ ।

ପ୍ରଥମ ମୁରବି– କଅଣ ବକ୍ ବକ୍ କରୁଛ କିରେ ପିଲେ ? ଏ ପିଲାଗୁଡ଼ାକ ବାବୁ–ଭୟା ମାନୁ ନାହାନ୍ତି । ବାବୁ ବିରକ୍ତ ହେବେ, ଯାଃ ପଳା, ଯାଉଚ ନା ଦେଖିବ ? (ହାତ ଉଠାଇଲେ) ଯାଃ, ପଳା... (ପିଲା ଦୁଇଟି ଭୟରେ ଦଉଡ଼ି ପଳାଇଲେ, ସେମାନଙ୍କୁ ଆହତ ଦୃଷ୍ଟିରେ ଚାହିଁ ରହିଲେ ଜ୍ଞାନାଞ୍ଜନ)

ଜ୍ଞାନାଞ୍ଜନ– ଆପଣମାନେ ପିଲା ଦୁଇଟିଙ୍କ ଉପରେ ଏପରି ବିରକ୍ତ ହେଲେ କାହିଁକି ? ମୁଁ ତ ଜଙ୍ଗଲର ହିଂସ୍ର ପଶୁ ନୁହେଁ । ମଣିଷକୁ ମଣିଷ ଏମିତି ଛି–ଛାକର କରିବା କଅଣ ଭଲ କଥା ?

ଦ୍ୱିତୀୟ ମୁରବି– ଆଜ୍ଞା, ବାବୁ–ଭୟାଙ୍କୁ ଡରିବୁ ନାହିଁ ? ଏ କେମିତି କଥା ?

ଜ୍ଞାନାଞ୍ଜନ– କାହିଁକି ଡରିବ ?

ପ୍ରଥମ– ଆମେ ପିଲାଦିନୁ ସେଇଆ ଶିଖିଛୁ ।

ଜ୍ଞାନାଞ୍ଜନ– କଅଣ ଡରିବ ବୋଲି ଶିଖିଛ ?

ଦିତ୍ୱୀୟ– ହଁ ଆଜ୍ଞା ! ଗାଁ ଦଫାଦାର, ଛାଟିଆ, ଆଉ ଦାରୋଗା ବାବୁ ସମସ୍ତେ ଆମକୁ ଦୂର୍ ଦୂର୍ କରନ୍ତି ।

ପ୍ରଥମ– ସେଇ କଥା ଆମେ ଶିଖାଇ ଦେଉ ।

ଦ୍ୱିତୀୟ– ଛାଟିଆ ଅକାରଣେ ଧକ୍‌କା ଦିଏ ।

ପ୍ରଥମ– ଦଫାଦାର ବେଜମାନ୍ କରେ । ଆମେ ଜାଣୁ ଏଇଟା ସରକାରୀ ନିୟମ । କେଡ଼େ ବଡ଼ ସରକାର !

ଦ୍ୱିତୀୟ– ଆଉ ଆମେ ତା ଆଗରେ କେଡ଼େ ନିଊନ !

ଜ୍ଞାନାଞ୍ଜନ– (ସ୍ୱଗତଃ) ସ୍ୱାଧୀନ ଭାରତର ପ୍ରକୃତ ରୂପ ତେବେ ଏହିପରି ଭାବରେ ମୂକ ଜନତା ପାଖରେ ପ୍ରଦର୍ଶିତ ହେଉଛି !

ପ୍ରଥମ– କଅଣ କହିଲେ ?

ଦ୍ୱିତୀୟ– ହେଃ ଚୁପ୍ କର। ବାବୁ ମନକୁ ମନ କଅଣ କହୁଛନ୍ତି। ବଡ଼ ଲୋକ ନା ?

ଜ୍ଞାନାଞ୍ଜନ– (ସ୍ୱଗତଃ) ସମସ୍ତଙ୍କ ଅନ୍ତରରେ ଭୀତି, ସଂକୋଚ ଓ ଅଶାନ୍ତି

ପ୍ରଥମ– (ଇଙ୍ଗିତରେ) କଅଣ କିରେ ?

ଦ୍ୱିତୀୟ– (ଅସ୍ପଷ୍ଟ ଭାବରେ) କଅଣ କିରେ ?

ଜ୍ଞାନାଞ୍ଜନ– ଅଥଚ କୋଟି କୋଟି ଭୀତତ୍ରସ୍ତ ଅର୍ଦ୍ଧ ଉଲଗ୍ନ ଦରିଦ୍ର ଅଶିକ୍ଷିତ ଭାରତୀୟ ପଲ୍ଲୀବାସୀ ସାତ ଦିନ ଭିତରେ ନିଜ ନିଜ ପ୍ରତିନିଧି ନିର୍ବାଚନ କରିବେ। ମୂକ ଜନତାର ସୁଖ ଦୁଃଖ ଆଶ୍ୱାସର ସ୍ଥଳ ଏଇ ପ୍ରତିନିଧିମାନେ ସେମାନଙ୍କ ଭାଗ୍ୟର ନିୟନ୍ତା ହୋଇ ବସିବେ।

(ପ୍ରସ୍ଥାନ)

ପ୍ରଥମ– କଅଣ କିରେ ?

ଦ୍ୱିତୀୟ– କଅଣ କିରେ ?

(ପଟ୍ଟ ପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ

[ ଭୋଟ ଗ୍ରହଣ କେନ୍ଦ୍ର। ଭୋଟ–କେନ୍ଦ୍ର ସମ୍ମୁଖରେ ବିଭିନ୍ନ ପ୍ରାର୍ଥୀଙ୍କର ପ୍ରତୀକ ରଖାଯାଇଛି। ପୋଲିଂ ବାବୁମାନେ ଯେ ଯାହାର ନିରୂପିତ ସ୍ଥାନରେ ବସି ଭୋଟ ତାଲିକା ଦେଖିବାରେ ବ୍ୟସ୍ତ। ଘର ମଝିରେ ଜ୍ଞାନାଞ୍ଜନ ବସି ରହି ନିୟମାବଳୀ ଅଧ୍ୟୟନ କରୁଛନ୍ତି। କିଛି ସମୟ ପରେ ସେ ଉଠି ବାହାରକୁ ଚାଲିଗଲେ ଶାନ୍ତି ଶୃଙ୍ଖଳାର ବ୍ୟବସ୍ଥା ଦେଖିବାକୁ। ]

ପ୍ରଥମ ପୋଲିଂ ଅଫିସର– (ଜଣେ ଭୋଟରଙ୍କୁ ଦେଖି) ଆପଣଙ୍କ ନାଆଁ ?

ମାଧବ– (ମୁଣ୍ଡ କୁଣ୍ଡେଇ ହସି, କେତେବେଳକୁ)– ମା...ମାଧବ ପ୍ରଧାନ।

ପ୍ରଥମ ପୋ:– ପିତାଙ୍କ ନାମ ?

ମାଧବ– (ହଠାତ୍ ଜୋର୍‌ରେ କାନ୍ଦି ଉଠି) ତାଙ୍କର ତ କାଳ ହୋଇଯାଇଚି, ମୁଁ କଅଣ କରିବି ଲୋ... (ହଠାତ୍ କାନ୍ଦ ବନ୍ଦ କରି) ତାଙ୍କର କାଳ ହୋଇଯାଇଚି। (ଗାମୁଛାରେ ଲୁହ ପୋଛିଲା)

ପ୍ର: ପୋ– ହଁ, ଆଉ କଅଣ କରିବା ? ସମସ୍ତେ ଦିନେ ଏମିତି ଚାଲିଯିବେ। ମିଛ ମାୟା ସଂସାର।

ମାଧବ– (ପୁଣି କୋରରେ କାନ୍ଦି ଉଠି) ମୋ ବାପା ମରିଯାଇଚି ଲୋ... ମୁଁ କଅଣ କରିବି ଲୋ...

ଦ୍ୱିତୀୟ ପୋ:– ଆପଣ ନାଆଁ କହନ୍ତୁ।

ମାଧବ– ତାଙ୍କର କାଳ ହୋଇଯାଇଚି।

ଦ୍ୱି: ପୋ– ତଥାପି ନାଆଁ କହନ୍ତୁ।

ମାଧବ– ତାଙ୍କର ଅକାଳରେ କାଳ ହୋଇଗଲା। (କୋହ–ମିଶା କଣ୍ଠ)

ପ୍ର: ପୋ:– କାଳ ଅକାଳରେ ସବୁବେଳେ ଆସେ। ହଁ, ନାଆଁ କହନ୍ତୁ।

ମାଧବ– (ପୁଣି କାନ୍ଦି ଉଠି) ଆଉ କି ମିଳିବ ସେ ନାଁଆରୁ। ଧିକ୍ ସେ ନାଆଁ।

ପ୍ରଥମ ପୋ:– (ବିରକ୍ତ ହୋଇ) ମାଧବ ପ୍ରଧାନ!

ମାଧବ– ବାପା ଚାଲିଗଲେ। ମୋ ଅଣ୍ଟା ଭାଙ୍ଗି ପଡ଼ିଲା। ଦଶ କୋଶ ଦୂରରେ ଡାକ୍ତରଖାନା। ଗଲାବେଳେ ଦେଖି ଯାଇଥିଲି ବାପା ଗଁ ଗଁ ହେଉଥିଲେ। ଫେରି ଆସି ଦେଖିଲି ଆଉ ନାହିଁ।

ଦ୍ୱିତୀୟ ପୋ:– ଆଉ ନାହିଁ ?

ମାଧବ– (ହଠାତ୍ ବାହୁନି) ଚିତା ଜଳୁଛି... ଚିତା ଧୂ ଧୂ ହୋଇ ଜଳୁଛି।

ଦ୍ୱି:ପୋ:– ଏ କି ତାମସା ଆରମ୍ଭ କଲ ମାଧବ ପ୍ରଧାନ! ତମ ପଛରେ କେତେ ଲୋକ ଦେଖ। ଏ ତାମସା ବନ୍ଦ କର।

ମାଧବ– ଡାକ୍ତରବାବୁ ଆସିଲେ ନାଇଁ।

ପ୍ରଥମ ପୋ:– କେମିତି ଆସିବେ ? ସେମାନେ କଅଣ ସହଜରେ ଆସନ୍ତି ?

ମାଧବ– କହିଲେ ମଟର କାହିଁ ? ରିକ୍ସା କାହିଁ ?

ଦ୍ୱି: ପୋ– (ରାଗି) ଆରେ ବାବା ତମ ବାପାଙ୍କ ନାଆଁ କହ।

ମାଧବ– ହଇଏ ଆମେ ମୂରୁଖ ମୂଲିଆ ଲୋକ, ଆମେ କାହୁଁ ଏସବୁ ପାଇବୁ ? କେଲୁ ଭାଇନା ମତେ ବାଟଯାକ ଏତେ କୋବଲେଇ ଆଣୁଛି; କହୁଚିନା– ଯେବେ ତାଙ୍କର ବାକ୍ସରେ ଭୋଟ ଗଳେଇଦେବି ତେବେ ତମରି ଗାଁରେ ଡାକ୍ତରଖାନା ଛିଡ଼ା ହୋଇଯିବ। ହଉ ସେଇ ବାକ୍ସରେ ଗଳେଇଦେବି। ବାକ୍ସ କେଉଁଠି ଅଛି ? ଦେଖାଇଦିଅ ବାବୁ! (ଆଗକୁ ମାଡ଼ିଗଲେ)

ଦ୍ୱି: ପୋ:– କିଓ ଆଗକୁ କୁଆଡ଼େ ଯାଉଛ ? ପଧାନେ ତମକୁ ବାପ ନାଆଁ କହିବାକୁ ପଡ଼ିବ। ନିୟମ ଅଛି।

ପ୍ର: ପୋ:– ହଁ ନିୟମ ଅଛି। ବାପା ନାଆଁ କହିଦିଅନ୍ତୁ।

ମାଧବ– ହା... ହା.. ହାଡୁ ପଧାନ। ବାପ ଅପର୍ତ୍ତିଆ ନା, ସେଇପାଇଁ ହା– ଡୁ...

ଦ୍ୱି: ପୋ:– ଓହୋ, ଏତେବେଳକେ କହିଲା। ଏଆଡ଼େ ଆସ, ଧର ଏ ଭୋଟ କାଗଜ। (ମାଧବ ପ୍ରଧାନ ଭୋଟ ଘର ଭିତରକୁ ଚାଲିଗଲେ।

[ ତା'ପରେ ଆସିଲେ ଜଣେ ମହିଳା ଭୋଟର ତାଙ୍କ ପଛରେ ଆଉ ଜଣେ। ସର୍ବାଙ୍ଗ ଆବୃତ। ଲମ୍ବ ଓଢ଼ଣା ଦୁଇହାତ ଲମ୍ବି ଆସିଛି ]

ପ୍ର: ପୋ:– ଆପଣଙ୍କ ନାଆଁ ?

(ଉତ୍ତର ନାହିଁ)

ପ୍ର: ପୋ– ଆପଣଙ୍କ ନାଆଁ ?

(ଉତ୍ତର ନାହିଁ। ପ୍ରଥମ ମହିଳା ଘୂରିଗଲେ ଓଢ଼ଣା ସହ, ଅର୍ଥାତ୍ ତାଙ୍କ ପିଠି ରହିଲା ପୋଲିଂ ଅଫିସରଙ୍କ ଆଡ଼େ)

ପ୍ର: ପୋ– ଆପଣଙ୍କ ନାଆଁ କହନ୍ତୁ।

(ପୁଣି ମହିଳାଙ୍କ ମୁହଁ ଘୂରିଆସିଲା ଲମ୍ବ ଓଢ଼ଣା ସହିତ)

ପ୍ର: ଏଜେଣ୍ଟ– (ଆଗରୁ ବସିଥିଲେ)– ତାଙ୍କୁ 'ଆପଣ' ବୋଲି ଡାକିବାରୁ ସେ କିଛି ବୁଝିପାରୁ ନାହାନ୍ତି। 'ତୁମେ' କହିଲେ ହୁଏତ ଉତ୍ତର ଦେବେ।

ପ୍ର: ପୋ:— ତୁମେ କହିବି ? ମାତୃଜାତିକୁ ତୁମେ ସମ୍ବୋଧନ କରିବି ? ତୁମେ ? ତୁମେ ?

(ମହିଳା ଭୋଟର ପୁଣି ଘୂରିଗଲେ ଓଢ଼ଣା ସହିତ)

ଦ୍ୱିତୀୟ ଏଜେଣ୍ଟ— ଆଜ୍ଞା, ମଫସଲୀ ସ୍ତ୍ରୀଲୋକ ! ! ସ୍ୱାମୀ ବସୁଣୁ ଉଠୁଣୁ ବାଡ଼ାଏ ।

ପ୍ର: ଏଜେଣ୍ଟ— ଗୋଗଛା । ଶାଶୁ ନିଆଁ ଖୁଣ୍ଟା ଗେଞ୍ଜେ । ଶଶୁର ଗାଳି ଦିଏ । ଭାଉଜ ଦେଖାଇ ଶିଖାଇକହେ । ତୁକାର ବଚନ ଛଡ଼ା ଏମାନେ ତମେ ବି ଶୁଣନ୍ତି ନାହିଁ, ଆପଣ ତ ଦୂରର କଥା ?

ପ୍ରଥମ ପୋ:— (ଭାବାବେଶରେ ମୁଗ୍‌ଧ ରହି) ହେଲେନ୍... ହେଲେନ୍... ଟ୍ରୋଜାନ୍ ସମରର ନାୟିକା ହେଲେନ (ଆସ୍ତେ ବସିବା ସ୍ଥାନରୁ ଉଠି) ବିଏକ୍ରିସ ଦାନ୍ତେ... ଦାନ୍ତେଙ୍କର ପ୍ରଣୟିନୀ ବିଏକ୍ରିସ୍... ଜୁଲିଏଟ୍... ସେକ୍‌ସପିୟରଙ୍କର ମାନସୀ କନ୍ୟା ଜୁଲିଏଟ୍... (ଭାବବେଶ ଗାଢ଼ ହୋଇଲା) ଶକୁନ୍ତଳା... କାଳିଦାସଙ୍କର ଶକୁନ୍ତଳା... ଆଉ, ଆଉ ମେଘଦୂତର ଅଳକା—ବାସିନୀ ଯକ୍ଷ ରମଣୀ...

ଜ୍ଞାନାଞ୍ଜନ— (ଭିତରୁ ବ୍ୟସ୍ତ ଭାବରେ ଆସି) ଜଗଦୀଶ, ଏ କଅଣ ? ଏ ଯେ ସରକାରୀ ଭୋଟ କେନ୍ଦ୍ର ଜଗଦୀଶ୍ !

ପ୍ରଥମ ପୋ:— (ପୂର୍ବ ଭଳି ଭାବାବେଶରେ)— ଉର୍ବଶୀ... ଭାରତୀୟ କାବ୍ୟର ଉର୍ବଶୀ...

ଦ୍ୱି: ପୋ:— ଜଗଦୀଶ ବାବୁ, ଏ କି ପାଗଳାମି ?

ପ୍ରଥମ ପୋ: ପାଗଳାମି ନୁହେଁ, ପାଗଳାମି ନୁହେଁ— ଚିତ୍ରାଙ୍ଗଦା... ରବୀନ୍ଦ୍ର ସାହିତ୍ୟର ଚିତ୍ରାଙ୍ଗଦା...

(ଜ୍ଞାନାଞ୍ଜନ ବ୍ୟସ୍ତ ବିରକ୍ତ ଭାବରେ ପଦ ଚାରଣ କରୁଥିଲେ) ଆଉ ତାଙ୍କ ସଙ୍ଗରେ ତୁଳନା ଏଇ ... ଏଇମାନେ...

ଜ୍ଞାନାଞ୍ଜନ— ଛି, ଛି, ଏ କଅଣ ହେଉଛି ?

ପ୍ରଥମ ପୋ: (ପ୍ରକୃତିସ୍ଥ ହୋଇ) Excuse sir, ମୁଁ ଗ୍ରାଜୁଏଟ୍... ବିଶ୍ୱ ସାହିତ୍ୟର ଲଳନାମାନଙ୍କୁ ଖୋଜି ଆଣୁଥିଲି, ଆଉ ଏଇ କେଲୁ ଭାଇନା— ଆମର ଭାବୀ ମନ୍ତ୍ରୀ କେଲୁ ଭାଇନା ଖୋଜି ଆଣିଛନ୍ତି ଏଇ ହତଭାଗ୍ୟ ହତଭାଗିନୀମାନଙ୍କୁ adult suffrage ଧ୍ୱନି ଶିଖାଇ— ଖଣ୍ଡିଏ ଖଣ୍ଡିଏ ମଳିନ ବସ୍ତ୍ର ଭିତରେ ଯୁଗ ଯୁଗର ସଞ୍ଚିତ ଅନ୍ଧ—ବିଶ୍ୱାସ, ଅଶିକ୍ଷା, ଅନ୍ଧକାର, ଅବିଚାର ଓ ଅତ୍ୟାଚାର ଯେପରି ପୁଞ୍ଜୀଭୂତ ହୋଇ ଏଇମାନଙ୍କ ଠାରେ ରୂପ ପାଇଛି । କେବଳ ଅନ୍ୟର ପ୍ରଭୁତ୍ୱ ସ୍ୱୀକାର କରିବା ବ୍ୟତୀତ ଏମାନଙ୍କର ସ୍ୱାତନ୍ତ୍ର୍ୟ ନାହିଁ । (ଭାବାବେଶରେ ସ୍ଥିର ରହିଯିବା)

ଜ୍ଞାନାଞ୍ଜନ— ହଁ, ନାହିଁ, ଆମେ ସମସ୍ତେ ବୁଝୁଛୁ । ତମେ କିନ୍ତୁ ଏପରି emotional ହୋଇଯାଉଛ ଯେ । ସରକାରୀ କାମରେ emotion ର ସ୍ଥାନ ନାହିଁ ଜଗଦୀଶ ବାବୁ—

ପ୍ରଥମ ପୋ:— ଏମାନେ ପୁଣି ଆସିଛନ୍ତି ଗଣତନ୍ତ୍ର ଚକ୍ରକୁ ତୈଳାକ୍ତ କରି ଅଭ୍ୟୁଦୟ ଓ ଅଗ୍ରଗତି ପଥରେ ଶାସନ ରଥକୁ ଚଳେଇ ନେବେ । କି ବାଚାଳତା ସତେ !

ଜ୍ଞାନାଞ୍ଜନ— (ଉତ୍‌କ୍ଷିପ୍ତ ହୋଇ) My God ! ତମେ ହିଁ ବାଚାଳ ଜଗଦୀଶ ବାବୁ ! ଆଉ ଥରେ ଚେଷ୍ଟା କର । ନାଆଁ ପଚାର—

ପ୍ରଥମ ପୋ:– (ପ୍ରକୃତିସ୍ଥ ହୋଇ) Sorry Sir। ମୁଁ ଦୁଃଖିତ (ଯଥା ସ୍ଥାନରେ ବସି) ତମ ନାଆଁ ?

ଦ୍ୱି:– ମହିଳା– ମଲା ତା ନା ଯାହା, ତା' ଶାଶୁ ନାଁ ସେଇଆ ପରା ?

ଦ୍ୱିତୀୟ ପୋ:– (ପାଟିକରି) ତମେ କହି ଦିଅ।

ଦ୍ୱି: ମହିଳା– ମଲା, ମୋ ଆଈଶାଶୂ ନାଁ ପରା ସେଇଆ।

ଦ୍ୱିତୀୟ୍ ପୋ:– ହରେକୃଷ୍ଣ ! (ଟେବୁଲ ଉପରେ କଲମ ଥୋଇ ଦେଲେ। ପାନଡ଼ବାରୁ ପାନ ଖଣ୍ଡିଏ ପାଟି ଭିତରକୁ ନେଲେ)–

ଜ୍ଞାନାଞ୍ଜନ– (ଧୀରେ ମହିଳାମାନଙ୍କ ପାଖକୁ ଆସି) ତମ ନାଆଁ ସୁଖୀ

ପ୍ର: ମହିଳା– (ମୁଣ୍ଡ ହଲେଇଲେ)

ଜ୍ଞାନାଞ୍ଜନ– ତମ ନାଆଁ ହଗୁରୀ ?

ଦ୍ୱି: ମହିଳାଭୋଟର– (ମୁଣ୍ଡ ହଲେଇଲେ)

ଜ୍ଞାନାଞ୍ଜନ– କ୍ରମାନ୍ୱୟରେ ସ୍ୱାମୀଙ୍କ ନାଆଁ– ମାଗତ ? (ମହିଳା ମୁଣ୍ଡ ହଲେଇଲେ) ବାଘ ? (ମହିଳା ମୁଣ୍ଡ ହଲେଇଲେ)

ଦ୍ୱି: ପୋ:– ବାବାଃ– ଉଦ୍ଧାର କର ! ଦିଅ ମାଆମାନେ ଆଙ୍ଗୁଠି ଦେଖେଇ ଦିଅ। ଅଲିଭା କାଳି ଦିଆଯିବ। (କେହି ଦେଖାଇଲେ ନାହିଁ)

ଜ୍ଞାନାଞ୍ଜନ– (ଚିନ୍ତିତ ଭାବରେ) ପିଅନ୍, ତମେ ଯାଅ ତ ସକାଳେ ଯେଉଁ ଝିଅଟି ମୋ ସାଙ୍ଗେ କଥାବାର୍ତ୍ତା କରୁଥିଲା, ତାକୁ ଡାକି ଆଣିବ। କହିବ, ଭୋଟବାବୁ ଡାକୁଛନ୍ତି। ହଁ, ଆଉ ତମେମାନେ (ମହିଳା ଭୋଟରଙ୍କୁ ଦେଖାଇ) ଗୋଟାଏ କଣକୁ ଆଉଜି ଛିଡ଼ା ହୁଅ।

(ଜଣେ ଭୋଟର ଆସିଲେ)

ଦ୍ୱି: ପୋ:– ହେଇଟି ଦେଖ, ଏଇଠି ପରିଷ୍କୃତ ଜାଗା ଅଛି। ଦେଖି କରି ଯାଇଥାଅ; ନଇଲେ କହିବ ଆଜ୍ଞା ଆମକୁ ଦୁରୁଶ ହଉନି, ସବୁ ଦୁରୁଶ ହବ। ଖାଲି ଆଖି ଖୋଲି ଚାହଁ ବାପଧନ। ଆହେ ଭୋଟରମାନେ ତମରି ପାଇଁ ଏ ଅପାଣ୍ଡବା ରାଜ୍ୟରେ ପେଟ ଭୋକିଲା ରଖି ମୁଢ଼ି ଚୋବେଇ ମାଆ ଧରିତ୍ରୀ ଉପରେ ଶୋଇ କେବଳ ବାଲଟ୍ ପେପର, ଗ୍ରୀନ୍ ପେପର, ସିଲ, ସିମ୍ବଲ, ବାକ୍ସ, ଏଜେଣ୍ଟ ମୁଣ୍ଡ ଗଣ୍ଡି– ଛ୍ୟା ହୋଇ ହୋଇ ଗଣତନ୍ତ୍ର ପ୍ରତିଷ୍ଠା ଓ ତାହାର ଅଗ୍ରଗମନ ପାଇଁ ଚେଷ୍ଟା କରୁଛୁ। ହଉ ବାବା, ଭିତରକୁ ଯାଅ। ସସମ୍ମାନେ ଯାଅ।

(ଭୋଟରର ପ୍ରସ୍ଥାନ)

(ସଙ୍କୁଚିତ ଓ ଭୟଜଡ଼ିତ ପଦକ୍ଷେପରେ ବିନୋଦିନୀର ପ୍ରବେଶ)

ଜ୍ଞାନାଞ୍ଜନ– କିଏ ? ବିନୋଦିନୀ, ଏତେ ଭୟ କରୁଛ କାହିଁକି ? ତମକୁ ଡାକି ଆଣିଛି ମତେ ସାହାଯ୍ୟ କରିବ।

ବିନୋଦିନୀ– (ଭୟାର୍ତ୍ତ ହୋଇ) ନା... ନା...

ଜ୍ଞାନାଞ୍ଜନ– ମୋ ପାଖକୁ ଆସ। ଭୟ ଛାଡ଼। ତୁମେ କାହିଁକି ଭାବୁନ ଯେ ତମଦ୍ୱାରା ଅନ୍ୟର କାମ ହୋଇପାରିବ ? ଏଇ ଦେଖ, ତମର ମା, ମାଉସୀ ଭୋଟ ଦେବାକୁ ଆସିଛନ୍ତି। କେତେ ଲାଜ କରୁଛନ୍ତି। ଦେଖିଲ ? ତୁମେ ତାଙ୍କର ବାଁ ହାତ ବିଷି ଆଙ୍ଗୁଠି ଅଗରେ ବୁନ୍ଦାଏ ବୁନ୍ଦାଏ କାଳି ଲଗେଇ ଦବ। ଆସ।

(ବିନୋଦିନୀ ଭୟଜଡ଼ିତ ଗତିରେ କାଳି ବୁନ୍ଦାଏ ନେଇ ଆଗକୁ ଗଲା।)

ଜ୍ଞାନାଞ୍ଜନ– ଏ ଏକ ପ୍ରକାର ଦେଶସେବା। ଘର ଭିତରେ ଯେତେ ବାବୁ ଅଛନ୍ତି, ତାଙ୍କ ସରିସା-ତମେ ହୋଇଗଲ।

(ବିନୋଦିନୀ ମହିଳା ଭୋଟରଙ୍କ ହାତକୁ ଟାଣି ଆଣି କାଳି ଲଗାଇଲା)

ତମର କାମଟି ମୋର ମନେ ରହିବ। ତମେ ବଡ଼ ହୋଇଗଲେ ମନେ କରିବ।

ପ୍ରଥମ ପୋ:– ଆଜ୍ଞା ମୋର କାମଟି ଏବେ ଦେଖନ୍ତୁ।

ଜ୍ଞାନାଞ୍ଜନ– ତମର କି କାମ ?

ପ୍ରଥମ ପୋ:– ମୁଁ ଏଥି ମଧ୍ୟରେ ଗୋଟିଏ ପ୍ରବନ୍ଧ ଲେଖି ଦେଇଛି।

ଜ୍ଞାନାଞ୍ଜନ– ପ୍ରବନ୍ଧ ?

ପ୍ର: ପୋ:– ଆଜ୍ଞା ଶୁଣନ୍ତୁ।

ଜ୍ଞାନାଞ୍ଜନ– ନା, ନା, ସମୟ ନାହିଁ, ପରେ। ଭୋଟରମାନେ ଆସୁଛନ୍ତି।

ପ୍ର: ପୋ:– ତାଙ୍କରି ଉଦ୍ଦେଶ୍ୟରେ ତ ଲେଖିଛି। ଶୁଣନ୍ତୁ (ପ୍ରବନ୍ଧ ପଢ଼ିଲେ) ଯେଉଁ ଗ୍ରାମରେ ଶିଶୁର ଶୈଶବ ଦୂର୍ ଦୂର୍ ମାର୍ ମାର୍‌ରେ ଅତିକ୍ରାନ୍ତ ହୁଏ, ଯେଉଁଠି କିଶୋର କିଶୋରୀର ସହଜ ମନୋବୃତ୍ତି ମୂଳରୁ ଦଗ୍‌ଧ ହୋଇ ଭସ୍ମକୁଢ଼ ହୋଇଯାଏ, ଯେଉଁଠି ନାରୀଜନ୍ମର ସାର୍ଥକତା କେବଳ ପ୍ରସବ ଓ ପ୍ରଜନନ କ୍ରିୟାରେ ବିଦ୍ୟମାନ ଏବଂ ଯେଉଁଠି ନାରୀ, ପୋଖରୀ ଓ ଦଉଡ଼ି ଖଣ୍ଡିକ ସାହାଯ୍ୟରେ ମୃତ୍ୟୁ ଏମାନଙ୍କୁ ଘେନିଯାଏ, ସେଠାରେ ବିନୋଦିନୀ ଯେ ଏପର ଭାବରେ ଭୟାର୍ତ୍ତ ହୋଇ ଥରିଉଠିବ, ଏଥିରେ ଆଶ୍ଚର୍ଯ୍ୟର କଥା କଅଣ ଅଛି ?

(ନେପଥ୍ୟରୁ ଚିତ୍‌କାର ଶୁଣାଗଲା।)

ମହିଳା କଣ୍ଠ– ଦୂତୀବୋଉ ଲୋ ! ତୁ କୁଆଡ଼େ ମତେ ଛାଡ଼ିଗଲୁ ? ବନା ଭାଇନା ତ ବାକ୍‌ସ ଉପରେ ଛିଡ଼ା ହୋଇନି ? କାହା ହାତକୁ ଭୋଟ କାଗଜ ଦେବି କି ଲୋ ? ବନା ଭାଇନା, ତମେ ମତେ କଅଣ ବତେଇଥିଲ, ମୁଁ ଭୁଲିଗଲି। ଆସି କହିଦେଇ ଯାଅ।

ପ୍ରଥମ ପୋ:– କେହି ବତେଇବେ ନାହିଁ। ଯଦି ଭୁଲିଛ, ଆନନ୍ଦରେ ଆଗାମୀ ପାଞ୍ଚବର୍ଷଯାଏ ଭୁଲିଯାଇ ପଡ଼ି ରହିଥାଅ।

[ ଭୋଟ ସମାପ୍ତିର ଘଣ୍ଟା ବାଜିଲା। ଧୀରେ ଆଲୋକ ସ୍ତିମିତ ହୋଇ ଆସିଲା। ପୁଣି ଧୀରେ ଆଲୋକ ଜଳି ଉଠିଲା। ଦେଖାଗଲା ଜ୍ଞାନାଞ୍ଜନ କାର୍ଯ୍ୟବ୍ୟସ୍ତ। ଘର ଶୂନ୍ୟ। କେବଳ ଟିକିଏ ଦୂରରେ ବିନୋଦିନୀ ଏକଲୟରେ ତାଙ୍କୁ ଚାହିଁ ରହିଛି। ହଠାତ୍ ଜ୍ଞାନାଞ୍ଜନ ମୁହଁ ଟେକିଲେ ]

ଜ୍ଞାନାଞ୍ଜନ– କଅଣ ବିନୋଦିନୀ ?

ବିନୋଦିନୀ– (ସଲ୍ଲଜଭାବ ଦେଖାଇ) ନାଇଁ କିଛି ନାହିଁ।

(ବିନୋଦିନୀ ତଳକୁ ମୁହଁ ପୋତିଲା, ଜ୍ଞାନାଞ୍ଜନ ପୁଣି କାମରେ ବୁଡ଼ିଗଲେ କିଛି ସମୟ ପରେ)

ଆପଣ ଚାଲିଯିବେ ?

[ ବେହେଲାର କରୁଣ ମୂର୍ଚ୍ଛନା ସଞ୍ଚରିଗଲା ସମଗ୍ର ପୃଥିବୀକୁ ଆଚ୍ଛନ୍ନ କରି, କରୁଣ–ଆବହ

ସଙ୍ଗୀତ ଖେଳି ବୁଲିଲା ଶେଷ ପର୍ଯ୍ୟନ୍ତ, କେଉଁଠି ଗଭୀର, କେଉଁଠି ସୂକ୍ଷ୍ମ; କିନ୍ତୁ ଅବ୍ୟାହତ ରହିଛି ତା'ର ଗୁଞ୍ଜନର ଧାରା ]

ଜ୍ଞାନାଞ୍ଜନ– ହଁ ବିନୁ, ଏଠାରେ ମୋ କାମ ସରିଯାଇଛି। ଆଜି ଶେଷ ଦିନ, ଶେଷ ମୁହୂର୍ତ୍ତ ବି।

ବିନୋଦିନୀ– (କାନିରେ ଗଣ୍ଠି ପକାଇ ପକାଇ) ମତେ ମନେ ରଖିବେ ?

ଜ୍ଞାନାଞ୍ଜନ– ହଁ, ନିଶ୍ଚୟ ମନେ ରଖିବି। ଏତେ କାମ କଲ ମନେ ରଖିବି ନି ?

ବିନୋଦିନୀ– ଖାଲି କାମ ପାଇଁ ମନେ ରଖିବେ ନା ଆଉ କିଛି ? (ସ୍ତବ୍ଧ ଜ୍ଞାନାଞ୍ଜନ କେବଳ ଚାହିଁ ରହିଲେ)

ଆପଣଙ୍କ ହାତଲେଖା ଖଣ୍ଡେ ମୁଁ ଚାହେଁ।

ଜ୍ଞାନାଞ୍ଜନ– ହାତଲେଖା ?

ବିନୋଦିନୀ– କିଛି ଲେଖିଦେଇ ଯାଆନ୍ତୁ। ମୁଁ ପାଖରେ ରଖିଥିବି।

ଜ୍ଞାନାଞ୍ଜନ– କିନ୍ତୁ କଅଣ ଲେଖିବି ?

ବିନୋଦିନୀ– ଖଣ୍ଡେ ସାର୍ଟିଫିକେଟ୍।

ଜ୍ଞାନାଞ୍ଜନ– ସାର୍ଟିଫିକେଟ। କଅଣ ଭଲ କାମ କଲ ବୋଲି ?

ବିନୋଦିନୀ– (ଉଠି) ନା, ନା, ମୁଁ ଭଲ କାମ କରିନି। ଆପଣ ଯେମିତି କହିଛନ୍ତି, ମୁଁ ସେମିତି କରିଛି। ସାର୍ଟିଫିକେଟରେ ଆପଣଙ୍କ ଅକ୍ଷର ତ ଥିବ ?

ଜ୍ଞାନାଞ୍ଜନ– ଦେବି। (କାମରେ ବ୍ୟସ୍ତ ରହିଲେ)

ବିନୋଦିନୀ– ଆପଣଙ୍କ ଫଟ କଅଣ ବଜାରରେ କିଣିବାକୁ ମିଳିବ ?

ଜ୍ଞାନାଞ୍ଜନ– ମୋ ଫଟ ? ବଜାରରେ ମିଳିବ କିମିତି ?

ବିନୋଦିନୀ– କାଲି ଫଟବାଲା ପୋଲିଂ ବୁଥିରେ ଯେଉଁ ଫଟ ଉଠାଇଛି ତା' ସହିତ ଆପଣଙ୍କର ଚେହେରା...

ଜ୍ଞାନାଞ୍ଜନ– ସାବାସ୍ ବିନ। ତୁମେ ଯା ଭିତରେ ପୋଲିଂ ବୁଥ୍, ପୋଲିଂ ଅଫିସର, ବାଲଟ୍ ପେପର, ଏ ସବୁ ଶବ୍ଦ ଶିଖି ପାରିଛ। ଅର୍ଥ ବି ଜାଣିଚ ?

ବିନୋଦିନୀ– ଜାଣିଛି, ଶିଖିଛି, ସେ ଆପଣଙ୍କର ଦୟା। ମୋର ଯେମିତି ମନେହେଉଛି, ମୁଁ ଆଉ ସେ ଗାଁ ଝିଅ ବିନୋଦିନୀ ନୁହେଁ। ମୁଁ ବଡ଼... ବଡ଼...

ଜ୍ଞାନାଞ୍ଜନ– ମୁଁ ବୁଝିଛି।

ବିନୋଦିନୀ– ଆପଣ କିଛି ବୁଝି ନାହାନ୍ତି।

ଜ୍ଞାନାଞ୍ଜନ– (ସ୍ତବ୍ଧ ହୋଇଯିବା, ପରେ ସହଜ ଭାବରେ) ହଁ ଫଟ କଥା କହୁଥିଲ। କହିପାରିବିନି ବଜାରରେ ମଳିପାରିବ କି ନାହିଁ। ତେବେ ମୁଁ ଖଣ୍ଡେ ତୁମ ପାଖକୁ ପଠାଇଦେବି।

ବିନୋଦିନୀ– ହଁ ଦେବେ ଯଦି ବିନୋଦିନୀ ମନେ ଥିବ। (ଅଶ୍ରୁପୂର୍ଣ୍ଣ ନେତ୍ର)

ଜ୍ଞାନାଞ୍ଜନ– ବିନ, ବିନ...

ବିନୋଦିନୀ– (ଆଖି ପୋଛି) କେତେ ବର୍ଷ ପରେ ପୁଣି ଭୋଟ ନିଆଯିବ ?

**ଜ୍ଞାନାଞ୍ଜନ**– ପାଞ୍ଚବର୍ଷ ପରେ।

ବିନୋଦିନୀ– ତା'ପରେ ?

**ଜ୍ଞାନାଞ୍ଜନ**– ଆଉ ପାଞ୍ଚବର୍ଷ ପରେ।

ବିନୋଦିନୀ– (ଉଲ୍ଲସିତ ହୋଇ) ତେବେ ସେତିକିବେଳେ ଆପଣଙ୍କୁ ଦେଖିବି। ଆପଣ ନିଶ୍ଚୟ ଆସିବେ।

**ଜ୍ଞାନାଞ୍ଜନ**– (ଶୁଷ୍କ ହସ ହସି) ନ ଆସି ପାରେ।

ବିନୋଦିନୀ– ମୁଁ ସେତେବେଳେ ଆପଣଙ୍କ ଭଳି ପାଠ ପଢ଼ି ପ୍ରିଜାଇଡିଂ ଅଫିସର ହୋଇଥିବି। ଭାରୀ ମଜା ହେବ ନା ?

**ଜ୍ଞାନାଞ୍ଜନ**– ବିନ, ଭବିଷ୍ୟତରେ ଦେଶସେବିକା ହେବା ପାଇଁ ତମକୁ ମୁଁ ଆଶୀର୍ବାଦ କରୁଛି।

ବିନୋଦିନୀ– ବଞ୍ଚିଥିଲେ ତ ? ଏ ଗାଁରୁ ମୁକ୍ତି ପାଇଲେ ତ ? ଅନ୍ଧାରରୁ ଆଲୋକକୁ ଆସିଲେ ତ ?

**ଜ୍ଞାନାଞ୍ଜନ**– ବିନ, ସକାଳେ ଦେଖିଥିଲି, ତୁମେ ସାଧରଣ ଝିଅ ଆମ୍ବପତ୍ର ଗୋଟାଉଥିଲ। ସେତେବେଳେ ଭାବିଥିଲି ଗାଁର ସାଧାରଣ ନାରୀ ଭଳି ତମେ ଦିନେ ନିଜ ଭାଗ୍ୟକୁ ଆଦରି ହଜିଯିବ ସେଇ ଅନ୍ଧକାର କୁସଂସ୍କାର ଭିତରେ। ଆଜି ଏକ୍ଷଣି ଦେଖୁଛି, ତୁମ ମୁହଁରେ ଯେଉଁ ଆଭା ଝରିଆସୁଛି, ତାହା ଆଶା ଓ ପ୍ରତ୍ୟକ୍ଷ–ରସାଣିତ ଆଭା। ଏଇ ଯେଉଁ ଆତ୍ମତୃପ୍ତି ଓ ବ୍ୟକ୍ତିତ୍ୱର କ୍ରମ–ବିକାଶ ତୁମ ପାଖରେ ଦେଖୁଛି, ସେଥିରେ ମୁଁ ମୁଗ୍ଧ ହେଇଯାଇଛି ବିନ ! ତୁମକୁ କଲ୍ୟାଣ କରୁଛି।

ବିନୋଦିନୀ– (ହାତ ଯୋଡ଼ିଲା)

(ନେପଥ୍ୟରେ ମଟର ହର୍ଣ୍ଣ ଶବ୍ଦ)

ପୋଲିଂ ଅଫିସର– ସାର୍, ସବୁ ପ୍ରସ୍ତୁତ; ଏକ୍ଷଣି ଯିବାକୁ ହେବ।

ଜ୍ଞାନାଞ୍ଜନ– (କରୁଣ ପରିବେଶକୁ ହାସ୍ୟମୁଖର କରିବା ପାଇଁ) ଭବିଷ୍ୟତର ପ୍ରିଜାଇଡ଼ିଂ ଅଫିସର କୁମାରୀ ବିନୋଦିନୀ ଦେବୀ ଆଜିର ପ୍ରିଜାଇଡ଼ିଂ ଅଫିସର ଶ୍ରୀଯୁକ୍ତ ଜ୍ଞାନାଞ୍ଜନ ମହାନ୍ତିଙ୍କର ପ୍ରଣାମ ଗ୍ରହଣ କରନ୍ତୁ।

ବିନୋଦିନୀ– ହାତଯୋଡ଼ି ସ୍ଥିର ରହିଥିଲା, ଅଶ୍ରୁଧାରା ବୋହିଆସିଲା; କରୁଣ–ଆବହ ସଙ୍ଗୀତର ମୂର୍ଚ୍ଛନା ଖେଳିଗଲା ଚାରିଆଡ଼େ।

(ଯବନିକା ଅବତରଣ)

## ତୃତୀୟ ଦୃଶ୍ୟ

[ ପାଞ୍ଚବର୍ଷ ପରେ– ଗ୍ରାମ୍ୟପଥ। ମାଧବ ପ୍ରଧାନ ବଡ଼ ବଡ଼ ଗୋଡ଼ ପକାଇ ମାଡ଼ି ଆସୁଥିଲେ, ତାଙ୍କ ଅଣ୍ଟାକୁ ପଛକୁ ଭିଡ଼ି ରଖୁଥିଲେ ଜଣେ ଗ୍ରାମ୍ୟ–ମୁଖିଆ ଟାଉଟର ଶ୍ରେଣୀର ଲୋକ। ଆଉ ଜଣେ ଗ୍ରାମ୍ୟମୁଖିଆ "ହଉ ଯାହା ହେଲା ତ ଆଉ ରାଗ ନାହିଁ" କହି ପଛେ ପଛେ ଆସୁଥିଲେ। ]

ମାଧବ– ରଖିଦିଅ ହୋ ତମ ଭୋଟ। ଏ ଛକିକଟା ଭୋଟ ରଖ ହେ...

ପ୍ରଥମ– ପ୍ରଧାନେ, ଶୁଣ ଭଲା। ଏତେଗୁଡ଼ାଏ ମନେକର ରାଗ ନାହିଁ।

ଦ୍ୱିତୀୟ– ଜାଇଁଲଃ ପଧାନେ ଜାଇଁଲ। ସବୁ ସୁବିଧା ଆମେ କରିଦେବୁ।

ମାଧବ– ଶୁଣେ କି ସୁବିଧାଟା କରିଛ ଏଇ ପାଞ୍ଚ ବରଷ ଭିତରେ ? ହଇହେ, ଫୁସୁଲାଫୁସୁଲି କରି ସେଇ କେଳୁଭାଇନା ଆମ ଗାଁବାଲାଙ୍କଠାରୁ ଭୋଟ ନେଇଗଲା। କହିଲ କଣ ନା ସେ ମନ୍ତ୍ରୀ ହବ। ଗାଁକୁ ସୁନା କରିଦବ। ଏବେ କଅଣ ହେଲା ଦେଖ ? ପାଞ୍ଚବର୍ଷ ବିତିଗଲା ପରା ? କଅଣ କେଉଁଠି ହେଇଚି କହ ?

ଦ୍ୱିତୀୟ– ଜାଇଁଲଃ ପଧାନେ, ତୁମେ ଯେଉଁ କଥାଟା କହିଲ ନା, ତୁମକୁ ସତ ଆମକୁ ମିଛ। ଜାଇଁଲଃ ଏଇସନ ଯେଉଁ ନିର୍ବାଚନ ଆସୁଛି ନା, ଏଥିରେ ଆଉ ସେମିତି ଭୁଲ ଭଟକା ହେବନି, ଜାଇଁଲଃ।

ପ୍ରଥମ– କଅଣ ଗୁଡ଼ାଏ ଜାଇଁଲଃ ଜାଇଁଲଃ କହୁଚ ହେ ସାହୁଏ ପଧାନେ ରାଗି ଯାଇଛନ୍ତି। ତାଙ୍କୁ ଶାନ୍ତ କର। (ପଧାନଙ୍କୁ ଚାହିଁ) ପଧାନେ ହଜାରେ ହବ ?

ଦ୍ୱିତୀୟ– ଦି' ହଜାରେ ? ହଁ, ମଙ୍ଗିଯାଅ।

ମାଧବ– କଅଣ କହିଲ ? ଟଙ୍କା ଯାଚୁଛ ? ଟଙ୍କା ? ମୋ ବାପକୁ ବଞ୍ଚେଇ ପାରିଲ ? ସେ ସରଗପୁରରେ ରହିଲାଣି। ମୋ ମାଆକୁ ବଞ୍ଚାଇପାରିଲ ? ମୋର ପ୍ରଥମ ପକ୍ଷ ସ୍ତ୍ରୀରୀକୁ ବଞ୍ଚେଇ ପାରିଲ ? ମୋର ଦି'ଦିଟା ବଳଦ ଫାଟୁଆ ରୋଗରେ ମରିଗଲେ, ବଞ୍ଚେଇ ପାରିଲ ? ମୋ ଘର ଦି'ଦିଥର ପୋଡ଼ିଗଲା, ପାଣି ପକେଇ ନିଭେଇପାରିଲ ନି ? ମୋ ପୁଅଟା ମିଶା ସୋରିଷ ତେଲ ଖାଇ ବାନ୍ତି ଉଛାଳି ହୋଇ ମରୁ ମରୁ ବଞ୍ଚିଗଲା। ଏ ସବୁ କାହିଁକି ହେଲା ? କହିପାରିବ ?

ପ୍ରଥମ– ଭାଗ୍ୟ, ଯାହା ହବାର ଥିବ ହବ।

ମାଧବ– ତେବେ ଭାଗ୍ୟକୁ ଆଦରିଲଟି; ଆଉ ମତେ କାହିଁକି କହୁଚ ? ଗାଁକୁ ସୁନା ଖଣ୍ଡେ କରିଦେବାକୁ କେଳୁ ଭାଇନା ଯେ କହିଥିଲା, ସେଇ ପୁଣି ଏ ସନ ଭୋଟ୍‌ରେ ଭୋଟ୍ ଭିଖାରୀ। ନାଁ, ଏ ସବୁ ଝୁଟା। ମୁଁ କାହାକୁ ଭୋଟ୍ ଦେବିନି।

ଦ୍ୱିତୀୟ– ଜାଇଁଲଃ ପ୍ରଧାନେ; ତମ କଥା ଗାଁବାଲା ଶୁଣିବେ। ତମେ ଯଦି ମନେକର ଜାଇଁଲଃ ଏମିତି ରକ୍ତମୁଖା ହେବ, ତେବେ ଆମେ ଯେ ଦି'ପଇସା ଗୋଟେଇ ଆଣନ୍ତୁ ସେତକ ଆଉ ହବନି, ଜାଇଁଲଃ ସେଇ କେଳୁଭାଇନାକୁ...

ମାଧବ– କଅଣ କହିଲ ? କେଳୁ ଭାଇନା ? ଥାଉ, ଆରଥର ଭୋଟ୍ ପରେ କେତେଥର ସେ ଗାଁକୁ ଆସିଛନ୍ତି ? ଆମ ଦୁଃଖ ସୁଖ ବୁଝୁଛନ୍ତି ? ବାଟରେ ଘାଟରେ ଦେଖା ହେଲେ କଅଣ କହନ୍ତି ଜାଣ ? "ବେଳ ନାହିଁ ପଧାନେ ଆଉ କେତେବେଳେ ଦେଖା ହେବ।" ବେଳ ? ବେଳ କେଉଁଠି କଟେ ଜାଣ ?

ଦ୍ୱିତୀୟ– ଜାଇଁଲଃ; ଆମେ ଜାଣିନୁ ?

ପ୍ରଥମ– ଖାଲି ଜାଇଁଲଃ, ଜାଇଁଲଃ, ହଉଚ; ନାଁ ଅସଲ ଗୁମର ଜାଣିଚ ?

ମାଧବ– ହଇହେ ସେ ଜାଣନ୍ତି ନାହିଁ ?

ଦ୍ୱିତୀୟ– ଜାଇଁଲଃ, ତୁମେ ଯେଉଁଠି, ମୁଁ ସେଇଠି। ମୁଁ ଆଉ କଣ ବେଶୀ ଜାଣିଚି ?

ମାଧବ– ଗୋଡ଼ାଣିଆ ହେଇ ଅଇଁଠା ଚାଟନ୍ତି କେଳୁଭାଇନା ସେଇ ରାଜଧାନୀରେ। ସେଇଠୁ ଫେରିଆସି ଆମ ଆଗରେ ହାକିମି ଦେଖାନ୍ତି।

ସେ ହବନି, ମୁଁ କାହାକୁ ଦେବିନି। ତମେ ସବୁ ଯାଅ।

ପ୍ରଥମ– ହେଁ ହେଁ ମନେକର ଏମିତି ରାଗିଲେ ଆଉ ହବ କେମିତି? ହେଇଟି ପଧାନେ ମହାପ୍ରୁଙ୍କ ରାଣ।

ଦ୍ୱିତୀୟ– ଢାଇଁଲଃ, ମହାପୁରୁଙ୍କ ରାଣ ପକେଇଲ?

ପ୍ରଥମ– ହଁ ମହାପୁରୁଙ୍କ ରାଣ ପଧାନେ, ଆଗ ତମ ଘର କୋଠା ହବ।

ଦ୍ୱିତୀୟ– ହବ ତ ଢାଇଁଲଃ; ଯୋଜନା ହଉଛି। ଖାଲି କେଳୁଭାଇନାକୁ ଭୋଟ୍ ଗଳେଇ ଦିଅ। ଦେଖିବ, ଘରଟା କୋଠା ହେଇଯିବ। ରାସ୍ତାଟା ପକ୍କା ହେଇଯିବ। ପୋଖରୀଟା ନଈ ହେଇଯିବ। ନଈଟା ସମୁଦର ହେଇଯିବ, ଆଉ ତୁମେ ଢାଇଁଲଃ...

ପଧାନ– ମାଧବ ପଧାନ ରାଜା ହେଇଯିବ।

ଦ୍ୱିତୀୟ– ଢାଇଁଲଃ!

ମାଧବ– (ଶାନ୍ତ ହୋଇ) ଆଉ ତୁମେ ସବୁ।

ପ୍ରଥମ ଓ ଦ୍ୱିତୀୟ– ଆମେ ସବୁ ଚାକର।

ମାଧବ– 'ହଇରେ, ଟଙ୍କା ତୁମକୁ କଅଣ କୁହାଉଛି? ମୁଁ ରାଜା ତମେ ଚାକର? ନାଇଁ ନାଇଁ... ଆମେ ସେଇ ଗାଁବାଲା, ମଳିମୁଣ୍ଡିଆ, ପତରଚଟା ଲୋକ। ଆମେ ସେମିତି ପଡ଼ିଥିବା ଭୋଟ ପରେ ଭୋଟ ଯାଉଥିବ। ଆମେ ଯେଉଁଠି ସେଇଠି। ଶୁଭୁଚି....

ଦ୍ୱିତୀୟ– ଢାଇଁଲଃ, ଶୁଭିବ ନାଇଁ?

ମାଧବ– ମୋତେ ଆଗ କହ, ଏ ଗାଁରେ କଅଣ କେଉଁଠି ହୋଇଛି?

ପ୍ରଥମ– ହବ ନାଇଁ। ମୋ ବାପ ମରିଗଲା, ଡାକ୍ତର ଆସିଲା ନାହିଁ। ମୋ ପୁଅ ମୂରୁଖ ହେଲା, ଇସ୍କୁଲ ନାହିଁ।

ଦ୍ୱିତୀୟ– ଢାଇଁଲ। ଡାକ୍ତରଖାନା ଅଛି ହେ ପଧାନେ।

ପ୍ରଥମ– ହଁ ଅଛି, ହେଲେ ଡାକ୍ତର ନାହାନ୍ତି।

ମାଧବ– ହଁ ହେ। ଡାକ୍ତର ନାହିଁ, ଡାକ୍ତରଖାନା ଚାଲିଛି। ମାଷ୍ଟର ନାହିଁ, ଇସ୍କୁଲ ଚାଲିଛି। କଅଣ ନା ଭୋଟ ଦିଅ। ମୁଁ ଦେବି ନାଇଁ....

ଦ୍ୱିତୀୟ– ଢାଇଁଲଃ...

ମାଧବ– ମୁଁ ଦେବି ନାହିଁ।

ପ୍ରଥମ– ସେଇଟା ପରା ତମ ଅଧିକାର। ଦବନି କିମିତି?

ମାଧବ– କି ଅଧିକାର ହେ... ଏଇନେ ମାଧବ ପଧାନ ସମସ୍ତଙ୍କ ଆଗରେ ବଡ଼ ଦେଖାଯାଉଛି। କାଇଁକି ନା ତା ହାତରେ ଭୋଟ କାଗଜ ଖଣ୍ଡେ ଅଛି। ସେତକ ଗଲେ ଏଇ ମାଧବ ପଧାନକୁ ଗୋଇଠା ମାରିବାକୁ କିଏ ଆସିବ?

ଦ୍ୱିତୀୟ– ଆହା– ହା, କେତେବଡ଼ କଥାଟା କହିଦେଲ ହେ ପଧାନ, ଢାଇଁଲଃ–

ପ୍ରଥମ– ଆସିବେ। ଏଇ ଛକିକଟା ଭୋଟ ପରେ ଆସିବେ।

ମାଧବ– ମିଛ, କେହି ଆସିବେନି।

ଦ୍ୱିତୀୟ– କଅଣ ଗୋଇଠା ମାରିବାକୁ?

ପ୍ରଥମ– କଅଣ ଗୁଡ଼ାଏ ବକୁଛ ହେ– ଦେଖୁଛ ମାଧବ ପଧାନେ ଦୁର୍ବାସା ବନେଇଛନ୍ତି, ତାଙ୍କୁ ପୁଣି ତତଉଛ?

ମାଧବ– ମୋର ଡେରି ହେଲାଣି, ମୁଁ ଯାଉଛି। ତୁମେ ସବୁ ଚିଲଭଳି, ମଉକା ତ ପଡ଼ିଛି, ଛୁ' ମାରିନିଅ। କେଲୁଭାଇନା ପଛରେ ଗୋଡ଼େଇଥାଅ–

(ଚାଲି ଯାଉଥିଲେ)

ଦ୍ୱିତୀୟ– ଜାଇଁଲଃ, ଶୁଣ ଶୁଣ ପଧାନେ। ମା ମଙ୍ଗଳାଙ୍କୁ ହଲପ୍ କରି କରି କହୁଛି, ଏହିଥର ଭୋଟ, ଏଇ ଛକିକଟା ଭୋଟ ଖଣ୍ଡକ ଗଳେଇ ଦିଅ। ଦେଖିବ, ସବୁ ହୋଇଯିବ।

ମାଧବ– (ଟିକିଏ ଚିନ୍ତା କରି) ହୋଇଯିବ? ସତ କହୁଚ ହୋଇଯିବ? ପିଲାଏ ଭଲରେ ରହିବେ? ବାବୁଙ୍କ ପିଲାଭଳି ଆମ ପିଲାଏ ହସିବେ ଖେଳିବେ ? ମାଲିମକଦ୍ଦମା ଆପୋଷରେ ମେଣ୍ଟିବ? ଘର ପୋଡ଼ିବ ନି? ଗରିବ ବାବୁ ଭିତରେ ପାଚେରି ଭାଙ୍ଗିବ? ଛୁଆଁ ଅଛୁଁଆ ରହିବନି?

ପ୍ରଥମ– କୋଠା ହବ।

ମାଧବ– ହବ?

ଦ୍ୱିତୀୟ– ଅଲବତ୍ ହବ, ଜାଇଁଲଃ...

ମାଧବ– ବିଶ୍ୱାସ କର।

ମାଧବ– ହୁଡ଼ିବି ତ ନାହିଁ?

ପ୍ରଥମ– ହୁଡ଼ିଲେ ପାଞ୍ଚ ବରଷ।

ମାଧବ– ବିଶ୍ୱାସ କରିବି?

ଦ୍ୱିତୀୟ– କର, ଜାଇଁଲଃ...

ପଧାନ– କଲି।

ପ୍ରଥମ– ଦେଲି।

ଦ୍ୱିତୀୟ– କଅଣ?

ମାଧବ– ଭୋଟ ଦେଲି।

(ଦୁଇ ଜଣଯାକ ମାଧବକୁ ଘେରି ପରସ୍ତେ ନାଚିଗଲେ)

ପ୍ରଥମ– ସାବାସ୍ ପଧାନେ! ବିଶ୍ୱାସ ତ ହୋଇଛି। କିଛି ପରବାଏ ନାହିଁ। ଜୟ ଛକିକଟା ଭୋଟର ଜୟ–

ଦ୍ୱିତୀୟ– ଜାଇଁଲଃ, ଜୟ ମାଧବ ପଧାନର ଜୟ–

(ପଟ୍ଟପରିବର୍ତ୍ତନ)

## ଚତୁର୍ଥ ଦୃଶ୍ୟ

[ଗ୍ରାମର ଉପାନ୍ତରରେ ଅଶ୍ୱତ୍ଥ ଗଛ। ଜ୍ଞାନାଞ୍ଜନ ସେହିଠାରେ ଆସି ଛିଡ଼ା ହେଲେ। ଫିକା ଜହ୍ନ। ନିର୍ଜନ। ହଠାତ୍ ନାରୀ କଣ୍ଠରୁ ହିଃ... ହିଃ... ହସର ଜୁଆର ଝରିଆସିଲା। ଜ୍ଞାନାଞ୍ଜନ ଚମକି ପଡ଼ିଲେ। ଭୟାର୍ତ୍ତ ଚକ୍ଷୁ...]

ନାରୀ କଣ୍ଠ– ହିଃ– ହିଃ–ହିଃ, ଶୁଣ ପାଞ୍ଚ ବର୍ଷପରେ ଆସିଛ। ପାଞ୍ଚ...ବ...ର...ଷ, କମ୍ ସମୟ ତ ନୁହେଁ। ତୁମେ ସେତେବେଳେ ଥିଲ ଦୁର୍ଗାପୁର ଭୋଟ ଗ୍ରହଣ କେନ୍ଦ୍ରର ପ୍ରିଜାଇଡ଼ିଂ ଅଫିସର, ମୁଁ ଥିଲି ସ୍କୁଲ ଝିଅ। ଦୈବ ବିଧାନରେ ତମେ ମତେ ଆଣିଲ ତମ କାମରେ ସାହାଯ୍ୟ କରିବାକୁ।

ଏ ବା କି କଥା? ସେତେବେଳେ ମୋର ବୟସ ମୋଟେ ତେରବର୍ଷ। ନୂଆମେଘ ଆକାଶ କୋଳରେ ଉଠି ଆସୁଥିଲା। ନୂଆ ପବନ ବହି ଆସୁଥିଲା।

କେଉଁଠି ଗୋଟାଏ ଦିଟା ଫଲ୍‌କଢ଼ି ଫୁଟାଇ ବାହାରି ଆସୁଥିଲା। ମୋ ମନ ଉପରେ ଚପଳା ଚମକି ଆସୁଥିଲା ସତ, କିନ୍ତୁ ତୁମେ ହିଁ ଅତି ଅଳ୍ପ ବୟସରେ ମୋଠାରେ ନାରୀର ପୂର୍ଣ୍ଣ ବ୍ୟକ୍ତିତ୍ୱ ଆପିଦେଇ ଚାଲିଗଲ। ତୁମର ବାହୁଡ଼ା ଯାତ୍ରା ସମୟରେ ମୋ ଆଖି ଲୁହଭରା ଥିଲା, ମାନୁଛି। ଛୋଟ ଥିଲେ କଅଣ ହେବ, ମୁଁ ଜାଣିଥିଲି ବିଦାୟବେଳେ ଛାତିଟା ଏମିତି କୋହପୂର୍ଣ୍ଣ ହୋଇଥାଏ।

ତୁମେ କିଏ? କଅଣ ତୁମର ଧ୍ୟେୟ?! ଲୋକେ ତୁମକୁ କଅଣ କହନ୍ତି? ଏ ସବୁ ମୁଁ ଜାଣି ନଥିଲି; କିନ୍ତୁ ତୁମର ସଂପୂର୍ଣ୍ଣ ପରିଚୟ ପାଇଗଲି ଯେଉଁଦିନ ଶୁଣିବାକୁ ପାଇଲି ତମେ ମତେ ଘେନି ସୃଷ୍ଟି କରିଛ ଶିଳ୍ପ, ସାହିତ୍ୟ... ଖୁବ୍ ଜୋର୍‌ରେ ବେଶ୍ ପାଟିକରି ହସିଥିଲି ସେତେବେଳେ। ହିଃ... ହିଃ... ଦୁର୍ଗାପୁରଟିର ଗୋଟାଏ କାନ୍ତିହୀନା, ଅଶିକ୍ଷିତା, ଅନାମଧେୟା ଝିଅକୁ ଗୋଟିଏ ଦୁଇଟି କ୍ଷଣ ଭିତରେ ଦେଖି ଏ ଜଗତରେ କେଉଁ ଶିଳ୍ପୀ କେବେ ଶିଳ୍ପ ରଚନା କରିବ?

ଆଉ କଅଣ ବା ସେ ଝିଅର ଆଦର୍ଶ! କଅଣ ବା ତାଆର କୃତି। କଅଣ ବା ତା'ର ଜୀବନର ସ୍ୱପ୍ନ। ତୁମେ ହାରିଗଲ ସାହିତ୍ୟିକ, ହଁ ହାରିଗଲ। ଏଥର ତୁମର ବିନୋଦିନୀ ତୁମକୁ ଉପଯୁକ୍ତ ଶିକ୍ଷା ଦେଇ ଛାଡ଼ିବ।

ଜ୍ଞାନାଞ୍ଜନ– (ଭୟାର୍ତ୍ତ ଓ ଅସ୍ଥିର ହୋଇ) ବିନୋଦିନୀ!!

ନାରୀକଣ୍ଠ– ଇସ୍, ତୁମେ କେତେ ଭାବପ୍ରବଣ ସତେ!! ଆଖିରୁ ଏଇଭଳି ମଦ ଝରାଇ, ଲାଲ ଆଖିରେ ବିଭ୍ରାନ୍ତ ଦୃଷ୍ଟି ଖେଳାଇ, ତମେ ଜଗତକୁ ଚିହ୍ନିବ? ଯାକୁ ଚିହ୍ନିବାପାଇଁ ଆଦିମ ଯୁଗରୁ କିଏ କେତେ ଚେଷ୍ଟା କରି ନାହାନ୍ତି। ଶ୍ରମ ସଫଳ ହୋଇଛି କି?

ତୁମେ ଯେତିକି ଚିହ୍ନିଲ ତାହା ବହିରଙ୍ଗ। ଏ ଦୁନିଆର ବାହାରଟାକୁ ତୁମର ସୁରାସ୍ରାବୀ ଚକ୍ଷୁ ଚିହ୍ନିଲା, ଅସଲ ଚିହ୍ନିବାଟା ବାକୀ ଅଛି। ମୋ ଆଡ଼େ ଚାହଁ। ଆଉ ଚାହଁ ତୁମର ଆଉ ମୋର ଜନ୍ମଭୂମିକୁ। ପାଞ୍ଚ ବର୍ଷ ପରେ ଆସିଛ, ଟିକିଏ ହିସାବ ନିକାଶ କର। ମୁଁ ଏଇଠି ଏଇ ଓସ୍ତମୂଳରେ ତୁମର କାମ ଶେଷଯାଏଁ ରହିଲି। ଚାହଁ ମୋ ଆଡ଼େ।

ଜ୍ଞାନାଞ୍ଜନ– କିଏ। ବିନୋଦିନୀ! ଓଃ...

ନାରୀକଣ୍ଠ– କଅଣ ଦେଖିଲ। ଦେଖି ପାରିବାର ଶକ୍ତି ତୁମର ନାହିଁ, ମୁଁ ଜାଣେ। ତଥାପି ଚାହଁ। ଅନନ୍ତ କାଳର ଗୋଟିଏ ବିନ୍ଦୁ ଭଳି ମୁଁ ବିପୁଳ ଜନ୍ମ–ମରଣ ସ୍ରୋତରେ ଭାସିଯାଉଛି। ମୋ ପରି ଅଜସ୍ର ବିନ୍ଦୁ ଭାସୁଛନ୍ତି। ଅଣୁମାତ୍ରାରେ ଆମର ସ୍ଥିତି; ଅଥଚ ଏଇ କ୍ଷୀଣ ସ୍ଥିତିକୁ ଘେନି ତୁମେ ରଚନା କରୁଛ ରସମୟ ସାହିତ୍ୟ... ଖୁବ୍ ହସଉଛ ପ୍ରିଜାଇଡ଼ିଂ ଅଫିସର... ହିଃ... ହିଃ...

ଜ୍ଞାନାଞ୍ଜନ– ଓଃ (ଚିତ୍‌କାର କଲେ, ଭୟରେ ସମଗ୍ର ଶରୀର ଥରୁଥିଲା।)

ପଥିକ– (ଦଉଡ଼ି ଆସିଲେ) ବାବୁ, ବାବୁ, କଅଣ ହେଲା? କଅଣ ଡରିଲେ କି? ଏ ଗଛଟା ବଡ଼ ଭୟଙ୍କର। ଲୋକେ କହନ୍ତି, ଭୂତପ୍ରେତର ଆଡ୍‌ଡ଼ା। ଏହାରି ଡାଳରେ କେତେ ଯୁବତୀ ଦଉଡ଼ି ଦେଇ ମଲେଣି।

କେତେ ବିଷ ଖାଇ ଏଇଠି ପୋଡ଼ା ହେଲେଣି; ଆସନ୍ତୁ। ଆପଣ ମଶାଣିଟା ଉପରେ ଛିଡ଼ା ହୋଇଛନ୍ତି। କି ଭୟଙ୍କର ଜାଗା! ଆସନ୍ତୁ, ମୁଁ ନେଇଯିବି।

(ଧୀରେ ଜ୍ଞାନାଞ୍ଜନ ଓ ପଥିକ ଚାଲିଗଲେ)

(ପଟ୍ଟ ପରିବର୍ତ୍ତନ)

## ପଞ୍ଚମ ଦୃଶ୍ୟ

[ ରତ୍ନପୁର ପୋଲିଂ ବୁଥ୍। ପୋଲିଂ ଶେଷ ହୋଇଯାଇଛି। କେବଳ ବସିଛନ୍ତି ଜ୍ଞାନାଞ୍ଜନ ଓ ମୃଣାଳିନୀ। ଜ୍ଞାନାଞ୍ଜନ କର୍ମରତ। ]

ଜ୍ଞାନାଞ୍ଜନ– (କାର୍ଯ୍ୟବ୍ୟସ୍ତତା ଭିତରେ) ବିନୋଦିନୀ!

ମୃଣାଳିନୀ– ସାର୍, ମୁଁ ମୃଣାଳିନୀ। ଆପଣ ଏମିତି କେତେଥର ଭୁଲ୍‌ରେ ଡାକିଲେଣି। ମୋର ନାଁ କଅଣ ମନେରହେ ନାହିଁ?

ଜ୍ଞାନାଞ୍ଜନୀ– ଓଃ, ନା, ଠିକ୍ ମନେ ଅଛି।

ମୃଣାଳିନୀ– ସାର୍, ମଝିରେ ମଝିରେ ମତେ ଏମିତି ବିନୋଦିନୀ ବୋଲି ଡାକୁଛନ୍ତି କାହିଁକି?

ଜ୍ଞାନାଞ୍ଜନ– ମୃଣାଳିନୀ, ତୁମେ ଭଲ କାମ କରିଛ। ନିୟମ ଅନୁସାରେ ତୁମର ପ୍ରାପ୍ୟ ତୁମକୁ କାଲି ସକାଳେ ମୁଁ ଦେଇଦେବି। ଆଜି ମୁଁ ବଡ଼ କ୍ଳାନ୍ତ।

ମୃଣାଳିନୀ– ସାର୍, ଗୋଟିଏ କଥା ପଚାରିବି, କହିବେ? ବିନୋଦିନୀ କଅଣ ଆପଣଙ୍କ ଝିଅର ନାଁ? ଘରୁ କେଉଁଦିନୁ ଆସିଲେଣି। ମନେପଡୁଥିବ, ନୁହେଁ?

ଜ୍ଞାନାଞ୍ଜନ– କାହିଁକି ପଚାରୁଛ?

ମୃଣାଳିନୀ– ନିଶ୍ଚୟ ଆପଣଙ୍କୁ ସେ ମନେ ରଖିଛି; ନଇଲେ ଆପଣ ଏତେ ମନେ ପକାନ୍ତେ?

ଜ୍ଞାନାଞ୍ଜନ– ନା, ସେ ମୋର ଝିଅ ନୁହେଁ। ତେବେ ତା କଥା ଅନେକ ସମୟରେ ମନେପଡ଼େ। ବିଶେଷରେ ପାଞ୍ଚବର୍ଷ ତଳେ ଏଇଭଳି ଏକ ନିର୍ବାଚନରେ ସେ ତୁମଭଳି ମତେ ଦୁର୍ଗାପୁର ଭୋଟ କେନ୍ଦ୍ରରେ ସାହାଯ୍ୟ କରିଥିଲା। ଝିଅଟି ଭାରୀ ଭଲ। ଈଶ୍ବର ତାକୁ ଦୀର୍ଘାୟୁ କରନ୍ତୁ।

ମୃଣାଳିନୀ– ଦୁର୍ଗାପୁର? କେଉଁଠି ସେ ଗାଁ; ଖୋରଧା ପାଖରେ କି? ଖୋରଧାଠାରୁ ସାତ ମାଇଲ ବାଟ ହେବ ବୋଧେ?

ଜ୍ଞାନାଞ୍ଜନ– ହଁ ସେଇ ଦୁର୍ଗାପୁର। କିନ୍ତୁ ତୁମେ କିପରି ଜାଣିଲ?

ମୃଣାଳିନୀ– ବିନୋଦିନୀର ବାପାଙ୍କ ନାଁ। କହିପାରିବେ?

ଜ୍ଞାନାଞ୍ଜନ– ହଁ, ବାପାଙ୍କ ନାଁ ହରିଦାସ ପଟ୍ଟନାୟକ।

(ମୃଣାଳିନୀର ଆଖିରେ ଅଶ୍ରୁ, କୋହ ସମ୍ଭାଳି ପାରୁ ନଥାଏ।)

ତୁମେ ଏମିତି କାହିଁକି ହେଉଛ? ଦେହ କଅଣ ଖରାପ ଲାଗୁଛି?

ମୃଣାଳିନୀ– (ଅଶ୍ରୁଧାରା ଭିତରେ) ମୋର ବିନୁ ଭାଉଜ, ବିନୋଦିନୀ...

ଜ୍ଞାନାଞ୍ଜନ– ବିନୋଦିନୀ, ଭାଉଜ? ମାନେ?

ମୃଣାଳିନୀ– ହଁ, ଦୁର୍ଗାପୁରରେ ତାଙ୍କ ବାପ ଘର। ମୁଁ ତାଙ୍କର ଛୋଟ ନଣନ୍ଦ।

ଜ୍ଞାନାଞ୍ଜନ– ଆରେ ଏ ତ ଶୁଭ ଖବର। କାନ୍ଦୁଛ କାହିଁକି ? ବିନୋଦିନୀ ଏଇ ଗାଁରେ; ମୋତେ ଆଗରୁ କହୁନ। ମୁଁ ଏଇଠି ପ୍ରିଜାଇଡ଼ିଂ ଅଫିସର। ତା'ର ଶାଶୁଘର ଗାଁରେ। ସେ ନିଶ୍ଚୟ ଭୋଟ ଦେଇଥିବ। ସେ ଭୋଟ ଦେଇ କେତେବେଳେ ଚାଲିଯାଇଥିବ। ମୁଁ ଯେତେବେଳେ ଆସିଛି, କାହାଠୁଁ ସେ ଶୁଣିଥିବ, ବିନୋଦିନୀ ନ ଆସି ରହିପାରିବ କି ? ଚୌକିଦାର ପାଣ୍ଡୁ ମଳିକ ! ଓ ତୁମେ ସବୁ କୁଆଡ଼େ ଯେ ଯାଅ। ମୃଣାଳିନୀ, କହିଲ ବିନୁର ସ୍ୱାମୀ ନାଁ କଅଣ ? ଆରେ ତୁମେ ଏମିତି କାନ୍ଦୁଛ କାହିଁକି ? ମୁଁ ବୁଝେ, ସେମାନେ ଭୋଟ ଦେବାକୁ ଆସିଥିଲେ କି ନାହିଁ। ନା, ନା, ସେ ନିଶ୍ଚୟ ଆସିଥିବ। ମୁଁ ଯେତେବେଳେ ପାଞ୍ଚବର୍ଷ ତଳର ତା'ରି ପରିଚିତ ପ୍ରିଜାଇଡ଼ିଂ ଅଫିସର, ସେ ନିଶ୍ଚୟ ଆସିଥିବ। କେଜାଣି ବା କୁଳବୋହୂ ବୋଲି ଆସି ନ ଥିବ। ମୁଁ ଏଇକ୍ଷଣି ଯିବି। ମୃଣାଳିନୀ, ଚାଲ, ମୋର ଯେ କେତେ ଆନନ୍ଦ ! ପାଣ୍ଡୁ ମଳିକ, ପାଣ୍ଡୁ ମଳିକ, ବାଟ ଦେଖାରେ ପାଣ୍ଡୁ ମଳିକ।

(ପାଣ୍ଡୁ ମଳିକର ପ୍ରବେଶ)

ବିନୋଦିନୀକୁ ଆଉ ଥରେ ଦେଖିବି। ଦୁର୍ଗାପୁରର ସ୍ମୃତି, କେତେ କଥା କହିବି। ଦେଖ ତ ଭାଗ୍ୟ ପୁଣି କଅଣ ନ କରେ। ପାଣ୍ଡୁ ତୁମେ ଆଖି ପୋଛୁଚ ? ମୃଣାଳିନୀ, କାନ୍ଦୁଛ ?

ପାଣ୍ଡୁ– (ଆଖି ପୋଛି) ଆଜ୍ଞା, ମୋଟେ ପନ୍ଦର ଦିନ ଆଗରୁ ତାଙ୍କର କାଳ ହୋଇଯାଇଛି। ଉଦ୍ଧାର ପାଇପାରିଲେ ନାହିଁ। ମଲା ପିଲାକୁ ସାଥିରେ ନେଇ ଚାଲିଗଲେ। ପନ୍ଦର କୋଶ ଦୂରରେ ଡାକ୍ତରଖାନା। ଯାଉ ଯାଉ ବାଟରେ ସବୁ ଶେଷ।

(ଜ୍ଞାନାଞ୍ଜନଙ୍କ ଆଖିରୁ ଦୁଇଧାର ଲୁହ ବୋହି ଆସିଲା।)

ଜ୍ଞାନାଞ୍ଜନ– ଗାଁ ଶ୍ମଶାନ ବକ୍ଷରେ ଅଶ୍ୱତ୍‌ଥ ବୃକ୍ଷତଳେ କାଲି ସନ୍ଧ୍ୟାରେ ବସି ବିନୋଦନୀର କଣ୍ଠସ୍ୱର ଶୁଣିଥିଲି। ଭାବି ନ ଥିଲି କାଳ ତାକୁ ନେଇଯାଇଛି। ସେ ଯେପରି ଓଡ଼ିଶାର ଲକ୍ଷ ଲକ୍ଷ ପ୍ରସୂତୀଙ୍କର ପ୍ରତିନିଧି ହୋଇ ପ୍ରଚାର କରୁଥିଲା, (ଉତ୍ତ୍ୟକ୍ତ କଣ୍ଠରେ, ଏ ଭୋଟ ଝୁଟା, ଏ ପ୍ରତିନିଧି ନିର୍ବାଚନ ମିଥ୍ୟା।)

ପାଣ୍ଡୁ– ବାବୁ, ବାବୁ !

ଜ୍ଞାନାଞ୍ଜନ– ପାଞ୍ଚବର୍ଷ ଭିତରେ ପନ୍ଦରକୋଶ ବାଟର ଡାକ୍ତରଖାନା ଗାଁମୁଣ୍ଡକୁ ଆସିପାରିଲା ନାହିଁ ? ପ୍ରସୂତିମାନେ ଏଇଭଳି ଝାଉଁଳି ପଡ଼ିବେ ? ବିନୋଦିନୀ ହିସାବ ନିକାଶ କରିବାକୁ ସୂଚନା ଦେଇଥିଲା। ଏଇ ତେବେ ହିସାବ ?

ମୃଣାଳିନୀ– (ରୁଦ୍ଧ କଣ୍ଠରେ) ସାର୍, ସାର୍...

ଜ୍ଞାନାଞ୍ଜନ– ଭାବୁଥିଲି ଶିଳ୍ପରେ, ସାହିତ୍ୟରେ ଯେଉଁ ବିନୋଦିନୀକୁ ଏକ ମୁହୂର୍ତ୍ତରେ ସଜେଇ ଦେଇ ତାକୁ ଅମରତ୍ୱ ଦେଇଥିଲି ଓ ତାଆରି ବିଶ୍ୱାସରେ ଅନୁପ୍ରାଣିତ ହୋଇ ମୁଁ ବିଶ୍ୱାସ ରଖିଥିଲି ଯେ ପାଞ୍ଚବର୍ଷ ଭିତରେ ଏ ଦେଶ ଉଜ୍ଜ୍ୱଳ ହୋଇଯିବ, ମଣିଷ ଜୀବନ ସୁଖକର ହେବ, ସୁନ୍ଦର ହେବ। ଆଜି ସେ ବିଶ୍ୱାସ ଚାଲିଯାଇଛି। ଆଜି ପୁଣି ପାଞ୍ଚବର୍ଷର ଏକ ଅବିଶ୍ୱାସ, ଏକ ବ୍ୟର୍ଥତାର ନୌକା ଚଳାଇ ମୁଁ

ଦୁସ୍ତର ସିନ୍ଧୁ ପାର ହେବାକୁ ଯାଉଛି; ହଁ, ମୁଁ ଦୁସ୍ତର ସିନ୍ଧୁ ପାରହେବାକୁ ଯାଉଛି।

(ପ୍ରସ୍ଥାନ)

ପାଣୁ– ବାବୁ... ବାବୁ–

(ପଟ୍ଟପରିବର୍ତ୍ତନ)

## ଷଷ୍ଠ ଦୃଶ୍ୟ

[ ରାତ୍ରର ଶେଷ ପ୍ରହର। ସିନ୍ଦୂରା ଫାଟିବାକୁ ଆଉ ବେଶୀ ସମୟ ନାହିଁ। ଜ୍ଞାନାଞ୍ଜନ ଅଶ୍ୱତ୍ଥ ବୃକ୍ଷ ମୂଳରେ ବସିଥିଲେ। ଶ୍ମଶାନ। ସେଇ ଗଛମୂଳରୁ ଗୋଟିଏ ନାରୀର ଛାୟା ମୂର୍ତ୍ତି ଧୀରେ ବାହାରି ଆସି ଜ୍ଞାନାଞ୍ଜନକୁ ନିରୀକ୍ଷଣ କଲା। ଶ୍ମଶାନର ପୋଡ଼ାକାଠ, କଳସୀ ଓ ଚିତା ଭିତରେ ଦୃଶ୍ୟଟି ଭୟଙ୍କର ହୋଇଥିଲା। ]

ଛାୟାମୂର୍ତ୍ତି– ଶୁଣ ପ୍ରିଜାଇଡ଼ିଂ ଅଫିସର। ମୁଁ ଏଥର କେବଳ କଣ୍ଠସ୍ୱର ନ ଶୁଣାଇ ଦେଖାଦେଲି। ତୁମର ସ୍ନେହର ବିନୋଦିନୀକୁ ଖୋଜି ପାଇଲ ତ। ଅଦୃଶ୍ୟ ସେଇ ପ୍ରେତ–ଜଗତରୁ ଏପରି ବିଧାନ କରିଥିଲି ଯେ ମୃଣାଳିନୀ ଏଥର ତୁମ ପାଖରେ ମୋ ବଦଳରେ ପାଞ୍ଚବର୍ଷ ତଳର ମୋ କାମ କରିଛି। ସେ ମୋ ବଦଳରେ ପାଞ୍ଚବର୍ଷ ତଳର ମୋ କାମ କରିଛି। ସେ ମୋର ନଣନ୍ଦ। ମୁଁ ମୋ ପୁଅକୁ ସଂସାରକୁ ଆଣି ନ ପାରି ଚାଲିଗଲି। ମାତ୍ର ତେରବର୍ଷରେ ବିଭା ହେଲି। ତୁମକୁ କହିଥିଲି– ମୁଁ ଏମ୍.ଏ. ପଢ଼ିବି ଅବା ଡାକ୍ତରାଣୀ ହେବି। ଦେଶସେବା କରିବି। କଥାଗୁଡ଼ାକ କୁହୁଡ଼ି ପହଁରା ହୋଇଗଲା, ନୁହେଁ।

ମୋ ଆଗରୁ ଓଡ଼ିଶାର ବହୁ କୁଳୀନ ବଂଶର ପରମ୍ପରା ଅନୁସାରେ ଝିଅମାନେ ତେର ବର୍ଷରେ ବାହା ହେବାଭଳି ମୁଁ ବିଭା ହେଲି। ଗର୍ଭରେ ମୁଁ ଯଥାରୀତି ସନ୍ତାନ ଧରିଲି; କିନ୍ତୁ ପୁଷ୍ଟିକର ଖାଦ୍ୟ ପାଇଲି ନାହିଁ। ଶୁଣିଛି ମାତୃମଙ୍ଗଳ କେନ୍ଦ୍ର କେବଳ ସହରରେ ପ୍ରତିଷ୍ଠିତ ହେଉଛି, ହେଉଥାଉ। ଆମେ ପୋକମାଛି ଭଳି ମରିଗଲେ ବି କାହାର କିଛି ଯାଏ ଆସେ ନାହିଁ।

ଶାଶୁ ଶଶୁର ଦିଅଁ ଦେବତା କଲେ। ମୁଁ ଏସବୁ କରିବାକୁ ମନାକଲି। ମୁଁ କହୁଥିଲି ମୋ ପେଟରେ ଘିଅ ଦୁଧ ପକାଅ, ଦୁଇଓଳି ପେଟପୂରା ଖାଇବାକୁ ଦିଅ। ଆଉ ମତେ ଛାଡ଼ ସୂର୍ଯ୍ୟତାପ ଭିତରକୁ, ପବନର ସୁଅ ଭିତରକୁ। ତାହାହେଲେ ମୁଁ ତୁମକୁ ଉପହାର ଦେଇଥାନ୍ତି ଓଡ଼ିଶାର ଭବିଷ୍ୟତ୍ ବଳିଷ୍ଠ ଶକ୍ତିଧର ନାଗରିକକୁ। ତା ସେମାନେ ବା କୁଆଡୁ କରନ୍ତେ ?

ତୁମେ ଲେଖକ। ଦୁର୍ଗାପୁରର ବିଦାୟ ଦୃଶ୍ୟରେ ତୁମେ ଭଲଲୋକ ବୋଲି ତୁମକୁ ଛାଡ଼ିବା ପୂର୍ବରୁ ମୁଁ କାନ୍ଦି ପକାଇଥିଲି। ସେ କଥାକୁ ତିଳକୁ ତାଳ କରିବା ନ୍ୟାୟରେ ତୁମେ ମୋତେ ଥୋଇଦେଲ ସମସ୍ତଙ୍କ ଚକ୍ଷୁ ଆଗରେ।

ଏବେ ଦେଖିଲ ତ, ମୁଁ କିମିତି ସମସ୍ତଙ୍କୁ ଠକି ଓସ୍ତଗଛ ମୂଳରେ ବସା

ବାନ୍ଧିଛି ? କେତେଦିନ ଏମିତି ଏଠି ରହିବି ଜାଣ ? ମୋର ଆତ୍ମା ବଡ଼ ଅତୃପ୍ତ। ତୁମ୍ଭ ଭଳି ଚିନ୍ତାଶୀଳ ଜନନାୟକ ଯେଉଁଦିନଯାଏ ଓଡ଼ିଶାର ପଲ୍ଲୀ ସମସ୍ୟା ବିଷୟରେ ଚିନ୍ତା କରିନାହାନ୍ତି, ପ୍ରତି ଗାଁରେ କୂଅ ଖୋଳି ନାହାନ୍ତି, ସ୍କୁଲ ବସାଇ ନାହାନ୍ତି, ରାସ୍ତା ତିଆରି କରି ନାହାନ୍ତି, ଅଥଚ ଏଆଡ଼େ ସହରକୁ ମଣ୍ଡଣି କରୁଛନ୍ତି, ଆଉ ଭାବୁଛନ୍ତି ମହାମାନବମାନେ ଏକା ସେଇଟି ଅଛନ୍ତି, ତାଙ୍କରି ସ୍ତ୍ରୀ କନ୍ୟାମାନେ ସନ୍ତାନ ପ୍ରସବ କରିବେ ବିଖ୍ୟାତ ଡାକ୍ତରଖାନାର ନର୍ସିଂହୋମ୍‌ରେ, ସେଇ ମହାମାନବମାନେ ସବୁ ସୁଖ ସ୍ୱାଚ୍ଛନ୍ଦ୍ୟ ଭୋଗ କରିବେ, ସେ ପର୍ଯ୍ୟନ୍ତ ମୁଁ ଓ ମୋର ପ୍ରେତ ଭଉଣୀମାନେ ଶୂନ୍ୟରେ ଉଡ଼ି ବୁଲି ସମୟ ଦେଖି ଆତଙ୍କ ସୃଷ୍ଟି କରୁଥିବୁ। ଆମର ମୁକ୍ତି ନାହିଁ, ମୁକ୍ତି ହୋଇ ନ ପାରେ।

ଜ୍ଞାନାଞ୍ଜନ– ବିନୁ, ବିନୋଦିନୀ, ତୁମେ ସ୍ତବ୍ଧ ହୁଅ।

ଛାୟାମୂର୍ତ୍ତି– ଦେଖ, ଆକାଶର ରଙ୍ଗିମା ଫୁଟି ଉଠିଲାଣି। ମୁଁ ଆଉ ରହିପାରିବି ନାହିଁ। ଯାହା କହିଗଲି ମନର ଗଭୀର ପାତାଳ ଭିତରେ ଚିନ୍ତାକର। ଲେଖ, ବୁଝାଅ। ଆଉ ଏ ତାମ୍‌ସା ବନ୍ଦ କର। ଆଜି ଆସୁଛି, ଭୁଲ୍ କହିଲି। ପୃଥିବୀରେ ଥିଲାବେଳେ ଏମିତି କହିବାର ଅଭ୍ୟାସ ଥିଲା। କାରଣ ଆଉ କେବେ ଦେଖା ହେବ ବୋଲି ଆଶା ରଖୁଥିଲି।

ଯାଅ, ଆଉ ଦେଖା ଦେବି ନାହିଁ। ପାଞ୍ଚ ବର୍ଷ ପରେ ମୋର ପୂର୍ବ ପରିଚିତ ପ୍ରିଜାଇଡ଼ିଂ ଅଫିସରଙ୍କୁ ଦେଖିବାକୁ ଆସିଥିଲି। ବିଦାୟ ଦିଅ, ବିଦାୟ...ବିଦାୟ...

ଜ୍ଞାନାଞ୍ଜନ– ବିନୋଦିନୀ, ବିନୁ, ବିନୋଦିନୀ...

[ ଅସ୍ଥିର, ଆତଙ୍କିତ ଓ ଅଶ୍ରୁସିକ୍ତ ନେତ୍ର ଦେଇ ଚାହିଁ ରହିଲେ ଜ୍ଞାନାଞ୍ଜନ ଦୂରକୁ... ଅତି ଦୂରକୁ; ଯେଉଁଆଡ଼େ ପ୍ରେତାତ୍ମା ଧୀରେ ମିଳେଇଗଲା ପ୍ରଭାତର ଆଦ୍ୟ କାକଳି ଓ ଅରୁଣିମା ଭିତରେ। ]

● (ଧୀରେ ଯବନିକା ଅବତରଣ କଲା) ●



# ନବତାରକା

## ପ୍ରଥମ ଦୃଶ୍ୟ

[ ଲିଲିର ପଢ଼ିବା ଘର– ଘରର ଗୋଟିଏ ପାଖରେ ଗୋଟିଏ ଛୋଟ ବ୍ଲାକବୋର୍ଡ଼, ସେଥିରେ ଲେଖାଅଛି– ବାର୍‌ବାରା, ସିଲାରେଣ୍ଟ, ଡାରାଇ, ଫେଫରିଓ ଇତ୍ୟାଦି; ପଢ଼ାଘରେ ରହିଥିବା ସାଧାରଣ ଉପକରଣ ଆଖିରେ ପଡ଼େ। କାନ୍ଥରେ କେତେଖଣ୍ଡି ସୌଖୀନ ଛବି ଝୁଲୁଛି। ଲିଲି ବ୍ଲାକବୋର୍ଡ଼ ଆଡ଼େ ମୁହଁ ରଖି ବଡ଼ପାଟିରେ ବାର୍‌ବାରା ଇତ୍ୟାଦି ଉଚ୍ଚାରଣ କରୁଥିବା ସମୟରେ ଯବନିକା ଉତ୍ତୋଳିତ ହେଲା। ]

ଲିଲି– ବାର୍‌ବାରା, ସିଲାରେଣ୍ଟ, ଡେରିଆଇ, ଫେରିଓ... (ବ୍ୟସ୍ତଭାବ ଦେଖାଇ) କାହିଁକି ଯେ ମିସ୍ ଦାସ ଏଗୁଡ଼ାକ ଆମକୁ ପଢ଼ାନ୍ତି, ତାଙ୍କୁଇ ଜଣା– ଧେତ୍, ଆଚ୍ଛା, ଆଉଥରେ ଆଖିବୁଜି କହେଁ, (ଦର୍ଶକମାନଙ୍କୁ ଚାହିଁ ମୁହଁ ବୁଲାଇ ଓ ଆଖି ବୁଜି) ବାର୍‌ବାରା, ବାରବାରା– ଫେରିଓ– ତା ପରେ ବାର୍‌ବାରା...

[ ଗଣେଶ ନିଜ ସ୍ତ୍ରୀ ଓ ଲିଲିର ନୂଆବୋହୂ ରେଖାକୁ ଓଟାରି ଓଟାରି ରଙ୍ଗମଞ୍ଚ ଉପରେ ପ୍ରବେଶ କରିବା। ଗଣେଶ ସୁଟ୍ ପ୍ୟାଣ୍ଟ ପରିହିତ ସାହେବୀ ଫେସନର ଯୁବକ। ରେଖା ପିନ୍ଧିଛି ଅଧାଅଧି ମଇଳା ଶାଢ଼ୀ। ଶାଢ଼ୀର ବହୁତ ଜାଗାରେ ହଳଦୀ ଓ କଳାଦାଗ। ମୁହଁ ଉପରେ ଓଢ଼ଣା ସାମାନ୍ୟ ଲମ୍ବି ଆସିଛି। ହାତରେ ପିଠାଖଡ଼ିକା। ବଡ଼ ସଙ୍କୋଚରେ ରଙ୍ଗଭୂମି ଉପରକୁ ରେଖା ଟାଣିହୋଇ ଆସିବାର ଅଭିନୟ। ଗଣେଶର ବାହା ଉପରେ ଗୋଟିଏ ଏପ୍ରେନ। ]

ଲିଲି– ପୂର୍ବପରି) ବାର୍‌ବାରା– ବାରବାରା... ବୋକା...

ଗଣେଶ– ଏଁ ବୋକା ? Oh! I see, you mean Bocardo? ମାନେ Sylogism ଅଭ୍ୟାସ ? ବହୁତ ଆଚ୍ଛା। କିନ୍ତୁ ଦେଖ ଲିଲି, ତୋ ଆଗରେ ଏବଂ ମୋ ଆଗରେ ଏକ ମହାଜୀବନ୍ତ ସିଲୋଜିଜ୍‌ମ ଅର୍ଥାତ୍ ତୋ ନୂଆବୋଉ ଶ୍ରୀମତୀ ରେଖା ଦେବୀ ଛିଡ଼ା ହୋଇଛନ୍ତି। କେଉଁ ଫିଗରରେ ଏ ସିଲୋଜିଜ୍‌ମ, ଯାଇପାରିବ କହିପାରିବୁ ?

ଲିଲି– (ହସି) ତା ଆଉ କହିପାରିବି ନାହିଁ ? ନୂଆବୋହୂଙ୍କର ଏ ଯେଉଁ ଅବସ୍ଥା, ଏଥିରେ ଫିଗରଟା ରୋଷେଇଘର।

ଗଣେଶ– ଠିକ୍ କହିଛୁ ଲିଲି; କିନ୍ତୁ ଆଜି ମୁଁ ସଂକଳ୍ପ କରିଛି ଯେ ତୋ ନୂଆବୋଉଙ୍କ ଚେହେରାକୁ ଏକଦମ ବଦଳାଇଦେବି। ରୋଷାଇ କରିବ ତ କର, ଆପତ୍ତି ନାହିଁ। କିନ୍ତୁ ମେଞ୍ଚାଏ ମେଞ୍ଚାଏ ହାଣ୍ଡିକଳା, ହଳଦୀଦାଗ, ବେସରବଟା ଏ ଶାଢ଼ୀ ଗୋଟାକଯାକ ବୋଳାହୋଇଛି କିଆଁ ? ନା, ସବୁଥିରେ ଗୋଟିଏ ବୈଜ୍ଞାନିକ ମନୋବୃତ୍ତି, ଗୋଟିଏ

ବିନ୍ୟାସ ଦେଖିବାକୁ ହେବ। ଦେଖି, ଆସିବ ତ ଏଠିକି।

(ହାତ ଉପରେ ଥିବା ଏପ୍ରନଟି ରେଖା ଦେହରେ ପିନ୍ଧାଇ ପଛ ଆଡ଼କୁ ଫିତା ବାନ୍ଧିବା। ରେଖା ଲାଜରେ ମୁହଁ ତଳକୁ କରିବା ଅଭିନୟ।)

ଲିଲି– ଯଥେଷ୍ଟ ହୋଇ ନାହିଁ ଲିଲି। ଯେପର୍ଯ୍ୟନ୍ତ ନାରୀ ଗଳାରେ ଏପ୍ରନ ଝୁଲାଇ ରୋଷାଇକରି ନ ଶିଖିଛି, ସେ ପର୍ଯ୍ୟନ୍ତ ପ୍ରତ୍ୟେକ ପରିବାର, ପ୍ରତ୍ୟେକ ଘର ଅସଭ୍ୟତାର· ଗୋଟିଏ ଗୋଟିଏ ସ୍ଥଳ। ଏଇ ଏପ୍ରନଟା ଯେ କେତେ ସୁବିଧା, ତା ତମେସବୁ କଣ ବୁଝୁଛ? ଏଣିକି ଶ୍ରୀମତୀ ରେଖାଦେବୀଙ୍କ ଅଙ୍ଗରେ ଯେଉଁ ଶାଢ଼ୀଟି ରହିଛି, ଯାହାକି ସ୍ୱୟଂ ଗଣେଶଙ୍କର କଷ୍ଟ ଉପାର୍ଜ୍ଜିତ ଧନରେ କିଣା ହୋଇଛି; ସେଇଟି ଆଉ ତେଲଚିକିଟା ହଳଦୀବଟାରେ ଚିତ୍ରିତ ହେବ ନାହିଁ।

ଲିଲି– କ'ଣ ନୂଆବୋଉ, ଏଥର ବୋଧେ ମନେପଡ଼ିଥିବ ଟିକେ ମହନଭୋଗ ତିଆରି କରିବାପାଇଁ ତମର ଏପ୍ରନ ପିନ୍ଧିବା ଅଭ୍ୟାସ?

ରେଖା– ତମର ସବୁ କ'ଣ ହୋଇଛି କେଜାଣି? ମା ଆସୁଥିବେ, ମୁଁ ଯାଏ। ଲିଲି, ତମେ ଯାହା କୁହ ପଛକେ ମୋର Alma matre କୁ ଅପମାନିତ କରି ତମେ କିଛି କହିବ ନାହିଁ।

ଗଣେଶ– (ହସି) Alma matre! ଜଣେ I.A. Sent–up ଝିଅଙ୍କ ମୁହଁରୁ ଏଇ ପଦକ ଶୁଣିବାକୁ ବଡ଼ ରୁଚିକର ହୋଇଛି। Alma matre!!! ବଡ଼ ଦୁଃଖ ଯେ Sent–up ହେଉ ହେଉ ନବବଧୂ ବେଶରେ ଏ ଗରିବ କୁଟୀରରେ ଯାହା ତୁମ ପାଦ ପଡ଼ିଗଲା।

ଲିଲି– ଭାଇ, ବୋଉ ଆସୁଛନ୍ତି।

ଗଣେଶ– ଏଁ ବୋଉ! ମୁସ୍କିଲ (ଦଉଡ଼ି ପଳାଇବା)

ଗଣେଶବୋଉ– (ଭିତରୁ ଡାକି) ମା ରେଖା, କୁଆଡ଼େ ଅଛମ! ଏଆଡ଼େ ସବୁ କାମ ପାଇଟି ପଡ଼ିଛି, ତେଣେ କ'ଣ କରୁଛୁ କି? କିଲୋ ବୋହୂ! ଏ କ'ଣ? ଏ କି ପୋଷାକ?

ଲିଲି– ବୋଉ, ଜଣେ ସାଙ୍ଗର ଏ ଜାମା। ନୂଆବୋଉଙ୍କୁ କେମିତି ମାନିବ ଦେଖୁଥିଲି ପରା।

ଗ:ବୋଉ– ଛି, ଛି, ଏଗୁଡ଼ାକ କି ନିଉଛୁଣିଆ କଥା। ଉତୁରି ପକା ବୋହୂ, ଉତୁରି ପକା। ହଁ ଲିଲି, କାଲି ଉଜୁଆଁ ଗୁରୁବାର, ଶେଷପାଳି। ତୁ ଆଉ ବୋହୂ ଦୁହେଁଯାକ ମିଶି ମଣ୍ଡା, କାକରା, ଏଣ୍ଡୁରି, ଆରିଷା, ଛୁଞ୍ଚିପତର, ସରୁଚକୁଳି, ଖସାନଡ୍ଡୁ, ଉଖୁଡ଼ା, ନଡ଼ିଆପାତି, ପୋଡ଼ପିଠା, ରସାବଳୀ ତିଆରି କରିବ। ଆମ ବେଳ ଥିଲା ଯେ ଆଖିପିଛୁଳାକେ ହାଣ୍ଡିଏ ହାଣ୍ଡିଏ ପିଠା କାକରା ହାତବୁଲେଇ ଆଣୁଥିଲେ ସଜାଡ଼ି ଦେଉଥିଲୁ। ତମେ ତ ହାଣ୍ଡିଏ ଯନ୍ତଣୀ ଯନ୍ତିପାରିବ ନାହିଁ। ଗାଲ ଟାକୁଆ, ହାତ ଦିଖଣ୍ଡି କାଉଁରିଆ କାଠି। ମୁଣ୍ଡରେ ବାଳ ନାହିଁ ଯେ ବଜାରରୁ ବାଳ ଆଣି ମୁଣ୍ଡରେ ଖଞ୍ଜୁଛ। ବାଲଟିଏ ପାଣି କାଢ଼ିଲେ ଝୋଲାମାରି ହୋଇ ତଳେ ବସିପଡୁଛ। ତମ କଥା ଆଉ କ'ଣ କହିବି? ଲିଲି, କାଲି କଲେଜ ଯିବୁନି, ବୋହୂ ସାଙ୍ଗେ ମିଶି ପିଠାପଣା କରିବୁ।

ଲିଲି– ନାଇଁ ବୋଉ, କାଲି ମିସ୍ ଦାସ ସଲୋଜିଜ୍‌ମ ବିଷୟ ପଢ଼ାଇବେ, ମୁଁ ରହିବି କେମିତି?

ଗ: ବୋଉ– ଯାହାର ଯିଏ ଜୋଇଁ ଖୋଜୁଥାଉ, ତୁ ଯିବୁ ନାହିଁ। ମୋର ପୋଡ଼ା କପାଳ ଏମିତି ଯେ ଦି ଦିଟା ଝିଅ ଆସି ଦରବୁଢ଼ୀ ହେଲେଣି, ବାହାଘର ନାଁ ପଡ଼ିଲେ ହାଣ୍ଡିରେ ଖଇ ଫୁଟିଲା ପରି ରାଗରେ ଫୁଟୁଛନ୍ତି– ଆଉ ହବ ନାହିଁ।

ଲିଲି– ନାଇଁ...

ଗ: ବୋଉ– ସେ ସବୁ ହେବ ନାହିଁ– ବୋହୂ ତୁ ସେତିକିବେଳୁ ଛିଡ଼ା ହୋଇଛୁ ନା ? ଏ ବେଶ ତତେ ଭଲ ଲାଗୁଛି– ଏଁ !

ଲିଲି– ରୋଷାଇ କଲାବେଳେ ଶାଢ଼ିରେ ମଇଳା ଲାଗେ ବୋଲି ଏ ପୋଷାକ ତିଆରି ହୋଇଛି। ଯାହା ମଇଳା ଲାଗିବ, ଯାରି ଉପରେ ଲାଗିବ; ଆଉ ଶାଢ଼ି ମଇଳା ହେବନି।

ଗ: ବୋଉ– ଥୋବରୀ ଅଲାଜୁକୀ କ'ଣ ଆକାଶରୁ ଖସନ୍ତି କିଲୋ ମାଆ ? ଆଜିକାଲି କି ପାଠ ନ ପଢୁଛ କି ? ଖବରଦାର ଲିଲି– ଏମିତିକା ସାହେବୀ ଫେସନ ମୋ ଘରେ ଚଳିବ ନାହିଁ। ତାହାହେଲେ ବଡ଼ବଡୁଆ ତିନିପୁରୁଷ ପାଣି ଛୁଇଁବେ ନାହିଁ। ଚାଲ୍ ବୋହୂ ! ଏ କଥା କରିଛି କିଏ ? ଗଣେଶାଟି ? ମୁଁ ଜାଣେ ପରା। ହଁ– ଏ ସବୁ ପିଠା ସାଙ୍ଗକୁ ଗୁଡ଼ାଏ ପାଣିମଣ୍ଡା କରିବ। ତୁ ତୋ ସାଙ୍ଗମାନଙ୍କୁ ଖାଇବାକୁ ଡାକି ଆଣିବୁ। ଆସ୍ ବୋହୂ !

(ରେଖା ଓ ଗଣେଶବୋଉର ପ୍ରସ୍ଥାନ)

ଗଣେଶ– (ପ୍ରବେଶ କରି) ହଁ ହଁ, ପାଣିମଣ୍ଡା, ସ୍ଥଳମଣ୍ଡା, ଭୂଇଁମଣ୍ଡା, ଆକାଶମଣ୍ଡା, ସ୍ୱର୍ଗମଣ୍ଡା, ସବୁ ହେବ। (ଚେୟାରରେ ବସିପଡ଼ି) ବୋଉ, ତୁ ଏମିତି ବ୍ୟାକ୍‌ୱାଡ଼ ହୋଇ କାହିଁକି ଏ ଶ୍ୟାମଳ ନବୀନ ସୃଷ୍ଟିକୁ ଆସିଲୁ, କହିଲୁ ?

ଲିଲି– ସତେ ଭାଇ, ବଡ଼ ବିଷମ କଥା ତ ? କେମିତି ଏତେ ପ୍ରକାର ପିଠା ହେବ ? କିଏ କରିବ ? ବୋଉ ଯେମିତି ଜିଦିଖୋର ଲୋକ, ନୂଆବୋଉ ଯଦି...।

ଗଣେଶ– ନୂଆବୋଉ ? କଲେଜର ଦ୍ୱିତୀୟବାର୍ଷିକ କଳାଶ୍ରେଣୀରୁ ସେଣ୍ଟଅପ ହୋଇ ବି ଯେଉଁ ଛାତ୍ରୀ ଏବଂ ମୋ'ର ସହଧର୍ମିଣୀ ଆଜିଯାଏ ସେଇ ପୁରୁଣା ମରହଟ୍ଟୀ ସଂସ୍କୃତି... ଲିଲି ! ତା ସଙ୍ଗେ ଆଉ ଗୋଟିଏ କି ଶବ୍ଦ ଲଗାଯାଏ ?

ଲିଲି– ଐତିହ୍ୟ.....।

ଗଣେଶ– ହଁ, ହଁ, ଐତିହ୍ୟ ଛାଡ଼ିପାରି ନାହାନ୍ତି, ସେ କେବେ ଏପରି ନବ୍ୟସଭ୍ୟ ସ୍ୱାମୀକୁ ସାହାଯ୍ୟ କରିପାରିବେ ? ମାନେ କୋ–ଅପରେଶନ ?

ଲିଲି– ବରଂ କୋକଜାମ୍...

ଗଣେଶ– କିନ୍ତୁ ଭଉଣୀ, ବୋଉଙ୍କ ବରାଦ ତ କୋକ୍‌ଜାମ୍ ନୁହେ, ପାଣିମଣ୍ଡା।

ଲିଲି– ତେବେ ତ ବଡ଼ ମୁସ୍କିଲ ଭାଇ !

ଗଣେଶ– (ଭାବି) ଉପାୟ ଅଛି।

ଲିଲି– କି ଉପାୟ ?

ଗଣେଶ– (ହସି) ତତେ ଜର, ମତେ ଅଜୀର୍ଣ୍ଣ, ଆଉ ତୋ ନୂଆବୋଉଙ୍କ ମୂର୍ଚ୍ଛା।

ଲିଲି– ମୂର୍ଚ୍ଛା !

ଗଣେଶ– ହଁ ମୂର୍ଚ୍ଛା– କେବଳ ବୋଉ ଏକା ସୁସ୍ଥ ରହି ଏତେଗୁଡ଼ାଏ ପିଠା ଖାଇବାକୁ ଇଚ୍ଛା କରିବ ନାହିଁ

(ଲିଲିର ବନ୍ଧୁ ମୀରାର ପ୍ରବେଶ)

ମୀରା– କାହାକୁ ଏତେ ରୋଗ ହେଇଛି ଗଣେଶ ବାବୁ ? ନା ଇତିମଧ୍ୟରେ ଆପଣ ଜଣେ ହୋମିଓପାଥ୍ ହୋଇଗଲେଣି ।

ଗଣେଶ– ଆରେ ମୀରା ଯେ, ଆସ ଆସ ।

ଲିଲି– ନମସ୍କାର ମୀରା ଅପା !

ମୀରା– ନମସ୍କାର । ଗୋଟାଏ ଜରୁରୀ କାମ ଥିବାରୁ ତୁମ ପାଖକୁ ଆସିଲି । (ନେପଥ୍ୟରୁ) କାଗଜ ନିଅନ୍ତୁ, ଖବରକାଗଜ । ଏଣିକି ସରକାରଙ୍କ ହୁକୁମରେ ଝିଅମାନେ ପୁରୁଷଙ୍କ ସହିତ ସମାନ ଅଧିକାର ପାଇଲେ ।

(ଅନ୍ୟଜଣେ)– ନିଅନ୍ତୁ କାଗଜ– ସ୍ତ୍ରୀଲୋକମାନେ ପୁରୁଷଙ୍କ ଭଳି ଚାକିରି କରିପାରିବେ, ଆଉ କିଛି ବାଧା ନାହିଁ ।

ଗଣେଶ– (ଶୁଣି) ବୋଇଚ୍ଚୋଭ୍, ହେ କାଗଜ ! (ଗୋଟାଏ ପାଖକୁ ଯାଇ ପତ୍ରିକା କିଣିବା) (ପଢ଼ି)... ଏଇ ଦେଖ ଲିଲି, କ'ଣ ଲେଖା ଅଛି ! "ସରକାରଙ୍କର ଏକ ବିଶେଷ ପ୍ରେସନୋଟ୍‌ରୁ ପ୍ରକାଶ ଯେ, ଏଣିକି ନାରୀମାନେ ଡେପୁଟି ମାଜିଷ୍ଟ୍ରେଟ, ସବ୍‌ଡ଼େପୁଟି, ସେକ୍ରେଟେରୀଏଟରେ କିରାଣୀ, ପୁଲିସ ଇନ୍‌ସ୍‌ପେକ୍ଟର ଇତ୍ୟାଦି ଚାକିରିରେ ନିଯୁକ୍ତ ହୋଇପାରିବେ । ନାରୀପୁଲିସ ରଖିବାପାଇଁ ସରାକର ସ୍ୱତନ୍ତ୍ର ବ୍ୟବସ୍ଥା କରୁଛନ୍ତି । ଅତଏବ ଶିକ୍ଷିତା ନାରୀମାନେ ଏ ସୁଯୋଗ ନ ଛାଡ଼ି ଶୀଘ୍ର ଆବେଦନ କରନ୍ତୁ ।" ... ବାଃ ! ଲିଲି ! ତୁ ଆଉ ଏ ବାର୍‌ବାରା, ଫେରିଓ ନ ଘୋଷି ଗୋଟାଏ କନେଷ୍ଟବଲ୍ ଚାକିରି ପାଇଁ ଦରଖାସ୍ତ ପଠାଇ ଦେ' ।

ଲିଲି– କନେଷ୍ଟବଲ୍ ?

ଗଣେଶ– ଓହୋ, ଆଚ୍ଛା ଆଚ୍ଛା, ଇନ୍‌ସ୍‌ପେକ୍ଟର, ଆଉ ମୀରା ତମେ ବି... ।

ମୀରା– ନିଶ୍ଚୟ । What an opportunity

ଗଣେଶ– Opportunity ବୋଲି ପଚାରୁଛ ? ତମେ ବି.ଏ.ପାଶ୍, ଇକନମିକ୍‌ସରେ ଏମ୍.ଏ. ପଢୁଛ, ଡେପୁଟି ମାଜିଷ୍ଟ୍ରେଟ ପାଇଁ ଦରଖାସ୍ତ କରିଦିଅ ଶୀଘ୍ର । ରେଖା, ରେଖା ! ଶୁଣ, କି ଖବର ବାହାରିଛି ଶୁଣ...(ରେଖାର ପ୍ରବେଶ, ଦୁଇହାତର କହୁଣୀଯାଏଁ ସାବୁନଫେଣ ଲାଗିଥିବା) ଶୁଣ ରେଖା, ଆସ । ଆରେ ଲୁଗା କାଚୁଥିଲ ନା କ'ଣ ? କି ନାଷ୍ଟି !

ରେଖା– ହାତରେ ନିଜ ଲୁଗା ସଫାକରିବା କ'ଣ ଖରାପ ? ମୋ ନିଜ କାମ ମୁଁ କରିବି ନାହିଁ ତ ଆଉ କିଏ କରିବ ? ଆଚ୍ଛା, ଛାଡ଼ ସେ କଥା, କିଆଁ ଡାକୁଥିଲ କହିବଟି ? ହାତରେ ବହୁତ କାମ ଅଛି ।

ମୀରା– ରେଖା ଅପା, ତମଭଳି କେତେକ ମରହଟ୍ଟୀ ଝିଅଙ୍କ ଯୋଗୁ ଆମ ମୁଣ୍ଡ ତଳକୁ ହୋଇଯାଉଛି । ନାରୀ କଲେଜରେ ଅନ୍ତତଃ ଦୁଇବର୍ଷ ପାଇଁ ଛାତ୍ରୀ ରହି ତୁମର ମାନସିକ ପରିବେଶ ଏପରି ହୋଇଥାଆନ୍ତା, ଯାହା ଫଳରେ ତୁମେ ପ୍ରତି ମୁହୂର୍ତ୍ତରେ ଦାବୀ କରୁଥାନ୍ତ ପୁରୁଷ ସହିତ ସମାନ ଅଧିକାର । ସେମାନେ ରହନ୍ତେ ଘରେ, ତୁମେ ଯାଆନ୍ତ ବାହାରକୁ । ସେମାନେ ରହନ୍ତେ ପଛରେ, ତୁମେ ବାହାରନ୍ତ ଆଗକୁ । ସେମାନେ ବାହା କରିବାକୁ ଦାବୀ କରନ୍ତେ, ତୁମେ ବାହା ନ ହେବାକୁ ସଂକଳ୍ପ କରନ୍ତ । ତାହାହେଲେ ସିନା

ସମୂହ ଭାବରେ ପୁରୁଷ ଓ ନାରୀ ସଂଘର୍ଷରେ ଗୋଟାଏ ଗଣତାନ୍ତ୍ରିକ ରାଷ୍ଟ୍ର...

ଲିଲି– (ତାଳିମାରି) ବାଃ, କି ଚମତ୍କାର ବକ୍ତୃତା!!

ଗଣେଶ– ମୀରାଦେବୀ, ଭଗବାନ ତୁମକୁ ପୁରୁଷ ନକରି ନାରୀ କଲେ କାହିଁକି ?

ମୀରା– ଫେର ପୁରୁଷ, ପୁରୁଷ ପୁରୁଷ, କହି କେମିତି ଗୋଟାଏ ଅରୁଚି ଭାବ ମୋ'ର ଆସିଲାଣି। ସେଦିନ କ୍ଲାସରେ ଅଧ୍ୟାପିକା କେଉଁ ପ୍ରସଙ୍ଗରେ କହିଥିଲେ, Name is indespensable in this world, ସେହିପରି ପୁରୁଷ ଗୋଟାଏ ଅପରିହାର୍ଯ୍ୟ ଜୀବ ନୁହେଁ, ବରଂ ଖୁବ୍ despensable

ରେଖା– ହଁ ମୀରା, ତମର ଆଉ ଟିକିଏ ବୟସ ହେଉ, ଆଉ ଟିକିଏ ଆଖି ଫିଟୁ, ରଙ୍ଗଚଷମା ପିନ୍ଧିଲେ ସବୁ ସଙ୍ଗୀନ ଦେଖାଯାଏ। ପୁରୁଷ ଦରକାରୀ ଜୀବ କି ନୁହେଁ ତାହା ସମୟ ଆସିଲେ ବୁଝିପାରିବ।

ମୀରା– କି ଲାଜ କଥା ଏ! ଆର ବର୍ଷକୁ ତମ ନାଁ old girls list ରେ ନ ରହିବା ଉଚିତ। ଯେଉଁମାନେ କଲେଜର ଟ୍ରାଡ଼ିସନ ନଷ୍ଟ କରନ୍ତି ସେମାନେ...

ରେଖା– ଥାଉ, କଲେଜର ଟ୍ରାଡ଼ିସନ କ'ଣ ମୁଁ ଜାଣେ ନାହିଁ। ପୁରୁଷବିଦ୍ୱେଷୀ ନୁହେଁ, ଏଇ ଅପରାଧରେ ବୋଧହୁଏ ନାମ କଟାଯିବ। ମୁଁ ବୁଝୁଛି, ଗୃହସ୍ଥର ଗୃହିଣୀ ଭାବରେ ମୋ ଭଳି ନାରୀ ଅନ୍ଧପ୍ରଗତିର ଅନ୍ତରାୟ।

ଗଣେଶ– ରେଖା, ତୁମେ ଏପରି କଥା କହିପାର, ମୋ'ର ବିଶ୍ୱାସ ନଥିଲା।

ରେଖା– ମୁଁ ବା ଏମିତି କ'ଣ କହିଲି ? ଯାଏଁ, ହାତଟା ଶୁଖିଗଲା। ମାଆଙ୍କୁ ଅଧ୍ୟାୟେ ଭାଗବତ ଶୁଣାଇବି।

ମୀରା– ରେଖା ଅପା, ତୁମେ ଭାଗବତ ପଢ଼ନା କଅଣ ?

ଲିଲି– ହଁ, ଏତ ନୂଆବୋହୂଙ୍କ ସବୁଦିନିଆ କାମ। ତା ଛଡ଼ା ଜାଣ ମୀରା ଅପା, ନୂଆବୋଉ ଆମ ବାଡ଼ି ଆମ୍ବଗଛ ମୂଳେ...

ରେଖା– ଚୁପ୍।

ଲିଲି– ଦେବି, କହିଦେବି।

ଗଣେଶ– କହିବାର ଦରକାର ନାହିଁ, ତେବେ ବିଦ୍ୟାଟା ଯେ କେଉଁଠୁ ରେଖା ଶିଖିଲେ ମୁଁ ବହୁ ଗବେଷଣା କରି ଜାଣିପାରି ନାହିଁ। ଦିନେ ମୀରାଦେବୀ, ତୁମକୁ ଦେଖାଇ ଦେବି।

ମୀରା– ହଁ, ନିଶ୍ଚୟ ଦେଖାଇ ଦେବେ।

ଲିଲି– ଆସ ନୂଆବୋହୂ, ତେଣେ ବହୁତ କାମ ଅଛି।

(ଲିଲି ଓ ରେଖାର ପ୍ରସ୍ଥାନ)

ମୀରା– ଶୁଣନ୍ତୁ ଗଣେଶବାବୁ, କାଲି ସଞ୍ଜରେ ସେ କାମ ଶେଷ କରିବାକୁ ହେବ। ଏଥର ପ୍ରାୟ ଦୁଇହଜାର ଟଙ୍କା ଲାଭ। ଯା ଆଗରୁ ଯେତେ କାମରେ ହାତ ଦେଇଥିଲେ ସବୁ ସଫଳ ହୋଇଛି, ଏଥର ଟିକିଏ ସାବଧାନ ହେବାକୁ ପଡ଼ିବ– ସରକାରଙ୍କର ନଜର ପଡ଼ିଛି।

ଗଣେଶ– ସେ ସବୁ ଭାବ ନାଇଁ ମୀରା– ଶେଠଜୀ ସହିତ ମୋ'ର କଥାବାର୍ତ୍ତା ହୋଇଛି।

ମୀରା– ବେଶ୍...।

ଗଣେଶ– ତେବେ ଚିନ୍ତା କ'ଣ ? ଡେପୁଟିମାଜିଷ୍ଟ୍ରେଟ ପାଇଁ ଦରଖାସ୍ତ କରିଦିଅ।

ମୀରା– ଦେବି।

(ପଟ୍ଟପରିବର୍ତ୍ତନ)

## ଦ୍ୱିତୀୟ ଦୃଶ୍ୟ

[ ପ୍ରାନ୍ତର– ଆଠଗୋଟି ବାଳିକା ଛୁରୀଖେଳ ଖେଳୁଛନ୍ତି– ପ୍ରତ୍ୟେକେ କଳାଧଡ଼ିଥିବା ଧଳା ଶାଢ଼ୀ ପିନ୍ଧିଛନ୍ତି। ପାଖରେ ରେଖା ]

ଗୀତ–

ଏକ ଦୁଇ ତିନି ଚାରି, ଅସ୍ତ୍ର ଦିଅ କମରେ ଭରି।
ପାଞ୍ଚ ଛଅ ସାତ ଆଠ, ରହିଛି ଅସ୍ତ୍ର ସାଙ୍ଗସାଥ୍
ନଅ ଦଶ ଏଗାର ବାର, ମାତୃଜାତିର ସମ୍ମାନ କର।
ନିର୍ଭୀକ ନିର୍ଭୟ।

ଏକ ଦୁଇ ତିନି ଚାରି, କୋମଳ–ପ୍ରାଣା ନୁହେଁ ରେ ନାରୀ
ସମ୍ମାନେ ଯଦି ଆସେରେ ଘାତ ଅସ୍ତ୍ରେ ଅସ୍ତ୍ରେ ଝରାଅ ରକ୍ତ
ନଅ ଦଶ ଏଗାର ବାର, ମାତୃଜାତିର ସମ୍ମାନ କର
ନିର୍ଭୀକ ନିର୍ଭୟ।।

ରେଖା– ବାଃ, ବେଶ୍ ହୋଇଛି। କାଲି ତୁମମାନଙ୍କ ଗୋଡ଼ ଠିକ୍ ପଡୁ ନଥିଲା, ଆଜି ଠିକ୍ ପଡୁଛି।

ଜଣେଛାତ୍ରୀ– ରେଖାଅପା, ଏ ଛୁରୀଖେଳ ଶିଖିଲେ କଅଣ ହେବ ?

ରେଖା– ନିଜକୁ ରକ୍ଷା କରିପାରିବ। ଏ ଦୁନିଆଁ ଯେପରି ହେଲାଣି– ନାରୀର ଇଜ୍ଜତ, ମାନ ମହତ୍ତ୍ୱକୁ ଦୁଷ୍ଟ ଲୋକଙ୍କଠାରୁ ରକ୍ଷା କରିବାକୁ ହେଲେ ହାତରେ ଅସ୍ତ୍ର ଥିବା ଦରକାର।

ଅନ୍ୟଜଣେ ଛାତ୍ରୀ– ହଁ ଠିକ୍ କଥା। ଆମେ ଭୀରୁ ନୋହୁଁ। ଆମ ହାତରେ ଅସ୍ତ୍ର ଥିଲେ ଆମେ ସହଜରେ ଦୁଷ୍ଟ ଲୋକଙ୍କୁ ଡରେଇଦେଇ ପାରିବୁ।

ରେଖା– ଖାଲି ଦୁଷ୍ଟ ଲୋକଙ୍କ କଥା କହୁ ନାହିଁ– ଯେଉଁଠି ଅନ୍ୟାୟ ଦେଖିବ, ସେଠାରେ ନ୍ୟାୟ ବିଚାର ପାଇଁ ଦାବୀ କରିବ।

ସମସ୍ତେ– ହଁ, ହଁ, ଆମେ ସାହସୀ ହେବୁ।

ରେଖା– ଆଚ୍ଛା, ଆଉଥରେ ଗାଅ।

(ଗୀତର ପୁନରାବୃତ୍ତି ପରେ ସମସ୍ତଙ୍କର ପ୍ରସ୍ଥାନ)

(ଦୁଇଟି ଗ୍ରାମ୍ୟ ମହିଳାଙ୍କର ପ୍ରବେଶ)

ପ୍ରଥମା– ମଲା ମୋର, ଏମିତି କାଳ ହେଲା ଯେ, ସବୁ ଜିନିଷରେ ଖାଲି ଭେଲ ମିଶିଲା। ପାଏ ନିତ୍ୟାନିରେ ସେରେ ପାଣି, ଘିଅ କଥା ତ ଛାଡ଼।

ଦ୍ୱିତୀୟା– ଇଲୋ ଚମ୍ପା, କଅଣ ସେତିକି କି ? ମାଟିତେଲ ଟିକିଏ ତ ମିଳୁନି। ମାସକରେ କୋଡ଼ିଏ ଦିନ ଘର ଉଜଳା ହେଉନି। ଦାମ୍ ତ ହୁ ହୁ ବଢ଼ିଯାଉଛି। କରିବା କଅଣ ? ଆଉ ଘର କରି ରହିହେବ ନାହିଁ।

ପ୍ରଥମା– ଆଲୋ, ଶୁଣୁଚୁ– ସୋରିଷ ମାଲପାରେ ପରା ଅଗରାମଞ୍ଜି ତେଲ ମିଶେଇଲେଣି ଯେ ଖାଇବାବାଲାର ଗୋଡ଼ ହାତ ଫୁଲି ଯାଉଛି। ଆଉ କାଳ ରହିବ ନାହିଁ।

ଦ୍ୱିତୀୟା– ହଁ, ସତେ ଆଉ ବଞ୍ଚିପାରିବା ନାହିଁ। ଚଢ଼ାଦାମ ନ ଦେଲେ ତ ଆଉ କିଛି ମିଳୁ ନାହିଁ।

ପ୍ରଥମା– ଆଲୋ, ଆମ ଗରିବଗୁରୁବାଙ୍କ ପାଇଁ ସିନା ସବୁ ହୁ ହୁ ହୋଇ ବଢ଼ିଯାଉଛି, ହାକିମମାନଙ୍କର ତ କିଛି ହେଉନି। ଇଲୋ, ଏବେ ପରା ଆମ ଘରମଣିଷ ଚିନିପଢ଼ି

ଆଣିବାକୁ ଯାଇଥିଲା ଯେ, କେତେବେଳଯାଏ ଛିଡ଼ାହୋଇ ହୋଇ ଫେରିଆସିଲା। ଆଉ ତାଆରି ଆଗରେ ବାବୁଙ୍କ ଚପରାସୀ କଅଣ ଦି'ପଦ ଖୋଲ୍‌ଟି କରି କହିଦେଲା ଯେ ସାଥି ସାଥି ପଡ଼ିଟିକଟ ଥୁଆ। ଯଉଁ ଅନିଆ ହଉଚି, ଯାକୁ କିଏ କ'ଣ ବୁଝୁଛି? ଗରିବଗୁରୁବା ମଲେ ଜାଣ।

(ଗଣେଶର ପ୍ରବେଶ)

ଗଣେଶ– କେଉଁଠି ମାଆମାନେ ଅନିଆ ଦେଖିଲ ମତେ ଟିକିଏ କହିବ କି?

ପ୍ରଥମା– ନାଇଁ ପୁଅ, ଆମେ ଆମ ବାଟରେ ଯାଉଛୁ, ତମେ ତମ ବାଟରେ ଯାଅ, ଏଇ ନିଆଁଲଗା କାଳ କଥା କହୁଥେଲୁ, ମହରଗ କାଳ–

ଗଣେଶ– ହଁ ମାଉସୀ, କାଳ ତ ମହରଗ ହେଲା ସତ ଯେ, ତମର କଅଣ ଦରକାର ଥିଲା?

ଦ୍ୱିତୀୟା– ଚିନି ଟିକିଏ ତ ମିଳିଲାନି, ମାଟିତେଲ ତ ସାତସପନ, କନା ଦି'ହାତେ କିଣି ହେଉନି– ଅମୂଲମୂଲ। କେତେଥର ବା ପଡ଼ିଟିକଟ ପାଇଁ ଗୋଡ଼ଭାଙ୍ଗି ଠିଆ ହେବୁ?

ଗଣେଶ– ଆହା, ଏକଥା ତ କହୁନ। ଦିଅ ପଇସା ଦିଅ, ମୁଁ ଆଣିଦେବି। ଟିକିଏ ଚଢ଼ାଦାମ୍ ପଡ଼ିବ। ବେଶୀ ନୁହେଁ, ତୁମେ ଏଇଠି ସବୁ ଥାଅ, ଦିଅ ପଇସା ଦେଇଦିଅ।

ପ୍ରଥମା– ବାବୁ ତମେ ଅଚିହ୍ନା ଲୋକ। ତମେ କିଆଁ ଆମ ପାଇଁ ଏତେ କଷଣ ଭୋଗିବ। ତମେ ତମ ବାଟରେ ଯାଅ। ଆମେ ଦୁଃଖକଷ୍ଟରେ ଚଳିଯିବୁ। ଆଜି ଦିନକ ସିନା ତମେ ଦବ, ସବୁଦିନ ତ ପୁଣି ଅଛି?

ଗଣେଶ– ତମେସବୁ କେଉଁ ଗାଆଁର କି?

ଦ୍ୱିତୀୟ– ଆମେ ନଈ ଆରପାରିର ଲୋକ।

ଗଣେଶ– ହଁ, ସେଇଥିପାଇଁ ମତେ ଚିହ୍ନିନ, ଜାଣିଥିଲେ କଅଣ ଏମିତି କହିଥାନ୍ତ?

(ରେଖାର ପ୍ରବେଶ)

ରେଖା– ଚିହ୍ନିବାର କଅଣ ବା ଦରକାର ଅଛି?

ଗଣେଶ– ତୁମେ ରେଖା, ବଡ଼ ବିରକ୍ତ ଜଣା ପଡୁଛ?

ରେଖା– (ନଶୁଣି) ମାଉସୀମାନେ, ତମେ ସବୁ ଯାଅ। ସେ କିଛି ଦେଇପାରିବେନି। କାହିଁକି ମିଛରେ ରହିବ? ଯାଅ।

ପ୍ରଥମା– ଆମେ ତ ସେଇଆ କହୁଚୁ। ଚପରାସୀ ହୋଇଥିଲେ ସିନା ଆଣିପାରନ୍ତେ। ଏ ତ ନିଜେ ବାବୁ ହାକିମ, ଏ କେଉଁଠି ଆଣିବେ? ଚାଲ ଲୋ ଚାଲ। (ଦୁହିଁଙ୍କର ପ୍ରସ୍ଥାନ)

ରେଖା– ଯା'କୁ ପରୋପକାର କହନ୍ତି ନା? ମୁଁ ଜାଣେ ଯା'ଭିତରେ ତମର କି ମତଲବ ଥିଲା।

ଗଣେଶ– ମତଲବ? ମାନେ?

ରେଖା– ହଁ, ଯାକୁ କହନ୍ତ ଏକ ପ୍ରକାର କଳାବଜାର।

ଗଣେଶ– କିଏ ନ କରୁଛି ଶୁଣେ।

ରେଖା– ଯା ବୋଲି ମୋ ନିଜ ସ୍ୱାମୀ ଦିନକୁ ଦିନ କଳାବଜାର କରି ଦୁର୍ନାମ ନେବେ? ଟାଉଟର ହୋଇ ସରଳ ଲୋକଙ୍କୁ ଠକାଇ ପଇସା ଆଦାୟ କରିବେ?

ଗଣେଶ– ଏ ତ ଛୋଟିଆ ଶିକାର। ଯେଉଁମାନେ ବଡ଼ ବଡ଼ ଶିକାର କରି ଛୁଞ୍ଚି ମୁନରେ ଗଳି

ଯାଇଛନ୍ତି ସେମାନଙ୍କୁ ସରକାର ସାଧ କରିପାରୁନି।

ରେଖା– ବୁଝିଲି, ମାତ୍ର ନୈତିକତା।

ଗଣେଶ– ହସ ମାଡୁଛି ରେଖା। ନୈତିକତା. ଫୈତିକତା ଗୋଟାଏ ଫମ୍ପା ଆଦର୍ଶ ପ୍ରଚାର କର ନାହିଁ। ଅର୍ଥକାରୀ ଯୁଗରେ ଅର୍ଥ ହିଁ ବଡ଼ କଥା। ଆଜି ମଣିଷର ମଣିଷ–ପଣିଆ ଆଉ କେଉଁଥିରେ ନାହିଁ। ଅଛି କେବଳ ମଟର ଯାନ ଆଉ ବ୍ୟାଙ୍କ୍ ବାଲାନ୍‌ସରେ।

ରେଖା– ତୁମେ ଶିକ୍ଷିତ, ପାଠଶାଠ ପଢ଼ିଛ, ମାତ୍ର ସ୍ୱାଧୀନ ଦେଶରେ ଏଭଳି ମନୋଭାବ ନେଇ ଗତି କଲେ ଦେଶର କଲ୍ୟାଣ ହେବଟି ?

ଗଣେଶ– କଲ୍ୟାଣ ଅକଲ୍ୟାଣ କେଉଁଥିରେ ଥାଏ ମୁଁ ତାହା ଜାଣେ ରେଖା। କେବଳ ଟଙ୍କା ଦରକାର। ତା ଯେ କୌଣସି ପ୍ରକାରେ ହେଉ ନା କାହିଁକି।

ରେଖା– ମୀରା ତୁମ ମୁଣ୍ଡ ବିଗାଡ଼ି ଦେଇଛି। ତୁମେ ଦୁହେଁ ଗୋଟାଏ କିଛି ରହସ୍ୟରେ ବୁଡ଼ି ରହିଛ। ମୁଁ ଅନୁମାନ କରୁଛି।

ଗଣେଶ– ହୋଇପାରେ; କାଲି କି ମୀରା ଡେପୁଟି ମାଜିଷ୍ଟ୍ରେଟ ହେବ, ତା ସାହାଯ୍ୟରେ ଯଦି କିଛି ସୁବିଧା ହୋଇପାରେ।

ରେଖା– ମୀରାର ଅଧଃପତନ ଏପରି ହେବ ? କେଜାଣି ? ଏସବୁ ଜାଣି ମତେ ବଡ଼ ଘୃଣା ଲାଗୁଛି; କିନ୍ତୁ ପରିଣାମ ଯେ ଭଲ ନୁହେଁ– ଏକଥା ତମକୁ କେମିତି ବୁଝାଇବି ? (ଗଣେଶର ହାତ ଧରି ପକାଇବା)

ଗଣେଶ– (ହାତ ଛିଣ୍ଡାଡ଼ି) ବୁଝାଇବା ଦରକାର ନାହିଁ। ତୁମେ ଘର ଭିତର ଲୋକ, ବାହାର ଦୁନିଆରେ କେଉଁଠି କଅଣ ଘଟୁଛି ତା ତୁମେ ନ ଜାଣିଲେ ହେଲା।

ରେଖା– ଅତି ଚମତ୍କାର କଥା। ସେଦିନ ପରା ନାରୀସ୍ୱାଧୀନତା ବିଷୟରେ ବକ୍ତୃତା ଦେଉଥିଲ ? ଆଜି ସେ ଭାବ କାହିଁ ?

ଗଣେଶ– ସବୁ ନାରୀର• ସ୍ୱାଧୀନତା ନୁହେଁ। ଯେଉଁ ନାରୀମାନେ ରୋଷାଇ କରିବା ଓ ସ୍ୱାମୀ ସୋହାଗିନୀ ହେବାପାଇଁ ଜନ୍ମ, ତାଙ୍କ ପାଇଁ ଏକଥା ନୁହେଁ। ଯେଉଁମାନେ ପ୍ରଗତିଶୀଳା, ପୁରୁଷ ସହିତ ଅବାଧରେ ସବୁକାମରେ ଯୋଗ ଦେଇପାରିବେ ସେମାନଙ୍କ କଥା କହୁଥିଲି।

ରେଖା– ତାହାହେଲେ ମୁଁ ବାଦ୍ ପଡ଼ିଗଲି, ନା ?

ଗଣେଶ– ଏତେ ତ ନୁହେଁ, ବହୁତ ଦିନରୁ–।

ରେଖା– ଏତିକି ଶୁଣିବାକୁ ବାକୀ ଥିଲା।

(ହଠାତ୍ ମୀରା ଧଇଁସଇଁ ହୋଇ ରଙ୍ଗମଞ୍ଚ ଉପରକୁ ଦଉଡ଼ି ଆସି ଚିତ୍କାର କରି ରେଖା ଉପରେ ଢଳିପଡ଼ିବା)

ଗଣେଶ– (ବ୍ୟସ୍ତ ହୋଇ) ଏ କ'ଣ ମୀରା ? ଏ କ'ଣ ହେଲା ?

ରେଖା– (ହସି) ଆଉ କଅଣ ହେବ ? ଦିନ ଦି'ପହରେ କେହି ଗୁଣ୍ଡା ପଛରେ ଗୋଡ଼ାଇଥିବ।

ଗଣେଶ– ଚୁପ୍‌କର ରେଖା !

ରେଖା– ଚୁପ୍ କଲି; ମାତ୍ର ପ୍ରଗତିଶୀଳା ନାରୀ ପଛରେ ପ୍ରଗତିଶୀଳ ପୁରୁଷ ହିଁ ଗୁଣ୍ଡାମୀ କରେ।

ମୀରା– (ପ୍ରକୃତିସ୍ଥ ହୋଇ) ତୁମେ କେମିତି ଜାଣିଲ ରେଖା ଅପା ? ହଁ, ସତକଥା ଗଣେଶ ବାବୁ।

କିଏ ଗୋଟାଏ ମୋ ପଛେ ପଛେ ଆସୁଥିବାର ମୁଁ ଜାଣିଥିଲି। ଭୟରେ ପଛକୁ ଅନାଇ ପାରିନାହିଁ।

ଗଣେଶ– କାହିଁ ସେ ଲୋକ ? କେଉଁଠି ଦେଖିଲ ?

ରେଖା– କି ବୋକାମୀ ? ସେ ଲୋକ କ'ଣ ଆଉ ଥିବ ? ସେ ଚାଲିଯିବଣି।

(ପୁଲିସ୍ ଇନ୍‌ସ୍‌ପେକ୍ଟର ବେଶରେ ଲିଲିର ପ୍ରବେଶ)

ଲିଲି– ନାଁ ସେ ଚାଲିଯାଇ ନାହିଁ, ଆସିବ ଯେ।

ଗଣେଶ– My dear ଲିଲି, ମାନେ ଚାକିରି ପାଇଗଲୁ ନା କଅଣ ? କେତେଦିନ ହେଲା ମୁଁ ଘରେ ନଥିଲି, ସେଥିପାଇଁ ଜାଣିପାରିନି। Congratulation.

ରେଖା– ଲିଲି, ଏଣିକି କର୍ତ୍ତବ୍ୟ କର।

ଲିଲି– ହଁ ନୂଆବୋଉ, ଚାକିରିରେ ରହୁ ରହୁ ହାତରେ ଗୋଟାଏ କେସ୍। କେସ୍‌ଟା ଛାଡ଼ିଦେବି ? ପ୍ରଥମ କେସ୍‌ଟା କିନା ?

ଗଣେଶ– ନା, ନା, ଛାଡ଼ିବୁ କିଆଁ, ବରଂ ଯଦି କିଛି ଉପୁରି ଆଣିପାରୁ।

ଲିଲି– ଭାଇ !

ରେଖା– (ହସି) ଭାଇଙ୍କର ପରାମର୍ଶଟା ଗ୍ରହଣ କଲେ ଶୀଘ୍ର ଚାକିରିରେ ଉନ୍ନତି ହେବ, ଲିଲି।

ମୀରା– ଏଇ ଭାଇ ଭଉଣୀଙ୍କର ଝଗଡ଼ା ଆରମ୍ଭ ହୋଇଗଲା ପରା ?

ଲିଲି– ଯାକୁ କ'ଣ ଝଗଡ଼ା କହନ୍ତି ମୀରା ଅପା ? ଯେଉଁ ମୁହୂର୍ତ୍ତରେ ମୁଁ ମୋର ଦେଶ ସରକାରଙ୍କୁ ଆନୁଗତ୍ୟ ଦେଖାଇଛି, ସେଇ ମୁହୂର୍ତ୍ତଠାରୁ ମୁଁ ସଂକଳ୍ପ କରିଛି, ନିଜ ଭାଇ ଯଦି ଦେଶଦ୍ରୋହୀ ହୋଇ ଅପରାଧୀ ହୁଅନ୍ତି, ତାଙ୍କୁ ବି ଶାସ୍ତି ଭୋଗିବାକୁ ହେବ।

(ମୀରା ଓ ଗଣେଶ ପରସ୍ପରକୁ ଚାହିଁବା)

ଗଣେଶ– ତା' ନିଶ୍ଚୟ। ତେବେ ଲିଲି, ତୁ କେଉଁ ବିଭାଗରେ ଭର୍ତ୍ତି ହେଲୁ ?

ଲିଲି– ପୁଲିସ ବିଭାଗ ପରା !

ଗଣେଶ– ହଁ, ତା'ତ ବୁଝିଲି, ତେବେ–

ଲିଲି– ଓଃ, ମୋ'ର Special duty କଥା ପଚାରୁଛ ?

ଗଣେଶ– ହଁ।

ଲିଲି– (ହସି) କଳାବଜାରୀଙ୍କୁ ଧରିବା।

ମୀରା– (ଆତ୍ମସମ୍ଭରଣ କରି) ବାଃ, ବେଶ୍ କାମ ତ।

ଗଣେଶ– (ଶୁଷ୍କ ମୁଖରେ) ସରକାର ସେଥିପାଇଁ ନାରୀ ପୁଲିସ ଉପରେ ଏବେ ବେଶୀ ବିଶ୍ୱାସ କରୁଛନ୍ତି।

ରେଖା– ଦେଖାଯାଉ, ଲିଲି ଆମର ଏ ବିଶ୍ୱାସ ରଖିପାରୁଛନ୍ତି କି ନାହିଁ !

ଲିଲି– ନିଶ୍ଚୟ ପାରିବି। ଆଚ୍ଛା ନୂଆବୋଉ, ଖୁବ୍ ଭୋକ ହେଲାଣି, ଖାଇବାକୁ କିଛି ରଖିଛ କି ନାହିଁ ?

ରେଖା– ଆସ।

ଲିଲି– ଆଚ୍ଛା ମୀରା ଅପା, ନମସ୍କାର। (ଦୁହିଁଙ୍କର ପ୍ରସ୍ଥାନ)

(ଗୋଟିଏ ମୁସଲମାନ ଟୋକାର ପ୍ରବେଶ)

ମୁ:ଟୋକା– ଆପ୍ ମେମ୍ ସାହେବ, ଇତ୍‌ନେ ଭାଗ୍‌ତେ କେଉଁ ?

ମୀରା– ଓଃ, ଏଇ ଲୋକଟା ତ ?

ଗଣେଶ– ହେ, କଅଣ ଦରକାର ?

ମୁ:ଟୋକା– ଚିଠି ।

ଗଣେଶ– (ଚିଠି ପଢ଼ି) ଏଁ ମାଲ୍ ଆସିଛି ? ବେଶ୍ ।

ମୁ:ଟୋକା– ଆଜ୍ ସାମ୍‌କୋ ଆଇୟେ ।

ଗଣେଶ– ହଁ ସାମ୍‌କୋ । ତୁ ଯା, ସେଠ୍‌ଜୀକୁ ସଲାମ ଦେ ।

ମୁ: ଟୋକା– ବହତ୍ ଆଚ୍ଛା । (ପ୍ରସ୍ଥାନ)

ଗଣେଶ– ମୀରା, ଏଥର ତମେ ନିଶ୍ଚୟ ସାହାଯ୍ୟ କରିବ ?

ମୀରା– ଗଣେଶ ବାବୁ, କ୍ଷମା କରିବେ । ମୁଁ ଆଉ ଏସବୁ ପାରିବି ନାହିଁ । ହଁ, ଦିନ ଥିଲା, ଆପଣଙ୍କୁ ଖୁସି କରିବା ଲାଗି ତକିଆ ଖୋଳ ଭିତରେ ଶହ ଶହ ଗଜ ଲୁଗା ଆଉ କନା ରାତାରାତି ଟ୍ରେନ୍‌ରେ ଚାଲାନ୍ କରିଛି । ଧରାପଡ଼ିବାର ଭୟ ଥିଲେ ବି ନାରୀର ସଲଜ୍ଜ ଆବରଣ ଓ କରୁଣ ଚାହାଣୀ ତଳେ ପୁରୁଷ ପୁଲିସ କର୍ମଚାରୀକୁ ମୁଗଧ କରି ଖସିଆସିଛି । ଆଜି ସେସବୁ ନାହିଁ । ଆଜି ଦେଖୁଛି, ମୋ'ରି ଜଣେ ଭଉଣୀ ଦେଶର ଡାକରେ ଉଦ୍‌ବୁଦ୍ଧ ହୋଇ ସେବକ ଭାବରେ ଦେଶରୁ ଲାଞ୍ଚ, ମିଛ ଆଉ କଳାବଜାର ବନ୍ଦ କରିବାକୁ ଚେଷ୍ଟା କରୁଛି । ନାରୀର ଏ କାମ ନୁହେଁ, ମାତ୍ର ଦେଶର ଏ ଘଡ଼ିସନ୍ଧି ବେଳେ ପ୍ରତ୍ୟେକଙ୍କର କର୍ତ୍ତବ୍ୟ ହେଉଛି ଦେଶର ଏହି ମାରାତ୍ମକ ବ୍ୟାଧିକୁ ଦୂର କରିବା । ନା– ନା, ମୁଁ ପାରିବିନି ।

ଗଣେଶ– ମୀରା, ବଡ଼ ଆଶ୍ଚର୍ଯ୍ୟ ! ତୁମେ ଶେଷରେ– ତୁମେ ତ ଜାଣ, କଳାବଜାରୀ ପାଖରେ ନାରୀ କି ଅମୋଘ ଅସ୍ତ୍ର–ତୁମେ ଯେ ଏ ବ୍ୟବସାୟରେ କିଛି ଲାଭ ନ କରିଛ, ଏପରି ନୁହେଁ ।

ମୀରା– ହୋଇପାରେ, ମୁଁ ମାନୁଛି; ମାତ୍ର ଆଉ ନୁହେଁ ।

ଗଣେଶ– ସରକାରୀ ଚାକିରି ପାଇବା ଆଗରୁ ନିର୍ମଳ ଚରିତ୍ରର ଏକ କିତା ପ୍ରଶଂସାପତ୍ର ପାଇବାକୁ ଯୋଗାଡ଼ କରୁଛ ନା କ'ଣ ?

ମୀରା– ତା' ଅବଶ୍ୟ ଗଣେଶ ବାବୁଙ୍କ ପାଖରୁ ନୁହେଁ ।

ଗଣେଶ– ଶୁଣ ମୀରା, ସରକାରୀ ଚାକିରି କରି ହାକିମଙ୍କ ଚନ୍ଦା ମୁଣ୍ଡରେ ଚିକ୍‌କଣ କେଶରାଜି ଦୋଳାୟମାନ ହେଉଥିବାର ନ କହିବା ଯାଏ ଏଥିରେ ସ୍ଥାୟିତ୍ୱ ନ ଥାଏ । ଖୋସାମତର ଚାକର ସମସ୍ତେ । ଏ କର୍ଣ୍ଣରସାୟନ ଆଗରେ ନିଜେ ଭାରତୀଙ୍କର ବୀଣା ବି ଅସ୍ପଷ୍ଟ ରହିଯିବ । କିନ୍ତୁ ଏ ପଥ ? ଭାବି ଦେଖ, ଏ ବାଟରେ ପଇସା କେମିତି ଆସେ । ତା'ର ତ ମିଠା ତୁମେ ଥରେ ଅଧେ ଚାଖିଛ । ହେଇଟି, ଅଗ୍ରୀମ ଶହେ ଟଙ୍କା । କଥା ଶୁଣ । (ଟଙ୍କା ବଢ଼େଇବା)

ମୀରା– ଧନ୍ୟବାଦ, ଫେରାଇ ନିଅନ୍ତୁ ।

ଗଣେଶ– ଭଲ ଫଳ ହେବ ନାହିଁ ମୀରା !

ମୀରା– ନମସ୍କାର ଗଣେଶ ବାବୁ । (ପ୍ରସ୍ଥାନ)

(ପଟ୍ଟପରିବର୍ତ୍ତନ)

## ତୃତୀୟ ଦୃଶ୍ୟ

[ ବାଳିକା ବିଦ୍ୟାଳୟକୁ ଯିବା ଏକ ଗଳି ରାସ୍ତା। ହାତରେ ବହି ଧରି ପ୍ରତିମାର ରଙ୍ଗମଞ୍ଚ ଉପରେ ପ୍ରବେଶ। ଜାଗାଟି ନିକାଞ୍ଚନ ଓ ଅପ୍ରଶସ୍ତ। ସାମାନ୍ୟ ଅନ୍ଧକାର। ପଛେ ପଛେ ଜଣେ ଯୁବକର ପ୍ରବେଶ, ଏକ ସୌଖୀନ ଯୁବକ। ]

ଜୟନ୍ତ– ଆଜ୍ଞା, ଟିକିଏ ଶୁଣିବେ କି ?

ପ୍ରତିମା– ମତେ ଡାକୁଛନ୍ତି !

ଜୟନ୍ତ– ଆଜ୍ଞା, ଟିକିଏ ଶୁଣିବେ କି ?

ପ୍ରତିମା– ମତେ ଡାକୁଛନ୍ତି ?

ଜୟନ୍ତ– ଆଜ୍ଞା ହଁ।

ପ୍ରତିମା– କଅଣ ଦରକାର ?

ଜୟନ୍ତ– (ପାଖକୁ ଆସି) ହେଃ... ନା... ନା ସେମିତି କିଛି ନୁହେଁ; ତେବେ... (ମୁଣ୍ଡକୁଣ୍ଡେଇ କଥା କହିବା)

ପ୍ରତିମା– କଅଣ କହିବାର ଅଛି, ଶୀଘ୍ର କହନ୍ତୁ, ସ୍କୁଲ ଘଣ୍ଟା ପଡ଼ିଯିବ।

ଜୟନ୍ତ– (ଲୋଲୁପ ଦୃଷ୍ଟି ପକାଇ) ଆପଣଙ୍କୁ କେଉଁଠି ଦେଖିଲା ଭଳି ମନେ ହେଉଛି।

ପ୍ରତିମା– ତା ଦେଖିପାରିଥାନ୍ତି। ହୁଏତ ବ୍ରାହ୍ମସମାଜ, ଉପାସନା ମନ୍ଦିର ବା ସଭା ସମିତିରେ, ଥିଏଟର୍, ସିନେମାରେ...

ଜୟନ୍ତ– ହଁ, ହଁ, କେଉଁଠି ହୋଇଥିବ; ଠିକ୍ ମନେପଡୁନି।

ପ୍ରତିମା– କଅଣ କୁହନ୍ତୁ। କ'ଣ ଦରକାର ଥିଲା ?

ଜୟନ୍ତ– (ଲାଜ ଲାଜ ହୋଇ) ଦରକାର ଅଛି, ପୁଣି ନାହିଁ, ଏଇଭଳି ମଝିମଝିକା ଅବସ୍ଥା...।

ପ୍ରତିମା– ଆପଣଙ୍କର ଯେ ତ୍ରିଶଙ୍କୁ ଅବସ୍ଥା ତା'ତ ମୁଁ ବେଶ୍ ବୁଝିପାରୁଛି– ମଝି ରାସ୍ତାରେ...

ଜୟନ୍ତ– ନା–ନା, ଗୋଟାଏ ପାଖକୁ ଆସିପାରନ୍ତି, ଗଳିରାସ୍ତା ତ...

ପ୍ରତିମା– ମାନେ ?

ଜୟନ୍ତ– ଆପଣ କେଉଁ କ୍ଲାସରେ ପଢ଼ନ୍ତି ?

ପ୍ରତିମା– ଏସବୁ ଜାଣିବା ଆପଣଙ୍କର କିଛି ଦରକାର ନାହିଁ।

ଜୟନ୍ତ– ଆପଣ ବରଂ ମୋ'ର ପରିଚୟ ନେଇପାରନ୍ତି।

ପ୍ରତିମା– କି ଦରକାର ମୋର ?

ଜୟନ୍ତ– ମଣିଷକୁ ମଣିଷ ଚିହ୍ନିବାରେ ଆପତ୍ତି କଣ ? ବରଂ ଏପରି ହୃଦୟ ବିନିମୟରେ ବିଶ୍ୱମାନବସମାଜର ପରିଧି ଯେ କେତେ ବିସ୍ତାର–

ପ୍ରତିମା– ଆଉ, ମୋର ବେଳ ହୋଇଗଲାଣି।

ଜୟନ୍ତ– ଆପଣଙ୍କ ବିଷୟରେ ମୁଁ ଅନେକ କଥା ଜାଣେ।

ପ୍ରତିମା– ମୋ ବିଷୟରେ ?

ଜୟନ୍ତ– ହଁ, ଆପଣଙ୍କ ବିଷୟରେ।

ପ୍ରତିମା– କେମିତି ?

ଜୟନ୍ତ– ଏଇ ଧରନ୍ତୁ ଆପଣଙ୍କର ମନ, ହୃଦୟ...

ପ୍ରତିମା– ମନ? ହୃଦୟ? ଏ ସବୁ କ'ଣ କହୁଛନ୍ତି?

ଜୟନ୍ତ– (ଅଙ୍କ ପାଟିକରି) ବଡ଼ ଗୋପନୀୟ।

ପ୍ରତିମା– ଏପରି ଭାବରେ ମତେ ବାଟରେ ଅଟକାଇବା ଆପଣଙ୍କର ଆଦୌ ଉଚିତ ହୋଇ ନାହିଁ।

ଜୟନ୍ତ– ମୋଟେ ନୁହେଁ। କିନ୍ତୁ ମୋ ପାଖରୁ, ମାନେ ଏପରି ପରିସ୍ଥିତିରୁ ଯାଇ ଆପଣ କଣ କ୍ଲାସରେ ଧୀରସ୍ଥିର ଭାବରେ ପଢ଼ିପାରିବେ?

ପ୍ରତିମା– ନିଶ୍ଚୟ। ପାରିବିନି କାହିଁକି?

ଜୟନ୍ତ– ମିଛ କଥା। ଆପଣ ଭାବିବେ ମୋ'ରି କଥା, ମୁଁ କେମିତି ଆପଣଙ୍କ ସହିତ ଆଳାପ କରୁଥିଲି– ମୋରି ରୂପ, ମୋର...

ପ୍ରତିମା– ସଟ୍ ଅପ୍।

ଜୟନ୍ତ– ଆହା! ଏତିକିବେଳେ ଆପଣଙ୍କ ରୂପ ପ୍ରକୃତରେ ଦେଖିଲି, ଆଃ! କି ମନମୋହନ...।

ପ୍ରତିମା– ବଦ୍‌ମାସ୍ (ଯିବାକୁ ଉଦ୍ୟତ)

ଜୟନ୍ତ– ଆଉ ଟିକିଏ ମାତ୍ର। ଭଦ୍ରବେଶରେ ବଦ୍‌ମାସ୍ କେବଳ ଏ ଯୁଗରେ ଯିବାଆସିବା କରନ୍ତି ନାହିଁ, ସୀତା ସାବିତ୍ରୀ ଯୁଗରେ ମଧ୍ୟ ସେମାନେ ଥିଲେ।

ପ୍ରତିମା– ଆପଣ କଅଣ ଚାହାଁନ୍ତି?

ଜୟନ୍ତ– ଏଇ– ଟିକେ ଗୋଧୂଳି ସ୍ପର୍ଶ।

ପ୍ରତିମା– ମାନେ?

ଜୟନ୍ତ– ବୁଝୁଥିବେ; (ଏ ଆଡ଼େ ସେଆଡ଼େ ଚାହିଁ) ଆଜି ଏ କଥାବାର୍ତ୍ତାର ସ୍ମୃତି ପାଇଁ ଏଇ ମୋର ହୃଦୟର ସାମାନ୍ୟ ଦାନ ସୁବାସିତ ରୁମାଲ ଖଣ୍ଡିକ–

ପ୍ରତିମା– (ଚିତ୍କାର କରି ଅଣ୍ଟାରୁ ଛୁରା ବାହାର କରିବା) ଆସିଲୁ ଅଭଦ୍ର, ଆସିଲୁ।

[ ଜୟନ୍ତ ଭୟରେ ପଛହୋଇ ଦଉଡ଼ି ପଳାଇ ଯାଉଥିବା ସମୟରେ ଇନ୍‌ସ୍‌ପେକ୍ଟର ଲିଲି ହଠାତ୍ ଭିତରୁ ଆସି ତା'ର ହାତକୁ ଧରି ପକାଇବା। ]

ଲିଲି– ଆଚ୍ଛା ପ୍ରତିମା, ଏସ୍‌କର୍ଟ ଦେଇ ତୁମକୁ ଘରକୁ ନା ସ୍କୁଲକୁ ପଠାଇ ଦେବି?

ପ୍ରତିମା– (କାନ୍ଦ କାନ୍ଦ ହୋଇ) ଲିଲି ଅପା, ଲିଲି ଅପା! (ଉପରେ ଢଳି ପଡ଼ିବା) (ଲିଲି ଛୁରାଟା ପ୍ରତିମା ହାତରୁ ନେଇଯିବା)

ଲିଲି– ଯେଉଁ ଝିଅ ଏଭଳି ଛୁରାକୁ ଅନାୟସରେ ଖେଳାଇପାରେ, ତା ଆଖିରେ ପୁଣି ଲୁହ? ଆଫ୍‌ଟର୍ ଏଫେକ୍ଟ ବୋଧହୁଏ?

ପ୍ରତିମା– ବିଚ୍ ଦାଣ୍ଡ ଉପରେ ଏଇ ଅଭଦ୍ରଗୁଡ଼ାକ–

ଲିଲି– ଏମାନେ ନରକର କୀଟ, ସଭାରେ ନାରୀ ପ୍ରଗତି ବିଷୟରେ ଏଇମାନେ ଅନର୍ଗଳ ବକ୍ତୃତା ଦିଅନ୍ତି, ଏଇମାନେ ପୁଣି ନାରୀରକ୍ଷଣୀ ସମିତିର ଅବୈତନିକ ପରିଚାଳକ। 'ନୀତି' 'ଆଦର୍ଶ' କହିଲାବେଳେ ଯାଙ୍କର ପାଟିରେ ବାଟୁଳି ବାଜେ ନାହିଁ। ଏଇମାନେ ପୁଣି ଚୋରାବଜାର କରନ୍ତି। ଖୁସାମତ କରି ହାକିମଙ୍କ ମୁଣ୍ଡ ଖରାପ କରନ୍ତି; ମାତ୍ର ନାରୀର ରୂପ ପାଖରେ ଏମାନେ ବଡ଼ ଅସହାୟ। ଆହା କି ଦୀନତା! ଦେଖ ପ୍ରତିମା, କେଡ଼େ ଲାଜୁକ ଯୁବକ ସତେ? ମୁହଁରେ କେମିତି ମରି ମରି

ଯିବା ଭାବ ! ମୋର ମନେହୁଏ ଦେଶଟା ସ୍ୱାଧୀନ ହେବା ପରେ ଅକ୍ଟୋପସ୍‌ଗୁଡ଼ାକ ନିଜ ନିଜ ଅନ୍ଧକାର କୁକ୍ଷିଭିତରୁ ପଦାକୁ ବାହାରି ଆସୁଛନ୍ତି । ଏତିକିବେଳେ ଏମାନଙ୍କ ତଣ୍ଟି ଚିପି ଅଣନିଃଶ୍ୱାସୀ କରିଦେବା ଦରକାର ।

ପ୍ରତିମା– ଭଦ୍ରଲୋକଙ୍କୁ ବିଦାୟ ଦିଅ ଲିଲି ଅପା, ପାଠଶାଠ ବୋଧହୁଏ ପଢ଼ିଛନ୍ତି, କଥା କହିବା ଭଙ୍ଗୀରେ କବିତ୍ୱ ଥିଲା... ଗୋଧୂଳି ସ୍ୱର୍ଣ୍ଣ ! !

ଲିଲି– ଜାଣ ଏ କିଏ ?

ପ୍ରତିମା– କିଛି ଦରକାର ନାହିଁ, ବାଟରେ ଘାଟରେ ଏଇଭଳି ଦ୍ୱିପଦ ପଶୁ ପ୍ରାୟ ବେଳେ ବେଳେ ଦେଖାଯାନ୍ତି ।

ଲିଲି– ଠିକ୍ କହିଛ ପ୍ରତିମା ! ଏତେ ଦିନଯାଏ ଗାଈ ଗୋରୁଙ୍କୁ ଲୋକେ ପଶୁ ବୋଲି ଭାବିଥିଲେ । ଏବେ ଏଇଭଳି ମଣିଷ ବି ପଶୁ ।

ପ୍ରତିମା– ରେଖାଅପା ପାଖରେ ମୁଁ ବଡ଼ କୃତଜ୍ଞ– ତାଙ୍କରି ପାଖରୁ ଛୁରାଖେଳ ଶିଖିଥିବାରୁ ସିନା ଦରକାରରେ ଆସିଲା ।

ଲିଲି– ଛୁରା ଦରକାର ନଥିଲା ପ୍ରତିମା, ଖାଲି 'ହାସ୍' କହି ଦେଇଥିଲେ ଏମାନେ ଶତ ଯୋଜନ ଡେଇଁ ପଳାଇ ଥାଆନ୍ତେ । ଛାତି ହାଡ଼ ବଡ଼ ନରମ, ଖାଲି ନକ୍ ନକ୍ ହେଉଛି ପରା–

ପ୍ରତିମା– କେତେବେଳୁ ସ୍କୁଲଘଣ୍ଟା ପଡ଼ିଲାଣି, ଯାଉଛି, ନମସ୍କାର ।

ଲିଲି– ହଁ ଯାଅ, ଛୁରାଟା ଯେପରି ସବୁବେଳେ କମର ଉପରେ ଥାଏ; ସ୍ୱାଧୀନ ଦେଶରେ ଏଇଟା ହିଁ ନାରୀ–ଇଜ୍ଜତର ପ୍ରକୃତ ରକ୍ଷକ ।

ପ୍ରତିମା– ନମସ୍କାର । (ଛୁରା ଲିଲି ହାତରୁ ଗ୍ରହଣ କରି ପ୍ରସ୍ଥାନ ।)

ଲିଲି– ଜୟନ୍ତ ବାବୁ !

ଜୟନ୍ତ– ଏଁ, ମୋତେ ଜାଣିଲେ କିପରି ?

ଲିଲି– ବାଃ, ଜାଣିବି ନାହିଁ (ହସି) ବିଖ୍ୟାତ ରାୟବାହାଦୂରଙ୍କ ପୁଅ ଯେ– ନ ଚିହ୍ନେ କିଏ ?

ଜୟନ୍ତ– ମୋତେ ମାଫ୍ କର ।

ଲିଲି– ନାରୀ ବଡ଼ କୋମଳପ୍ରାଣା, ଏକଥା ଶାସ୍ତ୍ର କହେ, ଲୋକେ ବି କହନ୍ତି । ହୁଏତ ତୁମର ଏ କାକୁତିରେ ବିଚଳିତ ହୋଇ ମୁଁ ଛାଡ଼ିଦେବି ।

ଜୟନ୍ତ– (ଦୃଢ଼କଣ୍ଠରେ) ଛାଡ଼ିଦେବେ ନାହିଁ ?

ଲିଲି– ଦେଖୁଛି ପୌରୁଷ ଅଛି ।

ଜୟନ୍ତ– ଏ ତ ଗୋଟାଏ ସାମାନ୍ୟ ଘଟଣା । ଇଂଲଣ୍ଡ ଓ ଫ୍ରାନ୍‌ସ୍‌ରେ, ମାନେ, ୟୁରୋପରେ ବାଟରେ ଘାଟରେ ଏପରି ଘଟଣା କେତେ ଘଟିଥାଏ । ମୁଁ ତ ଗୋଟାଏ ବଡ଼ ଧରଣର କିଛି ଅପରାଧ କରି ନାହିଁ ।

ଲିଲି– ସତେ ! ୟୁରୋପ ଇତିହାସର ଚର୍ଚ୍ଚା ଦେଖୁଛି ଖୁବ୍ ଆୟତ୍ତ କରିଛ ? ବାଟରେ ଘାଟରେ ଭଉଣୀମାନଙ୍କୁ ଜବରଦସ୍ତି ରୁମାଲ ଉପହାର, ଆଉ ଅଶ୍ଳୀଳ ଇଙ୍ଗିତ– ନାଃ, ଏଇଟା ବା କି ଅପରାଧ ? ଭାରତବର୍ଷରେ ନ ରହି ବରଂ ତୁମର ଇଂଲଣ୍ଡ ଯିବା ଉଚିତ । ସେଠାର ବାଟ ଘାଟ ତୁମ ପଦସ୍ପର୍ଶ ପାଇ ଧନ୍ୟ ହେଉ । ତମ ନାଁରେ କେସ୍ ହେବ ।

ଜୟନ୍ତ– କେସ୍ ?

ଲିଲ– ନିଶ୍ଚୟ।

ଜୟନ୍ତ– ବାପା ଶୁଣିଲେ କ’ଣ କହିବେ ?

ଲିଲି– ଏ ଭୟ ଥିଲାଟି ?

ଜୟନ୍ତ– ମାଫ୍ କରନ୍ତୁ।

ଲିଲି– ଅସମ୍ଭବ। ହେଉ ସେଇ ଛକ ଉପରେ ଟ୍ରାଫିକ କନେଷ୍ଟବଲକୁ ମୁଁ ହୁଇସିଲ୍‌ରେ ଇଙ୍ଗିତ ଦେଉଛି। ଏକ୍ଷଣି ଥାନାର ଭ୍ୟାନଟା ଆସିଯିବ; ଏଡ଼େ ସମ୍ଭ୍ରାନ୍ତ ବଂଶୀୟ ଜଣେ ଯୁବକକୁ ଚଲେଇକରି ନେବି ନାହିଁ ନିଶ୍ଚୟ। (ହୁଇସିଲ୍ ଦେବା)

ଜୟନ୍ତ– ବାପାଙ୍କୁ ଆଗ ଟିକିଏ ଖବର ଦିଅନ୍ତୁ, ସେ ପୁଲିସ ସାହେବଙ୍କୁ କହିଦେବା ମାତ୍ରେ...

ଲିଲି– ଅତି ପୁରୁଣା କଥା କହୁଚ ଜୟନ୍ତ; ପେଟପାଇଁ ସମସ୍ତେ ନୌକରି କରିଛନ୍ତି, ଶହେ ଦି’ଶହ କିଛି ମତେ ଦେଇଦେଲେ ତ କାମ ସରିଯିବ; ପୁଲିସସାହେବ ପର୍ଯ୍ୟନ୍ତ କାହିଁକି ?

ଜୟନ୍ତ– ଏଁ ସତେ ? ହଁ, ହଁ, କାଇଁକି ନ ଦେବି। ଏଇ ରିଷ୍ଟୱାଚ୍, ଆଉ ଏ ସୁନା ମୁଦିଟା, ଫାଉଣ୍ଟେନ ପେନ୍‌ଟା ବି–

ଲିଲି– ଆଉ ଏ ସୁବାସିତ ରୁମାଲ୍‌ଟା ? ନାରୀ ଦେଖି ବୋଧହୁଏ ଗହଣା ଦେବାକୁ ଇଚ୍ଛା ହେଲା ନା ? ଯାହା କହ ଜୟନ୍ତ, ଗହଣା ଆଉ ଶାଢ଼ିରେ ନାରୀମାନଙ୍କର ଲୋଭ ବଡ଼ ବେଶୀ। ମୁଁ ପୁଲିସ ଇନ୍‌ସ୍‌ପେକ୍ଟର ହେବା ଦିନଠାରୁ ପ୍ରାୟ ଶାଢ଼ି ଛାଡ଼ିଲିଣି; ତେବେ ଗହଣା ପାଇଁ ମୋ’ର ଆସକ୍ତି ପୂର୍ବପରି ରହିଛି। (ଦୃଢ଼କଣ୍ଠରେ) ମୁଁ ଯାହା ଭାବୁଥିଲି ସେଇଆ ହୋଇଛି। ତୁମଭଳି ଲୋକଙ୍କର ସଜ୍ଜାଟା ଯେପରି ଶକ୍ତ ହୁଏ, ତାହାରି ବ୍ୟବସ୍ଥା। ପ୍ରଥମେ ରାସ୍ତା ଉପରେ ଯାଉଥିବା ଜଣେ ସ୍କୁଲ ଛାତ୍ରୀଙ୍କୁ ଅପମାନ, ଦ୍ୱିତୀୟରେ ସରକାରୀ କର୍ମଚାରୀଙ୍କୁ ଉତ୍‌କୋଚ ନେବାପାଇଁ ଅନୁରୋଧ।

ଜୟନ୍ତ– କିନ୍ତୁ ପ୍ରମାଣ ?

ଲିଲି– ଦେଖୁଛି ବୁଦ୍ଧି ଅଛି ! ଦେଖ, ସେହି ଯେ ମହିଳାଟି ବୁଲାଚଲା କରୁଛନ୍ତି, ସେ ଆମକଥା ସବୁ ଶୁଣୁଛନ୍ତି– ସେ କିଏ ଜାଣ ? ସି.ଆଇ.ଡ଼ି. ଇନ୍‌ସ୍‌ପେକ୍ଟର୍। ଅବଶ୍ୟ ନାରୀ, ପ୍ରମାଣସବୁ ତ ରହିଛି, ବ୍ୟସ୍ତ ହୁଅନି।

(ଅଦୂରେ ମଟର-ହର୍ଣ୍ଣ ଶବ୍ଦ)

ସୁନାପୁଅ ଭଳି ମଟରକୁ ଆସ। (ପ୍ରସ୍ଥାନ)

## ଚତୁର୍ଥ ଦୃଶ୍ୟ

[ ଡେପୁଟି ମାଜିଷ୍ଟ୍ରେଟ ମୀରାଙ୍କର ବୈଠକ ଘର, ମୀରା ଫାଇଲ୍ ଦେଖିବାରେ ବ୍ୟସ୍ତ। ଜୟନ୍ତର ପିତା ମାଧବାନନ୍ଦ ବାବୁଙ୍କର ପ୍ରବେଶ ]

ମୀରା– କିଏ ?

ମାଧବାନନ୍ଦ– Congratulations. ଏତେ ଦିନେ ସରକାର ଆପଣମାନଙ୍କୁ ଉପଯୁକ୍ତ ଆସନରେ ବସାଇଲେ।

ମୀରା– ଧନ୍ୟବାଦ, ଆପଣ ମୋ’ର ଡେପୁଟି ମାଜିଷ୍ଟ୍ରେଟ ନିଯୁକ୍ତି କଥା କହୁଛନ୍ତି ତ ? ବସନ୍ତୁ।

ମାଧବାନନ୍ଦ– ନିଶ୍ଚୟ। ମୁଁ ମୋର ପରିଚୟ ଦେଉଛି। ମୁଁ ରିଟାୟାର୍ଡ ଡେପୁଟି ମାଜିଷ୍ଟ୍ରେଟ ମାଧବାନନ୍ଦ ପଟ୍ଟନାୟକ।

ମୀରା– ନମସ୍କାର।

ମାଧବାନନ୍ଦ– ନମସ୍କାର।

ମୀରା– ମୋ ସାଙ୍ଗେ କି ଦରକାର ଅଛି? ମୁଁ ବଡ଼ କାର୍ଯ୍ୟବ୍ୟସ୍ତ।

ମାଧବାନନ୍ଦ– ତା' ତ ମୁଁ ଦେଖିପାରୁଛି। ନିଯୁକ୍ତ ହେଉ ହେଉ ଆପଣ ଏତେ ଫାଇଲ୍ ଧରି ବସିଲେଣି। ବସିବା କଥା। ମୋ ଅମଳ କଥା କହୁଛି– ମୁଁ ଏକ ପ୍ରକାର ମୁଣ୍ଡତଳେ ଫାଇଲ୍ ଥୋଇ ଶୋଇଥାଏ। ଯେତେବେଳେ ନିଦ ଭାଙ୍ଗିଯାଏ, ଆଲୁଅ ଜାଳି ସେସବୁ ଦେଖେ। ନିଷ୍ଠାରେ କାମ କରିଥିଲି ବୋଲି ରାୟସାହେବରୁ ରାୟବାହାଦୂର, ରାୟବାହାଦୂର ପରେ ଦେବାନ ବାହାଦୂର ପାଇଁ ସୁପାରିସ ହୋଇଥିଲା। ଯିମିତି କଂଗ୍ରେସ ସରକାର ଦେଶକୁ ଆସିଲା, ସଙ୍ଗେ ସଙ୍ଗେ ମୁଁ ପଦବୀ ଛାଡ଼ିଦେଇ ଏବେ କପାଚାଷ କରୁଛି।

ମୀରା– ଏ ସବୁ ଶୁଣି ଖୁସିହେଲି।

ମାଧବାନନ୍ଦ– ଆଶାକରେ ଆଜି ସନ୍ଧ୍ୟାରେ ମୋର ଘରେ ନିମନ୍ତ୍ରଣ ରକ୍ଷା କରିବେ। ମୁଁ ନିଜେ ଆସି ନେଇଯିବି।

ମୀରା– କ୍ଷମା କରିବେ, ଆଜି ସନ୍ଧ୍ୟାରେ ମୋ'ର ମୁହୂର୍ତ୍ତେ ମାତ୍ର ସମୟ ନାହିଁ।

ମାଧବାନନ୍ଦ– ତେବେ ସେ ବଡ଼ ଦୁଃଖ କରିବେ; ବହୁତ କରି କହିଛନ୍ତି। ନ ଗଲେ ନ ଚଳେ।

ମୀରା– କିଏ କହିଛନ୍ତି?

ମାଧବାନନ୍ଦ– ଜୟନ୍ତର ମାଆ।

ମୀରା– ଜୟନ୍ତ? କେଉଁ ଜୟନ୍ତ?

ମାଧବାନନ୍ଦ– (ହସି) ହେଁ, ଆପଣ କଅଣ ଜାଣନ୍ତି ନାହିଁ ଯେ– ପିଲାଲୋକ କଅଣ ଟିକିଏ ଭୁଲ୍ କରିଦେଲା।

ମୀରା– You mean accused ଜୟନ୍ତ? ଅପରାଧୀ, ଯାହାର case ବର୍ତ୍ତମାନ sub–judice?

ମାଧବାନନ୍ଦ– ସେଇଥିପାଇଁ ଆସିଛି। ସେ ପିଲାଲୋକ ଦୋଷ କରି ପକେଇଛି, ଆପଣ ଟିକିଏ ସାହାଯ୍ୟ କଲେ ସବୁ ଭଲରେ ଭଲରେ ହୋଇଯିବ।

ମୀରା– (କଲିଂବେଲ୍ ବଜାଇବା, ବେହେରା ଆସିବାରୁ ଖଣ୍ଡେ କାଗଜରେ ଦୁଇପଦ ଚିଠି ଲେଖି ଚିଠି ତା' ହାତକୁ ବଢ଼ାଇ ଦେବା) ଶୁଣନ୍ତୁ, ଆପଣ କଅଣ କହୁଛନ୍ତି ମୁଁ ଠିକ୍ ବୁଝିପାରୁନି।

ମାଧବାନନ୍ଦ– ଏଥିରେ ବୁଝିବାର କଅଣ ଅଛି? ଜୟନ୍ତକୁ ଖଲାସ କରିଦେବାକୁ ମୁଁ ଅନୁରୋଧ କରୁଛି। (ମୀରାର ହାତ ଧରି ପକେଇବା) ତା'ପରେ ସେ ଝିଅଟା ଉପରେ ପଡ଼ି କଥା ନ କହିଥିଲେ ଜୟନ୍ତର ଏତେ ସାହସ–

ମୀରା– ଆପଣ ଜଣେ ଅବସରପ୍ରାପ୍ତ ଡେପୁଟି ମାଜିଷ୍ଟେଟ। ଆପଣ ତିରିଶବର୍ଷ ସରକାରୀ କାର୍ଯ୍ୟ କରି ଏବେ ଅବସର ପାଇଛନ୍ତି। ଆପଣ ଏଭଳି ଅନ୍ୟାୟ ଅନୁରୋଧ କରିବାକୁ କିପରି ସାହସ କଲେ ମୁଁ ବୁଝିପାରୁ ନାହିଁ।

କୋର୍ଟ ସମସ୍ତ ସାକ୍ଷୀ ପ୍ରମାଣ ନେଇ ସାରିଲେ ଯାହା ରାୟ ଦେଇପାରେ– ଆପଣ ଆସନ୍ତୁ।

ମାଧବାନନ୍ଦ– ଆପଣ ମୋ'ର ଝିଅ ବୟସର– ଭଗବାନ ଆପଣଙ୍କର ଉନ୍ନତି କରିବେ। ଏ ବୁଢ଼ା ବାପାଠାରୁ ଏଇ ହଜାରେ ଟଙ୍କା ପାନଖିଆ ପାଇଁ ରଖନ୍ତୁ। ନା, ନା, ମନାକରନ୍ତୁ ନାହି। ଜୟନ୍ତର ସମ୍ମାନ ଆପଣଙ୍କୁ ଲାଗିଲା।

(ନୋଟ୍ ଗଣିବାର ଅଭିନୟ)

ମୀରା– (ବିମୂଢ଼ ଭାବରେ ଅନାଇ) ଆପଣ ଏ କଅଣ କରୁଛନ୍ତି ? ଲାଞ୍ଚ ? ଓଃ, ଆପଣ ବାହାରି ଯାଆନ୍ତୁ– ଚାଲି ଯାଆନ୍ତୁ।

(ହଠାତ୍ ଲିଲିର ପ୍ରବେଶ– ପୁଲିସ କାଇଦାରେ ମୀରାଙ୍କୁ ସାଲ୍ୟୁଟ ଦେବା)

ଲିଲି– (ମାଧବବାବୁଙ୍କୁ ରୁକ୍ଷଭାବରେ ଚାହିଁ) ଟଙ୍କାଗୁଡ଼ାକ ମତେ ଦିଅନ୍ତୁ। ଆପଣ ଜଣେ ସରକାରୀ କର୍ମଚାରୀଙ୍କୁ ନିଜ ପୁଅର ଖଲାସପାଇଁ ଏଇ ଟଙ୍କା ଉତ୍କୋଚ ଦେଉଥିବାରୁ ମୁଁ ଆପଣଙ୍କୁ ଗିରଫ କଲି। କ୍ଷମା କରିବେ, ମୁଁ ମୋ'ର କର୍ତ୍ତବ୍ୟ କରିଛି ମାତ୍ର। ମୁଁ ଅନେକବେଳୁ ଆସି ସବୁ ଶୁଣିଛି। ଯଦି ମୀରାଦେବୀ ଉତ୍କୋଚ ଗ୍ରହଣ କରିବାର ସାମାନ୍ୟ ଇଙ୍ଗିତ ଦେଖାଇ ଥାଆନ୍ତେ, ତାଙ୍କୁ ବି ମୁଁ ଗିରଫ କରିବାକୁ ପଶ୍ଚାତ୍‌ପଦ ହୋଇନଥାନ୍ତି।

ମାଧବାନନ୍ଦ– ମୀରା, ମତେ ରକ୍ଷାକର।

ମୀରା– ମୁଁ କିଛି କରିପାରିବି ନାହିଁ।

ଲିଲି– ଆସନ୍ତୁ ମୋ ଅଫିସକୁ। ସେଠାରୁ କୋର୍ଟକୁ।

ମାଧବାନନ୍ଦ– (ଲାଜରେ ମୁଣ୍ଡ ନୁଆଇଁ) ଜୟନ୍ତ, କୁଳାଙ୍ଗାର ତୋ'ରି ପାଇଁ ମୋ'ର ଏ ଦଶା... ହଉ। (ପ୍ରସ୍ଥାନ)

## ପଞ୍ଚମ ଦୃଶ୍ୟ

[ ରଙ୍ଗମଞ୍ଚ ଅନ୍ଧାର; କେବଳ ଜଣେ ସେଠ ଓ ଗଣେଶ। ଉପରେ କେନ୍ଦ୍ରୀଭୂତ ଆଲୋକପାତ ହେଉଛି। ସେଠ ଗଣେଶଙ୍କୁ ନୋଟ୍ ପରେ ନୋଟ ବଢ଼ାଇ ଦେଉଛି। ଗଣେଶ ମୁହଁରେ ଆନନ୍ଦର ଆଭା, ସେଠଜୀଙ୍କ ମୁହଁରେ ତୃପ୍ତି; ନେପଥ୍ୟରୁ ଶୁଣାଗଲା... ]

ହାଃ...ହାଃ...ଟଙ୍କା... ଟଙ୍କା... କଳାବଜାରର ଟଙ୍କା– ଏଥିରେ ରହିଛି ଜୀବନର ସବୁ ସୁଖ। ମୁଁ କଳାବଜାର କରେ; ବାହାରକୁ ବେଶ୍ ଭଦ୍ରଲୋକ, କିନ୍ତୁ ମୋ ଗୋଦାମରେ ସୋରିଷ ତେଲରେ ଅଗରାମଞ୍ଜି ବିଷ ମିଶାଇ ହଜାର ହଜାର ମଣିଷ ମାରେ। ଅଟାରେ ବାଲି, ଦୁଧରେ ପାଣି– କଅଣ ମୁଁ ନ କରି ପାରେ ? ପଇସାକର ମାଲ ଦଶପଇସାରେ ମୁଁ ବିକ୍ରୀ କରେ। ଲୋକେ ମରନ୍ତୁ। ମୋର ଗୋଟାଏ ମଟର ଚାରିଟା ହେଲାଣି, ଗୋଟାଏ କୋଠା ପାଞ୍ଚଟା ହେଲାଣି। ତଥାପି ମୋର ଲୋଭ ରହିଛି। (ଅନ୍ୟ ଏକ କଣ୍ଠସ୍ୱର) ଦିଅ ସେଠଜୀ ତମରିମାନଙ୍କ ପାଇଁ ମୋ ଭଳି ଧୂର୍ତ୍ତ ଦଲାଲଙ୍କର ଜନ୍ମ। ନିଜ ଦେଶ ଲୋକଙ୍କୁ ହତ୍ୟାକରି ତମରି ଗନ୍ତାଘର ପୂର୍ଣ୍ଣ କରିବାପାଇଁ ଆମର ଜନ୍ମ। ତା ସାଙ୍ଗେ ଆମର ବି ଲାଭ

ଅଛି। ଦିଅ ସେଠଜୀ ଟଙ୍କା ଦିଅ; ଆହୁରି ଟଙ୍କା, କଳାବଜାର, ଲାଞ୍ଚ, ମିଛର ସୀମା ଆହୁରି ବଡ଼ ହୋଇଯାଉ, ଦିଅ ଟଙ୍କା)

(ହଠାତ୍ ହୁଇସିଲ ଶବ୍ଦ– ରଙ୍ଗମଞ୍ଚରେ ସାମାନ୍ୟ ଆଲୋକ– ସେଠଜୀ ଓ ଗଣେଶ ଦଉଡ଼ି ପଳାଇବା ବେଳେ ରଙ୍ଗମଞ୍ଚ ପୂର୍ଣ୍ଣ ଭାବରେ ଆଲୋକିତ– ଆଗରେ ଲିଲି– ସେଠଜୀ ଭୟରେ ଥରୁଥିବା– ଗଣେଶ ନୋଟ୍ ବିଡ଼ାକ ହାତରେ ଧରି ଛିଡ଼ା ହୋଇଥିବା।)

ଲିଲି– (ପିସ୍ତଲ ଉଠାଇ) ଭାଇ! (ମୁହଁରେ ହତାଶ ଓ ବିଷର୍ଣ୍ଣ ଭାବ। ପରେ ପରେ ଦୃଢ଼ କର୍ତ୍ତବ୍ୟବୋଧର ତୀବ୍ର ଝଲକ)

ଗଣେଶ– ଅନ୍ଧାର, ସବୁବେଳେ ଅନ୍ଧାର ନ ଥାଏ ଲିଲି।

ଲିଲି– ନାଚାର, କର୍ତ୍ତବ୍ୟ। ଦୁହିଁଙ୍କୁ ଗିରଫ କଲି।

(ଆସ୍ତେ ଆସ୍ତେ ସମସ୍ତଙ୍କର ପ୍ରସ୍ଥାନ)

## ଷଷ୍ଠ ଦୃଶ୍ୟ

[ ପଥ ଦୃଶ୍ୟ। ଜଣେ ଚାରଣର ଗୀତ ଗାଇ ଗାଇ ପ୍ରବେଶ ]

–ଗୀତ– (ଭାଟିୟାଲି)

ଏତେ ଦିନେ ଦେଖିଲୁ କି

ଚହଲିଲା ଧୀର ଥିର ପାଣି।

ନୂଆ ସୁଅ ଭାସି ଆସେ।

ପୁରୁଣା ଯେ ତଳେ ମିଶେ

ଉପରେ ଶ୍ୟାମଳ ଝରା ଶୋଭା ମଣ୍ଡଣି।୧।

ଆଲୋକିତ ନବ ଧାରା,

ନବୀନ ଗୁଞ୍ଜନେ ଭରା।

ଚଉଦିଗ ଝଲିଯାଏ ସୁନା ଛାଉଣି।୨।

ଚାଲରେ ପଥୁକୀ ଭାଇ,

ପଥଶ୍ରମ ଆଉ ନାହିଁ,

ମୁହଁରୁ ମାରୁଛି ଖରା ଚାଲ ଉଜାଣି।୩।

## ସପ୍ତମ ଦୃଶ୍ୟ

[ କାରାଗାର ଦୃଶ୍ୟ, କାରା ଅର୍ଗଳ ପଛରେ ଜୟନ୍ତ, ଗଣେଶ ବାବୁ, ମାଧବାନନ୍ଦ ଓ ଶେଠଜୀ ନତ ମସ୍ତକରେ ଦଣ୍ଡାୟମାନ। ଏକ ଉଚ୍ଚ ଆସନରେ ଦେଶର ମନ୍ତ୍ରୀ ଛିଡ଼ା ହୋଇ ଭାଷଣ ଦେଉଛନ୍ତି, ଶ୍ରୋତା ଭାବରେ ବହୁତଗୁଡ଼ିଏ ବାଳିକା ସମବେତ। ମନ୍ତ୍ରୀଙ୍କ ଗଳାରେ ଏକ ପୁଷ୍ପମାଳ ଏକ ପାଖରେ ଲିଲି ଓ ମୀରା ଦଣ୍ଡାୟମାନ ]

ମନ୍ତ୍ରୀ– ଭଉଣୀମାନେ, ଆଜି ତୁମମାନଙ୍କୁ ସ୍କୁଲ କଲେଜରୁ ଏହିମାନଙ୍କ ସହିତ ପରିଚୟ କରାଇବା ପାଇଁ ଜେଲଖାନାକୁ ଆଣିବାର ମୋର ଗୋଟାଏ ଅଭିପ୍ରାୟ ଅଛି। ପୁରୁଷ ଯେଉଁ କାର୍ଯ୍ୟ କରିବାରେ ସହଜରେ ପ୍ରଲୋଭିତ ହୋଇଯାଇଥିଲେ, ନାରୀ ସେ

କାମରେ ହାତ ଦେଇ ସଫଳ ହେଉଚି। ମୋ ଦେଶର ନାରୀ–ସମାଜ ଯେଉଁ କର୍ତ୍ତବ୍ୟବୋଧ ଦେଖାଉଚି, ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି।

ଯାଙ୍କୁ ଦେଖୁଛ ?– ଏ ହେଉଛନ୍ତି ଗଣେଶ ଚନ୍ଦ୍ର। ଶେଠଜୀଙ୍କ ସହିତ ମିଶି ମଣିଷକୁ ପ୍ରତ୍ୟକ୍ଷ ଭାବରେ ନ ମାରି ଖାଦ୍ୟଦ୍ରବ୍ୟରେ ବିଷ ମିଶାଇ ଏମାନେ ଆମରି ଭାଇ ଭଉଣୀଙ୍କୁ ତିଳ ତିଳ କରି ମାରୁଛନ୍ତି। ଏହି ଗଣେଶ ଚନ୍ଦ୍ର ଅତି ଉତ୍କଟ ଧରଣର କଳାବଜାରୀ। ଆଉ ଏ ଶେଠଜୀ, ଏମାନେ ଦେଶର ଶତ୍ରୁ, ଦେଶ–ଦ୍ରୋହୀ। ଏମାନଙ୍କ ହୃଦୟର ସମସ୍ତ କୋମଳ ପ୍ରବୃତ୍ତି ରୁକ୍ଷ ଓ କଠିନ ହୋଇଯାଇଚି। ଟଙ୍କା ପାଇଁ ଏମାନେ କ'ଣ ଯେ ନ କରିପାରନ୍ତି ଏପରି ନୁହେଁ।

ହଁ, ତା'ପରେ ଏଇ ଯେ ଶିକ୍ଷିତ ଭଦ୍ରଲୋକଙ୍କୁ ଦେଖୁଛ ଏହାଙ୍କ ନାଁ ଜୟନ୍ତ। ଗୋଟାଏ ଅଳ୍ପ ବୟସ୍କ ଦାୟିତ୍ୱହୀନ ଯୁବକ ମହଲର ଏହି ବାବୁ ପ୍ରତିନିଧି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ଗିରଫବେଳେ ଏ କଅଣ କହିଥିଲେ ଜାଣ ? ଏ ଉଦ୍‌ଭ୍ରାନ୍ତ ଯୁବକ କହୁଥିଲେ ଯେ ଇଂଲଣ୍ଡ ଓ ଫ୍ରାନ୍‌ସ୍‌ରେ ବାଟରେ ଘାଟରେ ନାରୀପ୍ରତି କୁତ୍ସିତ ଇଙ୍ଗିତ ପ୍ରକାଶ କରିବା ସଭ୍ୟତାର ଚିହ୍ନ। ତରୁଣମାନଙ୍କ ମଧ୍ୟରେ ଏଭଳି ଗୋଟାଏ ଶ୍ରେଣୀ ଏବେ ସମାଜରେ ଦେଖା ଦେଇଛି। ଜୀବନରେ ବହୁ କ୍ଷେତ୍ରରେ ବ୍ୟର୍ଥଭାବ ଦେଖାଇ ଏମାନେ କେବଳ ନାରୀ ଆଗରେ ଶସ୍ତା ଶୌର୍ଯ୍ୟ ଦେଖାଇବା ପାଇଁ ତ୍ରିବର୍ଣ୍ଣ ପ୍ରଜାପତି ଭଳି ନିଜକୁ ସଜାଇବାରେ ବ୍ୟସ୍ତ।

ତା'ପରେ, ଉପଯୁକ୍ତ ପୁତ୍ରର ଉପଯୁକ୍ତ ପିତା ମାଧବାନନ୍ଦ ବାବୁ। ନିଜେ ଜଣେ ଡେପୁଟି ମାଜିଷ୍ଟ୍ରେଟ୍, ମୀରା ଦେବୀଙ୍କୁ ଉତ୍‌କୋଚ ଦେବା ଅପରାଧରେ ଏ ଗିରଫ ହୋଇଛନ୍ତି, ଜୟନ୍ତକୁ ଖଲାସ କରିବାପାଇଁ ହାକିମଙ୍କୁ ଏକହଜାର ଟଙ୍କା ପାନଖିଆ ଦେଉଥିଲେ। ପୁଲିସ ଇନ୍‌ସପେକ୍ଟର ଲିଲି ଓ ଡେପୁଟି ମାଜିଷ୍ଟ୍ରେଟ ମୀରା ଦେବୀ– ଆପଣମାନଙ୍କୁ ଆପଣଙ୍କ କାର୍ଯ୍ୟର ସଫଳତା ଯୋଗୁଁ ମୁଁ ସମ୍ବର୍ଦ୍ଧନା କରୁଛି। ଦେଖ ଭଉଣୀମାନେ ! (ଲିଲିକୁ ଦେଖାଇ) ଯାଙ୍କରି ଯୋଗୁଁ କଳାବଜାର ପ୍ରାୟ ବନ୍ଦ ହୋଇଛି କହିଲେ ଚଳେ, ଆଉ ଏ ମୀରାଦେବୀ ଡେପୁଟି ମାଜିଷ୍ଟ୍ରେଟ। ଆଜି ଦେଖୁଛି ନାରୀ କୋମଳପ୍ରାଣା ହେଲେ ବି କର୍ତ୍ତବ୍ୟ କରିବାରେ ତା ପାଖରେ ଉତ୍ତାପ ଅଛି। ସେମାନଙ୍କ ପ୍ରତି ମୋର ଆଶୀର୍ବାଦ, ସେମାନେ ଜୀବନରେ ଯଶସ୍ୱିନୀ ହୁଅନ୍ତୁ।

ଶେଠଜୀ– ସାହେବ ଆପନ୍‌ଙ୍କ ନାଁରେ ଯଉଁ ଅନାଥାଶରମ ତୟାର ହୁଚି, ହାମେ ପାଞ୍ଚହଜାର ରୂପୟା ଦେନେକୋ କଥା କରୁଚ।

ମନ୍ତ୍ରୀ– (ହସି) ଠିକ୍ କଥା, ଏ ହାତର ଦାନ ସେ ହାତ ନଜାଣୁ– ଏ ହାତର ପାପ ସେ ହାତ ନକରୁ।

(ରେଖା ଓ ଗଣେଶବୋଉର ପ୍ରବେଶ)

ଗ:ବୋଉ– (କାନ୍ଦି କାନ୍ଦି) ମୋ ଗଣେଶା, ତୁ କିଆଁ ଏମିତି ହେଲୁରେ ହେ ବାପ ! ତାକୁ ଛାଡ଼ିଦିଅ, ତାକୁ ଖଲାସ କରିଦିଅ।

ମନ୍ତ୍ରୀ– ରେଖା ଦେବୀ ଆସନ୍ତୁ। ଆପଣ କଅଣ ସ୍ୱାମୀଙ୍କର ମୁକ୍ତି ଚାହାଁନ୍ତି ?

ଗ:ବୋଉ– ଇଲୋ କଅଣ କହିଲୁ ? ତତେ ଦଉଡ଼ି ଖଣ୍ଡେ ମିଳିଲା ନାଇଁ ?

ରେଖା– ମୁଁ ବହୁତବାର ମନା କରିଚି।

ମନ୍ତ୍ରୀ– ମୁଁ ଜାଣେ, ଆଜି ଏଇ ବାଳିକାମାନେ ନିଜର ସମ୍ମାନ ରକ୍ଷାପାଇଁ ଯେ ମହାମନ୍ତ୍ର ଶିଖିଛନ୍ତି, ତା'ର ପୁରୋଧା ତୁମେ ରେଖା ଦେବୀ। ମୁଁ ସବୁ ଜାଣେ, ମୁଁ ତୁମର ବ୍ୟାୟାମଶାଳା ପାଇଁ ଦୁଇହଜାର ଟଙ୍କା ସାହାଯ୍ୟ ଦେଉଛି।

ରେଖା– ଏଇ ଝିଅମାନେ ମୋ ବିଦ୍ୟାଳୟର ଛାତ୍ରୀ।

ମନ୍ତ୍ରୀ– ତା ବେଶ୍।

ରେଖା– ଆସ ଝିଅମାନେ, ଏଇ ଦୁଇଟି ବିଶିଷ୍ଟ ନାରୀକର୍ମୀ ଲିଲି ଦେବୀ ଓ ମୀରାଦେବୀଙ୍କର ଜୟଗାନ କର ଏବଂ ଈଶ୍ୱରଙ୍କ ପାଖେ ପ୍ରାର୍ଥନାକର ଯେପରି ଦେଶର ଯୁବକ ଯୁବତୀଙ୍କର ସଦ୍‌ବୁଦ୍ଧି ଓ ସତ୍‌ବିଚାର ଫେରିଆସୁ। ପାପ, ଅନାଚାର, ଅସତ୍ୟ ଦୂରହୋଇଯାଉ, ଦେଶ ସୁନ୍ଦର ହେଉ। ସାମ୍ୟ ଓ ମୈତ୍ରୀଭାବରେ ଜୀବନ ରଞ୍ଜିତ ହେଉ।

ଦେଖ ଦିଗ୍‌ବଳୟ ଉପରେ ନବତାରକା କିରଣ ଢାଳୁଛି, ତାକୁ ସ୍ୱାଗତ କର, ତାକୁ ପ୍ରଣାମ କର, ତାକୁ ଆବାହନ କର।

ଜୟ ହେଉ ଜୀବନ ବିକାଶ

ସୁନ୍ଦର ମଙ୍ଗଳ

ପୂତ ନିରିମଳ

ହୃଦେ ହୃଦେ ପରକାଶ।

ଆମରି ସାଧନା

ଆମରି ପ୍ରେରଣା

ଦେଶରେ ସୃଜିବ

ବହୁ ମହାମନା

ଜାତିର ଜାଗୃତି

ଜାତିର ବିଭୂତି

ହୃଦେ ହୃଦେ ଅବିନାଶ।

• (ଯବନିକା) •



# ରକ୍ତଜବା ହିମାଦ୍ରି

## ପ୍ରଥମ ଦୃଶ୍ୟ

[ ନେପଥ୍ୟରୁ ବିଗୁଲ୍ ଧ୍ୱନି। ଯବନିକା ଉତ୍ତୋଳିତ ହେଲା। ଉପରେ କେତେକ ସଶସ୍ତ୍ର ଯବାନ ସାଲ୍ୟୁଟ କରିବା ଭଙ୍ଗୀରେ ଅଭିବାଦନ ଜଣାଉଥିଲେ ଦେଶମାତୃକାକୁ। ବିଗୁଲସ୍ୱର ଧୀରେ କମି ଆସିଲା। ଅଭିବାଦନ ଶେଷ ହେଲା। ନେପଥ୍ୟରୁ ପୁଣି ସମବେତ କଣ୍ଠର ଗୋଟିଏ ମାତୃବନ୍ଦନା ସଙ୍ଗୀତ ଝଙ୍କୃତ ହେଲା। ଯବାନମାନେ ସମତାଳରେ ବାମ ଡାହାଣ ରୀତିରେ ପଦକ୍ଷେପ କଲେ। ସଂଗୀତ ଶେଷ ହେଲା ପର୍ଯ୍ୟନ୍ତ ସେମାନଙ୍କର ପଦସଞ୍ଚାର ଶୁଣାଯାଉଥିଲା। ତାପରେ ସେମାନେ ମାର୍ଚ୍ଚିଂ କରି ଚାଲିଗଲେ। ସଂଗୀତର ଶେଷ ମୂର୍ଚ୍ଛନା ଧୀରେ ଝରିଗଲା।... ]

ଦୃଶ୍ୟାନ୍ତର

[ ଜଣେ ତରୁଣୀ ମଞ୍ଚ ଉପରେ ଦେଖାଦେଲେ। ଆଲୁଳାୟିତକେଶା ଉଦ୍‌ଭ୍ରାନ୍ତା। ତାଙ୍କର ବାମ ହାତକୁ ଧରିଥିଲେ ଜଣେ ପ୍ରୌଢ଼ ବ୍ୟକ୍ତି। ତାଙ୍କର ନାମ ଅମିତାଭ। ତରୁଣୀଙ୍କର ନାମ ବିଜୟା। ]

ବିଜୟା– ମୁଁ ରକ୍ତ ଦେବି। ଏଇ ରକ୍ତରେ ଜଣେ ହେଲେ ତ ଯବାନର ଜୀବନ ରକ୍ଷା ହେବ? ମୁଁ ରକ୍ତ ଦେବି।

ଅମିତାଭ– ଶୁଣ୍ ବାୟାଣି, ମୋ କଥା ଶୁଣ୍।

ବିଜୟା– ମୁଁ କାହା କଥା ଶୁଣିବିନି।

ଅମିତାଭ– ଛିଃ, ବିଜୟା, ମୁଁ ଜାଣେ ତୁ ଦେଶପ୍ରୀତିରେ ଉଦ୍‌ବୁଦ୍ଧ ହୋଇଛୁ; କିନ୍ତୁ ତୋ ସ୍ୱାସ୍ଥ୍ୟ?

ବିଜୟା– ସ୍ୱାସ୍ଥ୍ୟ? ମୋ ସ୍ୱାସ୍ଥ୍ୟ?

ଅମିତା– ହଁ ତୋ ସ୍ୱାସ୍ଥ୍ୟ। ଏବେ ତୁ ଟାଇଫଏଡରୁ ଉଠିଛୁ। ତୁ ନିଜେ ଦୁର୍ବଳ।

ବିଜୟା– କହନ୍ତୁ ବାପା, ଏଇ ମୁହୂର୍ତ୍ତରେ କିଏ ମୋ ଠାରୁ ବେଶୀ ସବଳ ଅଛି? ଟାଇଫଏଡ୍ ଜୀବାଣୁ ଯଦି ଏ ରକ୍ତରେ ଏବେ ବି ଥାଏ, ତେବେ ଡାକ୍ତର ସେଇଆ କହନ୍ତୁ। କିନ୍ତୁ ମୋର ବିଶ୍ୱାସ ମୋ ରକ୍ତରେ ବିଷ ନାହିଁ। ମୁଁ ରକ୍ତ ଦେବି।

ଅମିତାଭ– କିନ୍ତୁ ମାଆ–

ବିଜୟା– ମୁଁ କିଛି ଶୁଣିବି ନାହିଁ। ମୋ ହାତ ଛାଡ଼ନ୍ତୁ ବାପା– (ଅମିତାଭ ହାତ ଛାଡ଼ିଦେଲେ।)

ଅମିତାଭ– (ଦୁଃଖରେ) ମୋ'ର ଭୟ ହେଉଛି ବିଜୟା, କାଳେ ତୁ...

ବିଜୟା– (ତାଚ୍ଛଲ୍ୟ ହସି) କାଳେ ତୁ? ଭୟ? ଗୋଟାଏ ଅସାର୍ଥକ ପ୍ରାଣୀ ମୁଁ, କେତୁଟା ବିନ୍ଦୁ ମୁଁ ରକ୍ତ ଦେବି, ସେଥିରେ ଆପଣଙ୍କର ଏତେ ଭୟ?

ଅମିତାଭ– ଆମେ ପୁରୁଣାକାଳିଆ ଲୋକ, ହଲିଲା ପାଣିରେ ଗୋଡ଼ ନ ଧୋଇବା ଲୋକ। ଭୟଟା ସେଇ କାରଣରୁ।

ବିଜୟା– ଆଜ ଯେ ସ୍ପନ୍ଦନ ବେଶୀ। ହିମାଚଳ ଆଜି ଥରିଉଠୁଛି। ହରଗୌରୀ ରୂପ ଆଜି କାଳିମାଲିପ୍ତ। ଆପଣ ଆପଣଙ୍କର ଭୟକୁ ଘେନି ନିଷ୍ପନ୍ଦ ରହିଥାନ୍ତୁ। ମୁଁ ଚାଲିଲି।

ଅମିତାଭ– ଟିକିଏ ଅପେକ୍ଷା କରିଗଲେ କଅଣ ହବନି? ଯୁଦ୍ଧ ଯେ ବନ୍ଦ ହୋଇଯିବ ସେମିତି ଶୁଣାଯାଉଛି।

ବିଜୟା– ଅପେକ୍ଷା କରିବି? ଦେଶ ଅପେକ୍ଷା କରିବ? ଏ ଜାତି ବହୁତ ଅପେକ୍ଷା କରିଛି। କୁମ୍ଭକର୍ଣ୍ଣ ନିଦରେ ସେ ଶୋଇରହିଥିଲା। ଆଜି ସେ ଜାଗ୍ରତ।

ଅମିତାଭ– ମୁଁ କିଛି ବୁଝି ପାରୁନି ବିଜୟା, ତୁ କଅଣ କହୁଛୁ। ଆଜି ରକ୍ତ ଦେବୁ କାଲି ଆଉ କଅଣ...

ବିଜୟା– କାଲି ବୋଲି କିଛି ନାହିଁ ବାପା। ସବୁ ଆଜିର କଥା। ଏଇ ମୁହୂର୍ତ୍ତର କଥା। ଏମିତି କେତେ ନିଷ୍ପନ୍ଦ ମୁହୂର୍ତ୍ତ ଚାଲିଗଲା। ଏ ଦେଶ ପ୍ରସ୍ତୁତ ହୋଇପାରିଲା ନାହିଁ। ସେଥିପାଇଁ ଏ ପ୍ରଚଣ୍ଡ ଆଘାତ ହିମାଳୟ ବକ୍ଷକୁ ବିକମ୍ପିତ କରୁଛି। (ପ୍ରୌଢ଼ ଅଶ୍ରୁ ମୋଚନ କଲେ।) ଆପଣ କାନ୍ଦୁଛନ୍ତି ବାପା?

ଅମିତାଭ– (ଅଶ୍ରୁ ପୋଛି) ପୁଅ ଚାଲିଗଲା ସୈନ୍ୟବାହିନୀରେ। ତୁ ରକ୍ତ ଦେଉଛୁ। ଭଲ ଥାଏ, ମନ୍ଦ ଥାଏ। ଆମେ ଦୁଇଟା ପ୍ରାଣୀ କାହା ମୁହଁକୁ ଚାହିଁ ରହିବୁ?

ବିଜୟା– ମୁହଁକୁ ଚାହିଁବେ? ଗୋଟାଏ ମାତ୍ର ମୁହଁ ଦେଖି ପାରୁଛି। ଦୁଇଟି ଆଖି ମୁଁ ଦେଖି ପାରୁଛି। ସେ ମୁହଁ ମୋ ମାଆର! ମୋ ଜନ୍ମଭୂମିର, ସେ ଅଶ୍ରୁ ପ୍ଲାବିତ ଆଖି ଦୁଇଟି ସେଇ ମୋ ଜନନୀର, ଦେଶ ମାତୃକାର। ସେ ଆଜି ଆମ ସମସ୍ତଙ୍କୁ ଡାକୁଛି। ତା'ର କୋଟି କୋଟି ସନ୍ତାନକୁ ସେ ଡାକୁଛି। ସେ ଆଜି ବିପନ୍ନ। ଆଉ ମୁଁ କିଛି ଦେଖୁନି। ହଁ... ହଁ ଦେଖୁଛି। ହଜାର ହଜାର ଯବନାଙ୍କର ସଶସ୍ତ୍ର ଉତ୍ତୋଳିତ ହସ୍ତ। ଶତ୍ରୁସଂହାର ପାଇଁ ସେ ହାତଗୁଡ଼ିକ ଅସ୍ଥିର ହେଉଛି। ମତେ ଛାଡ଼ନ୍ତୁ। ଏଇ ସାମାନ୍ୟ କେତେଟୋପା ରକ୍ତ। ସେତକ ଭଲା କେଉଁ ମୁମୂର୍ଷୁ ଯବାନର ଶିରାକୁ ଗଡ଼ିଯାଇ ତା'ର ପ୍ରାଣରକ୍ଷା କରୁ। ସେ ଯେ ସ୍ୱର୍ଗବାଞ୍ଛିତ ଫଳ ବାପା... ମୁଁ ରକ୍ତ ଦେବି...

[ ନେପଥ୍ୟରୁ ସମବେତ କଣ୍ଠରେ ବନ୍ଦେମାତରଂ ଧ୍ୱନି। ସୈନିକର ପରିଧେୟରେ ଦୃପ୍ତ ଯବାନ ଅଶୋକର ପ୍ରବେଶ। ]

ଅଶୋକ– (ଆଶ୍ଚର୍ଯ୍ୟ ହୋଇ) ବିଜୟା, ତମେ ଯାଇନ? କେବଳ ମହିଳା, ଶହେ ଜଣ ମହିଳା ତିଆର କରିଛନ୍ତି ଗୋଟାଏ ସ୍କ୍ୱାଡ୍– ରକ୍ତ ଦାନର ସ୍କ୍ୱାଡ; ତମେ ଆସ।

ବିଜୟା– ଦେଖିଲେ ତ ବାପା।

ଅଶୋକ– ଆପଣ ବାରଣ କରୁଛନ୍ତି କି? ଆପଣ କଅଣ ଶୁଣୁନାହାନ୍ତି ରକ୍ତ ଉତ୍ତେଜକ ଏ ବନ୍ଦେମାତରଂ ଧ୍ୱନି? ଥରେ ଏ ଧ୍ୱନି ଆକାଶ ମେଦିନୀ ଚମକାଇ ଶୃଙ୍ଖଳିତ ଭାରତର ମୁକ୍ତି ପାଇଁ କୋଟି କୋଟି କଣ୍ଠରୁ ଝରି ଆସିଥିଲା। ସେତେବେଳେ ଜଣେ ଉଲଗ୍ନ ଫକୀର ଥିଲେ ଏ ଦେଶର ପୁରୋଭାଗରେ। ନୀଳକଣ୍ଠ ଭଳି

ସବୁ ଗରଳ ପିଇ ସେ ଦେଇଗଲେ ଏ ଜାତି ପାଇଁ ଏକ ଅମୃତ ଦୀପ୍ତି। ଆଜି ଆଉ ଥରେ ଶୋଣିତ ତର୍ପଣ କରିବାକୁ ଏ ଜାତି କୃତସଂକଳ୍ପ। ବିଜୟା ସେଇ ଉଦ୍‌ବେଳିତ ସାଗରର ବିନ୍ଦୁ ହେଲେ ବି ସେ ଗୋଷ୍ପଦର ବିନ୍ଦୁ ନୁହେଁ, ପାରାବାରର ଜଳକଣା।

ଅମିତାଭ– ଅଶୋକ, ବିଜୟା, ମୁଁ କ୍ରମେ ଉତ୍ତେଜିତ ହୋଇପଡୁଛି। ମୋର ପ୍ରୌଢ଼ତ୍ୱ ଉପରେ ଏ କିଭଳି ତାରୁଣ୍ୟ ତୁମେ ପ୍ରବାହିତ କରିଦେଉଛ ! ମୋର ମନେହେଉଛି ମୁଁ ନବଯୁବକ। ନବ ଉନ୍ମାଦନାରେ ମୋ ଶରୀର, ମୋ ମନ ଉଦ୍‌ବୁଦ୍ଧ ହୋଇ ଉଠୁଛି। ମୁଁ କଣ କରିପାରିବି କୁହ ଅଶୋକ।

ବିଜୟା– (ଆନନ୍ଦରେ ବିଭୋର ହୋଇ) ବାପା !!

ଅଶୋକ– ଆଜି ବୟସର ବିଚାର ନାହିଁ। ଜାତିର ବିଚାର ନାହିଁ। ଶକ୍ତ ଅଶକ୍ତର ବିଚାର ନାହିଁ। ଆପଣ ବି ଦେଇପାରିବେ।

ଅମିତାଭ– କଅଣ ଦେଇପାରିବି ?

ଅଶୋକ– ଆଶୀର୍ବାଦ।

ବିଜୟା– ତମେ ଅଶୋକ ?

ଅଶୋକ– ହଁ ମୁଁ ଯାଉଛି ଫ୍ରଣ୍ଟକୁ। ତୁମକୁ କହି ନଥିଲି ବିଜୟା !

ଅମିତାଭ– କେବେ ? କିନ୍ତୁ–

ଅଶୋକ– କିନ୍ତୁ ଆଉ କଅଣ ? ଆପଣ ଆଶୀର୍ବାଦ କରନ୍ତୁ। ଆଗରୁ ମୁଁ ମିଲିଟାରୀ ଟ୍ରେନିଂ କିଛି ପାଇଥିଲି। ଆଜି ଡାକରା ପାଇଛି। ରଣାଙ୍ଗନରେ ରକ୍ତବୋଳା ଅଶ୍ୱ ଧରି ମୁଁ ଛୁଟିଯିବି ଅରାତିର ବକ୍ଷ ଉପରକୁ। ସେ ଯେ କି ଆନନ୍ଦ !

ବିଜୟା– ତେବେ କଅଣ ସବୁ– ?

ଅଶୋକ– ମିଥ୍ୟା ହେବ ନାହିଁ। ମୋ ସଂକଳ୍ପ ମୁଁ ରଖିବି ବିଜୟା। ଆଜି ତୁମେ ମଧୁକୁଞ୍ଜର ସ୍ୱପ୍ନ ଦେଖ ନାହିଁ। ରକ୍ତ ପିପାସୁ ବର୍ବର ଚୀନକୁ ଏ ପବିତ୍ର ମାତୃଭୂମିରୁ ହଟାଇ ନଦେବାଯାଏ ଏ ଜାତିର ପ୍ରତ୍ୟେକ ଯବାନର ଅନ୍ୟ କିଛି କାମ ନାହିଁ କି ଅନ୍ୟ ଚିନ୍ତା ନାହିଁ।

ଅମିତାଭ– କିନ୍ତୁ ଅଶୋକ ତୁମେ ମତେ ଚିନ୍ତାରେ ପକାଇଲ।

ଅଶୋକ– ଆପଣଙ୍କର ଚିନ୍ତା କଥା ମୁଁ ଜାଣେ। ସେ ଚିନ୍ତା ସ୍ୱାର୍ଥର ଚିନ୍ତା। ସେ ଚିନ୍ତା ଦୁହିତାର ଭବିଷ୍ୟତର ଚିନ୍ତା। ମାତ୍ର ଦେଶର ଆଜି ଯେ ଚିନ୍ତା ଭାବନା, କର୍ମସାଧନା ବିପୁଳ ହୋଇ ଉଠିଛି, ବିରାଟ ହେଉଛି, ସେଥିରେ ଆପଣଙ୍କ ଚିନ୍ତା କେତେ ତୁଚ୍ଛ, କେତେ ସାମାନ୍ୟ !

ଅମିତାଭ– ମୁଁ କଅଣ କହୁଥିଲି କି ବିବାହଟା ହୋଇଯାଇ ଥିଲେ...

ବିଜୟା– ବାପା, ଏତେବେଳେ ବିବାହ ? ଏତେବେଳେ ସେ କାମନା ? ସେ ସ୍ୱପ୍ନ ? ନା ବାପା।

ଅଶୋକ– ଶତ୍ରୁ ଦ୍ୱାରଦେଶରେ। ଅସୀମ ସ୍ୱାର୍ଥତ୍ୟାଗ, ଅମାପ ଯାତନା, ଅଫୁରନ୍ତ ପରିଶ୍ରମ... ତେବେ ଯାଇ ବିଜୟ କରାୟତ ହେବ। ଏତେବେଳେ ସୁଖ କାହିଁ ? ସମସ୍ତେ ଆଜି ସୈନିକ। ନାରୀ ପୁରୁଷ ପ୍ରତ୍ୟେକ ଆଜି ପ୍ରଚଣ୍ଡ ଆତ୍ମଶକ୍ତିରେ ବଳୀୟାନ। ...

ଏତେବେଳେ ମଧୁରାତି ଶୋଭାପାଏନା। ଯେବେ ଯୁଦ୍ଧକ୍ଷେତ୍ରରୁ ଫେରିଆସିବି, ବିଜୟ ଦର୍ପରେ ଏକା ମୁଁ କାହିଁକି ସମଗ୍ର ଭାରତ–ବାହିନୀ ଫେରିଆସିବ, ବିଜୟା ତୁମେ ସେତିକିବେଳେ ମତେ ଦେବ ବରମାଲ୍ୟ। ନ ଆସିଲେ ସମର ପ୍ରାଙ୍ଗଣ ହୋଇଯିବ ମୋର ମଧୁଶଯ୍ୟା। ଶତ୍ରୁପକ୍ଷର ରକ୍ତ ମନ୍ଦାର ମୋର ଅର୍ଜିତ ପୌରୁଷର ଭୂଷଣ ହୋଇଯିବ। ଆଶୀର୍ବାଦ କରନ୍ତୁ, ଆସ ବିଜୟା–

ଅମିତାଭ– ଅଶୋକ, ତମେ ମତେ ଆଲୋକ ଦେଖାଇଛ। କିପରି ଗୋଟାଏ ଉତ୍ତାପ ମୁଁ ଅନୁଭବ କରୁଛି। ହଁ ମୁଁ ଯିବି। ରକ୍ତ ଦେବି। ଏ ପ୍ରୌଢ଼ର ଶିରାରେ ଯେତେ ରକ୍ତ ଅଛି ସବୁ ଦେଇଦେବି। ଚାଲ ବିଜୟା, ମୁଁ ତୋ ସାଙ୍ଗରେ ଯିବି। ଏ ଯେ ଜାତୀୟ ଯଜ୍ଞ। ଏଥିରେ ଟୋପାଏ ହେଲେ ଘୃତ ମୁଁ ପକାଏ।

ବିଜୟା– ବାପା !

[ ଅନ୍ୟ ଏକ ଜାତୀୟ ସଙ୍ଗୀତର ଉଚ୍ଛ୍ୱାସ ନେପଥ୍ୟରୁ ଭାସି ଆସିଲା, ସମସ୍ତେ ସ୍ତବ୍ଧ ହୋଇ ରହିଗଲେ; ସଙ୍ଗୀତର ଅନ୍ତିମ ମୂର୍ଚ୍ଛନା ଧୀରେ ଅତିବାହିତ ହୋଇଯିବା ପରେ ମଞ୍ଚ ଅନ୍ଧକାର ହେଲା। ସେହି ଅନ୍ଧକାର ଭିତରେ ଘନ ଘନ ହୁଇସିଲ ଶବ୍ଦ। ମଞ୍ଚ କ୍ରମେ ଆଲୋକିତ ହୋଇଛି। ଦେଖାଗଲା ଜଣେ ଭୟାର୍ତ୍ତ ଲୋକକୁ ଜଣେ ପୁଲିସ ଅଟକାଇ ପ୍ରଶ୍ନ କରୁଛି। ଲୋକଟିର ନାମ ବିରାଜ। ]

ପୁଲିସ– କିଏ ?

ବିରାଜ– ନା ମୁଁ ଚୋର ନୁହେଁ।

ପୁଲିସ– ତେବେ ଏମିତି ଅନ୍ଧାରରେ ଦଉଡୁଥିଲେ କାହିଁକି ?

ବିରାଜ– ଭୟରେ।

ପୁଲିସ– କି ଭୟ ?

ବିରାଜ– ତାହା କହିପାରିବି ନାହିଁ।

ପୁଲିସ– ଆଚ୍ଛା ଲୋକ ତ ? ଭୟର କାରଣ କଅଣ କହିପାରିବେନି ?

ବିରାଜ– ସତ କହୁଛି, ମୁଁ ଚୋର ନୁହେଁ। ତାଛଡ଼ା ମୁଁ ଦଉଡୁ ନଥିଲି। ଖାଲି ଟିକିଏ ଏପଟ ସେପଟ ଚାହୁଁଥିଲି।

ପୁଲିସ– ସେଇ ଏପଟ ସେପଟ ଚାହିଁବା ଉଚିତ ହୋଇନି।

ବିରାଜ– ସତରେ ମୁଁ ଚୋର ନୁହେଁ। ମୁଁ ଶିକ୍ଷିତ ଲୋକ। ବରଂ ମୁଁ କହିବି ସମାଜର ମୁଁ ଜଣେ ବିଶିଷ୍ଟ ଲୋକ।

ପୁଲିସ– ହୋଇପାରନ୍ତି। ମୁଁ ଏ ସହରକୁ ନୂଆ ଆସିଛି। ମୁଁ ଆପଣଙ୍କୁ ଚିହ୍ନି ନାହିଁ। ତେବେ ଏମିତି ଅନ୍ଧାରରେ ଏପଟ ସେପଟ ହେଉଥିଲେ କାହିଁକି ?

ବିରାଜ– ସାମାନ୍ୟ ଭୟରେ।

ପୁଲିସ– ପୁଣି ତ ସେଇଆ କହିଲେ। ଭୟ କାହିଁକି ? ଦେଖୁ ନାହାନ୍ତି ଦେଶର ବୀର ଯବାନ ଭୟ ନକରି ଯୁଦ୍ଧମୁହଁକୁ ଯାଉଛି, ଆଉ ଆପଣ ଭୟରେ ଜଡ଼ସଡ଼ ହୋଇ ଏପଟ ସେପଟ ହେଉଛନ୍ତି ?

ବିରାଜ– ବିଶ୍ୱାସ କର ପୁଲିସ। ମୁଁ କିମିତି ବୁଝାଇବି ମୁଁ କାହିଁକି ଡରୁଛି ?

ପୁଲିସ– ସେମିତି ଏଣୁତେଣୁ ଗୁଡ଼ାଏ ବକିଲେ ଆପଣଙ୍କୁ ଥାନାକୁ ଯିବାକୁ ପଡ଼ିବ। ଆପଣ ଜାଣନ୍ତି ତ ଦେଶରେ ଡିଫେନ୍ସ ଇଣ୍ଡିଆ ଆକ୍ଟ ଚାଲିଛି।

ବିରାଜ– ନା ତାହା କହନ୍ତୁ ନାହିଁ, ମତେ ଛାଡ଼ିଦିଅନ୍ତୁ।

ପୁଲିସ– ନା, ମୁଁ ଛାଡ଼ିପାରିବି ନାହିଁ। ଦେଶର ଏ ସଙ୍କଟ ସମୟରେ କୌଣସି ଲୋକ ଯଦି ପ୍ରଳାପ କରେ, କଥା ଠିକ୍ କହିପାରେନି, ଏଣୁ ତେଣୁ ବକେ, ତାହାହେଲେ ମୋର କର୍ତ୍ତବ୍ୟ ହେଉଛି ତାକୁ ଅଟକ ରଖିବା।

ବିରାଜ– ଅଟକ ରଖିବେ? ସେମାନେ ଯଦି ସେଇ ସମୟରେ ପହଞ୍ଚି ଯାଆନ୍ତି, ତେବେ ତ ଆପଣଙ୍କ ଧରିବାଠାରୁ ତାଙ୍କ ଧରିବା ଆହୁରି ଭୟଙ୍କର ହୋଇଉଠିବ।

ପୁଲିସ– ବେଶ୍ ମଜାର ଲୋକ ତ? ସେମାନେ ପୁଣି କିଏ?

ବିରାଜ– ଆଚ୍ଛା ପୁଲିସ, ମନ ବୋଲି ଗୋଟାଏ କଥା ଅଛି ତ?

ପୁଲିସ– ମନ?

ବିରାଜ– ହଁ ମନ, ପୁଣି ସ୍ମୃତି।

ପୁଲିସ– ମୁଁ କିଛି ବୁଝିପାରୁନି।

ବିରାଜ– ନ ବୁଝିବା କଥା। ଚୋର ଡକାଏତ ଧରିବା କାମ ଭିତରେ ମନ, ସ୍ମୃତି, ଉପହାର– ଏସବୁ କୁଆଡୁ ଆସିବ ଆପଣଙ୍କ ଚେତନାରେ?

ପୁଲିସ– ଥାନାକୁ ଚାଲନ୍ତୁ।

ବିରାଜ– ଏଁ?

ପୁଲିସ– ଥାନାକୁ।

ବିରାଜ– ଜନ୍ମଦିନରେ କେହି ଆପଣଙ୍କୁ ଉପହାର ଦେଇନି?

ପୁଲସି– (ହସି) ମୋ ଜନ୍ମଦିନ ମୁଁ ଭୁଲିଯାଇଛି। ଆଉ ଏ ପୁଲିସ କାମରେ ସେସବୁର କିଛି ମାନେ ହୁଏ ନା।

ବିରାଜ– ସତେ ତା କି କଠୋର ଆପଣଙ୍କର କାର୍ଯ୍ୟ।

ପୁଲିସ– ସନ୍ତୋଷଜନକ କୈଫିୟତ ଦିଅନ୍ତୁ, ମୁଁ ଛାଡ଼ିଦେବି।

ବିରାଜ– ଏଇ ଛାଡ଼ିବା କଥା ଶୁଣି ମୁଁ ଉଲ୍ଲସିତ ହୋଇ ଉଠିଛି ପୁଲିସ। ଆଚ୍ଛା, ଆପଣଙ୍କର ବିବାହ ଦିନରେ କେହି କିଛି ଉପହାର ଦେଇନି।

ପୁଲିସ– ମୁଁ ବିବାହ କରି ନାହିଁ।

ବିରାଜ– ଓଃ–

ପୁଲିସ– ତାପରେ ଆଉ କିଛି ପଚାରିବାର ଅଛି?

ବିରାଜ– ଅନେକ ପଚାରିବାର ଅଛି, ତେବେ କଥା କଅଣ କି–

ପୁଲିସ– କୁହନ୍ତୁ, ମୋ ରାଉଣ୍ଡରେ ଡେରି ହେଉଛି।

ବିରାଜ– ଆପଣଙ୍କର ଆଙ୍ଗୁଠିରେ ସେଇଟା କଅଣ ଚକ୍‌ଚକ୍ କରୁଛି?

ପୁଲିସ– ଓଃ, ଏଇଟା ମୁଦି।

ବିରାଜ– ସୁନାମୁଦି ତ?

ପୁଲିସ– ଯେତେ ଗରିବ ହେଲେ ବି ପିତଳ କାହିଁକି ପିନ୍ଧିବି? ଟିକିଏ ସୁନା ଦେହରେ ରଖିଛି। ତା'ଛଡ଼ା ସେ ତ ମୋର ଅର୍ଜିତ ନୁହେଁ।

ବିରାଜ– ଅର୍ଜିତ ନୁହେଁ? ତେବେ ମୋରି ଭଳି ତାହା ଆପଣଙ୍କର ଅର୍ଜିତ ନୁହେ?

ପୁଲିସ– ଆପଣଙ୍କଭଳି ? ମାନେ ?

ବିରାଜ– ନା ସେ କିଛି ନୁହେଁ। କିନ୍ତୁ ଆପଣଙ୍କ ମୁଦିଟି ବେଶ୍।

ପୁଲିସ– ହଁ ସେମିତି କିଛି ନୁହେଁ। ଟିକିଏ ସୁନା ଅଛି। ମନ୍ତୁରା ମୁଦି।

ବିରାଜ– ମନ୍ତୁରା ମୁଦି ?

ପୁଲିସ– ହଁ, ପୁଲିସ ଚାକିରିରେ ଜଏନ୍ କଲାବେଳେ ଏହି ମୁଦିଟି ପିନ୍ଧାଇ ଦେଇ ମାଆ କହିଥିଲେ ପୁଲିସ କାମ କେତେ କୁଆଡ଼େ ବୁଲିବୁ, ଏଇ ମନ୍ତୁରା ମୁଦିଟି ପିନ୍ଧିଥା। ଡର ଭୟ କିଛି ନଥିବ। ସେଇଦିନୁ ମୁଁ ସେ ମୁଦି ପିନ୍ଧିଛି। ଆପଣ ଆଜି ଏସବୁ କଥା କହିବାରୁ ମାଆଙ୍କ କଥା ମନେ ପଡ଼ିଗଲା। ମାଆ ସ୍ୱର୍ଗରେ।

[ ନେପଥ୍ୟରେ କୋଳାହଳ, କେତେଜଣ ଯୁବକ ରଙ୍ଗମଞ୍ଚ ଉପରକୁ ଆସିଲେ। ]

୧ମ ବ୍ୟକ୍ତି– କିରେ ବିରାଜ, ଏତେବାଟ ପଳେଇ ଆସିଲୁ ? ପୁଲିସ ଧରିଛି ତ ?

ବିରାଜ– ନା, ନାଁ, ପୁଲିସ କାହିଁକି ଧରିବ ? ତାଙ୍କ ସାଙ୍ଗରେ ଟିକିଏ ଦୁଃଖ ସୁଖ ହେଉଥିଲି।

ପୁଲିସ– ଅନ୍ଧାରରେ ସେ ଦୌଡ଼ାଦୌଡ଼ି କରୁଥିଲେ। ମୁଁ ଅଟକେଇ ଦେଇଛି।

୨ୟ ବ୍ୟକ୍ତି– ଆମେ ତା ପଛରେ ଆସୁଛୁ। ବିରାଜର ସ୍ତ୍ରୀ ଦେଶରକ୍ଷା ପାଣ୍ଠିକୁ କିଛି ସୁନା ଦେଇ ଆମକୁ କହିଲେ ବିରାଜର ଏଇ ହାତପିନ୍ଧା ମୁଦିଟି ତାଠାରୁ ନେଇଯାଇ ଦେଶରକ୍ଷା ପାଣ୍ଠିକୁ ଦେବାପାଇଁ। ଏଣେ ବିରାଜ ଏକଥା ଶୁଣି...

ବିରାଜ– ମୁଁ ଦେଇପାରିବି ନାହିଁ। ମଧୁରାତ୍ରିରେ ସେ ପ୍ରଦୀପ ସାକ୍ଷୀ ରଖି ମତେ ପିନ୍ଧେଇ ଦେଇଥିଲେ। ଏଥିରେ ସେଣ୍ଟିମେଣ୍ଟ ରହିଛି, ସ୍ମୃତି ରହିଛି। ଏହା ଯେ କେତେ ବ୍ୟକ୍ତ ଅବ୍ୟକ୍ତ କଥାର ମଧୁର ଉପହାର...

୧ମ ବ୍ୟକ୍ତି– ଆହା ହାଃ...

[ ଜଣେ ଉତ୍ତେଜିତ ସମ୍ଭ୍ରାନ୍ତ ବ୍ୟକ୍ତି ବିପରୀତ ଦିଗରୁ ମଞ୍ଚକୁ ଆସି ଉଚ୍ଚ ସ୍ୱରରେ କହିଲେ ]

ତୃତୀୟ ବ୍ୟକ୍ତି– ମଧୁରାତ୍ରି ? ମଧୁରାତ୍ରି କାହିଁ ? ସବୁ ଯେ ଅନ୍ଧାର। ଆଜି ଦୁର୍ଦ୍ଧର୍ଷ ଶତ୍ରୁ ଏ ପବିତ୍ର ଭାରତଭୂମିକୁ ଅନ୍ଧକାର ମସୀରେ କଳଙ୍କିତ କରିବାକୁ ବସିଛି। ରକ୍ତ ସ୍ନାନରେ ସିକ୍ତ ହୋଇ ଅଗଣିତ ଦୃପ୍ତ ଭାରତୀୟ ଯବାନ ଶତ୍ରୁର ପ୍ରତିରୋଧ କରୁଛନ୍ତି। ଏତେବେଳେ କାହାର କିଛି ବ୍ୟକ୍ତିଗତ ସେଣ୍ଟିମେଣ୍ଟ ରହିବାର କଥା ନୁହେଁ। ସବୁ ଭାବ ବିହ୍ୱଳତା, ସବୁ ସ୍ମୃତି, ସବୁ ଉପହାର ମାତୃପୂଜାର ମଙ୍ଗଳପୀଠ ଉପରେ ସମର୍ପିତ ହେଉ। ଦେଶର ଯୁବଶକ୍ତି ଜାଗ୍ରତ ହେଉ, ସଂଗଠିତ ହେଉ, ପଞ୍ଚଶୀଳର ପୁରାଣ ପର୍ବତ ଉପରେ ଯେ ବିଷାକ୍ତ ଅଜଗର ସର୍ପ ଦଂଶନ ଦେଉଛି ସେ ଦଂଶନ ତୁଷାର–ମୌଳି ହିମାଳୟ ତଳେ ଆଜି ସମଗ୍ର ଭାରତବର୍ଷର ଆତ୍ମାକୁ ଦଗ୍ଧ କରିବାକୁ ବସିଛି। ସେ ଆତ୍ମା ଅଜେୟ, ତା'ର ବିନାଶ ନାହିଁ... ବିଲୟନାହିଁ। ସେହି ଭାରତ ଜନନୀର ଜୟ ହେଉ।

ବୋଲ, ଭାରତ ମାତା କୀ ଜୟ।

ଶହୀଦ ଜବାନ କୀ ଜୟ।

[ ମାତୃବନ୍ଦନା ଧ୍ୱନିରେ ପ୍ରେକ୍ଷାଳୟ ଧ୍ୱନିତ ହେଲା, ପ୍ରେକ୍ଷାଳୟ ଏକ ପାର୍ଶ୍ୱରୁ ଦଳେ ଯୁବକ ଯୁବତୀ ଜାତୀୟ ପତାକା ଧରି ଦେଶାତ୍ମବୋଧକ ସଙ୍ଗୀତ ଗାନ କରି ଧୀରେ ରଙ୍ଗମଞ୍ଚ ଆଡ଼କୁ ଗତି କଲେ। ଆଉ କେତେଜଣ କେତୋଟି ବାକ୍ସ ଧରି ପ୍ରେକ୍ଷାଳୟର ଚାରିଆଡ଼େ ଖେଳାଇ ହୋଇଗଲେ। ସେହି ଭିକ୍ଷାର ଆଧାର ଭିତରେ ପଡ଼ିଲା ସୁନା, ଟଙ୍କା। ସବୁ କାର୍ଯ୍ୟ ଶୃଙ୍ଖଳିତ ଭାବରେ ସମାପନ ହେଉଥାଏ। ରଙ୍ଗମଞ୍ଚ ଉପରେ ଦଳଟି ଗାୟନ କରୁଥିଲେ। ବିରାଜ ନିଜ ହାତର ମୁଦିଟି ଅର୍ପଣ କଲେ। ପୁଲିସ ତାଙ୍କ ମୁଦିଟି ଦେଇଦେଲେ। ]

## ସଙ୍ଗୀତ

ତୁଷାର– କିରୀଟ ଭାରତ–ବଳୟ ହିମାଳୟେ ଆଜି
ଲାଗେ ରେ
ପାପୀର ସ୍ପର୍ଶ
ଲାଗେ ରେ,
ଅୟୁତ କୋଟି ଦୃପ୍ତ ଯବାନ
ସିଂହ ବିକ୍ରମେ
ଜାଗେରେ। ଘୋଷା।
'ରବି ଅରବିନ୍ଦ ଗାନ୍ଧୀ ବୁଦ୍ଧ
ବାଣୀ–ବନ୍ଦିତ ଶାନ୍ତ ପ୍ରବୃଦ୍ଧ
ମହାନ ମୂର୍ତ୍ତି ଆତ୍ମ ତା'ର
ବିଶ୍ୱେ ଶାନ୍ତି
ମାଗେ ରେ।୧।

ଶୁଭେ ଜୟ ନାଦ ଜୟ ହୁଁକାର
ଜାଗ୍ରତ ଭାରତ ହୃଦ–ସଂଭାର
ଅରାତିରୁଧିର ଭାଲ ପଟେ ଆଙ୍କି
ମୃତ୍ୟୁଞ୍ଜୟୀ ବୀର
ସାଜେ ରେ।୨।
ଏକ ହୁଅ, ଏକ ହୁଅ, ଏକ ଦେଶ, ଏକ ଭାବ,
ଏକ ବନ୍ଧନ, ନିତ୍ୟ ସନାତନ ସୁନ୍ଦର ରୂପ ରାଗ
କୋଟି କଣ୍ଠେ କଳତାନ ସଞ୍ଚରେ
ଜୟହିନ୍ଦ ଜୟହିନ୍ଦ୍
ଜପେ ରେ।୩।

[ ସଙ୍ଗୀତର ଶେଷ ମୂର୍ଚ୍ଛନା ଝରିଯିବା ସହିତ ମଞ୍ଚ ଅନ୍ଧକାର ହୋଇଗଲା। କିଛି ସମୟ ପରେ ମଞ୍ଚ ଆଲୋକିତ ହେବା ପୂର୍ବରୁ ଶୁଣାଗଲା– "ଲୁଚେଇ ପକା, ମାଧବ ଲୁଚେଇ ପକା" ସୁରାପାନୋନ୍ମତ୍ତ ବ୍ୟବସାୟୀ ହଟକେଶ୍ୱର ସାହୁ ଅସ୍ଥିର ପଦ ଚାରଣା କରି କହୁଥିଲେ– ]

ହଟ– ଲୁଚେଇ ପକା ... ମାଧବ... ଲୁଚେଇ ପକା, ଏକଦମ୍ ଲୁଚେଇ ପକା, ଯେମିତି କାହାର ବାପର ସାଧ ନଥିବ, ଠଉରେଇବ ମୁଁ କିମିତି ବ୍ୟବସାୟ କରୁଛି। ରାତାରାତି ଏ କାମ ସାରିବାକୁ ହେବ, ହଁ– ଆସ୍ତେ... ସେଇ ଯେ ଘରତଳ ଗୋଦାମ ଅଛି...ପାଞ୍ଚନମ୍ବର ଗୋଦାମ। ସେଥିରେ ଦୁଇଶବସ୍ତା ଚାଉଳ ଲୁଚେଇ ଦେ ମାଧବ, ଦୁଇ ଶ' ବସ୍ତା ଚାଉଳ ମତେ ଦୁଇହଜାର ଟଙ୍କା ଦେବ କେବଳ ଲାଭ, ଆଉ ତିନିନମ୍ବର ଗୋଦାମରେ ଶହେ ବସ୍ତା ଗହମ– ସବୁ ଗଡପ୍ କରିଦେ। ବଡ଼

ମୌକା ଆସିଛିରେ ମାଧବ, ଏ ଯୁଦ୍ଧ ଆସିଲା ନାହିଁ ଯେ ଆମ ବ୍ୟବସାୟୀଙ୍କର ଲାଭ ଘର ପୂରିଗଲା। ଆରେ ଏ ବିଲାତୀ ପାଣିଟି ? କିଛି ତ କାହିଁକି ଜଣା ଯାଉନି। (ହଟକେଶ୍ୱର କଥା କହୁ କହୁ ଟଳୁଥିଲେ।)

ମାଧବ– (ଧୀରେ ମଞ୍ଚ ଉପରକୁ ଆସିଲେ। ବସି ପଡ଼ିଲେ। ଦେହ ତାଙ୍କର ଆବୃତ ଥାଏ। ଜ୍ୱର କଲା ରୋଗୀ ଭଳି ସବୁଆଡ଼େ ଘୋଡ଼େଇ ହୋଇ ବସିଥାନ୍ତି।)

ଜଣାଯିବ ଆଜ୍ଞା, ବିଲାତୀ ପାଣି ସମୟ ନିଏ ଧରିବା ପାଇଁ।

ହଟ– ସବୁ ଲୁଚେଇ ପକେଇଲ ? ମିଶାଣ କିମିତି ଚାଲିଛି ?

ମାଧବ– ସବୁ କରିଦେଇଛି ସରକାର। ଗୋଦାମ ଭରା ମାଲ, ଯିମିତି ମତେ ବୁଦ୍ଧି ଦେଇଛନ୍ତି ସିମିତି ସବୁ କରିଦେଇଛି। ହାତ ଚିକ୍‌କଣ ବ୍ୟବସାୟ ଆଜ୍ଞା, ଖାଲି ଠାକୁରଙ୍କୁ ଡାକୁଥାନ୍ତୁ, ଏ ଲଢ଼େଇ ଚାଲିଥାଉ।

ହଟ– ଆରେ ଏ ଲଢ଼େଇକୁ ତ ଆମେ ଚଳେଇବୁ! ମାଧବ, ମିଶାଣ କିମିତି ଚାଲିଛି ?

ମାଧବ– ଆପଣଙ୍କର ମିଶାଣ ଠିକ୍ ଅଛି ତ ? ଆଉ ତ ହଜାର କଥା ନାହିଁ, ଲକ୍ଷ ଉପରେ ଉଠିଲାଣି।

ହଟ– ଆରେ ଧେତ୍, ସେ ମିଶାଣ କଥା କହୁନି। ଚାହା ପତ୍ରରେ ଚମଡ଼ା, ଚିନିରେ କାଚ ଗୁଣ୍ଡ ସୋରିଷ ତେଲରେ...

ମାଧବ– ସେ କଥା ଆଉ ଚିନ୍ତା କରୁଛନ୍ତି ? ଏଡ଼େ ବଢ଼ିଆରେ ସବୁ ମିଶିଯାଉଛି, ଯେ ଦେଖିଲେ ଭାରୀ ଭଲ ଲାଗୁଛି। ସେ ମିଶାଣ କାମ ଦୁଇ ନମ୍ୱର ଗୋଦାମ ଘରେ ଚାଲିଛି। ଅଗରାମଞ୍ଜି ସରି ଆସିଲାଣି ଆଜ୍ଞା, ଠିକ୍ ଯାଗାକୁ ଖବର ଦିଆଯାଉ।

ହଟ– ମାଧବ, ସେସବୁ ତମେ ଜାଣ, ତିନିମାସ ହେଲା ମୋ ଘରେ ଚାକିରି କଲଣି। ଏବେ ଦେଖୁଛି, ବଡ଼ ଏକ୍‌ସପର୍ଟ। କେଉଁଠୁ କଅଣ ଆସେ କଅଣ ଜାଣିନ ?

ମାଧବ– ଜାଣିଛି ଆଜ୍ଞା, ତେବେ ଆପଣ ଟିକିଏ ମୁଣ୍ଡ ହଲେଇ ଦେଲେ ହେଲା, ଚିନିରେ ଯେତେବେଳେ ସରୁ କାଚଗୁଣ୍ଡ ମିଶୁଛି ନା, ଆଃ ଏ ତୋଫାକୁ ସେ ତୋଫା।

ହଟ– ବିଲାତୀ ପାଣିଟା କାହିଁକି ଧରୁନି ?

ମାଧବ– ଧରିବ ଆଜ୍ଞା, ମୁଁ ଧରେଇ ଦେବି।

ହଟ– ତମେ ଧରେଇ ଦେବ ?

ମାଧବ– ଆଜ୍ଞା, ଅସଲ ମାଲ ଦେଇ ଧରେଇ ଦେବି।

ହଟ– ସେଇଆ କହ, ମୁଁ ଭାବିଲି ତୁମେ ମୋ କଳା ବ୍ୟବସାୟକୁ ଧରେଇ ଦେବ।

ମାଧବ– ଛିଃ ଛିଃ କଅଣ କହିଲେ ? ନିମକ ଖାଉଛି, ମୁଁ ପୁଣି ଯା କରିବି ? କେଡ଼େ ବଡ଼ କଥା ନକହିଲେ ?

ହଟ– ଆରେ ନାଃ, ମୁଁ କଅଣ ସେକଥା କହୁଛି ? ଏ ସାହାବ ଗୁଡ଼ାକ ବିଲାତୀ ପାଣିରେ ବି ଭେଜାଲ ମିଶାଇଲେଣି। କିଛି ଧରୁନି।

ମାଧବ– ଆସ୍ତେ ଆସ୍ତେ ଧରିବ ଆଜ୍ଞା। କେଜାଣି ଭେଜାଲ ଯଦି ମିଶିଥାଏ ?

ହଟ– ଆମେ ତ ପୁଣି ମିଶାଉଛୁ, ସେମାନେ କାହିଁକି ନ ମିଶାଇବେ ? ଓଃ ମନେ ପଡ଼ିଗଲା। ଏ ମାସର କିସ୍ତିରେ ଦେଶରକ୍ଷା ପାଣ୍ଠିକୁ କିଛି ଦିଆଯାଇନି ମାଧବ। ମୋଟ ଲାଭରୁ ସାମାନ୍ୟ କିଛି ଦେଇଦେଲେ ଚଳିବ।

ମାଧବ– ଦେଶଭକ୍ତ ହେବାକୁ ହେଲେ ଏ ଗୋଟିଏ ବାଟ ଫିଟିଛି। ଏଣୁ ନିଅ, ତଣ୍ଟି ଚିପି ରକ୍ତ ଶୋଷି ନିଅ। ତେଣେ ଦିଅ। ଏଇ ନେଣ ଦେଣ ବେଉସାରେ ବଡ଼ ଗୋଟାଏ ଗୁମର ଅଛି।

ହଟ– ଅଛି କି ?

ମାଧବ– ଖୁବ ଅଛି (ଦୁହେଁ ହସିଲେ)

ହଟ– କାଲି ରାଜଧାନୀ ସଭାରେ ମନ୍ତ୍ରୀଙ୍କ ବେକ ଫୁଲହାରଟାକୁ ମାରୁଆଡ଼ି ପୁଅ କିଷନଦୟାଲ ଯେତେ ଚଢ଼ା ନିଲାମ ଡାକିଲା, ତାଠାରୁ ଦୁଇଗୁଣ ଚଢ଼ା ମୁଁ ଡାକିଲି, ବିଚାରା ମାରୁଆଡ଼ି ପୁଅର ଦମ ରହିଲା ନାହିଁ। ୫୦୧ ଟଙ୍କାରେ ମତେ ଛାଡ଼ିଦେଲା। ମନ୍ତ୍ରୀ ହସ ହସ ହୋଇ ଫୁଲ ହାରଟା ମୋ ଉପରକୁ ଫୋପାଡ଼ି ଦେଇ କହିଲେ– ସାବାସ ହଟକେଶ୍ୱର ସାହୁ, ଗଣ୍ଡମୂର୍ଖ ହେଲେ ବି ଦେଶଭକ୍ତି କଅଣ ତମେ ଜାଣ।

ମାଧବ– ଆପଣ ତ ଗଣ୍ଡମୂର୍ଖ ନୁହନ୍ତି। ମୂର୍ଖ ହୋଇଥିଲେ ଦିନବେଳେ ଏମିତି ଚାନ୍ଦ ଦେଖେଇ ଦିଅନ୍ତେ ?

ହଟ– (ହସି) ଆରେ ଚାନ୍ଦି କହ, ଚାନ୍ଦି କହ। ହଇହୋ ମାଧବ, ତମ ଗଳାଟା ଏମିତି ପଡ଼ିଯାଇଛି କାହିଁକି ?

ମାଧବ– ଆଜ୍ଞା ଥଣ୍ଡା ଧରିଛି। ଦେଖୁନାହାନ୍ତି, ମୁଣ୍ଡଠୁ ଗୋଡ଼ଯାଏ କିମିତି ଘୋଡ଼ିହୋଇ ବସିଛି।

ହଟ– ହଁ ସେଇଆତ ଦେଖୁଛି। ଏତେବେଳକୁ ଟିକିଏ ଧରି ଆସୁଛି। ତମକୁ ଥଣ୍ଡା, ମତେ ଭାରି ଗରମ। ଯେତେହେଲେ ବିଲାତି ନା, ତା' ରାଗ କେଉଁଠୁ ଛାଡ଼ିବ ? ତମକୁ ଥଣ୍ଡା ଧରିଛି, ଟିକିଏ ଏଥିରୁ ଚଳୁ।

ମାଧବ– ନାଇଁ ଆଜ୍ଞା, ସେ ଚଳିବ ନାହିଁ। ଚାକର ବାପୁଡ଼ା– ଟିକିଏ ଟିକିଏ ଏଥିରୁ ଧରିଲେ ନିତି ହାତ ବଢ଼େଇବି, ତେଣିକି ଆଉ ଥଳକୂଳ ପାଇବ ନାହିଁ। ଗୋଦାମ ଘର ଖୁବ୍ ସନ୍ତସନ୍ତିଆ। ଅଶୀ ଟିଣ ବାଦାମ ତେଲରୁ ପାଞ୍ଚ ଦଶଟି ଫିଟିଯାଇଛି। ଏତେ ସନ୍ତସନ୍ତିଆ ଯେ ଭାରି ଶୀତ କରୁଛି। ହେମାଳ ହୋଇଯାଉଛି ଦିହମୁଣ୍ଡ।

ହଟ– ହବାର କଥା। ଚୋରାମାଲ, ସେଥିପାଇଁ ଗୋଦାମ ଘରେ ପକାଇ ରଖିଛି। ତମେ ତ ସବୁ ଜାଣ, ଯେତେବେଳେ ଲଢ଼େଇଟା ଆହୁରି ଘମାଘୋଟ ଲାଗିଯିବ ଗୋଟାଏ ଗୋଟାଏ ଟିଣ କେତେ ଗରମରେ ଉପରକୁ ବାହାରି ଆସିବ ଦେଖିବ ମାଧବ।

ମାଧବ– ମୁଁ ଆପଣଙ୍କର ବିଶ୍ୱାସୀ। ଅନ୍ନ ଖାଉଛି। ଆହୁରି କିଳାପୋତେଇ ମାଲ ନେଇ ଆସନ୍ତୁ। କିଛି ପରୁଆ ନାହିଁ। ତେବେ କଅଣ କି, ସରକାର ଗୋଟାଏ ଆଇନ କରିଛନ୍ତି। ସନ୍ଦେହରେ ସମସ୍ତଙ୍କୁ ଧରି ନେଇଯିବେ, ସେତିକି ଯାହା ଭୟ।

ହଟ– ଆରେ ଗୁଳିମାର ସରକାରଙ୍କୁ। ମୁଁ କ'ଣ ମିଛରେ ମନ୍ତ୍ରୀବେକ ଫୁଲହାରଟା ୫୦୧

ଟଙ୍କାରେ ନେଇଛି ? ପୁଣି ମାସକୁ ମାସ ଦେଶରକ୍ଷା ପାଣ୍ଠିକୁ ଦାନ ଦେଉଛି ? ସରକାରଙ୍କର କଅଣ ଟିକିଏ ମୂଲାଜିଆ ନାହିଁ ?

ମାଧବ– ତାହା ନୁହେଁ କଣ ?

ହଟ– ତେବେ ସିଆଡ଼େ ମୋର ଭୟ ନାହିଁ। ଲୟଟା ଏଇ ପୁଅଝିଅଙ୍କ ଆଡ଼େ। ସେ ଦୁଇଟା ବ୍ୟବସାୟ ବୁଝିଲେ ନାହିଁ। ଦି ପଇସା କିମିତି କୁଆଡୁ ଆସୁଛି ଜାଣିଲେ ନାହିଁ। ସମସ୍ତଙ୍କୁ ଦି ଦି ଅକ୍ଷର ପଢ଼େଇଲି। ହେଲେ ମୋ ବୁଦ୍ଧି କାହା ପାଖରେ ଦେଖିଲି ନାହିଁ।

ମାଧବ– ଆପଣଙ୍କ ବୁଦ୍ଧି ଆଉ କାହା ପାଖରେ ଥିବ ବୋଲି ଭାବୁଛନ୍ତି ? ପୁଲିସ ଏତେ ବୁଦ୍ଧିଆ। ପୁଲିସ୍‌ଙ୍କଠୁ ଏବେ କୁକୁର ବି ବୁଦ୍ଧିଆ ହେଲାଣି। ଶୁଙ୍ଘି ଶୁଙ୍ଘି ଖୁନ ଖିଲାପ ଧରୁଛି। ଆପଣ କିନ୍ତୁ ଏ କୁକୁରଠୁ ଟିକିଏ ଶ୍ରେଷ୍ଠ।

ହଟ– କଅଣ ମୁଁ କୁକୁର ?

ମାଧବ– ବିଲାତି ଏତେବେଳକୁ ଧରିଲା ନା କଅଣ ? ଯାହା କହ, ଏଥିରେ ଭେଜାଲ ମିଶି ନାହିଁ। ଏ ପରା ଶହେବର୍ଷ ତଳର ଗୋଦାମଖାନା ଭିତରେ ସଡ଼ି ପଚି ରହିଥିବା ବିଲାତି ?

ହଟ– ଠିକ୍ କହିଛ।

ମାଧବ– ଶୁଣୁଛି ପୁଅ କଅଣ ଯୁଦ୍ଧକୁ ଯିବାପାଇଁ ଅଡ଼ି ବସିଛି।

ହଟ– ଯାଆନ୍ତା ଭଲା। କୋଉ ଏବେ ସତେ ହାଣ ମୁହଁକୁ ଯାଉଛି ? ସାହୁଘର ପୁଅ, ମୁଣ୍ଡରେ ବୁଦ୍ଧିଥିଲେ ସବୁବେଳେ ପଛୁଆ ରହି ଖାଇପିଇ ମଉଜ ମଜଲିସ୍ କରି ପୁଣି ଫେରିଆସିବ। ଆଗୁଆ ଘାଟୀକି କାହିଁକି ଯିବ ? ବିପଦ ଆପଦ ଦେଖିଲେ ପିଠିକୁ ପଛୁଆ କରି ଦଉଡ଼ି ଦଉଡ଼ି ଆସି ଏଠି ପହଞ୍ଚିଯିବ। ଦେ... ଦଉଡ଼ (ହସିଲେ)

ମାଧବ– ସତ କଥା ଏକା। ଯୁଦ୍ଧଭୂଇଁରୁ ଦଉଡ଼ି ଦଉଡ଼ି ଆସିବ ପୁଅ, ଗାଁ ଖେଳପଡ଼ିଆରୁ ଯେମିତି ପିଲାଏ ହାରିଗଲେ ବାଲି ଫୋପଡ଼ା ଫୋପଡ଼ି ହୋଇ ଧାଇଁ ଆସନ୍ତି।

ହଟ– ମାଧବ ତମେ ଥଟ୍ଟା କରୁଛ ?

ମାଧବ– ଥଟ୍ଟା କେତେବେଳେ କଲି ?

ହଟ– ସେମିତି ଶୁଭିଲା।

ମାଧବ– ସେମିତି ଶୁଭେ। ମନଟା ଆପଣଙ୍କର ଦମ୍ଭିଲା ଅଛି ନା, ଏ ଯେଉଁ ଉପୁରି ଲାଭ, ଟଙ୍କାକେ ଟଙ୍କାଏ, ସେଥିପାଇଁ ସବୁ ଏମିତି ଶୁଭୁଛି। ଆପଣଙ୍କର କାନଟା କିମିତି ଦୁର୍ବଳ ମନେ ହେଉଛି। କାନଟା ପରିଷ୍କାର କରନ୍ତୁ।

ହଟ– କାନ ପରିଷ୍କାର କରିବି ? ଏ କଅଣ କହୁଛି ମାଧବ ? ପୁଣି ଥଟ୍ଟା ?

ମାଧବ– ତା ସଙ୍ଗେ ହୃଦୟ ପରିଷ୍କାର କରନ୍ତୁ। ମନ ପରିଷ୍କାର କରନ୍ତୁ। ଆଜିଯାଏ ଦେଶଦ୍ରୋହୀତାର ଯେ କଳଙ୍କ ନେଇ ଖାଦ୍ୟ ଦ୍ରବ୍ୟରେ ବିଷ ମିଶାଇ ମଣିଷ ମାରିବା ଦୋଷ କରିଥିଲେ, ଶହ ଶହ ଶିଶୁ, ଗର୍ଭବତୀ ସ୍ତ୍ରୀ, ସୁସ୍ଥ ମଣିଷ, ଯୁବକ ଯୁବତୀଙ୍କୁ ଏଇ ସବୁ ଭେଜାଲ ଜିନିଷ ଖୁଆଇ ଏ ଜାତିର ମେରୁଦଣ୍ଡକୁ ଭାଙ୍ଗି ଦେଇଛନ୍ତି, ତାହାର ପର୍ବତ ପ୍ରମାଣ ପାପ...

ହଟ– (ଉତ୍ତ୍ୟକ୍ତ ହୋଇ) କିଏ ତମେ ?

ମାଧବ– କାହିଁକି ସେଇ ତିନିମାସିଆ ପୁରୁଣା ଗୁମାସ୍ତା।

ହଟ– ହଁ ସେଇକଥା କହ। ବିଲାତି ମତେ ଏବେ ଖୁବ ଜୋରରେ ଧରିଛି। ନଇଲେ ଚାକର ମାଧବର କଥାଗୁଡ଼ାକ ଏମିତି କାହିଁକି ଶୁଭନ୍ତା ? ମାଧବ, ମିଶାଅ, ଯେତେ ପାର ମିଶାଅ। ମୋର ଲାଭ ଦରକାର, କିଏ ମଲା କି ଗଲା ମୋର କଣ ଅଛି ?

ମାଧବ– କିଛି ନାହିଁ ଆଜ୍ଞା, ଖୁବ୍ ଧରିଛି, ବିଲାତି ନା ? ତିନିମାସ ହେଲା ଆପଣଙ୍କର ଅଇଁଠା ଖାଇ ଗୋଦାମ ଘରର ଅନ୍ଦିସନ୍ଧି...

ହଟ– କଅଣ କହିଲ ?

(କିଏ ଜଣେ ସବ୍ୟସ୍ତରେ ଦଉଡ଼ି ଆସି କହିଲେ) ସର୍ବନାଶ ! ପଳାନ୍ତୁ ସାହୁଏ। ପୋଲିସ ଘେରାଉ କରିଛି।

ହଟ– ପୋଲିସ୍ ! (ଭୟଚକିତ ହୋଇପଡ଼ିଲେ)

[ ଦେହରୁ ଘୋଡ଼ିହୋଇଥିବା ଲୁଗା କାଢ଼ି ପୋଲିସ ବେଶରେ ମାଧବ ଛିଡ଼ା ହୋଇଗଲେ। ]

ମାଧବ– ନାଁ ପଳାଇବାକୁ ଚେଷ୍ଟା କରନ୍ତୁ ନାହିଁ। ମତେ ଗୁଳି କରି ଦେବାକୁ ଆଦେଶ ଅଛି। ତିନିମାସ ହେଲା ମୁଁ ଗୁପ୍ତରେ ଏଇ ଘରେ ରହି ଗୋଦାମର ସବୁ ଚୋରା ଜିନିଷ ଠାବ କରିଛି। ଯଦି ପଳାଇବାକୁ ଚେଷ୍ଟା କରନ୍ତି, ତେବେ ଗୁଳି କରିବି। ହଁ, ଗୁଳି କରିବି।

ହଟ– ତମେ ମାଧବ ! (ଥରୁଥିଲେ)

(ଚାରିଆଡ଼େ ବନ୍ଦେ ମାତରଂ ଧ୍ୱନି ଉଛୁଳି ପଡ଼ିଲା)

ମାଧବ– ନରରାକ୍ଷସ ହଟକେଶ୍ୱର ସାହୁ ! ଥରେ ଚାହଁ, ନିଜ ପୁଅ ଯେଉଁଠି ଆତ୍ମ ବଳିଦାନ ପାଇଁ ଯୁଦ୍ଧ କ୍ଷେତ୍ରକୁ ପ୍ରସ୍ତୁତ ହେଉଛି ଓ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଜନତା ପାଗଳ ହୋଇ ପଡୁଛି, ସେଠି ମଣିଷ ମାରିବା ପାଇଁ ଏ ବ୍ୟବସାୟ କରି ଫୁଲ ମାଳକୁ ୫୦୧ ଟଙ୍କାରେ କିଣି ବଡ଼ାଇ ଦେଖାଇବାର ସମୟ ଚାଲିଯାଇଛି।

[ ଜଣେ ସିପାହୀ ଭୟରେ ଥରୁଥିବା ହଟକେଶ୍ୱରଙ୍କୁ ହାତକଡ଼ା ପିନ୍ଧାଇ ଦେଲେ। ଏତିକି ବେଳେ ହଟକେଶ୍ୱରଙ୍କ ପୁଅ ଯବାନ ଯୁବକ ଯୁବତୀ ଗହଣରେ ଆସି ମଞ୍ଚ ଉପରେ ମଥାରେ ତିଳକ ଗ୍ରହଣ କଲେ। ଚତୁର୍ଦ୍ଦିଗରେ ଝରିପଡ଼ିଲା– ଭାରତର ଯବାନ କୀ ଜୟ, ଭାରତ ମାତା କୀ ଜୟ। ]

ମହେନ୍ଦ୍ର– ବାପା ?

ହଟ– (ସ୍ତବ୍ଧ ରହିଗଲେ)

ମହେନ୍ଦ୍ର– ମୁଁ ଜାଣିଥିଲି ବାପା, ଦିନେ ଏହା ହିଁ ଘଟିବ।

ହଟ– ମୁଁ ଭୁଲ୍ କରିଛି। ମତେ କିଏ କ୍ଷମା କରିବ ?

[ ବନ୍ଧନଯୁକ୍ତ ହାତରେ ହଟକେଶ୍ୱର ପୁଅର କପାଳ ସ୍ପର୍ଶ କଲେ; ଧୀରେ ଧୀରେ ନଇଁ ପଡ଼ିଲେ ଅବଶ ଭାବରେ ପୁଅର ଗୋଡ଼ ଉପରେ, ଜନତା ଧ୍ୱନି ତୋଳିଲା– ବନ୍ଦେ ମାତରଂ, ବନ୍ଦେ ମାତରଂ। ଯବନିକା ଓହ୍ଲାଇ ଆସିଲା। ]

## ଦ୍ୱିତୀୟ ଦୃଶ୍ୟ

[ ପଥ– ପଥ ଉପରେ ଚାଲି ଆସୁଥିଲେ କେତେଗୁଡ଼ିଏ ସ୍କୁଲ କଲେଜ ଛାତ୍ର। ପଢ଼ିବାର ସାମଗ୍ରୀ ରହିଛି ସେମାନଙ୍କ ହାତରେ। ଛାତ୍ରଛାତ୍ରୀ ସମ୍ମିଳିତ ଏଇ ଶୋଭାଯାତ୍ରାଟି ମଞ୍ଚ ଉପରେ ସ୍ଥିର ରହିଗଲା। ]

ବିକାଶ– ନା ଭାଇମାନେ ତାହା ହେବ ନାହିଁ। ଏତେବେଳେ କୌଣସି ପ୍ରକାର ଗଣ୍ଡଗୋଳ ସୃଷ୍ଟି କରିବା ଠିକ୍ ହେବ ନାହିଁ।

ବସନ୍ତ– ତା ହେବ ନାହିଁ। ବିପ୍ଳବର ମୁହୂର୍ତ୍ତ ଆସିଛି। ଆମେ ଆମର ଦାବୀ ହାସଲ କରିନେବୁ।

ବିକାଶ– କି ଦାବୀ ?

ବସନ୍ତ– ଆମର ଦାବୀ ବହୁତ, ତେବେ ପ୍ରଥମ ଦାବୀ ହେଉଛି–

ସମସ୍ତେ– କଅଣ ସେ ଦାବୀ ?

ବସନ୍ତ– ଆମେ ପରୀକ୍ଷା ବର୍ଜନ କରିବୁ।

ବାସନ୍ତୀ– କାରଣ ?

ବସନ୍ତ– ଆମର ମନ ସ୍ଥିର ନାହିଁ। ଛାତ୍ର ସମାଜର ବହୁତ କର୍ତ୍ତବ୍ୟ ରହିଛି, କିନ୍ତୁ ଆମକୁ ପରୀକ୍ଷା ଭିତରେ ବାନ୍ଧି ଦେଲେ ଆମେ ସେସବୁ ତୁଲେଇ ପାରିବୁ ନାହିଁ।

ବିକାଶ– ପରୀକ୍ଷା ଏକ କର୍ତ୍ତବ୍ୟ। ପରୀକ୍ଷା ବର୍ଜନ ଆମର କର୍ତ୍ତବ୍ୟ ନୁହେଁ। ଯବାନମାନେ ଯାଉଛନ୍ତି ଯୁଦ୍ଧ କ୍ଷେତ୍ରକୁ ପ୍ରାଣ ବଳି ଦେଇ ଶତ୍ରୁ ସହିତ ଲଢ଼ିବେ। ଆମେ ଯେ ଯେଉଁଠି ଅଛୁ ଆମର କର୍ତ୍ତବ୍ୟ କରିଯିବୁ। ତେଣୁ ଏ ପ୍ରସ୍ତାବ ନିନ୍ଦନୀୟ।

ବାସନ୍ତୀ– ଆପଣ ଠିକ୍ କହିଛନ୍ତି।

ବସନ୍ତ– ଏ ପ୍ରସ୍ତାବ ସମସ୍ତେ ଗ୍ରହଣ କରିବେ ନାହିଁ। ଆମେ ଧର୍ମଘଟ କରିବୁ।

ବାସନ୍ତୀ– ଅସମ୍ଭବ। ବସନ୍ତ, ତମେ ଓ ତମର ଅନୁଚର ଦେଶଦ୍ରୋହୀ। ଜାତିର ଏ ଜୀବନ ମରଣ ବେଳେ ତୁମେ ଧର୍ମଘଟ କରିବ ? ବହିଃଶତ୍ରୁ ଓ ଅନ୍ତଃଶତ୍ରୁକୁ ସୁବିଧା ଦେବ ଆମର ସର୍ବନାଶ କରିବାକୁ ?

ବିକାଶ– ତୁମର ଏ ଆତ୍ମଘାତୀ ନୀତି ଛାତ୍ର ସମାଜକୁ ବିପନ୍ନ କରିବ। ସାବଧାନ ! ଯେତେବେଳେ ଦେଶ ଚାହୁଁଛି ହଜାର ହଜାର ଶାସକ, ଇଞ୍ଜିନିୟର, ଡାକ୍ତର, କାରିଗର, କେତେ କଅଣ; ସେତେବେଳେ ତୁମେ ଓ ତୁମର ଅନୁଗାମୀମାନେ ସ୍ଲୋଗାନ୍ ଦେଉଛନ୍ତି ଧର୍ମଘଟ ? ପରୀକ୍ଷାବର୍ଜନ ? ଧିକ୍ ତୁମମାନଙ୍କୁ !

ବସନ୍ତ– ଧିକ୍କାର ଦିଅ ନାହିଁ ବିକାଶ। ଏ ଦେଶରେ ତୁମେ ହିଁ ଏକା ଦେଶଭକ୍ତ ନୁହଁ। ନେଫାରେ ରଣତାଣ୍ଡବ ଚାଲିଛି। ହିମାଳୟ ଉପରେ ଶତ୍ରୁ। ଆମ ଧମନୀରେ କ'ଣ ଉଷ୍ଣ ରକ୍ତ ନାହିଁ ଯେ ଆମେ ସ୍କୁଲ କଲେଜର ଘର ଭିତରେ ବନ୍ଦ ହୋଇ ପ୍ରଶ୍ନ ପତ୍ରର ଉତ୍ତର ଲେଖୁଥିବୁ ?

ସମସ୍ତେ– (ହସିଲେ)

ବିକାଶ– ଏ କି ହାସ୍ୟାସ୍ପଦ ଯୁକ୍ତି ? ଯୁଦ୍ଧ ହେଉଛି ଫ୍ରଣ୍ଟରେ, ଡାକରା ପଡ଼ିଲେ ଆମେ ଯିବା। ମାତ୍ର ଡାକରା ଆଗରୁ ଛାତ୍ର ଭାବରେ ଆମର ମୌଳିକ କର୍ତ୍ତବ୍ୟ ଅଧ୍ୟୟନ ଓ ପରୀକ୍ଷାକୁ ଆମେ ଭୁଲିଯିବା କିପରି ?

ବସନ୍ତ– ତାହାହେଲେ ଏ ଗୋଷ୍ଠୀ ସହିତ ମୁଁ ରହିବି ନାହିଁ। ମୁଁ ଚାହେଁ ବିପ୍ଳବ, ଆଉ ଏଇ ହେଉଛି ସୁଯୋଗ, ମୁଁ ସୃଷ୍ଟି କରିବି ବିଭେଦ। ମୁଁ ଚାଲିଲି ମୋ ପନ୍ଥାରେ... (ବସନ୍ତ ନିଷ୍କ୍ରାନ୍ତ ହୋଇଯିବା।)

ବାସନ୍ତୀ– ଦେଶଦ୍ରୋହୀ ଶତ୍ରୁ ତୁମେ ଯାଅ। ତୁମର ନେତା ଅନ୍ୟତ୍ର ତୁମର ଆନୁଗତ୍ୟ ଅନ୍ୟ ଦେଶ ପାଖରେ। ତୁମେ ଯାଅ। ବୋଲ, ଭାରତ ମାତା କୀ ଜୟ, ଜୟ ଭାରତର ଯବାନ କୀ ଜୟ। (ସମସ୍ତେ ନିଷ୍କ୍ରାନ୍ତ, କେତେଗୁଡ଼ାଏ ପ୍ରଚାର ପତ୍ର ଧରି ବସନ୍ତ ପୁଣି ଫେରି ଆସିଲା)

ବସନ୍ତ– ଏଇ ପ୍ରଚାର ପତ୍ରଗୁଡ଼ିକ ବାଣ୍ଟିଦେବି ଗୋପନରେ... ଏଥିରେ ଅଛି ଧର୍ମଘଟ କର, ଅଚଳ ଅବସ୍ଥା ସୃଷ୍ଟି କର। କିନ୍ତୁ ମୋର ସହଯୋଗୀମାନେ କାହାନ୍ତି ? ମୁଁ କଅଣ ଏକୁଟିଆ ?

[ ସର୍ବାଙ୍ଗ ଲାଲ ବସ୍ତ୍ରରେ ଆବୃତ। ମୁହଁ ଉପରେ ଲାଲ କନାର ଏକ ମୁଖା। କେବଳ ଆଖି ଦୁଇଟି ପାଖରେ ଦୁଇଟି ଗୋଲାକାର ରନ୍ଧ୍ର। ବଳିଷ୍ଠ ଶରୀର ଓ ରକ୍ତସମ ବସ୍ତ୍ରାବୃତ ଏଇ ଲୋକଟି ନେପଥ୍ୟରୁ ହସି ହସି ଅସ୍ଥିର ପଦକ୍ଷେପରେ ରଙ୍ଗଭୂମି ଉପରକୁ ମାଡ଼ି ଆସିଲା। ଏହାର ନାମ ଲାଲ ଶତ୍ରୁ। ]

ଶତ୍ରୁ– ହାଃ–ହାଃ–ହାଃ, କିଏ କହେ ତମେ ଏକୁଟିଆ ?

ବସନ୍ତ– କିଏ ?

ଶତ୍ରୁ– ତମେ ମତେ ଚିହ୍ନିନ ? ମତେ ଶରୀରରେ ବୋଧହୁଏ ଦେଖି ନ ଥିଲ। ଏଇ ପ୍ରଥମ ଥର ତମେ ମତେ ଦେହଧାରୀ ମଣିଷ ଭାବରେ ଦେଖିଲ। ଏଇଟା ତୁମର ସୌଭାଗ୍ୟ ବୋଲି କହିବି।

ବସନ୍ତ– କିନ୍ତୁ ତୁମେ କିଏ ? ତୁମର ନାମ କଅଣ ?

ଶତ୍ରୁ– ମୁଁ କିଏ ? ମୁଁ ତ ଗୋଟାଏ ମତବାଦ, ମୁଁ ଗୋଟାଏ ଭାବନା, ମୁଁ ନିଃସ୍ୱର ସମ୍ବଳ, ଦୁର୍ବଳର ବଳ, ମୋରି ପ୍ରଚାରିତ ଭାବନା ଯୋଗୁ ଏ ପୃଥିବୀ ଦୁଇ ଭାଗରେ ବିଭକ୍ତ।

ବସନ୍ତ– କିନ୍ତୁ ମୋ ପାଖରେ ତମର କି କାମ ?

ଶତ୍ରୁ– ଓଃ, ତମେ ଯେ ମହାନ୍ କର୍ତ୍ତବ୍ୟ କରିବାକୁ ଯାଉଥିଲ, ସେଥିରେ ବାଧା ଦେଲି କି ?

ବସନ୍ତ– ନିଶ୍ଚୟ ବାଧା ଦେଲ।

ଶତ୍ରୁ– ଭୁଲ୍ କହିଲ ଯୁବକ। ତୁମେ ଯାହା କରିବାକୁ ଯାଉଥିଲ, ଯେଉଁ ଚିନ୍ତାରେ ଉନ୍ମତ୍ତ ହୋଇ ଏଇ କେତେ ମୁହୂର୍ତ୍ତ ପୂର୍ବରୁ ସାଙ୍ଗସାଥୀମାନଙ୍କଠାରୁ ଦେଶଦ୍ରୋହୀ ଆଖ୍ୟା ପାଇଗଲ; ମୁଁ ସେହି ଚିନ୍ତାର ପ୍ରସାର କରେ। ମୁଁ ସେହି ଭାବନାକୁ ଆଗେଇ ନିଏ, ତେଣୁ ତୁମେ ମୋର ସାଥୀ, କମ୍‌ରେଡ୍।

ବସନ୍ତ– ମୁଁ ଯାଉଥିଲି ପ୍ରଚାରପତ୍ର ବାଣ୍ଟି ଛାତ୍ରସମାଜ ଭିତରେ ଧର୍ମଘଟ, ପରୀକ୍ଷାବର୍ଜନ ପ୍ରଭୃତି ଆନ୍ଦୋଳନ ସୃଷ୍ଟି କରିବାକୁ।

ଶତ୍ରୁ– ବେଶ୍, ଆମ ଭାବନାର ପ୍ରଥମ ପ୍ରଭାତରୁ ଏଇଆ ତ ଆମର ଅସ୍ତ୍ର ହୋଇ ଆସିଛି। ଦେଶର ପ୍ରଗତି, ଶାନ୍ତି ଓ ସୁସ୍ଥତାକୁ ଆମେ ଦୁଇ ଚକ୍ଷୁରେ ଦେଖିପାରୁନା। ଆମର ଦେହ ଜଳିଉଠେ। ଆମେ ଚାହୁଁ ଧର୍ମଘଟ, ବିଭେଦ ଓ ଅଶାନ୍ତି।

ବସନ୍ତ– ତେବେ ତୁମେ ତ ମତେ ସାହାଯ୍ୟ କରିପାରିବ ?

ଶତ୍ରୁ– ହାଃ, ହାଃ, ନିଶ୍ଚୟ। ମତେ ସାହାଯ୍ୟ ମାଗିବା ପୂର୍ବରୁ ତୁମ ମନ ଭିତରେ ମୁଁ ଆନ୍ଦୋଳନ, ବିପ୍ଳବ ଓ ବିଦ୍ରୋହର ବହ୍ନି ସୃଷ୍ଟି କରିସାରିଛି।

ବସନ୍ତ– ମାତ୍ର ମନଟା କିମିତି ଦବିଯାଉଛି। ମୋ ଦେଶରେ ଯେତେବେଳେ ଏତେ ସଙ୍କଟ, ସେତେବେଳେ ଏମିତି ଭଙ୍ଗାରୁଜା କାମ ସୃଷ୍ଟି କରିବା ଠିକ୍ ହେବ କି ?

ଶତ୍ରୁ– ତାହାହେଲେ ମୁଁ ଦେଖୁଛି, ତୁମେ ଭଲଭାବରେ ଦୀକ୍ଷା ଗ୍ରହଣ କରିନ।

ବସନ୍ତ– ସେ ଦୀକ୍ଷା କଅଣ ?

ଶତ୍ରୁ– କେବଳ ଅଗ୍ନିମନ୍ତ୍ର। ସବୁଆଡ଼େ ଜାଳିପୋଡ଼ି ଦେବାର ମନ୍ତ୍ର।

ବସନ୍ତ– ମତେ କିମିତି ଡର ଲାଗୁଛି।

ଶତ୍ରୁ– ତାହାହେଲେ ଯୁବକ ତୁମେ କମରେଡ୍ ହୋଇପାରିବନି। ତୁମେ ଶେଷକୁ ପୁଞ୍ଜିପତିର ଦଲାଲ ହୋଇଯିବ।

ବସନ୍ତ– ମୁଁ କିନ୍ତୁ ଦେଖୁଛି ତୁମ ଚେହେରା, କଥାବାର୍ତ୍ତା ଓ କାର୍ଯ୍ୟରେ ହିଂସ୍ରଭାବ।

ଶତ୍ରୁ– ହିଂସ୍ର ହୋଇ ନ ଉଠିଲେ କାର୍ଯ୍ୟୋଦ୍ଧାର ହେବନି କମରେଡ୍।

ବସନ୍ତ– ଶାନ୍ତିରେ ହୋଇପାରିବ ନି।

ଶତ୍ରୁ– ପାଗଳ, ନା ହୋଇପାରିବ ନି।

ବସନ୍ତ– ଯୋଜନାରେ ହୋଇପାରିବ ନି ?

ଶତ୍ରୁ– ଯୋଜନାରେ ହଠାତ୍ ବିପ୍ଳବ ଆସେନା। ଆମେ ଚାହୁଁ ହଠାତ୍ ଏକ ବିପର୍ଯ୍ୟୟ– ଯାହା ଏ ମାଟି, ଏ ଆକାଶକୁ ରକ୍ତାକ୍ତ କରିଦେବ।

ବସନ୍ତ– ରକ୍ତାକ୍ତ ?

ଶତ୍ରୁ– ହଁ, ରକ୍ତାତ।

ବସନ୍ତ– କିନ୍ତୁ ଏ ଦେଶ ତ ରକ୍ତ ଚାହେଁ ନାହିଁ, କାହାର ସୀମା ଚାହେଁନି, କାହା ରାଜ୍ୟ ପ୍ରତି ଏହାର ଲୋଲୁପ ଦୃଷ୍ଟି ନାହିଁ।

ଶତ୍ରୁ– ଏ ଦେଶର ନ ଥାଇପାରେ, ମାତ୍ର ଅନ୍ୟ ଦେଶ ଚାହେଁ ତାର ସୀମା ସେ ବଢ଼େଇବ। ତା'ର ଅଗଣିତ ଜନସମୁଦ୍ରକୁ ସେ ଖାଦ୍ୟ ଯୋଗାଇବ। ଏ ବଢ଼େଇବାରେ ତାହାର ପାପ ନାହିଁ।

ବସନ୍ତ– ଯାକୁ ଇତିହାସ କହିଛି ସାମ୍ରାଜ୍ୟଲିପ୍‌ସା, ଏଥିପାଇଁ ଏ ପୃଥିବୀରେ କେତେ ରକ୍ତର ସୁଅ ଛୁଟିଛି।

ଶତ୍ରୁ– ହଁ ଆମ୍ ଅଧିକାର ପାଇଁ ଆମେ ଏଇ ରକ୍ତର ସ୍ୱପ୍ନ ଦେଖିଆସୁଛୁ, ତୁମକୁ ବି ଦେଖିବାକୁ ହେବ।

ବସନ୍ତ– ମୋ ମନ ମାନୁନାହିଁ ଏ ତଥ୍ୟ ଉପରେ। ତା'ଛଡ଼ା ଯେଉଁ ଦେଶରେ ମୁଁ ଜନ୍ମ ନେଇଛି, ତାପ୍ରତି ଆନୁଗତ୍ୟ ଦେଖାଇବା ମୋର କର୍ତ୍ତବ୍ୟ।

ଶତ୍ରୁ– ହାଃ–ହାଃ– ଦେଶ ଗୋଟାଏ ଭୂଖଣ୍ଡ, ଭୂଗୋଳ– ପୃଥିବୀକୁ ଚାହଁ। ଯେଉଁଆଡୁ ଲାଲ ସୂର୍ଯ୍ୟ ଉଠି ଆସୁଛି ସେଇ ଆଡ଼କୁ ଚାହଁ।

ବସନ୍ତ– ସୂର୍ଯ୍ୟ ସବୁଆଡ଼େ ସମାନ।

ଶତ୍ରୁ– ହାଃ, ହାଃ, ଯୁବକ, ସୂର୍ଯ୍ୟ ସବୁଆଡ଼େ ସମାନ ନୁହେଁ। ତୁମେ ଦେଖିନ ସେ ଲାଲ ସୂର୍ଯ୍ୟକୁ। ତୁମ ଧର୍ମଘଟ ଆନ୍ଦୋଳନ କୁଆଡ଼େ ଗଲା ?

ବସନ୍ତ– ଗୋଟାଏ ଖିଆଲ, ଗୋଟାଏ ଉନ୍ମାଦନାରେ ମୁଁ ଏସବୁ କହିଦେଉଥିଲି। ମାତ୍ର ମୋ ଜନ୍ମଭୂମିର ଏ ବିପଦ ସମୟରେ ଏସବୁ କରିପାରିବନି। ବିକାଶ ଠିକ କହୁଥିଲା। ମୋର ମନେ ହେଉଛି, ମୁଁ ଏପର୍ଯ୍ୟନ୍ତ ଦିଗଭ୍ରାନ୍ତ ଥିଲି।

ଶତ୍ରୁ– ତୁମର ଦେଶ କାହିଁ ?

ବସନ୍ତ– ପୁଣ୍ୟଭୂମି ଭାରତ ବର୍ଷ।

ଶତ୍ରୁ– ତୁମର ନେତୃତ୍ୱ କାହିଁ ?

ବସନ୍ତ– ବୁଦ୍ଧ, ଗାନ୍ଧୀ, ରବୀନ୍ଦ୍ରର ନେତୃତ୍ୱ।

ଶତ୍ରୁ– ସେ ତ ଅତୀତ।

ବସନ୍ତ– ବର୍ତ୍ତମାନର ନେତୃତ୍ୱ ଶାନ୍ତି ମୈତ୍ରୀରେ ବିଶ୍ୱାସୀ ସଦା ଜାଗ୍ରତ ଭାରତର ନେତୃତ୍ୱ।

ଶତ୍ରୁ– ଓଃ, ତୁମେ ଚୁପ କର ଯୁବକ। ଇଚ୍ଛା କଲେ ମୁଁ ଏଇ ମୁହୂର୍ତ୍ତରେ ତୁମର ଏ ଦୁର୍ଜୟା କଣ୍ଠସ୍ୱରକୁ ଚାପି ଧରି ତୁମକୁ ଶେଷ କରିଦେବି।

ବସନ୍ତ– ତୁମେ କିଏ ? ରାକ୍ଷସ, ରକ୍ତ ଲୋଲୁପ ପିଶାଚ, ତୁମେ ଚାଲିଯାଅ। ମୋ ଦେଶ ଓ ନେତୃତ୍ୱକୁ ନିନ୍ଦା କରିବାର ଅଧିକାର ତୁମକୁ କିଏ ଦେଲା ?

ଶତ୍ରୁ– ଅଧିକାର କିଏ ଦିଏନି, ଅଧିକାର ସାବ୍ୟସ୍ତ କରିବାକୁ ହୁଏ ନିଜ ଶକ୍ତିରେ।

ବସନ୍ତ– ତୁମେ ଚାଲିଯାଅ...

[ ଶତ୍ରୁ ଧୀରେ ବସନ୍ତର ଗଳା ଆଡ଼କୁ ହାତ ବଢ଼ାଉଥିଲେ ]

ଶତ୍ରୁ– ତୁମେ ଦୀକ୍ଷା ପାଇନ, ଉପଯୁକ୍ତ ଭାବରେ ଦୀକ୍ଷା ପାଇଥିଲେ ତୁମେ ଏ ପ୍ରଳାପ କରନ୍ତ ନାହିଁ। ଆଗରେ ଏଇ ମୂର୍ତ୍ତିମାନ ଲାଲ ସୂର୍ଯ୍ୟ, ଲାଲ ଶତ୍ରୁକୁ ଦେଖି ବି ତୁମେ ଏପରି ପ୍ରଳାପ କରନ୍ତ ନାହିଁ।

ବସନ୍ତ– (ଭୟରେ) ତୁମେ କଅଣ ମତେ ହତ୍ୟା କରିବ ?

ଶତ୍ରୁ– ରକ୍ତ ଓ ହତ୍ୟା– ଆଉ ସବୁ ଭାଙ୍ଗି ଛିନ୍ନ ଭିନ୍ନ କରିବାର ଆଦିମ ପ୍ରବୃତ୍ତି ଆମର ସହଜାତ, ଜାଣ ଯୁବକ ?

ବସନ୍ତ– ତୁମେ ଚାଲିଯାଅ, ତୁମେ ଦେଶର ଶତ୍ରୁ, ତୁମେ ପଞ୍ଚମ ବାହିନୀ, ତୁମେ ଆମ ଇତିହାସ, ସଂସ୍କୃତି ଓ ସଭ୍ୟତାର ବୈରୀ। ତୁମେ ଯାଅ, ଓଃ ତୁମେ ଯାଅ।

[ ବାହାରେ କୋଳାହଳ; ବିକାଶ ବାସନ୍ତୀ ସହିତ ସେ ଶୋଭାଯାତ୍ରା ପୁଣି ଥରେ ମଞ୍ଚ ଉପରକୁ ଆସିଲା, ଏତିକିବେଳେ ଲାଲଶତ୍ରୁ କ୍ଷିପ୍ରଗତିରେ ସେଠାରୁ ପଳାଇ ଯାଇଛି। ବସନ୍ତ ତଟସ୍ଥ ରହିଯାଇଛି ]

ବିକାଶ– କଅଣ ହେଲା ବସନ୍ତ ?

ବସନ୍ତ– ଶତ୍ରୁ।

ବିକାଶ– କେଉଁଠି ? କିଏ ?

ବସନ୍ତ– ପାଖରେ ଥିଲା, ଏଇଠି ମତେ ହତ୍ୟା କରିବାକୁ ଆସୁଥିଲା।

ବାସନ୍ତୀ– ବସନ୍ତ ବାବୁ ଆପଣ ପ୍ରକୃତିସ୍ଥ ହୁଅନ୍ତୁ। ଏଗୁଡ଼ାକ କଅଣ ?

ବସନ୍ତ– ମତେ ରକ୍ଷାକର, ପ୍ରଚାରପତ୍ର ବାଣ୍ଟିବାକୁ ଯାଉଥିଲି।

ବିକାଶ– ତୁମ ଭୁଲ ଭାଙ୍ଗିଲା ତ ? ଏ ଦେଶ ଶାନ୍ତି ଓ ମୈତ୍ରୀ କାମନା କରେ, ଏହାର ସଭ୍ୟତା

ଆର୍ଯ୍ୟ ସଂସ୍କୃତିର ସଭ୍ୟତା। ଧ୍ୱଂସ, ରକ୍ତ ଓ ହତ୍ୟା ଦ୍ୱାରା ଭାରତବର୍ଷ ବଡ଼ ହୋଇ ନାହିଁ। ଭାରତର ପ୍ରାଣଧର୍ମ ଅଲୁବ୍ଧ। ସେ ପ୍ରାଣଧର୍ମ ନମ୍ର। କିନ୍ତୁ ନମ୍ର ହୋଇ ବି ସୁଦୃଢ଼। ଶାନ୍ତ ହୋଇ ବି ନିର୍ଭୟ। ଏଇ ଭାରତବର୍ଷ ପୃଥିବୀରେ ଚିରଦିନ ମହାମାନବତାର ତୀର୍ଥଭୂମି। ସେ ତୀର୍ଥଭୂମିକୁ ନମସ୍କାର କର। ତାର ବାଣୀ ସତ୍ୟର ବାଣୀ, ଆଲୋକର ବାଣୀ।

[ ମଞ୍ଚ ଅନ୍ଧକାର ହେଲା। ପୁଣି ଆଲୋକ ସମ୍ପାତ ମାତ୍ରେ ବନା ଓ ମାଗୁଣି ଯଥାକ୍ରମେ କାନ୍ଧରେ ଧାନ କଳେଇ ଓ ଯନ୍ତ୍ରପାତି ଧରି ଦେଖାଦେଲେ। ]

ମାଗୁଣି– ବନା'ଇ, କଅଣ ଖୁବ ହସ ହସ ହୋଇ ଆସୁଛୁ ରେ ?

ବନା– ତୁ ତ କମ ହସୁନୁ।

ମାଗୁଣି– ଦେଶର ନେତା ଡାକ ଦେଲେ ବେଶୀ କାମ କର। କଳ କାରଖାନାରେ ବେଶୀ ସମୟ ଖଟ। ତୁ କଅଣ ଏ ଡାକ ଶୁଣିନୁ ?

ବନା– ଶୁଣିନି ? ମୁଁ କଅଣ ଏକା ? ଆମ ଗାଁଯାକ ଭାଇ ଲାଗିପଡ଼ିଛୁ ଫସଲ ଉଠାଇବାରେ। ହଇରେ ତାଙ୍କ ଡାକ ଶୁଣିବାନି ?

ମାଗୁଣି– ହଁ, ଆମେ ଯେ ଯେଉଁଠାରେ କାମ କରୁଛୁ ଲାଗି ରହିଥିବା ସେ କାମରେ। ତାହାହେଲେ ନେତାଙ୍କର ହାତମୁଠା ଟାଣ ହେବ।

ବନା– ଆମେ ଖାଲି ଫସଲ ବଢ଼େଇବା। ଆଉ ତୁ– ଯେଉଁମାନେ କଳକାରଖାନାରେ କାମ କରୁଛ, ଖାଲି ଜିନିଷ ତିଆରି କର। ଗୋଟାଏ ବାଇଗଣ ଜାଗାରେ ଚାରିଟା, ଗୋଟାଏ କଳେଇ ଜାଗାରେ ଚାରିଟା କଳେଇ। ମାଗୁଣି କେତେ ଅଳସ ପଣରେ ଆମେ ସମୟ ନଷ୍ଟ ନ କରିଚେ କହିଲୁ ?

ମାଗୁଣି– ଛାଡ଼ ସେ କଥା। ଯୁଦ୍ଧଟା ଆଖି ଫିଟାଇଦେଲା।

[ ହଠାତ୍ ଲାଲ ଶତ୍ରୁର ଆବିର୍ଭାବ ]

ଶତ୍ରୁ– (ହସି) ହାଃ... ହାଃ... ଆଖି ଫିଟି ନାହିଁରେ ଚାଷୀ ! ଆଖି ଫିଟିଲା କେତେବେଳେ ?

ବନା– ହଇରେ ମାଗୁଣି ଏଇଟା କିଏ ରେ ?

ମାଗୁଣି– ଭୂତ।

ଶତ୍ରୁ– ମୁଁ ତମର ବନ୍ଧୁ। କାହିଁକି ଏତେ କାମ କରୁଛ ? କାହିଁକି ଏତେ ଖଟୁଛ ?

ବନା– ଖଟିବୁ ନାଇଁ ? ଆମ ଦେଶ, ଆମେ ଖଟିବୁନି ?

ଶତ୍ରୁ– ଉଚିତ ମୂଲ୍ୟ ପାଉଛ ?

ମାଗୁଣି– ଠିକ୍ ମୂଲ୍ୟ ପାଉଛୁ। ଏବେ ଅଧିକା ସମୟ ଖଟି ଅଧିକା ମୂଲ୍ୟ ପାଉଛୁ।

ଶତ୍ରୁ– ବୋନସ୍ ଦାବୀ କର।

ବନା– ହଇରେ ମାଗୁଣି, ବଅଁଶ କ'ଣ ? ବଅଁଶ ତ ଆମର ଅଛି। ରାଧି, ରଥିଆ, ନାକୀ ଆଉ ଚମ୍ପା।

ମାଗୁଣି– ହେତ୍, ବଅଁଶ ନୁହେଁରେ। ବୋନସ୍, କଳକାରଖାନାରେ ସବୁ ଦିଆଯାଏ। ହଇଏ ବାବୁ, ତମର ଏଥିରେ କଅଣ ଅଛି ? ତମେ ଚକୁଳି ଖାଇବାକୁ ଆସି ଏତେ ବିନ୍ଧ ଗଣୁଛ କାହିଁକି ?

ବନା– ସତରେ ବାବୁ, ତମେ ତ ଏ ଦେଶ ଲୋକଭଳି କଥା କହୁନା ? ତମେ କୁଆଡୁ ଆସିଛ ?

ଶତ୍ରୁ– ମୁଁ ଯେଉଁଆଡୁ ଆସେ ତମ ଭଲ ପାଇଁ କହୁଛି। ତୁମେ ଧର୍ମଘଟ କର। କାମ ବନ୍ଦ କରିଦିଅ।

ବନା– ଏତେବେଳେ କାମ ବନ୍ଦ କରିଦେବୁ ?

ଶତ୍ରୁ– ହଁ, କାମ ଧୀମେଇ ଦିଅ। ବନ୍ଦକରି ଦିଅ।

ମାଗୁଣି– ଧର୍ମଘଟ କରିବୁ ? ଏତେବେଳେ, ଏଇ ବିପଦରେ କାମ ବନ୍ଦ କରିବୁ ?

ଶତ୍ରୁ– ହଁ, ତମେ ସବୁ ମୋ'ର କମରେଡ୍। ତମପାଇଁ ମୁଁ କେତେ କାନ୍ଦେ ଜାଣ ?

ବନା– ହଇରେ ମାଗୁଣି, ଏ ବାବୁ ଆମପାଇଁ କାନ୍ଦନ୍ତି କିଆଁ ?

ମାଗୁଣି– କେଜାଣି ? ତା'ଙ୍କର ପୁଅ ମାଇପେ ପିଲାଝିଲେ କେଉଁ କାଳୁ ମଲେଣି, ଆଉ କାନ୍ଦିବାର ସୁବିଧା ନାହିଁ। ଆମକୁ ମାଇଲେ ବାହୁନିବେ।

ବନା– ଏଇଟା ଦେଶର ଶତ୍ରୁ କିରେ ?

ଶତ୍ରୁ– ବନ୍ଧୁକୁ ଶତ୍ରୁ ବୋଲି ଭାବୁଛ ? ଖବରଦାର୍।

ମାଗୁଣି– ବନା'ଇ ଏ ଏମିତି ନାଲିଆ କାହିଁକି ହେଇଚି ? ଆଉ ଗର୍ଜୁଛି କିଆଁ ?

ଶତ୍ରୁ– ଧର୍ମଘଟ କରିବ କି ନାଇଁ କହ !

ଉଭୟେ– ନା, ଆମେ ଏତେବେଳେ ମିଳିମିଶି କାମ କରିବୁ। ଆମ ଦେଶକୁ ସାହାଯ୍ୟ କରିବୁ।

ଶତ୍ରୁ– (ସ୍ୱଗତଃ) ତାହାହେଲେ ଏ ଫ୍ରଣ୍ଟରେ କଅଣ ଆମ କାମଶେଷ ହୋଇଗଲା ? ତେବେ ଭୟ ଦେଖାଏଁ, ହତ୍ୟା ! !

[ ପ୍ରକାଶ୍ୟେ ମୋ କଥା ମାନିବ କି ନାହିଁ ? ଜବାବ ଦିଅ। ]

ମାଗୁଣି– ବନା'ଇ, ତୋ ଅଣ୍ଟାରୁ ସେ ଶାଣଦିଆ ଦାଆଟା କାଢ଼ିବୁଟି।

ବନା– ମାଗୁଣି, ତୋ ହତିଆର ବୋଝରୁ ହାତୁଡ଼ିଟା କାଢ଼ିବୁଟି।

ଶତ୍ରୁ– ବାଃ, ରଖିଛ ତାହାହେଲେ ଆମର ସଙ୍କେତ ! ଜୟ ଶ୍ରମିକ, ମଜଦୁର୍– (ପିସ୍ତଲ ବାହାର କରି ଉପରକୁ ଟେକିଲେ)

ବନା– ମାଗୁଣି ଉଠା ହତିଆର।

[ ଦୁହେଁ ଦୁଇଆଡୁ ଆକ୍ରମଣ କଲେ। ଲାଲ ଶତ୍ରୁ ଆତ୍ମରକ୍ଷା କରିବାକୁ ଗଲାବେଳେ ନିଜ ରିଭଲ୍‌ଭର୍‌ରୁ ଗୁଳି ଫୁଟି ନିଜ ବାହୁରେ ବାଜିଲା। କ୍ଷଣକ ପାଇଁ ମଞ୍ଚ ଅନ୍ଧକାର ହୋଇଗଲା। ]

ଶତ୍ରୁ– ଆଃ !

[ ଏକ ମହିଳା ଚିକିତ୍ସକ ବେଶରେ ବିଜୟାର ପ୍ରବେଶ, ସଙ୍ଗରେ ଏକ ସନ୍ନ୍ୟାସୀ; ସହକାରିଣୀ ଭାବରେ ନର୍ସ ରତ୍ନା, ମଞ୍ଚ ଆଲୋକିତ ]

ସନ୍ନ୍ୟାସୀ– ମୁଁ ଧରୁଛି। ତୁମେ ବିଜୟା ବ୍ୟାଣ୍ଡେଜ କର।

ଶତ୍ରୁ– (କଷ୍ଟରେ) ଆଃ !

ରତ୍ନା– ଯାଙ୍କୁ ମୁଁ ଦେଖିଛି ସହର, ଗାଁ, ବଣ ସବୁଆଡ଼େ।

ସନ୍ନ୍ୟାସୀ– ହଁ, ଦେଖିଥିବ। ଏମାନେ ବୁଲୁଛନ୍ତି।

[ ବିଜୟା ବ୍ୟାଣ୍ଡେଜ କରୁଥିଲେ; ରତ୍ନା ସାହାଯ୍ୟ କରୁଥିଲେ। ]

ଶତ୍ରୁ– (କଷ୍ଟକାତର ଭାବେ) ଏ ଦେଶ ଅହିଂସାର ବଡ଼େଇ କରେ ନା ?

ସନ୍ନ୍ୟାସୀ– ବଡ଼େଇ କରେ ନାହିଁ, ଅହିଂସା ଏ ଦେଶର ଅସ୍ଥିମଜ୍ଜାଗତ।

ଶତ୍ରୁ– ତେବେ ଏ ଭଳି ଅହିଂସ ଦେଶରେ ମତେ ଖୁନ୍ କଲା କିଏ ?

ବିଜୟା– ନା, ତୁମକୁ କେହି ଖୁନ୍ କରି ନାହାନ୍ତି। ତମର ନିଜ ପିସ୍ତଲରୁ ଗୁଳି ଆସି ନିଜ ବାହୁରେ ବସିଛି।

ଶତ୍ରୁ– ଓହୋ।

ସନ୍ନ୍ୟାସୀ– ଆଘାତ ବେଶୀ ହୋଇନାହିଁ। ନିକଟବର୍ତ୍ତୀ ହାସ୍‌ପାତାଲକୁ ବିଜୟା ଭଉଣୀ ସଙ୍ଗରେ ତୁମକୁ ପଠାଇ ଦେଉଛି। ସେ ଜଣେ ମହିଳା ଚିକିତ୍ସକ। ସେ ତୁମର ତତ୍ତ୍ୱ ନେବେ।

ଶତ୍ରୁ– ସେ ଯେଉଁ ଦୁଇଜଣ ଚାଷୀ ଓ ଶ୍ରମିକ ?

ସନ୍ନ୍ୟାସୀ– ସେମାନେ ଚାଲି ଯାଇଛନ୍ତି। ସେମାନଙ୍କୁ ତୁମେ ହାସପାତାଲରେ ଭେଟିବ। ତାଙ୍କୁ ମୋର ସେଇଆ ନିର୍ଦ୍ଦେଶ ଅଛି।

ଶତ୍ରୁ– ମୁଁ ସେମାନଙ୍କୁ କ୍ଷମା ମାଗିବି।

ବିଜୟା– ଆମେ ଜାଣିଥିଲୁ ତୁମେ ତାହାହିଁ କରିବ।

ସନ୍ନ୍ୟାସୀ– ସେମାନେ ବି ତୁମକୁ କ୍ଷମା ମାଗିବେ। ପ୍ରଥମରେ ସେମାନଙ୍କର ହତିଆର ଟେକିବା ଉଚିତ ହୋଇନି।

ଶତ୍ରୁ– ନା, ନା, ମୁଁ ଆଗେ ପିସ୍ତଲ ଉଠାଇଥିଲି।

ବିଜୟା– ଦେଶର ଏ ଦୁର୍ଦ୍ଦିନରେ ଧର୍ମଘଟ କରିବାକୁ ମତାଇବାରୁ ସେମାନେ ଅସ୍ଥିର ହୋଇପଡ଼ିଲେ। ହିଂସା କରିବା ବା ଆଘାତ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା।

ଶତ୍ରୁ– ମୁଁ ଜାଣେ। ମୁଁ ତାଙ୍କୁ କ୍ଷମା ମାଗିବି।

ସନ୍ନ୍ୟାସୀ– ଚାଲ ! ମୁଁ ଯାଙ୍କୁ ନେଇ ଯାଉଛି। ହଁ ବିଜୟା, ତମେ ସୀମାନ୍ତକୁ ଯିବା ପୂର୍ବରୁ ମୋ ଆଶ୍ରମକୁ ଆସ। ମାତୃବନ୍ଦନାର କି ସୁନ୍ଦର ଆୟୋଜନ ମୁଁ କରିଛି ଦେଖିବ। ପ୍ରଭୁ ତୁମର ମଙ୍ଗଳ କରନ୍ତୁ।

## ଦୃଶ୍ୟାନ୍ତର–ଆଶ୍ରମ

[ ଜନସମାବେଶ, ତିନୋଟି ଛବି ରହିଛି। ସେଗୁଡ଼ିକ ଆବୃତ ମାତୃବନ୍ଦନା ଆରମ୍ଭ ହୋଇଯାଇଛି। ଗାୟକ ଗାୟିକା ଦଳ ଗାନ ଆରମ୍ଭ କରିଛନ୍ତି। ତାନପୁରା, ମୃଦଙ୍ଗ, ମଞ୍ଜୀରୀର ତାଳ ଓ ମୂର୍ଚ୍ଛନା ସହିତ ପ୍ରସରି ଯାଉଛି– "ସର୍ବେଷାଂ ନୋ ଜନନୀ ଭାରତ" ]

## ସଙ୍ଗୀତ

ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଳ୍ପ ଲତୟେଂ

ଜନନୀ ବତ୍ସଳ ତନୟ ଗଣୈସ୍ତତ୍ ସମ୍ୟକ ଶର୍ମ ବିଧେୟଂ

ହିମଗିରି ସୀମନ୍ତିତ ମସ୍ତକମିଦମମ୍ବୁଧି ପରିଗତ ପାର୍ଶ୍ୱ

ଅସ୍ମଦ୍‌ଜନ୍ମଦମନ୍ନଦମନିଶଂ ଶ୍ରୋତ ପୁରାତନମାର୍ଷମ

ବିଜନିତ ହର୍ଷଂ ଭାରତବର୍ଷଂ ବିଶ୍ୟୋତ୍
କାର୍ପନିଦାନମ୍

ଭାରତ ଶର୍ମଣି କୃତ ମସ୍ମାଭିର୍ନବମିଦ ମୈକ୍ୟ
ବିଧାନମ୍

ଭାରତ ମେକା ଗତିରସ୍ମାକମ୍ ନାପରାସ୍ତି ଭୁବିନାମ

ସର୍ବାଦୌ ପରିଷଦ୍ କର୍ମଣି ତତ୍ ଭାରତ ମେବ।

[ ଏ ସଙ୍ଗୀତର ମୂର୍ଚ୍ଛନା ଭିତରେ ସନ୍ନ୍ୟାସୀ କବି ରାଧାନାଥଙ୍କ ଚିତ୍ରପଟ ଉପରେ ବିଲମ୍ବିତ ଥିବା ବସ୍ତ୍ର ଖଣ୍ଡିକ ଉନ୍ମୋଚନ କଲେ। ପୁଣି ଜଣେ ଯୁବକ ଆବୃତ୍ତି କଲେ– ]

ରଞ୍ଜିତ ଅସି ଧାରେ, ଶତ୍ରୁ ରକ୍ତ ଗାରେ

ଲେଖ ହେ ଆଜି ବିଜୟ ବିଭବ ଜନ୍ମଭୂମି ଭାଲେ

ନିର୍ମଳ ଆଜି ଧ୍ୱାନ୍ତ ଗଗନ, ବର୍ଷେ ତପନ ପୁଣ୍ୟ
କିରଣ

ଶତ୍ରୁ ଆଜି ଦଳିତ ଚରଣେ, ଛିନ୍ନ ଏ କରବାଳେ

ଭିନ୍ନ କରିଛୁ ବୈରୀ ଗର୍ବ, ବୈରୀ ଜୟ କରିଛୁ
ଖର୍ବ

ମୃତ୍ୟୁମନ୍ତ୍ର ଲେଖି ଆସିଛୁ, ଶତ୍ରୁର ଶତ ଭାଲେ–
ଇତ୍ୟାଦି

[ ଏ ଆବୃତ୍ତିର ମଝିରେ ସନ୍ନ୍ୟାସୀ କବି ଗୋଦାବରୀଶଙ୍କର ଚିତ୍ରପଟ ଉପରେ ଆବରଣ ଉନ୍ମୋଚନ କଲେ। ଜଣେ ତରୁଣୀ ଆବୃତ୍ତି କଲେ। ]

ଏହିକି ସେ ପୁଣ୍ୟଭୂମି ଭୁବନ–ବିଦିତ

ସୁବିସ୍ତୀର୍ଣ୍ଣ ରଙ୍ଗଭୂମି ଆର୍ଯ୍ୟ ଗୌରବର

ଏହି କି ଭାରତ ଯା'ର ମହିମା ସଙ୍ଗୀତ

ଗମ୍ଭୀର ଝଙ୍କାର ପୂର୍ଣ୍ଣ ଦିଗ ଦିଗନ୍ତର ?

ଏହି କି ସେ ସୁମନୋଜ୍ଞ ଆଶା ସରୋବର

ଯା'ର ଜ୍ଞାନାମୃତ ପାନେ କୃତାର୍ଥ ଧରଣୀ–
ଇତ୍ୟାଦି

[ କରତାଳିରେ ଆଶ୍ରମ ପରିବେଶ ମୁଖରିତ ହେଲା। ଏ ଆବୃତ୍ତି ମଝିରେ ସନ୍ନ୍ୟାସୀ କବି ମଧୁସୂଦନଙ୍କର ପ୍ରତିକୃତି ଉପର ଆବରଣ ଉନ୍ମୋଚନ କଲେ। ]

ସନ୍ନ୍ୟାସୀ– (ବିଜୟାଙ୍କୁ ସ୍ପର୍ଶ କରି) ଯାଅ ମାଆ। ସୀମାନ୍ତର ଆହ୍ୱାନ ଶୁଣ। ଆଜିର ଏ ମାତୃବନ୍ଦନା ତୁମ ଅନ୍ତରରେ ଅପୂର୍ବ ଦେଶପ୍ରେମ ଜାଗ୍ରତ କରୁ। ତୁମ ଭଳି ଯେଉଁମାନେ ଏଇ ପଥରେ ଯାତ୍ରା କରୁଛନ୍ତି, ସେମାନେ ମୃତ୍ୟୁଞ୍ଜୟୀ ହୁଅନ୍ତୁ। ଯାଅ ମାଆ !

[ ବିଜୟା ପ୍ରଣାମ କଲେ; ତାଙ୍କର କପାଳରେ ସନ୍ନ୍ୟାସୀ ତିଳକ ଦେଲେ; ସଙ୍ଗୀତ ଝରିଆସିଲା। ]

ତୁଷାର କିରୀଟ ଭାରତ–ବଳୟ ହିମାଳୟେ

ଆଜି ଲାଗେ ରେ

ପାପୀର ସ୍ପର୍ଶ ଲାଗେ ରେ

ଅୟୁତ କୋଟି ଦୃପ୍ତ ଯବାନ

ସିଂହ ବିକ୍ରମେ ଜାଗ ରେ।

[ ମଞ୍ଚ ଅନ୍ଧକାର ହୋଇଗଲା; ଦୃଶ୍ୟାନ୍ତର–ପଥ; ମଞ୍ଚାଲୋକର ସଙ୍ଗେ ସଙ୍ଗେ କେତେକ ବାଳକ ବାଳିକା ପାଟିକରି ଉଠିଲେ ]

ଗୋପାଳ– ରମା, ତୁ କେତେ ଆଣିଚୁ ?

ରମା– ମୁଁ ଆଣିଚି ବହୁତ ।

ଗୋପାଳ– ହରି ତୁ କେତେ ଆଣିଚୁ ?

ହରି– ମୁଁ ଯାହା ଆଣିଚି ସବୁ ଦେଇଦେବି । ବୋଉ ମନା କରୁଥିଲା ଏତେ ନେଏନି, ମୁଁ କାନ୍ଦି କାନ୍ଦି ଆଣିଚି ।

ରମା– ଗୋପାଳ ଭାଇ, ଆମେ ଯୋଉ ସବୁ ଜିନିଷ ଆଣିଚୁ; କାହାକୁ ଦେବା ?

ଗୋପାଳ– ସେ ବାବୁ ଏଇକ୍ଷଣି ଆସିବେ । ମୁଁ ତାଙ୍କୁ ସକାଳୁ କହିଆସିଥିଲି ।

ହରି– ଗୋପାଳ ଭାଇ, ଆମ ଜିନିଷ କଅଣ ଆମ ଯବାନ ଭାଇଙ୍କ ପାଖେ ପହଞ୍ଚିବ ?

ସୀତା– ହଁ ପହଞ୍ଚିବ; ଆମେ ପିଲା ବୋଲି କଅଣ ଆମ ଜିନିଷ ସେ ବାବୁ ପଠାଇବେନି ?

ଗୋପାଳ– ହଁ ସେ ପଠାଇବେ । ବାବୁ ଏତେ ଡେରି କରୁଛନ୍ତି କାହିଁକି ?

ହରି– ଆଚ୍ଛା, ଗୋପାଳ ଭାଇ, ଆମ ଛୋଟ ଛୋଟ ହାତ ଯଦି ଏଇକ୍ଷଣି ବଢ଼ିଯାନ୍ତା...

ରମା– ଆମେ ହିମାଳୟକୁ ଛୁଇଁ ପକାନ୍ତୁ ।

ସୀତା– ପୁଣି ଆମ ହାତ ଆହୁରି ବଢ଼ିଯାନ୍ତା ।

ହରି– ବଢ଼ି ବଢ଼ି ଆମ ଯବାନ ଭାଇଙ୍କ କପାଳକୁ ଆମ ହାତ ଛୁଅଁନ୍ତା ।

ଗୋପାଳ– ହଁ ଆମର ଟିକି ଟିକି ହାତ ସେମାନଙ୍କୁ ଆଉଁଷି ଦିଅନ୍ତା ।

ସମସ୍ତେ– ସେମାନେ ଖୁସି ହୁଅନ୍ତେ, ସେମାନେ ଆହୁରି ଜୋର୍‌ରେ ଲଢ଼େଇ କରନ୍ତେ ।

ସୀତା– ଗୋପାଳ ଭାଇ, ମୁଁ ହୋଇଯାନ୍ତି ପଦ୍ମ ଫୁଲଟିଏ । ଭାସି ଭାସି ଚାଲିଯାନ୍ତି ଆମ ଯବାନଙ୍କ ପାଖକୁ ।

ହରି– ସେମାନେ କଅଣ ଆମକୁ ଆଦର କରନ୍ତେ ନାହିଁ ?

ଗୋପାଳ– ଧେତ୍ ବୋକା, ଆମକୁ ଆଦର କରିବେ କଅଣ କିରେ ? ସେମାନେ ପରା ଲଢ଼େଇ କରୁଛନ୍ତି ।

ରମା– ଲଢ଼େଇ କରୁ କରୁ ଯେତେବେଳେ ହାଲିଆ ହୋଇଯାନ୍ତେ, ମୁହଁ ଫେରେଇ ଆମ ଛୋଟ ପିଲାଙ୍କୁ ଦେଖି ଆଦର କରନ୍ତେ ।

ସୀତା– ମୁଁ ଗୋଟାଏ କୋଇଲି ହୋଇଯାଆନ୍ତି । କୁ... କୁ... କରି ଉଡ଼ିଯାଆନ୍ତି ହିମାଳୟ ଉପରକୁ ।

ହରି– ସେଠି ଭାରି ଥଣ୍ଡାରେ ସୀତା ।

ସୀତା– ହଉ, ମୁଁ ସେଠି ବରଫଖଣ୍ଡ ହୋଇଯିବି । ଆଉ କଅଣ ଥଣ୍ଡା ଲାଗିବ ?

ଗୋପାଳ– ଆମକୁ କିଏ ଉଡ଼ାଜାହାଜରେ ବସେଇ ନେଇଯାନ୍ତା ।

ସୀତା– (ମୁହଁ ଶୁଖେଇ) କିଏ ଆମକୁ ନେବରେ ଗୋପାଳ ଭାଇ ।

ଗୋପାଳ– ନେବେ ରେ ନେବେ । ଆମେ ଯେତେବେଳେ ବଡ଼ ହୋଇଯିବା ।

ରମା– ଗୋପାଳ ଭାଇ, ହେଇଟି ବାବୁ ଆସିଲେଣି ।

[ ସମସ୍ତେ ଦଉଡ଼ି ଗଲେ । ବ୍ଲକର ବି.ଡ଼ି.ଓ. ବାବୁ ସମସ୍ତଙ୍କୁ ଗେଲ କରି କରି ମଞ୍ଚ ଉପରକୁ ଆସିଲେ । ]

ବି.ଡ଼ି.ଓ.– ସମସ୍ତେ ତାହାହେଲେ ଆସିଛ ? ଗୋପାଳ, କାଲି ଅଫିସରେ ଯାଇ କହି ଆସିଥିଲ, ମୁଁ ଆସିଲି କି ନାହିଁ ?

ଗୋପାଳ– ହଁ ସାର୍। ଆମେ କେତେବେଳୁ ଅନେଇଚୁ।

ବି.ଡ଼ି.ଓ.– ଆଚ୍ଛା କଅଣ ସବୁ ଆଣିଛ କହିଲ ?

ରମା– ମୁଁ ଆଣିଛି ବିସ୍‌କୁଟ୍ ପାକେଟ୍।

ବି.ଡ଼ି.ଓ.– ସାବାସ୍, କାହା ପାଖକୁ ପଠେଇବି ?

ରମା– ହରି ସିଂ ଥାପ୍‌ପା।

ବି.ଡ଼ି.ଓ.– ହଁ, ନିଶ୍ଚୟ ପଠେଇ ଦେବି। ହରିସିଂ ଥାପ୍‌ପା ନା ?

ରମା– ହଁ, ତାଙ୍କରି ପାଖକୁ।

ସୀତା– ମୁଁ ଆଣିଛି ଚିନାବାଦାମ।

ବି.ଡ଼ି.ଓ.– ସତେ ? କେତେ ଆଣିଚ ?

ସୀତା– ହେଇଟି ପରା ବାନ୍ଧିବି।

ବି.ଡ଼ି.ଓ.– କାହାକୁ ଦେବି ?

ସୀତା– ଦବ ? ଦବ ? ଏଁ... ଲୋକା ନାଏକ।

ବି.ଡ଼ି.ଓ.– ଲୋକନାଥ ନାଏକ ଯିଏ...

ସୀତା– ଯିଏ ଖୁବ୍ ଭଲ ଲଢ଼େଇ କରୁଛନ୍ତି।

ବି.ଡ଼ି.ଓ.– ଆଚ୍ଛା, ତାଙ୍କ ପାଖକୁ ପଠାଇଦେବି।

ସୀତା– ସେ ପାଇବେ ତ ?

ବି.ଡ଼ି.ଓ.– ନିଶ୍ଚୟ ପାଇବେ, ଛୋଟ ଛୋଟ ପିଲାମାନେ ଯବାନ ଭାଇମାନଙ୍କ ନିକଟକୁ ପଠାଇଛନ୍ତି, ସେମାନେ ପାଇବେନି ?

ହରି– ମୁଁ ଆଣିଛି ଟଙ୍କାଟିଏ।

ବି.ଡ଼ି.ଓ.– ଏତେଗୁଡ଼ାଏ ପଇସା କେଉଁଠୁ ଆଣିଲ ?

ହରି– ଜଳଖିଆ ନଖାଇ ରଖିଛି।

ବି.ଡ଼ି.ଓ.– କେଉଁ ସୈନିକ ପାଖକୁ ପଠାଇବି ?

ହରି– ସମସ୍ତଙ୍କ ପାଖକୁ ପଠାଇ ଦିଅନ୍ତୁ।

ବି.ଡ଼ି.ଓ.– ଆଚ୍ଛା, ପଠାଇ ଦେବି। ଗୋପାଳ ତମେ ?

ଗୋପାଳ– ମୁଁ ସେମିତି କିଛି ଆଣିନି। ଭାରତମାତାଙ୍କର ଗୋଟିଏ ମାନଚିତ୍ର ଆଙ୍କି ଆଣିଛି।

ବି.ଡ଼ି.ଓ.– କାଇଁ ?

ଗୋପାଳ– ହେଇଟି।

ବି.ଡ଼ି.ଓ.– ବେଶ୍ ହୋଇଛି। ମୁଁ ତାହାହେଲେ ଏ ଜିନିଷ ସବୁ ପଠେଇଦେବି।

ରମା– ମୋ ବିସ୍‌କୁଟ୍ ?

ବି.ଡ଼ି.ଓ.– ହରିସିଂ ଥାପ୍‌ପାଙ୍କ ପାଖକୁ ପଠେଇଦେବି।

ସୀତା– ମୋ ଚିନାବାଦାମ ?

ବି.ଡ଼ି.ଓ.– ଲୋକନାଥ ନାଏକଙ୍କ ପାଖକୁ ପଠାଇଦେବି।

ହରି– ଆମେ ଛୋଟ ପିଲା ବୋଲି ଆମକୁ ଭୁଲେଇବ ନାହିଁ।

ସମସ୍ତେ– ଆମେ ଯାଉଛୁଁ। ଆମେ ଯାଉଛୁଁ। ପଠାଇଦେବେ। ଭୁଲିବେ ନାହିଁ।

[ ଧୀରେ ରମା, ସୀତା ଓ ହରି ଅଦୃଶ୍ୟ ହୋଇଗଲେ ]

ବି.ଡ଼ି.ଓ.– ତମେ ଗୋପାଳ ?

ଗୋପାଳ– ଆପଣଙ୍କୁ ଧନ୍ୟବାଦ।

ବି.ଡି.ଓ.– ମତେ କାହିଁକି ଧନ୍ୟବାଦ ଦଉଛ ?

ଗୋପାଳ– ଛୋଟ ପିଲାଙ୍କର ମନକଥା ବୁଝିଲେ– ଏଇଥିପାଇଁ।

ବି.ଡି.ଓ.– ଛିଃ, ସେମିତି କୁହନି, ତୁମେ ହିଁ ଦିନେ ଏ ଦେଶକୁ ସୁନ୍ଦର କରିବ, ଏହାକୁ ଗଢ଼ିବ।

ଗୋପାଳ– ଭାରତବର୍ଷ ନିଶ୍ଚୟ ଜିତିବ। ଆମ ପିଲାଙ୍କର ସ୍ନେହ ସୈନିକମାନଙ୍କୁ ଜଣାଇଦେବେ ସାର୍।

ବି.ଡି.ଓ.– (ଆଖି ଛଳ ଛଳ ହୋଇଗଲା।) ଦେବି।

[ ଗୋପାଳ ନମସ୍କାର କରି ଧୀରେ ଚାଲିଗଲା। ବି.ଡି.ଓ. ତାଆରି ଗତିପଥକୁ ଚାହିଁ ସ୍ତବ୍ଧ ରହିଗଲେ। ]

## ଦୃଶ୍ୟାନ୍ତର–ପ୍ରାନ୍ତର

[ ଛୋଟ ବାଲିବସ୍ତା ଉପରେ ତିନୋଟି ରାଇଫଲ୍ ରହିଛି। ଦୁଇଟି ରାଇଫଲ୍ ଉପରେ ଝୁଙ୍କିପଡ଼ି ଶାଢ଼ି ପରିହିତା ଜଣେ ମହିଳା ଓ ସେଲୱାର ପରିହିତା ଜଣେ ତରୁଣୀ ଲକ୍ଷ୍ୟ ସ୍ଥିର କରୁଛନ୍ତି। ସେମାନଙ୍କୁ ସାହାଯ୍ୟ କରୁଛନ୍ତି ଦୁଇଜଣ ଇନଷ୍ଟ୍ରକ୍ଟର। ଆଉ ଅବଶିଷ୍ଟ ରାଇଫଲ୍‌ଟି ସେମିତି ରହିଛି। ପଶିଆସିଲେ ହଟକେଶ୍ୱର ସାହୁ ଓ ତାଙ୍କର ସ୍ତ୍ରୀ ନୟନା ଦେବୀ। ନୟନା ଦେବୀ ପିନ୍ଧିଛନ୍ତି ମାଣିଆବନ୍ଧି କସ୍ତା। ପୁରୁଣାକାଳିଆ ବସନଭୂଷଣ। ହାତରେ ଧରିଛନ୍ତି ଗୋଟାଏ ଛାଞ୍ଚୁଣୀ। ]

ହଟ– ହେଲା ଏବେ ମୋ ଦୋଷ ହୋଇଛି। ହେଲା–

ନୟନା– ହେଇଟି ଦେଖ ଏଇଆକୁ ଚଳେଇ ମୁଁ ଶତ୍ରୁ ନିପାତ କରିଦେବି।

ହଟ– କରିଦେବ ?

ନୟନା– ହଁ, କରିଦେବି।

ହଟ– ନକରି ପାରିଲେ ?

ନୟନା– ନକରି ପାରିଲେ ?

ହଟ– ହଁ

ନୟନା– ମୋ ନାଁ ନୟନା ଦେବୀ ନୁହେଁ।

ହଟ– ଦେଖ, ସେ ଅସ୍ତ୍ର ଛାଡ଼ି ଏ ରାଇଫଲ ଅସ୍ତ୍ର ଧର।

ନୟନା– ନାଇଁ ମତେ ଡର ମାଡୁଛି; କୁଆଡ଼େ କଅଣ ଫୁଟିଯିବ।

ହଟ– ସେଇଆ ତ ଦରକାର।

ନୟନା– ନା, ମତେ ଡର ମାଡୁଛି।

ହଟ– ଦେଖ, କେଉଁ ସର୍ତ୍ତରେ ମୁଁ ଖଲାସ ହୋଇଛି ଜାଣ ?

ନୟନା– କଅଣ ?

ହଟ– ଏକ– ଏ ଯୁଦ୍ଧ ଚାଲିଥିବାଯାଏ ଦାନ ଦଉଥିବି। ଦୁଇ– ଦରଦାମ ବଢ଼େଇବି ନାହିଁ କି ଚୋରା କାରବାର କରିବି ନାହିଁ।

ନୟନା– ତିନି–

ହଟ– ତିନି ତମେ।

ନୟନା– କଅଣ ତମେ ?

ହଟ– ତମେ ହୋ ତମେ। ତମ ସମେତ ମୋ ଘରର ବିଲେଇ କୁକୁର ବି ମିଲିଟାରୀ ବନିଯିବେ।

ନୟନା– ସତେ ?

ଇନ୍‌ଷ୍ଟ୍ରକ୍ଟର୍– ଆପଣ ଆସନ୍ତୁ। ଏମାନେ ଯିମିତି ଲକ୍ଷ୍ୟ ରଖି ରାଇଫଲ ଧରୁଛନ୍ତି, ସିମିତି ଧରନ୍ତୁ।

ହଟ– କି ଲାଜ କଥା। ଛାଞ୍ଚୁଣୀଟା ଫୋପାଡ଼ି ଦିଅ।

ନୟନା– ହଉ, ଫୋପାଡୁଛି। ଗଲାବେଳେ ଘରକୁ ଗୋଟାଇ ନେବି। ଘରେ ଦରକାର ହବ। (ଫୋପାଡ଼ି ଦେଲେ) ହଇଓ, ଭଉଣୀମାନେ, କଅଣ କିମିତି କରୁଛ କହିଲ ? (ସେମାନେ ହସିଲେ ନୟନା ଦେବୀ ହଠାତ୍ ରାଇଫଲ ଉଠାଇ ନେବାରୁ ତା'ର ଭାର ସହି ନ ପାରି ଗୋଟାଏ ପାଖକୁ ଢଳି ପଡ଼ିଲେ।

ଇନ୍‌ଷ୍ଟ୍ରକ୍ଟର– No, no, that is not the way, ଐସୀ ନହିଁ ହୈ। (ସେ ଦେଖାଇ ଦେଲେ।)

ହଟ– ଓ ହୋଗା, ଇସ୍‌କୋ ହାତ୍ ଅଛି ହେ, ଓ ମାର୍ ସକେଗୀ।

ନୟନା– ହର ହୋ... ଫଅର୍ କରିଦେବି ?

ଇନ୍‌ଷ୍ଟ୍ରକ୍ଟର– ବନ୍ଧୁକ ଲୋଡ୍ ହୋଇନି। ଏମ୍ କରୋ। ଏଇସୀ, ହାଁ, ଠିକ୍।

ନୟନା– ମଲା ମୋ ନୋଥଟା ତ ବାଜୁଛି ବନ୍ଧୁକରେ।

ପ୍ରଥମ ମହିଳା– ମାଉସୀ ଆରଥରକୁ ଏ ଗହଣା ସବୁ ଥୋଇ ଦେଇ ଆସିବ।

ଦ୍ୱିତୀୟ ମହିଳା– ନଇଲେ ଗୁଳି ଫୁଟିବ ନାଇଁ।

ନୟନା– ଆମ ମାଇପିଙ୍କ ଭାଗ୍ୟରେ ଯାହା ଏତିକି ଦହଗଞ୍ଜ ଥିଲା। ଆମ ଛାଞ୍ଚୁଣୀ ଭଲ କି ଆମେ ଭଲ।

ପ୍ରଥମ ମହିଳା– ଏ ଛାଞ୍ଚୁଣୀ ମାଡ଼ କାହା ଉପରେ ପରୀକ୍ଷା କରିଛ ମାଉସୀ ?

ହଟ– ଆଉ ସେଗୁଡ଼ାକ କାହିଁକି ଉଖୁରଉଛନ୍ତି ଆପଣମାନେ ?

ଇନ୍‌ଷ୍ଟ୍ରକ୍ଟର– କଥାବାର୍ତ୍ତା କରନ୍ତୁ ନାହିଁ। ଏମ୍ ଠିକ୍ କରନ୍ତୁ। ଆପଣଙ୍କ ପରେ ଆଉ ଗୋଟାଏ ବ୍ୟାଚ୍ ଆସିବ ଯେ।

ନୟନା– ମୋର ହଉଚି ? ଓଃ ସତେ ନାକଗୁଣାଟା ବନ୍ଧୁକରେ ବାଜିଯାଉଛି। ଦୁଇଟା ଆଖି ବୁଜିଦେବି ?

ଇନ୍‌ଷ୍ଟ୍ରକ୍ଟର– ନା, ନା, ଗୋଟାଏ ଆଖି ବନ୍ଦ କରନ୍ତୁ। ସେ ଯେଉଁ ପଏଣ୍ଟ ଦେଖାଯାଉଛି, ଲକ୍ଷ୍ୟ ରଖନ୍ତୁ, ହଁ ଠିକ୍।

ହଟ– ୟା'ଙ୍କ ହାତରେ ହବ ? ଏ ଫାୟାର କରିପାରିବେ ?

ଦୁଇ ମହିଳା– (ହସି) ଖୁବ୍ ପାରିବେ। ଆଚ୍ଛା ଆଜି ଏତିକି ହେଉ। (ସେମାନେ କାନ୍ଧ ଉପରେ ରାଇଫଲ୍ ଧରି ଛିଡ଼ା ହେଲେ।)

ଇନ୍‌ଷ୍ଟ୍ରକ୍ଟର– ବହୁତ୍ ଆଚ୍ଛା।

[ ନୟନାଦେବୀଙ୍କ ହାତରୁ ହଟକେଶ୍ୱର ବନ୍ଧୁକ ନେଇ ଧରିଲେ; ଦୁଇ ଯବାନ ତିନୋଟି ବାଲି ବସ୍ତାକୁ ବୁହାଇ ନେଇ ଅଦୃଶ୍ୟ ହୋଇଗଲେ ସମସ୍ତେ ଚାଲି ଆସିଲେ। ]

## ଦୃଶ୍ୟାନ୍ତର– ଧ୍ୟାନଗମ୍ଭୀର ହିମାଳୟ ପର୍ବତଶ୍ରେଣୀ

[ ନୀଳ ଆଲୋକରେ ରଞ୍ଜିତ ହୋଇଛି ହିମାଦ୍ରିର ଶୃଙ୍ଗ। କେତେଗୁଡ଼ିଏ ଗହ୍ୱର ରହିଛି। ସନ୍ନ୍ୟାସୀ ଟିକିଏ ଦୂରରେ ଛିଡ଼ାହୋଇ ଧ୍ୱନି ତୋଳିଛନ୍ତି... ]

ସନ୍ନ୍ୟାସୀ– ହିମାଦ୍ରି ତୁଙ୍ଗ ଶୃଙ୍ଗ ସେ ପ୍ରବୁଦ୍ଧ ଶୁଦ୍ଧ ଭାରତୀ

ସ୍ୱୟଂପ୍ରଭା ସମୁଜ୍ଜ୍ୱଳା ସ୍ୱତନ୍ତ୍ରତା ପୁକାରତୀ

ଅମର୍ତ୍ତ୍ୟ ବୀର ପୁତ୍ର ହୋ ଦୃଢ଼ପ୍ରତିଜ୍ଞ ଶୋଚ ଲୋ

ପ୍ରଶସ୍ତ ପୁଣ୍ୟ ପନ୍ଥ ହୈ, ବଢ଼େ ଚଲୋ, ବଢ଼େ ଚଲୋ

ଅସଂଖ୍ୟ କୀର୍ତ୍ତି ରଶ୍ମିୟାଁ ବିକୀର୍ଣ୍ଣ ଦିବ୍ୟ ଦାହ–ସୀ

ସପୂତ ମାତୃଭୂମି କେ ରୁକୋ ନ ଶୂର ସାହସୀ

ଅରାତି ସିନ୍ଧୁ ସୈନ୍ୟ ମେ ସୁବାଭାବାଗ୍ନି ସେ ଜଲୋ

ପ୍ରବୀର ହୋ ଜୟୀ ବନୋ–– ବଢ଼େ ଚଲୋ, ବଢ଼େ ଚଲୋ।

[ ସହସା ତୁଷାରମୌଳି ହିମାଳୟର ବକ୍ଷ ଭିତରୁ କମାଣ ଗର୍ଜି ଉଠିଲା। ଆମର ଯବାନମାନେ ଆଗ୍ନେୟ ଅସ୍ତ୍ର ଧରି ଚାରିଆଡ଼େ ବିକ୍ଷିପ୍ତ ହୋଇପଡ଼ିଲେ। ମାଭୈଃ ମାଭୈଃ ଶବ୍ଦରେ ଗଗନ ପବନ ମୁଖରିତ ହୋଇଗଲା। ବନ୍ଦେ ମାତରଂ, ବଢ଼େ ଚଲୋ ପ୍ରଭୃତି ଧ୍ୱନି ଶୁଣାଗଲା। ସେହି ଅଗ୍ନିସ୍ନାନ ଭିତରୁ ଆହତ ଅବସ୍ଥାରେ ଅଶୋକ ଟଳି ଟଳି ରାଇଫଲ୍ ଧରି ଚାଲି ଆସୁଥିଲେ। ]

ଅଶୋକ– ଆଃ, ନା ସେ କିଛି ନୁହେଁ। ଏ ରକ୍ତ ଯେ ପବିତ୍ର ହିମାଳୟ ଉପରେ ଢଳିଗଲା, ତାହାହିଁ ମୋର ସୌଭାଗ୍ୟ।

ଜଣେ ସୈନିକ– ଅଶୋକ, ତୁମକୁ ରେଡ଼କ୍ରସ୍ କ୍ୟାମ୍ପକୁ ଯିବାକୁ ହେବ, ତୁମେ ଖୁବ୍ ଆଘାତ ପାଇଛ (ଯୁଦ୍ଧ ଚାଲିଥାଏ)

ଅଶୋକ– ନା, ବିରାଜ, ମୁଁ ଏ ଘାଟୀ ଛାଡ଼ି ଯାଇପାରିବି ନାହିଁ। ଆଃ, ବଡ଼ କଷ୍ଟ। ଆଉ କେତୁଟା ଦୁଷ୍ମନକୁ ନ ମାରି ମୁଁ ମରୁ ନାହିଁ।

[ ଅଶୋକ ଘୁଷୁରି ଘୁଷୁରି ବନ୍ଧୁକରେ ଲକ୍ଷ୍ୟ ସ୍ଥିର କରୁଥାନ୍ତି, କିନ୍ତୁ ପାରିଲେ ନାହିଁ। ]

ନାଃ, ଏ ଜୀବନ ଏହିଠାରେ ଶେଷ ହୋଇଯାଉ। ଭାରତର ଜୟ ସୁନିଶ୍ଚିତ। ଓଃ।

[ ସେବାଧାତ୍ରୀ ବେଶରେ ବିଜୟାର ପ୍ରବେଶ ]

ବିଜୟା– କିଏ? (ମୁହଁ ହାତ ପରୀକ୍ଷା କଲେ) ଅଶୋକ! ତୁମେ!

ଅଶୋକ– ହଁ, ବିଜୟା। ମୋ କାମ ମୁଁ ଶେଷ କରିଛି। ଗୋଟାଏ ପ୍ଲାଟୁନ ସୈନ୍ୟକୁ ନିକାଶ କରିବା ପରେ ମୁଁ ଆହତ ହୋଇ ପଡ଼ିଛି। କିଛି ଚିନ୍ତା ନାହିଁ ବିଜୟା! ଏ ମରଣ ଆନନ୍ଦର ମରଣ, ବୀରର ମରଣ, ମୁଁ ତାକୁ ସ୍ୱାଗତ କରୁଛି।

ବିଜୟା– ହଁ ତୁମେ କହିଥିଲ ଅଶୋକ ସମର ପ୍ରାଙ୍ଗଣ ଆମର ମଧୁଶଯ୍ୟା। ତାହାହିଁ କଲ। (ଆଖି ପୋଛିଲେ)

[ ଚାରିଆଡୁ କୋଳାହଳ; ମାଭୈଃ, ମାଭୈଃ ରବ।–ଆମେ ଏ ଘାଟୀର ଶତ୍ରୁ

ସେନାଙ୍କୁ ନିର୍ମୂଳ କରିଛୁ। ସେମାନେ ପଳାତକ। ଜୟ ଭାରତ, ଯବାନ କୀ ଜୟ; ଜୟ ଭାରତମାତା କୀ ଜୟ। ]

ଅଶୋକ– ଶୁଣ ବିଜୟା, ବିଜୟର ମହାଶବ୍ଦ। ମୋ'ର କିଛି ଦୁଃଖ ନାହିଁ। ତମରି କୋଳରେ ଏ ଆନନ୍ଦମୟ ମୃତ୍ୟୁକୁ ମୁଁ ଅମୃତମୟ କରିଦେଉଛି।

ବିଜୟା– (ସ୍ତବ୍ଧ ରହିଗଲେ; କେବଳ ଦୁଇଟି ଅଶ୍ରୁବିନ୍ଦୁ ଖସି ଆସିଲା।)

ଅଶୋକ– ଆଃ! (ଧୀରେ ଆଖି ବୁଜି ଆଣିଲେ। ଗୋଟିଏ ପାଖକୁ ମଥା ଢଳିଗଲା।)

[ ଚାରିଆଡ଼େ ପ୍ରମତ୍ତ ସ୍ୱର। ଜୟ ଭାରତମାତା କୀ ଜୟ ]

## —ଦୃଶ୍ୟାନ୍ତର—

[ ସମବେତ କଣ୍ଠର ମାତୃବନ୍ଦନା ]

ଜନଗଣ ମନ ଅଧିନାୟକ ଜୟ ହେ

ଭାରତ ଭାଗ୍ୟ ବିଧାତା...

(ନେପଥ୍ୟରେ ବିପୁଳ ସ୍ୱନ; ଧୀରେ ଯବନିକା ଅବତରଣ କଲା...)



# ଉତ୍ସର୍ଗ

ଯେ ଜୀବନକୁ ଦେଖିଛି...
ଜୀବନର ସତ୍ୟ ଅସତ୍ୟ ରୂପକୁ ଦୃଷ୍ଟି ଦେଇଛି...
ମଣିଷର ନିର୍ମମତାରେ ଯାହାର କଣ୍ଠ ବିଷନୀଳ...
ନେତ୍ରତୀର ଅଶ୍ରୁସିକ୍ତ...
ସେହି ମରୁପଥର ଯାତ୍ରିଣୀକୁ
ଅମୃତାୟନର ବିଶ୍ୱାସଭରା ପଥିକ କରିବାପାଇଁ
ବିଶ୍ୱ ପିତାଙ୍କର କଲ୍ୟାଣ ଭିକ୍ଷାକରି
ତାହାରି କର ପଲ୍ଲବରେ...
ଏହି "ମଧ୍ୟାହ୍ନର ମରୁପଥେ"କୁ
ନିବିଡ଼ ସ୍ନେହାନୁଭୂତିରେ ଅର୍ପଣ କରୁଛି ।

ଅଗଷ୍ଟ ପନ୍ଦର, ୧୯୬୨ — ଲେଖକ
ଶ୍ରୀକ୍ଷେତ୍ର

# ମଧ୍ୟାହ୍ନର ମରୁପଥେ

ଧୂ–ଧୂ ଜ୍ୱଳନ୍ତ ମଧ୍ୟାହ୍ନର ମରୁପଥେ ଯେ କଳିଟି ପୂର୍ଣ୍ଣ ବିକଶିତ ହୋଇଗଲା, ପ୍ରକୃତିର ଅସ୍ୱାଭାବିକ ସୃଜନ ସେ... ନୁହେଁ କି ?

କିନ୍ତୁ ଆସେ... ଇମିତି ଅସ୍ୱାଭାବିକ, ପ୍ରହେଳିକାମୟ ଜୀବନସ୍ପର୍ଶ ଆସେ... ଯାହାକୁ ମଣିଷ ସମ୍ମାନ ଦେଇଜାଣେ ନାହିଁ, ଯାହାକୁ ପଦେ ପଦେ ମଣିଷ ନିଗୃହୀତ କରେ, କରେ ତାକୁ ଧ୍ୱଂସ...

ମଣିଷ ଚିହ୍ନିଛି ସ୍ୱାଭାବିକତାକୁ। ଧରି ରଖିଛି ତୁଠପଥର ଉପରେ ଅଗଣିତ ପଦଚିହ୍ନ। ଅତି ପରିଚିତ, ତେଣୁ ସହଜ ଓ ସ୍ପଷ୍ଟ; କିନ୍ତୁ ସେ ଦେଖି ପାରେନି, ସ୍ୱାଭାବିକତାର ଉର୍ଦ୍ଧ୍ୱରେ, ଧରାବାଟ ଚଲାପଥର ଟିକିଏ ଦୂରର ସର୍ପିଳ ବନରେଖା ତଳେ, ଆଉ ଗୋଟିଏ ଅନୁଭବ ଅଛି, ଆଉ ଗୋଟିଏ ସ୍ପର୍ଶକାତର ନମ୍ର ନିବେଦନ ଅଛି, ଯାହା କେବଳ ଅନନ୍ତରେ ସମାହିତ ଶାଶ୍ୱତରେ ଚିହ୍ନିତ।

ଭାଷାର ଛାଉଣି ପକାଇ ମୁଁ ମୋର ଭାବ–ସୈନିକଗୁଡ଼ିକୁ ଛାଡ଼ିଦେଇଛି ଜୀବନ–ତମ୍ବୁ ତଳେ ଜାଗ୍ରତ ପ୍ରହରୀ ଭୂଷାରେ...। ମୁଁ କେତେ ଉପରକୁ ଉଠିଛି ବୋଲି ଅଥଚ ଲୋକେ କହନ୍ତି, ମୁଁ କେତେ ତଳେ କେତେ ପାମରତା ଭିତରେ ଲିପ୍ତ ରହିଛି, ମୁଁ ଭାବି ପାରୁଛି, ଦେଖିପାରୁଛି ଯେଉଁ ଭାବନା ଓ ଦୃଶ୍ୟ, ସେସବୁ ସମସ୍ତଙ୍କର ଦର୍ଶନ–ରେଖା ଭିତରର ଦୃଶ୍ୟ ନୁହେଁ କି ଚିନ୍ତା ଭିତରେ ଚନ୍ତ୍ୟ ନୁହେଁ।

ପଚାରିପାର ମୁଁ ଏଡ଼େ ବଡ଼ ହେଲି କିପରି ? ଦ୍ୱିତୀୟ ପ୍ରଶ୍ନ କରିପାର– ମୁଁ ମନକୁ ମନ ବଡ଼ ହୋଇଛି ନା କେହି କହୁଛନ୍ତି ମୁଁ ବଡ଼ ବୋଲି। କେହି କହିବେ ନାହିଁ ମୁଁ ବଡ଼। ମୁଁ ବି କାହାକୁ ପଚାରି ନାହିଁ ମୁଁ କଅଣ; କିନ୍ତୁ ବିଶ୍ୱାସ କର ମୁଁ ଜାଗ୍ରତ ଅବସ୍ଥାରେ ଯାହା ଦେଖେ ତାହା ତୁମ ଦେଖା ଭଳି ନୁହେଁ।

ତୁମେ କହିପାର ମୁଁ ସ୍ୱତନ୍ତ୍ର। ଏଇଟା କହିବାକୁ ତୁମକୁ ବାଧୁଥିବ। ତୁମ ଆତ୍ମା ଉପରେ ଏହା ପ୍ରଚଣ୍ଡ ଆଘାତ ଦେଇଥିବ; କିନ୍ତୁ ସତ କଥା ମୁଁ ସ୍ୱତନ୍ତ୍ର। ତୁମେ ଯେତେବେଳେ ଶ୍ରେଣୀଭୁକ୍ତ କରିବାକୁ ଚେଷ୍ଟାକର, ମୁଁ ଏକକ ଏବଂ ମୋ ଶ୍ରେଣୀର ମୁଁ ଏକମାତ୍ର ସ୍ଥିତି। ଏକମାତ୍ର ଅନୁଭୂତି।

ନା, ନା ତୁମେ ତ୍ରସ୍ତ ହୁଅ ନାହିଁ। ମୁଁ ଦର୍ଶନର ଧାର ଧାରେ ନାହିଁ। ଦର୍ଶନ ମଣିଷକୁ ସୃଷ୍ଟି କରିନାହିଁ। ମଣିଷ 'ଦର୍ଶନ' ଦେଖିଛି। ମୋ ଦର୍ଶନ କେଉଁ ନାମଜାଦା ଦାର୍ଶନିକର ପୁସ୍ତକ ବିଶେଷର ପୃଷ୍ଠା ଶୋଭିତ କରୁନାହିଁ। ମୋ ବାଣୀ ହିଁ ମୋ ଦର୍ଶନ, କାରଣ ମୁଁ ଜୀବନକୁ ଦେଖିଛି। ତା'ର ଆରଲୋକ ପଥର ଅନୁଗାମୀ ହୋଇଛି, ତା'ର ତିମିରାଭିସାର ଭିତରେ ଗତି କରିଛି। କହିପାର ମୁଁ ଜୀବନଶିଳ୍ପୀ; କିନ୍ତୁ କହିପାରିବ କି ? କହିବା ପୂର୍ବରୁ ତୁମକୁ ବାଧିବ। କାରଣ ତୁମେ ଚାହିଁବ ନାହିଁ ଅରଣ୍ୟଗର୍ଭରେ ଛୋଟ ବଡ଼ ବୃକ୍ଷ ରହୁ। ଛୋଟର ମହିମା ବଡ଼ରେ ନାହିଁ କି ବଡ଼ର ମହିମା ଛୋଟରେ ନାହିଁ– ଏ ରହସ୍ୟ କେତେ ଜଣ ବୁଝନ୍ତି ? ସେଥିପାଇଁ ମୁଁ ଛୋଟ ହୋଇ

ମହିମାନ୍ୱିତ, କାରଣ ଜୀବନ ମୋ ପାଖେ ଯେ ଅର୍ଘ୍ୟ ଢାଳିଛି, ତା'ର ବିନ୍ଦୁଏ ତୁମେ ପାଇନାହଁ, କାରଣ ତମ ଗଣନାରେ ତମେ ନିଷ୍ପତ୍ତି କରିଛ, ଟ୍ରାକ୍ଟର ଚଳାଇ ସବୁ ସମତଳ କରିଦେବ, ସବୁ ଏକାକାର କରିଦେବ, କେବଳ ରହିବ ଗୋଟାଏ ଧୂସର ଧାରାବାହିକତାର ରୂପ...ଆଦ୍ୟ... ଅନ୍ତ କେବଳ ପ୍ରାନ୍ତର... ମହାପ୍ରାନ୍ତର...

ଆଚ୍ଛା, ମୋ ଅନ୍ତିମ ସମୟରେ, ବେଳ ତ ଆସି ହୋଇଗଲା, ମୁଁ ଗୋଟିଏ କଥା ପଚାରିବି। ସାୟାହ୍ନ ସୂର୍ଯ୍ୟ ଢଳିପାରିବା ପୂର୍ବରୁ ସେ କଅଣ ଏମିତି ମିନତି କରିପାରିବ ନାହିଁ, ଏତିକି ପ୍ରାର୍ଥନା? ସେ ପ୍ରାର୍ଥନା ଆଉ କିଛି ନୁହେଁ, ଏତିକି... ତୁମେମାନେ ଅନ୍ୟକୁ, ତୁମରି ସ୍ୱଜାତି, ଏକାବ୍ରହ୍ମରୁ ଯାହାର ଉତ୍ପତ୍ତି, ଏକା ସଂସାର ପଥରେ ଯାହାର ଗତି, ଏକା ତେଲ ଲୁଣ ଇନ୍ଧନ ମଧ୍ୟରେ ଯାହାର ପ୍ରାଣଧାରଣର ସାମଗ୍ରୀ ରହିଛି, ସେଇ "ଅନ୍ୟ" କୁ ତୁମେ ଜୀବନଯାକ ସହି ପାରିଲ ନି କାହିଁକି?

କେଉଁଠି ତୁମକୁ, ମାନେ, ଯେଉଁ ଜାଗାଟାରେ ତୁମକୁ ବେଶୀ କାଟିଲା? ତୁମେ ସହିପାରିଲ ନାହିଁ? ହୃଦୟ? ମନ? ଦେହ ମାଂସ? ଚକ୍ଷୁତାରକା? କେଉଁଠି? ନା ସମଗ୍ର ସତ୍ତା ତୁମର ଏଇ "ଅନ୍ୟ" ପ୍ରତି ବିଦ୍ରୋହ କରିଉଠିଲା? ଭାବିଲ ଏ ବଞ୍ଚି ରହିଲେ ତୁମ ସାମ୍ରାଜ୍ୟ ବଢ଼ିବ ନାହିଁ, ଭାବିଲ ଏ ଚଲାଫେରା କରୁଥିଲେ ଯା ପାଦତଳେ ଯାହା ଫୁଟୁଛି, କଣ୍ଟା ଅବଶ୍ୟ ନାହିଁ, ତୁମେ ଖୁବ୍ ହୁସିୟାର ଆଉ ବିଜ୍ଞ, ତୁମେ ଏ କଥା କହିବ କି? କଅଣ ଫୁଟୁଥିଲା ତୁମେ ଜାଣ। ଭାବିଲ ଯା ପାଦତଳେ ଯାହା ଫୁଟୁଛି ତା'ର ଗୋଟାଏ ବିଶେଷ ମହକ ଅଛି।

ମାତ୍ର ବନ୍ଧୁ, ଦୁଃଖ ହୁଏ କହିବାକୁ, କହିବିନି କାହିଁକି, ପାଟି ତ ଏଯାଏଁ ଖନି ମାରିଆସିନି, ଚିନ୍ତା କରିବାର ଶକ୍ତି ଅବଲୁପ୍ତ ହୋଇନି, ଦେଖୁଛି, ଅନୁଭବ କରୁଛି, ସମସ୍ତ ଇନ୍ଦ୍ରିୟ ସତେଜ ରହିଛି ଅଥଚ କେତେବେଳଯାଏ ବା ଏମାନେ ସେମିତି ତେଜସ୍କର ରହିବେ? ହଁ କଅଣ କହୁଥିଲି— ମହକ— ଏ ମହକକୁ ତୁମେମାନେ ସୁସ୍ଥ ପବିତ୍ର ଧର୍ମସଂରକ୍ଷକ, ନୀତିଧାରକ, ତମେ ମହାମାନବମାନେ ଆଖ୍ୟା ଦେଲ ଅଶ୍ଳୀଳ...

ଶ୍ଳୀଳ ଅଶ୍ଳୀଳ ବିଚାର କରିବାକୁ ମୋର ସମୟ ନାହିଁ। ଯେତେବେଳେ ବହି ବେଶୀ ଘାଣ୍ଟୁଥିଲି, ସେତେବେଳେ ଜାଣିଥିଲି, ବଡ଼ ବଡ଼ମାନେ ଲେଖିଥିଲେ— ଯେତେ ମନଗଢ଼ା କଳ୍ପନା କର ପଛକେ, ଜୀବନକୁ ଧରିପାରିବ ନାହିଁ, ତା'ର ସୀମାକୁ ବି ଛୁଇଁ ପାରିବ ନାହିଁ। ଜୀବନ ଅକଳ୍ପନୀୟ।

ଏଇ ଅକଳ୍ପମୟ ଜୀବନକୁ ମୁଁ ବାସ୍ତବରେ ଦେଖିଛି। ଖାଲି ଦେଖିନାହିଁ ତା'ର ସତ୍ୟରୂପକୁ ମୁଁ ଆଦିମ ମାନବିକ ସ୍ନେହଧାରାରେ ଆପ୍ଲୁତ କରିଦେଇଛି। ବିଶ୍ୱାସ କରିବ କି? ହୃଦୟର ସ୍ନେହଧାରା ଆଉ ନେତ୍ରର ଅଶ୍ରୁଧାରା ଭିତରେ ଯେ ସଂସାରଟି ମୁଁ ପ୍ରାୟ ଗଢ଼ିଥାଏ, ତାହା ହିଁ ମୋ ଜୀବନର ଭୂମି। ସେଥିପାଇଁ ଆଜି ନିର୍ବାଣମୁଖୀ ପ୍ରଦୀପ ନିଃଶିଖ ହୋଇଯିବା ପୂର୍ବରୁ, ଦେଖୁଛ, କି ଉଲ୍ଲାସରେ ଯାହା ବା ଶକ୍ତି ଧରିଛି ସେଇଥିରେ ସେ କିମିତି ଜଳୁଛି?

ମୁଁ ମଲେ ହଜିଯିବି ନାହିଁ, ତୁମେମାନେ ମଲେ ହଜିଯିବ, କାରଣ ତୁମମାନଙ୍କର ନଖଦନ୍ତ ଆଘାତରେ ମୋ ଭଳି ବହୁ ଜୀବନ ଶିଳ୍ପୀ ମରିଛନ୍ତି, ମରୁଛନ୍ତି।

ଆଉ ଯେ ଜୀବନକୁ ସାକ୍ଷାତ୍ କରିଛି, ତା'ର ସୂକ୍ଷ୍ମ ଓ ସ୍ଥୁଳ ସବୁପ୍ରକାର ବିଭବକୁ ଆଦର କରି ଗ୍ରହଣ କରିଛି, ଶିଳ୍ପୀ ନୁହେଁ। ତୁମେ ଶିଳ୍ପୀ ?

କହିଲ ଭଲା; କିନ୍ତୁ ସତ କହିବ, କେବେ ତମ ବିରାଟ ଜୀବନର ଆକାଶ ତଳେ ଗୋଟିଏ ଛୋଟ ଝିଣ୍ଟିକାକୁ ଉଠାଇଆଣି ତା'ର ନୀଳ ରୂପ ଉପରେ ଆଙ୍ଗୁଳି ଚଳେଇଛ ସ୍ନେହରେ। କେବେ ତୁମର ସାଂସ୍କୃତିକ, ରାଜନୈତିକ, ସାମାଜିକ ଓ ସାଂଗଠନିକ ଜୀବନରୁ ଓହ୍ଲାଇ ଆସି କ୍ଷଣେମାତ୍ର ମୁଠାଏ ଧୂଳିକୁ କରତଳରେ ରଖି ଶ୍ରଦ୍ଧାରେ ତାକୁ ତୁଚ୍ଛ ଜାଣି ସୁଦ୍ଧା ତୁମ ମୁଣ୍ଡ ଉପରେ ମୁଠାଏ ଆକାଶ ଭିତରକୁ ଛାଡ଼ିଦେଇଛ ? ଆଉ ଏଇ ନୀଚ, ତୁଚ୍ଛ, କୁତ୍ସିତ ଧୂଳିମୁଠାକ ଉପରକୁ ଛାଡ଼ିଦେବା ଦୃଶ୍ୟରେ ମହାକାଶ ଏବଂ ସୁନୀଚ ମୃତ୍ତିକାଧାର ଭିତରେ ଯେ ସଂବେଦନା; ସଂପ୍ରୀତିର ପ୍ରବାହ ଖେଳିଗଲା, ତାହା ଅବଲୋକନ କରି ଆତ୍ମଭୋଳ ମନ ତୁମର ହସିଉଠିଛି କି ?

ରହ ଟିକିଏ, ଏକା ନିଶ୍ୱାସରେ ଅନେକଗୁଡ଼ାଏ କଥା କହିଦେଲି। ଧୀରେ କ୍ଳାନ୍ତିରେ ଆଚ୍ଛନ୍ନ ହୋଇଆସୁଛି ଶରୀର। ଆଗେ ଯେତେବେଳେ ପୂର୍ଣ୍ଣତମ ଭାବରେ ଜୀବନକୁ ଉପଭୋଗ କରୁଥିଲି, ସେ ଉପଭୋଗର ପ୍ରଧାନ ଭିତ୍ତି ଥିଲା ଆବେଗ।

ଏଇ ନିରୀହ ଆବେଗ–ବୋଧକୁ ସେତେବେଳେ କିଏ କଅଣ କେତେ ନ କହୁଥିଲେ। ଏଇ ଆବେଗ ହିଁ ମତେ ସ୍ଥାନ ଦେଇଥିଲା କୁଟୀଳ ଜଞ୍ଜାଳକ୍ଷୁବ୍ଧ ମଣିଷ ସମାଜ ଉପରେ। ମୋର ସ୍ଥିତି ଥିଲା ମଣିଷ ଭିତରେ, ମାତ୍ର ମୋର ସନ୍ତରଣ ଭୂମି ରହିଥିଲା ଆବେଗରଂଜିତ ମହାକାଶରେ।

ଏହିପରି ପ୍ରତିନିୟତ ଭାବାବେଶରେ ରହୁଥିବାରୁ ସମସ୍ତଙ୍କ ପ୍ରତି ଗୋଟାଏ ଅବୋଧଶିଶୁର ସରଳ ସହଜ ବିଶ୍ୱାସ ମୋ ବ୍ୟକ୍ତିତ୍ୱରେ ବ୍ୟକ୍ତ ରହିଥିଲା। ବହୁତ କଷ୍ଟ ପାଇଛି ଏଥିପାଇଁ। ରକ୍ତାକ୍ତ ହୋଇଛି। ନିନ୍ଦିତ ହୋଇଛି। ତେବେ ବି ଆସନ୍ନ ମୃତ୍ୟୁ ପର୍ଯ୍ୟନ୍ତ ଏଇ ବିଶ୍ୱ ଓ ବିଶ୍ୱାସବୋଧଟିକୁ ମୁଁ ଛାଡ଼ି ଯାଇପାରିଲି ନାହିଁ।

ମୁଁ ଦେଖିପାରୁଛି ମୋର ଶଯ୍ୟା ଚାରିପଟେ ଯେଉଁମାନେ ଛିଡ଼ା ହୋଇଛ; ସେମାନେ କୌତୂହଳୀ ହୋଇ ଆସିଛ ମୋର ଅବସାନ ଦେଖିବାକୁ। ମୃତ୍ୟୁ... ମୃତ୍ୟୁ— ସେଥିରେ ବା ବୈଚିତ୍ର୍ୟ କଅଣ ଅଛି ? ମାତ୍ର ମୁଁ ଲକ୍ଷ୍ୟ ରଖିବି ସେଇ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଜୀବନ ମତେ କଅଣ ଦଉଛି, କଅଣ କହୁଛି ଓ ତା'ର ମୋ ପ୍ରତି ଶେଷ ବର୍ଣ୍ଣଟି କଅଣ ତା'ବି ମୁଁ ଶୁଣିଯିବି। ତେଣୁ ଦେଖୁଛ ମୁଁ ପ୍ରକୃତରେ ଜୀବନଶିଳ୍ପୀ ନା ତୁମେ ?

ଶିଳ୍ପୀ ବୋଲି ଜଣେ ମତେ ଡାକିଥିଲା ଜୀବନରେ। ମୃତ୍ୟୁ ପରେ ବି ସେ ମତେ ସେଇ ପଦବୀରେ ଭୂଷିତ ରଖିବ, ମୁଁ ଜାଣେ। କିଏ କେତେ ପ୍ରକାରେ ମତେ ଡାକିଗଲେ। ନୂତନ, ବିଚିତ୍ର, ସୁନ୍ଦର ନାଁରେ ମତେ ଡାକୁଥିଲେ। ମୋ ଜୀବନର ଯେଉଁ ବିଭାବ ଯାହାକୁ ଯେମିତି ଆକର୍ଷଣ କରିଛି, ସେ ସେହି ଭାବରେ ନାଆଁ ସୃଷ୍ଟିକରି ମତେ ଡାକିଛି।

ମାତ୍ର ଜଣକର କଥା ଆଜି ଏଇ ଶେଷକ୍ଷୟ କ୍ଷଣରେ ମୋର ବେଶୀ ମନେ ପଡୁଛି। ଅସ୍ଥିର ହେଉଛି, ଏକଆଡ଼େ ମୋର ଜୀବନ ଦେବତାର ଡାକ– "ଆରେ ଭୋଳାମନ, ଅସମ୍ମାନିତ ପ୍ରାଣ, ନିନ୍ଦିତ ବ୍ୟକ୍ତି, ଅପଯଶିତ ମଣିଷ, ଆ ଚାଲିଆ, ଦୁନିଆ ତତେ ଏଇ ଭାବରେ ଡାକିଗଲା, ତୁ ଚାଲିଆ,

ମୁଁ ତୋର ନିନ୍ଦା, ଅପଯଶ, କଳଙ୍କ ସବୁ ନେଇଯିବି। କିଛି ଦୁଃଖ କରନା, ନିସ୍ପନ୍ଦ ଶାନ୍ତି ଭିତରେ ଚାଲି'ଆ–

ଆଉ ଜଣେ ଅଶ୍ରୁସ୍ନାତ ଚକ୍ଷୁରେ ବିଦୀର୍ଣ୍ଣ ବ୍ୟାକୁଳ ହୃଦୟରେ କହୁଛି– "ତୁମେ ଯାଅ ନାହିଁ, ତୁମ ଆଖିର ଅଞ୍ଜନରେ ଏ ଜୀବନକୁ ଯେପରି ଦେଖୁଥିଲ, ଯେ ବାଣୀରେ ତା'ର ରୂପ ଫୁଟାଉଥିଲ, ତାହାହିଁ କରି ଚାଲ... ଏତେ ଚଞ୍ଚଳ କାହିଁକି ଏ ସମାପ୍ତି ? ତୁମକୁ କେହି ବୁଝିଲେ ନାହିଁ ବୋଲି ଏତେ ପରିତାପ କାହିଁକି ? ହୁଏତ ତୁମର ବ୍ୟକ୍ତିତ୍ୱରେ ସେଇ ନ ବୁଝିପାରିବା ସଂପଦଟି ହିଁ ମହାମୂଲ୍ୟବାନ ... ତୁମେ ଯାଅ ନାହିଁ।"

ଯାକୁ କହନ୍ତି ଆକର୍ଷଣ। ମନ ପ୍ରାଣ ପୂରିଯାଏ ଏଇ ଆକର୍ଷଣର ମହାସଙ୍ଗୀତ ଶୁଣିବାରେ... ଏହା ବିନା ଆଉ କଅଣ ଅଛି ସଂସାରରେ ? ଅଦୂରେ ସିନ୍ଧୁରୋଳ ଶୁଭୁଛି। ମହାନିଦ୍ରା ଆଉ ମହାସିନ୍ଧୁ ଏକ କଥା। ଏ ଯେପରି ମହା ବିସ୍ମୃତିରେ ମହୀୟାନ୍ ସେ ସେହିପରି ମହା ବିସ୍ମୃତିରେ ଗରୀୟାନ୍। ବୋଧହୁଏ ଧୀରେ ଧୀରେ ମୋ ଅଙ୍ଗରୁ ଚୈତନ୍ୟ କ୍ଷୀଣ ହୋଇଆସୁଛି। ଆସିବ, ଦୁଃଖ କଅଣ ? ମାତ୍ର ସେଇ ମହାବିଲୁପ୍ତିର ଏକକ ବିନ୍ଦୁମାତ୍ର ସମୟରେ ମୁଁ କ'ଣ ଆଉ କିଛି ଭାବିପାରିବି ?

କହିଯାଏ ଗୋଟିଏ ପଦ କଥା ତାକୁ, ଯେ ମତେ ଭର୍ତ୍ସନା କରି କରି ଭଲ ପାଇଥିଲା। ଏମିତି ସାଧାରଣରେ ଘଟେ ନାହିଁ। ତମେମାନେ ଏ ବିଷୟରେ ବେଶୀ ଅଭିଜ୍ଞ, କେବଳ ତଫାତ୍, ଅନ୍ୟଠାରେ ଏ ଉପସର୍ଗ ଦେଖିଲେ ନୀତିଗ୍ରନ୍ଥ ଖୋଲି କହ– ଅଶ୍ଳୀଳ, ଅଶୋଭନୀୟ... ନୁହେଁ କି ? ନିଜ ବେଳକୁ ମୋ ପାଖକୁ ଆସି କେତେବାର କହିଛ, "ମୁଁ ପ୍ରଣୟାସକ୍ତ, ହେ ଲେଖକ, ହେ କବି, ଆମ ଦୁହିଁଙ୍କର ଏ ବେଦନାକୁ ଗୋଟିଏ କବିତାରେ, ଗୋଟିଏ ଗଳ୍ପରେ ରୂପ ଦିଅନ୍ତୁ।" ମୁଁ କିଛି କହିବା ପୂର୍ବରୁ ତୁମେ ଧନ୍ୟବାଦ ଦେଇସାରିଥାଅ। ମୁଁ ପ୍ରଣାମ କରେ ଏଇ ପ୍ରେମର ଗୁଞ୍ଜନକୁ; କିନ୍ତୁ ପଚାରେ– ପ୍ରୀତି–ଦର୍ପଣରେ ନିଜର ଆତ୍ମାକୁ ଦେଖିପାରୁଛ କି ? ଦେଖୁଛ କି ସେ ଆତ୍ମା ଅନିର୍ବଚନୀୟ ଶାଶ୍ୱତ ଦୀପ୍ତିରେ କିପରି ସ୍ଥିତିର ଖର୍ବତା ତୁମ ପ୍ରାଣର କ୍ଷୁଦ୍ରତାରୁ ଧ୍ୱଂସ କରି ତୁମକୁ ଆଣି ଦେଇଛି ଏକ ମହାମାନସ, ଏକ ମହତ୍ ଦୃଷ୍ଟି ?

ନାଃ, ମୋଠୁ ଏ କଥା ଶୁଣି ଯେଉଁମାନେ ଆସୁଥାନ୍ତି ମୋଠାରୁ କବିତା ଅଳ୍ପ ଲେଖାଇ ତାଙ୍କର ପ୍ରେମାଶକ୍ତିକୁ ପରିମଣ୍ଡିତ କରିବେ, ସେମାନେ ମୁହଁ ଫେରାଇ ଚାଲିଯାଆନ୍ତି; କାରଣ ମୋ କଷଟିପଥରରେ ସେମାନେ ପରୀକ୍ଷିତ ହୋଇପାରିଲେ ନାହିଁ। ଆତ୍ମଗ୍ଳାନି ତାଙ୍କୁ ବାଧିଲା। ସେମାନେ ପଳାଇଲେ କାହିଁକି ? ଧୀରେ ଧୀରେ ଉଚ୍ଚତର ସୋପାନକୁ ଯାଇଥାନ୍ତେ, ବିକାଶ ଦେଖିଥାନ୍ତେ... ଅଧୀର ହୋଇପଡ଼ିଲେ ବୋଧହୁଏ।

ମୁଁ ସେଇ ଦୃଷ୍ଟିରେ ଏ ଆକର୍ଷଣକୁ ଜୀବନସାରା ଦେଖି ଆସିଲି। ସେଥିପାଇଁ ମୁଁ ମରିଯାଇ ବି ବଞ୍ଚିବି। ଯେ ମୋର ବ୍ୟକ୍ତିତ୍ୱର କାଳିମା ଅଂଶଗୁଡ଼ିକ ଉପରେ ବାରମ୍ବାର ମନ୍ତବ୍ୟ ଦେଇ ମତେ ସଚେତନ କରିଥିଲା ସେଗୁଡ଼ିକୁ ଦୂର କରିବାକୁ, ତାକୁ ହିଁ ମୁଁ ମୋର ସମସ୍ତ ଭାର ଦେଇଥିଲି। ଅଶ୍ରୁ, ଆନନ୍ଦ, ମୃଦୁକମ୍ପନ, ମଧୁର ଲଜ୍ଜା ଭିତରେ ସ୍ପନ୍ଦିତ ଏ ପ୍ରାଣକୁ ତା'ରି ପାଖରେ... ପାଖରେ ନୁହେଁ... ତା'ର ସତ୍ତା ଭିତରେ ଅବଲୁପ୍ତ କରି ଦେଇଥିଲି... ମଧ୍ୟାହ୍ନର

ମରୁପଥରେ ଯେ କଳିଟି ବିକଶି ଉଠିଲା... ବିକଶି... ଆଃ...

× × ×

... ଆଃ... ନର୍ସ, ଏତେ ଲୋକ କାହିଁକି ? ମୁଁ ବୋଧହୁଏ ଅଚେତନ ହୋଇପଡ଼ିଥିଲି କେତୁଟା ମୁହୂର୍ତ୍ତ ! ଭୁଲ୍... ଭୁଲ୍... ମୁଁ ତ ଆଉ ଟିକିଏ ପରେ ପ୍ରଶାନ୍ତ ଗିରିମାଳାର ତୁଷାରସ୍ନିଗ୍ଧ ନିଶ୍ଚେତନ ପରିବେଶରେ ଘୂରି ବୁଲିବି ଆଉ ଦେଖିବି ବିଶ୍ୱବନ୍ଦ୍ୟ ହରଗୌରୀ ରୂପ... ମତେ ଆଉ କାହିଁକି ଘେରି ଛିଡ଼ାହୋଇଛ ?

ସେ କାହିଁ ? ମୂର୍ଖ ମୁଁ କାହାକୁ ଖୋଜୁଛି ? ସେ ତ ଶୋଣିତଧାରାର ତଳେ ତଳେ, ମୋ ମନର ଆଦିମ ପ୍ରବଣତାର ଗଭୀର ଉତ୍ସ ଭିତରେ ରହିଛି, ତାକୁ ତମମାନଙ୍କ ଭିତରେ ଖୋଜିବି କାହିଁକି ? କେତେ କଷ୍ଟ ନ ଦେଇଛ ତାକୁ ? ଆଘାତ ପରେ ଆଘାତ ସୃଷ୍ଟି କଲ ବହ୍ନିମୟ କରିଦେଲ ତା'ର ମନକୁ ଅସ୍ଥିର କରି, ରକ୍ତାକ୍ତ କରି– ଏଇ ତୁମେ ଆଉ ତୁମର ସଂସାର...

ଏତେ ଦୁଃଖ ଭିତରେ ବି ସେ ମୁକ୍ତ। ମୋ ମୁକ୍ତି ଯେ ଏ ଯାଏ ଆସି ନାହିଁ। ସେ କିନ୍ତୁ ବହୁ ପୂର୍ବରୁ ମୁକ୍ତ ହୋଇଛି। ସେ ଆଗରୁ ଯାଇଛି ଆୟୋଜନ କରିବା ପାଇଁ। ମୁଁ ଯେଉଁ ବାଟରେ ଯିବି ତାକୁ ସେ ରକ୍ତବସ୍ତ୍ର ଦେଇ ଆଚ୍ଛାଦନ କରିବ। ରକ୍ତଗୋଲାପର କୁମ୍ଭ ଥାପିତ ଦୁଇ ପାର୍ଶ୍ୱରେ। ଆଉ କେତେ କଅଣ ସେ କରିବ; ମୁଁ ଜାଣେ ତାକୁ... ଆଉ ତୁମମାନଙ୍କୁ ବି ଜାଣେ...

ସ୍ମୃତି... ସ୍ମୃତି... କଠିନ ସଂସାରଲୋଭୀ ମଣିଷ ସ୍ମୃତି ବୋଲି କିଛ ଜାଣେ ନାହିଁ। କହିଲେ ବିରକ୍ତ ହୁଏ। ମୁଁ କିନ୍ତୁ ମୋର ଅବସାନ ପରେ ବଞ୍ଚିରହିବି ସ୍ମୃତି ଭିତରେ... ସେ ଗୋଟିଏ ଗୋଟିଏ ପୂର୍ଣ୍ଣତୋୟା ଶତଦଳଶୋଭିତା ପୁଷ୍କରିଣୀ। ଯେତିକି ମୁଁ ସେଥିରୁ କୁସୁମ ତୋଳୁଥିବି, ସେତିକି ସ୍ପନ୍ଦିତ ହେଉଥିବ ସମଗ୍ର ଜଳରାଶି ଆଉ ତା ସଙ୍ଗେ ଶିହରିତ ହେଉଥିବ ମୋର ପ୍ରାଣପକ୍ଷୀ।

ନା, ତୁମେ କାନ୍ଦ ନାହିଁ। ଏଇଟାକୁ ମୁଁ ସହିପାରେନା, ସତ କହୁଛି। ଏଇଟା ଅତି ପାର୍ଥିବ। ଜୀବନରେ ମୁଁ ନିଜେ ବହୁତ କାନ୍ଦିଛି। ପୁରୁଷକାର ବାରଣ କରିଛି ବହୁବାର ଏବଂ କହିଛି ଏମିତି ଅଶ୍ରୁଧାରଣ ଲୋକକୁ ଦୁର୍ବଳ କରିଦିଏ। ତୁମେ ବି ଗାଳିଦେଇଚ। ଆଛା ଯିବା ପୂର୍ବରୁ ପଚାରେ। ମୋଠାରେ ପୌରୁଷ ବୋଲି କିଛି ଦେଖିଲ କି ? ଉତ୍ତର ତୁମେ ଦେବ ନାହିଁ ମୁଁ ଜାଣେ। କାରଣ ତୁମେ ଦେଖିନ ମୋ ପାଖରେ ପୁରୁଷକାରର ପ୍ରଚଣ୍ଡ ସ୍ଫୂର୍ତ୍ତି। କିମିତି ଦେଖିବ ? ମୁଁ ଗୀତ ରଚନା କରେ, କଥା ସୃଷ୍ଟି କରେ, ଆତ୍ମଭୋଳ ହୋଇଥାଏ, ସ୍ୱପ୍ନରେ ସିନ୍ଦୂର ଦିଏ ତୁମ ସୀମନ୍ତରେ; ଅଥଚ ଉଜ୍ଜ୍ୱଳ ଆଲୋକରେ ମୁଁ ଲୁଚିଯାଏ, ନିର୍ବୀର୍ଯ୍ୟ କାପୁରୁଷତାକୁ ଘେନି... ସେଠି କି ପୁରୁଷକାର ବା ଦେଖିବ ?

କିନ୍ତୁ ତୁମେ ଯାହା ଦେଖିଲ, ଅନ୍ୟ କେହି ଦେଖି ନାହାନ୍ତି ମୋଠି... ତୁମେ ମତେ କହିଛ ତୁମେ ମୋଠି ଦେଖିଛ କେବଳ ତୁମେ... ତୁମେ... ତା'ର ଅତିରିକ୍ତ ନୁହେଁ କି ତା'ର ନିମ୍ନ କିଛି ନୁହେଁ। କହିଲ, ଏ ଯେ ରଚନା ବା ବାଣୀ ମୁଁ ଦେଇଯାଉଛି, ଏ କଅଣ କାହାକୁ ଭଲ ଲାଗିବ ? କହିବେ– ଜୀବନଟାଯାକ ଆତ୍ମକେନ୍ଦ୍ରିକ ରହିଗଲା; ଶେଷ ପ୍ରୟାଣପୂର୍ବରୁ ବି ସେଇ ଆତ୍ମକେନ୍ଦ୍ରିକ।

ଆତ୍ମାର କଥା କହିବ ନାହିଁ ତ ଆଉ କାହା କଥା କହିବି ? ଏହାର ଅର୍ଥ ମୁଁ ବୁଝିପାରୁନାହିଁ। ତୁମେ ତ ଜୀବନରେ ଅନେକ କଥା ମତେ ବୁଝେଇଛ। ତୁମେ ଏତେ ଦୃଢ଼, ଶକ୍ତ ଓ ଆତ୍ମ–ସମାହିତ ହେଲ କିପରି ? ଜୀବନଯାକ ବେଦନାସ୍ପର୍ଶ ହିଁ ତୁମକୁ ଏତେ ଶକ୍ତ କରିଛି। ବେଳ ସରିଆସିଲା। ରକ୍ତିମ ସୂର୍ଯ୍ୟ ଢ଼ଳିପଡ଼ିବେ। ସେଇ ଢଳିବାଦୃଶ୍ୟ ସବୁବେଳେ ସୁମହାନ୍। ସେଠି ଦୈନ୍ୟ ନାହିଁ, ଦାରିଦ୍ର୍ୟ ନାହିଁ। ମୁଁ ସେମିତି ଢଳିଯିବି। ଦୀନ ଭାବରେ ନୁହେଁ, ଦରିଦ୍ର ଭାବରେ ନୁହେଁ; ରାଜରାଜେଶ୍ୱର ଭାବରେ...

ତୁମକୁ କହିଯାଉଛି। ଶେଷ ଅଭିଳାଷ; ଆଉ ଏ ଜନତାକୁ ବି କହିଯାଉଛି। ସମସ୍ତେ ଜାଣନ୍ତି ମୁଁ ମହାସିନ୍ଧୁର ଉପାସକ, ରସିକ, ପ୍ରେମିକ। ତା'ରି ତଟଦେଶରେ ମୋର ପ୍ରାଣହୀନ ଦେହକୁ ରଖିବ, ଯେପର୍ଯ୍ୟନ୍ତ ମୋ ଦେହର ଉଷ୍ମା ସିନ୍ଧୁଗର୍ଭର ଅଯୁତ ଶିଶିରମାଳା କମ୍ପନଶ୍ରୀରେ ଶୀତଳ ନ ହୋଇଛି। ଭାରି ଭଲ ଲାଗେ ଏଇ ଜଳକଣାର ସ୍ପର୍ଶ। ଏଇ ବେଳାଭୂମିରେ ବସି ମଣିଷ ଜୀବନକୁ କେତେ ମୁଁ ଧ୍ୟାନ କରିଛି; ଜୀବନର ଖଣ୍ଡତା ଆଉ ଖର୍ବତାକୁ ବିସର୍ଜନ ଦେଇ ମହାପ୍ରଶାନ୍ତିରେ ଅଭିଭୂତ ହୋଇଛି ଏହିଠାରେ। ଗଲାବେଳକୁ ସେ ପଥ ଉପରେ ମତେ ଟାଣିନେବ; ଦେଖୁ ଦେଖୁ, ସିନ୍ଧୁ ଗୋଟାଏ ନଗଣ୍ୟ ଘୃଣିତ ଲେଖକର ମନ ଓ ତନୁ ଉପରେ କ୍ରୂର ଆଘାତ ଓ ସ୍ନିଗ୍ଧ ପ୍ରେମର ରେଖାବଳୀ କିପରି ପାଖକୁ ପାଖ ଚିହ୍ନିତ ରହିଛି।

ଆଉ ତ କିଛି ଦେଖାଯାଉ ନାହିଁ। ଧୀରେ ଯେପରି ଗୋଟାଏ ଆଚ୍ଛନ୍ନ ଗୋଧୂଳି ଘୋଟିଆସୁଛି। ତା'ପରେ ମହାରାତ୍ରି... ଆସିବ ଘୋର ଅନ୍ଧକାର।

ହେ ମହାପ୍ରଦୀପ, ତୋର ଜ୍ୱଳନଦୀପ୍ତି ଧୀରେ କମିଆସିଛି। ଚାରିଆଡ଼େ କର୍ମ କୋଳାହଳରତ ନରନାରୀ... ଅଥଚ ମୁଁ ଗୋଟିଏ କ୍ଷଣ ପରେ ହୋଇଯିବି ଜଡ଼, ନିଶ୍ଚଳ, ନିର୍ବାକ୍, ନିସ୍ପନ୍ଦ... ଜୀବନକୁ ଖୁବ୍ ଭଲ ପାଇଥିଲି... ମୃତ୍ୟୁ ବି ଅମୃତ ଆଣିଦେବ। ମଝିରେ ରହିଗଲା ମୋର ଶିଳ୍ପ... ସେ ତ ଅକ୍ଷୟ, ଅବ୍ୟୟ... କାନ୍ତ... କମନୀୟ।



# ଅନନ୍ତିକା

ପ୍ରସୂତି ଭବନରୁ ସଦ୍ୟ ଫେରିଥିବା ସ୍ତ୍ରୀଙ୍କ ମୁହଁକୁ ଗୋଟିଏ ବର୍ଷଣ ସଞ୍ଚରେ କେଜାଣି କାହିଁକି କେମିତି ଚାହିଁଦେଇ ହସି କହିଲି–

'ଏବେ କଅଣ ହେଲା ? ଏସବୁ କଥାରେ ପରୀକ୍ଷା କରିବା ଠିକ୍ ହେଲା ତ ?'

ମେଘଡମ୍ବରୁ ମୁହଁ ଭାର କରି ସ୍ତ୍ରୀ କହିଲେ– 'ତୁମ ପୁରୁଷଗୁଡ଼ାଙ୍କର ନିର୍ଲ୍ଲଜତା କଅଣ ଆଉ ଜାଣିବାକୁ ବାକି ଅଛି ? ପରୀକ୍ଷା ତୁମେ କରୁଥିଲ ନା ମୁଁ କରୁଥିଲି ? କଅଣ ଗୋଟାଏ ନିଆଁ ପୋଡ଼ା ବାଲାନ୍‌ସ ରହିବ ବୋଲି କହିଲ। ଦୁଇ ଝିଅକୁ ଦୁଇ ପୁଅ, ଏବେ ପୁଅ ବଦଳରେ ଝିଅ ପାଇଲ। ନିକିତି ଠିକ୍ ରହିଲା ତ ? ବ୍ରହ୍ମାଣ୍ଡଗୋସେଇଁଙ୍କ ବିଧାନକୁ ତୁମେଗୁଡ଼ାଏ ପ୍ରକୃତିଛଡ଼ା ଲୋକ ବଦଳେଇ ପାରିବ ? ଏବେ ତିନି ଝିଅକୁ ଏକ ପୁଅ। ବାଲାନ୍‌ସ ଟିକିଏ ଏପଟ ସେପଟ ହୋଇଯିବାରୁ ଦେଖିଲ ତ ତାରତମ୍ୟ କେତେ ନିଷ୍ଠୁର ହୋଇଗଲା ?

ଶୁଣ, ତିନି ଝିଅ– ଏଁ, ମାନେ ଶାଢ଼ି, ବ୍ଲାଉଜ, ସେଲୱାର, ଗହଣାଗାଣ୍ଠି, ତାଙ୍କ ବାହାଘର, ପୁଣି କଲେଜରେ ପଢ଼ିଲେ ସେମାନଙ୍କ ପାଇଁ ଅଲଗା ବ୍ୟବସ୍ଥା ଓ ବ୍ୟବସ୍ଥା ଅନୁଯାୟୀ ଖର୍ଚ୍ଚ; ଦୁଷ୍ଟ ଲୋକଙ୍କ କବଳରୁ ରକ୍ଷା କରିବାକୁ ହେଲେ ରିକ୍‌ସା ମଟର ଭିତରେ ଥୋଇ ତାଙ୍କୁ ନବା ଆଣିବାରେ ଯେତେ ବାଜେ ଖର୍ଚ୍ଚ– ଏସବୁ ଭବିଷ୍ୟତରେ ରହିଛି। ମୁଁ ମନା କରୁଥିଲି ବୁଢ଼ାଦିନେ ଏ ରଙ୍ଗରସ କରିବାକୁ। ଆମର ବାଲାନ୍‌ସ ଦରକାର ନାହିଁ। ଏଣେ ବ୍ୟାଙ୍କ୍‌ରେ ବାଲାନ୍‌ସ ଶୂନ୍ୟ। ମୋ କଥା ସେତେବେଳେ ଘେନା କରିଥିଲ ? ନା ପୌରୁଷର ବଡ଼େଇ ଦେଖେଇ ହେଉଥିଲ ? ହଇଏ ?

ସେତେବେଳକୁ 'ହଇଏ' ଅର୍ଥାତ୍ ମୁଁ ନୀରବ ନିସ୍ତବ୍‌ଧ ହୋଇ ଗଲିଣି। ଆକାଶରେ ବାଦଲ ଛାଇ ହୋଇଯାଇଛି। ପଶ୍ଚିମ ଆକାଶ ଆହୁରି କଳା। ଅଭିମାନିନୀ ତରୁଣୀର ମୁହଁ ଭାର ଭଳି ତାର ଥନ ଥନ ଭାବ। ମୋ ମନଟା ବି ସେମିତି ବେଦନାକ୍ରାନ୍ତ ଥର ଥର ଭାବ।

ମୁଁ ଶୁଣେଇ କହିଲି– 'ମୁଁ ଗଢ଼ିଥିଲି ଗଢ଼ି ଦେଇଥାନ୍ତି ଗୋଟିଏ ପୁଅ, ବିଶ୍ୱବିଧାତାଙ୍କର ଘିଅ ଗୁଡ଼ ଘରେ ପିମ୍ପୁଡ଼ି ପଶି ଯାଇ ନଥାନ୍ତେ। ଯିମିତି ସୃଷ୍ଟି ଚାଲୁଥିଲା, ଚାଲୁଥାଆନ୍ତା। ଦୁଇ ପୁଅକୁ ଦୁଇ ଝିଅ– ବେଶ୍ ସମତା ରହିଥାନ୍ତା।

ଏବେ ସବୁ ଓଲଟ ପାଲଟ ହୋଇଗଲା। ସାଇ ପଡ଼ିଶା ଚିହ୍ନା ସାଙ୍ଗ, ବନ୍ଧୁବାନ୍ଧବ ଟୁପୁରୁଟାପର ହେଉଛନ୍ତି– ୟାଙ୍କର କଅଣ ଏକୋଇଶା କି ତିରିଶିଆ ହେବନାହିଁ କି ?

ହାଏରେ, ଦୁର୍ଭାଗ୍ୟ ! ମନ ଫୁଲାଣିଆ ସିନା ଗୀତ ଗାଏ ! ଏଇ ଅବାଞ୍ଛିତ କାବ୍ୟ–ଉପେକ୍ଷିତା କନ୍ୟାପାଇଁ ମୁଁ ଆଲୁଅ ଜଳେଇବି ? ଏକୋଇଶା କରିବି ? ଦଶ ଜଣଙ୍କୁ ଗୋଗ୍ରାସ ଦେବି ?

ଆଚ୍ଛା କହିଲ, ବନଜା, ହେଙ୍ଗାମା କଅଣ ଏତିକିରେ ସରିବ ? ଝିଅକୁ ଦଶ ବର୍ଷ ହେଲାବେଳକୁ

ଯୁବା ଟିଉସନ ମାଷ୍ଟର ରଖିବାକୁ ମନ ପଡେଇବ ନାହିଁ। ତେଣିକି ଘରେ ବୁଢ଼ା, ଅଥର୍ବ, କଣା, ଛୋଟା ଚାକର ଆଉ ରାନ୍ଧୁଣୀ ରଖିବାକୁ ପଡ଼ିବ। ସବୁବେଳେ ଆତଙ୍କ, ଆଶଙ୍କା।

କିନ୍ତୁ ପୁଅ? ପୁଅ କଥା ଛାଡ଼। ସେ ରାଜା। ସେ ରାଜାର ପୁଅ ଭଳି ପକ୍ଷୀରାଜ ଘୋଡ଼ା ଉପରେ ବସି ଉଡ଼ିବ। କି ପରବାଏ ତାର? ଫୁଟବଲ ପଡ଼ିଆରେ ଗଡ଼ିବ। ହକି ଷ୍ଟିକ୍ ଧରି ମାତି ଉଠିବ। ଗୋଟାଏ କଥାରେ ତାର ପ୍ରତି ଅବୟବରେ ତରଳ ରକ୍ତତରଙ୍ଗ ତାକୁ କରିବ ଅପରାଜେୟ। ନିର୍ଭୀକ!

ଅଥଚ ତାରି ଚଲାପଥ ଉପରେ ଈଷଣ ହାଣୁଥିବେ ଏଇ କାବ୍ୟ—ଉପେକ୍ଷିତା ଅବାଞ୍ଛିତା ଝିଅଦଳ। ପରଦା ଫାଙ୍କରେ, ବଗିଚା, ଥିଏଟର, ସିନେମା ଘରେ ଗୁଣୁଗୁଣୁ ଗୁଞ୍ଜନ ତୋଳି ତାକୁଇ ପ୍ରଲୁବ୍ଧ କରୁଥିବେ।

ସ୍ତ୍ରୀ ସବୁ ଶୁଣୁଥିଲେ ବିମୂଢ଼ ଭାବରେ। କେତେବେଳକୁ ସେ ବାତ୍ସଲ୍ୟ—ଭରା କଣ୍ଠରେ କହିଲେ— 'ଥାଉ ବହୁତ କଥା କହିଗଲଣି। ଭାଗ୍ୟରେ ଯଦି ଥିବ, ଆଜି ଯାହାକୁ ତମେ ଅବାଞ୍ଛିତା କହି ହୀନିମାନ କରୁଛ, ସେଇ ପୁଣି ଦିନେ ରତ୍ନ ହୋଇଉଠିବ। ସେଇ ପୁଣି ଦିନେ ଆମ ହୃଦ—ଅନ୍ଧାରକୁ ରଶ୍ମି ଆଭାରେ ଉଜ୍ଜ୍ୱଳ କରିଦେବ। ନାଆଁ ଖୋଜି ପାଉ ନଥିଲି। ଏବେ ଏଇ 'ରଶ୍ମି' ନାଆଁଟି ରଖିଲି।

ହଁ, ତୁମର ଯେ ସମୟ ହେଲାଣି। ସାତଟା ତିରିଶ ମିନିଟ୍। ଆଉ ପନ୍ଦର ମିନିଟ୍ ପରେ ଆକାଶବାଣୀରେ ତୁମର ଗଳ୍ପ ପ୍ରଚାର। ମନକୁ ସ୍ଥିର କରି ଷ୍ଟୁଡ଼ିଓ ଭିତରକୁ ଯିବ। ନିଜ ଭାଷଣ କହିବ। ପୁଅ ହେଉ ବା ଝିଅ ହେଉ ସବୁ ଦେବତାର ଆଶୀର୍ବାଦ ବୋଲି ଭାବିନିଅ। ଗଳାଖଙ୍କାରି ଆରମ୍ଭ କରିବ। ତୁମ ଗଳାର ଥଣ୍ଡା ଲାଗିଛି, ଶୀଘ୍ର ଯାଅ।

× × ×

ଉଣେଇଶ ଅଠସ୍ତରୀ ବର୍ଷ ଜୁଲାଇ ପଚିଶ ତାରିଖ। କୋଡ଼ିଏ ବର୍ଷ ପାଣି ଭଳି ଭାସିଯାଇଛି। ବୃଦ୍ଧ ଜ୍ୟୋତିରୀନ୍ଦ୍ର ଶଯ୍ୟା ଉପରେ ଅଙ୍ଗ ଢ଼ାଳି ଖଣ୍ଡିଏ ଉପନ୍ୟାସ ପଢୁଛନ୍ତି। ଜୀବନରେ ରାଶି ରାଶି ପୁସ୍ତକ ସେ ପଢ଼ିଛନ୍ତି; ତଥାପି, ଜୀବନ—ରହସ୍ୟ ତାଙ୍କ ପାଖରେ ପରିଷ୍କାର ହେଲା ନାହିଁ।

୧୯୭୮ ଉପନ୍ୟାସରେ ନ ଥିଲା ପ୍ରେମର କୁହୁ ତାନ, ଥିଲା ବିଜ୍ଞାନର ଜୟ ଘୋଷଣା। ସ୍ପେସ୍, ଚନ୍ଦ୍ରମଣ୍ଡଳ, ମଙ୍ଗଳଗ୍ରହ ଲୋକଙ୍କ ମୁହେଁ ମୁହେଁ ଏଇ ସବୁ ପ୍ରଚାରିତ ହେଉଥିଲା। ସ୍ପେସ୍‌ରେ ଷ୍ଟେସନ୍ ତିଆରି ହୋଇଛି। ସ୍ଥଳ ଉପରେ ମଣିଷର ପାଦ ରହୁନାହିଁ, ରହୁଛି ବ୍ୟୋମରେ। ଯାନ୍ତ୍ରିକ ଯୁଗର ଚରମ ବିକାଶ।

ବୃଦ୍ଧ ଜ୍ୟୋତିରୀନ୍ଦ୍ର ସ୍ତ୍ରୀଙ୍କୁ ଡାକିଲେ— କହିଲେ— ଟେଲିଭିଜନ୍ ସେଟ୍ ଖୋଲିଦିଅ। ସ୍ପେସ୍‌ର କେଉଁ ଷ୍ଟେସନରୁ କି ଖବର ଆସୁଛି, ଶୁଣିବା। ଶୂନ୍ୟରେ ଷ୍ଟେସନ ଘର, ରକେଟ୍‌ରେ ମଣିଷ ଯାତ୍ରୀ ଆଜି ଆଉ ମିଥ୍ୟା ହୋଇ ରହିନାହିଁ। ସେଇଠି ପୁଣି ମଣିଷ ପୁଅ ଝିଅ ଜନ୍ମ କରୁଛି।

... ତୁମେ ବନଜା, ଇମିତି ହଠାତ୍ ମନମରା ହୋଇଗଲ କାହିଁକି? ଓଃ, ବୁଝୁଛି। ଝିଅ କଥା ମନେ ପଡ଼ିଗଲା ପରା? ବହୁ ସନ୍ଧାନ କଲି, ତାକୁ ପାଇଲି ନାହିଁ। କେବଳ ଦୀର୍ଘନିଃଶ୍ୱାସ ହିଁ ସାର ହେଲା।

ଶୁଣିଛି ସେ ଭାରତବର୍ଷ କାହିଁକି ପୃଥିବୀରେ ଜଣେ ନାରୀ ବୈଜ୍ଞାନିକା। ସ୍ପେସ୍ ବିଷୟରେ ସେ ଗବେଷଣା କରିଛି। ଆଜି ତାର ସବୁଆଡ଼େ ପ୍ରଶସ୍ତି। କିନ୍ତୁ ବାପ ମାଆଙ୍କୁ ସେ ଯାହା ଭୁଲିଗଲା। ନା– ନା ମୋର ମନ କହୁଛି ସେ ଆମକୁ ଭୁଲି ନାହିଁ। କେବଳ ଅଭିମାନ... ଅଭିମାନ।

ଟେଲିଭିଜନ୍ ସେଟ୍‌ରୁ ଶୁଣାଗଲା– ୧୯୭୮ ଜୁଲାଇ ୨୫ ତାରିଖ ସନ୍ଧ୍ୟା ୭।୪୫ ମିନିଟ୍‌ରେ ଆପଣ ଶୀଘ୍ର ଶୁଣିବାକୁ ପାଇବେ ପ୍ରସିଦ୍ଧ ବୈଜ୍ଞାନିକା କୁମାରୀ ଅନନ୍ତିକାଙ୍କ ସହିତ ଆକାଶବାଣୀର ଷ୍ଟେସନ ଡିରେକ୍ଟରଙ୍କର ସାକ୍ଷାତ୍‌କାର ପ୍ରଚାର। କୁମାରୀ ଅନନ୍ତିକା...

'ଆଚ୍ଛା, କୁମାରୀ ଅନନ୍ତିକା, ଆପଣ ବିଜ୍ଞାନର ଏତେ ବଡ଼ ସାଧକ ହେବାପାଇଁ କେଉଁଠାରୁ ପ୍ରେରଣା ପାଇଲେ ?'

ଉତ୍ତର– 'ପ୍ରଥମରେ ପିଲାଦିନରୁ ବିଜ୍ଞାନ ରହସ୍ୟ ମତେ ଅଭିଭୂତ କରୁଥିଲା। ଦ୍ୱିତୀୟରେ ମୋର ବାପା ମାଆଙ୍କର ମୋ ପ୍ରତି ଅଶ୍ରଦ୍ଧା।'

'ଆଶ୍ଚର୍ଯ୍ୟ, ମୁଁ ବଡ଼ ଦୁଃଖିତ। ବାପାଙ୍କର ଏଇ ଅଶ୍ରଦ୍ଧାର କାରଣ ?'

ଉତ୍ତର– 'ମୁଁ ଝିଅ ବୋଲି। କୋଡ଼ିଏ ବର୍ଷ ତଳେ ମୁଁ ଜନ୍ମ ହୋଇଥିଲି। ବାପା ମାଆ ମତେ କେହି ଚାହିଁ ନ ଥିଲେ। ତେଣୁ ତାଙ୍କ କଥାରେ ମୁଁ ଥିଲି ଅବାଞ୍ଛିତା।'

ସାକ୍ଷାତ୍‌କାରୀ ପ୍ରଶ୍ନ କଲେ– 'ଘର ସହିତ ସମ୍ବନ୍ଧ ରଖିଛନ୍ତି ତ ?'

ଉତ୍ତର– 'ନାଁ, ବିଶ୍ୱବିଦ୍ୟାଳୟ ଡିଗ୍ରୀ ପରେ ମୁଁ ଶୂନ୍ୟବ୍ୟୋମ ସମ୍ବନ୍ଧରେ ଗବେଷଣା କରି ଏକପ୍ରକାର ଶୂନ୍ୟ ସହିତ ମିଶିଯାଇଛି, ତଥାପି ମାଆ ବାପାଙ୍କ ପ୍ରତି ମୋର ଅଭକ୍ତି ନାହିଁ। ସେମାନେ ଚାହୁଁଥିଲେ କେବଳ ପୁଅ, ମୁଁ ଝିଅ ଜନ୍ମିଲି। ମତେ ପାଇ ତାଙ୍କ ମନ ଭଲ ରହିଲା ନାହିଁ।'

ସାକ୍ଷାତକାରୀ ପୁଣି ପଚାରିଲେ–

'ଆଚ୍ଛା, କହନ୍ତୁ ତ ଆପଣ ଯେ ପିଲାଦିନୁ ବାପାଙ୍କ ଦ୍ୱାରା ଅବାଞ୍ଛିତା, ତାହା ଆପଣ ଜାଣିଲେ କିପରି ?

ଉତ୍ତର– 'ବାପାମା'ଙ୍କର ପିଲାପ୍ରତି ହାବଭାବ ଶିଶୁ ବେଶ୍ ଜାଣିପାରେ। ମୁଁ ଜାଣିପାରିଥିଲି। ତେବେ ବେଶୀ ଜାଣିଲି ଗୋଟିଏ ସ୍କ୍ରିପ୍ଟରୁ...'

ସ୍କ୍ରିପ୍ଟ... ମାନେ ? ବେତାର... ଲେଖାରୁ ?'

'ହଁ।'

'କିପରି ?'

'ବାପା ମୋର ୧୯୫୮ ଜୁଲାଇ ୨୫ ତାରିଖରେ ଯେଉଁ ଛୋଟ ଗଳ୍ପଟି ଆକାଶବାଣୀରୁ ପ୍ରଚାର କରିଥିଲେ, ସେଇଟି ମୁଁ ବହୁଦିନ ତଳେ ଆପଣଙ୍କର ଷ୍ଟେସନର ପ୍ରୋଗ୍ରାମ ପରିଚାଳିକା ଭାବରେ ପାଇ ପାରିଥିଲି। ସେଥିରେ ମୋ ବିଷୟର ଉଲ୍ଲେଖ ଥିଲା।'

ସାକ୍ଷାତ୍‌କାରୀ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ–

'ଛୋଟ ଗଳ୍ପ ? ସେ ସବୁ ତ ମିଥ୍ୟା ଓ କଳ୍ପନା।' ଅନନ୍ତିକା ଦୃଢ଼ କଣ୍ଠରେ କହିଲେ– 'ନା, ବାପା ଯେଉଁ ଗଳ୍ପ ଲେଖନ୍ତି, ତାହା ପୂରାପୂରି କଳ୍ପନା

ନୁହେଁ। ସେଥିରେ ପୂର୍ଣ୍ଣ ହେଉ ବା ଆଂଶିକ ହେଉ ସତ୍ୟ ନିହିତ ଥାଏ। ଲେଖକ ଭାବରେ ବାପାଙ୍କର ଏହା ହିଁ ପ୍ରତିଷ୍ଠାର ଏକ କାରଣ। ବଡ଼ ବାସ୍ତବ ତାଙ୍କର ଗଳ୍ପ।'

'ତା ପରେ—'

'ହଁ, ସେଇ ସନ୍ଧ୍ୟାରେ ବାପା ଗଳ୍ପରେ ଘୋଷଣା କରିଥିଲେ— ହାୟ ରେ ଦୁର୍ଭାଗ୍ୟ! ମନଫୁଲାଣିଆ ସିନା ଗୀତ ଗାଏ, ଏଇ ଅବାଞ୍ଛିତା କାବ୍ୟେ–ଉପେକ୍ଷିତା କନ୍ୟା ପାଇଁ ମୁଁ ଆଲୁଅ ଜଳେଇବି? ଏକୋଇଶା କରିବି? ଇମିତି ଆଉ କେତେ କଥା। ସେଥିରୁ ମୁଁ ବୁଝିଲି ବାପା ମାଆଙ୍କର ମୋ ପ୍ରତି ଏକପ୍ରକାର ଘୃଣା ଥିଲା। ମୁଁ ଆଉ ଘରର ସ୍ନେହ ନ ଚାହିଁ, ଚାହିଁଲି ବିଶ୍ୱକୁ... ଅନନ୍ତକୁ।'

ସାକ୍ଷାତ୍‌କାରୀ ଘୋଷଣା କଲେ– 'ଆଚ୍ଛା ଆପଣଙ୍କର ନାଆଁ ପରା ଅନନ୍ତିକା?'

ଉତ୍ତର– 'ଏକ୍ଷଣି ତ କହିଲି। ଯେ ବିଶ୍ୱକୁ ଘର ବୋଲି ଭାବି ବସିଲା, ତାର ନାଆଁ ଆଉ କଅଣ ହୋଇପାରେ? ମୋର ନାଆଁ ଅନନ୍ତିକା।'

'— ଏ ତ ଅଦ୍ଭୁତ ନାଆଁ?' ଘୋଷକ ଘୋଷଣା କଲେ।

'—ହଁ। ଅଦ୍ଭୁତ ହୋଇପାରେ। ମାତ୍ର ମଣିଷ ଆଜି ଅନନ୍ତର ସାମଗ୍ରୀ। କେଉଁ ଦେଶ, କେଉଁ ରାଷ୍ଟ୍ର ବା ସଂକୀର୍ଣ୍ଣ ଗୋଷ୍ଠିଗତ ପରିଧିର ସେ ଦାସ ନୁହେଁ? ଜଣେ ବୈଜ୍ଞାନିକ ପାଇଁ ଅତି ଉପଯୁକ୍ତ ଭାବି ମୁଁ ମୋ ନାଆଁ ବଦଳେଇ ଅନନ୍ତିକା ହୋଇଛି।'

ସାକ୍ଷାତ୍‌କାରୀ କହିଲେ—

'ତେବେ ଏଥିରୁ ଜଣାପଡୁଛି ଆପଣଙ୍କର ଆଉ ଗୋଟିଏ ନାଆଁ ଥିଲା?'

— 'ହଁ ଥିଲା, ସେଇ ବେତାର ଛୋଟ ଗଳ୍ପରେ ବାପା ପ୍ରଚାର କରିଥିଲେ ମୋ ନାଆଁ ରଶ୍ମି। ବୋଧହୁଏ ଅନୁତପ୍ତ ହୃଦୟରେ ସେ ଏଇ ନାମ ରଖିଥିଲେ ତାଙ୍କ ହୃଦଅନ୍ଧକାରକୁ ଉଜ୍ଜ୍ୱଳ କରିବି ବୋଲି। ମାତ୍ର ତାହା ଆଉ ହୋଇପାରିଲା ନାହିଁ।'

ସାକ୍ଷାତ୍‌କାରୀ ଆନନ୍ଦରେ ପରିବେଷଣ କଲେ—

'ଆପଣ ତ ପୃଥିବୀର ଜ୍ଞାନାନ୍ଧକାରକୁ ଉଜ୍ଜ୍ୱଳ କରୁଛନ୍ତି। ଧନ୍ୟବାଦ, ଅନନ୍ତିକା : ନମସ୍କାର...।

ବୃଦ୍ଧ ଜ୍ୟୋତିରୀନ୍ଦ୍ର ଶେଷ ଶବ୍ଦ ଶୁଣୁ ଶୁଣୁ ଚିତ୍କାର କରି ଉଠିଲେ... ମା ରଶ୍ମି ... ରଶ୍ମି... ବନଜା, ତୁମେ କାନ୍ଦୁଚ? ଏଇ ଯେ... ଏଇ... ରଶ୍ମି ... ସେ କଥା କହୁଥିଲା। ମୋ କଥା ଠିକ୍। ସେ ଅଭିମାନିନୀ ଆଜି ପୃଥିବୀର ଜଣେ ଜ୍ଞାନ ସାଧକ। ଆରେ, ତାକୁ କଅଣ ତୁମେ ପଣତ ତଳେ ଧରି ରଖିପାରିଥାନ୍ତ? ରଶ୍ମି, ତୁ ଆମକୁ କ୍ଷମା କର। କୋଡ଼ିଏ ବର୍ଷ ତଳେ ତୋର ଜନ୍ମ ଘେନି ଯେ ନିରାନନ୍ଦ ମୁଁ ଭୋଗିଥିଲି, ତାହା ଆଜି ମହାଆନନ୍ଦ ଓ ଗର୍ବରେ ପରିଣତ ହୋଇଛି।

ପୁଅ କିଏ? ଝିଅ କିଏ? ନାରୀ ଓ ପୁରୁଷ ସୃଷ୍ଟିକର୍ତ୍ତାଙ୍କର କଲ୍ୟାଣବାହୀ ଦୁଇ ଅଙ୍ଗ। ପୁଅର ଯେତିକି ଜୟ, ଝିଅର ସେତିକି ଜୟ... ନା...ନା... ତାଠାରୁ ବେଶୀ... ତାଠାରୁ ବେଶୀ ଜୟ... ଝିଅର ବେଶୀ ଜୟ...'

■■■

# ଶେଷ

—"ଶେଷ ହୋଇଗଲା ? ଶେଷ ? ନିମିଷକେ ଶେଷ ହୋଇଗଲା ? ହାଃ ହାଃ ଜୀବନ ଏତେ ସୁନ୍ଦର, ମରଣ ଏତେ ବୀଭତ୍ସ ! କାହାର ସେ କଅଣ କରିଥିଲା ? ଏତେ ଚଞ୍ଚଳ ଶେଷ ହୋଇଗଲା ?—"

ଯେ ଏ କଥା ଚିତ୍କାର କରି କହୁଥିଲେ, ସେ ଭୂଇଁ ସାଉଁଟି ହଜିଲା ମାଣିକକୁ ଖୋଜୁଥିଲେ। ମାଣିକ ସତ, ଆଖିର ଜ୍ୟୋତି, ଅନ୍ଧର ଲଉଡ଼ି।

ଯାହାର ଗୋଟିଏ ମାତ୍ର ସନ୍ତାନ, ଇହ ଆଉ ପରକାଳକୁ ବାଟ ଦେଖାଇବା ପାଇଁ ଧରା ଛୁଇଁଥାଏ, ସେ ତ ଯଶୋଦାର କୋଳନନ୍ଦନ। ନ ଥିଲେ ଅଙ୍କ ଶୂନ୍ୟ, ଥିଲେ ରତ୍ନର ତେଜ ଭଳି ଚାରିଆଡ଼େ ଜଳୁଥାଏ। ବୟସ ବଢ଼ିଯାଇଛି, ସ୍ୱାମୀ ଆଉ ସ୍ତ୍ରୀଙ୍କର। କେତେ ଆଦରର କେତେ ଯତ୍ନର ସେଇ ଛୋଟ ଦେବତାଟି। ମନ୍ଦିର ଭିତର ଦେବ-ବିଗ୍ରହ ଉପରେ ଚକ୍ଷୁ ଢ଼ାଳି ଭକ୍ତ ସ୍ଥିର ରହିବା ପରି ଏମାନେ ତାକୁ ଦେଖି ଥରେ ଥରେ ଚମକି ଉଠନ୍ତି, ବିଶ୍ୱାସ କରି ପାରନ୍ତି ନାହିଁ ତାଙ୍କରି ଶୋଣିତପଦ୍ମ।

ପୁଅ ? ରତ୍ନମାଳୀ ଜିଭ ିାମୁଡ଼ି ଦଣ୍ଡେ ଅଚଳ ରହିଯାଆନ୍ତି। ମୋ ପୁଅ ? କଅଣ ପାଗଳଙ୍କ ଭଳି କଥା କହୁଛ ମ ? ନା, ନା, ସେ ଜଗନ୍ନାଥଙ୍କ ପୁଅ, ମହାଦେବଙ୍କ ପୁଅ। ସେ କୋଟି କୋଟି ଦେବତାଙ୍କ ପୁଅ। ଆମ ପୁଅ କହିଲେ ଦେବତା ରାଗ କରିବେ। ତାକୁ ସେ ନେଇଯିବେ— ହଁ— ନେଇଯିବେ। ତମେ ତାକୁ ମୋ ଆଖି ଆଗରୁ କୁଆଡ଼େ ନିଅ ନାହିଁ। ଶୁଣୁଛ ?

ଓଡ଼ିଶାର ଗୋଟିଏ କ୍ଷୁଦ୍ର ପଲ୍ଲୀରେ ଏମାନେ ଚାଳ ବାନ୍ଧି ଥାଆନ୍ତି। ସହରର ବହୁ ଦୂରରେ, ସହରର ଆମୋଦପ୍ରମୋଦ ଶିକ୍ଷା, ସଭ୍ୟତା, ଅହଙ୍କାର, ପରିପ୍ରଚାରର ବହୁ ଦୂରରେ ଏମାନେ ରହିଛନ୍ତି। ନିର୍ମଳ ଲିପାପୋଛା ଗୃହାଙ୍ଗନର ତୁଳସୀବୃକ୍ଷ ତଳେ ଜଳିଉଠେ ସନ୍ଧ୍ୟାପ୍ରଦୀପ।

ଆକାଶରେ ସେତେବେଳେ ଲାଖି ରହିଥାଏ ମହାବିଭୂତିର ଛାୟାସ୍ନିଗ୍ଧ ପ୍ରଲେପ। ସ୍ତ୍ରୀ ମହାକାଶ ଆଡ଼େ ପ୍ରଦୀପ ଦେଖାଇ ଶାଶ୍ୱତ ସତ୍ତାକୁ ନମସ୍କାର କରନ୍ତି। ସ୍ୱାମୀ କରନ୍ତି ଶଙ୍ଖଧ୍ୱନି। ସନ୍ଧ୍ୟା ନଇଁ ଆସେ। ତାହା ସଙ୍ଗେ ସଞ୍ଚରିଯାଏ ଦେବାଶୀର୍ବାଦର ଧୂମପଟଳ।

ଛନ୍ଦ ନାହିଁ, କପଟ ନାହିଁ। ଈଶ୍ୱର—ଇଚ୍ଛା ଜୀବନରେ ପୂର୍ଣ୍ଣ ହେଉ ବୋଲି ସେମାନେ ପ୍ରାର୍ଥନା କରନ୍ତି। ସରଳ ଜୀବନଯାପନର ଏପରି ଉଚ୍ଚ ଆଦର୍ଶ ମୁଁ କେବେ ଦେଖି ନ ଥିଲି। ଏକ ବୃନ୍ତର ଦୁଇଟି ପୁଷ୍ପ। ଯୌବନରେ ତାହା ହିଁ ସେମାନେ ଥିଲେ। ସାବଲୀଳ ସଂଯମିତ ଯୌବନର ନିକଷ ରେଖା ଭଳି ଆସିଛି ସ୍ୱର୍ଗର ମାଣିକ, ତାଙ୍କର ସନ୍ତାନ।

ଏ' ବିଂଶ ଶତାବ୍ଦୀ। ଚାରିଆଡ଼େ ଧନ ସଂପଦର ମହୋତ୍ସବ। ଏତେ ବିପୁଳତା ମଝିରେ ଲୋକସତ୍ତା ହଜିଯାଇଛି।

କାର୍ଯ୍ୟ ଉପଲକ୍ଷରେ ମୁଁ ସେଇ ଛୋଟ ଗାଁଟିକୁ କେତେ ଥର ଯାଇଛି। ଗାଁଟିର ସଜୀବ ପ୍ରସନ୍ନ ରୂପ ମତେ ବିମୁଗ୍ଧ କରେ। ଦୁଃଖ ଅଛି, ଅଭାବ ଅଛି, ତଥାପି ଗ୍ରାମବାସୀଙ୍କର ଜୀବନଦର୍ଶନରେ ଏଗୁଡ଼ିକର କ୍ଷଣିକତା ଯେତିକି ପ୍ରକଟିତ, ସବୁ କଥା ପଛରେ ପକାଇ ଈଶ୍ୱରଙ୍କ ନିକଟରେ ସମସ୍ତ ସମର୍ପଣ କରିଦେବା ଓ ତାଙ୍କର ଇଙ୍ଗିତରେ ଏ ଚଳମାନ ସୃଷ୍ଟି ଯେ ନିୟନ୍ତ୍ରିତ ହେଉଛି, ଏଇ ବିଶ୍ୱାସ ହିଁ ଗାଁଟିକୁ ମଧୁର ସୁନ୍ଦର କରି ରଖିପାରିଥିଲା।

ମନେପଡ଼େ ଭାରତର ସେଇ ପ୍ରାଚୀନ ଗ୍ରାମ୍ୟଜୀବନ କଥା। ମଣିଷ ମଣିଷକୁ ଶ୍ରଦ୍ଧା କରୁଥିଲେ। ବୁଢ଼ା ଥିଲେ ସମସ୍ତଙ୍କର ଅଜା। ଅଭିଜ୍ଞତା– ଅନୁଭୂତି– ଜ୍ଞାନକୋଷର ସେ ଅଧିକାରୀ। ଟୋକାଏ ଭୁଲଭ୍ରାନ୍ତି କଲେ ସେ ବୁଝାଇ ଦେଉଥିଲେ ଜୀବନପଥରେ କେଉଁଠି କେତେ ଆବର୍ତ୍ତ ରହିଛି। କାହାକୁ କିପରି ଜାଣିବାକୁ ହେବ। ପିଲାଏ ବୟସ୍କଙ୍କର କଥା ଶୁଣନ୍ତି। ସଂଭ୍ରମ ଦେଖାନ୍ତି। ନୀତି ଆଉ ଧର୍ମବିଶ୍ୱାସ ସମସ୍ତଙ୍କ ହୃଦୟକୁ ଶ୍ରୀଯୁକ୍ତ କରୁଥାଏ।

ସଦାନନ୍ଦ ଉଚ୍ଚଶିକ୍ଷିତ ନ ଥିଲେ। ସ୍କୁଲ କଲେଜରେ ସେ ପଢ଼ି ନଥିଲେ। ଗାଁ ଚାଟଶାଳୀରୁ ତାଙ୍କ ପାଠ ଇତି ହୋଇଥିଲା। ମାତ୍ର ସେ ପ୍ରକୃତି–ଗ୍ରନ୍ଥ ଅଧ୍ୟୟନ କରୁଥିଲେ।

ସଦାନନ୍ଦ ପୁଅକୁ ମୂଳରୁ ମହତ୍ କରିବାକୁ ଚେଷ୍ଟା କରୁଥିଲେ। ନିଜ ରକ୍ତର ସେ ବିଭାସିତ ଗୋଲାପ। ତା'ର ସୁରଭି ଚାରିଆଡ଼େ ଖେଳିଯାଉ– ଏଇ ସାଧନାରେ ସେ ବ୍ରତୀ ଥିଲେ।

ଗାଁ ପାଖ ଦେଇ ଗୋଟିଏ ଅଙ୍କାବଙ୍କା ପଥ ଚାଲିଯାଇଛି। ମିଶିଯାଇଛି ଦୂର ଦିଗ୍‌ବଳୟକୁ। ସେ ଦିଗ୍‌ବଳୟରେ ସୂର୍ଯ୍ୟ ଉଠିଲେ ପ୍ରଥମ ରଶ୍ମି ପଡ଼େ ତାଆରି ଉପରେ। ବୈଶାଖରେ ତା ଉପରୁ ଧୂଳି ଉଡ଼େ, ବର୍ଷାରେ ତାହା ଅଗମ୍ୟ ହୋଇଯାଏ।

ଏଇ ପଥ ଉପରେ କେତେ ଯୁଗରୁ ମଣିଷ ପାଦସ୍ୱାକ୍ଷର ଆଙ୍କି ଚାଲିଛି। ଅଦ୍‌ଭୁତ ଏଇ ପଥର କାହାଣୀ। ପଥ କହେ ସେ ଦେବତା। ଯାଇ ଯାଇ ଯେତେବେଳେ ଶେଷ ଯାତ୍ରା ଆରମ୍ଭ ହୁଏ, ସେତେବେଳେ ମଣିଷ ଗାଁଟିର ମୋହମାୟା ତୁଟାଇଦେଇ ପାଖ ଶ୍ମଶାନରେ ଶୋଇପଡ଼େ। ଏଇ ହେଲା ଅବାରିତ ଗତି, ପରିଣତି।

ଦିନେ ରତ୍ନମାଳୀ ସଦାନନ୍ଦଙ୍କୁ କହିଲେ– 'ଗାଁ ମାଷ୍ଟ୍ରେ ଆସିଥିଲେ, କହୁଥିଲେ କେଦାର ଭଲ ପଢୁଛି। ଏ ବର୍ଷ ସେ ବୃତ୍ତି ପାଇବ।' ସଦାନନ୍ଦ ଅତି ଉଚ୍ଛ୍ୱାସରେ କହିଲେ– 'ହଁ, ମୁଁ ଜାଣେ ସେ ଭଲ ପଢୁଛି।'

ତାପରେ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇଲେ। ଭାବିଲା ଭଳି କହିଲେ– 'କିନ୍ତୁ ସହରକୁ ଗଲେ କଅଣ କରିବ; କିପରି ଚଳିବ, ଏ ମାଟି ପିଣ୍ଡୁଳାକୁ ମୁଁ କାହା ପାଖରେ, କାହା ହାତରେ ଥୋଇ ଦେଇ ନିଶ୍ଚିନ୍ତ ହେବି? ବଡ଼ ଚିନ୍ତାର କଥା ରତ୍ନ।'

ରତ୍ନମାଳୀ ଆଶ୍ୱସ୍ତ କଣ୍ଠରେ କହିଲେ– "ତେବେ ତାକୁ ସହରକୁ ପଠାଇବା ନାହିଁ; ଏଇଠି ରହୁ।"

ସଦାନନ୍ଦ ଦୁଃଖରେ କହିଲେ–

'ତାକୁ କଅଣ ମୂର୍ଖ କରିବ? ସହରକୁ ସେ ଗଲେ ବେଶୀ ପାଠ ପଢ଼ିବ। ଆଜିକାଲି ବିଜ୍ଞାନର ଯୁଗ। ମୋର ଇଚ୍ଛା, ସେ ବିଜ୍ଞାନ ପଢ଼ିବ। ସେ କେତେ କଅଣ ଆବିଷ୍କାର କରିବ। ସତ୍ୟକୁ ଖୋଜିବ। ଲୋକଙ୍କୁ ଚକିତ

କରିଦେବ। ଏ କଥା ଭାବିଲାବେଳେ କେଦାର ଯେ ସତେ ଏଇ ପଚାସଢ଼ା ଗାଁମାଟିର ଅଙ୍କୁର; ଦେଶର ମୁହଁ ଉଜ୍ଜ୍ୱଳ କରିବ ଓ ସେ ଯେ ମୋରି ପୁଅ ଏଇ ଗର୍ବରେ ମୁଁ ଦିନେ ଅଧୀର ହେବି, ଏ କାମନା କଅଣ ସତେ ପ୍ରଭୁ ପୂର୍ଣ୍ଣ ହେବ ?

ସବୁ ପିତାଙ୍କ ହୃଦୟରେ ଏଇ ଭାବନା ରହିଛି। ରକ୍ତରେ ଗଢ଼ି ଉଠିବ କୋଣାର୍କ। ରକ୍ତ ଡାକେ ରକ୍ତର ସାର୍ଥକତା। ପୁଅର ଜୀବନ ବିକାଶରେ ପିତାର ଅତୃପ୍ତି ତୃପ୍ତ ହୁଏ।

କିନ୍ତୁ ସଦାନନ୍ଦ ସବୁବେଳେ ସହରର ଭୟାବହ ରୂପ ଦେଖି ଶିହରି ଉଠନ୍ତି। ଦେଖନ୍ତି ସହର ଭିତରେ ମଣିଷର ଉଚ୍ଛନ୍ନ ଜୀବନଧାରା। ସରୀସୃପୀୟ ତାର ଗତି ଓ ବସତି। ଗତିପୂର୍ଣ୍ଣ ଏଇ ଦୌଡ଼ରେ କିଏ କେଉଁଠିକି ଚାଲିଯାଏ, ଲୁପ୍ତ ହୋଇଯାଏ, ନିଃଶେଷ ହୁଏ, କହିହୁଏ ନାହିଁ। ସେ ଶୁଣିଛନ୍ତି ପୁଅ ମଫସଲୀ ବାପାକୁ ଚିହ୍ନି ସୁଦ୍ଧା ସ୍ୱୀକାର କରେ ନାହିଁ।

ଦିନେ ଦାଣ୍ଡପଟୁ ରତ୍ନମାଳୀ ଦଉଡ଼ି ଆସି ବିଶ୍ରାମରତ ସଦାନନ୍ଦଙ୍କୁ ହଲେଇ ପକେଇ କହିଲେ—

'ହଇଏ, ଶୁଣୁଚ, ଦେଖା ନାହିଁ, ଶୁଣା ନାହିଁ, ଏଡ଼େ ବଡ଼ ଗୋଟାଏ ମଟର ଗାଡ଼ି ଏଇ ଗାଁ ବାଟରେ ପବନ ବେଗରେ ଚାଲିଗଲା। କାହିଁ ମୁଁ ତ ବୋହୂ ହୋଇ ଆସିବାଦିନଠୁ ଦୀନା ଆଉ ପାଣୁଆର ଦୁଇଖଣ୍ଡ ଶଗଡ଼ ଗାଡ଼ି ଛଡ଼ା ଆଉ କିଛି ଦେଖି ନାହିଁ। ଯାନିଯାତ୍ରାରେ ଚାରି ପାଞ୍ଚ ଖଣ୍ଡ ଶଗଡ଼ ଯାହା ଏଇ ବାଟ ଦେଇ ଯା ଆସ କରେ। ବାକି ସଭିଏଁ ବାଟର ବାଟୋଇ। ଦେଖିଲ, ଏ କି ଅଘଟଣା କଥା ?

ସଦାନନ୍ଦ ଭ୍ରୂକୁଞ୍ଚିତ କରି ବାହାରକୁ ଆସି ଦେଖିଲେ ଗାଁ ବାଟର ଧୂଳିକୁ ଦବେଇ ଦୁଇ ପାଖରେ ଦୁଇଟା ବିରାଟ ଚକ୍ରଚିହ୍ନ ପଡ଼ିଛି। ଆଉ ବାଟ ପାଖର ଆମ୍ବ ନଡ଼ିଆଗଛ ପତ୍ରରେ ଲାଖି ରହିଛି କିମିତି ଗୋଟାଏ ଅଶୋଭନୀୟ ଧୂଳିରେଖା।

ରତ୍ନମାଳୀର କଥା ଠିକ୍। ଦୁଇ ତିନି ଖଣ୍ଡ ଶଗଡ଼ ମାତ୍ର ଏ ପଲ୍ଲୀର ଯାନବାହନ। ବଳଦ କେତୋଟି ହଲି ହଲି ପାଦ ପକାଇ ଆସନ୍ତି। ଗଳାରେ ତାଙ୍କର ବାଜିଉଠେ ଘଣ୍ଟିମାଳ। ଲୋକେ ପଚାରନ୍ତି— 'କଅଣ ପଧାନଘରର ବୋହୂ ଥରେ ଗାଁକୁ ବୁଲି ଆସିଲେ କି ?'

ଧୂଳିଗନ୍ଧ ଏପର୍ଯ୍ୟନ୍ତ ନାକକୁ ପୀଡ଼ା ଦେଉଛି। ତା ସହିତ ମିଶିଛି ଧୂଆଁଳିଆ ପୋଡ଼ା ପେଟ୍ରୋଲର ଗନ୍ଧ। ଗ୍ରାମବାସୀ ଭାବିଲେ, ଅକସ୍ମାତ୍ କିଏ ବାବୁଭାୟା ଏପଟେ ଚାଲିଯାଇଛନ୍ତି।

ନା, ତାହା ନୁହେଁ। ହିଂସ୍ର ଶତାବ୍ଦୀ କ୍ରମେ ଏ ସୁନ୍ଦର ସୁସ୍ଥ ପଲ୍ଲୀଟିକୁ କବଳିତ କରି ତା ବକ୍ଷ ଉପରେ ଚଲେଇଲା ଅଜସ୍ର ଚକ୍ର। ଚାହୁଁ ଚାହୁଁ ଗାଁବାଟଟି ସଂପୂର୍ଣ୍ଣ ନିର୍ଶ୍ଚିହ୍ନ ହୋଇଗଲା। ତା'ରି ଉପରେ ଆଉ ଗୋଟିଏ ରାସ୍ତା ଖୋଲିଗଲା। ଗର୍ତ୍ତବହୁଳ ଏଇ ରାସ୍ତାଟିରେ ଚାଲିଲା ଧାଡ଼ି ଧାଡ଼ି ପଥର ବୋଝେଇ ଟ୍ରକ୍।

ଯନ୍ତ୍ରର ଗର୍ଜନ ଓ କୁଲିମାନଙ୍କର ଗୀତ ଓ ଅଶ୍ଳୀଳ ଭଙ୍ଗିରେ ଗାଁ ପଡ଼ିଲା ଉଠିଲା। ଭୁଆସୁଣୀ ଘରେ ଲୁଚିଲେ। କୂଅଚଉତରା ନିର୍ଜନ ହେଲା। ଧଳା ପୋଷାକରେ ବିଭୂଷିତ ହୋଇ କେତେ ବାବୁ ଗଳି କନ୍ଦି ବୁଲି ବୁଲି କଅଣ ସବୁ ଆବିଷ୍କାର କରିବାକୁ ଲାଗିପଡ଼ିଲେ।

ମୁଁ ଯାଏ ଏ ଗାଁଟିକୁ ଯେତେବେଳେ ସମୟ ପାଏ। ସଦାନନ୍ଦଙ୍କର ପରିବାର ବିଶେଷରେ କେଦାର

ମତେ ଟାଣିନିଏ। ତାଙ୍କ ଦାଣ୍ଡ ପିଣ୍ଡାରେ ବସି କେତେ ଥର ଚୁଡ଼ାଚକଟା ଖାଇଚି, ପଇଡ଼ ପିଇଛି। ଅସ୍ତକାଳର ଆକାଶକୁ ଅନାଇଛି।

ଆଞ୍ଜୁଳାଏ ଜହ୍ନିଫୁଲ ଧରି କଉତୁକିଆ ଛୋଟ ପୁଅ ଝିଅଙ୍କର ଅବିମିଶ୍ର ଆନନ୍ଦ ଉପଭୋଗ କରିଛି।

ମାତ୍ର ଆଉ ଏ ସୁଖ ଶାନ୍ତି ସମ୍ଭବ ହେଲା ନାହିଁ। ଚାହୁଁ ଚାହୁଁ ଗାଁ ଗୋଟାକଯାକ ଲୋକ ଭୟ ଚକିତ ହୋଇଗଲେ ଏଇ ଦୁର୍ବାର ଚକ୍ରର ବଜ୍ରଧ୍ୱନି ଶୁଣି ଆଉ ତା ଉଚ୍ଛନ୍ନ ଗତି ଦେଖି।

ସେଦିନ ସୂର୍ଯ୍ୟ ଉଠିଥିଲେ, ସପ୍ତାଶ୍ୱ–ରଥ ଉପରେ ବସି ସେଇ ରଶ୍ମି ଝରଣା, ନିତିଦିନିଆ ସେଇ ଜ୍ୟୋତି। ସେଦିନ ବି ସକାଳୁ ସୁଲୁସୁଲୁ ପବନ ଭିତରେ ଗାଁଟିର ଏପାଖ ସେପାଖକୁ ଉଡ଼ିଯାଇଥିଲେ କେତୋଟି ପକ୍ଷୀ ଡେଣା ଖେଳାଇ। ସବୁଠାରେ ଜୀବନ, ପ୍ରାଣର କମ୍ପନ।

ମନଟା କାହିଁକି ସେଦିନ ବେଶୀ ପରିଚ୍ଛନ୍ନ ବୋଧ ହେଉଥାଏ। ସଦାନନ୍ଦଙ୍କ ସଙ୍ଗେ ଆଳାପ କରୁଥାଏ। ଆଜି ଛୋଟକାଟର ଏକ ଉତ୍ସବ ଅନୁଷ୍ଠିତ ହେଉଛି ସେ ଗୃହ ପ୍ରାଙ୍ଗଣରେ।

କେଦାର ବୃତ୍ତି ପାଇଛି। ପ୍ରଥମ ହୋଇ ବୃତ୍ତି ପାଇଛି। ଯାଇଛି ସ୍କୁଲମାଷ୍ଟ୍ରଙ୍କୁ ନମସ୍କାର କରି ଆସିବ। କଥାଟା ଗାଁରେ ରାଷ୍ଟ୍ର ହୋଇଯିବାରୁ ଲୋକେ ଆସି ସଦାନନ୍ଦଙ୍କୁ ଅଭିନନ୍ଦନ ଜଣାଇଛନ୍ତି। କେଦାର ଯିବ ସହରକୁ। ଗାଁର ସେ ସାର୍ଥକ ଅଙ୍କୁର, ସହରର ଶିକ୍ଷାରସ ଘେନି ଫଳବାନ ହେବ।

କେଦାରର ହସ ହସ ମୁହଁଟି ମୋ ଆଖି ଉପରେ ନାଚିଗଲା। ନିଷ୍ପାପ ସରଳ ଏଇ ବାଳକ ଗ୍ରାମବାସୀଙ୍କ ମାୟାମମତାରେ ଆଚ୍ଛନ୍ନ ରହିଛି।

ହଠାତ୍ କାହିଁକି ଗାଁ ମୁଣ୍ଡଆଡ଼େ ବହୁ ଲୋକଙ୍କର ସମ୍ମିଳିତ ଚିତ୍କାର ଶୁଣାଗଲା। ସେ ଚିତ୍କାର ତ ଚିତ୍କାର ନୁହେଁ, ଯେମିତି ମନେ ହେଲା ବଜ୍ରକଠୋର ଗୋଟାଏ ପାହାଡ଼ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡୁଛି। ମଣିଷର କଣ୍ଠସ୍ୱର ଅଥଚ ଆର୍ତ୍ତନାଦର ବିଭୀଷିକା!

ମୁଁ ପାଗଳ ଭଳି ସେ ଶବ୍ଦଧାରାକୁ ଅନୁସରଣ କଲି, ମାତ୍ର ଖୁବ୍ ବିଳମ୍ବ ହୋଇଯାଇଥିଲା। ଆଜି ସେ ଦୃଶ୍ୟକୁ ବର୍ଣ୍ଣନା କରିବାକୁ ମୋର ଶକ୍ତି ନାହିଁ। ମୋ ରକ୍ତ ତୁଷାରାବୃତ ହୋଇଯାଇଛି।

ତେବେ କାହା କଣ୍ଠର ସେଇ ଶୀର୍ଷଧ୍ୱନି ପ୍ରବାହ ମୋ କାନ ଭିତରେ ପ୍ରଚଣ୍ଡ ରବ ତୋଳିଥିଲା–

– କେଦାର! କେଦାର! ବନ୍ଦ କର, ବନ୍ଦ କର ଆଗରେ ପିଲା। ଓଃ ପ୍ରଭୁ!!!

ପିଚ୍ ପିଚ୍ ରକ୍ତର ପିଚକାରୀ। ନାଚିଗଲେ ସମସ୍ତ ଭୌତିକ ପ୍ରାଣୀ। ଝର ଝର ତତଲା ରକ୍ତ ପ୍ରବାହରେ ଗାଁ ମାଟି ସିକ୍ତ ହୋଇଗଲା। ଅବିରଖେଳର ସେଇ ଲାଲ ପିଚ୍‌କାରୀ। ଗୋଟିଏ ଅର୍ଦ୍ଧ ବିକଶିତ ବାଳକର ପ୍ରତିଭା, ତା'ର ଆକାଙ୍‌କ୍ଷା, ତାର ପିତାମାତାର ରଙ୍ଗମୟ ସ୍ୱପ୍ନ ହତ୍ୟାକାରୀ ଯୁଗ୍‌ଣ ଶତାବ୍ଦୀର ଗତିଲିପ୍‌ସା ଯୋଗୁଁ ଏଇ ମୁହୂର୍ତ୍ତରେ ଅକାରଣରେ ମାଆ ଧରିତ୍ରୀର କୋଳରେ ଝରିଗଲା।

କେଦାରର ରକ୍ତପିଣ୍ଡକୁ ଧରି ମୁଁ ସେ ସଂଧ୍ୟାରେ ଶ୍ମଶାନକୁ ଯାଇଥିଲି। ମଣିଷର ଆକୃତି ନ ଥିଲା ଯେ ମୁଁ ତାକୁ କୋକେଇରେ ଶୁଆଇ ନେଇଥାନ୍ତି। ଗୋଟିଏ ମାଂସ–ରକ୍ତ–ହାଡ଼ର ପିଣ୍ଡୁଳାକୁ କାନ୍ଧରେ ପକାଇ ମୁଁ ଚାଲିଗଲି ଗାଁର ନଈ ପାଖ ଚିତାପୀଠ ଉପରକୁ।

ଦେବତା ଗୋଟିଏ ଦିନ ପରିକ୍ରମଣ କରି ବୁଡ଼ି ଯାଉଥିଲେ ମହୋଦଧି ତଳେ; ଯାହାକୁ ଅନାଇ ଏ ଯୁଗର ଦାରୁରୂପ ଭଗବାନ୍ ଛପନ ପୌଟି ଭୋଗ ସଂଭୋଗ କରୁଛନ୍ତି ଶିଳାମୟ ଦେବନିକେତନ ଭିତରେ ବସି।

ରକ୍ତ ପିଣ୍ଡୁଳା ଉପରେ ଦେବତାର ସମାପ୍ତ ଲାଲ ରଶ୍ମି ଝରିପଡୁଥିଲା ସେତେବେଳେ। କେଦାର ଆଜିଠାରୁ ମହାକାଳର ମସୀ ତଳେ ଅବଲୁପ୍ତ ହୋଇଗଲା।

ସଦାନନ୍ଦର କଥା ନ କହିବା ଭଲ।

ସେ ଶ୍ମଶାନକୁ ଯିବା ବାଟରେ ଉନ୍ମତ୍ତ ଅବସ୍ଥାରେ ନିଜ ବକ୍ଷକୁ ବିଦାରି ଯାହା କହୁଥିଲେ, ସେଇ ବାଣୀତକ ମୁଁ ନିବେଦନ କରୁଛି।

ସେ କହୁଥିଲେ– 'ଶେଷ ହୋଇଗଲା? ଶେଷ? ହାଃ ହାଃ। ଜୀବନ ଏତେ ସୁନ୍ଦର ଅଥଚ ମୃତ୍ୟୁ ଏତେ ବୀଭତ୍ସ। ସେ କାହାର କଅଣ କରିଥିଲା? ଏତେ ଚଞ୍ଚଳ ଶେଷ ହୋଇଗଲା?'

ଏହାର ଉତ୍ତର ବିଶ୍ୱପିତାଙ୍କୁ ହିଁ ଗୋଚର; କିନ୍ତୁ ସେ ଦେବେ ନାହିଁ। ମଣିଷ ହିଁ ତାଙ୍କୁ ଆଜି ବାକ୍‌ହୀନ କରିଦେଇଛି ସେ ନିରୁତ୍ତର ରହିଯିବେ।



# ପ୍ରାନ୍ତର

ଦିଗନ୍ତବିସ୍ତୃତ ପ୍ରାନ୍ତର।

ଘନ ନୀଳ ଦୁର୍ବାର ଏକ ପ୍ରାନ୍ତର। ସ୍ଥଳେ ସ୍ଥଳେ ସେହି ପ୍ରାନ୍ତର ଉପରେ ବଢ଼ିଯାଇଛି ଗୋଟାଏ ଗୋଟାଏ ବିରାଟ ବୃକ୍ଷ।

ଆଉ ସେହି ବୃକ୍ଷଗୁଡ଼ାକର ବି କୋଟର ଅଛି। ବଡ଼ ଗଭୀର କୋଟର। ତା ଭିତରେ ଘନ ତମିସ୍ରାର ସ୍ତର ସ୍ତର ପ୍ରଲେପ।

ଭୟଙ୍କର ସେଗୁଡ଼ାକ। ଆରଣ୍ୟକ ସରୀସୃପର ପ୍ରତିଦିନର ଖେଳଘର। ସେଇ ଜାଗାରେ ସେମାନେ ହଣାହଣି ହୁଅନ୍ତି ପୁଣି ମିଳିଯାଆନ୍ତି। ରାତ୍ରର ନିସ୍ତବ୍ଧତା ଭିତରେ ସେଗୁଡ଼ାକ ଭୟାର୍ତ୍ତ ଚିତ୍କାର କରନ୍ତି। ସେମାନଙ୍କର ଆଖି କାନର ରନ୍ଧ୍ରପଥ ଦେଇ ରକ୍ତସ୍ରାବ ହୁଏ, ପୁଣି ଶୁଖିଯାଏ।

ସେହି ପ୍ରାନ୍ତର ଉପରେ ବିବସ୍ତ୍ର ପଶୁ ଚରନ୍ତି। ବସ୍ତ୍ର ତାଙ୍କର ଅବଶ୍ୟ ରହିଛି। ଲୋମ ବା ଆବରଣ। ପଶୁର ଚର୍ମ ଉପରର ଏଇ କଳା ଲୋମଗୁଡ଼ାକ ଦୁର୍ଗନ୍ଧରେ ଭରା। ତାର ପ୍ରତ୍ୟେକଟି କୂପରୁ ଜଳୀୟ ସ୍ରାବ ବାହାରେ।

କେତେଗୁଡ଼ିଏ ପଶୁ ପ୍ରାନ୍ତର ଉପର ନୀଳ ଦୁର୍ବାଗୁଡ଼ାକୁ ଦଳି ଚକଟି ପକାନ୍ତି। ଶିଙ୍ଗରେ ମାଟି ତାଡ଼ନ୍ତି। କରାଳ ଦଂଷ୍ଟ୍ରା ବାହାର କରି ଗୋଡ଼ାଇ ଆସନ୍ତି ଅଦୃଶ୍ୟ ଶତ୍ରୁ ସହିତ ଯୁଦ୍ଧ କରିବାକୁ।

ଆଉ କେତେକ ଅନ୍ୟର ଲୋମଗୁଡ଼ିକୁ ଚିବୁକ ଦେଇ ସାଉଁଳି ଦେଇଥାନ୍ତି। ନୀରବ ସେମାନଙ୍କର ଅଭିସାର। ପଶୁ ପ୍ରେମରେ ପ୍ରେମାସକ୍ତ କରନ୍ତି ତାଙ୍କ ଭଳି ପଶୁ ଦଳକୁ।

ଏ ଲୀଳା ଚାଲିଥାଏ। ବିବସ୍ତ୍ର ପଶୁମୟ ଏ ପ୍ରାନ୍ତର ଉପରେ ସୂର୍ଯ୍ୟ ରଶ୍ମି ଢ଼ାଳେ; ଇନ୍ଦୁ ଚନ୍ଦ୍ରିକା ଝରାଏ। ବର୍ଷା ଝରିଯାଏ। ସାଇଁ ସାଇଁ ପବନ ବହେ। ବଜ୍ର ଭାଙ୍ଗିପଡ଼େ। ପ୍ରକୃତିର ଏ ଶାଶ୍ୱତ ଲିପି ତଳେ ପଶୁ–ଆତ୍ମା କେବଳ ଖୋଜୁଥାଏ ମଣିଷକୁ ରକ୍ତାକ୍ତ କରିବ। ମଣିଷ ଦେଖିଲେ ସେ ଉନ୍ମତ୍ତ ହୋଇଉଠେ। ସେ ପ୍ରାନ୍ତରର ସୀମା ତଳେ କେଉଁ ଅଦୃଶ୍ୟ ପଥିକ ଯଦି ବାଟ ଖୋଜି ଯାଇଥାଏ, ତେବେ ଗୋଟାଏ କି ଦି'ଟା ବିବସ୍ତ୍ର ପଶୁ ଆଘ୍ରାଣ ଶକ୍ତିର ଜୋରରେ ଜାଣିପାରନ୍ତି କିଏ ଜଣେ ଯାଇଛି।

ତାକୁ ଶୋଣିତଲିପ୍ତ କରିବାକୁ ତାକୁ ଖଣ୍ଡ ଖଣ୍ଡ କରି ଛିଣ୍ଡାଇ ତାର ମାଂସର ସ୍ୱାଦୁ ଉପଭୋଗ କରିବା ପାଇଁ ଏମାନେ ହୁଅନ୍ତି ଉନ୍ମାଦ।

ଏଇ ଭଳି ଗୋଟିଏ ବିବସ୍ତ୍ର ଜାନୁଆର ନିଶୀଥର ନିରନ୍ଧ୍ର ମସୀ ତଳେ ଆତ୍ମଗୋପନ କରି ରହିଥିଲା। ଗୋଟିଏ ଛୋଟ ପାହାଡ଼ ତଳେ ଛୋଟ ଗୋଟିଏ ଝରଣା। ପ୍ରାନ୍ତରର ଏକ ପ୍ରାନ୍ତରେ ଏଇ ନିର୍ଝରଟି ବହି ଚାଲିଥାଏ ତାର ପ୍ରାଣମୟତାକୁ ଘେନି।

ନବୀନ ବୟସର ଏଇ କୁଳୁସ୍ୱନା ଝରଣା। ଗାତ୍ରରେ ରହିଥାଏ ନିର୍ମଳ ନିଷ୍ପାପ ଝର ବିନ୍ଦୁ। ମନରେ ଧରିଥାଏ ବହୁ ବିଶ୍ୱାସର ବିଚିତ୍ର ରଶ୍ମିକଣା। ସେଇ ଗଭୀର ରାତ୍ରିର ସ୍ତବ୍ଧ ମଣ୍ଡଳ ଭିତରେ

ବନଚାରୀ ମୃଗବଧୂ ଭଳି ଏଇ ନିର୍ଝରଟି ଚଳ–ଈକ୍ଷଣ ଢ଼ାଳି ଏଣେତେଣେ ଅନାଇ ଝରିଯାଇଥାଏ।

ପାଖ ତଟ ଉପରେ ବୁଦିବୁଦିକିଆ ଘାସଗଛ। କେଉଁଠି ବା ଦୁଇ ତିନିଟା ଫୁଲର ବିକାଶ। ତା ଉପରେ ବହି ଯାଇଥାଏ ଧୀର ପବନ। ଏମାନେ ତାର ପ୍ରବାହକୁ ଆହୁରି ନିର୍ମଳ କରନ୍ତି। ସେ ବହିଯାଏ।

ସେଇ ପଶୁ ଛକି ରହିଲା ଏତେବଡ଼ ସୁନ୍ଦର ନିର୍ମଳ ଝରଣାକୁ ଗୋଳିଆ କରିବ; କରିବ ବିଷାକ୍ତ। ନଖ ଦନ୍ତ ମେଲାଇ ଚିରି ଆଣିବ ତାର ବକ୍ଷସ୍ଥଳ।

ସୁଯୋଗ ଆସିଲା। ମୂକ ନକ୍ଷତ୍ରପୁଞ୍ଜ ଆକାଶର ଅଙ୍ଗନରେ ସବୁ ଦେଖୁଥାନ୍ତି। ଦେଖିଲେ ଗୋଟିଏ ପଶୁ ପ୍ରମତ୍ତ ହିଂସ୍ରତାରେ ଏଇ ନିର୍ଝରର ନିର୍ମଳ ନୀର ବିନ୍ଦୁକୁ ପଙ୍କିଳ କରିବାକୁ ଦଉଡ଼ି ଆସୁଛି।

ନାଚି ନାଚି ନିର୍ଝର ଝରି ଯାଉଛି, କଅଣ ବା ସେ ଜାଣେ? ପଶୁଦ୍ୱ କଅଣ ସେ ଜାଣେନା; ତେବେ ତାର ଏତିକି ଭୁଲ ହୋଇ ଯାଇଛି, ତାର କେତୋଟି ତରଙ୍ଗକୁ ସେ ଉଠାଇ ଡାକିଛି– "ତୁମେ କିଏ ଆସ, ତୁମ ପାଖେ ଶକ୍ତି ଅଛି, ସେ ଶକ୍ତି ମୁଁ ଚାହେଁ, ମାତ୍ର ଏ କଅଣ ତୁମେ ଏତେ ପ୍ରଚଣ୍ଡ କାହିଁକି? ଦେଖ କେତେ ମୃଦୁ ମଞ୍ଜୁଳ ମୋର ଆଚରଣ। ମୋ ଗତିପଥରେ କୁଳୁଧ୍ୱନି ଉଠେ; ମାତ୍ର ତୁମ ଗତିପଥରେ ଉଠୁଛି ପ୍ରଚଣ୍ଡ ଝଡ଼। ମୁଁ ଯେତେବେଳେ ଡାକି ସାରିଲିଣି ତୁମେ ଆସ, ମାତ୍ର ଧୀରେ ଆସ, ସୁନ୍ଦର ପଥରେ ଆସ।

ହେଲା ନାହିଁ, ଝରଣାର ଶ୍ରୀ ତୁଟିଗଲା। ଶୁଷ୍କ ହୋଇ ଆସିଲା ନୀର ପ୍ରବାହ। ବିବସ୍ତ୍ର ପଶୁ ତାକୁ କବଳିତ କରିଛି, ତାର ଆମନ୍ତ୍ରଣକୁ ବୁଝିଛି ଆତ୍ମ–ସମର୍ପଣ।

ପ୍ରାନ୍ତର ଉପରେ ସେଇ ବିକଟ ପଶୁର କ୍ଷୁର ଚିହ୍ନ। ସେ ଆଜି ବିଜୟୀ। ଉଦ୍ଧତ ପାଷାଣ୍ଡତାରେ ତାର ଲୋମଗୁଡ଼ିକ ତୀକ୍ଷ୍ଣ ଓ କଣ୍ଟକିତ।

ମୁହଁରେ ଲାଗିଛି ନିର୍ଝରର ଅଧରାମୃତ। ଆଉ କି ସେ ପଶୁ ସ୍ଥିର ରହିବ? ଆକ୍ରମଣ ପରେ ଆକ୍ରମଣ... ସେଇ ନଖ ଦନ୍ତର ଆଘାତ... ରକ୍ତାକ୍ତ... ରକ୍ତ... ରକ୍ତ...

× × ×

ଝରଣାର ଚିତ୍କାରରେ ଘର ଗୋଟାକଯାକ ଉଠିପଡ଼ିଲେ...

ଝରଣାର ଜଡ଼ ଦେହଟାକୁ ତାର ବୋଉ ହଲାଇ ଦେଇ କହିଲେ–

ଝରଣା କଅଣ ହେଲା? ରକ୍ତ କେଉଁଠି? ରକ୍ତ କାହିଁ, କଅଣ ସପନ ଦେଖିଲୁ?

ବିନ୍ଦୁଏ ବି ରକ୍ତ କେଉଁଠି ଝରିନି ଅଥଚ ଝରଣାର ଅଚେତନ ମନ ତଳେ ଝରି ଯାଉଛି ରକ୍ତଗଙ୍ଗା। ଏ ଗଙ୍ଗାର ଉତ୍ସ ଯେଉଁ ତ୍ରିକୋଣଭୂମିରୁ ଉତ୍ପନ୍ନ, ସେ ଭୂମି ଆଜି ନିଶ୍ଚିହ୍ନ। କିନ୍ତୁ ସ୍ରାବ ରହିଯାଇଛି।

ନିଜେ ଝରଣା ଶଯ୍ୟା ପ୍ରାନ୍ତକୁ ପରୀକ୍ଷା କଲା। ଆଖିରେ ତାର ଆବେଗ, ଭୟର ଆବେଶ। ଚିବୁକଟି ଥରିଯାଉଛି। କପାଳ ଉପରେ ବିନ୍ଦୁ ବିନ୍ଦୁ ସ୍ୱେଦ ତା ପାଖର ଲୋକ ତାକୁ ଦୃଶ୍ୟ ହେଉ ନାହାନ୍ତି।

ପ୍ରତ୍ୟେକଟି ଯେପରି ସେଇ ପ୍ରାନ୍ତରର ପଶୁ। ସେଇ କୋଟର ଭିତରର ସରୀସୃପ। ସେଇ ବିବସ୍ତ୍ର ନିର୍ଲଜତା। ଖାଇଯିବାର, ରକ୍ତ ଶୋଷିଯିବାର ସେଇ ନିର୍ମମ ଭଙ୍ଗୀ।

ଆଉ ଥରେ ଚିତ୍କାର... ତାପରେ ଝରଣା ଢ଼ଳିପଡ଼ିଲା ବସୁଧା ଉପରେ ନିର୍ବାକ୍... ନିଷ୍ପନ୍ଦ...

× × ×

ଏ ଦେହ ମନକୁ ବସନ୍ତ ଆସେ; ଆସିଥିଲା ଝରଣାର ଜୀବନକୁ। ସବୁ କଥାରେ ବିଶ୍ୱାସ, ସବୁ ଦୃଶ୍ୟରେ ବିଶ୍ୱାସ, ସବୁ ଆଗମନ ପ୍ରତ୍ୟାଗମନରେ ବିଶ୍ୱାସ ରଖି ସେ ଚାଲୁଥିଲା କେତୋଟି ବସନ୍ତକୁ ମଥାରେ ରଖି।

ସାଧାରଣ ଝିଅ। ମନଟି କିନ୍ତୁ କୋକନଦ ଭଳି ବିକଶିତ। ଅଙ୍ଗରେ ଉଦୟାଭିସାର; ସଙ୍ଗେ ସଙ୍ଗେ ମନ ଖୋଜୁଥିଲା ଏ ସଂସାରର ମୂଲ୍ୟ ଓ ଇଙ୍ଗିତ ଆବିଷ୍କାର କରିବା ପାଇଁ। ସେଇ ଆବିଷ୍କାର ପ୍ରବୃତ୍ତି ହିଁ ତାକୁ ଅସଜଡ଼ା କରି ଦେଇଥିଲା।

ସେ କାହାଣୀ ବିଚିତ୍ର। ଝରଣା ଏଇ ଧରଣୀର ପ୍ରବାହିନୀ। ସୁଖ ଦୁଃଖର ସଂସାର ଭିତରେ ତାର ଗତି ଓ ସ୍ଥିତି। ତଥାପି ଯୌବନ ତାକୁ ଯେ ଛନ୍ଦରୂପା କରିଛି, ତାର ସତ୍ୟ କାହିଁ, କଅଣ ବା ସେ ସତ୍ୟ– ସେଇ ଭାବନାରେ ସେ ଉଦ୍ଦୀପ୍ତ ହେଲା ପ୍ରଥମରୁ।

ସ୍କୁଲ ଚଲାବାଟରେ ଅନେକ ଆଖି ପଡ଼େ ତା ଉପରେ। କେଉଁଟାକୁ ସେ ସ୍ନିଗ୍ଧ ବୋଲି ଭାବିନି। କେଉଁ ଲକ୍ଷଣରେ ହୁଏତ ଟିକିଏ ସଖାଭାବ ବି ନଥିଲା।

ଯାଏ ଆସେ। ମନର ବିହଙ୍ଗ ଉଡ଼େ। କେଉଁ ଡାଳ ତଳେ କପୋତ ଗୁମୁରି ଉଠୁଛି, କେଉଁଠି ଚନ୍ଦ୍ର– ପୀୟୁଷ ପାଇଁ ତୃଷାର୍ତ୍ତ ଚକୋର ବସିଛି– ସେ ଲକ୍ଷ୍ୟ କରେ।

ଉଚ୍ଛଳା ଏ ପ୍ରବାହ ଭିତରେ ଝରଣା ଦେହଟାକୁ ଭସାଇ ଦେଇ ନାହିଁ। ଖୋଜି ବୁଲୁଛି କାହିଁ ସେ ଦୀପଦଣ୍ଡି, ପୋତାଶ୍ରୟ, ଯାହାର ଅବଲମ୍ବନ ତଳେ ତାର କୁମାରୀ ମନ ପୂର୍ଣ୍ଣଚନ୍ଦ୍ରର ସ୍ୱାଗତ କରିବ।

ତାର ସେଇ ସ୍କୁଲ ପଥଟା ଆଜି ବେଶି ମନେପଡ଼େ। ନା, ଏମିତି କିଛି ଗୋଟାଏ ବିଚିତ୍ର ପଥ ନୁହେଁ। ଅଙ୍କା ବଙ୍କା ଗୋଟାଏ ମାର୍ଗ ମାତ୍ର। ଅଥଚ ଆଜି ତାର ବହୁ ବଙ୍କିମ ଜୀବନ ପଥ ଉପରେ ସ୍କୁଲ ବାଟର ଅସ୍ତିତ୍ୱ ରହିଛି।

ଗୋଟିଏ ନିର୍ଦ୍ଦିଷ୍ଟ ଯୁବକ ତାକୁ ଲକ୍ଷ୍ୟ କରେ। ଲକ୍ଷ୍ୟହୀନ ନୁହେଁ। ଅର୍ଥ–ସମୃଦ୍ଧ ସେ ଚାହାଣି। ଝରଣା ବୁଝିଥିଲା ସଂସାର–ପଥ ଉପରେ ଚାଲିବାବେଳେ ବହୁପ୍ରକାର ଚାହାଣି ତାକୁ ବିବସ୍ତ୍ର କରିବ। ଆତ୍ମବଳ ପ୍ରୟୋଜନ। ସେଥିରୁ ଉଦ୍ଧାର ପାଇବା ପାଇଁ ତାକୁ କଠିନ ହେବାକୁ ପଡ଼ିବ।

ମାତ୍ର ଯେ କୋଇଲି କୁହୁ କରେ, ଅଥଚ ଅଦୃଶ୍ୟ ଥାଏ ବନ ଲତା ତଳେ, ତାକୁ ଦେଖିବା ପାଇଁ, କଳା ହେଲେ ବି ସେ ରୂପକୁ ଦେଖିବା ପାଇଁ ମନ ଦଉଡ଼େ।

ଝରଣାର ମନ ଦଉଡ଼ିଥିଲା। ଜାଣିବାକୁ ଚାହୁଁଥିଲା ଏ କିଏ? କଅଣ ତାର ପ୍ରୟୋଜନ? ଥରକର କଥା ତାର ମନେ ଅଛି। ଯୁବକଟି ନିର୍ଦ୍ଦିଷ୍ଟ ସମୟରେ ଠିଆ ହୁଏ ପଥପ୍ରାନ୍ତ ଉପରେ। ଦୁହେଁ ଦୁହିଁଙ୍କୁ ଚାହାଁନ୍ତି। ଇମିତି ଗୋଟାଏ କ୍ଷଣରେ ସେ ଯୁବକ କହିଥିଲା– ସୁନ୍ଦର...

ନାରୀ ସୌନ୍ଦର୍ଯ୍ୟର ପ୍ରଶଂସା। ନାରୀ ସହଜେ ତ୍ରାଣ ପାଏନା। ଝରଣା କିଛି କହି ନଥିଲା, ତେବେ ମନ ଭିତରୁ ବାହାରି ଆସିଥିଲା ଗୋଟିଏ ପ୍ରଶ୍ନ– ସତେ?

ମନ ଭିତରୁକୁ ଚାହିଁଲା ଝରଣା। ଅବୟବକୁ ଲକ୍ଷ୍ୟ କଲା। ସହସ୍ର ପ୍ରଜାତିର ବର୍ଣ୍ଣରେଣୁ ଅନ୍ତର ତଳେ ଝରି ପଡ଼ିଲା। ସେଇଦିନ ବୋଧହୁଏ ଛିଦ୍ର ପଥରେ ଗୋଟାଏ ଛୋଟ ସରୀସୃପ ଚାଲିଗଲା। କେହି ଜାଣିଲେ ନାହିଁ। ଏ ସରୀସୃପ କ୍ରମେ ଝରଣାର ପରିବାର ଗୃହସ୍ଥଳିକୁ ଚରାଭୂଇଁ କରିନେଲା। ସଂସାରରେ ଲୋକ ଅଛନ୍ତି, ଯେଉଁମାନେ ବାହାରର ରୂପ ଓ ଭିତରର ରୂପକୁ ଭିନ୍ନ ରଖି ଥାଆନ୍ତି। ସ୍ୱାର୍ଥସିଦ୍ଧି ପାଇଁ ଏ ଏକ ବିଚିତ୍ର ଭୂମିକା।

– "ବାଃ, ଆପଣଙ୍କ କୋଷ୍ଠୀ ଚମତ୍କାର; ଆପଣଙ୍କ ଭବିଷ୍ୟତ? କଅଣ କହିବି? ପୂରା ଗୋଟିଏ ବର୍ଷର କୋଷ୍ଠୀର ଶୁଭ ଅଶୁଭ ଫଳ ମୁଁ ଲେଖିଦେବି। ଆପଣ ଦେଖିବେ ମୋ ସାଧନା ସତ୍ୟ ନା ମିଥ୍ୟା। ଯଦି ମିଥ୍ୟା ହୁଏ ତେବେ ମୋ ନାଁ କାମନ୍ଦକ ନୁହେଁ, ମେହେନ୍ତର–"

ଏତେ ବଡ଼ କଥା!! ଝରଣାର ଗୃହାଙ୍ଗନ ସ୍ତବ୍ଧ ହୋଇଗଲା ସେତେବେଳେ, ଏତେ ବଡ଼ ବିଦ୍ୱାନ ପୁଣି ଭବିଷ୍ୟତ ବକ୍ତା!

କାମନ୍ଦକ ବାବୁ ଜଣକ ପରେ ଜଣକର କୋଷ୍ଠୀ ଦେଖିଲେ। ଦୁର୍ବଳ ଅଦୃଷ୍ଟବାଦୀ ଲୋକର ଦୁର୍ବଳତାକୁ ଜାଣିଲେ। ସରିସୃପ ଜାଣେ କେଉଁ ତୈଳ ସହିତ ଛିଦ୍ର ପଥରେ କେତେ ସହଜରେ ଗତିକରି ହେବ। ସେ ସେଇ ବାଟ ଧରିଲା। ଝରଣାର ବାପା କୃତକୃତ୍ୟ ହେଲେ। ଭବିଷ୍ୟତର ଗ୍ରହମଣ୍ଡଳ ତାଙ୍କୁ ଅନେକ କିଛି ଦାନ କରିବେ। ଭାଗ୍ୟ, ଯଶ, ଅର୍ଥ, ସମ୍ମାନ, କିଏ ନଚାହେଁ? କରତଳର ରେଖା କ୍ରମେ ସ୍ପଷ୍ଟ ହୋଇଆସିଲା ଓ ତା ସଙ୍ଗେ ସଙ୍ଗେ କାମନ୍ଦକ ବାବୁ ଭାଗ୍ୟଗଣନା କରି କେଉଁ ଭାଗ୍ୟକୁ ଚିରଦିନ ପାଇଁ ଅଭିଶପ୍ତ କରିଦେବେ ତାର ବ୍ୟବସ୍ଥା କରିଦେଲେ।

ସେ ଭାଗ୍ୟ ଝରଣାର। ଇମିତି କ୍ଷୀଣ–ତନୁ–ଚନ୍ଦ୍ର କ୍ରମେ ଉଦୟ ପଥ ଦେଇ ପୂର୍ଣ୍ଣଚନ୍ଦ୍ର ହୁଏ। ଇମିତି ହାତ ରେଖା ଗଣନାରୁ ମନରେଖା ଗଣନା ପର୍ଯ୍ୟନ୍ତ ମଣିଷ ଯାଏ। ସତ୍ୟ ଓ ଛନ୍ଦର ପଥରେ ଯାହା ଆସେ ତାହା ରହିଯାଏ ଚିର ଦିନକୁ। କ୍ଷତ ବିକ୍ଷତ ଜୀବନ ହିଁ ବେଶ୍ ସତ୍ୟାଶ୍ରୟୀ, କିନ୍ତୁ ସେ କ୍ଷତ ପଶୁର ନଖଦନ୍ତ ଆଘାତର କ୍ଷତ କି?

କାମନ୍ଦକ ପରିବାର ଭିତରେ ସୁଲଭ ହୋଇଉଠିଲେ। କେତେ ପିକ୍‌ନିକ୍, କେତେ ଭୋଜି, କେତେ ଉତ୍ସବ। ସବୁଠି କାମନ୍ଦକ ଓ ଝରଣା। କାହିଁକି କେଜାଣି ଏଇ ଲୋକପାଇଁ ଝରଣାର ପ୍ରାଣକମ୍ପନ ଜନ୍ମିଲା।

କମ୍ପନ ଥିଲେ ତରଙ୍ଗ ସୃଷ୍ଟି ହୁଏ।

ଏଇ ତରଙ୍ଗରେ ଦୁହେଁ ଧରାଦେଲେ। କାଳ ବିଚିତ୍ର ଗତିରେ ପ୍ରବାହିତ ହେଲା।

ଆଜି ଝରଣାର ନେତ୍ରରେ ଦୁଇ ଟୋପା ଅଶ୍ରୁ। ସେ ଅଶ୍ରୁ ପବିତ୍ର। ସେଇ ଦୁଇ ବିନ୍ଦୁ ଅଶ୍ରୁ ଭିତରେ ଝରଣା ଦେଖିଛି ତାର ପୂର୍ବ ରାଗର ମଣିଷ ତାକୁ ଦେଇଛି କେତେ ନିର୍ଯ୍ୟାତନା, କେତେ ଅସମ୍ମାନ... ତାହାରି କେତୋଟି ଚିତ୍ର ଆଜି ମୁକୁଳିଯାଇଛି।

ଝରଣା ପଥ ଉପରେ ଅର୍ଗଳ ଭଳି ସତର୍କ କରିଦେଉଛି... ଏ ବାଟେ ଆସ ନାହିଁ ପଥିକ; ଏ ବିଶ୍ୱାସର ପଥ ନୁହେଁ, ସତ୍ୟର ପଥ ନୁହେଁ। ହଁ, ସେଦିନର ଘଟଣା।

କାହିଁ କେଉଁଠୁ ଝଡର ଗତିରେ ଆସିଲେ କାମନ୍ଦକ। ନିସ୍ତବ୍ଧ ରାତ୍ରି। ଝରଣା ଈଶ୍ୱରଙ୍କୁ ପ୍ରାର୍ଥନା କରି ଏକ ମୁହୂର୍ତ୍ତ ପୂର୍ବରୁ ଶଯ୍ୟା ଧରିଛି।

'— ମୋ ସାଙ୍ଗେ ତତେ ଯିବାକୁ ହେବ।'

ଏ ଆସ୍ଫାଳନ ଆଶ୍ଚର୍ଯ୍ୟ ଲାଗିଲା ଝରଣାକୁ।

— ଯିବି? କୁଆଡ଼େ?

— ମୁଁ ଯେଉଁଆଡ଼େ ନେଇଯିବି।

— ଅର୍ଥାତ୍।

— ମୁଁ ଭଲ ପାଏ।

କେଜାଣି କାହିଁକି ଝରଣାର ମନ ଗ୍ଲାନିପୂର୍ଣ୍ଣ ହୋଇଗଲା। ଏ ବାଟେ ପ୍ରେମିକ ଆସେ ନାହିଁ। ଏ ପୌରୁଷର ଚିହ୍ନ ନୁହେଁ, ଏ ଲକ୍ଷଣ ଦେହଭୋଗୀ ପଶୁର ଲୀଳା। କିନ୍ତୁ ଉପାୟ ନାହିଁ। ଥରେ ଝରଣା ସ୍ୱାଗତ କରି ନେଇଛି ଏଇ ଉଦୟଭାନୁକୁ। ଆଜି ଅବଶ୍ୟ ଏ ଭାନୁର ସତ୍ୟଦୀପ୍ତି କେତେ, କ୍ରମେ ବୁଝିପାରୁଛି ଝରଣା।

— ତେବେ କେତେଟା ଟଙ୍କା ଦେ। ମୁଁ ବଡ଼ ଅସୁବିଧା ଭୋଗୁଛି।

ଝରଣା ଉତ୍ତର ଦେଇଥିଲା– ଅନେକ ସମୟରେ ମୁଁ ସାହାଯ୍ୟ କରିଛି, ମାତ୍ର ଏମିତି ଅବସ୍ଥାରେ କେତେଦିନ ଚଳିବ? ଏକ୍ଷଣି ତ ସମ୍ଭବ ନୁହେଁ।

କାମନ୍ଦକର କଣ୍ଠ କର୍କଶ। ସ୍ନିଗ୍ଧ ନିଶାର ପ୍ରଲେପ ଏ ସରୀସୃପକୁ ଉନ୍ମତ୍ତ କଲା– ସେ ଚିତ୍କାର କଲା–

—ସାବିତ୍ରୀ ଭଳି ତତେ ହେବାକୁ ପଡ଼ିବ। ମୋର ସେବା ତୋର ପରମ କର୍ତ୍ତବ୍ୟ।

ଉତ୍ତର ଆସିଲା–

ଆମ ଭିତରେ କଅଣ ଏମିତି ହୋଇ ଯାଇଛି କି ମୁଁ ସାବିତ୍ରୀ ସାଜିବି? ଯାହା ବା ହୋଇଛି ତାର ପରିଣତି କଅଣ ଏଇ ବାଟରେ ଆସିବ?

ଝରଣାର କଣ୍ଠରେ ବ୍ୟଥାର ରାଗିଣୀ– ଏ କି ଭଳି ମଷିଣ? ଯାକୁ ସେ ପୂଜା କରେ କାହିଁକି? ଯାଠାରୁ ମନୋମୟ ସେ କିଛି ପାଏନି, ଅଥଚ– ସବୁ ଭାଗ୍ୟ।

—'ନହେଲେ ଏଇ ଯେଉଁ ଗହଣା ପିନ୍ଧୁଛୁ।' କାମନ୍ଦକର କର୍କଶ କଣ୍ଠ–

ଝରଣା ଏ ଅବାଞ୍ଛିତ ଦୃଶ୍ୟରୁ ନିଜକୁ ରକ୍ଷା କରିବା ପାଇଁ ପଟିଏ ପଟିଏ ସ୍ୱର୍ଣ୍ଣ କାଚ ବଢ଼େଇ ଦେଇଥିଲା। ଶେଷରେ କହିଥିଲା– ସଂସାରରେ ଦୃଢ଼ ହେବାକୁ ଚେଷ୍ଟା କର– ମଣିଷ ହୁଅ। ମୁଁ ତାହା ହେଲେ ସର୍ବସ୍ୱ ତୁମ ପାଖେ ସମର୍ପଣ କରିଦେବି।

ଏଇ ସର୍ବସ୍ୱ କଥା ଶୁଣି ଶ୍ୱାପଦ ସ୍ଥିର ହୋଇ ପାରି ନଥିଲା। ଆକାଶରେ ହଠାତ୍ କଳା ବଉଦର ସଂଚାର। ଜ୍ୟୋତି ଟିକିକ ଲିଭିଗଲା। ଘୋର ନିବିଡ଼ ତମିସ୍ରା।

ବୈଠକ ବସେ। ଏକା ବୟସର ଗୁଡ଼ାଏ ତରୁଣ ଆତ୍ମଶ୍ଳାଘାରକଥା କହନ୍ତି। କାମନ୍ଦକ ଏ ସଭାର ଅଭିଜ୍ଞ ଗୁରୁ। ପରିହାସପ୍ରିୟ ଏଇ ତରୁଣ ନିର୍ଲଜ ଭାବରେ ବ୍ୟାଖ୍ୟା କରେ ତାର ନିଜର ଗୋପନ ବିଳାସ। ଲୋଲଜିହ୍ୱ ରକ୍ତଚକ୍ଷୁ ଏଇ କେତେଗୁଡ଼ାଏ ଜାନୁଆରମାନଙ୍କ ଆଗରେ ଝରଣା ବିବସ୍ତ୍ରା ହୋଇଯାଏ ବହୁବାର–

ସେ ଶୁଣେ ଦୁଃଖ ପାଏ। ମାତ୍ର ସବୁ ଅତିକ୍ରାନ୍ତ ହୋଇ ଯାଇଛି। ଫେରି ଆସିବାର ପଥ ନାହିଁ।

ପ୍ରଭାତୀକାକ କା ତାନରେ ସେଇ କଥା କହୁଛି। ପ୍ରଦୋଷର ଶଙ୍ଖଧ୍ୱନି ସେଇ କଥା ଧ୍ୱନିତ କରୁଛି।

ଝରଣା ପ୍ରାଣପଣେ ଚେଷ୍ଟା କରୁଛି ଏଇ ରୁକ୍ଷ ପ୍ରଚଣ୍ଡ ଲୋକକୁ ସ୍ନିଗ୍ଧ କରିବ; ତାର କଣ୍ଠରେ ଦେବ ନମ୍ର ବଚନ। ତାର ଆଚରଣରେ ପ୍ରୋଥିତ କରିବ ଯଥାର୍ଥ ପ୍ରୀତମ୍‌ର ଆବେଗ।

ମନେପଡ଼େ ସେଇ ନଦୀତଟର ନିର୍ଜନ ବିଳାସ। ଜଣେ ପ୍ରକାଶ କଲା ଉପରକୁ ଯିବାର ସଂକଳ୍ପ। ଏ ବାଟରେ ସତ୍ୟ ଆସେ, ସୌନ୍ଦର୍ଯ୍ୟ ଆସେନି। ପ୍ରିୟତମ ହେବ ସହସ୍ର ଲୋକର ପ୍ରୀତିକର ଜୀବ। ଜ୍ଞାନ, ମାନ ଓ ରୂପରେ ସେ ହେବ ଅଭିନନ୍ଦିତ।

କାମନ୍ଦକ ପଚାରିଲା... 'ଆଉ କେତେ କାଳ ମୁଁ ଅପେକ୍ଷା କିରିବି; ଅତି ଜଣା ଶୁଣା କଥା। ମୋ' ଜୀବନରେ ବିପର୍ଯ୍ୟୟ ଆସିଲା ତୋରି ପାଇଁ। ଅଥଚ ତତେ ପାଇ ମୁଁ ପାଇପାରି ନାହିଁ। ଆଜି ତତେ ଏସବୁ ପ୍ରଶ୍ନର ଜବାବ ଦେବାକୁ ହେବ।'

ଏ ପ୍ରଶ୍ନର କି ଜବାବ ଦେବ ଝରଣା? କ୍ଷତର ପଚନ କ୍ରିୟା ଆରମ୍ଭ ହୋଇଯାଇଛି ତା'ର ଅନ୍ତର ଭିତରେ। ଏ ଲୋକ କଅଣ ଚାହେଁ ଅବା ଚାହିଁଛି, ସେ ଜାଣେ। ମାତ୍ର ଆଉ ନୁହେଁ। ଦୁର୍ବାର ଲାଳସା ଆଗରେ ନାରୀ ବିଭୂତିର ସମସ୍ତ ପରିପାଟୀକୁ ସେ କଅଣ ଶେଷ ଥର ଧ୍ୱଂସ କରିଦେବ? କେହି ତାକୁ ରକ୍ଷା କରିବେ ନାହିଁ? ସ୍ୱପ୍ନ ତା'ର ଭାଙ୍ଗିଛି। ଛାରଖାର ହୋଇଯାଇଛି ତା'ର ଜୀବନ। ଅଥଚ କେତେ ସରଳ୍ୟ, କେତେ ଆନନ୍ଦରେ ସେ ସମର୍ପଣ କରିଥିଲା ତା'ର ମନର ଅବ୍ୟକ୍ତ ବାସନାକୁ। ସବୁର ସମାପ୍ତି ଘଟିଗଲା।

ସେଥର କାମନ୍ଦକ କ୍ରୋଧରେ ଥରି ଥରି ଚାଲି ଯାଇଥିଲା— ଆଉ କହିଥିଲା 'ଆଉ ଥରେ ମାତ୍ର ଆସିବି।'

ବିଶୁଷ୍କ ବିଶୀର୍ଣ୍ଣ ପତ୍ର ଭଳି ମଉଳି ରହିଲା ଝରଣା। ତଳୁ ମନ ଉପରେ ପଶୁର ଦଂଶନ। ନାରୀ ଭାଗ୍ୟରେ ସ୍ୱର୍ଗ କାହିଁ ବା ନରକ କାହିଁ? ଯାହା ତାହା ଭାଗ୍ୟରେ ଅଛି ତାକୁ ଅନତିକ୍ରମ୍ୟ।

ବେଦନାବିଧୁରା ଏଇ ନାରୀ ଲୋଟିଯାଏ ବିଶ୍ୱଦେବତାର ଚରଣ ପ୍ରାନ୍ତରେ। ଖୋଜେ କାହିଁ ପଥ। ସ୍ୱର୍ଣକାତର ମନ ତା'ର ଦେବତାକୁ ଅନ୍ୱେଷଣ କରିଥିଲା। ଆଜି ସେ ଆକର୍ଷଣକୁ ସେ କହିବ ନାହିଁ ଅହେତୁକ, କିନ୍ତୁ ଏ କଅଣ ଘଟିଗଲା?

ଆଉ ଏକ ନିସ୍ତବ୍ଧ ରଜନୀ। ଜୀବନକୁ ଉନ୍ନତ କରିବ ବୋଲି ସବୁ ବିଷାକ୍ତ ପରିସ୍ଥିତି ଭିତରେ ବି ଝରଣା ଅଧ୍ୟୟନ କରୁଛି ଓ ସୋପାନ ପରେ; ସେମାନେ ଉଠୁଛି। ଇନ୍ଦ୍ରଧନୁର ରଙ୍ଗ ଚିରନ୍ତନ ନୁହେଁ। ତାହା ଯେତେବେଳେ ମିଳାଇ ଯାଇଛି, ଅନ୍ୟ ଏକ ସତ୍ୟ ପାଇଁ ସେ ପଣତ ବାନ୍ଧିଛି କଟିଉପରେ।

ଝରଣା କାହାଣୀର ଶେଷ ନାହିଁ। ଶେଷ ଯେମିତି ହୁଏନି ବକ୍ଷଫଟା ଦୀର୍ଘ ଶ୍ୱାସର। ଏ ସଂସାରରେ କଅଣ ଘଟେ ନ ଘଟେ ବିଶ୍ୱପ୍ରାଣ ଶିଳ୍ପୀ ମଧ୍ୟ ତା'ର କଳ୍ପନା କଳାରେ ଜାଣି ପାରେନା। ସେଥିପାଇଁ ଜୀବନ ରହସ୍ୟମୟ।

ସେଇ ରାତ୍ରିର ନିଭୃତି ଭିତରେ ଛିଡ଼ାହେଲା କାମନ୍ଦକ। ସେ ସୁରାପାନ କରିଥିଲା। ଆଖିରେ ତା'ର ଲାଳସାର ବହ୍ନି। ଝରଣା ସେତେବେଳେ କୁଞ୍ଚିତ ଭ୍ରୂରେଖା ଦେଇ ବୁଝିବାକୁ ଚେଷ୍ଟା କରୁଥିଲା କାଣ୍ଟର ଦର୍ଶନ–ତତ୍ତ୍ୱ... କେତେ ଜଟିଳ ସତେ...

କାମନ୍ଦକର କର୍କଶ ସ୍ୱର ଶୁଣି ଝରଣା ମୂର୍ଚ୍ଛିତା ହେବା ଉପରେ...

– 'ଏଥିରେ ଦସ୍ତଖତ କରି ଦେ।'

ଅତି କଷ୍ଟରେ ଝରଣା ପଚାରିଥିଲା– 'କ'ଣ ସେଥିରେ ଲେଖା ଅଛି ?'

'ଯେଉଁଥିପାଇଁ ନାରୀ ଜନ୍ମ ହୋଇଥାଏ ସେଇ କଥା ସାବ୍ୟସ୍ତ କରାଯାଇଛି। ଏଇ ଦସ୍ତଖତ ପରେ ସଂସାର ଜାଣିବ ତୋର ଭିନ୍ନ ପରିଚୟ।

'ଏତକ ନକଲେ ମୁଁ ଏଇ ଅସ୍ତ୍ରରେ ନିଜକୁ ମାରିବା ପୂର୍ବରୁ ତତେ ହତ୍ୟାକରି ନିଜକୁ ଧ୍ୱଂସ କରିବି। ଅନେକଦିନ ପର୍ଯ୍ୟନ୍ତ ଏ ଖୁଣି କଥା ଲୋକେ ମନରେ ରଖିବେ। କାରଣ ଗୋଟାଏ ଉନ୍ମତ୍ତ ପ୍ରେମିକ ତାର ପ୍ରଣୟିନୀକୁ ଏ ସଂସାରରେ ଜୀବିତ ରଖି ନିଜେ ଚାଲିଯିବାକୁ ଚାହିଁ ନଥିଲା। ହୁଏତ ଏ ହତ୍ୟା ଓ ଆତ୍ମହତ୍ୟା ଖୁବ୍ ଆକର୍ଷଣୀୟ ହୋଇ ନପାରେ। ତେବେ ମୁଁ ସ୍ଥିର ରହିଛି ମୋ କାର୍ଯ୍ୟରେ... ଗୋଟାଏ ମୁହୂର୍ତ୍ତ ମୁଁ ଡେରି ସହିବି ନାହିଁ। ମାତ୍ର ମନେରଖିବୁ ଯାହା ମୁଁ କରୁଛି ଅଗାଧ ପ୍ରେମବଶରୁ...'

ପ୍ରସିଦ୍ଧ ଏକ ସହରର ବକ୍ଷ ଉପରେ ଏ ଲୀଳାକୁ ଉପଭୋଗ କରୁଥିଲେ ଆକାଶ–ଖଚିତ କେତୋଟି ନକ୍ଷତ୍ର। ଝରଣାର ଶୋଇବା ଘର ଆରପଟେ ଲୋକେ ରହିଛନ୍ତି। ଡକାଡକି କରିବାର ଉପାୟ ନଥିଲା। ଝରଣା ତାର ପୂର୍ବ ରାଗର ମଣିଷର ଏ ବିଭତ୍ସ ରୂପକୁ ଦେଖି ବି ସେଇ ଏକା ପ୍ରେମମୟ ଅନୁଭୂତିରେ ସବୁ ଶେଷରେ ସୁନ୍ଦର ହେବ ବୋଲି ଭାବି ସ୍ୱାକ୍ଷର ଦେଇଦେଲା ଦଲିଲ୍ ଉପରେ... ସେଇ ମୁହୂର୍ତ୍ତରେ ପଶୁତ୍ୱର ଶକ୍ତି ବହୁଗୁଣରେ ବଢ଼ିଗଲା। ପ୍ରାନ୍ତର ଉପରେ ସେଇ ପଶୁଟା ପୁଚ୍ଛ ଟେକି ସେଇ ଦିନଠାରୁ ବେଶି ନୃତ୍ୟ କଲା। କାରଣ ଆଇନ କହେ ସ୍ୱାକ୍ଷର ହିଁ ସବୁ...

କାମନ୍ଦକ ଚାହିଁଥିଲା ଏଇ ବଳରେ ଝରଣାର ଶୁଭ୍ର ସୀମନ୍ତରେ ରଖିଦେବ ସିନ୍ଦୂରଗାର। ମାତ୍ର ମଥା ଉପରେ ସିନ୍ଦୂର ସ୍ପର୍ଶ ଅପେକ୍ଷା ମନର ସିନ୍ଦୂର–ରଙ୍ଗ ଏବେ ବି ସମ୍ଭବ ହୋଇନାହିଁ। ଏକ ସୁକୁମାର ସଞ୍ଚାରିଣୀ ଲତା, ଅକପଟରେ ଚାହେଁ ପ୍ରୀତମ୍‌ର ପ୍ରତି ଆଚରଣରେ ମହାନ ବିଶ୍ୱବୋଧ। ଅନ୍ୟ ଚାହେଁ ପଶୁ ସ୍ତରର ବିଭୀଷିକାରେ ନାରୀ ହୃଦୟକୁ ସଂତ୍ରସ୍ତ ଓ ବିଷାକ୍ତ କରିବା ପାଇଁ। ଖେଦ, କ୍ଷୋଭ ଓ ଆତ୍ମଗ୍ଲାନିରେ ଜର୍ଜରିତ ଝରଣା ଖୋଜୁଛି ମୁକ୍ତିର ପଥ। ସର୍ବନାଶ। ଅଦୃଷ୍ଟ ତାକୁ କେଉଁ ଗଭୀର ଗହ୍ୱର ଭିତରେ ନିକ୍ଷେପ କରିଛି ସେ ଜାଣେ।

ମାତ୍ର ସେ ବଞ୍ଚିବ, ବନ୍ୟାଧ୍ୱସ୍ତ ବୃକ୍ଷ ଯେମିତି ବଞ୍ଚେ ପୁଣି ମାଟିର ଗର୍ଭରୁ ରସ ସଂଗ୍ରହ କରି। ସେ ସେମିତି ବଞ୍ଚିବ।

ଅଳ୍ପ ବିକ୍ଷୁବ୍‌ଧ ନୀଳ ଲହରୀକୁ ଚାହିଁ ଛିଡ଼ାହୋଇଥିଲେ ଦେଶର ପ୍ରତିଷ୍ଠିତ ଶିଳ୍ପୀ ବିଭୁପ୍ରସନ୍ନ। ତାଙ୍କରି ଛବିଗୁଡ଼ିକର ପ୍ରଦର୍ଶନୀ ଚାଲିଛି। ସହରର ବହୁ କଳାକାର ଶିଳ୍ପରସିକ ସେଗୁଡ଼ିକ ଦେଖି ଆନନ୍ଦ ପାଉଛନ୍ତି।

ସ୍ଥିର ବିଦ୍ୟୁତ୍ ଭଳି ଗୋଟିଏ ଦୃଶ୍ୟ ବିଭୁପ୍ରସନ୍ନଙ୍କର ମନ ଭିତରେ ରହିଯାଇଛି। ପ୍ରଦର୍ଶନୀର ଆସର ଖୁବ୍ ଜମିଥିଲା। ନାରୀ ପୁରୁଷ ଗୋଟିଏ ନିର୍ଦ୍ଦିଷ୍ଟ ଛବି ପାଖରେ ଛିଡ଼ାହୋଇ ଶିଳ୍ପୀଙ୍କ କୃତି ଉଦ୍ଦେଶ୍ୟରେ ସାଧୁବାଣୀ ପ୍ରକାଶ କରୁଥିଲେ।

ଛବିଟିର ନାଆଁ "ପ୍ରାନ୍ତର"। ଏକ ବିରାଟ ନୀଳ ପ୍ରାନ୍ତର ଉପରେ ଗୁଡ଼ାଏ ଭୟଙ୍କର ପଶୁ।

ଚାରିଆଡ଼ ବୃକ୍ଷଲତା ଗୁଳ୍ମ। ବଡ଼ ବଡ଼ ବୃକ୍ଷର କୋଟର ଭିତରେ ବହୁ ସରୀସୃପ ମଥା ଓ ପୁଚ୍ଛ ଦେଖାଇ ରହିଛନ୍ତି। ସମଗ୍ର ପରିସ୍ଥିତି ଭୟଙ୍କର ଓ ବିପଦସଙ୍କୁଳ।

ସେଇ ଛବିରେ ଶିଳ୍ପୀ ଦେଖାଇଛନ୍ତି ଏକ ତରୁଣୀକୁ ଗୋଟିଏ ପ୍ରମତ୍ତ ପଶୁ ଦଂଶନ କରି ରକ୍ତାକ୍ତ କରୁଛି। ନାରୀଟି ଅର୍ଦ୍ଧବିବସ୍ତ୍ରା। ଆଖିରେ ତାର ପ୍ରାର୍ଥନାର ଇଙ୍ଗିତ। ଉପରେ ମେଘମାଳା ଦେହରେ ଗୋଟିଏ ଛୋଟ କ୍ରୁଶର ଚିତ୍ର। ସେଥିରୁ ଦୁଇ ଧାରରେ ଜ୍ୟୋତି ନିର୍ଗତ ହେଉଛି। ଚାରିଆଡ଼କୁ ଚାହିଁ ତରୁଣୀଟି ନିଜ ବସ୍ତ୍ରର ମେଖଳାକୁ ସଂଗ୍ରହ କରୁଛି। ପଶୁର ଅତ୍ୟାଚାରର ସୀମା ନାହିଁ।

ଛବିଟିର ବିଭବ ଏତିକି। ବିଭୁପ୍ରସନ୍ନ ଦେଖିଲେ, ଛବିଟିକୁ ଗୋଟିଏ ସୁଦର୍ଶନା ତୁରୁଣୀ ଅପଲକ ଚକ୍ଷୁରେ ଚାହିଁ ରହିଛି। ତାର ଅଧର କ୍ରମେ ଥରିଗଲା। ଆଖିରୁ ଦୁଇଟି ମୁକ୍ତାବିନ୍ଦୁ ଢଳ ଢଳ ଅବସ୍ଥାରେ ଖସି ଆସିଲା। ମୁହୂର୍ତ୍ତେ ନୁହେଁ, ବହୁକାଳଯାଏ ସେ ନିରୀକ୍ଷଣ କଲା ଚିତ୍ରଟିକୁ।

ତାପରେ ସେ ଅର୍ଦ୍ଧସ୍ଫୁଟ ଚିତ୍କାର କରିଥିଲା। ସଂଜ୍ଞାହୀନ ଦେହ ତାର ଭୂତଳର ଆଶ୍ରୟ ପାଇବା ପାଇଁ ଲୋଟି ଆସୁଥିଲା। ସେତିକିବେଳେ ଶିଳ୍ପୀ ବିଭୁପ୍ରସନ୍ନ ବିମୂଢ଼ ଅବସ୍ଥାରେ ସ୍ଖଳିତ ପଦ୍ମଭଳି ତରୁଣୀଟିକୁ ପ୍ରଶସ୍ତ ବକ୍ଷ ଉପରେ ଧରିନେଲେ।

ଦର୍ଶକମାନେ ଦୁଃଖ କଲେ। କିଏ କହିଲେ ଛବିଟିର ମର୍ମ ବୋଧହୁଏ ଝିଅଟିର ମନକୁ ସ୍ପର୍ଶ କରିଛି। ହଁ। ଏ ଜଗତରେ କାହାର କେଉଁ ଅନୁଭବ କେଉଁଠି କିପରି ମିଳିଯାଏ, କହିହେବ ନାହିଁ। ବିଭୁପ୍ରସନ୍ନଙ୍କ ହୃଦୟରେ ଲାଖି ରହିଛି ସେଇ ଦୃଶ୍ୟଟି। ଆଜି ସେ ଯାଇ ନାହାନ୍ତି ପ୍ରଦର୍ଶନୀ ମଣ୍ଡପକୁ। ତାଙ୍କର ଶିଳ୍ପକୃତିର ସାର୍ଥକତା କାଲି ହୁଏତ ପ୍ରମାଣିତ ହୋଇଯାଇଛି।

ନୀଳ ଲହରୀର ଭାସମାନ ଜଳ ବିନ୍ଦୁ ତଳେ ସେ ଖୋଜୁଛନ୍ତି କାଲିର ସଂଜ୍ଞାହୀନ ଦେହକୁ। ବଲ୍ଲରୀ ଭାଙ୍ଗି ପଡ଼ିବା ବେଳେ ସେ ଆଶ୍ରୟ ନେଇଥିଲେ ଏଇ ବକ୍ଷ ଉପରେ। ମାତ୍ର ସେ ବା କେତେ କ୍ଷଣ? କଳାକାର ଜାଣେ କ୍ଷଣକୁ କିପରି ଶାଶ୍ୱତ କରିହେବ। ମାତ୍ର ଏ ଦୃଶ୍ୟ ଏ ଭାବ ତ ଅଙ୍କନର ବାହାରେ।

ଥରଟିଏ ଦେଖା, ସେ ପ୍ରାର୍ଥନା କରୁଛନ୍ତି ଏବଂ ଏଇ ପ୍ରାର୍ଥନା ବିଶ୍ୱପିତାଙ୍କର ଚରଣ ତଳେ ଜଣାଇଛନ୍ତି। ଥରଟିଏ ଦେଖା ସେଇ ତରୁଣୀ। କି ମର୍ମବ୍ୟଥାରେ ସେ ନାରୀ ବ୍ୟଥିତା, ନୀଳକଣ୍ଠ ଭଳି ସେ କି ବିଷପାନ କରିଛନ୍ତି, କି ଭଳି ଆତ୍ମଦାହ ଧରି ସେ ହୃଦୟଟାକୁ ପୋଡ଼ି ପାଉଁଶ କରି ପଥ ଚାହିଁଛନ୍ତି।

ଅଥଚ ସେଇ ପାଉଁଶରୁ, ସେଇ ପଙ୍କ–ତିଳକରୁ ଜନ୍ମ ନେଇଛି ଯୁଗେ ଯୁଗେ ଶୁଭଙ୍କର ପଦ୍ମ। ହଁ, ମୁହଁଟି ବିକଚ ପଦ୍ମ; ଦୁଃଖ, ବେଦନାରେ ବଜ୍ରାହତ ଦେହଟି ଯେତେବେଳେ ଝାଉଁଳି ଆସି ବିଭୁପ୍ରସନ୍ନର ବକ୍ଷ ଉପରେ ଆଶ୍ରୟ ନେଲା, ମନେ ହେଲା ସତେ ଯେମିତି ଶିଳ୍ପୀ ଆଉ ଶିଳ୍ପର ପରିଣୟ ଘଟିଗଲା। ସାକ୍ଷୀ ରହିଥିଲେ ସର୍ବ ପାପର ତ୍ରାଣକର୍ତ୍ତା କ୍ରୁଶବିଦ୍ଧ ଶରୀର ଓ ତାଙ୍କର ରକ୍ତଧାରା।

ନା, ଏସବୁ କାହିଁକି? ବିଭୁପ୍ରସନ୍ନ ସ୍ଥିର ଦୃଷ୍ଟିରେ ଅବଲୋକନ କଲେ ପଶ୍ଚିମର ନଭ ପ୍ରାଙ୍ଗଣକୁ। ଜ୍ୟୋତି ମଉଳି ଯାଇଛି ଅଥଚ ମଉଳିବା ପୂର୍ବରୁ କେତେ ବର୍ଣ୍ଣରସରେ ରେଖିତ ହେଉଛି ସେ ପ୍ରାଙ୍ଗଣ।

ସେ ତରୁଣୀ ସିମିତି ମଉଳି ଆସୁ ଆସୁ ବିଭୁପ୍ରସନ୍ନର ହୃଦରେ ବର୍ଣ୍ଣରସର ଆସ୍ତରଣ ଝୁଲାଇଦେଲା। କୋଟିଏ ଲୋକର ଶୋଭାଯାତ୍ରା ଦେଖିଛନ୍ତି ଶିଳ୍ପୀ। ଅଙ୍କନ ତୁଳୀରେ ଦୀପ୍ତ ହୋଇଛି ପ୍ରତ୍ୟେକଟିର ମୁଖ ଚକ୍ଷୁ ଅବୟବ।

ମାତ୍ର ଏ ଯେ ସଂଧ୍ୟାର ତାରକା ଖସି ଆସିଲା ଶିଳ୍ପୀର ମନୋମୟ ଜଗତକୁ, ତା ସାଙ୍ଗେ କଣ ଥରେ ମାତ୍ର ଦେଖା ହେବନି? ଆଜି କଣ ସେ ଆସିଥିବ କଳାମଣ୍ଡପକୁ।? ସେଇ 'ପ୍ରାନ୍ତର' ଛବି କଣ ତାକୁ ଆକର୍ଷଣ କରି ଆଣିଥିବ?

ବିଭୁପ୍ରସନ୍ନର ଆତ୍ମା ବିଶ୍ୱବୋଧରେ ପରିଚ୍ଛନ୍ନ ହୋଇ ଉଠିଲା ଦେଖା ନ ହେଉ ପଛକେ ସେ ତାକୁ ଧରି ରଖିବେ ଏଇ ସିନ୍ଧୁର ଅନନ୍ତ ନୀଳିମାର ବିସ୍ତୃତିରେ। ସେ ତାକୁ ଖର୍ବ କରିବେନି। ତାକୁ ଛୋଟର ଅମର୍ଯ୍ୟାଦା ଦେବେନି।

କଳାର ପ୍ରଶସ୍ତ ଅଙ୍ଗନରେ ସେ ତରୁଣୀ ଜଳି ରହିବ ଏକ ମହାନ୍ ପ୍ରଦୀପ ଭଳି। ବିଶାଳ ବ୍ୟଥାରେ ତା'ର ଅନ୍ତର ଛିନ୍ନ ଭିନ୍ନ ନ ହୋଇ ଥିଲେ ବିବସ୍ତ୍ରା ନାରୀର ତ୍ରସ୍ତ ଈକ୍ଷଣ ଦେଖି ସେ ଜ୍ଞାନ ହରାଇ ନ ଥାନ୍ତା। ଅଧିକାର ଲିପ୍ସାରେ କେତେ ନାରୀ ଆଜି ବିବସନା। କେତେ କୌଶଳ, କେତେ ଚକ୍ରାନ୍ତରେ ନାରୀ ଆଜି ଝରାପୁଷ୍ପ ଭଳି ବିଶୀର୍ଣ୍ଣ। ଦେବତା ବୁଡ଼ି ଯାଉଥିଲେ ବହ୍ନିମୟ କରି ସିନ୍ଧୁବାରିକୁ। ନାଃ ଆଉ ତାକୁ ଅନ୍ୱେଷଣ କରି ଲାଭ ନାହିଁ। ଏ ବକ୍ଷର ଉଷ୍ମତାକୁ ଚେତନାହୀନ ମନରେ କଅଣ ବା ସେ ଅନୁଭବ କରିଥିବ?

ସବୁ ଅନୁଭବ ବାହାରେ ରହିଗଲା ଏ ମିଳନ। କଳା ଓ କାନ୍ତିର ମିଳନ।

ପଥ ଚାଲିଲେ ବିଭୁପ୍ରସନ୍ନ। ଅବସନ୍ନ ପ୍ରାଣ। ଉଦାସ ଚାହାଣି, ଆଜି ତାଙ୍କର ହୃଦୟ ବ୍ୟଥାମୟ। ଏଇ ବ୍ୟଥାରୁ ଜନ୍ମ ନିଏ ସୃଷ୍ଟି, ମାତ୍ର...

ଅଳ୍ପ ଦୂରରେ ବିଗଳିତ ଜ୍ୟୋତ୍ସ୍ନାସ୍ତମ୍ଭ ଭଳି ଜଣେ କେହି ଛିଡ଼ା ହୋଇଥିବାର ଲକ୍ଷ୍ୟ କଲେ ଶିଳ୍ପୀ ବିଭୁପ୍ରସନ୍ନ। ଛାତିର ରୁଦ୍ଧଶ୍ୱାସ ପଥ ଖୋଜୁଥିଲା ବିମୁକ୍ତି। ଏ କ'ଣ ସେଇ? ଶିଳ୍ପୀର ଶିଳ୍ପ? ଗୋଧୂଳିର ଈଷତ୍ ଧୂସରତା ଭିତରେ ଏ ଚିତ୍ର ଯେ ପରମ ଆକର୍ଷଣୀୟ।

ଅନୁଲିଖିତ ସେଇ ମୂର୍ତ୍ତି ଧୀରେ ପାଦ ଚଳାଇ ଆସିଲା। ମନେ ହେଲା ଶାଶ୍ୱତ ପ୍ରେମାନୁଭୂତି ଯେପରି ବିଗ୍ରହ ଧରି ଶିଳ୍ପୀର ପ୍ରାଣମୟତା ଭିତରକୁ ଚାଲି ଆସୁଛି।

– ନମସ୍କାର।

– ନମସ୍କାର।

ପୁଣି ଦୁହେଁ ନିର୍ବାକ।

କାହିଁକି କେଜାଣି ଦୁଷ୍ଟ ସାଗରଟା ସେତିକିବେଳେ ଗୁଡ଼ାଏ ଢ଼େଉରୋଳରେ ବଡ଼ପଣିଆ ଦେଖାଇ ବସିଲା।

ବିଭୁପ୍ରସନ୍ନ ପଚାରିଲେ– 'ଆପଣଙ୍କ ଦେହ କିମିତି ଅଛି; କାଲିର ଅସୁସ୍ଥତା...'

କେତେ ସମୟ ବିତିଗଲା। ଶାନ୍ତ ହୋଇ ଆସିଲା ସିନ୍ଧୁରୋଳ।

ତରୁଣୀ ଜିଜ୍ଞାସା କଲେ–

– ଆପଣ ଚିହ୍ନି ପାରିଲେ?

ବିଭୁପ୍ରସନ ଆତ୍ମହରା ହେଲେ। ଚାରିଆଡ଼େ ନୀଳଦିଗନ୍ତ, ସମ୍ମୁଖରେ ମହାନ୍ ପାରାବାର। ଉପରେ ଶାନ୍ତ ଆକାଶ। ଏଇ ପରିସ୍ଥିତିରେ ଜଣେ ପଚାରୁଛି ଆପଣ ଚିହ୍ନିପାରିଲେ ?

ଶିଳ୍ପୀ ହସିଲେ– ମୃଦୁ... କହିଲେ– ବହୁ ଦିନରୁ ପରିଚୟ ଅଛି। ଯେଉଁ ଭାବ ମୂର୍ତ୍ତିକୁ ମୁଁ ତୁଳି ଆଉ ରଙ୍ଗରେ ଫୁଟାଇବି ବୋଲି କଳ୍ପନା କରି ପାରୁ ନ ଥିଲି ସେ ଇମିତି ସହସା ଖସିଆସିଲା ଦେବଲୋକରୁ... ତାକୁ ମୁଁ ଚିହ୍ନି ନାହିଁ ?

ଝରଣାର ଆଖିରେ ଝଲସି ଉଠିଲା କାମନ୍ଦକର ରୂପ... ତା'ର ବଜ୍ର ବାଣୀ– ଏଥିରେ ଦସ୍ତଖତ କରିଦେ– ତୁ ମୋର–

ଝରଣା ବି ହସିଲା– କହିଲା– ମୁଁ ଭାବି ନଥିଲି ଆପଣ ଏଠି ଥିବେ।

ଶିଳ୍ପୀ ନିମନ୍ତ୍ରଣ କଲେ ବସିବା ପାଇଁ। ଦୁହେଁ ବସିଲେ। କେତେ ଅପରିଚିତ, କେତେ ଅଜ୍ଞାତ... ଅଥଚ ଜୀବନ–ଭୂମିରେ କେତେବେଳେ କେଉଁ ଅଙ୍କୁର ଫୁଟି ବାହାରେ, ସେ ପୁଣି ହୁଏ କଳିକା, ପୁଣି ସେଥିରୁ ଜନ୍ମନିଏ ପୁଷ୍ପ... କେତେ ସମ୍ଭାବନା ରହିଛି... ନୁହେଁ କି ?

ବିଭୁପ୍ରସନ୍ନ ଶିହରିତ ହେଲେ। କହିଲେ– ସେ ଛବିଟାକୁ ଦେଖି ଏତେ ବିଚଳିତ ହୋଇପଡ଼ିଲେ ଯେ ?

ଝରଣା ଉତ୍ତର ଦେଲା– ପଶୁର ଗ୍ରାସ ଦେଖି ମୁଁ ସ୍ଥିର ରହି ପାରିଲି ନାହିଁ।

– କ୍ଷମା କରିବେ, କୌତୂହଳ ନାହିଁ, ତଥାପି ପଚାରୁଛି– ନିଜ ଜୀବନରେ ଏମିତି କଅଣ ଅନୁଭବ, ମାନେ, ଏହିଭଳି ଗ୍ରାସର–

ଦ୍ୱିତୀୟା ଚନ୍ଦ୍ରର କ୍ଷୀଣ ଜ୍ୟୋତ୍ସ୍ନାରେ ଝରଣା ଅପୂର୍ବ ଦେଖାଯାଉଥିଲା। ପ୍ରଶ୍ନଟାକୁ ଏଡ଼ାଇଦେଇ ଝରଣା ପଚାରିଲା–

ଆପଣ ଏତେ ସ୍ନିଗ୍ଧ କାହିଁକି ?

– ଶିଳ୍ପୀ ତ ସ୍ନିଗ୍ଧ ରହିବ; ନହେଲେ ତାର ଅନ୍ତର ଧରିପାରିବ ନାହିଁ ବିଶ୍ୱଧାରଣାକୁ।

ଝରଣାର କଣ୍ଠରେ ସ୍ନେହଭାବ–

– ହଁ, ମୁଁ ଏସବୁ ଜାଣି ନଥିଲି। ପୁରୁଷ ସଙ୍ଗେ ଯେ ଏପରି କଥାବାର୍ତ୍ତା ସମ୍ଭବ, ପୌରୁଷର ଏପରି ସ୍ଥିର ଶାନ୍ତ ସମାହିତ ଆଚରଣ ସମ୍ଭବ, ମୁଁ ଜାଣି ନଥିଲି।

– ଆଉ କଅଣ ଜାଣିଥିଲେ ?

– ନା, ସେ ଥାଉ। ଯାହା ଜାଣିଥିଲି ତାକୁଇ ଭାବିଥିଲି ସତ୍ୟ ଅପରୂପ ଓ ବାଞ୍ଛିତ।

ଶିଳ୍ପୀ ଆନମନା ହେଲେ। କହିଲେ, 'ପ୍ରାନ୍ତର' ଛବିଟାକୁ ଆପଣଙ୍କ ଜୀବନ ସହିତ ଯୋଖି ଦେବାକୁ ମୁଁ ଚାହିଁ ନଥିଲି। ତେବେ ଶିଳ୍ପୀର ଅନୁଭବରେ ଅନେକ କଥା ଆସେ। ଆପଣଙ୍କ ସହିତ ଏଇ କଥାବାର୍ତ୍ତାର ସ୍ମୃତି ଉପଲକ୍ଷେ ମୁଁ ସେ ଛବିଟିକୁ ଆଉ ପ୍ରଦର୍ଶିତ କରିବି ନାହିଁ। ତାକୁ ରଖିଦେବି।

ଝରଣା ବାରଣ କରି କହିଲା–

– ନା, ନା, ରଖିବେନି। ମୋ ଭଳି କେତେ ବ୍ୟଥାତୁରା ନାରୀ ଛବିକୁ ଦେଖି ହୁଏତ କିଛି ଶିଖିପାରିବେ, ଧ୍ୟାନ ଦେଇ ପାରିବେ। ଆଚ୍ଛା, କିଛି ମନେକରିବେ ନାହିଁ– ଆପଣଙ୍କର ନୀଡ଼ ଅଛି ?

ବିଭୁପ୍ରସନ୍ନଙ୍କ ଦୃଷ୍ଟିରୁ ଝରିଲା ଅମୃତ... କହିଲେ– ଶିଳ୍ପ ହିଁ ମୋର ନୀଡ଼... ଆଉ କି ନୀଡ଼

ଦରକାର? ତାଛଡ଼ା ବିଶ୍ୱ ତ ଏକ ନୀଡ଼ ଆମେ ସମସ୍ତେ ସବୁ ପକ୍ଷୀ ପକ୍ଷିଣୀ ଏଇ ନୀଡ଼ ଉଦ୍ଦେଶ୍ୟରେ ପକ୍ଷ ବିସ୍ତାର କରି ଉଡ଼ି ବୁଲୁଛୁ। ସମୟ ଆସିବ ଦିନେ ଆମେ ନୀଡ଼ ଭିତରକୁ ଯିବା। ତାର ଭିତରଟିକୁ ସଜାଇବା।

ଝରଣାର ଗଣ୍ଡ ଦେଇ ସେତେବେଳେ ନୀରଧାର ଖସି ଆସୁଥିଲା। ଶିଳ୍ପୀ ଚାହିଁ ରହିଗଲେ ସେଇଆଡ଼େ। ବିମୁଗ୍ଧ ଦୃଷ୍ଟି...

– ଆପଣ ଚଞ୍ଚଳ ହୋଇପଡ଼ିଲେ। ମୋ କଥାରେ ବ୍ୟଥା ଦେବା ଭଳି କିଛି ଥିଲା କି?

– ନା,

– ଆଛା କହନ୍ତୁ, ଆଜି ପର୍ଯ୍ୟନ୍ତ କେହି ଆପଣଙ୍କୁ ନୀଡ଼ ଭିତରକୁ ଆହ୍ୱାନ କରିନି?

ଝରଣା ଆତ୍ମସମ୍ବରଣ କରି କହିଲା–

– କରିଛି, ମାତ୍ର ପ୍ରେମହୀନ ସେ ଆହ୍ୱାନ, କେବଳ ଅଧିକାର, କେବଳ ସେଇ ପଶୁଭଳି ବିବସ୍ତ୍ର କରିବାର ଆହ୍ୱାନ– ଓଃ

ଝରଣାର ସଂଜ୍ଞାହୀନ ଶରୀର ଆଉଥରେ ବିଭୁପ୍ରସନ୍ନର ବକ୍ଷ ଉପରେ ଲୋଟିପଡ଼ିଲା। ଆଉ ସେଇମାନଙ୍କର ଚରଣ ପର୍ଯ୍ୟନ୍ତ ଲୋଟି ଆସିଲା ସେତିକିବେଳେ ପାରାବାରର ତରଙ୍ଗ ଉଚ୍ଛ୍ୱାସ।

କୋଳରେ ଝରଣା। ମଣିଷର ଦୁର୍ଗମ ପାଶବିକତାରେ ଛିନ୍ନ ଭିନ୍ନ ପୁଷ୍ପଲତା ଏଇ ଝରଣା ଆଜି ଶାନ୍ତି ପାଇଛି ଶିଳ୍ପୀର ବକ୍ଷ ଭିତରେ...

ଏଇ ପଥ ଦେଇ ଆସେ ପ୍ରେମର ପ୍ରବାହିନୀ... ଏଇଭଳି ଭୂମି ଉପରେ ଗଢ଼ି ହୋଇଯାଏ ପ୍ରେମର କୋଣାର୍କ– ଏଇ ଭଳି ନୀଡ଼କୁ ପ୍ରବେଶ କରନ୍ତି ଦୁଇ ବିହଗ ବିହଗୀ...

ନିର୍ଭୟ ବିଶ୍ୱାସ, ନିରହଙ୍କାର ଆତ୍ମସନ୍ତୋଷ ଭିତରେ ଝରଣା ଓ ବିଭୁପ୍ରସନ୍ନ ଦୃଷ୍ଟି ପ୍ରସାରିତ କରି ଦେଖିଲେ ସିନ୍ଧୁ ଗର୍ଜି ଚାଲିଛି ଆଉ ସେମାନେ ପ୍ରଶାନ୍ତ ବିଶ୍ୱବୋଧରେ ଗଡ଼ି ଚାଲିଛନ୍ତି ସୀମାହୀନ ଦୂରକୁ... ବହୁ ଦୂରକୁ...

ଏ ମିଳନ ଶାଶ୍ୱତ ଓ ଶୁଭ ହେଉ– ଏଇ ବାଣୀ ବହନ କରି ଆଣୁଥିଲା ସେତେବେଳେ ଏକ ନୀଡ଼ଫେରା ପକ୍ଷୀ।

କେତେ ବିଷ, କେତେ ବୀଭତ୍ସତା, କେତେ ଚଣ୍ଡତା ଦୂର ହୋଇଗଲା ଏଇ ପ୍ରଶାନ୍ତି ଭିତରେ... ସତ୍ୟ ଆସିବ, ଆସୁଛି। ପ୍ରାଣ ପଥ ଦେଇ ତାହା ଆସିବ; ନଖ ଦାନ୍ତ ରକ୍ତ ଦେଇ ସତ୍ୟ ଆସେନା, ସୌନ୍ଦର୍ଯ୍ୟ ଆସେନା, ଆସେ ମିଥ୍ୟା ଆଉ କୁରୂପତା। ଏଇ କଥା ବୋଧହୁଏ ଜଣାଇଥିଲା ସିଏ ତା'ର ଅବାରିତ ଗତି ପ୍ରବାହ ଭିତରେ...

ଶିଳ୍ପୀ ଆଶ୍ୱାସ ଦେଉଥିଲେ ମୂର୍ଚ୍ଛିତା ଝରଣାକୁ ବକ୍ଷର ଅନନ୍ତ ଉଷ୍ମା ଓ ପ୍ରତ୍ୟୟ ଦେଇ...

ନୀଳ ପ୍ରାଙ୍ଗଣରେ ଗୋଟି ଗୋଟି ଫୁଟି ଆସୁଥିଲେ ନଭ–ପୁଷ୍ପ। ଅପୂର୍ବ ସେ ଶୋଭା! ମଥାପାତି ରହିଯାଏ ଭାବୁକ– ଭାବିବାର ସୀମା ନ ଥାଏ।



# ଇଣ୍ଟରଭାଲ

'ମଳୟ–ଛାତ୍ରୀ ନିବାସ'ର ପାହାଚ ଉପରକୁ ଉଠିଗଲେ ପ୍ରଥମେ ଆଖିରେ ପଡ଼େ ସ୍ତବକିତ କୃଷ୍ଣଚୂଡ଼ାର ସ୍ନିଗ୍ଧ ଲୋହିତ ଐଶ୍ୱର୍ଯ୍ୟ...

ଯଦି ସଂଧ୍ୟା ନଇଁ ଆସିଥାଏ, ଦେଖାଯାଏ କୁଙ୍କୁମଚିହ୍ନିତ କେତେଗୁଡ଼ିଏ କପାଳ, ଫିଟା ଅଫିଟା ସୁବାସିତ କେତେଗୁଡ଼ିଏ କବରୀର ଚଳନ... ଦୋଳନ; ଦେଖାଯାଏ ଚହଲି ଯାଉଥିବା କେତେଗୁଡ଼ିଏ ସତୃଷ୍ଣ ଆଖିର ମିଠା ଆବେଶ, ଶୁଣାଯାଏ ବହୁ କଣ୍ଠର ବିଚିତ୍ର ମନୋରମ କାକଳି...

ପ୍ରତୀକ୍ଷା କରି ରହିଥାନ୍ତି 'ମଳୟ ଛାତ୍ରୀନିବାସ'ର ଅଧିବାସିନୀ। ମନଖୋଲା ପଦେ କଥା କାହା ସଙ୍ଗେ କହିବାକୁ ଏଇ ସଂଧ୍ୟାଆକାଶର ନୀରବ ମନ୍ତ୍ରପୂତ ମୋହଘନ ମୁହୂର୍ତ୍ତଗୁଡ଼ିକରେ...

ଏମାନେ ପ୍ରଥମେ ନାରୀ, ପରେ ଛାତ୍ରୀ... ଏମାନଙ୍କର ଦେହର ଉଷ୍ମା, ମନର ଉତ୍ତାପ, ହୃଦୟର ଲୁଚା ଭରାଭାବଗୁଡ଼ିକ ଝରିଯାଏ ଧୀରେ... ତାକୁ ସଜାଇ– ମୋହାର୍ଦ୍ଦ କରିବାକୁ କେହି କେହି ଆସନ୍ତି ସତ, କିନ୍ତୁ ବୃଥା ସେ ରୋମାନ୍‌ସ... ମନକୁ ପାଏ ନାହିଁ, ଦେହକୁ ଲାଗେନାହିଁ, ଛନ୍ଦି ରଖିବା ପାଇଁ ପାଦ ଅକୁଣ୍ଠ ହୁଏ। ଉଭେଇଯାଏ ସେଇ ନବକନ୍ଦଳିତ ରୋମାନ୍‌ସ, ଭୟ... ଆତଙ୍କ– ଆଉ ଆଶ୍ୱସ୍ତି ଭିତରେ...

ନୀରବ ପଥିକ ଚାଲିଯାଏ ଛାତ୍ରୀ ନିବାସ ପାଖ ରାଜପଥ ଉପରେ ... ନୀରବରେ କୃଷ୍ଣଚୂଡ଼ା ସ୍ତବକ ଖସିପଡ଼େ...।

ଏ ଧାରା ତ ନିତିପ୍ରତି ଲାଗିରହିଛି। ଅର୍ଥନୀତି, ରାଜନୀତି ବିଜ୍ଞାନ ଅବା ଗଣିତ, ସାହିତ୍ୟ ଭିତରେ ବୁଡ଼ି ରହି ସତ୍ୟକୁ ବୁଝୁ ବୁଝୁ ମନେ ପଡ଼ିଯାଏ ସେମାନଙ୍କର ସେଇ ଗୋଧୂଳି ଆଭା... ଗଗନ ବିଛାଇ ଧରାବତରଣ କରେ ଏକ ସ୍ୱର୍ଣ୍ଣକାତର ଅନୁଭୂତି।

ଛାତ୍ରୀସଦନର ନିରନ୍ଧ୍ର ପ୍ରାଚୀର ତଟରେ ଲାଗେ ତା'ର ଢ଼େଉ .. ତରୁଣୀମାନଙ୍କର ମନ ଖୋଜିବୁଲେ ମାୟାହରିଣୀ, ସ୍ୱର୍ଣ୍ଣରଚିତ ପଶୁ... କିନ୍ତୁ ଆସେନି ସେଇ ଅନାଗତ କ୍ଷଣଟି ଯେଉଁ କ୍ଷଣ ଭିତରେ ପ୍ରଣୟୀକୁ ଆଜୀବନ ସଙ୍ଗୀ କରିନେଇ ସେମାନେ ଛିଡ଼ା ହୋଇଯିବେ ଏଇ ଆମର ଭୋଗସମ୍ଭୋଗର ଶକ୍ତ ମାଟି ଉପରେ...

ସଞ୍ଜପହର ଗଡ଼ିଗଲେ କାକଳି ଆଉ ଶୁଭେ ନାହିଁ। ସବୁଜ ପଡ଼ିଆ ଉପରେ ବସିବା ଆସନ ଶୂନ୍ୟ ହୋଇଯାଏ। ସିଗାରେଟର ଚକ୍ ଚକ୍ ଅଗ୍ନି ଲିଭିଯାଏ... ଅଧାପୋଡ଼ା ସିଗ୍‌ରେଟର ଗୁଡ଼ାଏ ଜଞ୍ଜାଳ ସକାଳୁ ଫୋପାଡ଼ି ଦେଇଆସେ ଚାକର ନର୍ଦ୍ଦମା ଭିତରେ...

ହୁଏତ ଗୋଟିଏ ବାସି ଗୋଲାପ ସେ ଆବିଷ୍କାର କରେ ଭୂଇଁ ଉପରେ ପଡ଼ିଛି। କେତେ ଯୋତା ପତନ ତଳେ ତାହା ମାଟି ଭିତରେ ଚିପିହୋଇ ଅଧା ବଞ୍ଚାରେ ସୁଲୁ ସୁଲୁ ବାଆ ଭିତର ଦେଇ ଟିକିଏ ଥରିଯାଉଛି।

ଯେ ଉପହାର ଦେଇଥିଲା ସେ ନାହିଁ। ଆଉ ଆସିବ କି ନାହିଁ। ମନର କପୋତୀ ସେଠି ଗୁମୁରିଉଠିଲା ନାହିଁ। କୃଷ୍ଣଚୂଡ଼ା ଶିହରି ଶିହରି ସବୁ ଦେଖୁଥାଏ; ଏମାନଙ୍କ ମନ ସହିତ ସେ ମିଶି ଯାଇଛି... ଏକ ହୋଇଯାଇଛି... ଏଇ ସ୍ତବକିତ କୃଷ୍ଣଚୂଡ଼ା...

ପିତୃମାତୃହୀନା ଅଳକାନନ୍ଦାକୁ ଥରେ ଥରେ ଦେଖି ଆସିବା ପାଇଁ ମୁଁ ଉଠିଯାଏ 'ମଳୟ–ଛାତ୍ରୀ–ନିବାସ'ର ପାହାଚ ଉପରକୁ।

ଅଳକାନନ୍ଦାର ସଂସାରଶୂନ୍ୟ; ବିବର୍ଣ୍ଣ। ଯାହାର ପିତା ମାତା ନାହାନ୍ତି, ତା'ର ସଂସାରରେ ବା କି ସଂପଦ ଅଛି? ମାତ୍ର ତାହାର ଆକାଂକ୍ଷା ତୀବ୍ର। ସେ ଉପରକୁ ଉଠିବ, ପଢ଼ିବ। ଯେ କୌଣସି ଉପାୟରେ ଧରିତ୍ରୀ ଉପରେ ପାଦ ରଖି ସେ ମଣିଷ ହେବ।

ଅଳକାନନ୍ଦାର ଅନ୍ତରର ପରିପାଟୀ ମତେ ମୁଗ୍ଧ କରିଥାଏ। ନିରାଭରଣ ନିର୍ମୋହ ସୌନ୍ଦର୍ଯ୍ୟରେ ଏଇ ବାଳିକାଟିକୁ ପ୍ରଥମେ ଯେତେବେଳେ ମୁଁ ଦେଖିଲି, ଗୋଟିଏ ସ୍ନିଗ୍ଧ ରୂପଶ୍ରୀ ମୋ ହୃଦୟକୁ ଦୋଳନ ଦେଇଥିଲା।

ନିତ୍ୟ କର୍ତ୍ତବ୍ୟ ଭଳି ସେଦିନ ଶ୍ରେଣୀରେ ଅଧ୍ୟାପନା କରିବାକୁ ଯାଇଥାଏ। ନୂଆ ହୋଇ ଆସିଥାଏଁ। କାହା ସଙ୍ଗେ ଘନିଷ୍ଠ ପରିଚୟ ନଥିଲା। ଶ୍ରେଣୀର ଆଗ ଭୂଇଁ ମଣ୍ଡନ କରି ସବୁଜ ଘାସର ଗାଲିଚା ଲମ୍ବିଯାଇଥାଏ ଦୂରକୁ। ସେଇ ଶ୍ୟାମରୂପ ହୃଦୟରେ ନୃତ୍ୟ କରୁଥାଏ। ଶ୍ରେଣୀରେ ବସି ବୈକୁଣ୍ଠଙ୍କର କାବ୍ୟ କବିତା ଉପରେ କିଛି କହୁଥାଏ।

ଦେଖିଲି– ଅନ୍ୟମନସ୍କ ଭାବରେ ଜଣେ ଛାତ୍ରୀ ଦୂରକୁ ଚାହିଁ ରହିଛି; ମନରେ ଯେପରି ପକ୍ଷ ଲାଗିଛି। ଘର, ବଗିଚା, ସବୁଜ କ୍ଷେତ ଏପରିକି ମତେ ଅତିକ୍ରମ କରି ଏ ବାଳିକାର ମନ–ବିହଙ୍ଗୀ ଅତି ଦୂରରେ ସନ୍ତରଣ କରୁଛି...

କ୍ଷୁବ୍ଧ ହୋଇଥିଲି ସେଦିନ... ତଥାପି ତାହାର ବାହ୍ୟିକ ଭିତରେ ଗୋଟାଏ ସୁଶାନ୍ତ ତୃପ୍ତି ଓ ଅନ୍ତର ଭିତରେ ଅପ୍ରତ୍ୟକ୍ଷ ଅଶାନ୍ତିର ଆଲୋକଛାୟା ଦେଖିଥିଲି–

କ୍ଲାସକୁ ଫେରିଆସି ବିଶ୍ରାମ ଘରକୁ ଯାଉଥାଏ। ପଛଆଡୁ କାହାର ଡାକ ଶୁଣି ଫେରି ଚାହିଁଲି; ଆଗରେ ସେଇ ବାଳିକା...

ପଚାରିଲି— 'କଅଣ?'

— ବୈକୁଣ୍ଠ 'ହରିଜନ' ଶୀର୍ଷକ କବିତା ଲେଖିଛନ୍ତି। ଯା' ବୋଲି ସେ 'ମେହେନ୍ତର', 'ହାଡ଼ି', 'ପାଣ', 'ବାଉରୀ' କି 'କୁଲି' 'ଖିଲିପାନ ଦୋକାନୀ' ବିଷୟରେ ତ କବିତା ଲେଖି ନାହାନ୍ତି?

ମୁଁ ସ୍ତବ୍ଧ ହେଲି– ଏ କି ଆକ୍ରମଣ? ପୁଣି ସେଇ ଅପରିଚିତା ପ୍ରଥମ ଦେଖା, ସ୍ୱପ୍ନଚାରିଣୀ ଛାତ୍ରୀଠାରୁ ଏ କି 'ଯୁଦ୍ଧଂ ଦେହି' ଭାବ?'

ଯୁଦ୍ଧ ଦେବାକୁ ସେ ଅବଶ୍ୟ ଆସି ନ ଥିଲା। ମୋର ବ୍ୟଙ୍ଗ ବୋଧହୁଏ ସେ ବୁଝିପାରି ନ ଥିଲା।

ଏହିଭଳି ନିଃସ୍ୱ ଲାଞ୍ଛିତ ଜନଶ୍ରେଣୀ ଉପରେ ବୈକୁଣ୍ଠଙ୍କର ମାନବିକତା ଯେ ଅଜସ୍ର ଧାରାରେ ଶ୍ରୀ ଝରାଇଛି, ତାହା ହିଁ ମୁଁ ପ୍ରତିପାଦନ କରିଥିଲି।

ସେଇ ପ୍ରସଙ୍ଗରେ ଅଳକାନନ୍ଦା ସହିତ ମୋର ପ୍ରଥମ ଆଳାପ। ତାପରେ ଉଚ୍ଚଶିକ୍ଷା ପାଇଁ ସୋପାନ ପରେ ସୋପାନ ସେ ଅତିକ୍ରମ କରୁଛି। ସହରକୁ କାର୍ଯ୍ୟାନ୍ତରରେ ଆସିଲେ ତା' କଥା ପଚାରିଯାଏ।

ସେଦିନ 'ମଳୟ ଛାତ୍ରୀ–ନିବାସ'ର ପାହାଚ ଉପରକୁ ଉଠିଯାଇ ଦେଖେଁ ଅଳକା ହାତଯୋଡ଼ି ସଂବର୍ଦ୍ଧନା କରୁଛି ଆଉ ତା'ର ଆଖି ଦୁଇଟିରୁ ସଫଳ ସ୍ୱପ୍ନର ଅମୃତ ନିର୍ଝର ଝରିଯାଇଛି ।

ଏ ବାଳିକାର ଅନ୍ତର ପୁଷ୍ପ କେତେବେଳେ ଫୁଟେ ବା କେତେବେଳେ ମଉଳେ, ତାହା ମୁଁ ଜାଣେ । ପ୍ରାୟ ସେ ଉଦାସୀନ ଥାଏ । ଆଜି ଦେଖିଲି, ଜଗତ ତା' ପାଖରେ ଧରାଦେଇଛି ଅନିର୍ବାଣ ଏଇ ଦୀପ୍ତ ପ୍ରଦୀପ୍ତ ଆଭାରେ...

ଆଜି ଅଳକାର ବେଶରେ ସ୍ୱତନ୍ତ୍ର ପରିପାଟୀ । ଚାହାଣୀରେ ଚକିତ ଚିକିମିକି ଭାବ । ଗଭାରେ ଶୋଭୁଛି ରକ୍ତ–ଗୋଲାପର କଳିଟିଏ ।

ଭାବିଲି, ଏ ତରୁଣୀ ଆଜି ଏପରି କିଛି ପଦାର୍ଥ ପାଇଛି ଯାହା ଏତେ ଦିନ ତା'ପାଖେ ଥିଲା ମୃଗତୃଷ୍ଣା । କିନ୍ତୁ କି ପଦାର୍ଥ ହୋଇପାରେ ? କୌଣସି ଜାଗତିକ ବିଭବତ ଯା'କୁ ଏପରି ଆହ୍ଲାଦ ଦେବ ନାହିଁ ? ତେବେ ସେ କି ପଦାର୍ଥ ?

ବସିଲି ସେଇ ନିର୍ଦ୍ଦିଷ୍ଟ ଘନଶ୍ୟାମ ଦୁର୍ବା ଶେଯ ଉପରେ... ଅଳକାନନ୍ଦା ଯଥାରୀତି ଛିଡ଼ାହେଲା ମୋ ପାଖରେ ।

କୁଶଳ ପଚାରିଲି, ପୁଣି ପଢ଼ାଶୁଣା କଥା...

ଦେଖିଲି ଅଳକା ଅନ୍ୟ ଅନୁଭବରେ ବ୍ୟସ୍ତ । ମୁଁ ଯେମିତି ତା'ପାଖରେ ଅକର୍ମଣ୍ୟ, ଅହେତୁକ ଓ ଅସ୍ପୃହଣୀୟ... ।

ଦୀର୍ଘକାଳ ହେବ ଏଇ ନୀରବ ନିରାଭରଣା ନାରୀକୁ ମୁଁ ବିଶ୍ଲେଷଣ କରି ଆସିଛି । ଆତ୍ମପ୍ରତିଷ୍ଠା ପାଇଁ ଏହାର ସଂଗ୍ରାମ ଭିତରେ ମୋର ଆଶୀର୍ବାଦ ଓ ସ୍ନେହର ଯେ ମୂଲ୍ୟ ନାହିଁ, ଏପରି ନୁହେଁ; ବରଂ କହିବି ଯେ ମୋ ହୃଦୟର ଏତିକି ନିର୍ଝର ପାଇଁ ସେ ଯେପରି ପୃଥିବୀର ମହାଲୋଭୀ ଭଳି ଅନାଇଁ ରହିଥାଏ... ତୀର ଦେଶର ତୃଷାର୍ତ୍ତ ବିହଗୀ ଭଳି ।

ଆଜି ସେଇ ଅଳକା ମୋ ପ୍ରତି ଧ୍ୟାନ ଦେଉ ନଥିଲା । ଅଥଚ ହୃଦୟଟି ତାର ଆନନ୍ଦ ଲହରୀରେ ଉଦ୍‌ବେଳିତ ହେଉଥିଲା ।

ନାରୀ ଚରିତ୍ର ଏତେ ସହଜରେ ବୁଝାମଣା ଭିତରକୁ ଆସେ ନାହିଁ । ଅଶେଷ ତାର ବ୍ୟାପ୍ତି, ଗଭୀରତା ଓ କ୍ଲାନ୍ତି । କେତେବେଳେ କେଉଁ ଢ଼େଉ ଭିତରେ ନାରୀ ପ୍ରଚ୍ଛନ୍ନ ସରୀସୃପ ଭାବରେ ଆକ୍ରମଣ କରେ ଅବା କେଉଁ ତରଙ୍ଗ ଶୀର୍ଷରେ ପଦ୍ମଫୁଲ ଭଳି ବିକଶି ଉଠି ଧୀରେ ଚହଲି ଧରାଦିଏ, କହି ହୁଏନାହିଁ ।

ସେ ଅପରାହ୍ନଟି ନଷ୍ଟ ହୋଇଗଲା ବୋଲି ଭାବିଲି । ନଷ୍ଟ ହେବ ବା କାହିଁକି ? ମୋର ଆଶା ନୈରାଶ୍ୟର ପ୍ରଶ୍ନ ନାହିଁ । ମାନବ ପ୍ରକୃତିର ଚିରନ୍ତନ ରୀତି ଭିତରେ ପୁରୁଷ ପ୍ରତି ନାରୀର ଧ୍ୟାନଟାକୁ ମଣିଷ ବଡ଼ ବୋଲି ଦେଖେ । ଏଇ ଧ୍ୟାନଟିକକ ପାଇଁ ପୁରୁଷ ଖୋଜି ବୁଲେ କସ୍ତୁରୀ ମୃଗ– ଆଉ ଏତିକି ନଦେଇ ପୁରୁଷ ଉପରେ ନାରୀର ବହୁମନ୍ୟତା ଦେଖାଇବା ପାଇଁ ନାରୀ ଘୂରିବୁଲେ ସବୁଆଡ଼େ...

ଦୁଃଖରେ ପଚାରିଲି–

– ଆଜି ଟିକିଏ ଆନମନା ଦେଖୁଛି, କଥା କଅଣ ?

ଅଳକାନନ୍ଦାର ସେଇ ସହଜ ହସ, ସେଇ ଚତୁର ମିଠାଳିଆ ଭାଷାର...

– ସାର୍ ! ଆପଣତ ଅନେକ କଥା ଠଉରେଇ ପାରନ୍ତି ବିଶେଷରେ ନାରୀ ହୃଦୟର ଭାବ। ଏବେ କୁହନ୍ତୁ ମୁଁ କାହିଁକି ଆଜି ଖୁସି ?

ଏତେ ପ୍ରଗଲ୍‌ଭା ମୁଁ ଅଳକାକୁ ଦେଖିନାହିଁ। ସଂଭ୍ରମରେ ସେ ସବୁବେଳେ କଥା କହେ; ବରଂ ମୁଁ ଅଟକାଇଲେ, ସେ ମୁହଁ ବୁଲାଇ ନିଏ ଗମ୍ଭୀର ହୋଇଯାଏ...

କହିଲି–

'ଭଲ ଶାଢ଼ୀ ଖଣ୍ଡେ ବୋଧହୁଏ କିଣିଛୁ।'

– ଉହୁଁ...

'ତେବେ ଭଲ ପଢୁଛୁ, କେହି ଅଧ୍ୟାପକ ପ୍ରଶଂସା କରିଛନ୍ତି।'

– ଉହୁଁ... ଛାତ୍ରଛାତ୍ରୀଙ୍କୁ ପଢ଼ାଯୋଗୁଁ ଏ ଯୁଗରେ ଅଧ୍ୟାପକ ପ୍ରଶଂସା କରିବେ ? ଖୁବ୍ ବିରଳ–।

ମୁଁ ତର୍ଜନୀ ଦେଖାଇ ଶାସନ କଲି– 'ଏଇ'...

– 'ସତ କହୁଛି ସାର। ଆଚ୍ଛା ଆଉ କି କାରଣ ଥାଇପାରେ ?

ମୁଁ ଭାବି ବସିଲି। ଜଣେ ତରୁଣୀ କାହିଁକି ଓ କଅଣ ପାଇଲେ ଅବା ପାଇବା ପୂର୍ବରୁ କି ସ୍ୱପ୍ନ ଦେଖିଲେ ଖୁସି ହେବ ?

କହିଲି–

– ଆଚ୍ଛା, କୁଆଡ଼େ ସବୁ ମିଶି ବୁଲିଯାଇଛ କି ? ଅବା ପିକ୍‌ନିକ୍ ?

ଅଳକା ଶାସନ ଭଙ୍ଗୀରେ କହିଲା– 'ଆପଣ ଏଇ ବାଜେ କଥାରେ ମୋର ଆନନ୍ଦ କେବେ ଦେଖିଛନ୍ତି ? ଯାହା ମୁଁ ପାଇବାକୁ ଯାଇଛି ତାହା ମୋର ଅଜ୍ଞାତରେ ଆସୁଛି, ତାକୁ ଗ୍ରହଣ ନ କରିବି କାହିଁକି ? କିଏ ବା ମୋ ସଂସାରରେ ଅଛି ଯେ ସବୁ ବ୍ୟବସ୍ଥା କରିବ, ମୋ ଭବିଷ୍ୟତ ଚିନ୍ତା କରିବ ? ତେଣୁ...

ମୁଁ କହିଲି– ତେଣୁ ?

– 'ତେଣୁ ଆସନ୍ତୁ ସାର୍, ଆପଣଙ୍କୁ ମୋ ସହିତ ସିନେମା ଦେଖିଯିବାକୁ ହେବ। ଜୀବନରେ ଅନ୍ତତଃ ଥରେ ଆପଣ ମୋ ସଙ୍ଗେ ସିନେମା ଦେଖିବେ, ଏଇ ସ୍ମୃତିକୁ ମୁଁ ଧରି ରଖିବି ମରିବାଯାଏ–

ସିନେମା ?

ଜୀବନରେ ଥରେ ?

ସ୍ମୃତି ?

ମରିବା ଯାଏ ?

ଅଳକାକୁ ନିରୀକ୍ଷଣ କଲି। ଗୋଟିଏ ପୁଷ୍ପିତ ଲତିକା। ତାର ଆବେଗ–କଂପିତ କଣ୍ଠ... ତାର ଆଶା ଆଶ୍ୱାସନାର ସ୍ୱପ୍ନ–ଦେଖା ମୋହନ ଆଖି ଦୁଇଟି... ହଁ ସବୁ ବାସ୍ତବ... ସବୁ ସତ୍ୟ...

ସିନେମା ? ଅଳକା ସାଙ୍ଗରେ ? ସହରର ସିନେମା ଗୃହରେ ପାଖାପାଖି ମୁଁ ଆଉ ଅଳକା ? ଜଣେ ଚଳଚଞ୍ଚଳା ତରଙ୍ଗିଣୀ ଆଉ ଜଣେ ପତ୍ରଝରା ଅଶ୍ୱତ୍ଥ ବୃକ୍ଷ ?

– ପ୍ରଣାମ

– ଏଁ ?

ମୋ ପାଦ ସ୍ପର୍ଶ କରି ଜଣେ ଯୁବକ ମୋର ପାଦଧୂଳି ନେଉଥିଲା। ମୁଁ ବିସ୍ମୟାଭିଭୂତ ହୋଇ ଏଇ

ତରୁଣକୁ ଲକ୍ଷ୍ୟ କଲି। ମୋ ଆଖିରେ ଗଭୀର ବିସ୍ମୟ।

ଅଳକା ବୁଝିପାରିଲା... କହିଲା— ଆପଣ ଏମିତି ଚମକି ପଡ଼ିଲେ କାହିଁକି ? ଆମେ ଦୁଇ ବନ୍ଧୁ— ସତୀର୍ଥ... ଏ'ବି ଆମ ସଙ୍ଗେ ଯିବେ। ଆପଣ ପ୍ରସ୍ତୁତ ହୁଅନ୍ତୁ। ଘଣ୍ଟାଏ ସମୟ ଅଛି। ଘଣ୍ଟାଏ ପର୍ଯ୍ୟନ୍ତ ଏଇଠି ଅପେକ୍ଷା କରିବେ କି ଯଦି କାମ ଥାଏ ଟିକିଏ ବୁଲି ଆସିବେ ? ବରଂ ଆପଣ ଠିକ୍ ଛଅଟାବେଳେ ସିନେମା ହାଉସରେ ପହଞ୍ଚିବେ। ଆମେ ଆଗରୁ ସେଠାରେ ଅପେକ୍ଷା କରିଥିବୁ ? କଅଣ କହୁଛ ଅଜୟ ? ଆମେ ଟିକଟ କାଟି ନେଇଥିବୁ।

'ହଁ, ସାର ସେଇଟା ଠିକ ହେବ। ଅଜୟ ଏତକ କହି ଅଳକାକୁ ନିବିଡ଼ ଚକ୍ଷୁଚାଳନ ଆଶ୍ଳେଷରେ ବାନ୍ଧିଦେଲା...

ମୋ ଜୀବନରେ ସାୟାହ୍ନ ବେଳା ଆସିଯାଇଛି। ମୁଁ ଅସ୍ତମିତ ହେବା ଉପରେ... ଅଳକା ମୋର ସ୍ନେହମୟୀ ଛାତ୍ରୀ... ତାର ବକ୍ଷ ସଂଚାରୀ ସ୍ୱପ୍ନବନ୍ୟାରେ ମୁଁ ଅହେତୁକ ଏକ ନିରର୍ଥକ ଶିଳା ଖଣ୍ଡ... ତଥାପି ତାର ନିମନ୍ତ୍ରଣରେ ମୋ ହୃଦୟରୁ କେଉଁ ଦିନରୁ ବାଟବଣା ଦିଗହଜା ବଉଦ ଖଣ୍ଡକ ପୁଣି ଫେରି ଆସୁଥିବାର ଆନନ୍ଦ ଓ ଶିହରଣ ମଝିରେ ଅଜୟ ନାମକ ତରୁଣ ଛିଡ଼ା ହୋଇଗଲା ମଖମଲ ତାରୁଣ୍ୟର ସହସ୍ର ରଶ୍ମି ଝରାଇ ଆମ ଭିତରେ!!!

ହାୟ ରେ ବିଚିତ୍ର ମନୁଷ୍ୟ ପ୍ରକୃତି!! ନାରୀର ସଙ୍ଗଲିପସା ଏତେ ଉଦ୍ଦାମ ? ଏତେ ଅନୁରଞ୍ଜିତ ?

ତେବେ ମୋ ମନଟା କଅଣ ପୁଣ୍ୟ ସ୍ପର୍ଶ ବାହାରେ ଥିଲା ? ପାପ ସେଠାରେ ଲୁଚିଥଲା କି ?

ତା ତ ? ପାପ। ପାପ କାହିଁ ? ଅଳକା ପାଖ ସିଟରେ ବସିବି। ହୁଏତ ଅଢ଼େଇଘଣ୍ଟା ଭିତର ଛାୟାଛବି ଦେଖୁ ଦେଖୁ ତାକୁ ଗୋଟିଏ ପଦ କଥା ବି କହି ନପାରେ; କଅଣ ବା ଦରକାର କଥା କହିବା ? ସେ ଯଦି କୁହେ, ମୁଁ କହିବି, ନଚେତ ନୀରବ ରହିବି।

ଯଦି ପ୍ରଣୟସିକ୍ତ ଚିତ୍ର ଦେଖୁ ଦେଖୁ ସେ ମୋ ଆଡ଼କୁ ଅନାଇ କହିଦିଏ–

– 'ଆପଣଙ୍କୁ ମୁଁ ଜୀବନରେ ଭୁଲିପାରିବି ନାହିଁ– ଆପଣ...'

ତାର କଣ୍ଠ ଅଟକିଯିବ। ମୁଁ ଯୋଖି ଦେବି–

ଆପଣ ମୋ ଶୁଭାକାଂକ୍ଷୀ– ଏଇତ ?'

ସେ ଏ କଥାରେ ସନ୍ତୁଷ୍ଟ ହେବ କି ? ହବ ନାହିଁ ? ନା ନା, ଅଳକା ସେପରି ନୁହେଁ...

ଅତର୍କିତରେ ହାତକୁ ହାତ ବାଜିଯିବ। ବାଜି ଯାଇପାରେ। ହୁଏତ ପଣତଟାକୁ ଟାଣି ବୁଲାଇ ଆଣିବା ବେଳେ ତା ହାତ ମୋ ଦେହ ସ୍ପର୍ଶ କରିପାରେ। କଲେ କଅଣ ବା କ୍ଷତି ?

ଅଳକା ଦୁଃଖିତ ହେବ– କହିବ– ସାର୍ କ୍ଷମା କରିବେ। ବାଜିଗଲା।

ବାଜିଗଲା ? ହାଃ—ହାଃ—କିଏ ? ତରୁଣ ଅଜୟ ଯେ ଆମ ମଝିରେ ବସିଥିବ; ବାଜିବ କିପରି ? ହାଃ— ହାଃ— ଆମ ମଝିରେ ଏଇ ଅଜ୍ଞାତକୁଳଶୀଳ ତରୁଣ ଅଜୟ ବସିବ କାହିଁକି ? ହାଃ—ହାଃ—

ସାର୍– ଏତେ ହସୁଛନ୍ତି କାହିଁକି ? କେତେବେଳୁ ବସିଲେଣି ଭାବିଲେ, ତାପରେ ଏମିତି

ଠୋ ଠୋ ... ହସ? ସିନେମା ଦେଖି ଯିବାକୁ ନିମନ୍ତ୍ରଣ କଲି ବୋଲି ଖୁବ୍ ଭୟ ଆପଣଙ୍କର ବୋଧହୁଏ? ଆପଣ ତ ସବୁବେଳେ ଶୁଷ୍କ ନୀରସ ରହୁଛନ୍ତି। ଭାବିଲି, ଆପଣଙ୍କୁ ସାଙ୍ଗରେ ନେଇ ପାଖରେ ବସାଇ ସିନେମା ଦେଖି ଆସେ। ଯେଉଁଠି ବୁଝି ନପାରିବି, ଆପଣ ବୁଝାଇ ଦେବେ, ଆପଣ ତ ଜାଣନ୍ତି ଆଜିକାଲି ସିନେମା ଛବିରେ ଦୃଶ୍ୟ ଅପେକ୍ଷା ମଣିଷ ମନର ଅଦୃଶ୍ୟ କଥା ବେଶି କୁହାଯାଉଛି। ସେଇ ଭାଷା ମୁଁ ବୁଝିପାରେ ନାହିଁ। ଯେଉଁଠି ବୁଝିପାରିବି ନାହିଁ ଆପଣ ବୁଝାଇଦେବେ। ହସିଲେ କାହିଁକି? ଆପଣ କଅଣ ଆମ ସାଙ୍ଗେ ଯିବେ ନାହିଁ। ନା– ନା– ନିଶ୍ଚୟ ଯିବେ–

ଅଳକାନନ୍ଦାର ଅଳି ଶୁଣିଲି। ଚମତ୍କାର ଅଭିନୟ କଲା ଏଇ କେତୋଟି ମୁହୂର୍ତ୍ତ–

କହିଲି– ଅଳକା ମୁଁ ଏଇଥିପାଇଁ ହସିଲି ଯେ ଏଇ ଶୁଷ୍କ ନୀରସ ଲୋକଟାକୁ ତୁ ଟାଣୁଛୁ ଦୁଇମୁହାଣୀ ଦୁଇଟା ଖର ଚଞ୍ଚଳ ନଈର ସଙ୍ଗମ ଆଡ଼କୁ? ତୋର ଏ କି ନିଷ୍ଠୁରତା ଅଳକା!

ଅଳକାର ମୁହଁ ଉପରୁ ଆନନ୍ଦଅମୃତ ଝର ଏକ ମୁହୂର୍ତ୍ତରେ ଶେଷ ହୋଇଗଲା। ଅତି କଷ୍ଟରେ ସେ ଏତିକି କହିଲା–

'ଆପଣ ତାହାହେଲେ ବୁଝିପାରିଛନ୍ତି?'

ମୁଁ କହିଲି– କେବଳ ବୁଝି ନାହିଁ; ଆଶୀର୍ବାଦ କରୁଛି, ଜୀବନରେ ଦୁଇ ଜଣ ସୁଖୀ ହୁଅ।

ଅଳକା ଆଉ ଅଜୟ ମୋ ଗୋଡ଼ ଉପରେ ଲୋଟିଗଲେ। ମୁଁ ତାଙ୍କୁ ଉଠାଇ ସାନ୍ଧ୍ୟ ଆକାଶକୁ ଚାହିଁ ରହିଲି। ପ୍ରଶାନ୍ତ ମାଧୁରୀରେ ଦିଗ୍‌ବଳୟ ମଦିରାସିକ୍ତ। ଦୁଇଟି କୃଷ୍ଣଚୂଡ଼ାର କଳି କ୍ରମେ ବିକଶି ଆସୁଥିବାର ମନେ ହେଲା।

ମୋ ଆଖି କୋଣରେ କେଜାଣି କାହିଁକି ଗୋଟିଏ ନୀରବିନ୍ଦୁ ଢଳ ଢଳ କରୁଥିଲା। ମୁଁ ସିନେମା ଦେଖିଯିବି ବୋଲି କଥା ଦେଇ ଆସନ ଛାଡ଼ି ଉଠି ଆସିଲି ରାଜପଥ ଉପରକୁ...

ଠିକ ଛଅଟା ବେଳେ ନୟନଭୁଲା ରୂପରେ ଅଳକା ଛିଡ଼ା ହେଲା ସିନେମା ଗୃହର ଅଙ୍ଗନ ଉପରେ ଆଉ ତା କାନ୍ଧକୁ କାନ୍ଧ ଘସି ଅପେକ୍ଷା କଲା ଅଜୟ—

ଦୁହେଁ ମତେ ଅପେକ୍ଷା କରି ଛିଡ଼ାହେଲେ।

ଛଅଟା ବାଜି ଛଅଟା ପନ୍ଦର ହେଲା। ସିନେମାର ପ୍ରଥମ ଘଣ୍ଟି ବାଜିଲା।

ଅଜୟ ବ୍ୟସ୍ତ ହୋଇ କହିଲା– ଅଳକା, ସାର୍ ତ ଆସିବାକୁ ଡେରି କରୁଛନ୍ତି, ଚାଲ, ମୁଁ ତୁମକୁ ବସାଇ ଆସିବି। ମୋ ପାଖରେ ମୋର ଆଉ ସାର୍‌ଙ୍କର ଟିକେଟ ରହିଲା। ସେ ଆସିଲେ ମୁଁ ତାଙ୍କୁ ଏଠାରୁ ନେଇଯିବି। କାର୍ଯ୍ୟବ୍ୟସ୍ତ ଲୋକ କେଉଁଠି ଅଟକିଯାଇଛନ୍ତି।

ମୁଁ କିନ୍ତୁ ଅଟକି ନଥିଲି, କେହି ମତେ ଅଟକାଇ ନଥିଲେ। ମୋର ଦୁଇଗୋଡ଼ ଛନ୍ଦି ଯେ ମତେ ଆଗକୁ ଚଳେଇ ଦେଉ ନଥିଲା ସେ ହେଉଛି ଏଇ ଅଳକା।

ଆଜି ଜୀବନର ଅର୍ଦ୍ଧାଧିକ ପଥ ଅତିକ୍ରମ କରି ନାରୀର ଏଇ ଗୋପନ ଅଭିସାର କଥା ମୁଁ କଅଣ କିଛି ଜାଣେ ନାହିଁ? ତାଛଡ଼ା ଦୁଇଟା ବିହଗ ବିହଗୀ କୂଜନ କରିବା ପାଇଁ ଥଣ୍ଟ ପାଖରେ ଥଣ୍ଟ ଧରିଛନ୍ତି,

ମୁଁ ସେଠି ଶୁଷ୍କ ଝରାପତ୍ରର ଖର ଖର ଶବ୍ଦରେ ସେମାନଙ୍କୁ ଭୀତତ୍ରସ୍ତ କରିବି କାହିଁକି ?

ସହରର ଆଶ୍ଚର୍ଯ୍ୟକର ମେଳା ଭିତରେ ମୁଁ ଖୋଜି ବୁଲିଲି ମଣିଷ ଜୀବନର ଏଇ ଆଦିମ ପ୍ରବୃତ୍ତିର ସୂତ୍ରକୁ– ମୁଁ ପଳାଇ ଯାଇଥିଲି ଅଜୟଠାରୁ ପଳାଇଯାଇଥିଲି ଅଳକାଠାରୁ। ନା, ନା, ମୁଁ ଯିବି ନାହିଁ। ତାଙ୍କର ପ୍ରତୀକ୍ଷା ଭିତରେ ଆନ୍ତରିକତା ନଥିବ, ସେମାନେ ବର୍ତ୍ତମାନ ଉପଭୋଗ କରୁଥିବେ; ମତେ ବାଦଦେଇ ସେମାନଙ୍କର ଉପଭୋଗ ଆକଣ୍ଠ ହେଉଥିବ।

ମାଳ ମାଳ ରିକ୍‌ସା, ମଟର, ଲୋକ ଭିତରେ ମୁଁ ଘୂରି ବୁଲିଲି। ଥରେ ସ୍ତବ୍‌ଧ ଭାବରେ ପଥ ଉପରେ ଛିଡ଼ାହୋଇ ହାତ ଘଡ଼ି ଦେଖିଲି... ସାତଘଣ୍ଟା ତିରିଶ ମିନିଟ... ଭାରି ହସ ମାଡ଼ିଲା... ଅଫୁରନ୍ତ କୌତୁକରେ ମୁଁ ଆତ୍ମହରା ହେଲି— ଯାହାହେଉ ଫାଶିଖୁଣ୍ଟିକୁ ଯାଇଥିବା ଲୋକର ଶେଷ ମୁହୂର୍ତ୍ତ ଅଛି। ସିନେମା ଦେଖାଳୀର ମଧ ଶେଷ ମୁହୂର୍ତ୍ତ ଅଛି। ସମୟ ତ ଶେଷ ହେଲା। ସେତିକି ମୋର ଦରକାର।

ମନଟା ହାଲୁକା ହୋଇଗଲା। ମୁଁ ପୁଣି ହାତଘଡ଼ି ଦେଖିଲି, ସାତଘଣ୍ଟା ୩୫ ମିନିଟ—ଯା ଭିତରେ ପାଞ୍ଚ ମିନିଟ ହୋଇଗଲାଣି ?

ଅନୁଭବ କଲି ଦୁଇଟି ନୀରସିକ୍ତ ଆଖି ଯେପରି ମତେ ଭର୍ତ୍ସନା କରୁଛି— ଆପଣ ଆସିଲେନି କାହିଁକି ? ଆପଣ ଯାହା ଭାବିଲେ, ଯାହା ଭାବି ଆପଣଙ୍କ ପାଦ ବାନ୍ଧି ହୋଇଗଲା ସେସବୁ ମିଛ। ମୁଁ ଆପଣଙ୍କୁ ପାଖରେ ପାଇଥିଲେ ଆଜି ଦିନଟି ମୋର ମନ–ଗହନରେ ଚିରଦୀପ୍ତ ରହିଥାନ୍ତା। ଆପଣଙ୍କ ସେଇ ନୀତିବାଦିତା, ସେଇ କଠୋର ସଂଯମ, ସେଇ ଅନମନୀୟ ସ୍ପର୍ଦ୍ଧା– ଦେଖନ୍ତୁ ଦେଖି, ମତେ ଆଜି କେତେ କଷ୍ଟ ଦେଲା ? ଆପଣ ନାରୀକୁ ନଦେଖି କେବଳ ଛାତ୍ରୀକୁ ଦେଖିଲେ ? ଛାତ୍ରୀର ବିକାଶ ପଥରେ ନାରୀତ୍ୱର ସୁଲଭ ସମବେଦନାକୁ ଆପଣ ଦେଖି କଣ ଦେଖିପାରିଲେ ନାହିଁ ?

କାହିଁକି ଆପଣ ବଡାଇ କରନ୍ତି ଯେ ଆପଣ ସବୁ ବୁଝି ପାରନ୍ତି ? ଆପଣଙ୍କର ବୋଧ ନିର୍ବୋଧ। ଆପଣ କିଛି ଜାଣିପାରନ୍ତି ନାହିଁ।

କାନ ପାଖରେ ପଦେ ଅଧେ କଥା କହିଥାନ୍ତି। ଯାହା ଏଯାଏ କହିପାରି ନଥିଲି। ଅଜୟ ଆସିଛି, ସେ ଗୋଟାଏ ପେଖନା। ସେ କେବଳ ଜୟ ବିଜୟ ରୂପରେ, କିନ୍ତୁ ଦେବନିଗ୍ରହ ଭିତରେ ରହିଛି। ଆପଣଙ୍କ ପାଇଁ ଏତେ ଆୟୋଜନ କରିଥିଲି, ଏତେ ଉତ୍ସବ ଆରମ୍ଭ କରିଥିଲି– ଆପଣ କଲେ କ'ଣ ?

ଅଜୟ ଆସିବ ଜାଣି ଆପଣ ବୋଧହୁଏ ଭାବିଲେ ଆପଣଙ୍କର ପ୍ରାପ୍ୟ ଆଉ କିଛି ନାହିଁ। ନାରୀ ଜାଣେ କାହାକୁ କି ଭାବରେ କେତେ ପ୍ରାପ୍ୟ ସେ ଦେବ। ସେ ବିଚାର ମୁଁ କରିଥାନ୍ତି, ସିନେମାରୁ ଫେରି ଆପଣ ଅନୁଭବ କରିଥାନ୍ତେ ଆପଣ ନୂଆ ମଣିଷ ହୋଇଛନ୍ତି।

କଙ୍କାଳରେ ରକ୍ତ ଝରିଥାନ୍ତା, ରକ୍ତ ଦେଇଥାନ୍ତା ଜୀବନର ସ୍ପୃହା। ଆପଣ ଯେ ସବୁବେଳେ କହନ୍ତି ଆପଣ ଝରାପତ୍ର, ଆପଣ ଅସ୍ତମିତ ଭାନୁ, ଆପଣ ଅଥର୍ବ ସ୍ଥବିର। ଦେଖିଥାନ୍ତେ ମୋର ଆବେଦନ ଓ ସ୍ପର୍ଶରେ ଆପଣ ଫେରି ପାଆନ୍ତେ ଜୀବନର ରୂପଶ୍ରୀ–

ମୋ କାମନାରେ ପାପ ନାହିଁ। ଠିକ୍ ସେଇ ଗୁରୁ ଭାବରେ ମୁଁ ଆଜି ବି ଆପଣଙ୍କୁ ପୂଜା କରୁଛି। ତେବେ ତଫାତ୍ ରହିଛି। ଆପଣଙ୍କ ଜୀବନରେ

ଶିକ୍ଷକତ୍ୱ ବେଶୀ ହୋଇଯାଇଛି, ସରସ ମଣିଷର ଅଭାବ ଆପଣଙ୍କଠି ଦେଖୁଛି।

ଏ ପୀଡ଼ନ ଓ ବ୍ୟର୍ଥତା ମତେ ଆଘାତ ଦେଇଛି; ତେଣୁ ମୋର ନିମନ୍ତ୍ରଣରେ ଏତେ କାକୁତି ଥିଲା।

ଆପଣ ବୁଝିଲେ ନାହିଁ। ଅଳକାର କଣ୍ଠ ଆହୁରି ମୋହମୟ ଓ ଅଶ୍ରୁସିକ୍ତ ଶୁଣାଗଲା...

ଆସନ୍ତୁ, ଥରେ ଦେଖିଯାନ୍ତୁ ମୋ ପାଖ ସିଟ୍ ଏବେ ବି ଖାଲି– ଶୂନ୍ୟ– ସେଠି ଅଜୟର ସାହସ ଅଛି ସେ ବସିବ? ଆଗରେ ଚିରାଚରିତ ପଦ୍ଧତିରେ ସିନେମା ନାୟକ ତାର ନାୟିକା ଆଗରେ ପ୍ରେମ ନିବେଦନ କରୁଛି। କେଉଁଠି ଜାଣନ୍ତି? ନଦୀ ଧାର, ଭଗ୍ନ ଦେଉଳ, ପ୍ରପାତ ତୀର ଓ ଆମ୍ରକୁଞ୍ଜ ଭିତରେ ସେମାନେ ଟଣା ଓଟରା ହେଉଛନ୍ତି?

ହା ରେ ଦୈବ? ଏ କଣ ପ୍ରେମ? ଏ ଦଉଡ଼ା ଦଉଡ଼ିରେ କ୍ଳାନ୍ତି ଆସେ, ପ୍ରେମ ଜନ୍ମେ ନାହିଁ କି ତାହାର ବିସ୍ତାର ନାହିଁ।

ଆପଣ ଜୀବନରେ କ୍ଷତ, ବିକ୍ଷତ, ଖୁବ୍ ଛୁଟା ଛୁଟି କରିଛନ୍ତି– ଛାଡନ୍ତୁ, ପାଖ ସିଟ୍‌ଟା ଏବେ ବି ବିରହବିଧୂର। ଅଜୟ ସେପଟେ ବସିଛି। ମୋ ପାଖକୁ ଆସିବାକୁ ତାର ସ୍ପୃହା। କିନ୍ତୁ ମୁଁ ସହଜରେ ଛାଡୁ ନାହିଁ।

ସେ ମୁହଁ ବଢ଼ାଇ କଣ ଗୁଡ଼ାଏ କହୁଛି। ବୋଧହୁଏ ସିନେମା ନାୟକର ଉତ୍ତାପରୁ ଗୁଡ଼ାଏ ମାଗି ଆଣିଲା। ଅଥଚ ନିରୁତ୍ତାପ ଆପଣ ସହଜରେ ଅନ୍ୟକୁ ଉତ୍ତାପ ଦିଅନ୍ତି। ଆସିଲେ ନାହିଁ? ଶେଷରେ ଆସିଲେ ନାହିଁ? ସିଟ୍ ଏ ପର୍ଯ୍ୟନ୍ତ ଖାଲି– ଆସିଲେ ନାହିଁ।

– 'ଏ ରିକ୍‌ସା ରଖ'

ମୋ ନିଜ କଣ୍ଠ ମୋତେ ଅଚିହ୍ନା ଲାଗିଲା। କହିଲି ଚଲା, 'ରଙ୍ଗ–ଦୁରି' ସିନେମା ହଲ୍‌କୁ–

ନିଝୁମ ହୋଇଯାଇଛି ସିନେମା ହଲ। ବାହାରେ ଦର୍ଶକ ନାହାନ୍ତି। ସମସ୍ତେ ଭିତରେ। ଦ୍ୱାରରକ୍ଷକ ଗୁଡ଼ିଏ ଦ୍ୱାର ପାଖରେ ରୁଣ୍ଡ ହୋଇଛନ୍ତି।

ମୁଁ ବିନା ଟିକଟରେ ସବୁ ଶ୍ରେଣୀକୁ ଉଙ୍କି ମାରିଲି। ଖାଲି ସିଟ୍ କାହିଁ? ଅସ୍ପଷ୍ଟ ଆଲୋକରେ କିଛି ଦିଶୁ ନଥାଏ। ଖୋଳରୁ ଚଷମା ଫିଟାଇ ଆଖିରେ ଦେଲି। କିନ୍ତୁ ଖାଲି ସିଟ୍ କାହିଁ?

ଅଗଣିତ ଜନସମୁଦ୍ର। ତା ଭିତରେ ଅଳକା ଆଉ ଅଜୟ କେଉଁଠି?

ମୋର ଉତ୍କଣ୍ଠ ବୁଲାବୁଲିରେ ସିନେମା ଟିକେଟରେ କଳାବଜାରୀ କରୁଥିବା କେତୁଟା ଗୁଣ୍ଡା ପ୍ରକୃତି ଲୋକ ମୋ ଆଡ଼କୁ ମୁଲାୟମ ଆଖି ଢ଼ାଳି ଚାହିଁଲେ–

– ଆପଣ କାହାକୁ ଖୋଜୁଛନ୍ତି? ଜଣେ କହିଲା–

– ଉଁ।

– ଚୋରାରେ ଟିକିଟ ନେବେ? ମୋଟେ ଚାରିଅଣା ପଇସା ବେଶି ପଡ଼ିବ। କେଉଁ କ୍ଳାସରେ ବସିବେ?

ମୁଁ ମୁହଁ ଫେରାଇ ଚାଲି ଆସିବାକୁ ବସିଲି—

ଆଉ ଜଣେ କାନ ପାଖରେ କହିଲା– ଫେରିଯିବେ କାହିକି? ସିଟ୍ ଅଛି, କେବଳ ଚାରିଅଣା ପଇସା ତଫାତ୍। ଭଲ ଛବି।

ମୁଁ ଭାବିଲି ଅଜୟ ଆଉ ଅଳକା ଉପର କ୍ଲାସର ଟିକଟ କାଟିଥିବେ, ବୋଧହୁଏ ବାଲ୍‌କନି। ସେଠି ଚେଷ୍ଟା କରେ—

ଉପରକୁ ଉଠିଲି– ସିଡ଼ିର ମୋଡ଼ ଘୂରି ଉଠି ଆସିଲି ଉପର ବାଲକନିକୁ। ଗେଟ୍‌ର ଲୋକ ମୋ ପଛେ ପଛେ ଆସିଲା। ଏତେ ବିଳମ୍ବରେ ଏଭଳି ଦର୍ଶକ ସିନେମାକୁ ଆସିବା ବୋଧହୁଏ ତା ଜୀବନରେ ପ୍ରଥମ ସେ ଦେଖିଲା।

ମୁଁ ଚଷମାର କାଚତଳେ ଆଖି ଦୁଇଟାକୁ ବଡ଼ ବଡ଼ କରି ଚାହିଁଗଲି। ନାରୀ ପୁରୁଷ... ନାରୀ... ପୁରୁଷ, ପୁରୁଷ ନାରୀ...

ସାର୍ !

ଏଇ ଯେ ଅଜୟ।

ଆସନ୍ତୁ ସାର୍।

ଛୁଟି ଆସିଲା ସିଟ୍ ଛାଡ଼ି ଅଜୟ ଏଇ ତରୁଣ। ଅଳକା ମୁଖ ଭାର କରି ବସି ରହିବାର ଦେଖିଲି।

କିନ୍ତୁ ସିଟ୍ କାହିଁ ? ଖାଲି ସିଟ୍ କାହିଁ ? ଅଜୟ କହିଲା, ଆପଣ ଯାଆନ୍ତୁ ମୋରି ସିଟ୍‌ରେ ବସିବେ। ଅଳକା ପାଖରେ— ସେଇଠି ଅଳକା ବସିଛି। ଆପଣ ଏତେ ଡେରି କଲେ ? ହଉ ଯାଆନ୍ତୁ। ମୁଁ ମେସ୍‌କୁ ଯାଉଛି, ନା, ନା ଦୁଃଖ କରିବେ ନାହିଁ। ମୁଁ କାଲି ଆସି ବାକିତକ ଦେଖିନେବି। ଏ ଛବି ବହୁତ ଦିନ ରହିବ—

ଅଜୟ ମୁହଁକୁ ତଳକୁ କରି ମୋ ପାଖ ଦେଇ ଦଉଡ଼ି ଚାଲିଗଲା। ମୁଁ ଧୀରେ ସେଇ ଶୂନ୍ୟ ସିଟ୍‌କୁ ଉଠି ଆସିଲି।

ଗେଟ୍‌ରକ୍ଷକ ସମ୍ବାଦ ଦେଲା– ପାଖ ସିଟ୍ ଖାଲି ଥିଲା, ସେମାନେ ବିକ୍ରି କରିଦେଲେ–

ମୁଁ– "ଓଃ" କହି ସିଟ୍ ଉପରେ ବସିଲି।

ଠିକ୍ ସେହି ସମୟରେ ଏକ ଜଳାଶୟ ଭିତରେ ନାୟିକା ବୁଡ଼ିଯାଇ ଉଠି ଭାସିଆସୁଥିଲା ତୀର ଉପରେ ଛିଡ଼ା ହୋଇଥିବା ନାୟକ ଆଡ଼କୁ ଗୀତ ଗାଇ ଗାଇ—

ଅଳକା ପାଖ ସିଟ୍‌ରେ ମୁଁ। ନିଜକୁ ବିଜିତ ମନେକଲି।

ଅଳକା ଗମ୍ଭୀର ଥିଲା। କହିଲା– ଏତେ ଡେଲି କଲେ ? କିଏ ଆପଣଙ୍କୁ ଅଟକାଇଲା ?

ମୁଁ ଏ ପ୍ରଶ୍ନର ଉତ୍ତର ନ ଦେଇ ପଚାରିଲି–

ଅଜୟ ଗଲା କୁଆଡ଼େ ?

– ସେ ମେସ୍‌କୁ ଚାଲି ଯାଇଥିବେ।

– ଓଃ

ପନ୍ଦର ମିନିଟ ନୀରବରେ କଟିଗଲା ମୁଁ କହିଲି–

– ମୋର ଅନ୍ୟାୟ ହେଲା।

– କିପରି ?

– ଅଜୟକୁ ଆସନଚ୍ୟୁତ କରି...

– ନା ନା ସେପରି କିଛି ନୁହେଁ।

– ବରଂ ମୋର ଆଉ ଆସିବାର ଉଚିତ ନଥିଲା।

— ନା, ନା, ସେମିତି କିଛି ନୁହେଁ, ଛବି ଦେଖନ୍ତୁ–

– ଓଃ...

କିଛି ସମୟ ପରେ ପଚାରିଲି—

— ମୁଁ ପାଖରେ ବସିବାରୁ ବୋଧହୁଏ ଭଲ ଲାଗୁନାହିଁ...

– ନା, ନା, ସେପରି କିଛି ନୁହେଁ ଆପଣ ଛବି ଦେଖନ୍ତୁ...

– ଓ, ହଁ–

ବଡ଼ ଅସ୍ୱସ୍ତି ଲାଗିଲା– ପଙ୍ଖା ପବନ ଅତି ଗରମ ବୋଧ ହେଉଥାଏ। ଏ ଛବିଟା କଅଣ ଶୀଘ୍ର ସରିବ ନାହିଁ? ମଲା ଯାଃ, ଇଣ୍ଟରଭାଲ୍ ହୋଇ ନାହିଁ ଯେ...

ଅଳକାକୁ ଆଡ଼ଆଖିରେ ଚାହିଁଲି। ତାର ନେତ୍ର ତୀରରେ ଆଜି ମୋଟା କଜଳଗାର ଦେଖିଲି। ନୀଳ ବକ୍ଷବାସ, ନୀଳଶାଢ଼ୀ, ମୁହଁଟି ପୂର୍ଣ୍ଣତମ ଚନ୍ଦ୍ରୋଦୟ ଭଳି ଝର ଝର କରୁଛି–

ମୁହଁ ବୁଲାଇ ପଚାରିଲି– ଅଜୟ ବଡ଼ ମନ ଦୁଃଖରେ ଯାଇଥିବ। କେବଳ ସୌଜନ୍ୟ ଦେଖାଇ ସେ ମତେ ସିଟ୍ ଦେଇ ଚାଲିଗଲା

– ନା, ନା ସେପରି କିଛି ନାହିଁ। ତା ଛଡ଼ା ପୁଅ ପିଲା କେତେ ଥର ସିନେମା ଦେଖିବାକୁ ଆସିବେ, ଆମ କଥା ଅଲଗା, ଥରକର ସୁବିଧା ସବୁବେଳେ ମିଳେନି– ଛବି ଦେଖନ୍ତୁ–

– ଓଃ, ହଁ

ଇଙ୍ଗିତଟା ବୁଝିଲି। ଆମ ଚୁପ୍‌ଚାପ୍ କଥାବାର୍ତ୍ତାକୁ ରସିକ ଦର୍ଶକ କେହି କେହି ବୋଧହୁଏ ବୁଝିଲେ ଭିନ୍ନ ପ୍ରକାର... ମୁଁ ଦେଖିଲି କେହି କେହି ଖସ୍‌ଖାସ୍ ହେଉଥିଲେ।

ଫାଶିଖୁଣ୍ଟରେ ନାୟକ। ଏତେ ଶୀଘ୍ର ଏମିତି କାରଣ ଘଟିଗଲା ଛବିରେ? ମୁଁ ତ ଗଳ୍ପଟାକୁ ଅନୁସରଣ କରିବାରେ ଅଯତ୍ନ କରିଛି ବୋଲି ମନେ ହେଉ ନାହିଁ।

ତାପରେ ଫାଶିଖୁଣ୍ଟକୁ ନାୟକ ଯାଉ ଯାଉ ଆସିଗଲା ଇଣ୍ଟରଭାଲ୍, ରକ୍ଷା!!!

ନାରୀମାନେ ବସନ ସମ୍ଭାଳିଲେ। ପୁରୁଷମାନେ ସିଧା ବସିଲେ। ଆଲୋକମାଳା ଜଳିବା ପୂର୍ବରୁ ମୁଁ ବାଲ୍‌କନି ଛାଡ଼ି ଦଉଡ଼ି ଆସିଲି ବାହାରକୁ...

ବାହାରେ ଜନଗହଳି। କେହି ପରିଚିତ ବନ୍ଧୁ ପଚାରିଲେ– କେମିତି ଲାଗୁଛି ଆପଣଙ୍କୁ?

– ଛବି?

– ହଁ ଛବି, ବେଶ୍ ରୋମାଣ୍ଟିକ୍ ଆଉ କରୁଣ ନୁହେଁ କି?

ମୁଁ କହିଲି– ହଁ ହଁ।

ନା, ନା, ସେପରି କିଛି ନୁହେଁ, ଛବି ଦେଖନ୍ତୁ...

ଭଦ୍ରଲୋକ ମୋ କଥାରେ ବିସ୍ମିତ ହୋଇ ମତେ କଟାକ୍ଷ ଢାଳି ଚାଲିଗଲେ।

ଛବି ଦେଖନ୍ତୁ... ଛବି ଦେଖନ୍ତୁ। ଏକଥା ଅଳକାନନ୍ଦାର ମୋ ପ୍ରତି ପ୍ରତିକ୍ରିୟା। ସେ ମୋ

ସାଙ୍ଗରେ ମୋ ପାଖରେ ବସି ଏଇ କେତୋଟି ମାତ୍ର କଥା କହିଛି।

ସ୍ଥିର କଲି ଇଣ୍ଟରଭାଲ୍ ପରେ ତାକୁ ସହଜ ଭାବରେ ସରସ କଥା କହି ତାର ଗାମ୍ଭୀର୍ଯ୍ୟକୁ ଭାଙ୍ଗିବି। ମୋର ଦୋଷ ସ୍ୱୀକାର କରିନେବି। ତା ଛଡ଼ା ସେ ଯାହା ଚାହୁଁଛି ସେ ଭୁଲିବାରେ କେତୋଟି ମୁହୂର୍ତ୍ତ- ମୁଁ ଅଭିନୟ କରିବି।

– ସାର୍

– ଆରେ ଅଜୟ...

– ତୁମେ ଯାଇନାହଁ ?

– ନାଇଁ ସାର୍

– ଓ ହୋ–

ଅଜୟ ବିଷଣ୍ଣ ବଦନରେ ମତେ କହିଲା– ସାର୍ ଆସନ୍ତୁ ମୋ ସିଟ୍ ମୁଁ ଦେଖାଇଦେବି। ମୁଁ ଗୋଟିଏ ସିଟ୍ ପାଇଗଲି– ଥାର୍ଡ଼ କ୍ଲାସରେ। ହଉ ଥାର୍ଡକ୍ଲାସ ପଛକେ ମୁଁ ଭାବିଲି ବାକିତକ ଛବି ଦେଖିନେବି...

ମୁଁ ଉତ୍ତର ଦେଲି– ବେଶ୍ କଲ।

ଅଜୟ ଡାକିଲା– ସାର୍ ଆସନ୍ତୁ, ମୋ ସିଟ୍‌ଟା ମୁଁ ଦେଖାଇ ଦେବି...

ମୁଁ ଏ କଥାର ଅର୍ଥ କିଛି ବୁଝିପାରିଲି ନାହିଁ।

ଆସନ୍ତୁ ସାର୍, ଇଣ୍ଟରଭାଲ ଶେଷ ହୋଇଯିବା ଉପରେ...

ମୁଁ ସବୁକଥା ବୁଝିଗଲି। ମୋର ବୟସ, ମୋର ଅସ୍ତଗାମୀ ମନ, ମୋର ଅତଳ ବେଦନାବୋଧ ମତେ ଜଣାଇଗଲା ଯେ ମୋର ଏହା ହିଁ ପ୍ରାପ୍ୟ।

ସେ ପ୍ରାପ୍ୟକୁ ମୁଁ ନତଶିରେ ଗ୍ରହଣ କରି ଚାଲିଲି ଅଜୟର ଆସନ ଆଡ଼େ।

ସିଟ୍ ଏକାବେଳକେ କଣରେ– ତା ପାଖକୁ ଏକଜିଟ୍ ଦୁଆର... ରକ୍ତ ବର୍ଣ୍ଣରେ ରଙ୍ଗିତ ତିନୋଟି ଅକ୍ଷର ଏ ...ଗଜି... ଟ୍ ...। ଫ୍ୟାନ ନାହିଁ ଉପରେ। ମୋର ସାଥି ଦର୍ଶକ ମାନେ ରିକ୍‌ସାବାଲା, କଟୁଆନ, ଖିଲିପାନ ଦୋକାନି, ଛୋଟ ଯବନ ହୋଟେଲର ପାଚକ, ବାବୁଙ୍କ ପୁଝାରୀ, ଏମାନଙ୍କର କ୍ଷଣିକ ଆନନ୍ଦ, ଭୋଜ୍ୟରସିକା ବାରାଙ୍ଗନା...

ଏକଜିଟ୍– ବାହାରିବା ରାସ୍ତା– ଛବି ଆରମ୍ଭ ହୋଇଯାଇଛି।

ରକ୍ତ ବର୍ଣ୍ଣର ଉଜ୍ଜ୍ୱଳ ରେଖା–

ବାହାରିବାର ରାସ୍ତା...

ମୋ ଜୀବନର ବାହାରିବା ରାସ୍ତାକୁ ମୁଁ ଶ୍ରୀମାନ ଅଜୟ ଓ ଶ୍ରୀମତୀ ଅଳକାନନ୍ଦାର ଅଶେଷ କୃପାରୁ ଆବିଷ୍କାର କଲି...

ବାଲକୁନି ଉପରକୁ ଅନାଇଲି। କିଛି ଦିଶିଲା ନାହିଁ। କାହିଁ ବାଲକୁନି ଆଉ କାହିଁ ଛାରପୋକମଣ୍ଡିତ କାଷ୍ଠାସନ, ଭାବିଲି–

ଏତେବେଳେ ଅଳକା ପାଖରେ ବସି ଅଜୟ କଣ କରୁଥିବ ? କ'ଣ କହୁଥିବ ?

କହୁଥିବ– ତୋର ସାର୍, ମଣିଷ ହୃଦୟର କଥା କିଛି ଜାଣନ୍ତି ନାହିଁ। ମନସ୍ତତ୍ତ୍ୱ ବିଷୟରେ ନିହାତି ଅଜ୍ଞ। ଦେଖିଲୁ ପ୍ରେୟସୀ ! କିପରି ଖେଳ ଖେଳିଲି ? କିପରି ବାଜିମାତ୍ ହୋଇଗଲା ?

ଏକ୍‌ଜିଟ୍‌– ହିଁ ବାହାରକୁ ଯିବାର ରାସ୍ତା– ରକ୍ତବର୍ଣ୍ଣରେ ଉଜ୍ଜ୍ୱଳ ରେଖା–

ଆରେ ବାଃ– ନାୟକ ଫାଶିଖୁଣ୍ଟରୁ ଉଦ୍ଧାର ପାଇ ନାୟିକାକୁ ଆଲିଙ୍ଗନ କରୁଛି ? ଡ୍ରାମାଟିକ୍‌... ଚାରିଆଡ଼େ... କରତାଳି– ଉଚ୍ଛ୍ୱସିତ ହସ ଓ ବାଃ... ବାଃ..

ମୋର ପରମ ଶ୍ରଦ୍ଧାର ସେଇ ବାହାରକୁ ଯିବା ରାସ୍ତାଟି ମତେ ଘନ ଘନ ହୋଇ ଦେଖାଗଲା। ମତେ ତାହା ଯେପରି କହୁଥାଏ–

ଆଉ କାହିଁକି ? ଏବେ ବାହାରି ଆସନ୍ତୁ– ଜୀବନର ଉତ୍ସବ ଆପଣଙ୍କ ପାଇଁ ନୁହେଁ, ଅଳକାନନ୍ଦାର ଅନ୍ତର ଆପଣଙ୍କ ପାଇଁ ସଜ୍ଜିତ ନୁହେଁ।

ବାହାରିଯିବା ହିଁ ଆପଣଙ୍କର ଧର୍ମ। ଏଇ ବାହାରକୁ ରାସ୍ତା ପଡ଼ିଛି। ଛବି ଚାଲିଛି, କେହି ବିଚଳିତ ହେବେ ନାହିଁ। ଆପଣ ଆବେଗବିହୀନ ଭାବରେ ବାହାରକୁ ବାହାରି ଆସନ୍ତୁ। ତାଛଡ଼ା ସିଟ୍‌ରୁ ଉଠିଲେ ତ ପାଇବେ ବାହାରକୁ ଯିବା ଦ୍ୱାର... ଆସନ୍ତୁ... ଉଠି ଆସନ୍ତୁ...

ମୁଁ ଧୀରେ ଅତି ସନ୍ତର୍ପଣରେ ରିକ୍‌ସା ଚାଳକ, ପାନବାଲା, ମେହେନ୍ତାଣୀ ଯୁବତୀ, ବାରାଙ୍ଗନାମାନଙ୍କୁ ପଛରେ ପକାଇ 'ବାହାରିବା ରାସ୍ତା' ଦେଇ ବାହାରିଆସିଲି।

ଆସିଲାବେଳେ ଆଖି ଦୁଇଟି ବୁଲି ଆସିଲା ବାଲ୍‌କନି ଆଡ଼େ... କିନ୍ତୁ କେଡ ବଡ଼ ସେ ବାଲକ୍‌ନି, କେତେ ଆରାମ... କେତେ ସୁଖ...!!!

ଶକ୍ତ ଭୂଇଁ ଉପରେ ଗୋଡ଼ ଦେଲି। କିନ୍ତୁ ସେ ଭୂଇଁ ଶକ୍ତ ନଥିଲା।

ଯା ଭିତରେ ଅସରାଏ ବର୍ଷା ହୋଇଯାଇଛି। କାଦୁଅ ପଙ୍କ– ଘୃଣିତ ଜଳଧାରାରେ ମୁଁ ଗୋଡ ଦେଲି–

ବର୍ଷା ହେଉଥାଏ... ମୋର ଜୀର୍ଣ୍ଣଶୀର୍ଣ୍ଣ ହୃଦୟରୁ ବାହାର ବର୍ଷାର ଦମକାଏ ପାଣିଦିଆ ପବନ ସହିତ ଗୋଟିଏ ଦୀର୍ଘଶ୍ୱାସ ବାହାରି ଆସିଲା। ମୁଁ ଯେପରି ଅନୁଭବ କଲି। ଅୟୁତ କୋଟି; ଯୁଗରୁ ମୁଁ କ୍ଲାନ୍ତ– ପରିଶ୍ରାନ୍ତ– ମୁଁ ବ୍ୟର୍ଥ...



# ମଙ୍ଗଳ ଆଲୋକ

ରୁଦ୍ରାକ୍ଷମାଳାକୁ ଦୁଇ ଥର ମୁଣ୍ଡରେ ଛୁଆଁଇ ଭଗବାନଙ୍କୁ ଶେଷ ପ୍ରଣତି ଜଣାଇ ସଦାଶିବ... କୋଥଳିରେ ମାଳାଟିକୁ ଯତ୍ନର ସହିତ ରଖିଲେ। ଦୁଇ ଆଣ୍ଠୁ ଭୂମିସଂଲଗ୍ନ କରାଇ ଅଦୃଶ୍ୟ ଶକ୍ତିକୁ ମୁଣ୍ଡିଆ ମାରିଲେ।

ଦିନାନ୍ତର ମଙ୍ଗଳ–ଲୋହିତ ସ୍ରୋତ ସେତେବେଳେ ଦିଗ୍‌ପ୍ରାଙ୍ଗଣରେ ଝରିପଡୁଥାଏ। ବିଶ୍ୱକଲ୍ୟାଣ ପାଇଁ କେତେ ପ୍ରାଣୀଙ୍କର ପ୍ରଣତ ପ୍ରାର୍ଥନା ସନ୍ଧ୍ୟାର ଶାନ୍ତସ୍ନିଗ୍ଧ ପରିବେଶରେ ପରିସ୍ଫୁଟିତ ହୋଇଯାଉଥାଏ।

ଗୋଟିଏ ଦିବସର ଅବସାନ ପରେ ସ୍ଥିର ନିଶ୍ଚଳ ଭାବରେ ବସିରହି କେତୋଟି ମୁହୂର୍ତ୍ତ ସଦାଶିବ ଆତ୍ମ–ଚିନ୍ତନ କରୁଥିଲେ। ଏହା ତାଙ୍କର ପ୍ରାତ୍ୟହିକ ଅଭ୍ୟାସ। ଗୋଟିଏ ଦରିଦ୍ର ବୃଦ୍ଧ ବ୍ରାହ୍ମଣ ଯାହାଙ୍କର ଜୀବନ ପ୍ରଦୀପ ନିର୍ବାପିତ ହୋଇଯିବାର ସମସ୍ତ ଆୟୋଜନ କ୍ଷଣମାତ୍ରକେ ସମ୍ପନ୍ନ ହୋଇଯିବ– ସେହିଭଳି ଏକ ବ୍ରାହ୍ମଣଙ୍କର ଆତ୍ମଚିନ୍ତା ଓ ତାହାର କେନ୍ଦ୍ରକରି ବିଶ୍ୱଚିନ୍ତାର କି ବା ସାର୍ଥକତା ଅଛି ?

ସାର୍ଥକ ବା ଅସାର୍ଥକ ବିଷୟ ସେ ଚିନ୍ତାକରୁ ନଥିଲେ। ସେ କେବଳ ଭାବୁଥିଲେ ପ୍ରଗତି ପଥରେ ପୃଥିବୀର ଜନସଙ୍ଘ କିପରି ଗତି କରୁଛି– ନୂତନ ବର୍ତ୍ତମାନ ଓ ନୂତନ ଭବିଷ୍ୟତ ପାଇଁ ତାର ପ୍ରାଣସିକ୍ତ ଆୟୋଜନ ଓ ପ୍ରଜ୍ଞା ଓ ବିଚାରରେ ଏ ଦେଶର ଜନ ନାୟକ କିପରି ତାହାକୁ ବିଶ୍ୱମଣ୍ଡଳ ଭିତରେ ପ୍ରତିଷ୍ଠିତ କରିବାକୁ ଯାଉଛନ୍ତି। ଏସବୁ ସଦାଶିବ ଚକ୍ଷୁ ମୁଦ୍ରିତ କରି ଧ୍ୟାନ କରୁଥିଲେ।

ଶେଷରେ ଗୋଟିଏ ଅଶାନ୍ତ ଓ ବ୍ୟଥାତୁର ଦୀର୍ଘଶ୍ୱାସ ତାଙ୍କର ଜୀର୍ଣ୍ଣବକ୍ଷରୁ ବାହାରିଯାଉଥିଲା। ସେ ବିମର୍ଷ ଦେଖା ଯାଉଥିଲେ।

ସଦାଶିବ ଦୁଇଟି କାଳ ଓ ଦୁଇଟି ଜଗତ ସହିତ ନିଜ ଜୀବନକୁ ଉପଲବ୍ଧି କରିଥିଲେ। ବୟସ ତାଙ୍କର ଅତି ବେଶି ହେଲେ ବି ଚିନ୍ତା କରିବାର ଶକ୍ତି ତାଙ୍କର ତୀକ୍ଷ୍ଣ ରହିଛି। ଶରୀର ଉପରେ କାଳର ଅବକ୍ଷୟ ସ୍ପଷ୍ଟ। ଚକ୍ଷୁ ଜ୍ୟୋତିହୀନ। କର ସ୍ଥିର ରହିପାରୁ ନାହିଁ; ସେଠାରେ ପ୍ରକମ୍ପ ଜାତ ହୋଇଛି। ପାଦ ଧରିତ୍ରୀ ସ୍ପର୍ଶ କରେ, କଷ୍ଟରେ ଚାଳିତ ହୁଏ।

ଯେଉଁ ଦୁଇଟି କାଳ ସହିତ ସେ ଜୀବନର ପଦଧ୍ୱନିକୁ ମିଶାଇ ଆଜି କେଉଁ ଦୁର୍ବାର ପରିଣତିର ପଦ–ସଞ୍ଚାରକୁ ଉତ୍‌କୀର୍ଣ୍ଣ ହୋଇ ରହିଛନ୍ତି, ସେ ଦୁଇଟି କାଳର ମୂଲ୍ୟବୋଧ, ଆଚାର, ରୀତିନୀତିରେ ଏତେ ପ୍ରଭେଦ ? ଏତେ ବିଭେଦ ?

ସେ ଯୁଗରେ ବିଦେଶୀ ଶାସନର ସମସ୍ତ ବିଜାତୀୟ ନିର୍ଦ୍ଦେଶକୁ ରୋମନ୍ଥନ କରି ଲୋକେ ଆଚାର ଓ ସଂସ୍କୃତିର ଭ୍ରଷ୍ଟତା ଦେଖାଇ କେବଳ ବଞ୍ଚିରହିବା ପାଇଁ ଏକ ପ୍ରକାର ଆପୋଷ ମୀମାଂସା କରୁଥିଲେ। ସେ ବଞ୍ଚିବା ଭିତରେ ଶବଦେହର ପାର୍ଶ୍ୱ ଫେରାଇବା ଅବା ଖଣ୍ଡେ ଶିଳାକୁ କେହି ଜଣେ ଏପଟ ସେପଟ କରାଇବାର ବ୍ୟବସ୍ଥା ଥିଲା। କିନ୍ତୁ ଶବ ଶବ,

ଶିଳା ଶିଳା। ଅଚେତନ ଜଡ ପଦାର୍ଥ ଭିତରେ ପ୍ରାଣର ମହିମା, ତାର ସର୍ବପ୍ରକାର ଗୁଞ୍ଜିତ ସମାରୋହ ନ ଥାଏ।

ସଦାଶିବ ସେତେବେଳେ ଯୁବକ ଥିଲେ। ଶରୀରରେ ଶକ୍ତି ଥିଲା। ହୃଦୟ ଭିତରେ କିଛି କରିପାରିବାର ମୋହ ଥିଲା। କିନ୍ତୁ କେଉଁଠାରୁ କିଛି ଶକ୍ତିଦାୟୀ ବୀର୍ଯ୍ୟବାହୀ ଭାବ ସଞ୍ଚାରିତ ହେଉ ନଥିଲା। କେଉଁ ଶିଳାଗାତ୍ରରୁ କିଭଳି ଅମୃତଉତ୍ସ କିପରି ଝରି ଆସିବ, ତାହାର ଅପେକ୍ଷାରେ ସମଗ୍ର ଦେଶ ଉନ୍ମୁଖ ହୋଇ ବସି ନଥିଲା।

ତେଣୁ ସଦାଶିବଙ୍କର ମର୍ମକୋଷରୁ ମହା ଅତୃପ୍ତିରୁ ଗୋଟାଏ ଝଞ୍ଜା ଉଦ୍‌ଗତ ହୋଇ ଶୂନ୍ୟକୁ ସଞ୍ଚରି ଯାଉଥିଲା। କିନ୍ତୁ କଅଣ କଲେ, କି ପନ୍ଥା ଧରିଲେ, ତାଙ୍କର ଅତୃପ୍ତ ପ୍ରାଣ ଶାନ୍ତ ହେବ; କିଏ ସେହି କାଣ୍ଡାରୀ, ଯେ ବାତ୍ୟାବିକ୍ଷୁବ୍‌ଧ ତରୀକୁ ନିର୍ଭୟରେ ଘେନିଯାଇ କୂଳରେ ଲଗାଇପାରିବ, ସେକଥା ସେ ଭାବି ବ୍ୟାକୁଳ ହେଉଥିଲେ।

ଆଉ ଏ ଯୁଗ! ମହାତମିସ୍ରା ଓ ଦୁଃସ୍ୱପ୍ନରୁ ଯେପରି ମଣିଷ ତ୍ରାଣ ପାଇଛି। ଚାରିଆଡ଼େ ଅଗ୍ରଗତିର ଗୁଞ୍ଜନ। ଚାରିଆଡ଼େ କର୍ମସ୍ଫୁରଣ। ଦେଶରୁ ଦାରିଦ୍ର୍ୟ, ରୋଗ, ଅଭାବ, ଅନଟନ ଦୂର କରିବା ପାଇଁ ବହୁ ଯୋଜନା ଓ ବିଚାର।

ବ୍ରାହ୍ମଣଶାସନ ନଡ଼ିଆବଗିଚା ଭିତରୁ ଗୋଟିଏ ଯୁବକ ହାତରେ ହାତକଡ଼ି ଓ ଅଣ୍ଟାରେ ଦଉଡ଼ି ସହିତ ଟାଣି ହୋଇ ଆସିଥିଲା, ପୁରୀର କାରାକକ୍ଷ ଭିତରକୁ। ବର୍ଷଣ ରାତ୍ର। ନିରନ୍ଧ୍ର ଉଦ୍ୟାନ ଭିତରେ କେବଳ ଅଜସ୍ର ଜ୍ୟୋତିରିଙ୍ଗଣ ବ୍ୟତୀତ ଆଉ କିଛି ଆଲୋକ ନ ଥିଲା। ଏ ତ ବାହାରର ଆଲୋକ ଥିଲା। ନଭୋମଣ୍ଡଳ ତଳେ ଦୟନୀୟ କେତେଗୁଡ଼ିଏ ଜ୍ୟୋତିରିଙ୍ଗଣ। ତାଙ୍କର ଆଲୋକ ସ୍ରାବ ଭିତରେ ଯୁବକ ଜ୍ୟୋତିଃ ଦେଖି ନ ଥିଲେ। ଯେ ଜ୍ୟୋତିର୍ମୟ ପୁରୁଷ ତାଙ୍କୁ ଦିବ୍ୟତେଜର ସଙ୍କେତ ଦେଖାଇ ଆଗକୁ ଘେନିଯାଇଥିଲେ, ସେ ପୁରୁଷ ପାଖ ଆଖରେ କେଉଁଠି ନ ଥିଲେ। ତଥାପି ଏକ ମହାଆକର୍ଷଣରେ ବ୍ରାହ୍ମଣଶାସନର ଏହି ଯୁବକ ସେଦିନ ଚାଲିଯାଇଥିଲେ କାରାକକ୍ଷକୁ– ଯେଉଁଠି ପ୍ରଥମ ଥର ପାଇଁ ଭଗବତ୍‌ଗୀତା ପଠନ ସହିତ ଆତ୍ମଚିନ୍ତନ କରିବାକୁ ସେ ଦୀକ୍ଷା ଗ୍ରହଣ କରିଥିଲେ।

ପୁଲିସ ଚିତ୍କାର କଲା– ଏଇ ଲୋକଟାକୁ ଧରିବା ପାଇଁ ବଡ଼ କଷ୍ଟ ପାଇବାକୁ ହେଲା। ଲଗାଅ ହ୍ୱିପ୍, ଲଗାଅ ଚାବୁକ୍... ଆଗ ସର୍ଚ୍ଚ କର।

ଅଣ୍ଟା ଚାରିପଟ ମଳିନ ବସ୍ତ୍ର ଭିତରେ ମୋଡ଼ା ମୋଡ଼ି ହୋଇ ହାତ ଲେଖା ପ୍ରଚାରପତ୍ର ରହିଥିଲା। ପାହାନ୍ତାରେ ସେଗୁଡ଼ିକ ହସ୍ତାନ୍ତରିତ ହୋଇଥାନ୍ତା। ଯାହା ହାତକୁ ଯାଇଥାଆନ୍ତା, ସେ ପଢ଼ିଥାଆନ୍ତା, ଅହିଂସ ରହି ଅସହଯୋଗ ଆନ୍ଦୋଳନରେ ମାତି ଉଠ; ପୁଲିସ୍ ଧରିବା ବେଳେ ଅହିଂସ ରୁହ, ବିରୋଧ କର ନାହିଁ, କିନ୍ତୁ ଧରାପଡ଼ିବା ପୂର୍ବରୁ ଆନ୍ଦୋଳନର ବାର୍ତ୍ତା ପଠାଅ।

ଘରେ ଘରେ ମୁକ୍ତିର ସମାଚାର ପହଞ୍ଚୁ। ବିଦେଶୀ କବଳରୁ ମୁକ୍ତ ହେବା ପାଇଁ ଜୀବନକୁ ପାଣି ଛଡ଼ାଇ ମୁକ୍ତି–ସଂଗ୍ରାମରେ ଯୋଗଦିଅ।

ଯୁବକ ଉପରେ ଚାବୁକ ବସିଥିଲା। ଶାରୀରିକ ପୀଡ଼ା ଭିତରେ ଯୁବକ ଦେଖିପାରିଥିଲେ ଗୋଟିଏ ତେଜସ୍ୱୀ ଓଡ଼ିଆର ଜ୍ୟୋତିପିହିତ ମୁଖ, ଅଶ୍ରୁ–ସିକ୍ତ ଚକ୍ଷୁଯୁଗଳ ଏବଂ ଗୋଟିଏ ସର୍ବଂସହ ବକ୍ଷରୁ ଝରି

ଆସୁଥିବା କେତେଗୁଡ଼ିଏ ବୀର୍ଯ୍ୟବାହୀ ଉଦ୍‌ବେଳ ତରଙ୍ଗ।

ଜେଲ ହାଜତକୁ ଗଲାବେଳେ ଶରଧାବାଲି ଉପରର ସଭାମଞ୍ଚରୁ ସେହି ଓଡ଼ିଆର ବଜ୍ରକଣ୍ଠରୁ ଉଦାତ୍ତ ବାଣୀ ଶୁଣାଯାଇଥିଲା– ଦେଶସେବା ଓ ଜନସେବାରେ ଆତ୍ମୋତ୍ସର୍ଗ କରି ମୁକ୍ତି–ସଂଗ୍ରାମର ସୈନିକ ହୁଅ। ଓଡ଼ିଶାର ଅତୀତ ଗରୀୟାନ୍; ତାର ବର୍ତ୍ତମାନ ଓ ଭବିଷ୍ୟତକୁ ଆହୁରି ଗରୀୟାନ କର।

ସଦାଶିବ ମଥା ପୋତି ସେଦିନ ଜାତିର ସେହି ନିର୍ଦ୍ଦେଶକୁ ମାନି ନେଇ କାରାଗାରକୁ ଚାଲିଯାଇଥିଲେ।

ସଦାଶିବଙ୍କ ଭଳି ବହୁ ଯୁବକ ସେତେବେଳେ ଜାତୀୟ ଯଜ୍ଞରେ ହବିଃ ସଦୃଶ ନିଃଶେଷ ହୋଇଯାଇଛନ୍ତି। ଏକ ରୌଦ୍ର ଆହ୍ୱାନ ଏବଂ ତାହା ଯେଉଁ ବକ୍ଷରୁ ଉଦ୍‌ଗତ ହୋଇଥିଲା ସେ ବକ୍ଷ ଉପରେ ଦେଶବାସୀ ଗୋଡ଼ ଦେଇ ଚାଲିଯାଆନ୍ତୁ ବୋଲି ମହାବାଣୀ ପ୍ରଚାରିତ ହୋଇଥିଲା।

ସ୍ୱପ୍ନଭଳି ଏ ସମସ୍ତ କାହାଣୀ ରୂପ ଘେନି ସଦାଶିବଙ୍କର ମନପ୍ରାଣକୁ ଉଦ୍‌ବେଳିତ କରୁଥିଲା। ପ୍ରାୟାନ୍ଧକାରରେ ତିନୋଟି ଅଣନାତି– ତିନିଗୋଟି ସବଳ ବ୍ରାହ୍ମଣ ଶିଶୁ ପଦ୍ମାସନରେ ବସି ବିଭୁପ୍ରାର୍ଥନା, କରୁଥିଲେ। ସେମାନେ ଗାଉଥିଲେ...

ଓଁ ନମସ୍ତେ ସତେତେ ଜଗତ୍କାରଣାୟ... ନମସ୍ତେ ଚିତ୍ତେ ସର୍ବଲୋକାଶ୍ରୟାୟ...

ସଦାଶିବ ଆକାଶର ଏକ ପ୍ରାନ୍ତକୁ ଅବଲୋକନ କରିଥିଲେ। ସେହି ପୁରାତନ ଆକାଶ। ଗ୍ରହନକ୍ଷତ୍ର ଭରା ଏଇ ଶାଶ୍ୱତ ନଭୋମଣ୍ଡଳ କେତେ ରାଜ୍ୟ, କେତେ ରାଜା, କେତେ ସିଦ୍ଧ ସାଧକ ଦେଖିଛି। ଏହାରି ବାରିବାହ ନବ ଆଷାଢ଼ ଆଗମରେ ଧାରାସ୍ରାବ ଦେଇ ଅଗଣିତ ଅଙ୍କୁର ଉତ୍ପାଦନରେ ଅମୃତୋପମ ହୁଏ। ଏହି ଅଙ୍କୁରରୁ ଉତ୍ପନ୍ନ ହୁଏ ବର୍ଣ୍ଣୋତ୍ସବ ମଣ୍ଡିତ କେତେ କିଶଳୟ। ତାଆରି ଚାରିପଟେ ଫୁଟିପଡ଼େ କେତେ ପୁଷ୍ପ। ପୁଣି ସେହି ପୁଷ୍ପର ଶୋଭା ଓ ସୁରଭି ଦିନେ ମହାକାଳର କୁକ୍ଷି ଭିତରେ ଲୁଚିଯାଏ। ବିଶ୍ୱର ସହସ୍ର ଭଙ୍ଗିମାର ଆୟୋଜନ ଭିତରେ ମୃତ୍ୟୁ ସର୍ବପ୍ରକାର ଅବଲୁପ୍ତି ଘଟାଏ।

କିନ୍ତୁ ରହିଯାଏ କୀର୍ତ୍ତି। ମଣିଷର କୀର୍ତ୍ତି। ସଦାଶିବ ସ୍ମରଣ କଲେ ସେହି ଯୁଗକୁ, ଯେତେବେଳେ ଗୁରୁଙ୍କର ଚାରିପଟେ ଶିଷ୍ୟମାନେ ଉପବେଶନ କରି ତାଙ୍କର ଏଇ ତିନୋଟି ଅଣନାତି ଶିଶୁ ସ୍ତୋତ୍ର ବୋଲିଲା ଭଳି ବ୍ରହ୍ମସ୍ତୁତି ଗାୟନ କରୁଥିଲେ– ହେ ପ୍ରଭୁ ଆମକୁ ବଳ ଦିଅ, ଆମକୁ ବୀର୍ଯ୍ୟ ଦିଅ, ଆମ ପ୍ରାଣରେ ସ୍ନେହ ମମତା ଦିଅ, ପରଦୁଃଖକାତର ଚକ୍ଷୁ ଦେଇ ବିଶ୍ୱଜନର ଦୁଃଖଶୋକକୁ ଉପଲବ୍ଧି କରି ଦରିଦ୍ରନାରାୟଣ ସେବାରେ ଆମେ ବ୍ରତୀ ହେଉ।

ଶ୍ୟାମ ଛୁରିଅନା ବକୁଳବନ ଭିତରୁ ଭାରତୀୟ ତପୋବନର ଆଚରନିଷ୍ଠ ବହୁ ଶିଷ୍ୟଙ୍କର କଣ୍ଠରୁ ସେତେବେଳେ ଝରିପଡୁଥିଲା ଐକ୍ୟର ବନ୍ଦନା। ସେହିଠାରୁ ସମଗ୍ର ଉତ୍କଳକୁ ପ୍ରଭାବିତ କରିବା ପାଇଁ ହୋମଶିଖା ଜଳି ଉଠିଥିଲା। ସ୍ୱାଧୀନତା ଆମର ଜନ୍ମଗତ ଅଧିକାର। ଓଡ଼ିଆଜାତିର ଅତୀତର ଉଦ୍‌ବୋଧନ, କୋଣାର୍କ, ଭୁବନେଶ୍ୱର ସ୍ଥାପତ୍ୟଭାସ୍କର୍ଯ୍ୟର ବିଶ୍ୱବନ୍ଦିତ ରୂପଛଟା, ଦେଶସେବା, ଜାତିସେବା, ଭାଇ ଭାଇ ଭିତରେ

ଅସ୍ପୃଶ୍ୟ କେହି ନାହିଁ– ଏକ ସଂହତି–ରଜ୍ଜୁରେ ସମଗ୍ର ଭାରତୀୟ ଜନତା ଆବଦ୍ଧ– ଏଇ ସବୁ ଚିନ୍ତା, ଏଇ ସବୁ ଭାବନା ଜାତୀୟ ବିଦ୍ୟାଳୟରୁ ସଞ୍ଚାରିତ ହୋଇ ଯୁବକ ଯୁବତୀଙ୍କର ପ୍ରାଣକୁ ଆଲୋଡ଼ିତ କରିଥିଲା।

ଇତିହାସ ପୁନର୍ଲିଖିତ ହେଲା। ଭୂଗୋଳ କେବଳ କେତୁଟା ଜନପଦ ନଦନଦୀର ଉତ୍ପତ୍ତି ବା ଅବଲୁପ୍ତିର କଥା ନୁହେଁ; ସାହିତ୍ୟ କେବଳ ମନୋରଞ୍ଜକ ବିନୋଦନ ବାଣୀବ୍ୟଞ୍ଜନା ମାତ୍ର ରହିଲା ନାହିଁ। ଦର୍ଶନ କେବଳ ଶଙ୍କର, ରାମାନୁଜ, କପିଳ ମହର୍ଷିଙ୍କର ଭାଷ୍ୟରୂପରେ ରହିଲା ନାହିଁ। ସଂସ୍କୃତି କେବଳ କତିପୟ ପୂଜା ପାର୍ବଣ ତଥା ମନ୍ଦିର–ଅଧିଗତ ବ୍ୟବସ୍ଥା ଭିତରେ ଲୀନ ହେଲା ନାହିଁ।

ସର୍ବଜ୍ଞାନ ଓ ଚିନ୍ତାଧାରାରେ ଜାତିର ଜାତିପ୍ରେମ, ବିଶ୍ୱୈକ୍ୟ ଭାବ ଓ ଆତ୍ମୋତ୍ସର୍ଗ ମହାଦର୍ଶନ, ମହାସାହିତ୍ୟ ଓ ମହତ୍ ଇତିହାସ ରୂପରେ ଗଣହୃଦୟରେ ସ୍ଥାନ ପାଇଲା।

ସଦାଶିବ ଏସବୁ ଚିନ୍ତା କଲାବେଳେ ଅତିକ୍ରାନ୍ତ କାଳସିନ୍ଧୁ ତରଙ୍ଗ ଉପର ଘନପିନଦ୍ଧ କୁଜ୍ଝଟିକା ଭିତରେ ଦେଖିପାରୁଥିଲେ, ସେଇ ଅନଶ୍ୱର ମହିମାମୟ ବ୍ୟକ୍ତିଟିକୁ– ଯାହାଙ୍କର ବାଣୀ, ଲେଖନ, କର୍ମସାଧନ ମହୋଦଧିର ବିଶାଳତା ଭଳି ଏବେ ବି ବିଶାଳ ରହିଛି।

ଚକ୍ଷୁ ତାଙ୍କର ଅଶ୍ରୁସିକ୍ତ ହେଲା। ସେ ଜାଣନ୍ତି ନାହିଁ; ଏଇ ତିନୋଟି ଶିଶୁ ଯାହାଙ୍କ କଣ୍ଠରେ ଈଶ୍ୱର–ସ୍ତବ ଏତେ ମଧୁର ଓ ସୁଶ୍ରାବ୍ୟ; ସେମାନେ କିଭଳି ମଣିଷ ହେବେ। ଯୁଗ ଅତିବାହିତ ହୋଇଯାଇଛି। ସେ ଯୁଗ ଥିଲା ଧର୍ମର ଯୁଗ, ଈଶ୍ୱର–ବିଶ୍ୱାସର ଯୁଗ, ନୀତିର ଯୁଗ। ଦୁର୍ନୀତି କଲେ ଧର୍ମ ଦଣ୍ଡ ଦେବ, ଆଚାରଭ୍ରଷ୍ଟ ହେଲେ ସମାଜ ଭର୍ତ୍ସନା କରିବ। ଅସଂସ୍କୃତ ହେଲେ ନିଜର ବଂଶଧରମାନେ ବିପନ୍ନ ହେବେ। କିନ୍ତୁ ଆଜି ଯୁଗ ଭିନ୍ନ ହୋଇଛି।

ବଡ଼ବୋହୂ ଚନ୍ଦ୍ରାବତୀ ତୁଳସୀ ମୂଳରେ ପ୍ରଦୀପ ଥୋଇ ସଦାଶିବଙ୍କୁ ଜଣାଇଲେ– ସାନ ବୋହୂର ଦେହ ଭଲ ନାହିଁ, ଔଷଧ ଦିଅନ୍ତୁ।

ସଦାଶିବ ପଚାରିଲେ– କ'ଣ ହୋଇଛି ? ଚନ୍ଦ୍ରାବତୀ କହିଲେ ଦେହରେ ତାତି ଭର୍ତ୍ତି, ମୁଣ୍ଡବ୍ୟଥା।

ସଦାଶିବ କହିଲେ– ମାଆ, ଆଖିକୁ ତ ଦିଶୁ ନାହିଁ। ଔଷଧ ନାଆଁ କହିଦେଉଛି। ତମେ ଦେଇଦିଅ।

ସଦାଶିବ ଆଜୀବନ ହୋମିଓପାଥି ଔଷଧ ପ୍ରୟୋଗ କରି ଆସିଛନ୍ତି। ସେତେବେଳେ ଏତେ ଡାକ୍ତରଖାନା ନଥିଲା। ଗାଁରେ ବୈଦ୍ୟ ଥାଆନ୍ତି। ପ୍ରଥମେ ସତ୍ୟବାଦୀ ବିଦ୍ୟାଳୟରେ ହୋମିଓପାଥି ଔଷଧ ପ୍ରୟୋଗ ଶିକ୍ଷା କଲେ ଶିକ୍ଷକମାନେ। ଛାତ୍ରମାନଙ୍କର ଦେହ ଖରାପ ହେଲେ ଏହି ଔଷଧ ଦିଆଯାଉଥିଲା।

କ୍ରମେ ହଇଜା, ଆମାଶୟ, ଜ୍ୱର–ରୋଗରେ ଯେତେବେଳେ ଓଡ଼ିଶାର ପୁରପଲ୍ଲୀର ଲୋକେ ଆକ୍ରାନ୍ତ ହେଲେ, ଜାତୀୟ ବନବିଦ୍ୟାଳୟର ଶିକ୍ଷକ ଓ ଛାତ୍ରମାନେ ଗାଁ ଗାଁ ବୁଲି ଔଷଧ ବିତରଣ କଲେ।

ସଦାଶିବଙ୍କର ମନେପଡ଼େ ବହୁ କାଳରାତ୍ରିର କଥା। ଘନବର୍ଷଣ ଭିତରେ ହଇଜା ରୋଗୀର ପାଖରେ ବସି ସେବା କରି ତାର ମଳମୂତ୍ର ପରିଷ୍କାର

କରି ଅପାର ସେବାନନ୍ଦରେ ମାତି ଉଠୁଥିଲେ ଛାତ୍ର ଓ ଶିକ୍ଷକବୃନ୍ଦ। ଏସବୁ ସେଇ ଜନନାୟକଙ୍କର ପ୍ରେରଣା, ତାଙ୍କରି ନିର୍ଦ୍ଦେଶ।

ନିଜ ଜୀବନକୁ ବିପନ୍ନ କରି ଦରିଦ୍ର ବୁଭୁକ୍ଷିତ ଓଡ଼ିଆର ସେବା କରୁଥିଲେ ନିଜେ ସେହି ମହାନାୟକ। ଆଖିରେ ବାରିଧାରା, ହୃଦୟରେ ପୁଞ୍ଜିଭୂତ ବେଦନା, ସର୍ବମଙ୍ଗଳବିଧାୟକ ଭଗବାନଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ ଘେନି ସେ ଉତ୍କଳର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତଯାଏ ଘୂରିବୁଲୁଥିଲେ ଜନତାର ସେବା ଉଦ୍ଦେଶ୍ୟରେ। ଆତ୍ମଶୁଦ୍ଧି ପାଇଁ ଶାସ୍ତ୍ରାଲୋଚନା ଓ ଉପବାସ ତାଙ୍କର ନିତ୍ୟ ସହଚର ଥିଲା।

ସଦାଶିବ ଚନ୍ଦ୍ରାବତୀର ଔଷଧ ମାଗିବା କଥା ଶୁଣି ଭାବବିହ୍ୱଳ ହୋଇ ଅଶ୍ରୁ ବିସର୍ଜନ କଲେ। କରାଳ–ବନ୍ୟା ପରେ ନଦୀର ଦୁଇପଟର ଗ୍ରାମମାନଙ୍କରେ ମୃତ୍ୟୁର ସେ କି ତାଣ୍ଡବ ଲୀଳା! ମରଣ ଯେପରି ନିଜେ କ୍ଷୁଧିତ। ତାରି ଅଗ୍ନି–ଗର୍ଭରେ ଦରିଦ୍ର ଓଡ଼ିଆ ଭୋଜ୍ୟବସ୍ତୁରେ ପରିଣତ ହେଉଥିଲା।

ସେଇ ତେଜସ୍ୱୀ ମହାପ୍ରାଣ ବ୍ୟକ୍ତିଟି ମୃତ୍ୟୁର ବିକଟ ଲୀଳା ଭିତରେ ଗ୍ରାମ ଗ୍ରାମାଞ୍ଚଳରେ ମୁମୂର୍ଷୁର ନେତ୍ରପ୍ରାନ୍ତରୁ ଲୁହ ପୋଛି ଦେଉଥିଲେ। ସଦାଶିବ ପାଖରେ ଛିଡ଼ାହୋଇ ବିଶ୍ୱାତ୍ମା ଏହି ମାନବର କରଣୀ ସନ୍ଦର୍ଶନ କରୁଥିଲେ। ସେ ଏକା ନୁହନ୍ତି, ବହୁ ଶିଷ୍ୟ, ବହୁ ବନ୍ଧୁ ତାଙ୍କର ଏ ମହିମାକୁ ହୃଦୟର ସମସ୍ତ ପ୍ରେମ ଦେଇ ପ୍ରଣତି ଜଣାଇଥିଲେ।

ଆଜି ଓଡ଼ିଆ ହୁଏତ ଗଣ୍ଡିଏ ଖାଇବାକୁ ପାଇଛି, ଦେଶରେ ଶିଳ୍ପସମୃଦ୍ଧି ଘଟୁଛି, ଦେଶ ସ୍ୱାଧୀନ ହୋଇଛି। ଜାତିର ସଂସ୍କୃତିକୁ ଆକ୍ରମଣ କରି ପରମ୍ପରାକୁ ନଷ୍ଟ କରିଦେବା ଭଳି ମନୋବୃତ୍ତି ନାହିଁ। କିନ୍ତୁ ଲୋକଚରିତ୍ର ଗଠନରେ ସେ ଶିଥିଳତା ଆସିଛି, ଯେ ଭ୍ରାନ୍ତିକର ବାତାବରଣ ଦେଖାଦେଇଛି, ଯୁବକ ଛାତ୍ର ଓ ନାଗରିକର ସାଧାରଣ ଜୀବନରେ ଯେ ବିଶୃଙ୍ଖଳା ଓ ଦେଶପ୍ରୀତିର ଅଭାବ ଦେଖାଦେଇଛି ତାହା ଚିନ୍ତାକରି ସଦାଶିବ କାକୁସ୍ଥ ହୋଇଯାଇଥିଲେ।

କେତେ କଷ୍ଟ କଷଣ ରକ୍ତ ଲେପନ ପରେ ଏଭଳି ଐକ୍ୟ, ଏଭଳି ସଂହତି ଓ ସ୍ୱାଧୀନତା ଆସିଛି। ଦେଶର ଖାଲ; ଗାତ ଭୂଇଁରେ ସେଇ ଲୋକଟାର ହାଡ଼, ମେଦ, ମାଂସ ପଡ଼ି ଗଳିତ ହୋଇଯାଇଛି– ଆଉ ଦେଶବାସୀ ତାଆରି ଉପରେ ଚାଲିଯାଇ ସ୍ୱର୍ଣ୍ଣପ୍ରଭାତକୁ ଅବଲୋକନ କରନ୍ତୁ– ଏକର ପ୍ରୟାଣ ଓ ଆତ୍ମୋତ୍ସର୍ଗରେ ବହୁର ମଙ୍ଗଳ ହେଉ... ଏଇ ପ୍ରାର୍ଥନା ଯେଉଁ କଣ୍ଠରୁ ବାହାରିଥିଲା ତାହା ଆଜି ସ୍ତବ୍ଧ ହୋଇଯାଇଛି।

ମୃଣ୍ମୟ ରୂପ ବସାଇ ତାଙ୍କରି ଦାୟାଦ ତାଙ୍କୁ ଓ ତାଙ୍କର କୀର୍ତ୍ତିକୁ ଆକରିତ କରୁଛି। ଆଦର୍ଶ ଚାଲିଯାଇଛି, ଆଡମ୍ବର ରହିଛି।

ସଦାଶିବ ଧୀରେ ଉଠି ଛିଡ଼ାହେଲେ। କେତେଦିନର କଥା ଆଜି ମନେପଡୁଛି। ବୋହୂ ଆସି ତାଙ୍କର ହାତ ଧରି ଘେନିଗଲେ।

ସଦାଶିବ ଶୋଇଲା ଘର ଭିତରେ ଦେଖିଲେ– ଆଜି ଯେପରି ଟିକିଏ ପରିପାଟୀରେ ବୋହୂ ଛବିଟି ଉପରେ ଚନ୍ଦନ ତିଳକ ଦେଇ ଖଣ୍ଡିଏ ଚମ୍ପାଫୁଲର ମାଳା ଲମ୍ବେଇ ଦେଇଛି।

ପୁରପଲ୍ଲୀର ବହୁ ଆବାସରେ ଏଇ ଛବିଟିକୁ ଆଜି ଏମିତି ପରିପାଟୀ କରି ଲୋକେ ସଜାଇଥିବେ। ଶ୍ରୀ ଜଗନ୍ନାଥ ଆଜି ନବଯୁବକ। ନବଯୌବନର ଜ୍ୟୋତିରେ ଦେବତା ବି ଆଜି ହସ ହସ ମୁଖ।

କିନ୍ତୁ ତିରୋଧାନର ବହୁବର୍ଷ ପରେ ବି ସେଇ ପ୍ରଶାନ୍ତ ମୁଖମଣ୍ଡଳଟି ବ୍ୟଥାଶୀର୍ଣ୍ଣ। ସଦାଶିବ ଯୋଡ଼ହସ୍ତରେ ଥରି ଥରି ଛିଡ଼ାହେଲେ। ଚନ୍ଦ୍ରାବତୀ ହାତ ଯୋଡ଼ିଲେ।

ଗୃହାଙ୍ଗନ ନିସ୍ତବ୍ଧ।

ସଦାଶିବ ପ୍ରାର୍ଥନା କଲେ। ମୁନିଋଷିମୟ ଭାରତରେ ତୁମେ ଥିଲ ବ୍ରହ୍ମର୍ଷି। ଘନ–ତିମିର ଭିତରେ ତୁମେ ଅଜସ୍ର ରଶ୍ମିଧାରୀ ମଙ୍ଗଳ ପ୍ରଦୀପ... ତୁମରି ଆଲୋକରେ ସର୍ବ–ପାପ–ତାପ ଦୂରୀଭୂତ ହେଉ ଶୁଭ ବୁଦ୍ଧିର ଉଦୟ ହେଉ। ତୁମର ତ୍ୟାଗ ଆଜି ସାର୍ଥକ ରୂପ ଧରିଛି। ତୁମର ଅଶ୍ରୁ ଆଜି ବ୍ୟଥା, ବେଦନା, ହୀନମନ୍ୟତାର ଅଶ୍ରୁ ହୋଇ ନାହିଁ। ଏ ଅଶ୍ରୁ–ତର୍ପଣରେ ଗୋଟାଏ ଜାତି ମୁକ୍ତିସ୍ନାନ କରିଛି।

ତଥାପି ପଥ ଦୁର୍ଜ୍ଞେୟ, ଅଜାନିତ। କାହିଁ କେତେ ବାଟ ଅଛି, ଚାଲିବାକୁ ହେବ। ତୁମର ସହକର୍ମୀ ଆଜି ବଞ୍ଚିଛନ୍ତି। ତୁମକୁ ଯେଉଁମାନେ ଦେଖି ନାହାନ୍ତି, ସେମାନେ ଉତ୍ତର ପୁରୁଷ ଭାବରେ ତୁମ ଉପରେ ଦେବତ୍ୱ ଆଁରୋପ କରୁଛନ୍ତି।

ତୁମେ କିନ୍ତୁ ମଣିଷ ଥିଲ। ସର୍ବକାଳ ସର୍ବଦେଶ ଊର୍ଦ୍ଧ୍ୱରେ ତୁମେ ଜ୍ୟୋତିଷ୍ମାନ୍ ହୋଇ ରହିଛ।

ତୁମର ଆଶୀର୍ବାଦ ଝରିପଡୁଛି। ଏ ଜାତି ସଂଗ୍ରାମରୁ ଉଠି ମହାଜୀବନ ଗଢ଼ିବାରେ ତତ୍ପର ଅଛି।

ତୁମେ ତାର କଣ୍ଠରେ ଓଜଃର ବାଣୀ ଦିଅ, ହୃଦୟରେ କର୍ମପ୍ରଚୋଦନାର ଭାବ ଦିଅ। ମୁଁ ଅସ୍ତମିତ ହୋଇଯିବା ପୂର୍ବରୁ ଏତିକି ପ୍ରାର୍ଥନା କରିଯାଉଛି। ଶାନ୍ତିଃ... ଶାନ୍ତିଃ... ଶାନ୍ତିଃ...।



# ଉଲଗ୍ନ ରାକା

ଜୀବନର ସ୍ୱର ବହୁଛନ୍ଦରେ ବନ୍ଧା। ସେଥିପାଇଁ ଏ ଜୀବନ ଏତେ ବିଚିତ୍ର! କି ଅପରିସୀମ କ୍ଲାନ୍ତି, ପୁଣି କି ଅଭାବନୀୟ ସ୍ଫୂର୍ତ୍ତି!

ଥରେ ଥରେ ମଣିଷ ଜୀବନର ସୁଖ ଦୁଃଖର ଶୋଭାଯାତ୍ରାକୁ ଭାବି ବସିଲେ ଥଳ କୂଳ କିଛି ମିଳେ ନାହିଁ। କେତେ ବର୍ଣ୍ଣୋତ୍ସବରେ ଏଥିରେ ଚିତ୍ରପଟ ଅଙ୍କାଯାଇଛି। ପୁଣି କେତେ ବିବର୍ଣ୍ଣ ଶବର ପାଣ୍ଡୁରତା ଘେନି ଏହାରି ଉପରେ ବସିଛନ୍ତି କୁତ୍ସିତ ଗୃଧ୍ର ଦଳ।

ଚାରିଆଡ଼େ ଶରଦ ଶ୍ୟାମଳିମା। ଧାନଗଛ ଉପରେ ବହିଯାଉଛି ପବନର ଢ଼େଉ। ମଥା ନତ କରି ସେମାନେ ଧୀରେ ରହିଯାଇ ପୁଣି ଉଠୁଛନ୍ତି। ଏଇ ଉଠା–ପଡ଼ା ରୀତି ଭିତରେ ଖେଳି ଯାଉଛି ଶ୍ୟାମ ତରଙ୍ଗ।

ଆକାଶ ପରିଚ୍ଛନ୍ନ! ଦିଗ ଦିଗନ୍ତ ସ୍ୱଚ୍ଛ। ଚାରିଆଡ଼େ ଚାହିଁଦେଲେ ପ୍ରାଣ ପୂରି ଉଠେ। ଆଘ୍ରାଣରେ ଖେଳିଯାଏ ଶରଦର ନୀଳ–ବନ୍ୟା।

ମୁଁ ପଳାୟନ କରୁଥାଏ ଏଇ ସୁଷମା ଭିତରକୁ। ଜୀବନ ସଂଗ୍ରାମରେ ତିଳ ତିଳ ହୋଇ ଅଶ୍ରୁ ଓ ରକ୍ତ ମୁଁ ଝରାଇଛି। ବିମୁକ୍ତି ପାଇଁ ପ୍ରାଣ ହାହାକାର କରୁଛି। କିନ୍ତୁ କାହିଁ ମୁକ୍ତି?

ସତେଜ ଶୋଭାବନ ଏଇ ଦୃଶ୍ୟପଟ। ନୀଳ ନିର୍ଝର ତଳେ ମଣିଷ ପ୍ରାଣ ଉଦାସ ରାଗିଣୀରେ କାହାକୁ ଯେପରି ସଙ୍ଖୋଳିବାକୁ ଖୋଜି ବୁଲୁଛି। ଚଲାପଥରୁ ଟିକିଏ ଅମଡ଼ା ବାଟର ସ୍ୱାଦପାଇଁ ସେସବୁ ଦେଇଦେବା ପାଇଁ ପ୍ରସ୍ତୁତ।

ସେଇ ଘର, ସଂସାର। ସଭ୍ୟ ହେବାପାଇଁ ଧରାବନ୍ଧା ଆୟୋଜନ, ଦଶଟା ଲୋକ ସଙ୍ଗେ ଚଳିବା ପାଇଁ ଆଗରୁ ଅଲିଖିତ ନିୟମ ପାଳନ– ଏ ସବୁଥିରେ ପ୍ରାଣ ଅତିଷ୍ଠ ହୋଇଉଠୁଛି। ସ୍ତ୍ରୀ ଚାହେଁ କେତେ କଥା, ତାର ଦାବୀ ପୂରଣ ପାଇଁ ଅଭିମାନର ଅନ୍ତ ନାହିଁ। ଶିଶୁ ସନ୍ତାନଙ୍କର ଅଧିକାର, ନ ଦେଲେ ସେମାନଙ୍କର ଅଷ୍ଟପ୍ରହରୀ ଚିତ୍କାର, ଏପରି କିଏ କେତେ ପ୍ରକାର ଦାବୀ ସାବ୍ୟସ୍ତ କରିବାରେ ଲାଗି ପଡ଼ିଛନ୍ତି।

ବଡ଼ ଅପରିଚ୍ଛନ୍ନ ଜୀବନ। ଗୋଟାଏ ମୁହୂର୍ତ୍ତ ନାହିଁ ନିରୋଳାରେ ବସି ଧ୍ୟାନ କରିବାକୁ। ଧ୍ୟାନର ବସ୍ତୁ କେତେପ୍ରକାର; ଇନ୍ଦ୍ରଧନୁର ରଙ୍ଗ ବୈଭବ ଘେନି ଏମାନଙ୍କର ସୁକୁମାର କଳା ଫୁଟିଉଠେ।

ନାରୀ ଓ ପୁରୁଷ– ସେମାନଙ୍କର କେତେ ପ୍ରାର୍ଥନା, କେତେ ବ୍ୟର୍ଥତା, କେତେ ଆନନ୍ଦ କେତେ ବିଷାଦ– ସବୁର ପ୍ରଦର୍ଶନୀ ଏଇ ଜୀବନର ସ୍ୱରରେ ମୂର୍ଚ୍ଛିତ। ଅଥଚ ଏମାନଙ୍କୁ ଧ୍ୟାନ କରିବାକୁ ସମୟ ନାହିଁ। ଜୀବନର କାନ୍ତି ତୁଟିଯାଉଛି।

ମୁଁ ଏଇସବୁ ଭାବନାରେ ବିହ୍ୱଳ ଥାଏ। ଧରିତ୍ରୀ ଥରାଇ ଗାଡ଼ି ଛୁଟିଥାଏ ଦୁଇପାଖରେ; ନୀଳ ସ୍ରୋତ। ମୋ କୋଠରୀରେ ମୁଁ ଏକା। ପଳାଇ ଆସିଛି ମୁଁ– ଦୁର୍ଗତ, ଟିକିଏ ଶାନ୍ତି ପାଇବା ପାଇଁ।

ଟ୍ରେନ ଚାଲିଛି। ମନରେ ମୋର ପ୍ରଶାନ୍ତି। ଆଉ କିଛି ନ ହେଲେ ବି ମୋର ଗୋଟାଏ ଗତି ମ୍

ପାଇପାରିଛି। ଯେ ଅଥର୍ବ ଜୀବନ ମତେ ପଙ୍ଗୁ କରିଦେଇଛି। ତାହାରି ଠାରୁ ଏ ବିମୁକ୍ତି।

ମୋ ଆସନରେ ମୁଁ ବସିଛି। ଭରା ଆଖିରେ ଦେଖିଯାଉଛି ନୀଳ ଧାନକ୍ଷେତ, ଭାଦ୍ରର ଶାନ୍ତ ପରିମଳ। ଅଦୂରେ ଧେନୁପଲ। ମଥା ଉପରେ ଲୁଗା ଗୁଡ଼େଇ ଚାଲିଛି ପାଳକ। ଗୋଟିଏ ଛୋଟ ପାହାଡ଼ ପାରିହୋଇ ଟ୍ରେନ ଚାଲିଛି। ଝରଝର କମ୍ପନରେ ମୁଁ ସାମାନ୍ୟ ଥରି ଯାଉଛି। ମନ ଉଡ଼ିଯାଇଛି ଅତୀତର କେତେ ସ୍ମୃତିକୁ। କେତେ ଘଟଣା ଘଟିଯାଇଛି, ତାର କାରଣ ଅକାରଣର ସୂତାଖିଅ ମୁଁ ଏଯାଏ ସଜାଡ଼ିପାରୁ ନାହିଁ।

ମଧୁମତୀ ?

ହଁ ମଧୁମତୀ; ଶ୍ୟାମାଙ୍ଗୀ, ପଲକେ ପଲକେ ତାର ଆଖିରୁ ଝରିପଡ଼େ ନିମନ୍ତ୍ରଣର ଜ୍ୟୋତିରେଖା। ଭାବିଥିଲି ସେ ସତକଥା କହିଥିଲା। କେବେ ମତେ ଭୁଲିବ ନାହିଁ। କେଉଁ ଲଗ୍ନରେ କିପରି ଭାବରେ ତା ସହିତ ଦେଖା ହୋଇଥିଲା କହି ଲାଭ ନାହିଁ। ତେବେ ସବୁ ସମର୍ପଣ କରିଦେବାର ଭଙ୍ଗୀ ଦେଖାଇ ମତେ ସେ ପ୍ରଲୁବ୍ଧ କରିଥିଲା।

ଆଜି ସେ ଦେଖିଲେ କଥା କୁହେ ନାହିଁ। ତାର ସେ ଜ୍ୟୋତି ଆଉ ନାହିଁ। ସେ ଧାଉଁଛି ଅନ୍ୟ ପଥରେ, ବରଣ କରିଛି ଜଣକୁ, ବଡ଼ ନିର୍ଲଜ ବରଣ। ମୋ ପାଖରେ ଯେ ସଂଯମ ଦେଖି ସେ ପଛକୁ ଫେରିଲା। ତାର ଆଜିର ପ୍ରିୟତମ ପାଖେ ସେତିକିର ଅଭାବ ଦେଖି ସେ ମାତିଉଠିଲା।

ତଥାପି ସେ ବନ୍ଦନୀୟା। ଜୀବନ–ଜାହ୍ନବୀରେ ତାର ପୁଷ୍ପଭସାଣ ଥରେ ଅଧେ ମୋ ପ୍ରାଣକୁ ଶ୍ୟାମଳ କରିଥିଲା। ସେ ତୀର୍ଥପଦ୍ମ ଏବେ ବି ସୁବାସିତ ରହିଛି। ଏ ଜୀବନରେ କଅଣ ଯାଏ କଅଣ ଆସେ, ତାର ଚିହ୍ନବର୍ଣ୍ଣ ରହେ ନାହିଁ। କିନ୍ତୁ ସ୍ମୃତିର ଚିହ୍ନ ପାଷାଣ ଉପରେ ଖୋଦିତ ସଙ୍କେତ। ତାହା ଲିଭେ ନାହିଁ। କାଳ ଯେତିକି ତା ଉପରେ ଅନ୍ଧାର ଆଲୁଅ ଢ଼ାଳେ, ତାହା ସେତିକି ଉଜ୍ଜ୍ୱଳ ରହୁଥାଏ।

ସବିତା ? ହଁ ସବିତା ଶିକ୍ଷିତା, ରୁଚିସଂପନ୍ନା ସବିତା ଦେବୀ। ଆଭିଜାତ୍ୟ ଓ ପ୍ରକାର ଆକାରରେ ଅତି ସାମାଜିକା। କିନ୍ତୁ ଛନ୍ଦହରା ଏଇ ନାରୀ ମାତ୍ର ଦୁଇଟି ମୁହୂର୍ତ୍ତର ସାନ୍ନିଧରେ ମତେ ପ୍ରାଣ ପ୍ରତିମା କରି ନେଇଥିଲା।

କାରଣ ?

ଆଃ ପାଗଳ ? କାରଣ ଅକାରଣର ପ୍ରଶ୍ନ ନାହିଁ, ଏ ଯେପରି ପ୍ରବାହିତା ନଦୀର ସ୍ୱାଭାବିକ ଭାବରେ ସାଗର ପ୍ରତି ଜଳ ଉନ୍‌ମୋଚନ। କଥା କହିଥିଲି ଦୁଇ ମୁହୂର୍ତ୍ତ। ଆଖିରୁ ଲୁହ ପୋଛିଦେଇଥିଲି ଗୋଟିଏ ମୁହୂର୍ତ୍ତ। ସେ ମୋର ହାତ ଛୁଇଁ ଶପଥ କରିଥିଲା। ଆଉ ଏକ ମୁହୂର୍ତ୍ତ ଯେ ସେ ମତେ କେବେ ଭୁଲି ନାହିଁ।

ସେ ଥିଲା ଏଇଭଳି ଏକ ସରସ ଶାନ୍ତ ଭାଦ୍ରର ତିଥି। ଦେଖା ହେଲା ଗୋଟିଏ ଉତ୍ସବ–ମୁଖର ସନ୍ଧ୍ୟାରେ। ସର୍ବଦିଗରେ ଆଲୋକମାଳା ଭିତରେ ଏଇ ନାରୀର ହୃଦୟ ଘନ–ତମିସ୍ରାରେ ଆଛନ୍ନ ଥିଲା ବୋଲି ମୋର ମନେ ଥିଲା।

ଗୋଟିଏ ମାତ୍ର ଲକ୍ଷଣ– ଥରେ ଭ୍ରୂକୁଞ୍ଚନ। ମୋରିଆଡୁ ମୁଁ ଧରା ଦେଇଥିଲି ଏଇ୍ ନାରୀର ସର୍ବ ବିଭବ ଭିତରେ, ଯେଉଁ ଅଙ୍ଗାର ଖଣ୍ଡିକ କୁତ୍ସିତ କଳା ରୂପରେ ରହିଛି ତାକୁ ବାହାର ବହ୍ନିଦେଇ ସ୍ଫୁଲିଙ୍ଗ ଜାଳିବି ବୋଲି।

ସେ ଜଳିଥିଲା। ସବିତା ଜଳିଥିଲା, ତାର ଦୁଃଖରେ ମୋର ଆଶ୍ୱାସ, ତାର ନିଷ୍ପ୍ରାଣ ଜୀବନରେ ମୋ ଘେନି ପ୍ରାଣ ସ୍ପନ୍ଦନ, ଉପରକୁ ତାର ନାରୀତ୍ୱର ଝଲକ ଭିତ଼ରେ ଭିତରର ଶୂନ୍ୟବୋଧକୁ ପରିପୂର୍ଣ୍ଣତାରେ ରୂପାନ୍ତରିତ– ଏସବୁ ମୁଁ କରିଥିଲି।

ସବିତା କଇଁ କଇଁ କାନ୍ଦିଥିଲା। ମୁଁ ନିଶ୍ଚଳ ଥିଲି। ତାର ସ୍ପନ୍ଦିତ ବକ୍ଷର ଢେଉ ଭିତରେ ମୁଁ ଦେଖିଥିଲି ଶୂନ୍ୟ–ଚାରିଣୀ ନାରୀର ଖଣ୍ଡେ ତୁଠ–ପଥରର ସଂଧାନ।

ଏବେ ସେ ସିଧା ଛିଡ଼ାହେବା ଶକ୍ତି ତାର ରହିଛି। ଅଭାବ ଥିଲା ପ୍ରେମ, ଅଭାବ ଥିଲା ସଂବେଦନା। ତାକୁ ସବୁ ଦେଇଥିଲି ଏବଂ ମନେ କରିଥିଲି ସେ ରହିଯିବ ମୋ ଜୀବନର ଦିଗନ୍ତ ସ୍ତମ୍ଭ ଯାହାକୁ ଭାର ଦେଇ ମୁଁ ଲେଉଟି ଚାହିଁବି ଅସ୍ତାୟମାନ ସୂର୍ଯ୍ୟର ଭାତିକୁ।

କିନ୍ତୁ ହେଲା ନାହିଁ। ବହୁ ଜଳପଥ ଉପରେ ସନ୍ତରଣଶୀଳା ଏଇ ନାରୀର ମନକୁ ମୁଁ ଧରିରଖି ପାରିଲି ନାହିଁ। ତଥାପି ନଧରି ରଖିପାରିବାର ଯେ ଅସାର୍ଥକତା ସେଥିରେ ମୋର ଗ୍ଲାନି ନାହିଁ।

ତାର ଅଶ୍ରୁଧାର ବହିଆସିଥିଲା। ସେତେବେଳେ ସେ ଭାବିଥିଲା ଜଗତରେ ମୁଁ ଏକମାତ୍ର ତାର ସଖା, ମିତ୍ର ଏବଂ ଚକ୍ଷୁମୁଦ୍ରିତ କରି ବିଶ୍ୱର ସମସ୍ତ ପ୍ରଶାନ୍ତିରୁ ମର୍ମକୋଷ ଭିତରେ ସଂଚୟ କରି ସେ ମୋରି ଉପରେ ଆଶ୍ରୟ କରି ରହିଯାଇଥିଲା।

ଘରେ ସ୍ୱାମୀ, ପ୍ରତିଷ୍ଠାବାନ ଓ ଯଶସ୍ୱୀ। ସ୍ୱାମୀର ଆଲୋକରେ ସବିତାର ଉଦ୍‌ଭାସିତ ହେବା କଥା। ମାତ୍ର ସେ ହୋଇପାରୁ ନଥିଲା। ନାରୀ ଯେଉଁ ଅବସର ଟିକକ ସ୍ୱାମୀଠାରୁ ପାଇବା ପାଇଁ ଅଳି କରେ, ତାହା ତାର ଜୀବନରେ ମିଳୁ ନଥିଲା।

ନାରୀ ସୋହାଗ ପୂର୍ଣ୍ଣତମ କଳା। ଏତକ କିଏ ବୁଝେ ? ଟଙ୍କା ପଇସାର କ୍ଷମତାର ଦୁନିଆ ଭିତରେ ସମସ୍ତେ ଧାଇଁଛନ୍ତି। ପୁରୁଷର ପୌରୁଷ ଏତିକିରେ ସୀମିତ, ମାତ୍ର ନାରୀ ମନରେ ଝଙ୍କାର ସୃଷ୍ଟିର ପ୍ରକ୍ରିୟା ଭିନ୍ନ ପ୍ରକାରର।

ଏଇସବୁ ବୁଝେଇଥିଲି ତାକୁ ସେଇ ସଂଧ୍ୟାରେ। ବିଦାୟବେଳେ ମୋ ପଥ–ପୃଷ୍ଠ ଉପରେ ସବିତାର ଚରଣ ଏଇଥର କି ବହୁବାର ପଡ଼ିବ ଜାଣିବାକୁ ଚାହିଁଥିଲି।

ସେ ସଲ୍ଲଜ କଣ୍ଠ ବାଣୀରେ ଆଶ୍ୱାସ ଦେଇ କହିଥିଲା– ସେ ଭୁଲିବ ନାହିଁ, ଜୀବନର ସୁରଭି ଯେ ଦେଇପାରିଲା ସେ ବାହାରେ ପରିଚିତ ନହେଲେ ବି ଅନ୍ତରର ବିମୁଗ୍‌ଧ ଭାବାବେଶ ଭିତରେ ତାର ସତ୍ତା ରହିଥିବ। ଅରୂପର ମୋହ ରୂପଠାରେ ଥାଏ କି ?

ସତ ମଣିଥିଲି। ପ୍ରତ୍ୟେକଟି କଥା ମତେ ବିଚଳିତ କରିଥିଲା। ଭାବିଥିଲି ଏ ଜଗତ ସ୍ୱାଦୁହୀନ କି ବର୍ଣ୍ଣହୀନ ନୁହେଁ।

ସବିତା ମୋ ଠାରୁ ବିଦାୟ ଘେନି ମିଶିଗଲା ରୂପ ଓ ବିଭବଢୌଳ ଜନତା ସହିତ। ତାର ମିଶିବା ଭଙ୍ଗୀ ଦେଖି ମୋ ମନଧନୁର୍ଗୁଣ ଆକର୍ଷି ଉଠିଥିଲା। ତାହା ଜଣେଇଥିଲା– 'ଏ ତୋର ନୁହେଁ, ଏକାନ୍ତ ତୋର ନୁହଁ'।

ଆଜି ସବିତା ମତେ ଦେଖିଲେ ମୁହଁ ଫେରାଇ ଚାଲିଯାଏ। ସେ ସଂଧ୍ୟାର ଅଶ୍ରୁଧାର ଚିରକାଳ ପାଇଁ ତାର ଶୁଖିଯାଇଛି। ତା ଉପରେ ଆଜି ସଭ୍ୟତାର

ଚରମ ପ୍ରସାଧନର ପ୍ରଲେପ ଲାଖିଛି। ସେଠାରେ ନାରୀ ରହିଛି, ନାରୀତ୍ୱ ଲୁଚିଯାଇଛି।

ଟ୍ରେନର ଗତି ବଢ଼ିଛି। ମୋ ସ୍ମୃତିର ଗତି ବି ବଢ଼ିଛି। ଏକ ଅପୂର୍ବ ଶିହରଣ ମୋ ଅଙ୍ଗେ ଅଙ୍ଗେ ଝରିଯାଉଥିଲା।

ଆଉ ଚନ୍ଦ୍ରା? ହସ ମାଡ଼ିଲା। ଏ ନାରୀ ରହସ୍ୟମୟୀ। ମୁଁ ଦିନେ ପଚାରିଥିଲି– 'ଚନ୍ଦ୍ରା, ତୁମର ମୋ ପ୍ରତି ଆକର୍ଷଣର କାରଣ?'

କହି ରଖେଁ, ଚନ୍ଦ୍ରା କିଶୋରୀ, ଏବେ ବିବାହିତା। ଚନ୍ଦ୍ରା ପ୍ରଥମେ କିଛି କହିପାରି ନଥିଲା। ଏଇ ପ୍ରଶ୍ନଟି ମୁଁ ପ୍ରାୟ ପଚାରିଥାଏ। ଆକର୍ଷଣର ହେତୁ ବିଶ୍ଳେଷିତ ହୋଇ ପାରେନି, ମୁଁ ଜାଣେ; ତଥାପି ପଚାରେ ତାକୁ ଟିକିଏ ବିବ୍ରତ କରିବା ପାଇଁ। ଏଇ ବିବ୍ରତ ବୋଧ ଭିତରେ ନାରୀ ମନର ଚିରନ୍ତନ ରହସ୍ୟ ଖେଳିଯାଉଥିବାର ମୁଁ ଲକ୍ଷ୍ୟ କରେ।

ହଁ ମୋ ପ୍ରଶ୍ନର ଉତ୍ତର ଚନ୍ଦ୍ରା ଅନେକ ସମୟ ପରେ ଦେଇଥିଲା ଗୋଟିଏ ଶବ୍ଦରେ– 'ପ୍ରତିଭା'।

ମୁଁ ଖୁବ୍ ହସିଥିଲି, ହସି ହସି ବେଦମ୍ ହୋଇଗଲି। ଚନ୍ଦ୍ରାର ମୁହଁ ଶୁଖିଗଲା। ବୋଧହୁଏ ଭାବିଲା ସେ ଗୋଟାଏ ଅଘଟନ କଥା କହି ପକାଇଛି।

ମୁଁ କେତେବେଳକୁ ଶାନ୍ତ ହେଲି। କହିଲି– ପ୍ରତିଭା! ମୋର ସାଧାରଣ ଜୀବନ ଓ ରୂପ, ପ୍ରବୃତ୍ତି ଓ ବ୍ୟକ୍ତିତ୍ୱ ଉର୍ଦ୍ଧ୍ୱରେ ଯେ ପ୍ରତିଭା ଟିକକ ଅଛି ତାର ଉପାସିକା ତୁମେ?

ଚନ୍ଦ୍ରା ଅସ୍ଥିର ହେଲା– କହିଲା ମୁଁ ଆଉ ବିଶେଷ କିଛି କହି ପାରିବି ନାହିଁ। ଆପଣଙ୍କଠାରେ କଅଣ ଗୋଟାଏ ମିଳେ, କଅଣ ଗୋଟାଏ ରହିଛି, ଯାହା ହୃଦୟକୁ ପ୍ରୀତିପୂର୍ଣ୍ଣ କରିଦିଏ। ଏତିକି ସବୁ।'

ଆଜି ଜୀବନର ଅର୍ଦ୍ଧାଧିକ ପଥ ଅତିକ୍ରମ କରି ଭାବୁଛି ଏମାନେ କଅଣ ମୋ ଜୀବନ ସଙ୍ଗେ କେବଳ ଖେଳ ଖେଳି ଚାଲିଗଲେ? ତାଙ୍କର ଅଲକ୍ତକ ଚରଣ ଚିହ୍ନ କେଉଁଠି ଶାଶ୍ୱତ ଦୀପ୍ତିରେ ମୋ ଜୀବନ ଭୂମିରେ ପଡ଼ିଲା ନାହିଁ?

ଚନ୍ଦ୍ରା ଆଜି ଅର୍ଥ, ଆଭିଜାତ୍ୟରେ ଗରବିଣୀ। ବହୁ ମଧୁପର ଗୁଞ୍ଜନ ଭିତରେ ତାର ଅସ୍ତିତ୍ୱ ଆଜି ପୁଷ୍ପମୟ। କେହି ତାର ଘରକୁ ଗଲେ ସେ ଦେଖାଇ ଦିଏ ତାର ମୂଲ୍ୟବାନ ଚେୟାର ଉପରକୁ, ଆଖିରେ ଚପଳ ନୃତ୍ୟ ଖେଳାଇ ସେ ପଚାରେ– ହାଉ ବିଉଟିଫୁଲ୍? (କି ସୁନ୍ଦର?), ଦେଖାଏ ରେଡ଼ିଓ ସେଟକୁ, କହେ 'ଇଜ୍ ନଟ୍ ଇଟ୍ ଓଣ୍ଡରଫୁଲ'? ଏହା କଅଣ ଅଦ୍ଭୁତ ନୁହେଁ କି?

ଉଠିଲେ ବସିଲେ ଅବିରାମ ତା କାନରେ ପଡ଼େ ତା ଭଳି ମହୀମଣ୍ଡଳରେ ସୁନ୍ଦରୀ କେହି ନାହାନ୍ତି। ତାର ସୁବର୍ଣ୍ଣ କଙ୍କଣ, ବକ୍ଷ, ବାସ ଓ ପାଦ ଯୋତା ଅସହ୍ୟ।

ଏ ନାରୀର ଭ୍ରୂଭଙ୍ଗୀ ମୁଁ ଦେଖିଛି। ଆନତ ତାର ଚକ୍ଷୁ ପତା ତଳେ ଦେଖିଥିଲି ଦେଶର ମୋ ଭଳି ଏକ ନଗଣ୍ୟ ଶିଳ୍ପୀ ପ୍ରତି ପ୍ରଣତ ସମ୍ଭାର। ଦେଖିଥିଲି ପ୍ରତିଭା ପ୍ରତି ତାର ନମସ୍କାର ଭଙ୍ଗୀ।

ଆଜି ସେ ବିବାହିତା। ସମାଜର ଉପର ସ୍ତରର ଶୋଭିତା ତରୁଣୀମାନଙ୍କର ଲଲାମ–ଭୂତା। ରବିବାର ସକାଳେ ସେ ଯାଏ ପ୍ରସାଧିତ ତନୁକୁ ସମୁଜ୍ଜ୍ୱଳ କରି ଇଂରାଜୀ ଛବି ଦେଖିବା ପାଇଁ। ଭାରତୀୟ ଛବି ଦେଖିବାରେ ତାର ବିତୃଷ୍ଣା। ଭାରତୀୟ ସଂସ୍କୃତି ପ୍ରତି ତାର ବିରୂପ ମନୋଭାବ।

ଚନ୍ଦ୍ରା ବଦଳିଛି ଆଉ ଯେପରି ଦଶ ଜଣ ବଦଳିଛନ୍ତି। ତାର ପୋତ ଆଜି ବିକ୍ଷିପ୍ତ ବେଗରେ ସମଗ୍ର ସାଗରଟାକୁ ପଇଁତରା ଦେଉଛି। କେଉଁଠି କେଉଁ ଜଳବେଣୀ ଉପରେ ତାର ପୋତ ନୀରବ ଗତି କରୁଛି କି ବିଶେଷ ଆନ୍ଦୋଳିତ, ସେ ତାହା ପରୀକ୍ଷା କରୁଛି।

ଆସନ ଉପରେ ସଜାଡ଼ି ହୋଇ ବସିଛି। ବୋଧହୁଏ ଷ୍ଟେସନଟିଏ ଆସିଲା। କଳରବ। ଆଶ୍ଚର୍ଯ୍ୟ ହେଲି ମୁଁ, ଏକା ଏଇ ଡବାଟିରେ ବସିଛି। ଭଲ ହୋଇଛି। ପୁଣି ମୁହଁ ଫେରାଇ ଚାହିଁଲି ଦୂର ଦିଗନ୍ତକୁ।

— ନମସ୍କାର

— ଏଁ

— ମୁଁ ଦୀପ୍ତି ?

— ଦୀପ୍ତି ?

— ହଁ, ଆପଣ ବୋଧହୁଏ ଚିହ୍ନିପାରୁ ନାହାନ୍ତି। ଆଇ.ଏସ୍.ସି. କ୍ଲାସରେ ଆପଣଙ୍କ ଛାତ୍ରୀ ଥିଲି। ଜୀବନରେ ଅନେକ ଆଶା ଥିଲା। କ୍ଲାସରେ ଆପଣଙ୍କ ଉଦ୍‌ବୋଧନ ଏବେ ବି ମନେ ଅଛି। କିନ୍ତୁ ସବୁ କୁଆଡ଼େ ଲିଭିଗଲା। ଆପଣ କିମିତି ଅଛନ୍ତି ? ଶୁଣିଲି, ଆପଣ ଗୋଟାଏ ବଡ଼ ଚାକିରି ଛାଡ଼ି ପୁଣି ପୂର୍ବ ଧାରାକୁ ଫେରି ଆସିଛନ୍ତି। ଭଲ ହେଲା। ଏବେ ମତେ ଚିହ୍ନିଲେ ?

ଦୀପ୍ତି ? ସେଇ ସଦା ହାସ୍ୟମୟୀ ଦୀପ୍ତି ? କିନ୍ତୁ ତାର ଏ ବେଶ କାହିଁକି ? ସମସ୍ତଙ୍କୁ ମୁଁ ଉଦ୍‌ବୋଦନ ଦିଏ। ନିଜର ଅନିୟନ୍ତ୍ରିତ ଜୀବନକୁ ଦୃଷ୍ଟି ନଦେଇ ସମସ୍ତଙ୍କୁ ଉତ୍ସାହିତ କରେ। ବିବେକାନନ୍ଦଙ୍କର ବାଣୀ ବୁଝାଏ। ବେଦ ଉପନିଷଦର ସ୍ତୋତ୍ର କହେ। ନିଜ ଉପରେ ବିଶ୍ୱାସ ରଖି ଚାଲିବାକୁ ଉପଦେଶ ଦିଏ। ଦୀପ୍ତି ଭଳି ଶତ ଶତ ଛାତ୍ରଛାତ୍ରୀଙ୍କୁ ସେଇ କଥା କହିଆସିଛି। କିନ୍ତୁ ଦୀପ୍ତିର ଏ ବେଶ କାହିଁକି ?

ମୋ ମନ ଭିତରେ ପଶି ଦୀପ୍ତି ମୋ ହୃଦୟର ଶଙ୍କାକୁଳ ଅବସ୍ଥାକୁ ସହଜ କରି କହିଲା— 'ମୁଁ ବିଭା କରିଥିଲି, ଅଳ୍ପଦିନରେ ସ୍ୱାମୀଙ୍କୁ ହରାଇଲି। ଶାଶୁ ଶଶୁର ଘରୁ ତଡ଼ିଦେଲେ। ଗହଣାଗଣ୍ଠି କିଛି ଦେଲେ ନାହିଁ। ମଫସଲର ଝିଅ। ବାମନ ହୋଇ ଚନ୍ଦ୍ର ଧରିବାକୁ ଚେଷ୍ଟା କରିଥିଲି। ବିଜ୍ଞାନ କ୍ଲାସ ଯାଏ ପଢ଼ି ବିଦ୍ୟାରେ 'ଇତି' କଲି। ମୋ ମନରେ ବିବାହ କରିବାକୁ ଯେତେ ପ୍ରବଣତା ନଥିଲା, ବାପା ବୋଉଙ୍କର ତା ଠାରୁ ବେଶି ଥିଲା। ବହୁତ କଥା ଶୁଣିଲି। ଶେଷରେ 'ହଁ' କରି ବିବାହ ହେଲି।

ବୋହୂପଣିଆ କଲି। ପାହାନ୍ତାରୁ ଉଠି ପୋଖରୀରେ ବୁଡ଼ଟାଏ ଦେଇ ସୂର୍ଯ୍ୟ ବୁଡ଼ିବାଯାଏ ଘରକରଣା କଲି। ରାତିରେ ମଦ୍ୟପ ସ୍ୱାମୀର ସେବା କରୁଥାଏ; କେତେବେଳେ ଉପହାର ମିଳେ ପାଦ ପ୍ରହାର, କେତେବେଳେ ଅସହ୍ୟ ତାଡ଼ନା।

ଦିନେ ସ୍ୱପ୍ନ ଦେଖିଥିଲି ଆଇ.ଏସ୍.ସି. ପାଶ କରି ଆଗକୁ ପଢ଼ି ଡାକ୍ତରାଣୀ ହେବି। ଜନତାର ସେବା କରିବି। କିନ୍ତୁ ଜନତାର ଗୋଟିଏ ପ୍ରତିନିଧି ମୋର ସ୍ୱାମୀଙ୍କୁ ସେବା କରୁ କରୁ ମୁଁ ଅଣନିଶ୍ୱାସୀ ହୋଇଗଲି।

ଗାଁର ଟାଉଟର ମୋ ସ୍ୱାମୀ। ସବୁ ଦୁର୍ନୀତିର ଆଧାର। ଧରନ୍ତି ଖଦଡ଼ ଝୁଲା ମୁଣି, ପିନ୍ଧନ୍ତି ଖଦଡ଼। ଏଇ ପାସ୍‌ପୋର୍ଟରେ ସେ ଦେଖା କରନ୍ତି **ଛୋଟ** ସାହେବଙ୍କୁ, ଆଉ ମନ୍ତ୍ରୀମାନଙ୍କ ଗହଣ କିବା **କଥା ?** କିନ୍ତୁ କାହାରି ଭଲ କଲେ ନାହିଁ, ବରଂ ନିଜ **ଇଜ୍ଜତ**

ମୋ ଇଜ୍ଜତ ଦାଣ୍ଡରେ ପକାଇଲେ। ସେସବୁ ବର୍ଣ୍ଣନା କରିବା ଦରକାର ନାହିଁ। ଆପଣ ଶୁଣୁଛନ୍ତି ତ।

ମୋର ସଂଜ୍ଞା ଫେରି ଆସିଲା। ବୈଧବ୍ୟର ଆବରଣ ଭିତରେ ଦୀପ୍ତି ଝରାଉଛି ଲାବଣ୍ୟର ଔଜ୍ଜଲ୍ୟ। ବାଛିନେଇଛି ସେ ଏକ କର୍ମକ୍ଷେତ୍ର। ଘରୁ ବାହାରି ଆସିଛି; ସେଥିପାଇଁ କଣ୍ଠରେ ଫୁଟି ପଡ଼ିଛି ସାହସ ଓ ଆଶ୍ୱାସର ଭାଷା। ସେଥିପାଇଁ ସ୍ୱର୍ଗସ୍ଥ ସ୍ୱାମୀର ଦୁର୍ନୀତିକୁ ଜଗତ ସମକ୍ଷରେ ପରିଚିତ କରିବା ପାଇଁ ତାର ଏତେ ଟିକିଏ ଦ୍ୱିଧା ନାହିଁ।

ମୁଁ ଅପ୍ରସ୍ତୁତ ହୋଇ କହିଲି– 'ହଁ ଶୁଣୁଛି; କିନ୍ତୁ ତମକୁ ସାନ୍ତ୍ୱନା ଦେବି କଅଣ? ତମେ କଠିନ ହୋଇପାରିଛ, ଦୃପ୍ତ ହୋଇପାରିଛ, ତମର ପଦକ୍ଷେପରେ ରୌଦ୍ର ଛନ୍ଦ ଶୁଣୁଛି– ଏ ଛନ୍ଦ ଓ ମନସ୍ୱିତା ଯଦି ଶେଷ ପର୍ଯ୍ୟନ୍ତ ରହେ, ତେବେ ବୁଝିବି ଆଉ ନଅ ଦଶ ଜଣ ଭିତରେ ତମେ ବ୍ୟତିକ୍ରମ, ଆଉ ତୁମେତ ଜାଣ ଦୀପ୍ତି? ପ୍ରତ୍ୟେକଟି ବ୍ୟତିକ୍ରମ ମତେ ଭଲ ଲାଗେ। ସେଠାରେ ପାଏ ମୁଁ ଅମଡ଼ା ବାଟର ବାଟୋଇକୁ। ତାର ପଥଚଲାକୁ ମୁଁ ସାବାସ ଜଣାଏ।

ଦୀପ୍ତି ଉତ୍‌କର୍ଣ୍ଣ ହୋଇ ଶୁଣୁଥାଏ ମୋ କଥା। ପୂର୍ବର ସେଇ ଅଧ୍ୟାପକ ଢଙ୍ଗର ଉଦ୍‌ବୋଧନ ବଚନ। ସୁଶ୍ରୀ ଏଇ ରମଣୀର ଅଙ୍ଗ ଲତିକାରେ ବିଧବାର ବସନ ଜଡ଼ିରହିଥାଏ। ଗୋଟାଏ ସ୍ନିଗ୍ଧ ଶୁଭ୍ରତାର ପରିଚ୍ଛାୟମାନ ସ୍ୱସ୍ତି ଦୀପ୍ତିର ବାହାର ଓ ଭିତରେ ସୃଷ୍ଟି କରିଥାଏ ଅନବଦ୍ୟ ରୁଚିତା।

ଦୀପ୍ତି କହିଲା– 'ଆପଣଙ୍କୁ ଏକାକୀ ଏଇ ଡବା ଭିତରେ ଦେଖି ଉଠିଆସିଲି। ମୋ ପଛରେ ଶତଚକ୍ଷୁ ଚଲାଫେରା କରୁଛ। ଅଗ୍ନିମୟ ଏଇ ଚକ୍ଷୁରୁ ବଞ୍ଚିବାକୁ ହେଲେ ଆପଣଙ୍କର ଆଶିଷ ମୁଁ ଭିକ୍ଷା କରେ। ସଂଗ୍ରାମକରି କିପରି ଦିନ କଟାଇବି, ଚିନ୍ତାର ବିଷୟ। ନିଜ ଘର ଓ ଶାଶୁଘରର କୌଣସି ବନ୍ଧନ ନାହିଁ। କୋଳରେ ପିଲାଟିଏ ନାହିଁ ଯେ ତାର ମୁହଁକୁ ଚାହିଁ ବାନ୍ଧି ହୋଇଯାନ୍ତି। ସେ ଦିଗରୁ ଦୟାଳୁ ଦେବତା ମତେ ମୁକ୍ତି ଦେଇଛନ୍ତି।

ଆକାଶରେ ଖେଳୁଥିଲା ସୁନେଲି ରଙ୍ଗର ଢେଉ। ମନରେ ଉଙ୍କି ଦେଇଥିଲା ନାରୀ–ଚରିତ୍ରର ଆଉ ଗୋଟିଏ ଧବଳ ଦିଗ। ଯେ ମନ ଉପରେ ଚନ୍ଦ୍ରା, ସବିତା, ମଧୁମତୀ ବଡ଼ ନୃଶଂସ ଭାବରେ କଳା ପରଦା ଟାଣି ଦେଇଗଲେ, ସେ ମନ ବହୁଦିନୁ ଚାହୁଁଥିଲା ସ୍ୱଚ୍ଛତା, ଅବିନଶ ସ୍ୱଚ୍ଛତା।

ଦିଗନ୍ତ ଭରିଯାଇଛି ସମାପ୍ତ ସୂର୍ଯ୍ୟର କିରଣମାଳାରେ। ଏଇ ଏଇ ଶସ୍ୟଶାମଳ ଦିଗନ୍ତ ଶୋଭା। ମଣିଷର ମନ ଏଠି ପାଏ ଅଜ୍ଞେୟର ସ୍ପର୍ଶ, ପାଏ ସ୍ନିଗ୍ଧ ବିସ୍ମୃତି।

ଉଠି ଛିଡ଼ାହେଲି। କହିଲି– 'ଦୀପ୍ତି, କିଛି ଟିକିଏ ମୁହଁରେ ଦିଅ, ସାଙ୍ଗରେ ଫଳ ଆଉ କିଛି ମିଠା ଅଛି। ଦେଉଛି।'

ଦୀପ୍ତି ବାରଣ କଲା। କହିଲା, 'କ୍ଷୁଧା ତୃଷା ମୋର ଅଛି, କିନ୍ତୁ ଏକ୍ଷଣି ନୁହେଁ। ଆପଣଙ୍କ ସଙ୍ଗେ ଦିପଦ କଥା କହେଁ। ସେଇ ମୋର ପରିତୃପ୍ତି।'

ଏଇ ନାରୀକୁ ଚାହିଁଲି। ସବୁ ଶେଷ କରି ଏ ଆସିଛି ଯାତ୍ରାପଥ ଉପରକୁ। ପଥର ସଂଗୀତ ବା ନିଜର କାକଳି ଏହା ଭାଗ୍ୟରେ କିଛି ନାହିଁ। କହିଲି– 'ଜୀବନରେ କଅଣ କରିବାକୁ ସ୍ଥିର କରିଛ, ଆଉ ଯାଉଚ କୁଆଡ଼େ?

ଦୀପ୍ତି ଉତ୍ତର ଦେଲା– ମୁଁ କହିଥିଲି ଯେ ଡାକ୍ତରାଣୀ ହେବା ପାଇଁ ମୋର ଭାରି ଇଚ୍ଛା ଥିଲା। ତାହା ସଫଳ ହେଲା ନାହିଁ। ଓଢ଼ଣା ତଳେ ମୁଁ ସବୁ ପାସୋରି ଦେଲି, ଏବେ ଆଲୋକକୁ ଆସିଛି ସେଇ ସେବାବ୍ରତ ମନରେ ରହିଛି। ସେ ମୋର ଏକପ୍ରକାର ଆକାଙ୍କ୍ଷା। ନର୍ସିଂ ଟ୍ରେନିଂ ନେବି। ସେଥିପାଇଁ ଯାଉଛି।

ମୁଁ କହିଲି– କିନ୍ତୁ–

– 'ମୁଁ ଜାଣେ ଆପଣ ପସନ୍ଦ କରିବେ ନାହିଁ। ମାତ୍ର କରିବି କଅଣ ? ନିଜ ଗୋଡ଼ରେ ମତେ ଛିଡ଼ାହେବାକୁ ପଡ଼ିବ, ଏଣେ ଲୋକ ସେବା ପୁଣ୍ୟବ୍ରତ ପାଳିବା ପାଇଁ ଅନ୍ତର ଡାକୁଛି। ମୋର ଭୟ ନାହିଁ। ସ୍ଥିର ମନରେ ମୁଁ ସିଦ୍ଧାନ୍ତ କରିଛି ନର୍ସିଂ ଟ୍ରେନି ନେବି ଓ ଅତୀତର ଜୀବନକୁ ଭୁଲିଯିବି।'

'ଭୁଲିଯିବ ?' ମୁଁ ଏକ ପ୍ରକାର ଚିତ୍କାର କଲି।

'ହଁ, ଭୁଲିଯିବି। ନଭୁଲିଲେ ମୁଁ ବଞ୍ଚିପାରିବି ନାହିଁ। ସେ ଜୀବନରେ ତ କିଛି ଆଲୋକ ନ ଥିଲା। ଭାଗ୍ୟର ବିଡମ୍ବନା, ବିଜ୍ଞାନ ଛାତ୍ରୀ ବିବାହିତ ଜୀବନର ଯାହାକିଛି ସଂପଦ ଓ ବିପଦ ସବୁ ଗ୍ରହଣ କରିନେବା ପାଇଁ ପ୍ରସ୍ତୁତ ରହିଥିଲି। ମୁଁ ଜାଣିଥିଲି ସେଥିରେ ଜ୍ଞାନ ବିଜ୍ଞାନର ସତ୍ତା ନାହିଁ। ଜଣକର ଦାସୀଭାବରେ ବୟସ ଓ ସମୟ କଟାଇବାକୁ ହେବ ଓ ଗାଁର କେତୁଟା କୁସଂସ୍କାରକୁ ମୁଣ୍ଡ ପାତି ସହି ନେବାକୁ ପଡ଼ିବ। ହୁଏତ ପରେ କିଛି ଶକ୍ତି ଅର୍ଜନ କରିଥିଲି ସ୍ୱାମୀର ସହାୟତାରେ ଗାଁର ଓ ଲୋକଚିତ୍ତର କୁସାଂସ୍କାର ବିରୁଦ୍ଧରେ ଯାଇଥାନ୍ତି। ଭାଗ୍ୟ ତ ଭିନ୍ନ ପଥରେ ଗଲା। ତେଣୁ ମୁଁ ଯାଉଛି ଟ୍ରେନିଂ ନେବି। ତେଣିକି ପଥ ଉପରେ ଶକ୍ତ ଶିଳା ଅଛି କି ଆଉ କଅଣ ଅଛି, ଜଣାଯିବ।

ଟ୍ରେନ୍ ଚାଲଛି। ଆମେ ଦୁଇଟି ଯାତ୍ରୀ ଭାରାକ୍ରାନ୍ତ ହୃଦୟରେ ପରସ୍ପରକୁ ଅନାଇ ରହିଛୁ।

ଦୀପ୍ତିର ଷ୍ଟେସନ ଆସିଗଲା। ସେ ଓହ୍ଲାଇଯିବ। ଲୋକାରଣ୍ୟ ଷ୍ଟେସନରେ ତା'ର ସତ୍ତାଟିକକ ସେ ହରାଇଦେବ, ତା'ପରେ ଜୀବନ ପ୍ରବାହ ତାକୁ କେଉଁଠି କେଉଁ ତୀରରେ ଉପଳ ଖଣ୍ଡ ଭଳି ପକେଇଦେବ, କିଏ ଜାଣେ ?

ଦୀପ୍ତି ଉଠି ନମସ୍କାର କଲା– କହିଲା– 'କୁଆଡ଼େ ମୁଁ ଭାସି ଯାଉଛି, ଖବର ଦେବି। ଯଦି ଆପଣଙ୍କର ସମୟ ଥାଏ ଦୀପ୍ତିର କଥା ଟିକିଏ ଚିନ୍ତା କରିବେ।'

ସେ ଅଦୃଶ୍ୟ ହେଲା। ମୁଁ ନୀରବ ନିସ୍ପନ୍ଦ ଭାବରେ ବସି ରହିଲି। ଏ ନାରୀ ଯାହାର ସଙ୍ଗ ଧରିଛି, ବଡ଼ ଆତ୍ମବିଶ୍ୱାସରେ। ଈଶ୍ୱର ତାର ସହାୟ ହୁଅନ୍ତୁ।

× × ×

ସେହିଦିନଠାରୁ କେତେ ଗଛରେ କେତେ ଫୁଲ ଫୁଟିଲାଣି; କେତେ ଝଡ଼ିଗଲେଣି। ବିନ୍ଦୁ ବିନ୍ଦୁ ଜଳ କେତେ ବହିଯାଇଛି। ସାଗର ତାକୁ ଅଭିବାଦନ କରିନେଇଛି। ମଣିଷ ବହୁ ଆବର୍ତ୍ତରେ ଚକ୍ରତୁଲ୍ୟ ଘୂରିଗଲାଣି। କେଉଁଠି କିଛି ସ୍ଥିର ନାହିଁ। ମଧୁମତୀ, ଚନ୍ଦ୍ରା ଓ ସାବିତ୍ରୀର ଦଳ କେଉଁଆଡ଼େ ଭାସିଗଲେଣି କହିହେବ ନାହିଁ, ଆଉ ଦୀପ୍ତି ?

ଆଉ ଗୋଟିଏ ବର୍ଷର ଶାରଦୀୟ ପ୍ରଭାତ। ପୁଣି ସେଇ ଅସୀମ ଅର୍ଣ୍ଣବର ଅସୀମ ତରଙ୍ଗ ଧରିତ୍ରୀର ବକ୍ଷ ଉପରେ ଖେଳିଯାଇଛି। ଆଜି ମୋ ଜୀବନଯାତ୍ରା କୌଣସି ଟ୍ରେନକୁ ଧରି ସଙ୍ଗୀତମୟ ନୁହେଁ।

ମୁଁ ବସିରହିଛି ଶିଳାଖଣ୍ଡର ଜଡ଼ତ୍ୱ ନେଇ। ଗୋଟିଏ ରିକ୍ତ ଭାବ ହୃଦୟ ମନକୁ ଆଚ୍ଛନ୍ନ କରି ରଖିଛି।

ଖଣ୍ଡିଏ ଟେଲିଗ୍ରାମ ପାଇଲି। ହତ୍‌ବାକ୍ ଓ ନିସ୍ତବ୍ଧ ହୋଇଗଲି। ପୁଣି ଚାଲିଲି ସେଇ ଟ୍ରେନ୍‌ରେ ଯେଉଁ ଟ୍ରେନ ମତେ ଦୁଇବର୍ଷ ତଳେ ଦୀପ୍ତି ଆଡ଼କୁ ନେଇଯାଇଥିଲା।

ନର୍ସ ଛାତ୍ରାବାସ ଲୋକାରଣ୍ୟ। ମୁଁ କଷ୍ଟରେ ଲୋକଭିଡ଼ ଠେଲି ଭିତରକୁ ଗଲି। ଯାହା ଦେଖିଲି ମୋର ଚକ୍ଷୁ ସ୍ଥିର ହୋଇଗଲା। ଜୀବନ ଏତେ ସୁନ୍ଦର ? ମୃତ୍ୟୁରେ ବି ତାର ବର୍ଣ୍ଣ ଏତେ ଚମତ୍କାର ?

ଦୀପ୍ତି ଶୋଇଛି– ଅନ୍ତିମ ନିଦ୍ରାରେ ଅଭିଭୂତା ଏଇ ନାରୀର ଉଜ୍ଜ୍ୱଳ ରୂପ ତଳେ ଉଜ୍ଜ୍ୱଳ ମନ ଆକାଶକୁ ଉଡ଼ିଯାଇଛି।

ସିରିଂଜରେ କିଛି ମାତ୍ରାରେ ମର୍‌ଫିଆ ଅବଶେଷ ରହିଛି। ଛୁଞ୍ଚିର ମୁନଟା ବାହାରି ଆସିପାରି ନାହିଁ। ବେଶ୍ ପ୍ରଶାନ୍ତ ପ୍ରଫୁଲ୍ଲ ମୁହଁ। କେବଳ ଗୋଟାଏ ପାଖକୁ ଢଳିଯାଇଛି।

ଦୁଇଖଣ୍ଡି ଚିଠି ସେ ଲେଖିଯାଇଥିଲା। ଖଣ୍ଡିଏ ପୁଲିସ୍ ଅଫିସରଙ୍କୁ, ଆଉ ଖଣ୍ଡିଏ ମତେ। ତାର ଆତ୍ମହତ୍ୟାରେ କେହି ଦାୟୀ ନୁହଁନ୍ତି ଏଇ ବକ୍ତବ୍ୟ ଥିଲା ପୁଲିସକୁ ଚିଠିରେ ଆଉ ମୋ ପାଖକୁ ଚିଠିରେ ତାର ଯାହା ଶେଷ ନିବେଦନ ମୁଁ ସମସ୍ତଙ୍କ ଆଗରେ ଥୋଇ ଦେଉଛି।

ମାନନୀୟ,

ଏ ଚିଠି ଆପଣଙ୍କ ହାତକୁ ଆସିଲାବେଳକୁ ମୁଁ ପରପାରିକୁ ଚାଲିଯାଇଥିବି। ଶତ ସହସ୍ର ମୃତ୍ୟୁ ଭିତରେ ଦୀପ୍ତିର ମରଣ ଏ ସଂସାରକୁ ଅବାକ୍ କରିବ ନାହିଁ, କିନ୍ତୁ ଅବାକ୍ କରିବ ଆପଣଙ୍କୁ। ସେଦିନ ସେଇ ଟ୍ରେନଯାତ୍ରାରେ ମୋର ଶକ୍ତି ଉପରେ ବିଶ୍ୱାସ ଦେଖି ଆପଣଙ୍କ ଆଖିରୁ ସାଧୁବାଦ୍ ଉଛୁଳି ପଡ଼ିଥିବାର ମୁଁ ଲକ୍ଷ୍ୟ କରିଥିଲି। ସେଇ ଦୀପ୍ତି ଆଜି ଜୀବନକୁ ଆପଣଙ୍କୁ ପ୍ରତାରଣା କରି ଚାଲିଯିବା ପାଇଁ ବସିଛି।

ଗଲାବେଳେ ଅସୁନ୍ଦର କଥା କହିଯିବି ନାହିଁ। ଶେଷ ମୁହୂର୍ତ୍ତ ଆସିବା ପୂର୍ବରୁ ମୁଁ ଈଶ୍ୱରଙ୍କୁ ଧ୍ୟାନ କରୁଛି। ଏ ଜୀବନ ଯେ ଦେଇ ଥିଲେ ତାଙ୍କୁ ହିଁ ଅର୍ପଣ କରୁଛି।

ନର୍ସିଂ ପଢ଼ି ଆସି ମୁଁ ଭୁଲ କରି ନ ଥିଲି। ଭୁଲ କରିଥିଲି ଏ ଦେହ ଯୌବନକୁ ସାଙ୍ଗରେ ଆଣିଥିଲି ବୋଲି। କିନ୍ତୁ କୁହନ୍ତୁ ତ, ଏ ଦୁଇଟାକୁ ଛାଡ଼ି ଆସନ୍ତି କେଉଁଠି ? ଏବେ ଛାଡ଼ି ଦେଉଛି। କାରଣ ଏ ଦୁଇଟାର କର୍କଶ ଭାର ମୋ ମନ ଓ ହୃଦୟ ସହିପାରିଲା ନାହିଁ।

ଥରେ ସିନା ଡାକ୍ତରର ହାତ ଅପରେସନ ଥିଏଟରରେ ଛୁରୀ କଇଁଚି ଦେଉ ଦେଉ ମୋ ଦେହ ସହିତ ବାଜିଗଲା, ସବୁଥର ଯେତେବେଳେ ବାଜିଲା ମୁଁ ଭାବିଲି ଏ ହାତ ଆହୁରି ପ୍ରସାରିତ ହେବ, ମୋର କଣ୍ଠ କଟୀ ଉପରେ ମୋର ନାରୀତ୍ୱକୁ ବି ଗ୍ରାସ କରିଯିବ। ଡାକ୍ତର କଥା ଛାଡ଼ନ୍ତୁ, ସାଧାରଣ ରୋଗୀ ବି ଖୋଲା ମନରେ ଅଭ୍ୟର୍ଥନା କରେ ନାହିଁ ମତେ। ଚାରିଆଡ଼େ ମୋର ଯେପରି ଗୁଞ୍ଜନ ଉଠିଲା– ଦୀପ୍ତି, ଏ ଦେହ ଦେଇଦେ, ଏ ଯୌବନକୁ ବିତରଣ କର। ନର୍ସ ଜୀବନରେ ଏଭଳି ପୁଣ୍ୟରୁ ବଳି ପୁଣ୍ୟ ନାହିଁ। ଯେ ଚାହିଁବ ତାକୁ ସମର୍ପଣ କର।

ଆପଣଙ୍କ ପାଖରେ ଏ ସମସ୍ତ ନିବେଦନ କରିବାର ମୋର ଘୋର ଲଜ୍ଜା ହେଉଛି। କିନ୍ତୁ କଅଣ କରିବି ? ଜୀବନରେ ଆପଣଙ୍କ ପ୍ରତି ଆକର୍ଷଣ ନ ଥିଲା। ଯେତିକି ଥିଲା ନିଷ୍ପ୍ରଭ ଅବସ୍ଥାରେ ଥିଲା, ଗୁରୁ ଶିଷ୍ୟର ସମ୍ବନ୍ଧରେ ଯେତିକି; ଆଜି କିନ୍ତୁ ଏଇ ମରଣ

ମୁହୂର୍ତ୍ତରେ ଆପଣଙ୍କ ପ୍ରତି ମୋର ଆକର୍ଷଣ କେତେ ବଢ଼ିଯାଇଛି କହିହେବ ନାହିଁ। ସେଥିପାଇଁ ସମସ୍ତଙ୍କୁ ଭୁଲିଯାଇ ମୁଁ ବସି ଚିଠି ଲେଖୁଛି ଆପଣଙ୍କ ପାଖକୁ, କାଳେ ଦୀପ୍ତିର ଅନ୍ତିମ ଅବସାନ ମହାନ୍ଧକାରରେ ମିଶିଯିବା ପୂର୍ବରୁ ଫୁଟି ପଡ଼ିବ ଆପଣଙ୍କ ଲେଖନୀରେ ଦୀପ୍ତିର ଅଦୀପ୍ତ ଜୀବନାଲେଖ୍ୟ।

ଦେହଟାକୁ ବଳି ଦେଇଥିଲେ ମୁଁ ବଞ୍ଚି ଯାଇଥାନ୍ତି। ମାତ୍ର ସେଭଳି ବଞ୍ଚିବାରେ ମୁଁ କେବଳ କୃମି କୀଟର ଭୋଗୀ ହେବି ସିନା ଦେବତାର ତ ଭୋଗୀ ହେବି ନାହିଁ।

ମୁଁ ଜାଣେ ମୋର ନର୍ସିଂ ଭଉଣୀମାନେ ମତେ ପିଲାଳିଆ କହିବେ। କାହିଁକି କହିବେ ମୁଁ ଆପଣଙ୍କ ପାଖେ ବ୍ୟକ୍ତ କରିବି ନାହିଁ।

ଆଉ ସମୟ ନାହିଁ। ଲିଡା ବିଲିଡାରେ ସମୟ ସୂତା ଗୁନ୍ଥା ରହିଛି। ଯେ ଲୋକ ମୃତ୍ୟୁକୁ ହାତ ପାଖରେ ରଖି ଚିଠି ଲେଖୁଚି ସେ ହୁଏତ ଟିକିଏ ବିଳମ୍ବ କରିପାରେ। ମୃତ୍ୟୁ ତାର ଆଜ୍ଞାବହ ହୋଇ ରହିଛି। ସେ ମୃତ୍ୟୁର ଆଜ୍ଞାବହ ନୁହେଁ।

ଦଣ୍ଡେ ମାତ୍ର ଆଉ ରହିଲା। ଅଧ ରାତ୍ରିରେ ମୁଁ ଜୀବନ ଉଦ୍‌ଯାପନ କରୁଛି। ପାହାନ୍ତିଆ ହୋଇ ଆସିଲେ ମରିପାରିବି ନାହିଁ। ତେଣିକି ଦେହ ମୋ ମନର ଜୋରକୁ ଆୟତ୍ତ କରିଦେବ। ମୁଁ ବହୁ ଭୋଗୀ ହୋଇଯିବି।

ଦେହକୁ ଶୀତ ଲାଗୁଛି। ମର୍ଫିଆ ସିରିଞ୍ଜରେ ରହି ସାରିଛି। ପ୍ରଚ୍ଛନ୍ନ ମୃତ୍ୟୁ ଗୋଟାଏ ସାମାନ୍ୟ କାଚନଳୀ ଭିତରେ ମୁଁ ରଖିପାରିଛି। ହାଃ—ହାଃ—ହାଃ।

ଷ୍ଟାଇପେଣ୍ଡ ଟଙ୍କା ଟ୍ରଙ୍କରେ ରହିଛି— ଖୋଲା ଟ୍ରଙ୍କ। ଆପଣ ସେତକ ମୋର ଶବ ଉଠିଯିବା ପରେ ରାସ୍ତାରେ ଯେଉଁ ଗରୀବ ଦୁଃସ୍ଥ ପ୍ରାଣୀକୁ ଦେଖିବେ ଆପଣଙ୍କ ବିଚାରରେ ତାକୁ ଦେଇ ଦେବେ।

ମୋର ଶାଢ଼ି ବ୍ଲାଉଜ କିଛି ଅଛି। ସେଗୁଡ଼ାକ ସେହିପରି ବିତରଣ କରିଦେବେ

ଆପଣଙ୍କୁ କଷ୍ଟ ଦେଲି। ମୁଁ ଜାଣେ ଆପଣଙ୍କୁ ଅନେକେ କଷ୍ଟ ଦେଇଛନ୍ତି ଓ ଦେଉଛନ୍ତି। କିନ୍ତୁ ସେମାନେ ଜୀବନରେ ଅଛନ୍ତି। ଜୀବନର ମୋହ ତାଙ୍କୁ ପରାମର୍ଶ ଦେଇଛି ଆପଣଙ୍କୁ ଆଘାତ କରିବାକୁ।

ମୁଁ କିନ୍ତୁ ଆଉ କ୍ଷଣ ପରେ ଶବ ପାଲଟିବି। ଦୀପ୍ତି ଯେ କଷ୍ଟ ଦେଲା, ତାହାକୁ କଷ୍ଟ ବୋଲି ଆପଣ ଭାବିବେ ନାହିଁ।

ଏଇ ଅନ୍ତିମ କ୍ଷଣରେ ଆପଣଙ୍କ ପାଇଁ ମୋର ଆକର୍ଷଣ ଖୁବ୍ ବଢ଼ିଯାଇଛି, ଆଉ ବଢ଼ିଛି ଜନ୍ମଦାତା ଭଗବାନଙ୍କ ପାଇଁ।

ରହିଲି। ଅନ୍ତିମ ବେଳରେ ନମସ୍କାର ନିଅନ୍ତୁ। ମୋର ଅବିସ୍ମରଣୀୟ କିଛି ନାହିଁ ଯାହାକି ସ୍ମୃତି— ଫଳକରେ ଝଲସିଉଠିବ। ମୁଁ ଆପଣଙ୍କୁ ଭୁଲି ପାରିବି ନାହିଁ। ଜୀବନରେ ଥିଲେ ମତେ ବୋଧହୁଏ ଅବିଶ୍ୱାସ କରନ୍ତେ ? ନା, ମୁଁ ମୁକ୍ତ ଓ ପରପାରରେ... ଆଃ, କି ଶାନ୍ତି...

ପରପାରର
"ଦୀପ୍ତି"



# ଗୋଟିଏ ତାରିଖ

'ନୀଳତରଙ୍ଗ ସେବାସଦନ'ର ପ୍ରଧାନ ସେବିକା ମଧୁମତୀ ବଡ଼ ବିମର୍ଷ ଦେଖାଯାଉଥିଲେ। ତାଙ୍କର ସ୍ୱଚ୍ଛନ୍ଦ ସ୍ୱାଭାବିକ ସ୍ଫୂର୍ତ୍ତି, ତାଙ୍କର ମୁଖମଣ୍ଡଳର ପ୍ରସନ୍ନ ଦୀପ୍ତି ଆଜି କାହିଁକି ସଂପୂର୍ଣ୍ଣଭାବରେ ମଉଳି ଯାଇଛି। ଯେଉଁ ମଧୁମତୀଙ୍କର ପ୍ରତିଟି କଥାରେ ଅମୃତ ଝରୁଥାଏ, ଯାହାଙ୍କର ନେତ୍ରତୀରରେ ଖେଳିବୁଲୁଥାଏ ସେବାପରାୟଣତାର ଅନନ୍ତ ପ୍ରୀତି, ସେହି ମଧୁମତୀ ଆଜି ବଡ଼ ଉଦାସ, ପ୍ରାଣହୀନ।

ସମଗ୍ର ହାସପାତାଳରେ ଗୋଟିଏ ଭୟକାତର ପରିବେଶ ସୃଷ୍ଟି ହୋଇଛି। ନର୍ସମାନେ ମୁହଁକୁ ତଳକୁ ପୋତି ନିଜ ନିଜ କାର୍ଯ୍ୟରେ ତତ୍ପର ଅଛନ୍ତି ସତ ମାତ୍ର ତାଙ୍କ ପ୍ରାଣରେ ସରସ ଶାନ୍ତ ଭାବ ନାହିଁ। ରୋଗୀମାନଙ୍କର ଅଶ୍ରାନ୍ତ ଚିତ୍କାର ତଳେ ଏହି ନୀଳ–ତରଙ୍ଗ–ସେବା–ସଦନ ଯେପରି ଗୋଟିଏ ପ୍ରେତସ୍ଥଳୀଭାବରେ କମ୍ପିଯାଉଛି। ରୋଗୀମାନଙ୍କୁ ମରଣ–ପଥରୁ ଟାଣି ଆଣିବା ପ୍ରୟାସରେ ଡାକ୍ତର, ନର୍ସ ଓ ପ୍ରଧାନ ସେବିକାଙ୍କର ପ୍ରାଣରେ ଯେ ଆତ୍ମପ୍ରତ୍ୟୟ ଏତେଦିନ ସଞ୍ଜୀବିତ ରହିଥିଲା, ଆଜି ଯେପରି ତାହା ନିଃଶେଷ ହୋଇ ଯାଇଛି।

ହାସପାତାଳର ଚତୁଃସୀମା ସ୍ପର୍ଶ କରି ଛିଡ଼ା ହୋଇଛନ୍ତି ପ୍ରକାଣ୍ଡ ବୃକ୍ଷରାଜି, ଦୀର୍ଘକାଳର ଆୟୁ ଘେନି ଏମାନେ ଉଭା ହୋଇଛନ୍ତି– ଏଇ ସ୍ଥାବର ପାଦପ। ଘନ ଅନ୍ଧକାର ରାତ୍ରିରେ ଘନୀଭୂତ ଅନ୍ଧକାରକୁ ପତ୍ରଶାଖାର ପ୍ରାନ୍ତେ ପ୍ରାନ୍ତେ ବହନ କରି ଏହି ଦ୍ରୁମଗୁଡ଼ିକ ଜୀବନ ଓ ମୃତ୍ୟୁର ଲୀଳା ଦେଖୁଛନ୍ତି। ଜୀବନର ପରପାରକୁ ଯାତ୍ରା କରିବା ପାଇଁ କେତେ ହତାଶ ରୋଗୀ ଏଇମାନଙ୍କର ଶାଖାରୁ ଓହଳି ପଡ଼ିଥିବେ। ଅସହ୍ୟ ଯନ୍ତ୍ରଣାରୁ ମୁକ୍ତି, ତା'ପରେ ସବୁ ଶୂନ୍ୟ। ଆଜି ଏଇ ବୃକ୍ଷ ଡାଳର ରୂପ ଦୀର୍ଘାକୃତି ରାକ୍ଷସର ରୂପ ଧରିଛି। ଓଃ କି ଭୟଙ୍କର, କି ବୀଭତ୍ସ, କି ଘନକୃଷ୍ଣ ରୂପ!!

ନୀଳତରଙ୍ଗ ସେବା-ସଦନ' ଗୋଟିଏ ପ୍ରତିଷ୍ଠିତ ଆରୋଗ୍ୟ ନିକେତନ। ଦୁଇଟି ନାମ ନୀଳ ଓ ତରଙ୍ଗ। ପୁରୁଷ ଓ ନାରୀ, ସ୍ୱାମୀ ଓ ସ୍ତ୍ରୀ। ଜମିଦାର ନୀଳକାନ୍ତ ଓ ତାଙ୍କର ସହଧର୍ମିଣୀ ତରଙ୍ଗିଣୀ କେଉଁ ଦିନରୁ ମାଟି ଉପରେ ଶୋଇଯାଇଛନ୍ତି। ପୀଡ଼ିତ ଜନତାର କଲ୍ୟାଣ ପାଇଁ ଏ ଦୁଇଜଣ ସଞ୍ଚିତ ଅର୍ଥକୁ ବିନିଯୋଗ କରିଦେଲେ ସେବା–ସଦନର ନିର୍ମାଣରେ।

ଏହାରି ଅଫିସ ରୁମରେ ବସିଥିଲେ ଡାକ୍ତର ସୁଧର୍ମ, ହାସପାତାଳର ସର୍ବାଧିକାରୀ ସର୍ଜନ। ଅଧର–ଧରା ସିଗାରେଟ ପୋଡ଼ି ପୋଡ଼ି ଭସ୍ମ ହୋଇଯାଉଛି। ପ୍ରଚକ୍ଷୁ ତଳେ ତାଙ୍କର ବିସ୍ଫୋରିତ ନେତ୍ରଯୁଗଳ ଶୂନ୍ୟକୁ ଅବଲୋକନ କରୁଥିଲା।

ସେ ଚିନ୍ତିତ। ଛୋଟ କଳା ଶ୍ମଶ୍ରୁଉପରେ ହାତ ବୁଲାଇ ଆଣି ସେ ବୋଧହୁଏ କେଉଁ ଅଦୃଶ୍ୟ ଲୋକ ଭିତରେ ସନ୍ତରଣ କରୁଥିଲେ। ଏହି ସ୍ଥିତିପ୍ରଜ୍ଞ ଚିକିତ୍ସକଙ୍କର ଏପରି ଭାବ ବୁଝିବା ପାଇଁ ବୋଧହୁଏ କାହାର ଶକ୍ତି ନଥିଲା।

ଥିଲା କେବଳ ମଧୁମତୀଙ୍କର ଆଉ ପୁଷ୍ପରାଣୀଙ୍କର। ଲେଡ଼ିଡକ୍ଟର ମଧୁମତୀ ଆଉ ପ୍ରଧାନ

ନର୍ସ ପୁଷ୍ପରାଣୀ ଜାଣନ୍ତି ଆଧୁନିକ ଚିକିତ୍ସା ବିଦ୍ୟାରେ ଆଜି ଏକ ବିଷମ ସମସ୍ୟା ଉପସ୍ଥିତ ହୋଇଛି; ଯାହାର ସମାଧାନ କରିବା ଡକ୍ଟର ସୁଧର୍ମ କିମ୍ବା ମଧୁମତୀ ଅବା ଆଉ କାହା ପକ୍ଷରେ ସମ୍ଭବ ନୁହେଁ। ଅଥଚ ଏହି ମୁହୂର୍ତ୍ତରେ ଏହାର ଗୋଟିଏ ମୀମାଂସା ନ ହେଲେ ନୀଳତରଙ୍ଗ–ସେବା–ସଦନର ସୁନାମ ଉପରେ ବଜ୍ରାଘାତ ହୋଇଯିବ।

ଆଗରେ ନିଶ୍ଚଳ ମୂର୍ତ୍ତି ଭଳି ବସିରହିଥିବା ସୁଧର୍ମଙ୍କ ଆଡ଼େ ପୁଷ୍ପ ଚାହିଁ କହିଲେ–

– 'ସାର୍'

ସୁଧର୍ମ ଧୀରେ ସଂବିତ୍ ଫେରିପାଇଲେ– କହିଲେ– 'କଅଣ ସିଷ୍ଟର ? ରୋଗୀମାନେ କିପରି ଅଛନ୍ତି ?' ପୁଷ୍ପ ଉତ୍ତର ଦେଲେ– 'ସାର୍, ରୋଗୀମାନେ ପୂର୍ବ ଭଳି ରହିଛନ୍ତି, ଠିକ୍ ପୂର୍ବର ଅବସ୍ଥା।'

ଏହି ଉତ୍ତରରେ ଡାକ୍ତରଙ୍କର ଚକ୍ଷୁ ଦୁଇଟି ଆହୁରି ନିଷ୍ପ୍ରଭ ହୋଇଗଲା। ସେ ପ୍ରଶ୍ନ କଲେ– 'ଠିକ୍ ପୂର୍ବର ଅବସ୍ଥା ?'

ଘରର ଗୋଟିଏ କୋଣରେ ସେବାସଦନର କଲ୍ୟାଣମୟୀ ମଧୁମତୀ ଛିଡ଼ାହୋଇଥିଲେ। ଯେପରି ଖଣ୍ଡେ ପଥର। ସେ ଚଞ୍ଚଳ ହୋଇ କହିଲେ– 'ହଁ ସାର୍, ମନେହେଉଛି ପୃଥିବୀର ଚିକିତ୍ସା ଇତିହାସରେ ଏଭଳି ଅଭିନବ ପ୍ରବ୍ଲେମ୍, ଏପରି ସମସ୍ୟା କୌଣସି ଚିକିତ୍ସକଙ୍କୁ କେବେ ହେଲେ ବିବ୍ରତ କରିନଥିଲା।'

ଡାକ୍ତର ସୁଧର୍ମ ଅନ୍ତରମୁକୁଳା ଦୀର୍ଘଶ୍ୱାସ ପକାଇ କହିଲେ– 'ହଁ ମଧୁ, ରୋଗ ହୋଇଥିଲେ ମୁଁ ଚିକିତ୍ସା କରନ୍ତି। ସେ ଚିକିତ୍ସାରେ କିଛି ତ୍ରୁଟି କାଢ଼ିବାକୁ କେହି ସାହସ କରନ୍ତେ ନାହିଁ। ସେ ହୁଅନ୍ତା ଅବ୍ୟର୍ଥ। ଗଳା, ନାକ, ଚକ୍ଷୁ, କଣ୍ଠ ହୃତ୍‌ପିଣ୍ଡ ଏପରିକି ବ୍ରେନ୍, ଯକୃତ, ମସ୍ତିଷ୍କ–ବିକାର, ମନୋବିକଳନ ଯେ ପ୍ରକାର ବ୍ୟାଧି ହେଉନା କାହିଁକି ମୁଁ ଦୃଢ଼ବିଶ୍ୱାସ ସହିତ ଚିକିତ୍ସା କରନ୍ତି। କିନ୍ତୁ ନାଃ, ଏ ବ୍ୟାଧି ଏତେ ଅଜ୍ଞାତ, ସମୁଦାୟ ଚିକିତ୍ସା ଶାସ୍ତ୍ରର ଅନୁଶୀଳନରେ ଏହାର ପ୍ରମାଣ ନାହିଁ। ମଣିଷର କୌଣସି ଅଙ୍ଗକୁ ବ୍ୟାପୃତ କରି ଏ ବ୍ୟାଧି ଜନ୍ମ ନେଇ ନାହିଁ– ଏ ଯେପରି ଏକ ମହାକାଳ, କାଳମୃତ୍ୟୁ...

ହଠାତ୍ ସେବାସଦନକୁ ପ୍ରକମ୍ପିତ କରି ଚିତ୍‌କାର ଉଠିଲା– "ଆମେ ସୁସ୍ଥ ହୋଇଯାଇଛୁ, ଆମକୁ ହାସପାତାଲ୍‌ରୁ ଡିସ୍‌ଚାର୍ଯ କର, ଆମକୁ ସେଇ ତାରିଖରେ ସେଠାରେ ପହଞ୍ଚିବାକୁ ହେବ, ସେ ତାରିଖ, ସେଦିନ ଗଡ଼ିଗଲେ, ଆମେ ନିରାଶ ହୋଇଯିବୁ; ଆମକୁ ଛାଡ଼... ଆମକୁ ଛାଡ଼... ଏ ଡାକ୍ତର ନର୍ସଗୁଡ଼ାଙ୍କୁ ଆମ ଆଖି ଆଗରୁ ହଟାଅ...

ଜଡ଼ୀଭୂତ ପ୍ରସ୍ତର ମୂର୍ତ୍ତି ଭଳି ତିନୋଟି ପ୍ରାଣୀ ସେଠାରେ ରୁଦ୍ଧଶ୍ୱାସରେ ଛିଡ଼ାହୋଇଥିଲେ। ହାସ୍‌ପାତାଲର ସବୁ ଓ୍ୱାର୍ଡ଼ରୁ ଏକା ଚିତ୍‌କାର... ଏକା ସ୍ୱର ଭାସିଆସୁଛି। ଜର, ଯକ୍ଷ୍ମା, ବିସୂଚିକା, ବସନ୍ତ ଆଉ ନାନା ଅଙ୍ଗବ୍ୟବଚ୍ଛେଦର ବହୁ ରୋଗୀ ଏକତ୍ର ଚିତ୍‌କାର କରୁଛନ୍ତି– 'ଆମେ ସୁସ୍ଥ, ଆମକୁ ଡିସ୍‌ଚାର୍ଯ କର, ଆମେ ସେଇ ନିର୍ଦ୍ଦିଷ୍ଟ ତାରିଖରେ ସେଠାରେ ପହଞ୍ଚିବୁ। କେତେ ସୁନ୍ଦର ସେଇ ତାରିଖଟି...।

ସୁଧର୍ମଙ୍କର ବଦନମଣ୍ଡଳରେ ହଠାତ୍ ଏକ ମହା ନିଷ୍ପତ୍ତିର ଜ୍ୟୋତି ବିକୀର୍ଣ୍ଣ ହୋଇଗଲା। ସେ ଅବନତ ହୃଦୟକୁ ଶକ୍ତ କରି ଛିଡ଼ା ହୋଇପଡ଼ି କହିଲେ– ମଧୁ, ଆଉ ସିଷ୍ଟର, ଆସ ପଚାରିବା। ସେହି ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ଲୋକଙ୍କୁ ପଚାରିବା ଏ ଚିତ୍‌କାରର ତାତ୍ପର୍ଯ୍ୟ କଅଣ ? ସେ ତାରିଖର ରହସ୍ୟ କଅଣ ? ଆସ।

ପ୍ରଥମେ ପଡ଼ିଲା ସର୍ଜିକାଲ ଓ୍ୱାର୍ଡ଼। ସେହି ପ୍ରକୋଷ୍ଠକୁ ପଶିବାମାତ୍ରେ ଜଣେ ରୋଗୀ, ଯାହାର ଆପାଦ ମସ୍ତକ ପ୍ଲାଷ୍ଟରରେ ବନ୍ଧା, ସେ ଚିତ୍କାର କରି ଉଠିବାକୁ ଚେଷ୍ଟାକଲା। ସୁଧର୍ମ ଦଉଡ଼ି ଯାଇ ତାକୁ ଧରି କହିଲେ– 'ତୁମେ ଉଠ ନାହିଁ, ତୁମକୁ ଡିସ୍‌ଚାର୍ଯ କରିବା ମୋର ପାପ ହେବ, ତୁମର ହାତ ନାହିଁ, ଗୋଡ଼ ନାହିଁ, କେବଳ ଆଖି ଦୁଇଟି ରହିଛି, ତୁମେ ଯିବ କୁଆଡ଼େ ?'

ରୋଗୀଟି ଘର ଫଟାଇ ହସି ହସି କହିଲା– ମୋର ଅଙ୍ଗ ନାହିଁ, ମୁଁ ଚାଲିପାରିବି ନାହିଁ; କିନ୍ତୁ ମୋର ଇଚ୍ଛା ? ସେଇ ଯେ ଅଭିଳାଷ ? ସେଇ ଯେ ଦୁର୍ଦ୍ଦମ ଲାଳସା ଦିନେ ଆଲେକଜାଣ୍ଡରକୁ ଭାରତବର୍ଷକୁ ଟାଣି ଆଣିଥିଲା, ସେଇ ଯେ ଦୂରତିକ୍ରମ୍ୟ ବିଜୟୀ ଭାବ ହର ହିଟ୍‌ଲର ଆଉ ମୁସୋଲିନୀଙ୍କୁ ବିଶ୍ୱବିଜୟ କରିବାକୁ ବଳ ଯୋଗାଇଥିଲା।, ସେଇ ଇଚ୍ଛାଶକ୍ତି ମୋ ହୃଦୟରେ ମହାତରଙ୍ଗ ପିଟୁଛି। ସେ ହୁଏତ ଏଇ ନୀଳତରଙ୍ଗ–ସେବା–ସଦନକୁ ବୁଡ଼ାଇ ପକାଇବ। ତୁମେ ଡାକ୍ତର କାହୁଁ ବୁଝିବ ଅଭିଳାଷର କଥା ? ଲାଳସାର କଥା। ଆଃ– ଗୋଟାଏ ତାରିଖ ଆସୁଛି, ଏଇ ଦେଖ ସିଷ୍ଟର ସେଇ କାଲେଣ୍ଡରରେ ସେଇ ଲାଲ ଗୋଲ ଗାର। ମୁଁ ଦେଇ ନାହିଁ, କାରଣ ମୋ ଅଙ୍ଗ ନାହିଁ। ତେବେ କିଏ ଦେଇଛି, ମୁଁ ଜାଣେ ନାହିଁ। ସେଇ ତାରିଖ ଆସୁଛି ଆମକୁ ଛାଡ଼– ସେଇ ସୁନ୍ଦର ତାରିଖଟି–

ମଧୁମତୀ, ପୁଷ୍ପ ଆଉ ସୁଧର୍ମ ପରସ୍ପରକୁ ଚାହିଁଲେ। ନିର୍ବାକ ତିନୋଟି ବ୍ୟକ୍ତି ଗଲେ ମେଡ଼ିକାଲ ଓ୍ୱାର୍ଡ଼କୁ। ସେ ଘରେ ପଶୁ ପଶୁ ସେମାନେ ରୋଗୀମାନଙ୍କ ଚିତ୍କାର ଶୁଣିଲେ– କେହି ଜଣେ କହୁଥିଲା–

"ମୁଁ ଦିନେ ନେତୃତ୍ୱ ଦେଉଥିଲି। ମୋରି ଚାରିପଟେ ଘୂରି ବସୁଥିଲେ ଅଜସ୍ର ତୋଷାମଦକାରୀ। ମୋର ଆହାରରୁ ତଣ୍ଡୁଳଟିଏ ଖସିଲେ କୋଣାର୍କର ଶୀର୍ଷ ପଥର ଖସିଲା ବୋଲି ସମସ୍ତେ ଭୟ ଚକିତ ହୋଇଯାଉଥିଲେ। ମୁଁ ଯେଉଁଠି ବସେ, ସେ ସ୍ଥାନ ଉପରେ ଆଖି ପଡୁଥିଲା ହଜାର ଅନ୍ଧଙ୍କର। ଅନ୍ଧ ପୁଣି ଆଖି ? କଥାଟାକୁ ବୁଝି ପାରୁନ; ମୁଁ ଡାକ୍ତର। ଏବେ ମତେ ୧୦୫ ଡିଗ୍ରୀ ଜର। କିନ୍ତୁ ମୋର ଇଚ୍ଛା ? ମୋର ଅଭିଳାଷ ? ସେ ତ ଲକ୍ଷେ ଡିଗ୍ରୀ ଉପରେ ? ତାକୁ ପ୍ରଶମିତ କରିପାରିବ ? ଆମକୁ ଛାଡ଼ ଡାକ୍ତର, ସେଇ ସୁନ୍ଦର ତାରିଖଟି ପ୍ରାୟ ଆସିଗଲା। ସେ ଆସୁଛି ଶୂନ୍ୟ ଘଣ୍ଟା ଉପରେ ଦୋହଲି ଦୋହଲି– ସେ ଆସୁଛି।

ଓ୍ୱାର୍ଡ଼ ପରେ ଓ୍ୱାର୍ଡ଼– ଏକା କଥା; ଆମର ଇଚ୍ଛା, ଅଭିଳାଷ, ଆମକୁ ଡିସଚାର୍ଯ କର। କଥା ବୁଝିହେଉ ନାହିଁ। ସବୁ ରୋଗୀ କଅଣ ପାଗଳ ହୋଇଗଲେ ? ଚିନ୍ତା, ବିସ୍ମୟ ଓ ଅଶାନ୍ତି ଘେନି ତିନି ଚିକିତ୍ସକ କେବଳ ଶୂନ୍ୟକୁ ଚାହିଁ ରହିଲେ କିଛି ଗୋଟାଏ ଭୟାବହ ଦୁର୍ଘଟଣାର ପ୍ରତୀକ୍ଷାରେ–

ସେହି ରାତ୍ରିର ଅନ୍ଧକାର ଭେଦିଉଠିଲା ଗଗନମଣ୍ଡଳରେ ଭୋଜବାଜି ଭଳି ଆତସବାଜିର ସମାରୋହ। ଦିଗଦିଗନ୍ତ ଜ୍ୟୋତିର୍ମୟ ହେଲା। କେତେ ପ୍ରକାର ଆତସବାଜି ! କେତେ ସୁନ୍ଦର ଚିତ୍ର, ହାବେଲି, ଚମ୍ପା, ସବୁ ଉପରକୁ ଉଠିଲେ, ରଶ୍ମି ଝରେଇଲେ, ଶେଷରେ ପ୍ରକମ୍ପ ତୋଳି ଶୂନ୍ୟ ମାର୍ଗରେ ଫାଟି ପଡ଼ିଲେ। ସେଇ ଜ୍ୟୋତିରେଖାର ଝୁଲ କ୍ରମେ ଅନ୍ତରୀକ୍ଷରୁ ଖସି ଆସି ଝରିପଡ଼ିଲା ନୀଳ–ତରଙ୍ଗ–ସେବାସଦନ ଉପରେ।

ଚାହୁଁ ଚାହୁଁ ବସନ୍ତ ରାଗରେ ବାଜିଉଠିଲା ସାହାନାଇର ସପ୍ତସ୍ୱର। ସଙ୍ଗୀତର ଉର୍ମିମାଳା ଛନ୍ଦେ ଛନ୍ଦେ ସଞ୍ଚରିଗଲା, ସେବାସଦନର ପ୍ରତି ରନ୍ଧ୍ର ଭିତରେ ପ୍ରତିଧ୍ୱନିତ ହେଲା, ବସନ୍ତ, ବେହାଗ କେତେ ରାଗ–ରାଗିଣୀ।

ମହୋଜ୍ଜ୍ୱଳ ପଟୁଆର। ବିବାହର ଶୋଭାଯାତ୍ରା। ଲୋକେ ଚାଲିଛନ୍ତି, ବାଜା ବାଜୁଛି; ଆନନ୍ଦ, ଅପ୍ରମତ୍ତ ଆନନ୍ଦ।

ହଠାତ୍ ସେବାସଦନର ଭିତ୍ତିମୂଳକୁ ଦୋହଲାଇ ଦେଇ ଘନ ପ୍ରକମ୍ପିତ ହେଲା ଚିତ୍କାର, ଆମେ ସୁସ୍ଥ, ଆମର ଲାଳସା ବହ୍ନିମୟ, ଆମକୁ ଛାଡ଼, ସେଇ ପ୍ରତୀକ୍ଷିତ ତାରିଖ ଆସିଗଲା। ଆମକୁ କେହି ରଖିପାରିବେ ନାହିଁ।

ଗୋଟାଏ ହାବେଳୀର ବିଦୀର୍ଣ୍ଣ ବଜ୍ରନାଦରେ ସମଗ୍ର ହାସପାତାଳର ଆଲୋକମାଳା ନିଶ୍ଚିହ୍ନ ହୋଇଗଲା। ଅନ୍ଧକାର– ବିସ୍ତୃତ ମସୀପଟଳର ଭୟଙ୍କର ରୂପ।

ଆମର ନିତିଦିନିଆ ସୁନ୍ଦର ସୂର୍ଯ୍ୟଟି ଉଇଁଆସିଲା। ଦେଖୁ ଦେଖୁ ଗୋଟିଏ ନୂଆ ଦିନର ନବଜନ୍ମ ହେଲା।

ସେହି ପ୍ରଭାତର ଅସ୍ପଷ୍ଟ ଆଲୋକରେ ବିବ୍ରତ ଭୟଚକିତ ଡାକ୍ତର ସୁଧର୍ମଙ୍କର ଦୁଇଗଣ୍ଡ ଦେଇ ଅଶ୍ରୁ ପ୍ରବାହିତ ହେଉଥିଲା। ମଧୁମତୀ ଓ ପୁଷ୍ପ ବସି ରହିଥିଲେ ସ୍ଥାଣୁ ଓ ପ୍ରସ୍ତରଖୋଦିତ ମୂର୍ତ୍ତି ଭଳି।

ଆଗରେ ଛିଡ଼ାହୋଇଥିଲେ ଜଣେ ଜୀର୍ଣ୍ଣବାସ ପରିହିତ ଭିକ୍ଷୁକ। ସେ କହୁଥିଲେ–

'ମହାଶୟ ମୁଁ ଦେଖିଲାବେଳକୁ ଆପଣଙ୍କ ରୋଗୀମାନେ ଖାଦ୍ୟ ଖାଇ ସାରିଥିଲେ। ସେମାନେ ତ ମଣିଷ ଭଳି ଖାଉ ନଥିଲେ। ଶହେବର୍ଷର ବୁଭୁକ୍ଷା ଘେନି ସେମାନେ ପତ୍ର ଅଣ୍ଡାଳୁଥିଲେ।

ସୁଧର୍ମ ଜଡ଼ିତ କଣ୍ଠରେ କହିଲେ– ଖାଦ୍ୟ?

'ହଁ ମହାଶୟ, ଭୋଜି! ଦେଶର ଜଣେ କୋଟିପତିଙ୍କର ପୁଅର ବିବାହରେ ଆପଣଙ୍କ ରୋଗୀମାନେ ଯୋଗ ଦେଇଥିଲେ। ଯୋଗ ତ ନୁହେଁ, ସେ ଯେ କି ଉପଭୋଗ କଥାରେ କହିହେବ ନାହିଁ।

ମଧୁମତୀ ଆତଙ୍କିତ ହୋଇ ପଚାରିଲେ– ଏମାନେ ଗଲେ କିପରି? ଅନ୍ଧ, ପଙ୍ଗୁ, ଅଥର୍ବ ଦେହରେ ୧୦୫ ଡିଗ୍ରୀ ଉତ୍ତାପ ଧରି? କାହାର ଗୋଡ଼ କଟିଛି, କାହାର ଅନ୍ତନାଡ଼ିରେ କ୍ଷତ? କାହାର ହାଡ଼ ଭାଙ୍ଗିଛି, କିଏ କ୍ଷୟକାଶର ବୀଜାଣୁରେ ଅର୍ଦ୍ଧମୃତ। ଏମାନେ ଚାଲିବା ଶକ୍ତି ପାଇଲେ କିପରି? ଆଉ ଭୋଜି! ହାୟ, ପ୍ରଭୁ!

ଭିକ୍ଷୁକ ସ୍ମିତ ହାସ୍ୟ କରି କହିଲେ– ଆପଣ କଅଣ ବିଶ୍ୱାସ କରୁଛନ୍ତି ସେମାନେ ସତେ ଯାଇଥିଲେ? ସେମାନଙ୍କର ଅତୃପ୍ତ ଆତ୍ମା ଯାଇଥିଲା। ଏବେ ଦେଖନ୍ତୁ, ହାସପାତାଳର ପ୍ରତ୍ୟେକ ବିଛଣାରେ ରୋଗୀ ନିଦ୍ରିତ। ତାଙ୍କର ବାସନା ଯେପରି ଶାନ୍ତ ହେଲା ଭଳି ମନେ ହେଉଛି। କିନ୍ତୁ ଏ ଶାନ୍ତି ଶ୍ମଶାନର ଶାନ୍ତି ହୋଇପାରେ। ସାବଧାନ ଥିବେ।

ସୁଧର୍ମ ପଚାରିଲେ– ଆପଣ କିଏ?

'ମୁଁ କାଳଭିକ୍ଷୁ, ଏହି କାଳକୁ ମୁଁ ଅପେକ୍ଷା କରିଥିଲି'– ଏତିକି କହି ଭିକାରିଟି ଆଗକୁ ପାଦ ବଢ଼ାଇଲେ–

ସହସା ଏକ ପ୍ରଖର ପବନ ସ୍ରୋତର ବେଗ ଛିଣ୍ଡେଇ ଆଣିଲା କାନ୍ଥ ଉପରେ ସେଇ କାଲେଣ୍ଡରକୁ ଯେଉଁଠି ଗୋଟାଏ ତାରିଖ ଉପରେ ପଡ଼ିଥିଲା ବର୍ତ୍ତୁଳ ଲାଲ ଚିହ୍ନ– ସେଇ ଗୋଟିଏ ତାରିଖ... ସେଇ ଗୋଟିଏ ତାରିଖ...

■■■

# ବିବାହୋତ୍ସବ

ବିବାହ !

ଅଧରାର ବିବାହ !

ହାତରେ ଶୁଭ କାଚ, ମଥାରେ ସିନ୍ଦୂର, ପାଦରେ ଅଳତାରେଖା– ଏ ଦୃଶ୍ୟ କଅଣ ସତେ ପାପଚକ୍ଷୁ ଦେଖିବ ?

ଦେଖିବ କି ନାହିଁ ରୁଦ୍ରସୁନ୍ଦରବାବୁ ବୁଝିପାରିଲେ ନାହିଁ। ତାଙ୍କର ଦୁଇଟାଯାକ ପାପ–ଚକ୍ଷୁରୁ ପୁଣ୍ୟ ଅଶ୍ରୁ ପ୍ରବାହ ବୋହିଯାଏ। ଆଗରେ ଉଭା ହୋଇଯାଏ ଅଧରା। ବିପୁଳ ରୂପ ସମ୍ପତ୍ତି ମଧ୍ୟବିତ୍ତ ଗୃହସ୍ଥର କନ୍ୟାର ଅଙ୍ଗ ଆଶ୍ରୟ କରି ସୃଷ୍ଟି କରିଥାଏ ମହୋତ୍ସବ।

ରୁଦ୍ରସୁନ୍ଦର ଯେଉଁ ଆଡ଼େ ଯାଆନ୍ତି, ଯାହା କରନ୍ତି ସବୁର ମଝିରେ ଛିଡ଼ାହୋଇଥାଏ ଅଧରା। ସେ ତାଙ୍କର ପଥରୋଧ କରେ, ତାଙ୍କର ଚିନ୍ତା–ସରଣୀରେ ଅଚିନ୍ତନୀୟ ବିପ୍ଳବ ଆଣେ। ପ୍ରେତାତ୍ମାର ଶ୍ମଶାନ ନୃତ୍ୟ ଭଳି ଅଧରାର ରୂପ; ତାର ଅସହଣିକ ଉଦ୍ଦାମ ଗତି, ତାର ଭାରା ଧାରଣରେ ଧରିତ୍ରୀ ଉଲ୍ଲାସ–ସବୁ ଯେପରି ରୁଦ୍ରସୁନ୍ଦରଙ୍କୁ ଉପହାସ କରେ– କହେ, 'ଏ କନ୍ୟାର ପିତା ହୋଇ ରୁଦ୍ରସୁନ୍ଦର ଛନ୍ଦପତନ ଘଟାଇଛନ୍ତି। ବଣର କୁରଙ୍ଗୀକୁ ଗୃହାଙ୍ଗନରେ ସମ୍ଭାଳିଲେ ଗୃହ ତା' ପକ୍ଷରେ କାରା ହୋଇଯିବ। ଅଧରାର ବିଚରଣ ଭୂମି ଗୃହର ଆବଦ୍ଧ ଦେହଳି ନୁହେଁ। ଉନ୍ମୁକ୍ତ ବନପ୍ରଦେଶ।'

ଅଧରା କିଛି ବୁଝେ ନାହିଁ। ମନର ଚମକକୁ ଥରେ ଥରେ ଉପଲବ୍ଧି କରେ। ସେତିକି ମାତ୍ର। ବାପା, ମାଆ; ଛୋଟ ଭାଇ, ଭଉଣୀର ସଂସାର। ଆନନ୍ଦ କୋଳାହଳ ମୁଖରିତ ଏଇ ଛୋଟ ନୀଡ଼ଟିର ସେ ନିର୍ଲିପ୍ତ ଭାବରେ ରହିଥାଏ।

ଦିନେ ଆସିଲା ତାର ଜୀବନରେ ଏକ ଦୁର୍ଘଣଣା। ସେ ଦୁର୍ଘଟଣା ଚୋର ଆଉ କେହି ନୁହେଁ। କାଳ– ସମୟ। ପନ୍ଦର ପାରି ହୋଇ ଷୋହଳର ରସ–ମାଧୁରୀରେ ମନ ଆନମନା ହେବା ବେଳକୁ କେଉଁ ସାଥୀର ଗହଣରେ ତରଙ୍ଗ ଉପରେ ଭାସି ଭାସି ଶୂନ୍ୟମଣ୍ଡଳରେ ଚାନ୍ଦକୁ ହାତ ବଢ଼ାଇ କାମନା କରିବା ସମୟରେ ଅଧରା ଅନୁଭବ କଲା ସମୟ ବହିଚାଲିଛି। ପନ୍ଦର ଓ ଅଠର ଭିତରେ କାଳ ତାର ତନୁ ଆଉ ମନ ଉପରେ କେତେ ବିଭ୍ରାଟ ସୃଷ୍ଟିକଲାଣି। ସାଥୀ କେହି ନାହିଁ। ଚାନ୍ଦ ତ ଧରିବାର ଚାନ୍ଦ ନୁହେଁ। କେଉଁଠି ବଂଶୀ ବାଜୁଛି ତ ତାହା କର୍କଶ ଶୁଣାଗଲାଣି। ମନ–କାନନରେ ଝଡ଼ ଝଞ୍ଜାର ପ୍ରସାର ଧ୍ୱନି।

କେବଳ ଅଧରାର ମନ–କାନନରେ ଯେ ଆକାଶ ଧରଣୀର ଏକାକାର ଭାବ ତା'ନୁହେଁ, ରୁଦ୍ରସୁନ୍ଦରଙ୍କର ମନରେ ବି ଆସନ୍ନ ମେଘାଡ଼ମ୍ବର, ସଚିତ୍ର କାଳିମାର ବିଲୋପ, କେଉଁଠି ହେଲେ କ୍ଷୀଣ ଜ୍ୟୋତିରେଖା ନାହିଁ।

ବନ୍ଧୁ ସ୍ୱଜନମାନେ ଆସନ୍ତି। ମଧ୍ୟବିତ୍ତ ଗୃହସ୍ଥର ଚା'ପାନ ପର୍ବପରେ ଅଧରା ଯେ ପାତ୍ରସ୍ଥା ହୋଇ ପାରୁନାହିଁ, ସେଥିପାଇଁ ଦୁଃଖ କରନ୍ତି। ପରାମର୍ଶ ଦିଅନ୍ତି ଆଉ କିଛି ପାଠ ପଢ଼ାଇଥିଲେ ଏତେ

ମନସ୍ତାପ କରିବାକୁ ପଡ଼ି ନଥାନ୍ତା। ବିହଙ୍ଗୀ ନିଜେ ଉଡ଼ିବାକୁ ଇଚ୍ଛା କରିଥାନ୍ତା ।

ଅଧରାର ସୌନ୍ଦର୍ଯ୍ୟରେ ଅନିନ୍ଦ୍ୟ ଭାବ ନ ଥିଲେ ବି ଚଳନୀୟ ସୁଷମା ଅତି ସ୍ପଷ୍ଟ। ତେବେ ବାଧା ଆସେ। ଆସିବାର କଥା। ଯୁବକମାନେ ବିଶ୍ୱବିଦ୍ୟାଳୟ ଛାତ୍ରୀକୁ ପ୍ରଣୟିନୀବେଶରେ ଯେପରି କାମନା କରନ୍ତି, ଅଧରା ଭଳି ଅତି ସଂଯତ ଲଜ୍ଜାବତୀ ବାଳିକାକୁ ସେତେ ପସନ୍ଦ କରନ୍ତି ନାହିଁ।

କ୍ରମେ ଆରମ୍ଭ ହେଲା ଅଧରାର ଦୁର୍ବିସହ ଜୀବନ। ବୟସ ବଢ଼ିଲା। ସ୍ନେହ ପ୍ରୀତିର ଧାରା କ୍ରମେ ଶୁଷ୍କ ହୋଇଆସିଲା। ବାପା ମାଆ ତାକୁ ଅନାବଶ୍ୟକୀୟ ଏକ ସାମଗ୍ରୀ ବୋଲି ଭାବିଲେ। ଆଖି ଆଗରେ ଦେଖିଲେ ବିଶ୍ୱବିଦ୍ୟାଳୟ ଛାତ୍ରୀ ହାତ ଛନ୍ଦାଛନ୍ଦି ହୋଇ ଯାଉଛି ବିବାହକୁ ରେଜିଷ୍ଟ୍ରି କରିବାକୁ। ଦଲିଲ୍ ନଥିପତ୍ରରେ ଦରଜ୍ କରିଦିଆଗଲା– ପୁରୁଣା ସେଇ ପ୍ରଥା ଯଥା ରାବଣସ୍ୟ ମନ୍ଦୋଦରୀ। ଖରଚ ନାହିଁ, ବିଚାର ନାହିଁ, କାହାର ସମ୍ମତି ଅସମ୍ମତିକୁ ଅପେକ୍ଷା ନାହିଁ। ନବ–ତରୁଣ–ତରୁଣୀର ଶୋଭାଯାତ୍ରାରେ ତାଙ୍କ ନଖତଳ ଦୁର୍ବା ମଳିନ ପଡ଼ିଯାଇଛି। ଯାଉ, ସେଥିରୁ ତିଆରି ହୋଇଯିବ ପ୍ରଶସ୍ତ ରାଜପଥ। ନାନା ସ୍ୱପ୍ନ, ନାନା କର୍ମଯୋଜନାର ରାଜମାର୍ଗ।

ରୁଦ୍ରସୁନ୍ଦର ସ୍ଥିର କଲେ ଅଧରାକୁ ବିଶ୍ୱବିଦ୍ୟାଳୟକୁ ପଠାଇବେ। ସମସ୍ତେ ସମର୍ଥନ କଲେ। ହାଣ୍ଡିକଳା–ଧୂଆ ହାତ ଏତେଦିନେ ଧୋଇ ଶିଖିବ ଟେଷ୍ଟଟ୍ୟୁବ୍। ଚୂଲି ଭିତରେ କାଠ ମୁହେଁଉଥିବା କର ଏତେଦିନେ କଙ୍କଣ ଧ୍ୱନିରେ ରଙ୍ଗପୀଠ ଧ୍ୱନିତ କରିବ। ଯେ ପାଦ ଦୁଇଟି ମାଟିର ସଂସ୍ପର୍ଶରେ ଆସି ମଳିନ ହୋଇଯାଇଥିଲା, ତାହା ଏବେ ଗତିକରି ଆସିବ ବିଶ୍ୱବିଦ୍ୟାଳୟର ମର୍ମର ମସୃଣ ଶିଳା ଉପରେ। କେତେ ଯେ ସମ୍ଭାବନା? ତା ସଙ୍ଗେ ଆଉ ଏକ କଳ୍ପନା, ରହିଛି। ଅହରହ ରୁଦ୍ରସୁନ୍ଦର ସେଇ କଥା ଚିନ୍ତା କରନ୍ତି। ଅଯାଚିତ ଅପ୍ରାର୍ଥିତଭାବରେ ଆସିବ ବରଣମାଳା। ଅଧରା ସୀମନ୍ତିନୀ ହେବ, ହେବ ଜାୟା।

ବିଶ୍ୱବିଦ୍ୟାଳୟର ବହୁ କୁସୁମ ଭିତରେ ନବପ୍ରସ୍ଫୁଟିତ ଗୋଟିଏ କୁସୁମର ସଦ୍ୟ ବିକାଶ ଅଳିକୁଳକୁ ମୁଗ୍ଧ କରିଥିଲା। ଚିର ପ୍ରଚଳିତ ମାର୍ଗରେ ନାନା ଉପଚାର ପରେ ଦେଖାଗଲା କେତୋଟି ଦୃଶ୍ୟ!

"– ମିସ ଅଧରା, ଆପଣଙ୍କୁ କଥା ଦେବାକୁ ପଡ଼ିବ। ଆଜି ସେକେଣ୍ଡ ସୋ'ରେ. ନିଶ୍ଚୟ; ଏଇ ସାର୍ ଆସୁଛନ୍ତି। ବାଇ... ବାଇ..."

"ମିସ୍, ଲିପ୍‌ସ, ନୋଟ ଖାତା ଦିଅନ୍ତୁ ତ! କି ଚମତ୍କାର ଆପଣ ନୋଟସ୍ ଲେଖନ୍ତି! ବଡ଼ ଭାଇକୁ ଏମିତି ଲାଜ କରନ୍ତି? ଏଇ ପିଅନଟା ଆସୁଛି। କିଛି ଭୟ ନାହିଁ, କାଲି ତାକୁ ଟଙ୍କାଟାଏ ବକ୍‌ସିସ୍ ଦେଇଛି। ତୁମେ ମତେ ଭଲପାଅ ତ। ଜୀବନର ଶେଷ ମୁହୂର୍ତ୍ତଯାଏ, ନା, ନା, ଦର୍ଶନ ଅଧ୍ୟାପକ କହୁଥିଲେ ମରଣ ପରେ ଆଉ କେତେ କେତେ ଜୀବନ ଅଛି। ସେ ସବୁ ଜୀବନରେ ତୁମେ ହିଁ..."

"– ଦେଖନ୍ତୁ ଅଧରା ଦେବୀ, ସମସ୍ତେ ଶ୍ରେଣୀରେ ବସିସାରିଲା ପରେ ମୁଁ ଜାଣି ଶୁଣି ଡେରିକରି ଆସେ। ତାହାହେଲେ ତୁମେ ତୁମର ମୀନନୟନକୁ ଉଠାଇ ମତେ ଚାହିଁପାରିବ, ଆଉ ମୁଁ ବି ଛାଡ଼..."

"ଦେଖନ୍ତୁ– ଆପଣ ଭାବୁଥିବେ ମୁଁ ଇତର ଛାତ୍ରଙ୍କ ଭଳି ଆପଣଙ୍କୁ ପ୍ରେମ ନିବେଦନ କରୁଛି।

ନା, ତାହା ନୁହେଁ। ମୁଁ ଭାରତର ସନ୍ତାନ। ମୋର ପ୍ରେମ ତ୍ୟାଗ ଉପରେ ପ୍ରତିଷ୍ଠିତ। ଆପଣ ମତେ ଅପମାନ କରନ୍ତୁ ପଛକେ ମୁଁ ଆପଣଙ୍କୁ ଧ୍ୟାନ କରୁଥିବି। ମୋ ମନୋରାଜ୍ୟରେ ମୁଁ ରାଜା। ମୋର ଇଚ୍ଛା ମୁଁ ଯାହା ଭାବିପାରିବି; ଆପଣଙ୍କ ଶରୀର ଭିତରେ ମୁଁ ଦେଖେ କୀଟ କୃମିର ଖେଳା। କିନ୍ତୁ ହୃଦୟ ଭିତରେ ଦେଖେ ଜବାପୁଷ୍ପର ସିଂହାସନ ଉପରେ ମୋରି ପ୍ରତିମୂର୍ତ୍ତି ଶୋଭାପାଉଛି। ବାସ୍, ସେତିକି କାମନା– ଏଣିକି ଆପଣ ଯୁଆଡ଼େ ଯାଆନ୍ତୁ, ଚିନ୍ତା ନାହିଁ। କାରଣ ଆପଣ ସଚଳ, ପୁଣି ଅଚଳ, ଆପଣ ବିସ୍ତୃତ ପୁଣି ସଙ୍କୁଚିତ, ଆପଣ–"

ଅଧରା ସବୁ ଶୁଣେ। ଅଧର ଦଂଶନ କରେ। ଚକ୍ଷୁରୁ ସ୍ଫୁଲିଙ୍ଗ ଝରାଏ। କିନ୍ତୁ ପରେ ଫିସ୍ କରି ହସିପକାଏ।

ସୁଯୋଗ ଖୋଜୁଥାଏ। ପ୍ରତ୍ୟେକଙ୍କ ପାଖରେ ସେ ଆତ୍ମସମର୍ପଣ କରିଦେବ। ହଁ, ହଁ, ତାହା ହିଁ ସେ କରିବ।

ଯେଉଁ ପତଳା ଛାତି ଯୁବକଟି ତାକୁ ମିସ୍ ଅଧରା ବୋଲି ସମ୍ଭାଷଣ କରେ, ତାକୁ ଦିନେ ପୋର୍ଟିକୋର ଖୁମ୍ବ ପାଖରେ ନିଭୃତରେ ପାଇ ଅଧରା କହିଲା–

"ରଜତ ବାବୁ, ଆଜି ଆମ ଘରକୁ ଆସନ୍ତୁ, ବାପାଙ୍କ ସାମ୍ନାସାମ୍ନି କଥାଟା ପଡ଼ିଯାଉ।"

ରଜତ ବାବୁ ଯୁବକଟିର ଓଠ ଦୁଇଟି ଓହଳିଗଲା। ଘରେ? ପୁଣି ବାପାଙ୍କ ସାମ୍ନାସାମ୍ନି। କଅଣ କହିଦେଇଛ କି?

ଅଧରା ବୁଝିଲା ପାଠ ପଢ଼ିବାସ୍କୁଲ ବିଦ୍ୟାଳୟଟା ବିଶ୍ୱ ହୋଇ ଯାଇଛି ସିନା, ବୀରତ୍ୱ ଦେଖାଇବାରେ ଏଇ ସଦା ପ୍ରକମ୍ପିତ ଜାନୁ ଯୁବକଙ୍କର ସ୍ଥାନ ବିଶ୍ୱରେ ନାହିଁ, ଅଛି ଅନ୍ୟତ୍ର।

ହସ ସମ୍ଭାଳି ନେଇ ଅଧରା କହିଲା– "ସତେ ରଜତ ବାବୁ, ଆଜି ଆସନ୍ତୁ ଠିକ୍ ରାତି ସାତଟାରେ ବାପା ଥିବେ, ବୋଉ ଥିବେ, ଆଉ ମୁଁ, ସେ ତ ଆପଣଙ୍କର ଭାବୀ ଶାଶୁ ଶ୍ୱଶୁର, ଆଉ ମୁଁ ତ ଭାବୀ ପତ୍ନୀ। ମାତ୍ର ଏସବୁ ଭବିତବ୍ୟତା ଆୟତ୍ତ କରିବାକୁ ହେଲେ ବାସ୍ତବତାର ଆୟୋଜନ କରିବାକୁ ହେବ। ଆପଣଙ୍କ ସଙ୍ଗେ ମୁଁ ବିବାହ କରିବାକୁ ପ୍ରସ୍ତୁତ।"

'–ବିବାହ?' ଯୁବକଟିର ଶୁଷ୍କ କଣ୍ଠନଳୀ ଭିତର ଆବାଜ୍ ବେଶ୍ ଉପଭୋଗ୍ୟ। ଭୟାର୍ତ୍ତର ଶବ୍ଦ।

'–ତେବେ କଅଣ କେବଳ ମୁକ୍ତପ୍ରେମ? ବାଟ, ଘାଟ, ରଙ୍ଗ ପୀଠ? ସର୍ବତ୍ର?'

ରଜତ ବାବୁ ତଳକୁ ଚାହିଁ କହିଲେ–। "ବିବାହ ତ ବଡ଼ ଦାୟିତ୍ୱ କଥା। ତା ଛଡ଼ା ମୁଁ ତ ଜଣକୁ ବିବାହ କରିବି।"

'–ଅର୍ଥାତ୍, ଅନ୍ୟମାନଙ୍କ ସହିତ ମୁକ୍ତ ପ୍ରଣୟ? ଲୀଳା ଖେଳା? ବାଃ ଚମତ୍କାର–' କଣ୍ଠରେ ଝନତ୍କାର ଶୁଣାଇ ଅଧରା ସେତେବେଳେ କମ୍ପିଉଠିଥିଲା।

ଗୋଟିକ ପରେ ଗୋଟିଏ ଯୁବକକୁ ଅଧରା ଏଇ ଏକ ପ୍ରଶ୍ନ ପଚାରିଛି। ଉତ୍ତର ପାଇଛି– 'ମୁଁ ତ ଜଣକୁ ବିବାହ କରିବି, ବିବାହ ବଡ଼ ଦାୟିତ୍ୱ'। ଅଧରା ବୁଝିଲା ତାର ବିବାହ ହୋଇ ପାରିବ ନାହିଁ। ଉତ୍ସବର ହୁଳୁଧ୍ୱନି ତା କାନରେ ବାଜିବ ନାହିଁ। ଛାଡ଼– ଜୀବନଟାର ବହୁ ଦିଗ ଅଛି। ଏଇ ଗୋଟିଏ ମାତ୍ର ଦିଗରେ ସେ ଅବାଞ୍ଛିତା ହୋଇଗଲେ ବି କିଏ ଜାଣେ ଅନ୍ୟ ଦିଗରେ ତାହାର କେହି ବାଞ୍ଛିତ ହାତ ଧରି ନେଇଯିବ।

ସେଦିନ ସକାଳେ ଅଧରାର ସମସ୍ତ ସ୍ଫୂର୍ତ୍ତି ଚାଲି ଯାଇଛି। ଦେହ ବି କିମିତି ଅବଶ ଲାଗୁଛି। କି ଅର୍ଥ ଅଛି ଏମିତି କୃତିତ୍ୱର! ବର୍ଷ ବର୍ଷ ହଜାର ହଜାର ଛାତ୍ରଛାତ୍ରୀ ବିଶ୍ୱବିଦ୍ୟାଳୟର ଦ୍ୱାର ଦେଇ ଦୁଇ ପଦ–ଲେଖା କାଗଜ ଖଣ୍ଡିଏ ଧରି ବାହାରି ଆସୁଛନ୍ତି। ତା ପରେ ସେ କାଜଗର ମୂଲ୍ୟ କିଛି ରହୁ ନାହିଁ। ଜୀବନ–ସଂଗ୍ରାମ କଠୋର। ତାର ଚାରିପଟ ପ୍ରାଚୀର ଭିତରେ ମଥା ପିଟି ହୋଇ ଯାଇଛି।

ରୁଦ୍ରସୁନ୍ଦର ଦେଖିଲା ଝିଅ ଏତେବେଳଯାଏ ପୋଷାକ ପିନ୍ଧି ନାହିଁ। ପ୍ରସାଧନ କରି ନାହିଁ। ଆଜି ତାଙ୍କର ପିତୃଜୀବନର ସାର୍ଥକ ଦିବସ। ଆଜି ଅଧରା ଶିକ୍ଷିତା ବୋଲି ପରିଚୟ ପତ୍ର ପାଇବ। ଜୀବନରେ ସେ ପରିଚୟ–ପତ୍ର ଆଉ କିଛି ଆଣୁ ବା ନ ଆଣୁ ଅଧରାକୁ ଦେବ ଏକ ନିର୍ଦ୍ଦିଷ୍ଟ ଆସନ। ସେହି ଆସନରେ ଆସୀନା ହୋଇ ଝିଅ ବହୁତ କିଛି ଆକର୍ଷଣ କରିପାରିବ।

ଅଧରାର ଯେପରି ମନେହେଉଛି ସେ ଯାଉଛି ବଧ–ଭୂମିକୁ। କି ଆଶ୍ଚର୍ଯ୍ୟ! କେତେ ଆନନ୍ଦରେ କେତେ କଳ୍ପନାରେ ବିଶ୍ୱବିଦ୍ୟାଳୟର ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀଗଣ ଆଜିର ଉତ୍ସବରେ ଯୋଗ ଦେବାକୁ ଯାଉଛନ୍ତି ଅଥଚ ଅଧରାର ମନ ପ୍ରସନ୍ନ ନୁହେଁ। ନାରୀର ବିଚିତ୍ର ରୀତି ଭାବି ରୁଦ୍ରସୁନ୍ଦର ନିଜ କନ୍ୟାକୁ ସହସା ଏକ ପୂର୍ଣ୍ଣତମା ନାରୀ ଭାବରେ କଳ୍ପନା କରିବସିଲେ।

ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବ। ସ୍ନାତକମାନେ ପ୍ରଣତ ହୃଦୟରେ ଆଚାର୍ଯ୍ୟଙ୍କର ଶପଥବାଣୀକୁ ସ୍ୱୀକାର କରିନେଉଛନ୍ତି। ଆଚରଣ ସ୍ୱଭାବରେ ଆମେ ଯୋଗ୍ୟ ନାଗରିକ ହେବୁ। କାର୍ଯ୍ୟରେ ହେବୁ ନିଷ୍ପାପର କର୍ମୀ, ଆମର ଜ୍ଞାନ ଓ ମନୀଷା ଆମେ ପ୍ରୟୋଗ କରିବୁ ଜୀବକୁଳର କଲ୍ୟାଣ ପାଇଁ– ଏମିତି କେତେ କଥା ସେମାନେ ଆବୃତ୍ତି କରୁଛନ୍ତି।

କଥାଗୁଡ଼ାକ ମୁହଁରେ ବାହାରି ଆସୁଛି ସିନା ହୃଦୟରେ ବିଶ୍ୱାସସ୍ତରକୁ ସ୍ପର୍ଶ କଲାଭଳି ମନେହେଉ ନାହିଁ। ରୁଦ୍ରସୁନ୍ଦର ସୁସଜ୍ଜିତ ଚନ୍ଦ୍ରାତପ ତଳେ ବସିଛନ୍ତି। ପିତୃ–ହୃଦୟ ପ୍ରତିକ୍ଷଣରେ ଆନନ୍ଦ ଓ ଆକାଙ୍‌କ୍ଷାରେ ସ୍ପନ୍ଦିତ ହେଉଛି।

ମଥା ଉପରେ ବିଶ୍ୱବିଦ୍ୟାଳୟର କୃଷ୍ଣ ଶିରସ୍ତ୍ରାଣ, ଅଙ୍ଗ ଉପରେ କୋମଳ କଳାବସନର ସୁନ୍ଦର ବେହରଣ ସଜାଇ ଅଧରା ବସି ରହିଛି। ଏଇ, ସାମାନ୍ୟ ଦୂରରେ ରଜତ ବାବୁ। ବିଚରା ଏବର୍ଷ ଫେଲ ହୋଇଯାଇଛନ୍ତି। ନଇଲେ ଅଧରା ସଙ୍ଗରେ ଏହିପରି କଜ୍ଜ୍ୱଳବାନ୍ ହୋଇ ବସିଥାନ୍ତେ। ଦୂରରେ ସିନିଅର ଓ ଜୁନିଅର ଛାତ୍ର। ପୋର୍ଟିକୋ ପାଖରେ, ରାସ୍ତାରେ ପ୍ରୟୋଗାଗାରରେ ନିଭୃତରେ ଯେଉଁମାନେ ଅଧରାକୁ ସର୍ବସ୍ୱ ସମର୍ପିଦେବା ପାଇଁ ଇଙ୍ଗିତ ଦେଇ ସମଗ୍ର ଅଙ୍ଗ ଉପରେ ଆଖି ବୁଲାଇ ଆଣୁଥିଲେ, ସେମାନେ ସମସ୍ତେ ଛିଡ଼ାହୋଇଛନ୍ତି।

ଦେଶର ଭବିଷ୍ୟତ ନାଗରିକ ଗୋଟିଏ ଗୋଟିଏ ଆଗେଇ ଆସିଲେ ଆଚାର୍ଯ୍ୟଙ୍କଠାରୁ କୃତିତ୍ୱ ସହିତ ଉତ୍ତୀର୍ଣ୍ଣ ହୋଇଥିବା ପ୍ରଶଂସାପତ୍ର ନେବା ପାଇଁ। କିନ୍ତୁ ପ୍ରତି ପଦକ୍ଷେପରେ ଜଡ଼ତା, ଚଳନରେ ଭୀରୁତା। ପ୍ରଶଂସାପତ୍ର ଗ୍ରହଣ କଲାବେଳେ ଭୟ ଓ ଆତ୍ମଅବିଶ୍ୱାସ ଯେପରି ପ୍ରତ୍ୟେକଙ୍କୁ ଶିଥିଳ କରିଦେଇଛି।

ଏଇ ଯେ ଛାତ୍ରଟି ସ୍ୱର୍ଣ୍ଣ ପଦକ ଗ୍ରହଣ କଲା ସେ ବ୍ରଜବିଧୂ ପଟ୍ଟନାୟକ। ଖାଲି ପଢ଼ିପଢ଼ି ସେ ଅନ୍ୟ ଅନେକ ଆଡ଼େ ଅଚେତନ ହୋଇପଡ଼ିଛି। ତେଣୁ

ଯୁବକ ଶରୀରରେ ବାର୍ଦ୍ଧକ୍ୟ ଏତିକବେଳୁ ଆଶ୍ରୟ କରି ରହିଲାଣି। ଫ୍ଲାଶ, ଫ୍ଲାଶ, ଫଟୋ ଉଠୁଛି।

ରୁଦ୍ରସୁନ୍ଦର ନିଜ ଡାଇରିରେ ଲେଖିଲେ– ବ୍ରଜବଧୂ ପଟ୍ଟନାୟକ। ତାପରେ ଲେଖିଲେ– ଶରୀର ଟିକିଏ ରୋଗା– ଆଖି କୋଟରଗତ, ସ୍ୱର୍ଣ୍ଣ ପଦକ। ମନେ ହେଉଛି ମଧ୍ୟବିତ୍ତ। ଜାମାତା ହେବା ପାଇଁ ଉପଯୁକ୍ତ ଯଦି ପଣ ନ ନିଅନ୍ତି। ଦଶମିନିଟ ପରେ ଦେଖାଗଲା ରୁଦ୍ରସୁନ୍ଦର ଅନେକ ଗୁଡ଼ିଏ ନାଆଁ ଲେଖିଛନ୍ତି। କେବଳ ପୁରୁଷର ନାମ। ଈଶ୍ୱର ଜାଣନ୍ତି ରୁଦ୍ରସୁନ୍ଦରଙ୍କର ଏ କି ଖିଆଲ। କେବଳ ନାଆଁ ନୁହେଁ ରୂପର ସମ୍ୟକ ପରିଚୟ। ଗୁଣର ପରିଚୟ ବିଶ୍ୱବିଦ୍ୟାଳୟ ଦେଇଛି।

ଅଧ୍ୟକ୍ଷ ଡାକିଲେ– ଅଧରା ପଟ୍ଟନାୟକ। ସବୁଆଡ଼େ ଗୁଞ୍ଜନ ଖେଳିଗଲା। ରୁଦ୍ରସୁନ୍ଦରଙ୍କର ଚକ୍ଷୁରୁ ଆନନ୍ଦାଶ୍ରୁ ବୋହିବାକୁ ଆରମ୍ଭ କଲା। ସେ ଭାବିଲେ ଏଣିକି ସବୁ ସମସ୍ୟାର ସମାଧାନ ହୋଇଯିବ। ଅଧରା ଆସନରୁ ଉଠିଛି କି ନାହିଁ ଚାରିଆଡୁ ହୁଳୁ ହୁଳୁ ଧ୍ୱନି ଭାସି ଆସିଲା। ଠିକ ବିବାହୋତ୍ସବରେ ବହୁ କଣ୍ଠରୁ ହୁଳୁହୁଳୁଧ୍ୱନି ବାହାରିବା ଭଳି ଜାତିର ଏକ ସାଂସ୍କୃତିକ ମହାପୀଠର ସମସ୍ତ ଗାମ୍ଭୀର୍ଯ୍ୟକୁ ଭାଙ୍ଗି ତରଙ୍ଗାୟିତ ଏବଂ ଅପୂର୍ବ ପୁରୁଷ କଣ୍ଠ ନିର୍ଗତ ହୁଳହୁଳିରେ ସମଗ୍ର ସଭାସ୍ଥଳ ଶବ୍ଦାୟିତ।

ଆଚାର୍ଯ୍ୟ ମଥା ନୁଆଁଇଲେ। ବିଶିଷ୍ଟ ଅତିଥି ଚକ୍ଷୁ ନତ କଲେ। ଦେଶର ବିଶିଷ୍ଟ ବ୍ୟକ୍ତି ବିସ୍ମୟ ପ୍ରକାଶ କଲେ। ନାରୀମାନେ ତାଙ୍କ କାମକୁ ପୁରୁଷମାନେ ଗ୍ରହଣ କରିଛନ୍ତି ଭାବି ଅଧିକାରକୁ ସାବ୍ୟସ୍ତ କରିବା ପାଇଁ କେହି କେହି ଉଠି ଛିଡ଼ାହେଲେ।

ଲଜ୍ଜାର ଗୋଟାଏ ପ୍ରକାଣ୍ଡ ପର୍ବତ ସମସ୍ତଙ୍କର କାନ୍ଧ ଉପରେ ନଦି ହୋଇଗଲା। ସବୁ ଦିଗ ସବୁ କୋଣରୁ ବହି ଆସଲା ହୁଳୁହୁଳୁ ଧ୍ୱନି, କୁତ୍ସିତ ହସ ଓ ଅସୁଜନ ଆଚରଣ।

ଅଧରା କ୍ଷଣେ ମାତ୍ର ନିଷ୍ପନ୍ଦ ରହି ତୀର୍ଯ୍ୟକ ଭଙ୍ଗୀରେ ଦେଖିନେଲା କିଏ ଏହି ହୁଳୁକାରୀ ଦଳ। ହଁ, ରଜତ, ଗୋପବନ୍ଧୁ, ଡାଭିଡ୍, ସରିଫ– ଯେଉଁମାନେ ଦିନେ ତାକୁ ପ୍ରଣୟିନୀ ଓ ସୋହାଗିନୀ କରିବା ପାଇଁ ଗୋଲାପ ଶଯ୍ୟା ପାତିବାରେ ପୁରୁଷାର୍ଥର ଅପୂର୍ବ ବିନିଯୋଗ କରିବାକୁ ବସିଥିଲେ। ଏଇମାନଙ୍କୁ ସେ ବିବାହ କରିବାକୁ ପ୍ରସ୍ତାବ ଦେଇଥିଲା। ନାରୀର ସ୍ୱାଭାବିକ ଲଜ୍ଜାର ମୁଣ୍ଡ ଖାଇ ସେ ବାହାରି ଆସିଥିଲା ପରୀକ୍ଷା କରିବାକୁ କେତେ ଶକ୍ତିଧର ପୁରୁଷ ବିଶ୍ୱବିଦ୍ୟାଳୟର ଜ୍ଞାନ–ପ୍ରକୋଷ୍ଠରେ ରହିଛନ୍ତି।

କିନ୍ତୁ ସେ ଦେଖିଲା ଏମାନେ ସମସ୍ତେ ନିର୍ବୀର୍ଯ୍ୟ ଭଗ୍ନଜାନୁ ପୁରୁଷ ରୂପଧାରୀ ନାରୀ ମାତ୍ର। ଯେଉଁମାନେ ଏପରି କଦର୍ଯ୍ୟ ବ୍ୟବହାର ଦେଖାଇ ସମଗ୍ର ଜାତିର ମୁଖକୁ କାଳିମାଲିପ୍ତ କଲେ, ସେମାନଙ୍କୁ ଈଶ୍ୱର କ୍ଷମା କରନ୍ତୁ– ଏତିକି ମନେ ମନେ ଭାବି ଅଧରା ଉଠିଆସିଲା ମଞ୍ଚ ଉପରକୁ।

ବୃଦ୍ଧ ରୁଦ୍ରସୁନ୍ଦର ଦେଖିଲେ ତାଙ୍କରି ସ୍ତିମିତ ନୟନ ଜ୍ୟୋତି ଭିତରେ ଝିଅର ବିବାହ ହୋଇଗଲା। ମଙ୍ଗଳ ହୁଳଧ୍ୱନି ପକାଇ ହଜାର ହଜାର ଲୋକଙ୍କ ଗହଣରେ କାର୍ଯ୍ୟଟି ସମ୍ପନ୍ନ ହେଲା।

ଶେଷରେ 'ଜନଗଣ ମନ ଅଧିନାୟକ' ସଙ୍ଗୀତର ଉଦାର ବାଣୀ।

ଅଧରା ଉଠି ଆସିଲା ବାପାଙ୍କ ପାଖକୁ– କହିଲା– 'ଚାଲ, ଉତ୍ସବ ଶେଷ ହେଲା।' ରୁଦ୍ରସୁନ୍ଦର ଜଡ଼ୀଭୂତ ପ୍ରସ୍ତର ଖଣ୍ଡ ଭଳି ଶରୀରକୁ ଉଠାଇ କହିଲେ– 'ଚାଲ ମାଆ, ଦେଶ ଓ ଜାତି ଯେ ଏତେ ଅଗ୍ରଗତି କରିଛି, ମୁଁ ବୁଝି ପାରିନଥିଲି ମାଆ। ମରିବା ପୂର୍ବରୁ ଖୁବ୍ ସୁନ୍ଦର ଦୃଶ୍ୟ ଦେଖିଗଲି।

■■■

# ନିହାରିକାର ନୀଳସ୍ରୋତ

ନିତିଦିନିଆ ଜୀବନରେ ଅନେକ କଥା ଦେଖେଁ; ଅନେକ କଥା ଶୁଣେ । ଶିଳ୍ପୀମନ ମୋର ତାହା ପ୍ରକାଶ କରିବାକୁ ଚାହେଁ । କିନ୍ତୁ କାହିଁକି କେଜାଣି ସବୁ କଥା ସବୁଲୋକଙ୍କ ଆଗରେ ପରଶି ଦେବା ପାଇଁ ମନ ଡାକେ ନାଇଁ ।

କେତେ ଲୋକ ଅଛନ୍ତି ଅର୍ଥରେ ଅନର୍ଥ କାଢ଼ିବେ । କେତେ କହିବେ ଦେଖାଶୁଣା କଥା, ସେଇଆକୁ ବନେଇ ଚୂନେଇ କହିବାରେ ଲାଭ କଅଣ ?

ମନ ମାରି ବସି ରହେ । ଭାବେ, ନାଃ ଲେଖି ଜଣାଇବାର ଦରକାର ନାହିଁ । ଶିଳ୍ପୀ ଭିତରେ ତାକୁ ଖଞ୍ଜି ପ୍ରକାଶ କରିବାରେ ମୋର ଶକ୍ତି ଥିଲେ ବି ନାନା ଲୋକଙ୍କର ନାନା କଥାକୁ ମୋର କିଏ ପାରେ ?

ଯେଉଁମାନେ ନୀରବ ଅଛନ୍ତି, କଥାରେ ଲେଖାରେ ଗୁମ ମାରି ବସିଛନ୍ତି, ଜୀବନକୁ ଚଉଛକ ଉପରେ ଚାଲି ଯାଉଥିବାର ଦେଖିଲେ ବି ଯାହାଙ୍କର କୁକୁର ଚକି ଖୋଲେ ନାଇଁ, ସେମାନେ ତ ବେଶ ଆରାମରେ ଅଛନ୍ତି । ନିର୍ବିଘ୍ନରେ ଜୀବନସୁଅ ତାଙ୍କର ବହି ଚାଲିଛି । କେଉଁଠି କେତେବେଳେ ଅନ୍ୟ ଜୀବନର ସୁଅ ସଙ୍ଗେ ନିଜ ସୁଅର କଟାକଟି ହେଲେ ବି ତାଙ୍କ ପ୍ରାଣକୁ ତାହା ଆଲୋଡନ କରେ ନାଇଁ । ବେଶ ନିରାଲମ୍ବ ଆତ୍ମ-ତୃପ୍ତି ।

ଥରେ ଥରେ ଭାବେ ଏଇଆ କଅଣ ମଣିଷ ଜୀବନ ? ଏଇଥିପାଇଁ କଣ ମଣିଷର ଜନ୍ମ ? କ ଉଦ୍ଦେଶ୍ୟ ଏଇଭଳି ଆତଯାତର ? ହୃଦୟଟାକୁ ଶିଳାଖଣ୍ଡ କରିପକାଇ ଆକାଶର ବାଦଲ ମେଳାରେ ବିଜୁଳି ଝଲକକୁ ଚାହିଁ ଆଖି ବୁଜିଦେବା କଣ ଜୀବଧର୍ମ ?

ପୁଣି ମୁଁ ହସେ । ମୋର ଜୀବଧର୍ମଟା ଟିକିଏ ବେଶୀ ହୋଇଯାଇଛି ବୋଧହୁଏ । କାହିଁକିନା ପତର ଗୋଟାଏ ହଲିଲେ, ତାରାଟିଏ ଉଙ୍କି ମାରିଲେ, ନଦୀ ବକ୍ଷରେ ନୌକା ଚାଲିଲେ, କାହାର ଆଖିପତାରେ ଆନନ୍ଦ ଝରିଲେ, ମୋର ମନ-କାନନରେ ଫୁଲ ଫୁଟେ । ଗୋଟିଏ କି ଯୋଡ଼ିଏ ନୁହେଁ, ଅଜସ୍ର । ସବୁଗୁଡ଼ିକ ବାସନା ଫୁଲ । ଚଉଦିଗ ମହକିଉଠେ । ଏ'ମହକରେ ମୁଁ ମରେ । ମରି ଯାଉଥିଲା ବେଳେ କେଉଁ ନିଦାନ ଯୋଗୁଁ ମୁଁ ମରିଲି ତାରି କାହାଣୀ ଅନ୍ୟ ପାଖରେ ବାଢ଼ିଦେଇଯିବା ପାଇଁ ଇଚ୍ଛା ହୁଏ । ସେଇଟା ଅନ୍ତିମ ଇଚ୍ଛା ବୋଧହୁଏ ।

ସେଦିନ ଜଣେ କିଏ ମତେ କହିଲେ ଆପଣଙ୍କ ଭାଗ୍ୟରେ ଅଶେଷ ଦହଗଞ୍ଜ ଅଛି । ଲେଖାରେ ଯେଉଁ ଶାଣ ଦେଉଛନ୍ତି, ସେଥିପାଇଁ କେତେ ଲୋକ ଅସନ୍ତୁଷ୍ଟ ହୋଇ ବିଷମ ହେଲେଣି । ଜୀବନରେ ଯାହା କାମ୍ୟ- ଯଶ, ଅର୍ଥ, ସେସବୁ ଆପଣଙ୍କ ଭାଗ୍ୟରେ ନାହିଁ ।

ସହାନୁଭୂତିକ ବନ୍ଧୁ । ତାଙ୍କର ନିର୍ମଳ ମନଟି ମତେ ବେଶ ଭଲ ଲାଗିଲା । କହିଲି- ଲେଖକ ଦରିଦ୍ର, ଯଶକୁ ସେ ଖୋଜିଯାଏ ନାହିଁ । ତାହା କ୍ରମେ ତାର ଅନ୍ତରଙ୍ଗ ହୋଇ ପଛେ ପଛେ ଆସେ । ଆଉ

ଲେଖିଲି ବା କଅଣ? ଜୀବନର ପ୍ରତ୍ୟେକଟି ଅନ୍ଧି ସନ୍ଧି ଖୋଲି ଦେଉଛି। ଏଇ ତ ଅପରାଧ? କିନ୍ତୁ ଖୋଲିବାକୁ ମତେ ଅବସର ଦେଉଛନ୍ତି କେଉଁଠି?

ସେ ବନ୍ଧୁ ନୁହଁନ୍ତି, ବହୁତ ଦିନ ଆଗରୁ ଆଉ ଜଣେ ତଥା କଥିତ ଶୁଭାକାଙ୍‌କ୍ଷୀ କହିଥିଲେ ଲେଖା ଛାଡ଼ିଦିଅନ୍ତୁ। ମୁଁ କେବଳ ହସି କରି କହିଥିଲି– ମୁଁ ତାହାହେଲେ ବଞ୍ଚିବି ନାହିଁ।

ସେ ଏଡ଼େ ଢିମା ଢିମା ଆଖି ଡୋଳା ମେଲାଇ କହିଲେ– ଲେଖା ଲେଖି କଲେ ମଣିଷ ବଞ୍ଚେ, ଆଉ ନ କଲେ ମଣିଷ ମରିଯାଏ? ଅଦ୍ଭୁତ କଥା! ପୁଣି ଅଣାଏ ପଇସାରେ ତ ଆପଣଙ୍କ ଲେଖାକୁ କେହି କିଣୁନାଇଁ। ଏଥିରେ କହୁଛନ୍ତି ନଲେଖିଲେ ଆପଣ ମରିଯିବେ?

ମୁଁ ତାଙ୍କ କଥାକୁ ସାମାନ୍ୟ ସଂଶୋଧନ କରି ସେତେବେଳେ କହିଥିଲି– କେବଳ ଲେଖା ନୁହେଁ, କୌଣସି ଉପାୟରେ ଆତ୍ମ ପ୍ରକାଶ ନ କଲେ, ଜୀବନଟା ମରଣ ସଙ୍ଗେ ସରି ହୋଇଯିବ।

ସେ ମୋ କଥା ବୁଝିଲେ ନାଇଁ। କେତେ ଜଣ ବା ବୁଝିବେ? ଏତେ କଥା କାହିଁକି କହିଲି, ସେଇ ବିଷୟ ଆରମ୍ଭ କଲେ। ଟିକିଏ ବୁଝିବାକୁ ଚେଷ୍ଟା କରନ୍ତୁ। ଅଳସ ଦେହରେ ଦିନେ ବସି ରହିଥିଲି। ପ୍ରାଣ ବି ଅଳସ। ଭାବିବାକୁ କିଛି ନିର୍ଦ୍ଦିଷ୍ଟ ଭାବନା ନ ଥିଲା, କି କରିବାକୁ କିଛି କାମ ନ ଥିଲା।

ସୁନ୍ଦର ସକାଳଟିଏ। ସୂର୍ଯ୍ୟ ଉପରେ କୁହୁଡ଼ି ନାଇଁ। ରକ୍ତ ପିଣ୍ଡ, ଉପରକୁ ଉଠି ଆସୁଛି। ମାନବ ମନର କେତେ ନିରାଶା, କେତେ ଦୁଃଖ କେତେ ତାପ ସେଇ ମୁହୂର୍ତ୍ତରେ ଭୁଲି ହୋଇ ଯାଉଛି।

ବସିଥିଲି। ଏଇ ଶୋଭାଟିକୁ ନିରୀକ୍ଷଣ କରୁଥିଲି। କେହି ଜଣେ ଖବର ଦେଲେ ଯେ ମୋ ସାଙ୍ଗରେ ଦେଖା କରିବାକୁ ଜଣେ ଅପେକ୍ଷା କରିଛନ୍ତି।

ସତ କହୁଛି– ସେତେବେଳେ କେଉଁଆଡ଼େ ଉଠିଯିବାପାଇଁ ଇଚ୍ଛା ନ ଥିଲା। ରକ୍ତ ପିଣ୍ଡୁଳାଟି କ୍ରମେ ମଧ୍ୟାହ୍ନ ମାର୍ତ୍ତଣ୍ଡରେ ପରିଣତ ହେବାଯାଏ ମୁଁ ସେମିତି ବସିଥାନ୍ତି। ଗୋଟାଏ ଜ୍ୟୋତିଗ୍ରହର ଶୂନ୍ୟସରଣୀ ଉପରେ ବିଚରଣ– କେତେ ରହସ୍ୟମୟ ଆଉ କେତେ ଚମତ୍କାର।

ନାଃ, ହେଲା ନାଇଁ। ସଂସାର ଡାକିଲାଣି, ଜୀବନ ଡାକିଲାଣି। ପଦ୍ମଭୃଙ୍ଗର ଜୀବନ ନୁହେଁ। ଗୋଡ଼ିମାଟିର ଜୀବନ। କେହି ଡାକୁଛି ମୋ ଦ୍ୱାରା ତାର ସ୍ୱାର୍ଥ ସିଦ୍ଧି ହେବ। ଅବା କିଏ ମତେ ଦାନ ଦେବାପାଇଁ ବାଧ୍ୟ କରାଇ ମୋର ସ୍ୱର୍ଗବାସର ପଥ ପରିଷ୍କାର କରିବ– ସେଥିପାଇଁ ଡାକୁଛି। ସବୁଆଡ଼େ କେବଳ ଡାକ– ଆହ୍ୱାନ, ପୃଥିବୀଟା ଚହଳମୟ। କେଉଁଠି ଟିକିଏ ସ୍ଥିର ହୋଇ ବସି ରହି ଆତ୍ମଚିନ୍ତା କରିବାକୁ ଅବସର ନାହିଁ।

ଆଉ ଦଣ୍ଡେ ଚୁପ ହୋଇ ବସି ରହିଲି। ଦୁଇଟି ପକ୍ଷୀ ଉଡ଼ିଗଲେ। କେଉଁଠି ଗୋଟିଏ ଶିଶୁ କାନ୍ଦୁଥିଲା। ଅଦୂରେ ଗୋଟାଏ ମଟର ଇଞ୍ଜିନର ଚିତ୍କାର। ଥୋଡ଼ାଏ ଲୋକ ରାଜପଥରେ ଅକଥ୍ୟ ଭାଷାରେ କାହାର କିଏ ଯାତ୍ରୀ ନେଇଗଲା ବୋଲି ଗାଳି ଦିଆ ଦେଇ ହୋଇ ଯାଉଥିଲେ।

ଦେଖିଲି, ଶୁଣିଲି। ଦିନ ଗୋଟିଏ ଜନ୍ମ ପାଇଛି। ପ୍ରସବ ବେଦନାର ସ୍ୱର ବେଶ ଚାରିଆଡ଼େ ମୂର୍ଚ୍ଛିତ ହେଲାଣି। ଆସିଲି, ଯାହାକୁ ଦେଖିଲି, ଯାହାକୁ ପାଖରେ ବସାଇ ଘଣ୍ଟାଟିଏ ମଣିଷ ଜୀବନର

କେତୋଟି ବାର୍ତ୍ତା ସଂଗ୍ରହ କରିଥିଲି, ତାକୁ ଏ କାହାଣୀଟିର ପ୍ରଧାନ ଚରିତ୍ର କରି ତାଆରି ମୁହଁରେ ତାଆରି କଥାକୁ ସଜାଇ ଦେବାକୁ ବସିଛି।

ସେ ଅଗଣିତ ଜନତା ଭିତରେ କେଉଁଆଡ଼େ ବିଲୀନ ହୋଇଯାଇଛି। ମାତ୍ର ମତେ କଅଣ ଦେଇଯାଇଛି ସେ କଥା ମୁଁ ପରିଷ୍କାର ଭାବରେ କହିପାରିବି ନାହିଁ। ହୁଏତ ସେ କିଛି ଦେଇ ନାଇଁ, ମୁଁ ନେଇଯାଇଛି ଠିକ ଯେମିତି ନିଦ୍ରିତ ଶିଶୁର ମୁଠାରୁ ଜନନୀ ବସ୍ତ୍ରାଞ୍ଚଳ ଖସାଇ ନେଇ ପୁଣି ଘରଧନ୍ଦାରେ ଲାଗିଯାଏ, ଠିକ୍ ସେମିତି।

ଆମେ ସମସ୍ତେ ଘୁମନ୍ତ ଶିଶୁ। କଥାଟି କହିବାକୁ ବେଶ ଭଲ ଲାଗିଲା। ନୁହେଁ କି? 'ଦୁଃଖିଧନ, ଉଠିଲୁ ଏଡ଼େ ବେଗି କାହିଁକି' ବୋଲି ମାଆ ତ ପୁଣି ଦୁଃଖ କରେ। ଆମେ ଉଠି ବସିଲେ, ଆମର ପଶୁତ୍ୱ ବାହାରେ, ଶୋଇ ପଡ଼ିଥିଲେ ପୃଥିବୀ ଶାନ୍ତିରେ ଥାଏ। କି କଥା କହୁ କହୁ କଅଣ କହୁଛି! ସେଇ ଲୋକ... ହଁ...

— ଶୁଣୁଚ?

— ହଁ ଶୁଣୁଚି।

— ଶୁଣିବାର ତ ଶେଷ ହୋଇଗଲା।

— ହଁ ଶେଷ ହୋଇଗଲା।

ଉପରେ ଗୋଟିଏ ଦୀର୍ଘଶ୍ୱାସ। ଘରଟି ଅନ୍ଧାର। ସେଇ ବେଦନା-ସିକ୍ତ ଶ୍ୱାସଟି ଘର ଭିତରେ ସଞ୍ଚରି ଯାଉଥାଏ।

— ତେବେ ମୁଁ ଉଠେ।

— ହଁ ଉଠ।

ଆହୁରି ନିବିଡ଼ ଅନ୍ଧକାର। ବାହାରେ ଦୁଇବୁନ୍ଦା ବର୍ଷା ପଡ଼ିଲାଣି। ଯେଉଁ ଛୋଟ ଝରକାଟି ମେଲା ଥିଲା, ତାହାରି ଭିତରେ ଦୂରକୁ ଲମ୍ବିଯାଇଥିବା ଆକାଶ ପଥରେ କେତେଥର ବିଜୁଳି ଝଟକି ଗଲାଣି।

ବିଜୁଳି। ବର୍ଷା! ଆରପାଖେ ତରୁଣ ଓ ତରୁଣୀ!

କିନ୍ତୁ, ମୁଁ ଆଉ କଅଣ କରିବି? ତୁମର ଜୀବନ ନଷ୍ଟ କରି ଦେଲି। ମୋତେ କ୍ଷମା କର।

— ଛିଃ ତୁମେ ସ୍ୱାମୀ, ମୋର ଦୁର୍ଭାଗ୍ୟ।

— ହଁ, ସ୍ୱାମୀ, ରାକ୍ଷସ। ଭାଉଜଙ୍କୁ କହିଥିଲି, ସେ ବିଶ୍ୱାସ କଲେ ନାହିଁ। କହିଲେ ଆଉ କେତେଦିନ ବାହାରେ ବାହାରେ ବୁଲିବାପାଇଁ ଯୋଗାଡ଼ କରୁଛ। ସେ କଥା ହବ ନାହିଁ। ତୁମକୁ ଚାରିହାତ ନକଲେ, ତୁମେ ଜବତ ହବ ନାହିଁ।

— ଛାଡ଼, ସେ କଥାରୁ କଣ ମିଳିବ

— ତୁମେ କିନ୍ତୁ ସରିଗଲ, ମୁଁ ତୁମକୁ ଜାଣିଶୁଣି ହତ୍ୟା କଲି। ମାଟ୍ରିକୁଲେସନ୍ ଯାଏ ପଢ଼ିଛି। ମୁଁ ପେଟ ପୋଷି ପାରିବି। ତୁମେ ଅକ୍ଷତ। ଯେଉଁ ଶପଥ କରିବାକୁ ଲୋକେ ମତେ କହିବେ, ମୁଁ ସେଇ ଶପଥ ନେବି, ତୁମକୁ ମୁକ୍ତି ଦେଇଛି। ତୁମେ ବାପ ଘରକୁ ଯାଅ। ଅନ୍ୟତ୍ର ବିବାହ କର। ସୁଖରେ ରୁହ। ତୁମେ ଯେ ମତେ ବାହାହୋଇ କୁମାରୀ, ସେ କଥା ମୁଁ ଦେବତାଙ୍କ ପାଖରେ ଶପଥ କରି କହିବି। ଯେତିକି ମାତ୍ର ମୋର ଶିକ୍ଷା ଅଛି, ସେତିକି ମତେ ଶିଖେଇଛ

ସ୍ପଷ୍ଟବାଦୀ ହେବାପାଇଁ। ଈଶ୍ୱର ତୁମର ମଙ୍ଗଳ କରନ୍ତୁ।

ଓଡ଼ିଶାର ଏକ ପଲ୍ଲୀର ଏକ ନିଭୃତ କକ୍ଷରେ ଜୀବନର ସୋହାଗ ସମ୍ପଦକୁ ବିସର୍ଜନ କରି ଭବିଷ୍ୟତର ଅନ୍ଧକାରକୁ ସ୍ୱାଗତ କରିନେଲେ– ଏଇ ଦୁଇଟି ତରୁଣ ତରୁଣୀ। କେତେ ଏହିପରି ବେଦନାତପ୍ତ ମରୁଭୂମିରେ ପଥଚାରୀ ହେଉଥିବେ। ଜଣକର କଥା ଆଜି କହିବାକୁ ବସିଛି। ସେଇ ମୋର ଆଜିପାଇଁ ଲେଖନୀର ସାର୍ଥକ ପୁରୁଷ।

ଝିଅଟି ଆଗ ଉଠିଯାଇ କବାଟ ଖୋଲିଦେଲା। ବାହାରେ ଝଡ଼। ଆକାଶ ଭାଙ୍ଗିପଡୁଛି। ରତ୍ନାକର ଦୁଇ ହାତରେ ମୁଣ୍ଡଧରି କଇଁ କଇଁ ହୋଇ କାନ୍ଦିଉଠିଲା।

ଝିଅଟି ଫେରିଆସି ରତ୍ନାକରକୁ ଛାତିକୁ ଆଉଜାଇ ଆଣିଲା। କହିଲା– ତୁମେ କାନ୍ଦନାଇଁ, ମୁଁ ଭାବୁଛି ଏଥିରେ କିଛି ଗୋଟାଏ ଗଣ୍ଡଗୋଳ ରହିଛି। ମୁଁ ବାପଘର ଯିବିନାଇଁ।

ରତ୍ନାକର ମୁଣ୍ଡ ଉଠାଇଲା। ଆଖିରେ ତାର ଧାରା ଶ୍ରାବଣର ପ୍ରବାହ। କଥା କହିବାକୁ ଆରମ୍ଭ କଲେ କଣ୍ଠରୋଧ ହୋଇଯାଉଛି। ତୁହାଇ ତୁହାଇ କୋହମିଶା ଅଶ୍ରୁଧାର ତାକୁ ନିର୍ବାକ୍ କରିଦେଇଛି। ତାର ନିଷ୍ଫଳ ପୌରୁଷ ତାକୁ ଧିକ୍କାର ଦେଇଛି।

"ତୁମ ବାପା ତୁମକୁ ବାଧ କରି ନେଇଯିବେ।"

"ମୁଁ ଯିବି ନାଇଁ।"

"ପାଗଳ ନା କଅଣ? ପୁରୁଷ ଧର୍ମ ତ ମୁଁ ରକ୍ଷା କରି ପାରିବି ନାଇଁ। ତୁମ ସୁଖରେ ମୁଁ କଣ୍ଟା ଛାଟିବି କିଆଁ? ତୁମେ ଯାଅ, ଅନ୍ୟଠି ବିବାହ କର।"

ବାହାରେ ପ୍ରଳୟ ଘଟିଛି।

'ମତେ ସବୁ ଖୋଲି କରି କୁହ, କିଛି ଉପାୟ ଅଛି କି ନାହିଁ?'

'ଆଉ ଉପାୟ?' ରତ୍ନାକରର ହୃଦଫଟା ଦୀର୍ଘ ନିଃଶ୍ୱାସରେ ଆଉ ଥରେ ଘରଟି ଥରିଗଲା।

ବାସ୍ତବରେ ଉପାୟ ନ ଥିଲା। ଆଜି ଓଡ଼ିଶାର ଗାଁ ଗଣ୍ଡାରେ ବିନା ପାଠ ଓ ସାଧନାରେ ଚିକିତ୍ସକ ଚିକିତ୍ସା ଆରମ୍ଭ କରିଛନ୍ତି। ସାମାନ୍ୟ ଏକ ଅସ୍ତ୍ରୋପଚାର କରିବାକୁ ଯାଇ କେହି ଜଣେ ଡାକ୍ତର ରତ୍ନାକରର ପୌରୁଷକୁ ଚିରଦିନ ପାଇଁ ଆହତ କରିଯାଇଛି। ରତ୍ନାକର କହେ ଡାକ୍ତରର ଅର୍ଥ ଲାଳସାକୁ ସେ ଶାନ୍ତ କରିପାରି ନ ଥିଲା। ଫଳରେ ଏଇ ଦୁର୍ଦ୍ଦଶା। ମୁଁ ବିଶ୍ୱାସ କଲି ନାହିଁ। ମୁଁ କଳ୍ପନା କରିପାରିଲି ନାହିଁ ଯେ ସମାଜରେ ସେବାବ୍ରତଧାରୀ ନରପିଶାଚ ଅଛନ୍ତି ଯାହାଙ୍କ ପାଖରେ ଅର୍ଥ ହିଁ ଏକମାତ୍ର କାମନା।

ଆଶ୍ଚର୍ଯ୍ୟ!

ରତ୍ନାକରର ସ୍ତ୍ରୀ ସୁରେଖା ସେହି ରାତ୍ରିରେ ଏଇକଥା ଶୁଣି ମୂର୍ଚ୍ଛା ଯାଇଥିଲା।

"ଆପଣଙ୍କର ଟିଉସନ୍ ମାଷ୍ଟର ଦରକାର ଥିଲା ବୋଲି ଶୁଣିଲି। ମୁଁ ମାଟ୍ରିକୁଲେସନ ପାଶ୍ କରିଛି। ଉଚ୍ଚ ଶିକ୍ଷା ପାଇଁ ଇଚ୍ଛା କରିଛି। ମତେ ସାହାଯ୍ୟ କଲେ ମୁଁ କୃତଜ୍ଞ ରହିବି।"

ଗୃହିଣୀ ଆଗ ମାଷ୍ଟରଙ୍କୁ ଦେଖିବାକୁ ଆସିଲେ, ଆଉ ରତ୍ନାକର କଥା ଶୁଣିଲେ। ବାବୁ ପଛରେ ଦାନ୍ତ ନିକୁଟି ଉଭା ହେଲେ।

ଗୃହିଣୀ ଆରମ୍ଭ କଲେ–

'ତୁମେ ଗରିବ ?'

'ହଁ, ଘର ଖଣ୍ଡିଏ ଅଛି, ଜମିବାଡ଼ି ହସ୍ତାନ୍ତର ହୋଇ ଯାଇଚି। କିଛି ସାହାଯ୍ୟ ପାଇଲେ ଆଉ ପଢ଼ନ୍ତି।'

'ଓଃ, ପଢ଼ିବ, ପଢ଼େଇବ, ସେ କି ପଢ଼େଇବ ? ତା ହେବ ନାଇଁ। ତମ ବୟସ ?'

ରତ୍ନାକର ନୀରବ ରହିଲା।

'ହୋ, ମାଷ୍ଟ୍ରେ ଶୁଣ, ମୋ ଘରେ ଦୁଇଟି ବଢ଼ିଲା ଝିଅ, ସେଇମାନେ ପଢ଼ିବେ। ଆଉ ତୁମ ଭଳିଆ ଯୁବକ ମାଷ୍ଟ୍ରଙ୍କୁ ରଖିଲେ ମୋ ଝିଅକୁ ନେଇ ଏକାବେଳକେ ହାବଡ଼ା ଟିକଟ... ସେ କଥା ପଟେଙ୍ଗା ନେଇଁ– କଅଣ ଦାନ୍ତନିକୁଟି ପଛରେ ଛିଡ଼ା ହୋଇଛ ମ ? କହୁନ ! ମୁଁ ମାଇପି ଲୋକ ଏଇସବୁ କଥା କହିବି ନା ?'

ବାବୁ ଆଗକୁ ଆସିଲେ–

"ଶୁଣ ମାଷ୍ଟ୍ରେ, ଆମର ବୁଢ଼ା ଲୋକ ଦରକାର। କିନ୍ତୁ ହଇଏ ଶୁଣୁଚ, ବୁଢ଼ାଲୋକ ଯେ ନିରାପଦ, ଏକଥା କିଏ କହିବ ?"

ଗୃହିଣୀ କହିଲେ–

"ମୁଁ ଦେଖିବା ମାତ୍ରେ କହିଦେବି। ଏ ମାଷ୍ଟ୍ର ହବନାଇଁ, ହଇଲୋ ସରଳା, ବିମଳା, ଦେଖତ ଆସି ଏ ମାଷ୍ଟ୍ର ତମ ମନକୁ ପାଉଛି କି ନାହିଁ ?

ରତ୍ନାକର ଆଉ ଛିଡ଼ାହୋଇପାରିଲା ନାହିଁ। କେବଳ ଏତିକି କହିଲା– ଭଗବାନ ଶାସ୍ତି ଦେଇଛନ୍ତି। ନିର୍ଭୟରେ ମତେ ଆପଣ ରଖି ପାରନ୍ତି, ମାତ୍ର ଯେପରି ବ୍ୟବହାର ଦେଖାଇଲେ, ତାହାଠାରୁ ଭିକ ମାଗିବା ବରଂ ଭଲ।

ସେହିଦିନଠାରୁ ରତ୍ନାକର ଘୂରି ବୁଲୁଛି।

"ଆପଣଙ୍କୁ କାହିଁକି ସବୁ କହିଦେବାକୁ ଇଚ୍ଛାକଲି। ଲଜ୍ଜା ସଂକୋଚ ହେଲା ନାହିଁ। ଯେତେଆଡ଼େ ଟିଉସନ୍ ଖୋଜି ପାଇଛି ଓ ଯେଉଁଠି ଛାତ୍ରୀର ଅଭିଭାବକ ମତେ ଯୁବକ କହି ଫେରାଇ ଦେଇଛନ୍ତି, ସେଠି ମୁଁ ମୁହଁ ଫିଟାଇ କହିପାରିଲି ନାହିଁ ମୁଁ ପୌରୁଷହୀନ ଜୀବ। ମୋ ଜୀବନରେ ସେଭଳି ସୁଖ ସଂଭୋଗ ନାହିଁ। ଆପଣଙ୍କ ଆଖିରେ କି କରୁଣା ଦେଖିଲି କେଜାଣି ଅକପଟ ଚିତ୍ତରେ ସବୁ କହିଦେଲି।"

ରତ୍ନାକର ମୋ ପାଖରେ ବସିଛି। ମୁଁ ତାକୁ ଚାହିଁ ରହିଛି। ତାଆରି ସ୍ଥୁଳ ଶରୀର ଭିତରେ ମୁଁ ଦେଖୁଛି ଏ ଜୀବନରେ କେତେ ବିଭିନ୍ନ ରୂପ। ଆଶା ନାଇଁ, ଆଶ୍ୱାସନା ନାହିଁ, ଯୌବନ ନାହିଁ, ଇନ୍ଦ୍ରିୟ ନାହିଁ; ଅଥଚ ଏଇ ରତ୍ନାକର ଉଚ୍ଚଶିକ୍ଷା ପାଇଁ ଅର୍ଥ ନିମନ୍ତେ ଘରେ ଘରେ ଆବେଦନ ଜଣାଉଛି। ତାର ନିଷ୍ଫଳ ଜୀବନକୁ ନିଷ୍ଫଳ କହିବା ପାଇଁ ସେ ପ୍ରସ୍ତୁତ ନୁହେଁ।

ରତ୍ନାକର ମତେ ବିଷଣ୍ଣ ଦେଖି କହିଲା–

"ଆପଣଙ୍କର କେହି ପଢ଼ିବା ପାଇଁ ନାହାନ୍ତି ମୁଁ ଜାଣେ। ତଥାପି ମୁଁ କେଉଁ ଅଜଣା ଶକ୍ତିବଳରେ ଆପଣଙ୍କ ପାଖକୁ ଟାଣି ହୋଇ ଆସିଲି, କହି ପାରୁନାହିଁ। ମୁଁ କିନ୍ତୁ ଆଗକୁ ଯିବି। ମାଟ୍ରିକୁଲେସନ୍ ସାହିତ୍ୟ ବହିରେ ପଢ଼ିଥିଲି ରୂପ ରସ ଗନ୍ଧମୟ ଏଇ ପୃଥିବୀ। ମାତ୍ର ମୋ ଭାଗ୍ୟକୁ ଅନେକ କଥା ମତେ ଅବିଦିତ ରହିଯିବ। ତଥାପି ଚକ୍ଷୁ ଅଛି ଦେଖିବି, କାନ ଅଛି ଶୁଣିବି, ଭଗବାନ ମତେ ଏକାବେଳକେ ବିକଳ କରି ନାହାନ୍ତି ତ।"

ଏ ଲୋକକୁ କି ଦାନ ଦେବି, ମୁଁ ସ୍ଥିର କରିପାରିଲି ନାହିଁ। କି ସାନ୍ତ୍ୱନା ଦେବି, ତାହା ବି ଜାଣିପାରିଲି ନାହିଁ। କେଉଁ ଆଶାରେ ଏ ଲୋକ ଏତେ ଅଳ୍ପ ବୟସରେ ଆଗକୁ ଗତି କରିଯାଉଛି ?

ତେବେ ବୁଝିଲି ଭାରତର ଆତ୍ମା ସଜୀବ ରହିଛି। ସବୁ ନିଃଶେଷ ହୋଇଗଲେ ବି ହତାଶା ଆସୁନାହିଁ। ଧନ୍ୟ ଏ ଲୋକ। ଅର୍ଦ୍ଧ ଶିକ୍ଷିତ ପଲ୍ଲୀ ଯୁବକ। ଧନ୍ୟ ତୁମେ।

ରତ୍ନାକର ଛିଡ଼ା ହେଲା–

"ତେବେ ମୁଁ ଆସୁଛି। ଜିଲା କଂଗ୍ରେସ କମିଟି ସଭାପତି ତାଙ୍କର ଇଟାଭାଟିରେ ଖଣ୍ଡିଏ କିରାନି କାମ କରିଦେବା ପାଇଁ କହିଛନ୍ତି। ସେତକ ହେଲେ ଶ୍ରୀକ୍ଷେତ୍ର ଛାଡ଼ି ଆଉ କୁଆଡ଼େ ଯିବି ନାହିଁ।"

ରତ୍ନାକର ଦୁଇହାତ ତୋଳି ନମସ୍କାର କରିବାକୁ ଉଦ୍ୟତ ହେଲାବେଳେ ମୁଁ କହିଲି–

"ସୁରେଖା ? ତୁମ ସ୍ତ୍ରୀ ସୁରେଖା ?" ଏତିକିରେ ଶୀର୍ଣ୍ଣକାୟ ବୁଭୁକ୍ଷୁ ରତ୍ନାକରର ଆଖିରୁ ବାରି ବହିଆସିଲା। ମୁହଁକୁ ତଳକୁ କରି ସେ ଯାଉ ଯାଉଁ କହିଲା–

"ସେ ଅନ୍ୟକୁ ବାହା କରି ସୁଖରେ ଘର ସଂସାର କରୁଛି।"

ହଠାତ୍ ମନେହେଲା ଅଣୁ ପରମାଣୁ ଭେଦକରି ଗୋଟାଏ ବିପୁଳ ନିହାରିକାର ନୀଳ ସ୍ରୋତ ବହିଆସୁଛି। ବେଗମୟ ଏଇ ନୀଳ ହିମ ଶୀତଳ ସ୍ରୋତ ଭିତରେ ରତ୍ନାକର ଭଳି ସଂଖ୍ୟାହୀନ ମଣିଷ ଅବଗାହନ କରୁଛନ୍ତି। ନୀହାରିକାର ନୀଳ ସ୍ରୋତକୁ ଜୟଧ୍ୱନି କରିବାକୁ ଇଚ୍ଛା ହେଲା। ତାହା ହିଁ କଲି।

ରତ୍ନାକର କ୍ରମେ ଅଦୃଶ୍ୟ ହୋଇଗଲା।



# ପଛ-ପଲକ

ଦୀପାବଳୀ ଦଶହରା ପରେ ଓଡ଼ିଶାର କେତୋଟି ଅଞ୍ଚଳର ବନ ବନାନ୍ତର, ଶ୍ୟାମ କେଦାର, ନଦୀ ପର୍ବତ ବୁଲି ବୁଲି ଯେତେବେଳେ କର୍ମକ୍ଷେତ୍ରକୁ ଫେରି ଆସେ, ଅନୁଭବ କଲି ରାଜରାସ୍ତା ଉପରେ ବହମାନ ପବନ ସ୍ରୋତରେ ମୋ ପ୍ରତି କିପରି ଗୋଟାଏ ବିରୋଧ ଭାବ ଖେଳି ବୁଲୁଛି। ଅତି ସଂଗୋପନରେ ଲକ୍ଷ୍ୟ କଲି ତାହା ଆଉ କିଛି ନୁହେଁ; ଲେଖକ ଜୀବନରେ ସଚରାଚର ଯାହା ଘଟିଥାଏ; ଅତି ସ୍ୱାଭାବିକ ପରିଣତି।

ଗୋଟିଏ ଶ୍ରାବଣ ସଞ୍ଜରେ କେଉଁଠି ବିଲୋଳ ବିଦ୍ୟୁତର ଆଭା ତଳେ ନିଃଶଙ୍କ ଜୀବନ ମୋର ଥରେ ଶଙ୍କାୟିତ ହୋଇଯାଇଥିଲା। ଅନାହୂତ ସେ ଅନୁଭବ। ସେଥିରେ ନଥିଲା ଅନ୍ୱେଷଣ ବା ଅନଧିକାର ଆକୂତି। ଦୁନିଆର କୋଟି କୋଟି ଜୀବନର ଚଳମାନ ଜୀବନଧାରାରେ କାହା ସଙ୍ଗରେ କାହାର କ୍ଷଣିକ ତୀର୍ଯ୍ୟକ୍ ଭ୍ରୂଅଙ୍କନ ଯଦି ଅଙ୍କିତ ହୋଇଯାଏ ଓ ସେହି ଅଙ୍କନ ତାଳରେ ଗୋଟିଏ ଅପୂର୍ବ ମୁହୂର୍ତ୍ତ ଯଦି ସୃଷ୍ଟି ହୁଏ, ତାହା କଅଣ ଏତେ ବିଡମ୍ବନାର ବିଷୟ? ଏତେ ଇଙ୍ଗିତ, ଏତେ ଉପହାସର କାରଣ?

ଲେଖାଟି ବାହାରିଥିଲା; ନିର୍ଦ୍ଦୋଷ, ନିର୍ମଳ। ଶେଷ ଜୀବନରେ ଲେଖକର ଜ୍ୟୋତିହୀନ ଚକ୍ଷୁ ଦୁଇଟିରେ ଶାଳବନ ତଳେ କାହିଁ କେତେ ପଛରେ ଯେଉଁ ଦୁଇଟି ବିହଗୀ ଅସ୍ପଷ୍ଟ ଭାବରେ ଦେଖାଯାଇଥିଲେ, ତାହାରି ମାତ୍ର ଅନୁଚିନ୍ତନ। ବିସ୍ତାରିତ ଦୃଶ୍ୟପଟ ଉପରେ ଦୁଇଟି କ୍ଷୀଣ ଅନୁଭୂତି। ତାହାର ପକ୍ଷ-ବିସ୍ତାର ନାହିଁ; ତାହା ଅବଲୁପ୍ତପ୍ରାୟ, କ୍ରମ ସ୍ତିମୀତ। ତଥାପି ଜରାଜୀର୍ଣ୍ଣ ଲେଖକର ଏଇ ଟିକକ ମାୟିକ ସଂଭୋଗ- ଯାହା ଥିଲା ଆଜି ନାହିଁ। ତାରି ଉପରେ ସାମାନ୍ୟ ସୁଧାସେଚନ ଦୁନିଆର ସହସ୍ର ପଥଯାତ୍ରୀଙ୍କୁ ଯେପରି ସହସା ଚମକ ଦେଇପାରିଛି। ଲୁଣ୍ଠନକାରୀ ଦସ୍ୟୁକୁ ଯେପରି ହାତ ଉଠାଇ ଲୋକେ ଦେଖାନ୍ତି...ଏଇ ପଳାଇଗଲା, ଧର... ଧର- ଧନଦ୍ରବ୍ୟ ନେଇ ଚାଲିଗଲା...

ମୁଁ ଚାଲିଯାଏ ନାହିଁ। ଯେଉଁଠି ଥିଲି, ସେଇଠି ଅଛି। କେବଳ ମୋରି ପାଖ ଦେଇ ଆଉ ସଭିଏଁ ଚାଲିଯାଉଥିଲେ। ହାତ ହଲେଇ, ବାଡ଼ି ବୁଲେଇ, ହୋ... ହୋ କରି ସେଇମାନେ ଆଗକୁ ଧାଉଁଥିଲେ। ପାଣ୍ଡୁଶ୍ରୀ ଅଙ୍ଗରେ ଧାରଣ କରି, ହୃଦୟରେ ଜୀର୍ଣ୍ଣତାର ଶୁଷ୍କ ଅବଲେପ ରଖି ଏଇ ପଳାତକମାନଙ୍କୁ ମୁଁ ନିରୀକ୍ଷଣ କରି ବେଶ ଆମୋଦ ଅନୁଭବ କରୁଥିଲି। ନିଜକୁ ଚାହିଁବାରେ ବେଳ ନାହିଁ; ନିଜର ରନ୍ଧ୍ରମୟ ଜୀବନକୁ ନିରନ୍ଧ୍ର କରିବାର ପ୍ରୟୋଜନ ନାହିଁ, ଅଥଚ ଅପର ଜୀବନକୁ ଗୋଳା ବାରୁଦରେ ବିକ୍ଷତ କରିବାର ଅସୀମ ଆକାଙ୍କ୍ଷା ଅପ୍ରତିହତ ଭାବରେ ଏଇ ପଥଚାରୀମାନଙ୍କର ପେଷା ହୋଇଛି ଦେଖି ମୁଁ ସ୍ତବ୍ଧ ହୋଇଥିଲି।

ସେ ସ୍ତବ୍ଧଭାବ କ୍ଷଣକ ପରେ କଟିଗଲା। ପଥରଉପରେ ଦେଖିଲି ଝାଉଁଗଛର ଶୀତଳ ଛାୟାତଳେ ଛିଡ଼ା ହୋଇଛନ୍ତି ଆଉ ଜଣେ ସୁହୃତ ଓ

ସହଯାତ୍ରୀ, ମାତ୍ର ବୟସ୍କ– ଛନ୍ଦସିକ– ମୋ ଦେଶର କବି। ମୋର ଶ୍ରାବଣ ସଞ୍ଚର ଦାମିନୀ ଥରେ ସିନା କେବେ ଝରାଇଥିଲା ଝଲକ, କିନ୍ତୁ ଏଇ ବିଶ୍ରୁତକବିଙ୍କର ଜୀବନ–କାବ୍ୟ ଉପରେ ବହୁ ଶ୍ରାବଣ ବହୁ ବସନ୍ତର ବିଚିତ୍ର ସମାରୋହ ଯୁଗାନ୍ତରର ଆଲେଖ୍ୟ ବହନ କରି ଅପସରି ଯାଇଛି।

ଆଜି ସେ ବର୍ଦ୍ଧିଷ୍ଣୁ। ଶରତର କ୍ଷୀଣା ନଦୀ। ଯଷ୍ଟି ନ ଧରିଲେ ଚାଲି ହେଉ ନାହିଁ। ସଂସାରକୁ ଚାହିଁବାରେ ଭଙ୍ଗୀ ଭିନ୍ନ ହୋଇଗଲାଣି। ପରପାରକୁ ଯିବାପାଇଁ ପାଥେୟ ଖୋଜୁଛନ୍ତି। ସହଜରେ ହାତମୁଠାରେ କିଛି ଧରି ହେଉନାହିଁ। ସେଇ ଛିଡ଼ା ହୋଇଥିଲେ।

ମୋ ଦେଶର କବି। ଅଭୁକ୍ତ ଓ ଅସମ୍ମାନିତ। ଜୀବନ ସନ୍ଧ୍ୟାରେ ସମାଧି ଘଣ୍ଟା ବାଜିଉଠିବ। ଗୋଟିଏ ଫୁଲ କି ଟୋପିଏ ଚନ୍ଦନ ତାଙ୍କର ପାଟି ମଣ୍ଡନ କରିବ ନାହିଁ। ସନ୍ଧ୍ୟା ଦୀପଟିଏ ବି କେହି ଜଳେଇବେ ନାହିଁ। କହିବେ, ବେକାର ଜୀବନରେ ଗୁଡ଼ାଏ କଅଁଣ ଲେଖୁଥିଲା– କବିତା ଛନ୍ଦପକାଇ, ମିଥ୍ୟାକୁ ସତ୍ୟ କରି ମନ ଭୁଲାଣିଆ କେତୁଟା କଥା। ଜୀବନ ସଂଗ୍ରାମର ଭୀରୁ ପଳାତକ; କେଉଁଠି ଲଢ଼ିବାକୁ ସମର୍ଥ୍ୟ ହେଲା ନାହିଁ। ଅଗତ୍ୟା ହେଲା କବି ବାବଦୁକ, ବାଉଲ, ପଥଚାରୀ ଗାୟକ!!

ସେଇ ବାଟେ ରାଜନୀତିଜ୍ଞ ମଟର ଛୁଟାଇ ଚାଲିଗଲା। ମଟର ଉପରେ ତ୍ରିରଙ୍ଗା ପତାକା। ସରୁ କାଠି ଉପରେ ଫର ଫର ଉଡୁଛି। ବହୁତ କାମ। ଉଚ୍ଛନ୍ନ ଗତି। ଦେଶର ରକ୍ଷକ।

ମୁଁ ପାଖକୁ ଆସିଲି।

ସେ ଚିହ୍ନିଲେ– କହିଲେ– 'କେବେ ଆସିଲେ?'

ମୁଁ କହିଲି– 'ଆସିଲିଣି ଦୁଇଦିନ ହେଲା, ଅନେକ ସ୍ଥାନ ବୁଲି ଆସିଛି।'

'କଅଣ ଶରତ କାଳଟା ଆପଣ ସମଗ୍ର ଭାବରେ ଉପଭୋଗ କଲେ?'

ମୁଁ କହିଲି– 'ଗଦ୍ୟରେ ଯେତିକି ସମ୍ଭବ ସେତିକି, ଆପଣ ପଦ୍ୟରେ କେତେ ଉପଭୋଗ କଲେ କହନ୍ତୁ ତ?'

ସେ କହିଲେ– 'ଆପଣ ଗଦ୍ୟରେ ଯାହା କରି ପାରୁଛନ୍ତି, ମୁଁ ତ ତା' ପାରୁନାହିଁ। ଲଳିତ ଛନ୍ଦ ମୋର ନାହିଁ, କୋରଡ଼ା ଧରି ଏ' ସମାଜଟାକୁ ପଟାସ ପଟାସ ପିଟିବାକୁ ଇଚ୍ଛା ହେଉଛି। କୋରଡ଼ା ଅଛି, ମାତ୍ର ହାତ ଥରୁଛି– ଆପଣ ପିଟନ୍ତୁ।'

ସତରେ ତାଙ୍କ ମୁଖମଣ୍ଡଳରେ ଦେଖିଲି ନିର୍ମମ ଭାବ। ପିଟିଲାଭଳି ତାଙ୍କ ହାତଟା ଯଷ୍ଟି ସହିତ ଉପରକୁ ଉଠିଗଲା। ତାପରେ ସେ ଶାନ୍ତ ହୋଇଗଲେ। କହିଲେ–

'ଆପଣ ଯାହା ଲେଖିଛନ୍ତି, ତାହା ପଢ଼ିଛି। ଆପଣଙ୍କର ନମନୀୟ ବ୍ୟକ୍ତିତ୍ୱକୁ ଯଦି କେହି ନାରୀ ଶ୍ରଦ୍ଧା କରେ, ତେବେ ସେଇଟା କଅଣ ଅପରାଧ? ଅଥଚ ଚାରିଆଡ଼େ ପାଟିଗୋଳ ହେଉଛି ଯେ ଆପଣ କଅଣ ବୋଲି କଅଣ କରିଦେଲେ?'

ମୁଁ ସାମାନ୍ୟ ହସିଲି। କ୍ରମ ଅସ୍ତମିତ ସୂର୍ଯ୍ୟରେଖା ଆମ ଦୁହିଁଙ୍କ ଉପରେ ସିନ୍ଦୂର ଝରାଉଥାଏ। ସେ ଉତ୍ୟକ୍ତ।

ମୁଁ ଧୀରେ କହିଲି– "ଅବଶ୍ୟ କିଛି କରିଛି, ଅନ୍ୟ ହୃଦୟରେ ତରଙ୍ଗ ତୋଳିଛି। ଆନନ୍ଦ ଦେଇଛି। ଏଇମାତ୍ର ଅପରାଧ।"

କବି ଆନମନା ହୋଇଗଲେ। ତାଙ୍କର ଭ୍ରୂକୁଞ୍ଚିତ ହେଲା। କହିଲେ– "ସେତେବେଳେ ସବୁଜ ସାହିତ୍ୟର ଭିତ୍ତି ପଡୁଥାଏ। ଏବେ ସବୁ ସ୍ୱଚ୍ଛ ମନେ ପଡୁଛି। କେତେକାଳର କଥା ହେଲାଣି। ମୁଁ ଲେଖୁଥାଏ। ପ୍ରଣୟ, ମଳୟ, ବାଂଶରୀ– ଏମିତି କେତେ ଶବ୍ଦର ବ୍ୟଞ୍ଜନା। ଆମର ସମିତି ମତେ ସାବାସ କରୁଥାନ୍ତି। ସେତେବେଳେ ମୋର ସୁନ୍ଦର ଚେହେରା ଥିଲା। ଏବେ ପଚାଶ ବର୍ଷରେ ଅଶୀ ବର୍ଷର ରୂପ, ଆଖିର ଜ୍ୟୋତି ବିଶେଷ ନାହିଁ। ଥକି ଥକି ଚାଲୁଛି। କେତେବେଳେ ରହିଯିବି, କହି ପାରୁନାହିଁ। ମୁଁ ନିଜେ ଉପପାରକ ହୋଇ ଯାଇ ନଥିଲି। ନାରୀ ଆଗରେ ସେ ବୟସରେ ବଡ଼ ଲାଜ ପାଇଥିଲି। କିନ୍ତୁ ଗୋଟିଏ ସଭାରେ କୁନ୍ତଳା ମତେ ଦେଖିଥିଲା। ମୋର ଗୋଟିଏ କବିତା ମୁଁ ସେଇ ସଭାରେ ପଢ଼ିଥିଲି। ସାହିତ୍ୟ ସଭା ହେବ କି କଅଣ ହେବ। ମନେ ନାହିଁ।"

ମୁଁ ବେଶ୍ ଉଦବେଗ ଦେଖାଇ ପଚାରିଲି, କୁନ୍ତଳା? କେଉଁ କୁନ୍ତଳା?

"ପରିଚୟଟା କଣ ନିହାତି ଦରକାର?" କବି ପଚାରିଲେ। ମୁଁ କହିଲି– 'ଆପଣଙ୍କ ଯୌବନ ସମୟରେ କୁନ୍ତଳା ନିଶ୍ଚୟ ସାବତ ହୋଇଥିବେ।'

ସେ ଏଥିପାଇଁ ପ୍ରସ୍ତୁତ ତ ନ ଥିଲେ। ଚମକି ପଡ଼ିଲେ।

ହାତ ମୁଠାର ବାଡ଼ିଟା ହଲିଗଲା। ବିକୃତ ହସ ହସିଲେ। ଆକାଶ ସୁରଙ୍ଗ ହୋଇଥିଲା, ତାହା କ୍ରମେ ମଉଳିଯାଇଛି, ଆସୁଛି ସନ୍ଧ୍ୟା। ଅଦୂର ଷ୍ଟେସନରେ ଲୁହାଚକ ଗଡ଼ିଯାଇଛି। ସଶବ୍ଦ...

ସେ ମତେ ଭୁଲାଇବା ପାଇଁ କହିଲେ– 'କିଛି ନାହିଁ, ସ୍ମୃତିମାତ୍ର।

ମୁଁ କହିଲି– 'ସେ ସ୍ମୃତିକୁ ସାର୍ବଜନୀନ କରି ନାହାନ୍ତି କି?'

'କରିଛି, କବିତାରେ।' ଏତିକି କହି ସେ ମତେ ଚାହିଁ ରହିଲେ।

ସେ ଦୃଷ୍ଟି ରୋମାଞ୍ଚ ଓ ବିଷାଦର ଯୁଗପତ ଦୃଷ୍ଟି। ସେଇ ଅବଲୋକନ ପଛରେ କେତେକାଳର କାରୁକଳା ରହିଛି। ମୁଁ ବିରତ ହେଲି ନାହିଁ– ପଚାରିଲି– ଜୀବନରେ କିନ୍ତୁ ପାଇଲେ ନାଇଁ ନା?

ସେ କ୍ଷୀଣ ହସିଲେ– 'ନା, ଜୀବନଠାରୁ କାବ୍ୟ ସତ୍ୟ ହୋଇଗଲା। ଆଚ୍ଛା, ଚାଲ ଷ୍ଟେସନ ଆଡ଼େ ଆପଣଙ୍କୁ ଗୋଟାଏ ଦୃଶ୍ୟ ଦେଖାଇବି, କିନ୍ତୁ ଗୋଟିଏ ସର୍ତ୍ତ ରହିଲା, ସେଇ ଉପାଦାନ ଉପରେ ଗୋଟିଏ ଗଳ୍ପ ଲେଖିବେ। ମୁଁ ସେଇଆଡୁ ଏକ୍ଷଣି ଫେରି ଆସିଛି। ମନଟା ତିକ୍ତ। ଆଚ୍ଛା ଚାଲନ୍ତୁ।'

ପ୍ଲାଟଫର୍ମ ଉପରେ ଛିଡ଼ାହୋଇ ଦେଖିଲେ ଦୂରସ୍ଥ ସିଗନାଲ ପାଖରେ କେତେଗୁଡ଼ିଏ ଲୋକ। ଲୁହା ଲାଇନ ଧାର ଦୁଇପଟରେ ଲୋକ ଛିଡ଼ା ହୋଇଛନ୍ତି।

କବି ଓ ମୁଁ ସେଇଆଡ଼େ ଗତି କଲୁ।

ଦୃଶ୍ୟଟି ଚମତ୍କାର! ଗୋଟିଏ ଜୀବନର ଅବସାନର ଚିତ୍ର। ନିରୁପଦ୍ରବ ମରଣ। ମସ୍ତିଷ୍କରେ ଦଧିଭାଣ୍ଡଟି ଗଳିତ ହୋଇ, ଉପଳ ଛିନ୍ନ ଭିନ୍ନ ହୋଇପଡ଼ିଛି, ମୁଣ୍ଡ ନାହିଁ। କାନ ପାଖରୁ ଚକ୍ର ଚିରି

ନେଇଛି ସମଗ୍ର ମଥାଟିକୁ। ମାଆ ବସୁନ୍ଧରାକୁ ବର ମାଗିବା ଭଳି ଭଙ୍ଗୀରେ ଯୋଡ଼ ହସ୍ତରେ ତଳକୁ ଶୋଇ ରହିଛି ଶିରହୀନ ଗୋଟିଏ ମହାପ୍ରାଣୀର ତରୁଣ ଅଙ୍ଗ।

ସ୍ମୃତି, କବିତା, ଶ୍ରାବଣ ସଞ୍ଚାର ଅପୂର୍ବ ପରିଣତି!!

ଏଇ ମଣିଷ ତ?

କାନ ପାଖରେ କବି କହିଲେ– 'ଆତ୍ମହତ୍ୟା'।

ମୁଁ ମାନିଲି ନାହିଁ– 'ନା, ଦୁର୍ଘଟଣା'।

ସେ ହସିଲେ, ବଡ଼ ଅପରିଚ୍ଛନ୍ନ ହସ, ବିଶ୍ୱପ୍ରତି ରସହୀନ ହସ।

କହିଲେ– 'ଷ୍ଟେସନକୁ ଗାଡ଼ି ଖୁବ୍ ଧୀରବେଗରେ ଆସୁଥିବା ବେଳେ ଦୁର୍ଘଟଣା ଘଟେ ନାହିଁ। ଏ ଆତ୍ମହତ୍ୟା; ହୁଏତ କୌଣସି ନାରୀପାଇଁ।

ମୁଁ କହିଲି– "ମୂର୍ଖ, ଯା କାହିଁକି କଲା?"

ସେ ଥରିଗଲେ। ମୁଁ ଚାହିଁ ରହିଥିଲି। ସ୍ଥବିର ଶରୀରରେ ସେଭଳି ଶିହରଣ ବେଶ ସ୍ପଷ୍ଟ। ମୁଁ ସଙ୍ଗେ ସଙ୍ଗେ କହିଲି–

'ଚାଲନ୍ତୁ ଯିବା, ଆପଣ ଅସୁସ୍ଥ ଜଣାପଡୁଛନ୍ତି।'

ସେ ଆଉ ଦଣ୍ଡେ ଛିଡ଼ାହେଲେ। ପୋଲିସ ତାଙ୍କୁ ସାକ୍ଷୀ ହେବାପାଇଁ ଅନୁରୋଧ କରୁଥାଏ। ସୁଇସାଇଡ଼ କେଶ, ଆପଣଙ୍କୁ କୋର୍ଟ ଯିବାକୁ ହେବ ନାହିଁ, କେବଳ ଦସ୍ତଖତ କରିଦିଅନ୍ତୁ।

ସେ ମନା କଲେ। ମତେ ଫେରି ଚାହିଁ କହିଲେ– 'କାବ୍ୟକୁ ଜୀବନଠାରୁ ସତ୍ୟ ବୋଲି କହି ମୁଁ କଅଣ ଭୁଲ କରିଛି? ତା'ନହେଲେ ଆଜି ମୋର ଉତ୍ତର–ପୁରୁଷ ଆପଣମାନେ ଏଇ ଭାଗ୍ୟହୀନ ଯୁବକଟିକୁ କହିବାଭଳି ମତେ ବି କହିଥାନ୍ତେ... ମୂର୍ଖ...!!'

ମୁଁ ହଠାତ ଅଭିଭୂତ ହୋଇ କହିଲି–

'ଆପଣ?'

'ତାଙ୍କ ପାଇଁ?'

'ସେ ନୀରବ।'

'ଓଃ...

ସେ ନିରୁତ୍ତର।

'ଯୌବନର ସେଇ...'

ଷ୍ଟେସନର ପ୍ରଦୀପମାଳା ଜଳି ଉଠିଲା। ଆଉ ଗୋଟିଏ ସଞ୍ଚାର ଅଭିସାର... ସେ ଥିଲା ଶ୍ରାବଣ ... ଏ' ଶୀତ ସନ୍ଧ୍ୟା।



# ଗରଳ ଗ୍ରାସ

ବନମାୟା ଆତଙ୍କରେ ଶିହରିଉଠି ଚିତ୍କାର କଲେ– ଓଃ, ଏ' କଅଣ ହେଲା ? ଧୀର ସ୍ଥିର ହୋଇ ଯାଉନ ? ଚଉକାଠଟା ଏତେ ଜୋରରେ ବାଜିଗଲା ?

ଚଉକାଠ କେବଳ ଆକସ୍ମିକ ଭାବରେ ବାଜି ନଥିଲା। ବଳରାମଙ୍କର ମୁଣ୍ଡରୁ ଲହୁଧାରେ ବୋହି ଆସିଲା। ସେ 'ଉଃ' କହି ହାତରେ ମୁଣ୍ଡକୁ ଚାପି ଧରି ବସି ପଡ଼ିଲେ।

ସକାଳ। ସୂର୍ଯ୍ୟ ଉଠି ଆସୁଛନ୍ତି। ବୈଶାଖର ପ୍ରଭାତ। ସେତିକିବେଳୁ ରାଜପଥ ଉପରେ ରାସ୍ତା ପିଚୁ କରିବାର ସାମଗ୍ରୀ ସ୍ତୂପ ପ୍ରମାଣେ ଜମା ହୋଇଛି। କଳା ରାଳ ମିଶ୍ରିତ କଙ୍କରଗୁଡ଼ାକ ଯନ୍ତ୍ର ଗର୍ଭରୁ ତଳକୁ ଖସିପଡୁଛି। କୁଲି ଆଉ କୁଲିଆଣୀମାନେ ବୋହି ଆଣୁଛନ୍ତି ସେଗୁଡ଼ାକୁ ଟୋକେଇ ଭର୍ତ୍ତିକରି। ଯନ୍ତ୍ରଟା ଗର୍ଜନ କରୁଛି। ଉପରକୁ ଉଠିଯାଉଛି ମୋଟା କଳାଧୂଆଁର ଘନ ଭଉଁରୀ।

ଗୋଟିଏ ସୁନ୍ଦର ପ୍ରଭାତରେ ଏ ଦୃଶ୍ୟଟି ଶୋଭନୀୟ ନ ଥିଲା। ଯନ୍ତ୍ରଦାନବ ସଙ୍ଗେ ମାନବର କର୍ମ ସଂଘର୍ଷର ଚିତ୍ର। ଟିକିଏ ଦୂରରେ ଚା' ହୋଟେଲ୍। ସେଠି ଲୋକେ ଜମା ହେଲେଣି। ଦୁଇଟା କାଉ, ଆଉ ଗୋଟାଏ ଖଣ୍ଡିଆ ଲାଞ୍ଜିଆ ମାଈ କୁତୀ ଦୋକାନ ସାମ୍ନା ଭୂଇଁ ଉପରେ ଚାହିଁ ରହିଛନ୍ତି। ସକାଳଟା ଉଦାସ ଓ ବିବର୍ଣ୍ଣ; ତଥାପି ସୂର୍ଯ୍ୟ କ୍ରମେ ଉତପ୍ତ ହୋଇଥିଲେ।

ବନମାୟା ପଣତରେ ରକ୍ତଧାରକୁ ପୋଛି ଆସିଲେ। ସ୍ୱାମୀଙ୍କୁ ସଂଗ୍ରାମମୁଖୀ ଗୋଟିଏ ନିରାଶ୍ରୟ ଅସହାୟ ଜୀବ ଛଡ଼ା ସେ କେବେ ତାଙ୍କ ଚରିତ୍ରରେ ବୈଶିଷ୍ଟ୍ୟ ଦେଖି ନାହାନ୍ତି। ବନମାୟାଙ୍କ ଜୀବନରେ ପୂର୍ବରାଗ ବା ମାନ ଅଭିମାନ କିଛି ନଥିଲା। ପଲ୍ଲୀଝିଅ ପଲ୍ଲୀବଧୂରେ ରୂପାନ୍ତରିତ ହେବାକୁ କେତେ ବା ଆୟୋଜନ ? କିଛି ନୁହେଁ। ଦୁଇଟା ଢୋଲ, ଗୋଟିଏ ମହୁରୀ ବାଜଣା ଭିତରେ ବନର ମାୟା ତୁଟାଇ ବନମାୟା ସହରକୁ ଆସିଲେ। ସହରରେ ସେଇ ଅପ୍ରଶସ୍ତ ଅନ୍ଧକାର ଗଳିରେ ଆରମ୍ଭ ହେଲା ବନମାୟା ଓ ବଳରାମଙ୍କର ଜୀବନଯାତ୍ରା। ଦୂର ପ୍ରସାରିତ ପିଲାଦିନର କେତୋଟି ସ୍ମୃତି ମନେ ପକାଇ ଥରେ ଥରେ ସେ ଶିହରିଉଠନ୍ତି।

– କାହିଁକି ଏମିତି ଦଉଡ଼ି ଯାଉଥିଲା ? ଦାଣ୍ଡରେ କିଏ କଅଣ ଡାକିଲା ? ସ୍ତ୍ରୀଙ୍କର ଏଇ ପ୍ରଶ୍ନରେ ବଳରାମ କି ଉତ୍ତର ଦେବେ ଠିକ୍ କରିପାରିଲେ ନାହିଁ। ହଁ... ଗୋଟାଏ ଡାକ... ଗୋଟାଏ ମର୍ମଫଟା ଚିତ୍କାର ... କିଏ ଯେପରି ଶିଶୁକଣ୍ଠର କାକଳି ତୋଳି ଡାକିଲା... ବାପା, ମତେ ମଟର ମାଡ଼ିଗଲା... ମତେ ରଖ... ମତେ ରଖ...

କିନ୍ତୁ ମଟର କାହିଁ ? ସେ ପିଲା ବି କାହିଁ ? କେଉଁ ପିଲା ? ଗୋଲ ଆଖି; ଗୋରା ମୁହଁ, ତିନିବର୍ଷର କୁମାର ? ସେଇ ତ... କୁମାରକୁ ମଟର ମାଡ଼ିଗଲା... ତା ମୁଣ୍ଡ ଫାଟିଯାଇଛି... ରକ୍ତ... ରକ୍ତ...

ହାସ୍‌ପାତାଳରେ ବଳରାମଙ୍କର ସମ୍ପୂର୍ଣ୍ଣ ଭାବରେ ସବୁ ପରୀକ୍ଷା କରାଗଲା। ଦୋଷ ଭିତରେ କେବଳ ମସ୍ତିଷ୍କ ବିକାର। ଅତ୍ୟଧିକ ଚିନ୍ତା... ଅତ୍ୟଧିକ ପରିଶ୍ରମ... ଅତ୍ୟଧିକ ଜୀବନ ସଂଗ୍ରାମରେ ମାନସିକ ଉଦ୍‌ବେଗ...

କୁମାର, ବନ ଓ ବଳରାମଙ୍କର ତିନିବର୍ଷର ପୁଅ। ଗୋଟିଏ ମାତ୍ର ସନ୍ତାନ। ସ୍ୱପ୍ନରେ ବିଭୋର ବଳରାମ ଭାବି ବସନ୍ତି କୁମାରକୁ ସେ ମଣିଷ କରିବେ। ତାକୁ ଦେବେ ଜ୍ଞାନ ଚକ୍ଷୁ; ତା'ର ହୃଦୟରେ ଆରୋପିବେ ବିଶ୍ୱମାୟା; ତା'ର ମନରେ ଆଙ୍କିବେ ଅକଳଙ୍କ ଦେବ–ଚରିତ୍ର। ତା'ର ଅବୟବରେ ଝରାଇବେ ପୌରୁଷର ଆଭା; ତା'ର ନେତ୍ରରେ ଝରାଇବେ ଶାନ୍ତି ଓ ମୈତ୍ରୀର ନିର୍ଝର।

ବଳରାମ ସ୍ୱପ୍ନ ଦେଖନ୍ତି। ନିଜ ଜୀବନ–ନାଟକରେ ମଞ୍ଚମାୟା ସୃଷ୍ଟି କରନ୍ତି। ନୀଳ ପୀତ ଆଲୋକପାତରେ ଜୀବନ–ଦୃଶ୍ୟଗୁଡ଼ିକୁ ଆଲୋକିତ କରନ୍ତି। ପୁଅକୁ ଦେଖନ୍ତି, ଅଜସ୍ର ବାର... ତା'ର ଆଖି ମୁହଁ, ହାତକୁ ଚୁମ୍ବନ ଦିଅନ୍ତି। ପ୍ରାର୍ଥନାରେ ବିଶ୍ୱପିତାଙ୍କ ଚରଣରେ ବଳରାମ କୁମାରକୁ ସମର୍ପଣ କରନ୍ତି।

ସେଇ କୁମାରକୁ ସବୁଆଡୁ ସର୍ବପ୍ରକାର ଯାନବାହନ ଆକ୍ରମଣ କରୁଛନ୍ତି ବୋଲି ବଳରାମଙ୍କର ବିଶ୍ୱାସ ହୋଇଛି।

ତିନିବର୍ଷର ଶିଶୁ ଧାଇଁଯାଏ ଠୁକୁ ଠୁକୁ ପାଦ ଛନ୍ଦରେ। ଘର ଅଗଣାରେ ଚକାଭଉଁରୀ ଖେଳେ। ବେଳେ ବେଳେ ସେ ଦାଣ୍ଡଆଡ଼େ ଗୋଡ଼ ବଢ଼ାଏ।

ସେଠି ସେ ଦେଖୁ ନ ଦେଖୁ ବଳରାମ ଦେଖନ୍ତି ଶାଗୁଣାପଲ ପକ୍ଷ ମେଲାଇ ବସି ରହିଛନ୍ତି। ଭୂଇଁ ଖଣ୍ଡକ ଶୋଣିତ ଲିପ୍ତ। କର୍କଶ ଗୈରିକ ବୈଶାଖୀ ଭୂଇଁ ଉପରେ ହନ୍ତାରମାନେ କଟାର ଧରି ଉଭା ହୋଇଛନ୍ତି। ଯାହାକୁ ଆଗରେ ଦେଖିବେ, ଦେବେ ବସାଇ ଶାଣିତ ଛୁରିକା।

ଏଇ ଭୂତ ପ୍ରେତର ଦଳ, ସଦା ମଣିଷ ମାଂସ ଆଗ୍ରହୀ ଏଇ ନର୍ତ୍ତନକାରୀ ନରଖାଦକ ବେଶ ହୋଇ ଯାଆନ୍ତି ଶିଶୁ ମାଂସପାଇଁ।

କାରଣ ଶତାବ୍ଦୀର ଶିଶୁ ଜନ୍ମ ନେଇଛି। ନେଉଛି ବଡ଼ କୃଚ୍ଛ୍ର ସାଧନାପରେ। ବଡ଼ ଅବାଞ୍ଛିତ ଭ୍ରୂଣ ଜନନୀ ଜଠରରେ ତପ୍ତ ଲୌହପିଣ୍ଡ ଭଳି ଘୂରି ବୁଲୁଛି ଦଶମାସ। ସେଠି ତାହା ଜନନୀର ଅମୃତ–ସ୍ନେହଧାରାରେ ସଞ୍ଜୀବିତ ହେଉନାହିଁ।

ସେ ଉଦିତ ହେଉଛି ଅପ୍ରୟୋଜନୀୟ ଓ ଅବାଞ୍ଛିତ ବାତାବରଣରେ। ସେଗୁଡ଼ାକୁ ସଂସାରକୁ ନ ଆଣିବା ପାଇଁ ଲକ୍ଷ ଲକ୍ଷ ଅର୍ଥ ବ୍ୟୟ, ସୌଧମାଳାର ସମାରୋହ, ଯାବତୀୟ ଯନ୍ତ୍ର ଆଉ ଜରାୟୁର ବିଶ୍ଳେଷଣ ଓ ପରୀକ୍ଷା।

ହାସପାତାଳରୁ ଆସିଛନ୍ତି ବଳରାମ। କୁମାରକୁ ସେ ଭାରି ସୁଖ ପାଆନ୍ତି। ଗୋଟିଏ ଅହେତୁକ ଆଶଙ୍କା ବଳରାମଙ୍କୁ ଗ୍ରାସ କରିଛି। ଶେଷ ପର୍ଯ୍ୟନ୍ତ, କୁମାର ମଣିଷ ହେବାଯାଏ, ସେ ବଞ୍ଚିବେ ତ?

ସାଇଁକିନା ମୋଟର ଛୁଟୁଛି। ଗର୍ଜନ କରି ଧାଇଁଯାଏ ଟ୍ରକ୍, ଟ୍ରାକ୍ଟର। ଇଞ୍ଜିନ୍ ଚାଲେ କ୍ଷିପ୍ରଗତିରେ। ଆକାଶରେ ଧାଏଁ ବିମାନପୋତ ଶହ ଶହ ମାଇଲ ବେଗରେ। ଏତେ ବେଗ, ଏତେ ଉଚ୍ଛନ୍ନ ଗତି ଭିତରେ କୁମାର ବଞ୍ଚିବ କିପରି? ନା, ସେ ମରିଯିବ। ତା'ର ଠୁକୁ ଠୁକୁ ପାଦ ଚାଲି ସହିତ ଏମାନଙ୍କର ଗତିର ତୁଳନା ହେବ କି?

ଗୋଟିଏ ସନ୍ଧ୍ୟାର କରୁଣ ପରିବେଶ ଭିତରେ ଦୁହେଁ ମନ ବଳାଇଲେ ଚଳଚ୍ଚିତ୍ର ଦେଖିବେ। ଟିକିଏ ଖୋଲା ମନରେ, ହୃଦୟର ପାତଳା ପରଦା ଭିତରେ ଖୋଜି ବସିବେ ଏ ଜୀବନର ସ୍ୱାଦ କେଉଁଠି ?

ଗଲେ ସହରର ପ୍ରଖ୍ୟାତ ସିନେମା ହଲ୍‌କୁ। ବନମାୟା ନିଜକୁ ସଜାଇଲେ। ଖଣ୍ଡିଏ ଧଳା ଶାଢ଼ି, ଅଞ୍ଚଳରେ ଥିଲା ରୁଚିକର ଡିଜାଇନ୍। ତାଙ୍କ କୁନ୍ତଳ ଝରାକଳା ବାଦଲ ଭଳି ଝରି ନ ଯାଇ ଆସନ୍ନ ବର୍ଷଣର ଛମ୍ ଛମ୍ ଭାବ ଧରିଥିଲା। ପାଦରେ ଅଳତାରେଖା। ଅଳଙ୍କାରର ଅଭାବ ହିଁ ସମଗ୍ର ତନୁସୁଷମାକୁ ଭରିଥିଲା ସଙ୍ଗତି।

କୁମାରକୁ କୋଳରେ ଧରି ଦୁହେଁ ଅଭିନୟ ଦେଖୁଥିଲେ।

ଅଭାଗିନୀ ମା'ର ନୟନ ପିତୁଳା ଜୋତା ପଲିସ୍ କରି ପଇସା ଆଣେ। ବାବୁଙ୍କର ଗୋଡ଼ ଧରି ଭିକ୍ଷା ମାଗେ ତା'ର କୋଳ ଉପରକୁ ପାଦ ବଢ଼ାଇ ଦେବାପାଇଁ।

ଶୋଷ କଲେ ପାଣି ପିଏ ଟ୍ୟାପ୍‌ରୁ। ଦୋକାନରୁ ପିଆଜି ପକୁଡ଼ି ଦୁଇ ପଇସାର ଖାଏ। ଆଉ ଦିନଯାକ ଜୋତା ପଲିସ୍ କରେ।

ଘରେ ରୋଗିଣୀ ମାଆ। ଦିନେ ରୋଗ ବଢ଼ିଲା। ସଞ୍ଚିତ ଅର୍ଥରେ ପିଲାଟି କିଣି ଆଣିଲା ଔଷଧ। ଦଉଡ଼ି ଆସୁ ଆସୁ ହତଭାଗା ଦାମୀ ମଟର ଚକ ତଳେ... ଓଃ

'... କୁମାର, କୁମାର, ତାକୁ ମଟର ମାଡ଼ିଗଲା... ରଖ... ରଖ'। ସେଇ ସିନେମାହଲ୍‌ରୁ ଅଜ୍ଞାନ ଅବସ୍ଥାରେ ବଳରାମ ଆସିଲେ ହାସ୍‌ପାତାଳକୁ।

ପୁଣି ଦୁଇମାସ ପରେ ସେ ବିଛଣାରୁ ଉଠି ଛିଡ଼ାହେଲେ। ଦେଖିଲେ ପୃଥିବୀ ପୂର୍ବଭଳି ରହିଛି। ଆଗରେ ବନମାୟା ହସି ହସି ହାତ ବଢ଼ାଇ ଦେଇଛନ୍ତି। ଏ' ଆମନ୍ତ୍ରଣର ଅର୍ଥ ... ଆସ।

ସଂସାରକୁ ଫେରିଯିବ। କିନ୍ତୁ ଶାନ୍ତି ସୁଖ, ବିହୀନ ସଂସାର କଥା ଶୁଣି ବଳରାମ ଚମକି ଉଠିଲେ। ନାଃ, ଏଇ ଭଲ ... ଏଇ ଡାକ୍ତରଖାନା। ଅବସନ୍ନ ପ୍ରାଣରେ ରୋଗର ପୀଡ଼ାକୁ ସର୍ବାଙ୍ଗେ ଅନୁଭବ କରି ଈଶ୍ୱର ଚିନ୍ତା କରିବାକୁ ସମୟ ମିଳେ। କାହିଁକି ସେ ମଣିଷକୁ ଜନ୍ମ ଦେଇଛନ୍ତି। କାହିଁକି ସେ କୁଆଡ଼େ ନେଇ ଯାଆନ୍ତି ସେଇ ଜାଣନ୍ତି।

କୁମାର ଡାକିଲା— ବାପା, ଆସ; ଘରକୁ ଆସ। ବଡ଼ ହୋଇଛି କୁମାର। ତାକୁଇ ମଣିଷ କରିବାକୁ ଏତେ ସ୍ନେହର ପ୍ଲାବନ... ଏତେ କଠୋର ପରିଶ୍ରମ କରୁଛନ୍ତି ବଳରାମ।

ପୁଣି ଫେରିଆସିଲେ ବଳରାମ। ବନମାୟାର ମାୟା ଧରି ରଖିଲା ତାଙ୍କୁ।

ଅଫିସ୍‌ର ବିଦ୍ୟୁତ୍ ପଙ୍ଖାଟା ମୁଣ୍ଡ ଉପରେ ଘୂରୁଛି। ବଳରାମ ଫାଇଲ ଧରି ବଡ଼ ବାବୁଙ୍କ ଟେବୁଲ ପାଖକୁ ଗଲେ। ଉପରକୁ ଚାହିଁଲେ— ପଙ୍ଖାଟା ଘୂରୁଛି। ତା'ର ପତ୍ର ତିନିରୁ ବେଶି ସଂଖ୍ୟକ ବୋଲି ମନେ ହେଲା।

ଘୂରିଲା ବଳରାମଙ୍କର ଚାରିପଟ। ଫାଇଲ୍‌ଗୁଡ଼ାକ ଘୂରି ଘୂରି ଶୂନ୍ୟକୁ ଉଡ଼ିଗଲା। ଅଫିସ୍‌ର ଆସବାବ୍, ମଣିଷ, ଟେବୁଲ୍, ଚୌକୀ ସବୁ ଘୂରିଗଲା। ଏହି ମହା ଘୂର୍ଣ୍ଣନ ଭିତରେ କାହାର ସ୍ଥିତି ଆଉ ଦୃଢ଼ ରହିଲା ନାହିଁ। ମହେନ୍ଦ୍ରଶୈଳକୁ ମନ୍ଥନଦଣ୍ଡ କରି ଦେବତା ସାଗର ମନ୍ଥନ କରୁଛନ୍ତି। ବିକ୍ଷୁବ୍ଧ

ଜଳରାଶି ଭିତରେ ବଳରାମ ଦେଖିଲେ ତାଙ୍କ ପୁଅ କୁମାର ଛିନ୍ନ ଭିନ୍ନ ହୋଇ ରକ୍ତାକ୍ତ ମାଂସ କଣିକାରେ ପରିଣତ ହେଉଛି। କେବଳ ଘୂର୍ଣ୍ଣନ... ଘୂର୍ଣ୍ଣନ... ପ୍ରଚଣ୍ଡ ବେଗ... ମହାଚାଞ୍ଚଲ୍ୟ...

ବଳରାମ ଚିତ୍କାର କଲେ... ପଙ୍ଖା ଖସିପଡ଼ିଲା; ମୋ କୁମାର ଉପରେ ଖସିପଡ଼ିଲା, ତାକୁ ରଖ... ରଖ...

ତା'ପରେ ସବୁ ନୀରବ। ହାସପାତାଳର ଚିକିତ୍ସକ ବନମାୟାଙ୍କୁ କହିଲେ– କିଛିଦିନ ଜଳବାୟୁର ପରିବର୍ତ୍ତନ ଦରକାର। କେବଳ ଜୀବନସଂଗ୍ରାମ ଭିତରେ ରହି ନୈଶ୍ଚିନ୍ତ୍ୟ ଓ ଶାନ୍ତିର ଅଭାବରୁ ମସ୍ତିଷ୍କବିକାର ଘଟିଛି। ଯଦି ପାରନ୍ତି ସୁଦୂର ଶୈଳ ନିବାସ କିମ୍ବା ସବୁଜପଲ୍ଲୀ କେଉଁଠି ପିଚ୍ ଢଳା ରାସ୍ତାର ଅଜଗର ସାପ ଲମ୍ବି ଯାଇ ନ ଥିବ, ଯେଉଁଠି ଯନ୍ତ୍ରର ଗର୍ଜନ କିମ୍ବା ପ୍ରତି ଧୂଳିକଣା ଭିତରେ ନ ଥିବ ମହାବ୍ୟାଧିର ଜୀବନ୍ତ ଜୀବନବାହୀ ଜୀବାଣୁ; ସେଇ ସୁସ୍ଥ ଶାନ୍ତ ପରିବେଶରେ ଅନ୍ତତଃ ଛମାସ ରଖନ୍ତୁ; ଦେଖିବେ ଅଭାବନୀୟ ପରିବର୍ତ୍ତନ ଘଟିବ।

ଶୈଳ ନିବାସ! ସୁଦୂରପଲ୍ଲୀ, ଯେଉଁଠି ଅଜଗର ସାପ ଲମ୍ବି ଯାଇ ନଥିବ!! କିରାଣୀର ଦରମାରେ ଜଳ ଓ ବାୟୁ ଉଭୟର ପରିବର୍ତ୍ତନ!! କହିଲ ଭଲା କେଉଁ ଭୂମିକୁ ଗାଁ କରି ରଖିଛ? ଯେଉଁଠି ଖୋଲା ଜାଗା ଦେଖିଲ ଗୋଟିଏ ଦିଟା ମେସିନ ଥୋଇ ଗୁଡ଼ାଏ ଲୋକଙ୍କୁ କଳାଭୂତ କରି ଦେଶରେ ଆର୍ଥିକ ପ୍ରଗତି ଆରମ୍ଭ କରିଦେଲ। ଇଞ୍ଚେ ଜାଗାରେ ଦୁବଟିଏ ଜନ୍ମ ପାଉନାହିଁ। କଳା ବାଦଲ ବର୍ଷି ଗଲେ ବି ଭୂଇଁ ଭିତର ଦୁବବୀଜ ଉପରକୁ ଉଠୁନାହିଁ। କାରଣ ତା' ଉପରେ ପ୍ରଗତିର ମହାକାଳ କେବଳ କଳା ଆଲକାତରା, ସିମେଣ୍ଟ, ଚୂନ, ଇଟା, ପଥର, କଂକ୍ରିଟ– ଟନ ଟନ ଲୁହା ଢାଳୁଛି। ପ୍ରକୃତି ଆଜି ସିମେଣ୍ଟ– ଲୁହା– କଂକ୍ରିଟମୟୀ; ତାର ଶ୍ୟାମସ୍ନିଗ୍ଧ ରୂପ ଫୁଟିବାପାଇଁ ସ୍ଥାନ ଅଛି କି?

ଆଉ ଶୈଳନିବାସ? ସେ ତ ଅମରାବତୀ! ପାପୀ ତାପୀ ଦୁଃଖୀଙ୍କ ପାଇଁ ତାହା ରହିନାହିଁ।

ବନମାୟାଙ୍କ ଆଖିରୁ ଦୁଇ ଠୋପା ଲୁହ ଝରିଆସିଲା। ଖଣ୍ଡିଏ ମାତ୍ର କୋଟରେ ବଳରାମ ଏକମୁଖୀ ରାସ୍ତା ଧରି ଅଫିସକୁ ଯାଆନ୍ତି, ଆଉ ଫେରନ୍ତି। କୁମାରକୁ କୋଳରେ ଧରି ଘଡ଼ିଏ ବସିଗଲେ ତାଙ୍କ ପ୍ରାଣ ଶାନ୍ତ ହୁଏ। ସଂସାରରେ ପୁଞ୍ଜି କାହିଁ ଯେ ଜଳବାୟୁ ପରିବର୍ତ୍ତନ ପାଇଁ ମନ ବଳାଇବେ? ନ ଗଲେ ବିପତ୍ତି ବେଶି। ବନମାୟା କଅଣ କରିବେ କିଛି ସ୍ଥିର କରିପାରିଲେ ନାହିଁ।

ଅଫିସର ବଡ଼ବାବୁ ପଚାରିଲେ– 'ବଳରାମ, ତୁମେ ମଝିରେ ମଝିରେ ଏପରି କାହିଁକି ହୁଅ?

ବଳରାମ ଉତ୍ତର କଲେ– 'ମୋ ପୁଅର ନିରାପତ୍ତା ବିଷୟରେ ମୁଁ ଆତଙ୍କିତ।'

– ଅର୍ଥାତ।

– ମୁଁ ଭାବେ ଯେପରି ପ୍ରତି ମୁହୂର୍ତ୍ତରେ ତାକୁ କିଏ ମାରି ଦେଉଛି।

– ଛୋଟ ଶିଶୁକୁ କିଏ କାହିଁକି ମାରିବ?

– ଛୋଟ ଶିଶୁ ବୋଇଲେ ମୁଁ ଭାବେ ଭାବୀ କାଳର ଅନନ୍ତ ସମ୍ଭାବନା, ସେଇ ସମ୍ଭାବନାକୁ ହତ୍ୟା କରାଯାଉଛି।

ହସିଲେ ବଡ଼ବାବୁ। ସୁସ୍ଥ ଶରୀର। ମୁଣ୍ଡ ଉପରେ ବିରଳ କେଶ ଉପରେ ହାତ ବୁଲାଇ

ଆଣିଲେ। କାନ୍ଥ ଟଙ୍ଗା ଦର୍ପଣଟାକୁ ଚାହିଁଲେ। ନାଃ, କିଛି ଅଢ଼ଙ୍ଗ ହୋଇନାହିଁ। ଆଉ କେତେଦିନ ବେଶ୍ ଚାଲିଯିବ।

ବଡ଼ବାବୁ ମୁହଁ ଟେକି ଚାହିଁଲେ। ବଳରାମ ଛିଡ଼ାହୋଇଛନ୍ତି। ପଚାରିଲେ।

– ପୁଅକୁ ପାଠପଢ଼ଉଛ ?

– ଚାହାଳୀରେ ଦେଇଛି।

– ଚାହାଳୀ ?

– ଆଜ୍ଞା ହଁ।

– ଛିଃ, ଛିଃ, ଚାହାଳୀରେ ମାନେ ପ୍ରାଥମିକ ସ୍କୁଲ ମାନଙ୍କରେ ? ସେଠି ପାଠପଢ଼ା ହୁଏ ? ସେଠାରେ ପଢ଼ିଲେ ପିଲାଏ ଚାଲାଖ ଚତୁର ମାନେ ସ୍ମାର୍ଟ ହୋଇପାରିବେ ? ଖାଉଡ଼େ ଖାଉଡ଼େ ଜନ୍ତୁ, ଚିତ୍କାର ଭିତରେ ପଢୁଛନ୍ତି; ଏମାନେ ଭବିଷ୍ୟତର ନାଗରିକ ହୋଇ ଦେଶର କର୍ଣ୍ଣଧାର ହୋଇପାରିବେ ତ ?

ବଳରାମ ପଚାରିଲେ–

ଆପଣଙ୍କ ପୁଅ ?

– ପବ୍ଲିକ ସ୍କୁଲରେ, ସିମିଳା ଶୈଳନିବାସ !

– ଓଃ ହୋ।

– ଶୁଣ ବଳରାମ, ବୁଦ୍ଧି ଥିଲେ ସବୁ ହୋଇପାରେ; ଅସାଧ୍ୟ ସାଧନ। ପବ୍ଲିକ ସ୍କୁଲରେ ବହୁତ ଖର୍ଚ୍ଚ; ଏ ଖର୍ଚ୍ଚରୁ ରିହାତି ପାଇବା ପାଇଁ ଉପାୟ ଖୋଜିଲି ଆଉ ପାଇଲି ବି। ଏବେ ବିନା ଦରମାରେ ବିନା ଖର୍ଚ୍ଚରେ ପୁଅ ପବ୍ଲିକ ସ୍କୁଲରେ ପଢୁଛି। ସରକାରୀ ବୃତ୍ତିରେ।

ବଳରାମ ବିସ୍ମିତ ହୋଇ କହିଲେ– ସେ ତ ଆପଣଙ୍କ ଭଳି ଉଚ୍ଚ କର୍ମଚାରୀଙ୍କ ପୁଅମାନଙ୍କ ପାଇଁ ବ୍ୟବସ୍ଥା ହୋଇନାହିଁ; ସାଧାରଣ ମଧ୍ୟବିତ୍ତ ପରିବାରର ପିଲାମାନଙ୍କ ପାଇଁ ସରକାର ସୁବିଧା ଦେଇଛନ୍ତି।

ବଡ଼ବାବୁଙ୍କ ସିଗାରେଟହଲା ଓଠ ଉପରେ ହସ ଉକୁଟି ଉଠିଲା। କହିଲେ– "ବଳରାମ, ତୁମେ ଅଜବ ମୂର୍ଖ। ମୋର ନାଆଁ ଦିଗମ୍ବର ଜାଣ ତ ? ଆଚ୍ଛା ଟିକିଏ ବ୍ୟାକରଣଗତ ପ୍ରମାଦ ଫୁଟେଇ ଦେଇ ମୁଁ ମୋ ନାଆଁକୁ ଦିଗାମ୍ବର କରିଦେଲି। ଦିଗାମ୍ବରର ପୁଅ ଯେଉଁ ସରୋଜ, ଦିଗମ୍ବରର ପୁଅ ସେହି ସରୋଜକୁମାର। ଅଫିସ୍ ଠିକଣା ବା ମୋର ଡେଜିଗ୍ନେସନ କିଛି ଦେଲି ନାହିଁ। ବଣରେ ବୁଲୁ ଥିଲେ ବି ରାଜାଙ୍କ ହାତୀ ରାଜହାତୀ। ଏବେ ଦିଗାମ୍ବର ପଟ୍ଟନାୟକଙ୍କ ପୁଅ ବିନା ଖର୍ଚ୍ଚରେ ପବ୍ଲିକ୍ ସ୍କୁଲରେ ପଢୁଛି।

– ଆଜ୍ଞା, କଥାଟା ଧରା ପଡ଼ିଲେ ?

– ହସେଇଲ ବଳରାମ, କିଏ କାହାକୁ ଧରୁଛି ? ଯେ ଧରିବ ସେ ଏହାଠାରୁ ଭୟଙ୍କର ଠକାମିରେ ଲିପ୍ତ ରହିଛି। ଯେ ଠକାମି କରୁଛି ସେ ଚିତ୍ରଗୁପ୍ତ ପାଞ୍ଜି ରଖିଛି। ସବୁ ଠକ, ଶଠଙ୍କର ଦୁର୍ନୀତିର ଇତିବୃତ୍ତ, ତା'ପାଖରେ ରହିଛି। ସେ ଓଷ୍ଠ କୁଞ୍ଚନ କଲେ, ଅପରପକ୍ଷ ନିଶ କୁଞ୍ଚନ କରିବ, ସେ ହସ୍ତମୁଷ୍ଟି ଉଠାଇଲେ, ଏ ପାଦ ଉଠାଇବ। ଏ ଭଳି ପରମ ଭ୍ରାତୃତ୍ୱ ପୃଥିବୀରେ କେବେ ସମ୍ଭବ ହୋଇ ନ ଥିଲା; ଏବେ ହୋଇଛି।

– ତେବେ ମୋ ପୁଅର ଭାଗ୍ୟ ?

ବଡ଼ବାବୁ ସିଗାରେଟ ଖଣ୍ଡିଏ ଲଗେଇ କହିଲେ ନିଜକୁ ଗଢ଼ିବାକୁ ହେବ।

— ଏଇଭଳି ଉପାୟରେ ?

— ଏଇଭଳି କଅଣ ? ଏଇ ତ ଗୋଟାଏ ମାତ୍ର ଉପାୟ।

ବଳରାମ ବାବୁ ଆତଙ୍କିତ ହୋଇ କହିଲେ– ନା– ନା ମୁଁ ପାରିବି ନାହିଁ।

— ଦେନ୍ ଗୋ ଟୁ ହେଲ୍। ହାଃ—ହାଃ—ହାଃ ବେଚାରା–

ଦଶ ନମ୍ବର ପ୍ଲାଟଫର୍ମ ଉପରକୁ ଗୋଡ଼ ଦେଲେ ବଳରାମ, ବନମାୟା ଓ କୁମାର। କିଛି ସମୟ ହାବଡ଼ା ଷ୍ଟେସନରେ ବିଶ୍ରାମ କରି ସେମାନେ ଟ୍ରେନ୍ ଧରିବେ ଦାର୍ଜିଲିଂକୁ।

ରାତ୍ରିଟାଯାକ ଅସ୍ୱସ୍ତିରେ କଟିଛି। ବନମାୟାଙ୍କ ଆଖିରେ ନିଦ ନ ଥିଲା। ଏତେଗୁଡ଼ାଏ ଟଙ୍କା ଖର୍ଚ୍ଚ କରିଦେବେ କେବଳ ଗୋଟିଏ ଉଚ୍ଚ ଜାଗାରେ କିଛିଦିନ ରହଣୀରେ।

ତାଙ୍କ ଗାଁମୁଣ୍ଡ ବାଲି ଝୋପ କଥା ମନେ ପଡ଼ିଗଲା। ତିନିପୁରୁଷା ଉଚ୍ଚା ସେହି ବାଲି ସ୍ତୂପ। ଅତି କଷ୍ଟରେ କୁଆଁରୀ ଝିଅମାନେ ଚଢ଼ିଯାଆନ୍ତି, ଆଉ ଖସିଆସନ୍ତି ସଁଡ଼କରି– ଭାରି ମଜା ଲାଗେ। ଖସି ଆସିଲା ବେଳେ ବସନ ଠିକ୍ ରହେ ନାହିଁ। ସେପାଇଁ ନଜର ନ ଥାଏ। ପାଖ ଆଖରେ କେହି ନ ଥାନ୍ତି। ବାଲି ସ୍ତୂପର ଶୀର୍ଷ ଉପରେ ଶିରି ଶିରି ପବନ ବହୁଥାଏ। ଆମ୍ବକଷି ଗନ୍ଧରେ ନାକ ଫାଟିପଡୁଥାଏ ଫୁଟି ଆସୁଥିବା ଯୌବନର ମହୋତ୍ସବ ଭିତରେ...।

— ଟିକିଟ୍

ବଳରାମ ମନିବ୍ୟାଗ୍ ଖୋଜୁ ଖୋଜୁ କହିଲେ– ତମେ ସବୁ ଆଗରେ ଯାଅ।

ଆଗକୁ ଯିବାକୁ ଛାଡ଼ିଲା ନାହିଁ। ଦାର୍ଜିଲିଂ ବହୁତ ଦୂରରେ। ଏମାନେ କି ତପସ୍ୟା କରିଛନ୍ତି ଯେ ଆଗକୁ ଯିବେ ? ଆଗକୁ ଯିବାବାଲା ଯାଇଛନ୍ତି। ଅଫିସ ବଡ଼ବାବୁଙ୍କଭଳି ଲୋକେ ଅଗ୍ରସର କରିବାର କୌଶଳ ଜାଣନ୍ତି। ଏଇ ଦରିଦ୍ର କିରାଣୀ ପରିବାର– ଏମାନେ ଜାଣିବେ କୁଆଡୁ ?

ବଳରାମଙ୍କର ମସ୍ତିଷ୍କ ବିକୃତି ବଢ଼ିଲା, ପକେଟମାରୁର ଦୟାରୁ ଏମାନେ ଫେରିଆସିଲେ। କୁମାର କେବଳ ଖୋଜିଲା ଦାର୍ଜିଲିଂର ଘୋଡ଼ାଦୌଡ଼ ଆଉ ଶୈଳ ପ୍ରାନ୍ତରକୁ। ବହିରେ ସେ ପଢ଼ିଥିଲା ଦାର୍ଜିଲିଂ ଗୋଟିଏ ଅତି ରମଣୀୟ ସ୍ଥାନ। ବହିର ତଥ୍ୟ ବହିରେ ରହିଗଲା।

ସବୁ କାବୁଲି ରବୀନ୍ଦ୍ରଙ୍କର କାବୁଲିଓ୍ୱାଲା ନୁହଁନ୍ତି କି ସବୁ ଝିଅ ମିନି ନୁହନ୍ତି। ଗୋଟାଏ ଦୀର୍ଘକାୟ ପଗଡ଼ିବାଲା ନିଶୁଆ କାବୁଲି ଭଲ ପାଇଥିଲା ଆଫଗାନିସ୍ଥାନକୁ ଆଉ ଭଲ ପାଇଥିଲା ତାର ଝିଅକୁ। ସେଇ ଝିଅ ରୂପ ନେଲା ମିନିର ତନୁ ଆଉ ମନଭିତରେ–

ସମସ୍ତେ ଏପରି ନୁହଁନ୍ତି ଯେ କାବୁଲି ଦେଖିବାମାତ୍ରେ ରବୀନ୍ଦ୍ର ସୃଷ୍ଟିକୁ ସ୍ମରଣ କରି ଡାକଦେବେ... ଆଇ ଏ... ମେରା ଘର୍‌ମେ ଏକ୍‌ଠୋ ମିନି ହୈ ଆଇ ଏ–

ଯେଉଁ କାବୁଲିବାଲା ବଳରାମଙ୍କ ଦାଣ୍ଡଦୁଆରେ ଛିଡ଼ା ହୋଇ ହଲ୍ଲା କଲା, ସେ ତା'ର ହସ୍ତଭୂଷଣପାଇଁ ଧରିଥିଲା ଗୋଟିଏ ଉଚ୍ଚା ଦଣ୍ଡା। ତାକୁ ଏପଟୁ ସେପଟୁ ଦି'ଥର ଝୁଲାଇ ପାଟିକଲା– ହୋ ବଳରାମ ବାବୁ, ମେରା ପାଂଶୋ ରୂପୟା ଦେନେକୋ ତୈରି ହୋଯାଓ...

ବଳରାମ ବାବୁ ଅବଶ୍ୟ ତୈରି ହେଉଥିଲେ ତାହାର ଦେଣା ପାଉଣା ନିକାଶ କରିବାପାଇଁ ନୁହେଁ ନିଜର ହାଟ ସଉଦା କିଣା ଶେଷ ହୋଇ ଆସୁଛି। ଏଣିକି ଯାତ୍ରା !

ବନମାୟା କେବଳ କାନ୍ଦୁଛନ୍ତି। ବନ୍ଧୁ ବାନ୍ଧବରେ ଏପରି କେହି ନାହିଁ ଯେ ଆସି ରକ୍ଷା କରିବ। ଚିକିତ୍ସାପାଇଁ ଅର୍ଥ ଦରକାର। ସାମାନ୍ୟ ବ୍ୟାଧି ତ ନୁହଁ। ମସ୍ତିଷ୍କ ବିକୃତି। ଭୟଚକିତ ଏଇ ବଳରାମ ସବୁବେଳେ ଆତଙ୍କର ଚିତ୍ର ଦେଖୁଛନ୍ତି।

ସେ ଦେଖୁଛନ୍ତି ସବୁ ଭାଙ୍ଗିପଡୁଛି। ଆଗାମୀ କାଳର ସନ୍ତାନର ସ୍ୱାସ୍ଥ୍ୟ ଭାଙ୍ଗିଯାଉଛି, କାରଣ ଦୁଧବାଲା ଆଖି ବୁଜିଦେଇ ଘଡ଼ିରେ ରାସ୍ତାକଡ଼ର ପାଣି ଟ୍ୟାପ୍ ଖୋଲି ଦେଉଛି।

ଆଖିବୁଜି ଲୋକେ ପ୍ରାର୍ଥନା କରନ୍ତି। ଗଉଡ଼ ପ୍ରାତଃକାଳରୁ ପ୍ରାର୍ଥନା ଆରମ୍ଭ କରି ଦେଇଛି। ଯେତିକି ଭାଣ୍ଡରୁ କ୍ଷୀର ବିକା ହେଉଥିବ ସେତିକି ମ୍ୟୁନିସପାଲଟି ପ୍ରତିଷ୍ଠିତ ଟ୍ୟାପରୁ ସ୍ୱଚ୍ଛଜଳ ବାହାରି ତା'ର ଭାଣ୍ଡ ପୂର୍ଣ୍ଣ କରୁଥିବ।

ଏତ ଶ୍ରୀକୃଷ୍ଣଙ୍କ ସାମାନ୍ୟତମ ଲୀଳା। ଯଶୋଦାଙ୍କର ଭାଣ୍ଡ କେବେ ଶୂନ୍ୟ ପଡ଼େ ନାହିଁ, ଦୁଧଲହୁଣୀ ଯେତିକି ଭଗବାନଙ୍କର ଉଦରକୁ ଯାଇଥାଏ ସେତିକି ଘଡ଼ାରେ ସଞ୍ଚିତ ଥାଏ।

ଆଭୀର ବଂଶର ମଉଡ଼ମଣି କୃଷ୍ଣଚନ୍ଦ୍ର ଯେତେବେଳେ ଏଇଭଳି ଲୀଳା ରଚନାକରି ଅମର ହୋଇଗଲେ, ନଗର– ଆଭୀରକୁଳ ଏବେ ସେଇ ସୁଆଙ୍ଗ ଦେଖାଉଛନ୍ତି।

ଅଟା ବୋଲି ତେନ୍ତୁଳିମଞ୍ଜିର ଚୂନା, ଘିଅ ବୋଲି ବନସ୍ପତି ରସ... ଆଉ କେତେ କଅଣ। ଏଇ ସବୁ ପେଟକୁ ଗଲେ ସ୍ୱାସ୍ଥ୍ୟ ରଖିବ ନାହିଁ, ରଖୁନାହିଁ।

ସବୁ ଭାଙ୍ଗିପଡ଼ିବାର ଦେଖୁ ଦେଖୁ ବଳରାମ ପୂରାପୂରି ଗଢ଼ିବାର ଚିତ୍ର ବି ଦେଖୁଛନ୍ତି। ଅଫିସର ବଡ଼ବାବୁଙ୍କ କୀର୍ତ୍ତି ତ ସଙ୍ଗଠନ। ଆଜି ନିଜ ତନୟପାଇଁ କରିଛନ୍ତି। କାଲିକି ପର ପୁଅପାଇଁ କରିବେ। ଏ' ବିଶ୍ୱାସ ଅଛି। ସନ୍ଧ୍ୟାରେ ସଞ୍ଜବତୀକୁ ହାତ ଯୋଡ଼ି ନମସ୍କାର କରୁଥିବା ଓ ଠିଆହୋଇ ଜନ୍ତୁଙ୍କ ଭଳି ମୂତ୍ରତ୍ୟାଗ କରୁନଥିବା ସଂସ୍କାରଯୁକ୍ତ ବଳରାମଙ୍କୁ ସଭ୍ୟ ମାନବର କାମଗୁଡ଼ାକ କଷ୍ଟ ଦେଉଥିଲା ସତ; କିନ୍ତୁ ସେ ସ୍ଥିରମନରେ ବହୁତ ସମୟ କିଛି ଭାବିପାରୁ ନଥିଲେ।

ଶୈଳନିବାସରେ ରହଣୀପାଇଁ ଅର୍ଥ ଦେଇଥିଲା ଆଫଗାନ୍। ସେ ଆଦାୟ କରିବ କଡ଼ାକ୍ରାନ୍ତିରେ। ବନମାୟା କେବଳ ଅଶ୍ରୁ ଢାଳୁଥିଲେ, ଆଉ କୁମାର ତା'ର କୈଶୋର ଜୀବନରେ ହିଁ ଆଘାତ ପରେ ଆଘାତ ପାଇଗଲା। ଫୁଟିଲା ଫୁଲ ଦେଖିଲା ଏତେ ବଡ଼ ଆକାଶରୁ ବାରିକ୍ଷରଣ ହେଉନାହିଁ ଯେଉଁଥିରୁ ତାହା ପାଇପାରନ୍ତା ପ୍ରାଣରସ। କେବଳ ସେ ଫୁଲଟି ପାଇଛି ବୈଶାଖୀ ପ୍ରଚଣ୍ଡ ତାପ ଅଗ୍ନିର ଝଲକ।

ସ୍କୁଲରେ ପଢୁ ପଢୁ କୁମାର ଶିଖିଲା ଏକା ରାତିକେ ବଡ଼ ହୋଇଯିବାର ଆଉ ନେତା ବନିବାର କୌଶଳ। ବଳରାମ ଶଯ୍ୟାଗତ। ପୁଅର ପଢ଼ାପଢ଼ିରେ ସେ ଆଖି ଦେଇ ପାରୁନାହାନ୍ତି।

ଧ୍ୱନି କଲା କୁମାର। ଦାବୀ ଓ ଅଧିକାର ନେଇ ବ୍ୟସ୍ତ ରହିଲା। ଆଗରେ ତା'ର ପିତାର ଦୟନୀୟ ଚିତ୍ର। ମାଆ ଗୃହ–ପ୍ରାଙ୍ଗଣର ତୁଳସୀ ବୃକ୍ଷ। ସବୁ

ଦୁଃଖକୁ ଦୈବ ଉଦ୍ଦେଶ୍ୟରେ ବାଢ଼ିଦେବାର ନିର୍ଲିପ୍ତ ଭଙ୍ଗୀ ମାଆ ଅର୍ଜନ କରିଛି। ତେଣୁ ଘରେ ମନ ଲାଗିଲା ନାହିଁ। କୁମାର ଖୋଜିଲା ବାହାର ବିଶ୍ୱକୁ।

ସେ ବିଶ୍ୱ ସହଜ ଓ ସୁନ୍ଦର ନୁହେଁ। ମାଳ ମାଳ ସରୀସୃପରେ ଭରା ଏଇ ବିଶ୍ୱଟାକୁ କୁମାରକୁ ଚିହ୍ନିବାକୁ ସମୟ ଲାଗିଲା ନାହିଁ।

– ସତ କହୁଛନ୍ତି ମତେ ଖୁବ୍ ଭଲ ପାଆନ୍ତି ?

– ବିବାହ କରିବେ ?

– ହଠାତ୍ ବିବାହ କଥା ଉଠାଇଲ ଯେ ?

– ନାଃ, ଭାରି ଚାଲାଖ ତ ଆପଣ ? ତେବେ କଅଣ ପୂର୍ବରାଗ ? ମୁଁ ସେ ସବୁରେ ବିଶ୍ୱାସ କରେନି। ଆଉ ପୂର୍ବରୁ ଅସ୍ତାଚଳ ଯିବାକୁ ବହୁତ ଡେରିହୁଏ। ସୂର୍ଯ୍ୟ ଦେବତାଙ୍କୁ ତ ଲାଗେ ପୂରା ଗୋଟାଏ ଦିନ। ଆଉ ଆମ ଭଳି ଲୋକଙ୍କୁ...

କୁମାର ଶୁଣୁଥିଲା ଝିଅଟିର କଥା ମୁଗ୍ଧ ହୋଇ। ତା'ର ବୀଣାରେ ସଂଜୀବନୀ ଅଛି। ମଲାଜହ୍ନକୁ ଏ ଝିଅ ପୂର୍ଣ୍ଣଚନ୍ଦ୍ର କରିପାରେ।

କୁମାର ଅଙ୍ଗରେ ଯୌବନଶ୍ରୀ। ସେ ସାଥୀ ଚାହେଁ। ଅବଶ୍ୟ ବାପା ବୋଉ ଖୋଜିବେ ବଧୂ। ସେ ସାଥୀ ଚାହେଁ। ଅବଶ୍ୟ ବାପା ବୋଉ ଖୋଜିବେ ବଧୂ। ତାଙ୍କ ଖୋଜିବାଯାଏ ଅପେକ୍ଷା କରିହେବ ନାହିଁ। ନିଆଁ ଜଳୁଛି ତା'ର ପ୍ରତ୍ୟେକଟି ଲୋମକୂପରେ।

ସେ ଚାହେଁ ହଠାତ୍ ଗୋଟିଏ କିଛି ଅନୁଭୂତି। ସ୍ୱପ୍ନ ନୁହେଁ, ବାସ୍ତବ ଅଙ୍ଗସ୍ପର୍ଶ।

କୁମାର ନିର୍ଜୀବ ଭାବରେ କହିଲା–

– ସେକଥା ପରେ, ମାନେ ବିବାହ...

ତରୁଣୀର ବାଣୀ ଶ୍ଳେଷମିଶା–

– ଓଃ, ତେବେ ମିଳାମିଶା ? ମାନେ ପଙ୍କଜ ତୋଳିବାକୁ ଯାଇ ପଙ୍କିଳ ପାଣିରେ ନ ପଶିବାର ଇଚ୍ଛା ? ନାଇଁ ବାବୁ ସେ କଥା ହେବ ନାହିଁ। ମାସକର ଦେଖା ଭିତରେ ଏଇ ସାଗରବେଳା ଉପରେ ଆପଣ ଚାଲିଆସିଛନ୍ତି ଖୁବ୍ ପାଖକୁ। ମୁଁ ବି ଚାହେଁ ଆପଣ ଆହୁରି ମୋ ପାଖକୁ ଆସନ୍ତୁ। ମାତ୍ର ବିବାହ... ମତେ ସହଧର୍ମିଣୀ କରି ନିଅନ୍ତୁ... ତେଣିକି ଆପଣ ପଦ୍ମ ତୋଳିବେ, ପଦ୍ମତୋଳା ମୁଁ ଶୁଣିବି।

କୁମାର ତଳକୁ ଚାହିଁ କହିଲା– ବାପା ବୋଉ ଅଛନ୍ତି।

ବାପା ଶଯ୍ୟାଶାୟୀ, ମସ୍ତିଷ୍କ ବିକାର, ସେମାନଙ୍କର ଆଶୀର୍ବାଦ ନ ନେଇ–

– ତେବେ ବେଶ୍ କଥା– ଏଇ ମୁହୂର୍ତ୍ତରେ ଚାଲନ୍ତୁ। ମୋର ଭାବୀ ଶ୍ୱଶୁର ଶାଶୁଙ୍କର ମୁଁ ପାଦଧୂଳି ନେବି। ମୁଁ ନିଜେ କଥା ପକେଇବି।

– ତମେ ?

– ଆଶ୍ଚର୍ଯ୍ୟ ହେଉଛନ୍ତି ? ନୂଆ ଶୁଭୁଚି। ପାଠପଢ଼ା ଶିକ୍ଷିତ ଯୁବକ କାନକୁ ନୂଆ ଶୁଣାଯାଇପାରେ, କିନ୍ତୁ ମୁଁ ପରୀକ୍ଷା କରିଛି, ବିବାହ ପ୍ରସଙ୍ଗ ପକାଇବା ମାତ୍ରେ ପୂର୍ବରାଗ ତୁଟିଯାଏ। ଭଦ୍ରଲୋକର ଆଣ୍ଟୁ ଥରେ। କାରଣ ବିବାହ ହେଉଛି ଦାୟିତ୍ୱ। ସହଜରେ ଏ ଦାୟିତ୍ୱ ନେବାକୁ ଆପଣଙ୍କ ଭଳି ଶହ ଶହ ଯୁବକ ଭୀରୁ ହୋଇ ଯାଆନ୍ତି। ଦାୟିତ୍ୱହୀନ ଭାବରେ ଫଳାଫଳକୁ ବିଚାର ନକରି ମିଳାମିଶାର ମୋହର ଅର୍ଥ ମୁଁ ଜାଣେ। ପ୍ରଥମ

ଦେଖାରୁ ଆପଣଙ୍କୁ ଜାଣିଥିଲି ଆପଣ ସଦବଂଶଜ। ଗୋଟାଏ ରୁଚିସମ୍ମତ ସଂସ୍କାରର ଛାପ ଆପଣଙ୍କ ମୁହଁରେ ରହିଛି। କିନ୍ତୁ କେତେଦିନ? ମୋର ଆଶଙ୍କା...

ନାଃ– ଥାଉ। ଜୀବନରେ ଏଇ ବୋଧହୁଏ ଶେଷଥର ଆପଣଙ୍କ ସହିତ ଦେଖା। କାରଣ ଯେ ସିଂହଦ୍ୱାର ବାଟେ ଆପଣ ଆସିଥିଲେ, ଯିବାବେଳକୁ ସେ ବାଟେ ଆପଣ ଯିବେ ନାହିଁ, ମୁଁ ଜାଣେ। କାରଣ ସେ ପଥ ଖୋଲା ଜୀବନର ପଥ; ସାହସିକପାଇଁ ସେ ଦ୍ୱାର ଉନ୍ମୁକ୍ତ। ସିଂହ ହିଁ ସାହସର ପ୍ରତୀକ। ଆପଣ ଯିବେ ପଛ ବାଟରେ। ନାନା ପୂତି ଗନ୍ଧଭରା ଅପ୍ରଶସ୍ତ ସର୍ପିଳ ପଥ ଦେଇ ଆପଣ ଯିବେ। ଯାଆନ୍ତୁ, ବଡ଼େଇ କରି କହୁନାହିଁ, ନାରୀ ଆପଣ ଦେଖିବେ ବହୁତ, ଜୀବନକୁ ସେମାନେ ଆସିବେ। କିନ୍ତୁ ଜାହ୍ନବୀ ସହିତ ଏଇ ଶେଷ ଦେଖା, ଆପଣ ସୁସ୍ଥ ହୁଅନ୍ତୁ, ସୁନ୍ଦର ହୁଅନ୍ତୁ। ଯେତେବେଳେ ଚାରିପାଖରେ ସବୁ ଭାଙ୍ଗିଯାଇଛି, ଆପଣ ଛିଡ଼ାହୁଅନ୍ତୁ। ଛିଡ଼ାହୋଇ ଉନ୍ନତ ସ୍କନ୍ଧ ଉପରେ ସବୁ ଗ୍ରହଣ କରୁ କରୁ ଟଳିପଡ଼ିଲେ ଅବଶୋଷ କିଛି ନାହିଁ। ବରଂ ସେ ମୃତ୍ୟୁ ମଧୁର।

ଝିଅଟି ଚାଲିଗଲା ଗୋଟିଏ ଲତାର ସଂଚାରିଣୀ ଭଙ୍ଗିମା ଘେନି। କୁମାର ସିଗାରେଟ ଧରିଲା। ହସିଲା– ଛାତିଫଟା ହସ...

ଡାକ୍ତର ହସିଲେ, ମୃଦୁ ହସ। କହିଲେ– ଦେଖ ବନ୍ଧୁ, ଏଥିରେ ଲଜ୍ଜା କରିବାର କିଛି ନାହିଁ। ଠିକ୍ ସମୟରେ ପହଞ୍ଚିଛ। ଲୁଚାଇଥିଲେ ବ୍ୟାଧି ବଢ଼ିଥାନ୍ତା। ତୁମର ସତ ସାହସ ଅଛି। କିନ୍ତୁ ରକ୍ତର ତାଡ଼ନାକୁ ତୁମେ ଅସତ୍ ପଥରେ ନେଇଛ; ବନ୍ଧୁ ଖୋଜିଛ ବିପଦରୁ ଉଦ୍ଧରିବାପାଇଁ, ମତେ ପାଇଛ। ମୁଁ ଭଲ କରିଦେବି। ଚିନ୍ତା ନାହିଁ। ଏ ପଥ ଛାଡ଼। ବିବାହ କର। ବାପା ମାଆ ବହୁତ ଆଶା କରିଥିବେ। କୁଳର ପ୍ରଦୀପ ବୋଲି ନିତି ଦେବତାଙ୍କୁ ନମସ୍କାର କରୁଥିବେ। ସେମାନଙ୍କୁ ଅନାଅ–

କୁମାର ଅନୁତପ୍ତ ହୃଦୟରେ କହିଲା–

– ବାପା ବିକୃତ ମସ୍ତିଷ୍କ– ମାଆ ଅବିରଳ ଲୁହ ଗଡ଼ାଉଛନ୍ତି।

ଡାକ୍ତର କହିଲେ–

– ବୁଝିଛ, ବାପା ବିକୃତ ମସ୍ତିଷ୍କ କିନ୍ତୁ ଶଯ୍ୟାଶାୟୀ; ତୁମେ ବିକୃତ ରୁଚି, ରାଜପଥ ଉପରେ ସିଧା ଚାଲୁଛ। ତଫାତ୍ ଖୁବ୍ କମ, ଆଜି କିଏ ବିକୃତ ନୁହେଁ କହିଲ? ଅବିକୃତ ଅବସ୍ଥାରେ କେବଳ ଭଗବାନ ଥାଇପାରନ୍ତି, ତା'ବି ସନ୍ଦେହ–

– କ୍ଷମା କରିବେ ଭୁଲ ବାଟରେ ଯାଇ –

ଡାକ୍ତରଙ୍କ ଓଠରେ ସେଇ ମୃଦୁ ହସ ଲାଗିଥାଏ। ସେ କହିଲେ, କ୍ଷମାର ପ୍ରଶ୍ନ ନାହିଁ। ସହରର ଏମୁଣ୍ଡରୁ ସେ ମୁଣ୍ଡଯାଏ ଯେଉଁଠି ପାଞ୍ଚ ଦଶଟା ବିଦେଶୀ ମଦ ଦୋକାନ, ଆନୁସଙ୍ଗିକ ଅନେକ କିଛି ରହିଛି। ଚାଲ ଭିତରକୁ ମୁଁ ଇଞ୍ଜେକ୍‌ସନ ଦେଉଛି। ଜାଣ? ମୁଁ ପାପୀକୁ ସ୍ନେହ କରେ; ପାପକୁ ଘୃଣା କରେ।

ଲୋକେ ସେ ମଣିଷକୁ ଆଉ ଘୃଣା କରୁ ନାହାନ୍ତି। ସେ ଅଖାଦ୍ୟ ଖାଉଛି ସତ, ରୋଗଣା କୁକୁର ମେଳରେ ବସୁଛି ସତ, ତା'ର ହସ, କାନ୍ଦ, ଚିତ୍କାର ପଥଯାତ୍ରୀଙ୍କର ଦେହସୁହା ହୋଇଗଲାଣି।

ସେଇ ଖଣ୍ଡମଣ୍ଡଳରେ ସେ ବୁଲେ। ଶୂନ୍ୟକୁ ଚାହିଁ କଅଣ ଲେଖେ। ଫାଇଲ ବନ୍ଦ କରିବାର ଅଭିନୟ କରେ। ଶ୍ମଶ୍ରୁଳ ମୁଖ ମଣ୍ଡଳର ଦୁଇଟା

କୋଟର ଭିତରୁ ଝରିଆସେ ଗାଙ୍ଗେୟ ବାରି। କାହାକୁ ସେ ପବିତ୍ର କରିବ, କେହି ଜାଣନ୍ତି ନାହିଁ।

ପବ୍ଲିକ ସ୍କୁଲର ଛାତ୍ର ଓ ବର୍ତ୍ତମାନ ମଟର ଆରୋହୀ ସରୋଜ କୁମାର ସହିତ ଦେଖାହୋଇଯାଏ ମଦ୍ୟପ କୁମାରର। ରାଜପଥ ଥରିଯାଏ ଏ ଦୁଇଜଣଙ୍କର ପାଦଧ୍ୱନିରେ। ମଟରଆରୋହୀ ସରୋଜର ପାଦ ନ ଥାଏ। ଚକ୍ର ଚଳେଇ ସେ ଚକ୍ରବାକୀକୁ ସଙ୍ଗରେ ଧରି କେବଳ ଉଡୁଥାଏ।

ଦିନାନ୍ତ ବିଚ୍ଛେଦର କରୁଣ ଧ୍ୱନି ତା'ପ୍ରାଣରେ ଅସହ୍ୟ ଗ୍ଲାନି ଆଣେ। କାରଣ ଦିଗାମ୍ବର ପଟ୍ଟନାୟକଙ୍କର ପୁଅ ସରୋଜ ଆଜି ମଟର ଚଳାଇଛି ସ୍ମାର୍ଟ ହୋଇ କଲିକତାର ବିଖ୍ୟାତ ବିପଣୀର ଦଲାଲ ଭାବରେ– ଅବଶ୍ୟ ଚାତୁରୀରେ ଆଣିଛି ବହୁ ନାୟିକାର ସ୍ୱର୍ଶ।

ଆଉ କୁମାର? ଅତଳଗର୍ଭରେ ସେ ପଙ୍କଜ ତୋଳୁଛି। ସେଠାରେ ସେ ଫୁଲ ଆସିବ କୁଆଡୁ।?

ଦୁହେଁ ଯଥାରୀତିରେ ଭାଙ୍ଗିପଡୁଛନ୍ତି। କେହି କାହାକୁ ପରାଜିତ କରିପାରି ନାହାନ୍ତି।

ଯନ୍ତ୍ରର କଳଙ୍କିତ ଗର୍ଭରୁ କଳାକଙ୍କର ଖସିପଡୁଛି ଖର୍ ଖର୍ ହୋଇ। ସେଗୁଡ଼ିକ ସାମଗ୍ରୀ ଭାବରେ ଲାଗିଯିବେ କଳା ପିଚୁ ରାସ୍ତା ତିଆରିରେ ତାକୁ ମସୃଣ କରିବାରେ। ତାଆରି ଉପରେ ଚାଲି ଆସିବେ ଭାବୀ କାଳର ଭାଗ୍ୟଧରମାନେ। ପ୍ରଗତିଶୀଳ ଯୁବକ ଯୁବତୀ।

ହତଭାଗ୍ୟ ସେଇ ପାଗଳ ଶୂନ୍ୟକୁ ହାତ ଉଠେଇ କିଛି ଲେଖିବାର ଅଭିନୟ କରୁଛି। ଫାଇଲର ମଲାଟ ସେ ବନ୍ଦ କରୁଛି ବହୁବାର।

ପାଖରେ ଚା' ହୋଟେଲ। ମାଂସର କଟଲେଟ୍ ତିଆରି ହେଉଛି। ପୋଡ଼ା ପିଆଜର ଗନ୍ଧ ସଙ୍ଗେ ରାନ୍ଧୁଣିର ମୁହଁ–ବିଡ଼ିର ଦୁର୍ଗନ୍ଧ ମିଶି ଯାଉଥିଲା।

ପାଉଁଶଗଦା ଉପରେ ବସିଥିଲା ସେଇ ଲୋକଟା। ସେଠି ଅଇଣ୍ଠାପତ୍ର ଉପରୁ ସେ ଉଠାଇଲା ଖଣ୍ଡିଏ ମାଉଁଶ କଣ୍ଟା। ତାକୁ ସେ ଶୋଷି ନେଉଥିଲା ପରମତୃପ୍ତିରେ, ତାର ଆଖିରୁ ବହିଯାଉଥିଲା ଗାଙ୍ଗେୟ ବାରି।

"–ରାମ ରାମ" ହୋଟେଲରେ ଖାଉଥିବା ଲୋକ ଜଣକ ବୋଧହୁଏ ଏ ଦୃଶ୍ୟ ଦେଖି ଶ୍ରୀ ରାମଚନ୍ଦ୍ରଙ୍କୁ ସ୍ମରଣ କଲେ। ବିକାର ପାଇଲେ ସେ।

ହଠାତ ସେ ପାଗଳ ଚାହିଁଲା ହୋଟେଲ ଭିତରକୁ– ତାର ଚକ୍ଷୁ କୋଟର ଭିତରେ ସତେ କି ଖେଳିଗଲା ଚଳ–ବିଦ୍ୟୁତ।

ସେ ଗୋଟାଏ ପାଦ ଆଗକୁ ପକାଇ କହିଲା–

"ମତେ ଡାକିଲ ବାବୁ?"



# ପାପିନୀ ସତ୍ୟଭାମା

ନ ହେବ କାହିଁକି ? ସତ୍ୟଭାମା ନିଶ୍ଚୟ ପାପିନୀ। ଲୋକେ କହୁଛନ୍ତି ସତ୍ୟଭାମା ପାପିନୀ; ତେଣୁ ପାପିନୀ ହେବା ଛଡ଼ା ସେ ପୁଣ୍ୟବତୀ ହୋଇନପାରେ।

ପାପ ଆଉ ପୁଣ୍ୟ ! ବିଚାର କରନ୍ତି ପୁଣ୍ୟବାନ୍‌ମାନେ। ବିଚାର ଶୁଣି ଅପରାଧୀ ରହିଯାନ୍ତି ପାପୀ ପାପିନୀମାନେ।

ବିଧିବଦ୍ଧ ଦରବାର ଏଥିପାଇଁ ଦରକାର ହୁଏ ନାହିଁ। ଧର୍ମାଧିକରଣର ଆବଶ୍ୟକତା ନଥାଏ। ଗୋଟାଏ ନିର୍ଦ୍ଦିଷ୍ଟ ସ୍ଥାନରେ ନିୟମଗତ ବିଚାର ହୁଏ ନାହିଁ। କେହି ବସନ୍ତି ନାହିଁ, କେହି ଉଭା ହୁଅନ୍ତି ନାହିଁ। ପାପୀ ପାପିନୀମାନେ ବିଚାରପତିଙ୍କୁ ପ୍ରତ୍ୟକ୍ଷ କରନ୍ତି ନାହିଁ କି ଧର୍ମନିଷ୍ଠ ବିଚାରପତି ଅଭିଯୁକ୍ତ ଆସାମୀମାନଙ୍କୁ ପ୍ରତ୍ୟକ୍ଷ କରନ୍ତି ନାହିଁ।

ସବୁ ଅପ୍ରତ୍ୟକ୍ଷ ଅଦୃଶ୍ୟରେ ସମାହିତ ହୁଏ। ବିଚାର ମିଳେ। ଏଥିରେ କେହି ଖଲାସ ହୁଅନ୍ତି ନାହିଁ। ସମସ୍ତେ ଦଣ୍ଡ ଭୋଗନ୍ତି। ଭୋଗିବାକୁ ବାଧ୍ୟ।

ରାୟ ନକଲ କାହାକୁ ମିଳେ ନାହିଁ। ସାକ୍ଷୀ ନଥାନ୍ତି। ପ୍ରମାଣର ଭାବ ବା ଅଭାବରେ କିଛି ଯାଏ ଆସେ ନାହିଁ। ଅଥଚ ବିଚାର ଚାଲେ। ସମୟେ ସମୟେ ଆସାମୀଙ୍କ ସଂଖ୍ୟା ଅପେକ୍ଷା ବିଚାରପତିଙ୍କର ସଂଖ୍ୟା ବେଶୀ ହୋଇଯାଏ, ସମୟେ ସମୟେ କାହିଁକି ପ୍ରାୟ ଏମିତି ହୋଇଥାଏ।

ରାଜପଥ ଉପରେ ଚାଲୁ ଚାଲୁ ବିଚାର ଆରମ୍ଭ ହୁଏ। ଚାହା ଦୋକାନରେ ଲିପ୍‌ଟନ ମିଶା ଗରମ ଜଳ ପାନ କରୁ କରୁ ସତ୍ୟଭାମାକୁ ଅଭିଯୁକ୍ତ କରାଯାଏ। ହୋମିଓପ୍ୟାଥିକ ଔଷଧ ଦୋକାନର ଛୋଟ ଛୋଟ ଶିଶିକୁ ଚାହୁଁ ଚାହୁଁ ବିଚାରକ ମନ୍ତବ୍ୟ କରନ୍ତି– ସତ୍ୟଭାମା ପାପିନୀ। ସେଠାରୁ ଉଠିଆସି ବଡ଼ଦାଣ୍ଡ ଉପରେ ଷଣ୍ଢ ଲଢ଼େଇ ଦେଖୁଥିବା ବିଚାରକ ଓ ଦେଖିସାରି ଫୁର୍ତ୍ତି ମନରେ ମିଶ୍ର ଦୋକାନରୁ ଖଣ୍ଡେ ଚଉଦ ମସଲାଦିଆ ପାନ ଚୋବାଉଥିବା ସେଇ ଏକ ବିଚାରକ ରାୟ ଦେଇଦିଏ– ସତ୍ୟଭାମା ପାପିନୀ।

ଅଫିସରେ ପଙ୍ଖାତଳେ ବସି ଦୁନିଆଟାକୁ ତୁଚ୍ଛ ମନେ କରୁଥିବା ଓ ଜନପ୍ରାଣୀଗୁଡ଼ାକୁ ପୋକ ମାଛି ଭାବୁଥିବା ବିଚାରକ କହେ– ସତ୍ୟଭାମାର କଣ୍ଠକୁ ଭଲ ନୁହେଁ। ତାଙ୍କ ଦେଖାଦେଖି ଆଉ ସବୁ ତୈଳାକ୍ତ ଓ ତୈଳଲେପନକାରୀ ସେଇ ଏକା ଲମ୍ଭ ପଣତରେ ଓହଳା ସୂତାଗୁଡ଼ିକ ପାଟି କରନ୍ତି– ହଁ, ସାର୍ ଆମେ ପରା ଜାଣୁ ସତ୍ୟଭାମା ଆଦୌ ପୁଣ୍ୟବତୀ ନୁହେଁ, ଘୋର ପାପିନୀ। ଆପଣ କାଳେ କ'ଣ କହିବେ ଏଥିପାଇଁ କହୁନଥିଲୁ ନା, ଏଣିକି ସାହସ ହୋଇଗଲା, ଖୁବ୍ କହିବୁ... ସତ୍ୟଭାମା ପାପିନୀ...

ଏ ଢେଉ ବାଜେ ସତୀ ସାଧ୍ୱୀ ସୀତା ଦମୟନ୍ତୀ କୁନ୍ତୀ ମନ୍ଦୋଦରୀ ତଥାଙ୍କ ପୁଣ୍ୟପୀଠରେ... ସେମାନଙ୍କର ସିଂହାସନ ଥରେ... ତାଙ୍କର ରୋମାଞ୍ଚ ହୁଏ... ସ୍ୱାମୀମାନଙ୍କର ଫଟ ଉପରେ ହାତ ବୁଲାଇ

ଆଣି କହନ୍ତି... ହାୟରେ ଏକପତ୍ନୀ ବ୍ରତ ଧବମାନଙ୍କର ଚିତ୍ରପଟ ଉପରେ ଏତେ ଦାଣ୍ଡଧୂଳି ଲାଗିଯାଇଛି। କେହି ବି ଟିକିଏ ଦେଖି ସଫା କରୁନାହାନ୍ତି ?

ଏଥିରେ ଅଛନ୍ତି ଲଣ୍ଡନ ଆମେରିକାରୁ ପ୍ରତ୍ୟାବର୍ତ୍ତିତ ସ୍ୱାମୀଙ୍କ ଠାରୁ ଭାରତୀୟ, ନଗରୀୟ, ପଲ୍ଲୀୟ ଏବଂ ଟାଇପ୍ ଥ୍ରି– ୟ, ଫାଇଭ ଇୟ ପର୍ଯ୍ୟନ୍ତ ସ୍ୱାମୀମାନେ। ସେମାନଙ୍କ ଛବି ଉପରେ ଧୂଳି ଜମା ହୋଇଥାଏ, ସେଗୁଡ଼ାକ ବାସ୍ତବରେ ଧୂଳି ନୁହେଁ। ସେଗୁଡ଼ାକ ଯାହା ସେତକ ନଥିଲେ ସୌଧର ସ୍କାଇଲାଇଟ୍ ଭିତର ରବିରଶ୍ମି ଫଟଗୁଡ଼ିକୁ ଏତେ ଉଜ୍ଜ୍ୱଳ କରିପାରନ୍ତା ନାହିଁ।

ନାରୀମାନେ ସତ୍ୟଭାମାକୁ ଯେତେ ପାପିନୀ ନକୁହନ୍ତି, ସତ୍ୟସୁନ୍ଦରମାନଙ୍କୁ ସତ୍ୟଭାମାର ପାପ ପାଇଁ ଭର୍ତ୍ସନା କରନ୍ତି। ଏମାନଙ୍କର ବିଚାର ପ୍ରସଙ୍ଗ ଅଦ୍ଭୁତ। ଯାଙ୍କ ଭିତରେ ପୂର୍ଣ୍ଣ ଯୌବନରୁ ଆରମ୍ଭ କରି ଆସନ୍ନ ପ୍ରୌଢ଼ା ରହିଛନ୍ତି। ନାନା ପ୍ରକାର ଅବଦମିତ ଭୋଗେଚ୍ଛାର ଅପରିଚ୍ଛନ୍ନ କୁଟିଳମାର୍ଗଗାମିନୀ ଏଇମାନେ ସତ୍ୟଭାମାର ବିଚାର କରିବସନ୍ତି। ଗୋଟାଏ ଗୋଟାଏ ତାଳି ବଜେଇ ଦେଇ ରାୟ ଦିଅନ୍ତି– ଇହିଲୋ, ତା'କଥା କହନେଇ,... କହମ ତାକୁ କି ଶାସ୍ତି ଦେବା ?

ସମସ୍ତେ ଭାବି ବସନ୍ତି ସତ୍ୟଭାମାକୁ କି ଶାସ୍ତି ଦିଆଯିବ। ଏତିକିବେଳେ କାହାର ପିଲାଦିନ କଥା ମନେ ପଡ଼ିଯାଏ। କିଶୋରୀ ଅବସ୍ଥାର କଥା ମନେ ପଡ଼ିଯାଏ, ଅନୂଢ଼ା ଥିବା ବେଳର କଥା ମନେ ପଡ଼ିଯାଏ। କାହାର କାହାର ବି ନାସାପୁଟରୁ ଉତ୍ତପ୍ତ ନିଃଶ୍ୱାସ ବାହାରିଆସେ... ବିବାହ ପରେ ବି ସେ କଥା କଅଣ ଭୁଲି ହୋଇପାରେ।

ଏଥିରେ ସେମାନଙ୍କର ପାପବୋଧ ନାହିଁ, କହିବାର କଥା। ସେମାନେ ଗୃହସ୍ଥଳୀର ତୁଳସୀ ବୃକ୍ଷତଳେ ଯେତେବେଳେ ସାୟଂ ପ୍ରଦୀପ ଥୋଇ ମୁଣ୍ଡ ନୁଆଁଇ ଦିଅନ୍ତି; ସେତେବେଳେ ବିଶ୍ୱଦେବତା ତାଙ୍କୁ ଓ ତାଙ୍କ ଅର୍ଜିତ ପାପ ପୁଣ୍ୟକୁ ଗ୍ରହଣ କରିନିଅନ୍ତି। ଦେବତା ଏତକ କରିଛନ୍ତି। ଦେବତା ଏତକ କରିଛନ୍ତି ବୋଲି ଆଜି ଏଇ ପୁଣ୍ୟବତୀମାନେ ସତ୍ୟଭାମାକୁ ପାପିନୀ କହିବାକୁ ଦମ୍ଭ ପାଉଛନ୍ତି।

ପର୍ବତ ଗମ୍ଭୀର। ଆକାଶ ଉଦାର। ନଦୀ ତରଳ। ପୁଷ୍ପବାଟୀ ସୁଗନ୍ଧ। ଅରଣ୍ୟ ଐଶ୍ୱର୍ଯ୍ୟମୟ। ଏମାନଙ୍କୁ ଯେ ଦେଖିବ ସେ ଆତ୍ମବିସ୍ମୃତ ହୋଇପଡ଼ିବ, ଆକୃଷ୍ଟ ହେବ, ଅତର୍କିତ ଭାବରେ ନିଜକୁ ସେମାନଙ୍କ ପାଖରେ ଥୋଇଦେବ। ପ୍ରକୃତିର ଏ ଲୀଳାରଙ୍ଗ। ଏହାର ସମାପ୍ତି ନାହିଁ। ଏହି ଲୀଳାହିଁ ମଣିଷ ଜୀବନକୁ ବର୍ଣ୍ଣବୈଭବ ଦେଇଛି ଏବଂ ଦେଉଥିବ।

ଛୋଟ ଦୁର୍ବାଟିଏ ମହାନ୍ ଆଟୋପରେ ନଇଁପଡ଼େ। ସଞ୍ଚରଣଶୀଳା ବାୟୁବକ୍ଷକୁ। ପତ୍ରଟିଏ ଖସିଯାଏ, ନଦୀସିନ୍ଧୁ ଘେନିଯାଏ ତୀରବାଲୁକା। ମେଘ ଡାକିନିଏ ବଜ୍ରବିଦ୍ୟୁତ୍। ଏମାନେ କଅଣ ପାପୀ ? ସମର୍ପିତ ଆନନ୍ଦରେ ବିମୁଗ୍ଧ ପ୍ରାଣୀ କଅଣ ସେହି ପ୍ରାଣିତ୍ୱରେ ରହିଥାଏ। କିଏ କାହାକୁ କାହିଁକି ଘେନିଯାଏ, କିଏ କେଉଁଠାରେ କାହିଁକି ଆତ୍ମଲୁପ୍ତି ଘଟାଏ– ଏକଥା କଅଣ ଲିପ୍‌ଟନସେବୀ, ଷଣ୍ଢ ଲଢ଼େଇ ଦର୍ଶକ, କଳାକୁ ଧଳା, ଧଳାକୁ କଳା କରିତ୍‌କର୍ମା, କଣ୍ଟ୍ରାକ୍ଟ ବିତରଣକାରୀ ମହାମନୁଷ୍ୟମାନଙ୍କୁ ବୁଝେଇବାକୁ ପଡ଼ିବ ?

ତଥାପି ସତ୍ୟଭାମା ପାପିନୀ, କାରଣ ସେ ସ୍ୱାଧୀନ ଭାବରେ ହସେ, ସ୍ୱାଭାବିକ ଭାବରେ ଚିନ୍ତା

କରେ, ସିଧା ଓ ଶାଣିତ କଥା କହେ, ପ୍ରବୃତ୍ତିକୁ ସଂଭ୍ରମ ଦିଏ, ପ୍ରତିଭାକୁ ଆଦର କରେ, ତ୍ରୁଟି ପାଇଁ ନିଜକୁ ଭର୍ତ୍ସନା କରେ, ଅନ୍ୟକୁ ବି କ୍ଷମା କରେ ନାହିଁ– ଗୋଟିଏ କଥାରେ ସେ ନିଜ ଭିତରେ ମଣିଷକୁ ଦେଖେ, ନିଜକୁ ଦେବତା କରିବା ପାଇଁ ଅନ୍ୟମାନଙ୍କ ଭଳି ପରିଶ୍ରମ କରେ ନାହିଁ। ଶଠତାର ଆଶ୍ରୟ ନିଏ ନାହିଁ।

ତେଣୁ ତା'ର ବିଚାର ହୁଏ। ତାର ମୁଣ୍ଡକାଟ ଆଦେଶ ହୁଏ, କିନ୍ତୁ କେହି କାଟି ପାରନ୍ତି ନାହିଁ, ଅକାଟ୍ୟ ତାର ଆଦର୍ଶକୁ...

ଏ ସତ୍ୟଭାମା କିଏ ? ହୁଏ ତ ଏପରି କେହି ନାହିଁ। କୌଣସି କ୍ୱାଟର୍‌ର ମଣିମାଣିକ–ଖଚିତ ବୈଠକଖାନାରେ ସେ ବିଭୂଷିତା ହୋଇ ରହିନାହିଁ, ଅବା ତାକୁ ଖେଳେଇ ଧରିବାର ଜାଙ୍ଗଲୀ ଏ ପର୍ଯ୍ୟନ୍ତ ଜନ୍ମ ପାଇନାହିଁ। ଅଥଚ ସେ ଅଛି ବହୁ ପୁଣ୍ୟବାନ ବିଚାରକଙ୍କର ପାପପୁଣ୍ୟ ତଉଲ ନିକିତି କଣ୍ଟାପାଖେ।

ତା'ର ଜୀବନ ଦର୍ଶନକୁ ଥରେ ଥରେ ସେ ଶୁଣାଏ ଶୁଭକାନ୍ତକୁ। ତାର ଅବଶ୍ୟ ଜୀବନ ନାହିଁ, କିନ୍ତୁ ଦର୍ଶନ ଅଛି। ସେ କହେ ମଣିଷ ସ୍ୱାର୍ଥପର। ନୂଆ କଥା ସେ କିଛି କହେ ନାହିଁ, କିନ୍ତୁ ତା'ର କହିବା ଭଙ୍ଗୀରେ ସେ ସତ୍ୟକୁ ବି ସ୍ତବ୍‌ଧ କରିଦିଏ। ସେ କହେ ମଣିଷ ପ୍ରଚଣ୍ଡ। ନେବାପାଇଁ ସେ ବହ୍ନିମୟ ହୋଇଯାଏ। ପ୍ରଶାନ୍ତି ଭିତରେ ଧୀର ଗୁଞ୍ଜନ ଭିତରେ ଯେ ମଣିଷ ଆସିପାରେ, ନିକଟତର ହୋଇପାରେ, ଏକଥା ମଣିଷ ବିଶ୍ୱାସ କରେ ନାହିଁ।

ସ୍ୱାର୍ଥରେ ରକ୍ତର ମାଆ ବାପ ବି ବନ୍ଧା। ସ୍ୱାର୍ଥରେ ସମସ୍ତେ ଆବଦ୍ଧ। ସଂସାର ହଳାହଳ। ମିଥ୍ୟା ମଧୁର ବାଣୀ ପ୍ରୟୋଗ କରିଜାଣେ ପୁରୁଷ। ଅଥଚ ମୃତ୍ୟୁଶଯ୍ୟାରେ ଯଦି ତାକୁ ଖୋଜେ ତାର ପରିଚିତା, ପୁରୁଷ କର୍ମବାହାନା ଦେଖାଏ, ସେ ଆସେ ନାହିଁ।

ଶୁଭକାନ୍ତ ସତ୍ୟଭାମାର ଅନ୍ତର୍ମୁଖୀ ଆତ୍ମା। ଏ ସଂସାରରେ ଶୁଭକାନ୍ତର ସ୍ଥିତି ଦୁଃଖପିହିତ। କାରଣ ସେ ଅତି ମୃଦୁ, କୋମଳ ଓ କମ୍ର। ସେଥିପାଇଁ ସତ୍ୟଭାମା ଏଇ ଏକକ ଅନୁଭୂତିକୁ ପ୍ରାଣ ଦେଇ ଘୋଡ଼ାଇରଖିଛି। ତାର ଆତ୍ମା ପରିମଣ୍ଡଳ ଭିତରେ... ଅଥଚ ସେ ପାପିନୀ...

ବୋଉ କହନ୍ତି–

'ଆଜି ଭଲକରି ମୁଣ୍ଡ କୁଣ୍ଡା'।

'କାହିଁକି କିଏ ଆସିବ କି ? ସତ୍ୟଭାମା ପଚାରେ...'

'ହଁ।'

'ଯାକୁ ମିଶାଇ କେତେଥର ହେଲା ?'

'ଯେତେଥର ହେଉ, ଭଲ ଲୁଗା ପିନ୍ଧ୍, ଆ'।

ମୋ ଦେହ ମନରେ ତ ଲାବଣ୍ୟ ନାହିଁ, ଏ ବସନ ଭୂଷଣ କଅଣ ମତେ ଶ୍ରୀମତୀ କରିପାରିବ ?'

'ବେଶୀ କଥା କହନାହିଁ, ନିଜକୁ ଚାହାଁ'।

'କାଇଁକି ବୋଉ ? ଅନ୍ୟ କିଏ ସିନା ଚାହିଁଲେ ମୋର ଦାମଟା ବୁଝିବ ? ମୁଁ ନିଜେ ନିଜକୁ ଚାହିଁ କେବଳ ଆତ୍ମରତିରେ ସିନା ବୁଡ଼ିଯିବି ?

ବୋଉ ଆତ୍ମରତି କଥା କିଛି କହିଲା ନାହିଁ। ସତ୍ୟଭାମା ଉଭାହେଲା ତା'ର ଜୀବନକୁ ସାର୍ଥକ କରିବାକୁ ସ୍ୱର୍ଣ୍ଣରଥରେ ଆସିଥିବା ଯୁବକ ନିକଟରେ...

ଯୁବକ ପ୍ରଶ୍ନ କଲେ–

'ତୁମେ ସୁଗୃହିଣୀ ହୋଇପାରିବ ତ?'

'ଦେଖି କ'ଣ ଅନୁମାନ କରୁଛନ୍ତି?'

'ଦୂରରୁ ଅନୁମାନ କରିପାରୁଥିଲେ ମୁଁ ଏତେ ଜଣଙ୍କ ପାଖକୁ ଏମିତି ଆଡମ୍ବରରେ କାଇଁକି ଆସୁଥାନ୍ତି?'

'ଏ ଗୋଟାଏ ପେଷା ହୋଇଗଲାଣି ନା?'

'ପ୍ରାୟ ସେଇଆ ହୋଇଯାଇଛି।'

'ଆପଣ ସତେ ଜଣେ ସହଧର୍ମିଣୀ ଚାହାନ୍ତି ନା ଜୁଆ ଖେଳିବାକୁ ଇଚ୍ଛା କରନ୍ତି?'

'ଜୁଆ?'

'ଏ ଜୁଆଡ଼ୀଙ୍କ କାମ, କେବଳ ସେତିକି ନୁହେଁ, ମଦର ଦୁର୍ଗନ୍ଧ ଆପଣଙ୍କ ନିଃଶ୍ୱାସରୁ ପାଉଛି। ଏ ଅଭ୍ୟାସ ଅଛି ତାହାହେଲେ?'

'–ଏଁ, ନା, ନା, ତମେ– ଏ କଅଣ କହୁଛ?'

'– ଆପଣ ବୋଲି କୁହନ୍ତୁ'। ଭାବନ୍ତୁ ନାହିଁ ମୁଁ ଆପଣଙ୍କ ପରିଣୀତା, ଏପର୍ଯନ୍ତ ସେ ଦୁର୍ଭାଗ୍ୟ ହୋଇନାହିଁ, ହେବ ବି ନାହିଁ। ଭଦ୍ରମହିଳାଙ୍କୁ କିପରି ସମ୍ବୋଧନ କରିବାକୁ ହୁଏ ଆଗ ଶିଖି ଅନ୍ୟ ପାତ୍ରୀର ସନ୍ଧାନରେ ଯିବେ। ଉଉଣୀର ଏ ଛୋଟ କଥାଟି ମାନିବେ; ଆଚ୍ଛା ନମସ୍କାର...'

'ବୋଉ ଇଣ୍ଟରଭିଉ ସରିଗଲା। ଦେଲୁ, ଆଗ ବେଣୀଟା ଖୋଲି ଦେଲୁ, କେଡ଼େ ଜୋର୍‌ରେ ବାନ୍ଧି ଦେଇଛୁ। ଚଞ୍ଚଳ ମୁକୁଳେଇ ଦେ– ମୁଁ ମୁକ୍ତ ହୁଏ।'

ସତ୍ୟଭାମାର ଏ ଏକ ରୂପ। ବିରୂପ ମନେହେଲା କି? ତେବେ କିଛିଦିନପରେ ରଟନା ହୋଇଗଲା ସତ୍ୟଭାମା ଦୁଷ୍ଟା ଭ୍ରଷ୍ଟା। ପାଣିପ୍ରାର୍ଥୀ ଯୁବକ ଏଇତକ ଉପଢ଼ୌକନ ଦେଇ ଅନ୍ୟ ପାତ୍ରୀ ଖୋଜିବାରେ ବ୍ୟସ୍ତ ରହିଲେ।

ସତ୍ୟଭାମା କହେ–

'ଦେଖ, ଶୁଭକାନ୍ତ, ମୋର ହତଭାଗ୍ୟ ଜୀବନରେ କେତେଗୁଡ଼ିଏ ହତଭାଗ୍ୟ ପ୍ରାଣୀ ରହିଛନ୍ତି। ସେମାନେ ମତେ ଭାରି ଭଲ ପାଆନ୍ତି। ପ୍ରଭାତର ତୋରଣ ଖୋଲିଯିବା ସଙ୍ଗେ ସଙ୍ଗେ ଏମାନେ ଭାସି ଆସନ୍ତି ପ୍ରଭାତୀ ଅରୁଣିମାର ବାୟୁ ହିଲ୍ଲୋଳ ସଙ୍ଗେ ସଙ୍ଗେ। କେତେଗୁଡ଼ିଏ ନିରୀହ ପକ୍ଷୀ। ଆସନ୍ତି, କିଚିରି ମିଚିରି କରି ମତେ ଉଠେଇଦିଅନ୍ତି, ମୁଁ ଯେପରି ତାଙ୍କର ସର୍ବସ୍ୱ। ହାତ ଉପରେ ବସିବେ। ମଥା ଉପରେ ଉଡ଼ି ଉଡ଼ି ବିଶ୍ୱଦେବତାର ଶୁଭାଶିଷ ଦେଇଯିବେ। ମାତ୍ର ଏତେ ଆଶିଷ ମୋର କଅଣ ହେବ? ଇଚ୍ଛାହୁଏ ପକ୍ଷୀର ପକ୍ଷପୁଟ ଭିତରେ ଯେ ବିଶ୍ୱାସ ଓ ସରଳତା ମୋ ପାଖକୁ ଚାଲିଆସେ; ସେତକ ମୁଁ କିପରି ବାଣ୍ଟିଦିଅନ୍ତି ଏଇ ଅଗଣିତ ଜନସମୁଦ୍ରକୁ।

ଆଉ ଦେଖ ଏଇ ଶିଶିରଭିଜା ଗୋଲାପ କଳିଗୁଡ଼ିକୁ। ସ୍ନାତସୌନ୍ଦର୍ଯ୍ୟରେ ବିଭୋର ଏଇ ଫୁଲ ଗୁଡ଼ିକୁ ଦେଖି ମଣିଷ କଅଣ କିଛି ଶିଖିପାରିବ ନାହିଁ? ସେ କଅଣ ଆଘାତ ପରେ ଆଘାତ ଦେଇ ଚାଲିଥିବ? ଅକାରଣେ ଏ ଯେଉଁ ଆଘାତ, ଏ' ଚଣ୍ଡତା ଏହାର କଅଣ ଶେଷ ନାହିଁ?

ଗୋଟିଏ ସାମାନ୍ୟ ନାରୀ ଏ କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ବସି, ଶୁଭକାନ୍ତ, ତୁମ ପାଖରେ ଯେ କଥା ବାଢୁଛି, ସେ କଥା ଭିତରେ ଏ ନାରୀର ପାପଭାବ କେଉଁଠି ଦେଖି ପାରୁଛ? ଏହାର ଚେତନାରେ

ବିଶ୍ୱବୋଧ କଅଣ କିଛି ନାହିଁ ? ଯେ ପ୍ରାଣପଣ ନିଜକୁ ବଞ୍ଚାଇ ରଖୁଛି, ତାକୁଇ ତୁମ ସଂସାର କହୁଛି ପାପମୟୀ ?

ନା, ଏ ଅହମିକା ମଣିଷର ରହିବ ନାହିଁ। ଦେବତା ତାର ରଖାଇ ଦେବେ ନାହିଁ।

ଶୁଭକାନ୍ତ ବୋଲି କେହି ନାହାନ୍ତି ସତ୍ୟଭାମାର ପାର୍ଥିବ ରୂପ ପାଖରେ... ଏ ନାରୀର ସମସ୍ତ ବାଣୀ ରହିଯାଏ ଅନୁତ୍ତରିତ ହୋଇ। ସେଥିପାଇଁ ସେ ବିକଳ ହୋଇପଡ଼େ। ସାଥୀ କାହିଁ ? କେବେ ସେ ଜନ୍ମ ନେବ ଅବା ସେ ଉଦ୍ଭବ ହୋଇଛି ତା'ର ପ୍ରାଣର ପ୍ରତିକମ୍ପନ ଭିତରେ କେତେକାଳୁ ? ସେ କେବଳ ତାକୁ ଦେଖି ପାରୁନାହିଁ, ଜାଣି ପାରୁନାହିଁ।

କୃଷ୍ଣଚୂଡ଼ାରେ ଫୁଲ ଫୁଟେ। ମଧ୍ୟାହ୍ନ ଉତୁରିଯାଏ, ଆସେ ସନ୍ଧ୍ୟା। ପୁଣି ରାକା ନିଶୀଥ ସଜେଇଯାଏ କେତେ ଅଭିସାର। ଅପ୍ରାପ୍ତିର କାମନା ଶତ ଶିଖାରେ ଜଳିଉଠେ।

ସତ୍ୟଭାମା ଖୋଜି ବୁଲେ ତା'ର ହଜିଲା ଦିନର ସ୍ମୃତିଗୁଡ଼ିକୁ। ଦୁନିଆରେ ସେ ଅତି ଛୋଟ ପ୍ରାଣୀ ହେଉପଛକେ, ଥିଲା ସେ ଛବିଳ। ସ୍ୱର୍ଣ୍ଣରାଗ ତାର ଉଡନ୍ତା ଡେଣାରେ, ମନରେ ବିପୁଳ କୁହୁକ। ସଂସାରକୁ ଦେଖିବ, ସତ୍ୟ ନ୍ୟାୟରେ ପ୍ରତିଷ୍ଠିତ କରିବ ତାର ପ୍ରାଣସତ୍ତାକୁ— ଏଇ ହେଲା ତା'ର ମହାନ୍ ଆଶା।

କିନ୍ତୁ ହେଲା କଅଣ ? ଯୌବନର ଆଦ୍ୟ ଆଲିଙ୍ଗନ ତଳେ ରକ୍ତକରବୀର ସମସ୍ତ ସମ୍ଭାର ପାଖରେ ବହିଗଲା ଅପ୍ରତ୍ୟାଶିତ ଏକ ପ୍ରମତ୍ତଝଟିକା। ଏ ଝଟିକା ଆସିଥିଲା ତାକୁ ଗ୍ରାସ କରିବାକୁ, ତାକୁ କବଳିତ କରି ତା'ର ସୁକୁମାର ମନ ଉପରେ ପୁରୁଷର ନିଷ୍ଠୁର ଆତତାୟିତାକୁ ସ୍ୱାକ୍ଷରିତ କରିବାକୁ। ତାହା ହିଁ ହେଲା।

ସେହିଦିନୁ ସତ୍ୟଭାମା ବୁଝିଲା— ସବୁ ମିଥ୍ୟା... ଉପରେ ଶୋଭନର ସ୍ତର ଭିତରେ ସ୍ୱାର୍ଥ ସରିସୃପ କୁଣ୍ଡଳୀ ପକାଇ ପଡ଼ି ରହିଛି। ତା'ର ଉଦ୍ଧାରକର୍ତ୍ତା କେହି ନାହାନ୍ତି ସେ ଜାଣେ। ତଥାପି ଏକ ଅଚିନ୍ତନୀୟ ଶକ୍ତି ଉପରେ ତା'ର ବିଶ୍ୱାସ ରହିଚି। ଭରସା ତୁଟିଛି ମଣିଷ ଉପରୁ, ରହିଛି କେବଳ ନୀଳ ଦିଗନ୍ତ ଉପରେ। ଯେଉଁଠି ଦିଗହୀନ ଅସୀମତା ହିଁ ତାକୁ ବିଶ୍ୱପ୍ରାଣତାର ଆସ୍ୱାଦ ଦିଏ।

ସେ ଜାଣେ ନାରୀର ମୁକ୍ତି ବିବାହରେ। ସମାଜ ତାହାହିଁ ବିଧାନ କରିଛି। ଅଥଚ ଏ ମୁକ୍ତି ଶତ ବନ୍ଧନର କଠିନ ରଜ୍ଜୁରେ ପ୍ରାଣଭିକ୍ଷା କରେ। ନିଜକୁ ଧ୍ୱଂସ କରିବାକୁ ଟିକିଏ ମାତ୍ର ଆୟୋଜନର ଦରକାର ନାହିଁ। ସେ ଆପେ ଧ୍ୱସ୍ତ ବିଧ୍ୱସ୍ତ... ଅଥଚ ଏ ଧ୍ୱଂସ ଆସିବା ପୂର୍ବରୁ, ସତ୍ୟଭାମା ଚିହ୍ନିଛି ସେମାନଙ୍କୁ ଯେଉଁମାନେ ତାକୁ ଶେଷ କରି ଦେବା ପୂର୍ବରୁ ନିଜେ ନିଃଶେଷ ହୋଇଯାଉଛନ୍ତି।

ଶୁଭକାନ୍ତ ଖୋଜେ ସତ୍ୟଭାମାକୁ। ତା'ର ସତ୍ୟ ରୂପକୁ। ଏମିତି ସ୍ୱତନ୍ତ୍ର ଅଥଚ ଅନୁପମ ବ୍ୟକ୍ତିତ୍ୱ ଶୁଭକାନ୍ତ ଦେଖି ନାହିଁ ଅନ୍ୟତ୍ର। ଜୀବନ ବହିଚାଲେ... ଘଟଣା ଘଟେ... ବିନ୍ଦୁ ବିନ୍ଦୁ ସ୍ମୃତି ସଞ୍ଚିତ ରହିଯାଏ। ଦୀର୍ଘଶ୍ୱାସର ଧାରା ଭିତରେ...।

× × ×

ସେଦିନ ଧର୍ମାର୍ଥୀମାନେ... ନାରୀ ଆଉ ପୁରୁଷ— ଚାଲିଛନ୍ତି ସିନ୍ଧୁର ବେଳା ଉପରକୁ, ମହାଯୋଗରେ ଦେହ ବୁଡ଼ାଇ ସମୁଦ୍ରତରଙ୍ଗ ଉଚ୍ଛ୍ୱାସରେ ପାଇଯିବେ ମୁକ୍ତି !

ଇତିହାସର ଗୋଟାଏ କାଳଜୟୀ ତାରିଖ... ଗୋବିନ୍ଦ ଦ୍ୱାଦଶୀ– ଲେଖାହୋଇଯିବ କବିର କାବ୍ୟରେ, କଥକର କଥାରେ–

ମୁକ୍ତିର ବାସନାରେ ଆନ୍ଦୋଳିତ ପାପଶରୀର ଚାଲିଛି ମହାସିନ୍ଧୁର ତଟଆଡ଼େ। ଅଗଣିତ ନରନାରୀ– ସଂସାର ଜଞ୍ଜାଳରେ କୁବ୍‌ଜ ହୋଇଯାଇଥିବା ସେମାନଙ୍କ ଶରୀର, ପରଶ୍ରୀକାତରତା ଆଉ ଅସୂୟାରେ ଜଳିଯାଇଥିବା ତାଙ୍କ ମନ ଆଜି ମୁକ୍ତ ହୋଇଯିବ। ପୁଣି ପରିଷ୍କାର ଧଳା କାଗଜ ଉପରେ ମସୀ ବୋଲି ହୋଇ ଦେଖାଦେବ ଆତ୍ମକୃତ ପାପ– ଗଚ୍ଛିତ ରହିବ ଅପେକ୍ଷମାଣ ଆଉ ଏକ ଦ୍ୱାଦଶୀପାଇଁ।

ଦିଗନ୍ତକୁ ଦୃଷ୍ଟି ଦେଇ ଚାହିଁଲା ସତ୍ୟଭାମା। ହାୟରେ ବିକଳ ମଣିଷ, କେତେ ସହଜରେ ତୁ ମୁକ୍ତ ହେବାକୁ ବିଶ୍ୱାସ ରଖୁ।

ଘର ଭିତରୁ ଡାକ ଦେଲେ ବୋଉ– 'କଅଣ ଏତେବେଳଯାଏ ସେଆଡ଼େ ଚାହିଁ ଛିଡ଼ାହୋଇଛୁ। ରାତି ଦୁଇଟା ବେଳେ ପୂର୍ଣ୍ଣଯୋଗ। ରାତିରୁ ଗାଧୋଇ ଆସିଲେ ଆଉ ଭିଡ଼ରେ ପଡ଼ିବା ନାହିଁ। ଚାଲ ଜଲଦି ଚାଲ–'

ଉତ୍ତର ଦେଲା ସତ୍ୟଭାମା। 'ମୁଁ ତ ପାପ କିଛି କରିନି ଯେ ବୁଡ଼ ପକେଇବି, ତମେ ଯାଅ, ତମର ଯଦି କଅଣ ଥାଏ–'

ବୋଉ ଗର୍ଜିଉଠିଲେ–

'ବୟସ ଗଡ଼ି ଚାଲିଛି, କେଉଁଠି କିଛି ଠିକ ହେଲା ନାଇଁ, ବୁଡ଼ଟାଏ ପକେଇ ଦେଇଥିଲେ, ଗୋଟିଏ ବିଶ୍ୱାସ ତ, କିଛି ଯଦି ଘଟଣା ହୋଇଯାଏ, ପାପ କଥା କଏ କହିଲା? ତା ଛଡ଼ା ସମସ୍ତେ ଯାଉଛନ୍ତି, ତୁଇ ଏକା ଗୋଠଖଣ୍ଡିଆ– ଚାଲ ବୁଡ଼ିଆସିବୁ।'

ସତ୍ୟଭାମା ସେତେବେଳେ ଭାବୁଥିଲା– 'ଶୁଭକାନ୍ତ– 'ଶୁଭକାନ୍ତ, ତୁମେ ବୋଧହୁଏ ଏସବୁ ଶୁଣି ପାରୁନ, ମୁଁ ତ ଜୀବନଭରି ବୁଡ଼ିଛି, ଆଉ ଏ ବୁଡ଼ରେ– ନା, ଥାଉ, ତୁମେ କେଉଁଠି ଅଛ ଶୁଭକାନ୍ତ? ଏଇ ବୁଡ଼ ଭିତରେ ଅଲୋଡ଼ା ଜୀବନଟାକୁ ବିସର୍ଜନ ଦେବି କି? ତୁମର ଅନୁମତି ପାଇବି କି?

ଆଃ, ଜଳରାଶିର କି ସୁନ୍ଦର ବିସ୍ତାର! ଶର୍ବରୀର ଏଇ ସର୍ବ ଶୋଭାମୟ ରୂପତକ ମହାନ୍ ଜଳୋଚ୍ଛ୍ୱାସର ସାର୍ଥକ ବାର୍ତ୍ତା କେତେଜଣ ବା ଶୁଣନ୍ତି, କେତେ ଜଣ ବା ବୁଝନ୍ତି?

ଏକାନ୍ତ ଏକକ ଭାବରେ ଛିଡାହେଲା ସତ୍ୟଭାମା ତରଙ୍ଗାୟିତ ସାଗରକୁ ଧ୍ୟାନ କରି। କେଉଁ ନିର୍ଦ୍ଦିଷ୍ଟ ଜଳବିନ୍ଦୁର ପରିଧିକୁ ସେ ସ୍ପର୍ଶ କରିବ? ଏ ତ ସବୁଆଡ଼େ ପ୍ଲାବନ! ଶୁଷ୍କ ନୀରସ ବୋଲି ଏ ମହାସିନ୍ଧୁ କଅଣ କିଛି ରଖିଛି? ଯେଉଁଠି ବହୁଛି, ତାହା ପ୍ଲାବିତ, ଯେଉଁଠି ନ ବହୁଛି ସେ ବି ପ୍ଲାବିତ ବିଶ୍ୱପିତାର କରୁଣା ଧାରାରେ–

ନୈଶ ଆକାଶତଳେ ନୀଳ ଜଳବେଣୀ। ଏ ଦେହଟାକୁ ସେଇଠି ବୁଡ଼େଇ ଦେଇ ଆତ୍ମତୃପ୍ତିରେ ଫେରିଯିବ ମଣିଷ ନୂତନ ପାପରେ ଲିପ୍ତ ହେବା ପାଇଁ–

ତାର ଜୀବନ– ଏଇ ସତ୍ୟଭାମାର ଜୀବନ! ସମସ୍ତଙ୍କ ଭଳି ସେ ବି ବିକଶି ଆସିଲା ପ୍ରକୃତିର ସୁଚାରୁ ପ୍ରେମମୟ ସ୍ପର୍ଶରେ। ସତ୍ୟ ମିଥ୍ୟା କିଛି ବୁଝି ନଥିଲା। ପ୍ରକୃତିର ସୁଷମାୟିତ ଭୂମା ଉପରେ ସତ୍ୟ

ଛଡ଼ା ଆଉ କିଛିର ଅସ୍ତିତ୍ୱ ଅଛି ବୋଲି ସେ ଜାଣି ନଥିଲା।

କିନ୍ତୁ ମିଥ୍ୟା ଆସିଲା ତା' ଜୀବନକୁ। ପରମ ସନ୍ତୋଷରେ ସେ ଏଇ ଅନୃତକୁ ହାତ ବଢ଼େଇଦେଲା। ଭାବିଲା ଏଇ ବୃନ୍ତରେ ଏଇ ମନୋରମ ପୁଷ୍ପଟି ଫୁଟିପଡ଼ିବ।

ହେଲା ନାହିଁ। ଫୁଟିଲା ସତ, ମାତ୍ର ତାହା ମନୋମୟ ବା ମନୋତୀତ ହେଲା ନାହିଁ। କିଏ ଜାଣେ ଏ ଜୀବନ ଦେଉଛି କଅଣ, ନେଉଛି କଅଣ। ମଣିଷ ଆସେ ସାଗରର ଏଇ ତୀରଭୂମିକୁ। ଅବଲୋକନ କରେ ଏଇ ବିପୁଳ ଜଳାଧାରକୁ। ଆଦିଅନ୍ତହୀନ ଏଇ ବିସ୍ତାରକୁ; ସ୍ନିଗ୍ଧ ଆଉ ଶୀତଳତାର ଏଇ ପ୍ରବାହକୁ।

କିନ୍ତୁ ଫେରିଗଲେ ସେ ଧନବାନ ହୋଇପାରେ ନାହିଁ। ଯେଉଁ ଦରିଦ୍ରକୁ ସେଇ ଦରିଦ୍ର। ସମୁଦ୍ର–ହୃଦୟ ତା' ହୃଦୟକୁ ସମୁଦ୍ରାକାର କରେ ନାହିଁ। ସ୍ନିଗଧ ସାଗର ତା ଅନ୍ତରକୁ ସ୍ନେହସିକ୍ତ କରେ ନାହିଁ। ତରଙ୍ଗୋଚ୍ଛ୍ୱାସ ତାର ଜୀବନକୁ ଭାବମୟ କରେ ନାହିଁ।

ତେବେ ସେ ଆସିଥିଲା କାହିଁକି? ବାଲୁକା ଉପରେ ହାତ ଦେଇ ଗାର କାଟିବାକୁ? ଦୁଇଦଣ୍ଡ ଖେଳି ବୁଲି ଗୋଟାଏ ନିଶ୍ଚିତ ଭାଙ୍ଗି ଚାଲିଯିବାରେ ଆନନ୍ଦ ପାଇବାପାଇଁ?

ମଣିଷ ଏହା ହିଁ କରି ଆସିଛି ସୃଷ୍ଟିର ଆଦ୍ୟ ମୁହୂର୍ତ୍ତରୁ। ମନର ଭାବ ନେଇ ସେ ଖେଳେ, ଭାବାନ୍ତରକୁ ଆସିଗଲେ, ସେ ଭାଙ୍ଗିଦିଏ।

ସବୁ ମଣିଷ ଏମିତି ନୁହନ୍ତି। ଯେଉଁମାନେ ନୁହନ୍ତି ସେଇମାନେ ଏ ସଂସାରରେ ବେଶୀ ଦୁଃଖୀ। ସତ୍ୟଭାମା ଜାଣେନା ଏସବୁ ସେ କାହିଁକି ଭାବୁଛି। ବ୍ୟର୍ଥ ତାର ଜୀବନ ଓ ଆଦର୍ଶ, କିନ୍ତୁ ଏଇ ବ୍ୟର୍ଥତାରୁ, ଏଇ କଳ୍ପିତ ଧ୍ୱଂସମୁଖରୁ କେହି କଅଣ ନାହିଁ ତାକୁ ଉଦ୍ଧାର କରିବ! ଶୁଭକାନ୍ତ କଥା ମନେ ପଡ଼ିଲା; କିନ୍ତୁ ସେ ତ ଅଦୃଶ୍ୟ ଏକ ସ୍ଥିତି। ସତ୍ୟଭାମାର ମନ ଯାହା ଅନ୍ୱେଷଣ କରେ, ତାରି ପ୍ରତିରୂପ ସେ–

ନିଃଶବ୍ଦ ପଦକ୍ଷେପରେ ଶୁଭକାନ୍ତ ଆସେ ତା'ର ମନର ଅଙ୍ଗନକୁ। ସେ ଅଙ୍ଗନ ତମିସ୍ରାଭରା, ସେଠି ଶୁଭକାନ୍ତ ଜାଳିଦିଏ ଗୋଟିଏ ଦୁଇଟି ପ୍ରଦୀପ। ଆଭା ଫୁଟିଯାଏ ସେଇ ସ୍ୱଚ୍ଛ ସ୍ଥାନ ଭିତରେ। ଦୁହେଁ ଦୁହିଁଙ୍କୁ ଚାହାଁନ୍ତି– ଉଜ୍ଜ୍ୱଳ...।

ବୋଉ, ବୋଉ କୁଆଡ଼େ ଗଲା? ଆଉ ତା'ର ସାଥୀମାନେ? ଯିଏ ଯୁଆଡ଼େ ଯାଆନ୍ତୁ। ଆଜି ଏଇ ଦଣ୍ଡରେ ସତ୍ୟଭାମାର କାହାକୁ ଲୋଡ଼ା ନାହିଁ। ଯେଉଁଠି ବିଶ୍ୱବ୍ରହ୍ମାଣ୍ଡ ଏଇ ସାଗର ଭିତରେ ନିମଜ୍ଜିତ ହୋଇଛି। ଯେଉଁଠି ନିଜେ ଧାତା ଏଇ କୃଷ୍ଣ ଜଳ ପ୍ରସାରକୁ ନୌକା କରି ନିଜେ କର୍ଣ୍ଣଧାର ହୋଇ ବାହି ଚାଲିଛନ୍ତି ବିଶ୍ୱଚେତନାକୁ, ସେଠି ସତ୍ୟଭାମାର ପାର୍ଥିବ କାହାର ସହଯୋଗ ଆଉ ଦରକାର ନାହିଁ।

ମଣ୍ଡଣି ମରିଛି ଅୟୁତ ତାରାଲୋକ, ଊର୍ଦ୍ଧ୍ୱରେ– ନୀଳ ଆକାଶ ପଟରେ... କି ଅଦ୍ଭୁତ ଏ ଦୃଶ୍ୟ। ବୋଉ, ତତେ ଶତ ଧନ୍ୟବାଦ; ଆଣିଲୁ ବୋଲି ସିନା ଦେଖିଲି ଏ ମହାର୍ଘ ରୂପ; କିନ୍ତୁ ବୋଉ କାହିଁ? ଯାଉ ସେ ଯୁଆଡ଼େ– ଆଣିବା ତା'ର କାମ ଥିଲା, ନେଇଯିବା ତା'ର ନୁହେଁ କି ଆଉ କାହାର ନୁହେଁ।

ଶୁଭକାନ୍ତ ଏମିତି କେତେ ସୁନ୍ଦର କଥା କହେ– ପ୍ରଥମେ କିଛି ବୁଝି ହୁଏନା, ପରେ ପ୍ରତ୍ୟେକଟି କଥା ଅର୍ଥସମୃଦ୍ଧ ହୋଇ ଉଠେ।

ଶୁଭ୍ର, ତମେ କେଉଁଠି ଅଛ ? ତମକୁ ଏଇ ସାଗର ଉପରେ ଭସେଇଦେଲେ ତମେ କଅଣ ତଳକୁ ଚାଲିଯିବ ? ଏକାବେଳକେ ତଳକୁ; କିନ୍ତୁ ତଳେ ଯାହା ଅଛି ଉପରେ ତା ନାହିଁ। ଉପରଟା ସବୁବେଳେ ଠକିଦିଏ; ତଳ ତା' ନୁହେଁ, ତଳେ ରହିଛି ମଣିମୁକ୍ତା। ଶାନ୍ତ ସ୍ଥିର ଭାବରେ ରହିଛି ସେଇଠି ବିଶ୍ୱର ଆଦିମତା। ସେଇଠିକୁ ମୁଁ ତମକୁ ପଠେଇ ଦେଇଛି। ବୃଥା ଏ ଉପରି ସ୍ତରରେ ରହି ତୁମର ଶୁଦ୍ଧ ମୂର୍ତ୍ତିକୁ ତୁମେ ଅଶୁଦ୍ଧ କର ନାହିଁ। ଲୋକେ ତୁମକୁ ରଖିଦେବେ ନାହିଁ, ତୁମେ ଉପରେ ଥିବାଯାଏ...

ଧୀରେ ସେ ଅଗ୍ରସର କଲା ବିଜନବେଳା ଆଡ଼େ। ଗଭୀର ରାତ୍ରି। ସ୍ନାନାର୍ଥୀ ଅତି ଅଳ୍ପ ଆସୁଛନ୍ତି। ଶୀଘ୍ର ସମାଗମ ବଢ଼ିଯିବ।

କେଉଁ ଅଦୃଶ୍ୟ ଶକ୍ତି ସତ୍ୟଭାମାକୁ ଟାଣିନେଲା ଦୂର... ଦୂରକୁ ... ନିବିଡ ମସୀ ତଳେ ବେଳାର ନୈଶ୍ୟରୂପ। ସିକ୍ତ ବାଲୁକା ଉପରେ ସତ୍ୟଭାମାର ପଦପ୍ରାନ୍ତ ରଖି ଯାଇଥାଏ ଗୋଟାଏ ଅଭିମାନିନୀ ନରମର ରେଖାବଳୀ...

କେତେ ଦୂରକୁ ସେ ଚାଲିଯାଇଛି ସେ ଜାଣେ ନା... ଯିବାଟା ହିଁ ତାକୁ ଭୂତଗ୍ରସ୍ତ କରିଛି...

ସହସା ସ୍ତବ୍ଧ ହୋଇ ସେ ଛିଡ଼ାହୋଇଗଲା ଗୋଟିଏ କଅଣ ଶ୍ୱେତବସ୍ତୁ ଦେଖି... ହେଇଟି ତା'ରି ଗୋଟିଏ ମାତ୍ର ପାଦର ଦୂରତ୍ୱ ଆଗରେ ଥୁଆ ହୋଇଛି, ଏ କି ଶୁଭ୍ର ପଦାର୍ଥ ?

ବେଳା ନିକଟରେ ସାଇଁ ସାଇଁ ଧ୍ୱନି ଭାସି ଆସୁଛି– ଏବଂ ତାଆରି ସହିତ କ୍ଷୀଣ, କ୍ଷୀଣତର ଆଉ ଗୋଟିଏ ଶବ୍ଦଧାରା... ମନେ ହେଉନି ସେଇ ଧବଳ ପଦାର୍ଥ ଭିତରୁ ସଞ୍ଚରି ଆସୁଛି ପରମ ବାଣୀ– "ମତେ ମାଆ ବଞ୍ଚାଅ"–

ସେଇ ମୁହୂର୍ତ୍ତରେ ସତ୍ୟଭାମା ହୋଇଗଲା ବିଶ୍ୱମାତା। ତା'ର ନାରୀତ୍ୱରେ ଜୁଆର ଉଠିଲା। ଏ ନିଷ୍ପାପ ହୀରକ ଖଣ୍ଡକୁ– କେଉଁ ଜନନୀର ରକ୍ତପଦ୍ମକୁ ଅଖ୍ୟାତ ଅଜ୍ଞାତ କେଉଁ ପ୍ରସବିନୀର ଏଇ ଶୋଣିତ ଧାରାକୁ ବକ୍ଷ ଭିତରେ ଧରିବା ପାଇଁ...

ଶିଶୁଟିର କାନ୍ଦଣା ବନ୍ଦ ହୋଇଗଲା। ନୈଶଚାରୀ ବିହଙ୍ଗୀ ସେତିକିବେଳେ କାକଳି ଦେଇ ଶୁଭବାର୍ତ୍ତା କହିଗଲା।

ସତ୍ୟଭାମା ଅନୁଭବ କଲା ଶିଶୁର ଜୀବନ ଅଛି। ଶିଶୁଟିର ସର୍ବାଙ୍ଗରେ ଖଣ୍ଡିଏ ଧଳା ବସ୍ତ୍ର– ବକ୍ଷ ଭିତରେ ଏଇ କଳିଟିକୁ ଉଷ୍ମା ଦେଇ ଦେଇ ସତ୍ୟଭାମା ଏକପ୍ରକାର ଦଉଡ଼ିଲା କେଉଁଆଡ଼େ ସେ ଜାଣେ ନା।

ପାପିନୀ ସତ୍ୟଭାମା ଏଇ ମୁହୂର୍ତ୍ତରୁ ବୋଧହୁଏ ଆହୁରି ପାପିନୀ ହୋଇଗଲା; କିନ୍ତୁ ମହୋଦଧି ସବୁ ଦେଖିଛି, କେହି ଚାହିଁଲେ ସେ ସାକ୍ଷ୍ୟ ଦେବ; କିନ୍ତୁ ହାୟ, ମଣିଷର ବିଚାରରେ ଏଭଳି ସତ୍ୟ ସାକ୍ଷ୍ୟର ପ୍ରୟୋଜନ ଥାଏ କି ?

× × ×

ସିନ୍ଦୂରା ଫାଟିବାକୁ ଆଉ କେତେ ବା ଡେରି ? ଦ୍ୱାଦଶୀର ଉଦୟ– ସତ୍ୟଭାମାର ଭାଗ୍ୟରେ କାହାର ଉଦୟ ସେ ବୁଝିଛି।

ହାସପାତାଳର ଗୋଟିଏ କୋଠରିରେ ବସି ରହିଥିଲା ସତ୍ୟଭାମା। ତା'ର ଆଖି ଦୁଇଟିରୁ ଝରି ଆସୁଥିଲା ପବିତ୍ର ଦୁଇଟି ମୁକ୍ତାବିନ୍ଦୁ। ଶିଶୁର ଗଳାରେ

ଗୋଟିଏ ସୂତାରେ ବନ୍ଧାହୋଇଥିବା ଖଣ୍ଡିଏ ଚିଠିକୁ ସତ୍ୟଭାମା ଅଶ୍ରୁସିକ୍ତ ନେତ୍ରରେ ପଢୁଥିଲା– ଭାଇ ବା ଭଉଣୀ,

'ଦୟାମୟ ଈଶ୍ୱର ଯାହାକୁ ଯା ପାଖରେ ପହଞ୍ଚାଇ ଦେବେ, ଯଦି ସେତେବେଳକୁ ତା'ର ପ୍ରାଣ ଥାଏ, ତେବେ ଏ ଦୁଃଖିନୀର ପ୍ରାର୍ଥନା ରହିଲା; ସେ ତାକୁ ଗ୍ରହଣ କରିବେ। ମୁଁ ତାକୁ ଛାଡ଼ି ଆସିଛି ସେ ବଞ୍ଚିବ ବୋଲି। ମୋ ଅବସ୍ଥାରେ ତାକୁ ମୋ ପାଖରେ ରଖିପାରିଲି ନାହିଁ। ଯେ ଗ୍ରହଣ କରିବେ, ତାଙ୍କୁ ଆଉ କଅଣ କହିବି, ତାଙ୍କର କୋଟି କୋଟି କଲ୍ୟାଣ ହେଉ।

ଦୁଃଖିନୀ–

ଖୋଲା ଆକାଶ ତଳେ ଏ ଯେଉଁ ରତ୍ନକୁ ସତ୍ୟଭାମା ସାଉଁଟି ଆଣି ପାପିନୀ ସ୍ତରରୁ ମହାପାପିନୀ ଆଡ଼କୁ ଗତି କରିଯାଉଛି, ସେ ରତ୍ନ କଅଣ ଭବିଷ୍ୟତରେ ଏ ଦୁନିଆର ନ୍ୟାୟବାନ୍ ବିଚାରକଦଳ ଭିତରୁ ଜଣେ ହୋଇଯିବ ? ସେ କଅଣ ରାୟ ଦେବ ଯେ ତା'ର ମାଆ...

ମାଆ ? ବିସ୍ମୟାଭିଭୂତ ହୋଇ ବିଶୁଷ୍କା ବ୍ରତତୀ ଭଳି ଝାଉଁଳି ପଡ଼ିଲା ସତ୍ୟଭାମା। ତା'ର ଏ ନିଜ କଣ୍ଠସ୍ୱର ତ ? ଏଇ ମାଂସପିଣ୍ଡ ଅବୋଧ ଶିଶୁ ତାକୁ ଡାକିବ ମାଆ ବୋଲି ? ହଁ ସେ ତା'ର ମା', ତାକୁ ପଛକେ କିନ୍ତୁ ସେ ଯେପରି ବିଚାର ମଧ୍ୟରେ– ଭବିଷ୍ୟତର ଏଇ ଜ୍ୟୋତିକୁ ସେ ମିଶାଇବ ନାହିଁ କାହାର ବିଚାର କରିବାକୁ। ସବୁର ଏକମାତ୍ର ବିଚାରକ।

"ଉପରେ"

ପ୍ରୀତିର ଆଶାଦଣ୍ଡ ଭଳି କୋମଳ ହାତଟିକୁ ଉଠାଇ ଯେ ପରମନିୟନ୍ତା ଈଶ୍ୱରଙ୍କ ଆଡ଼କୁ ଉର୍ଦ୍ଧ୍ୱକୁ ଦେଖାଇଦେଲା ସେ ଶୁଭକାନ୍ତ।

ସତ୍ୟଭାମା ହତବାକ୍ ହୋଇ କେବଳ ଚାହିଁ ରହିଲା। ପରେ ପ୍ରକୃତିସ୍ଥା ହୋଇ କହିଲା– ତୁମେ କେମିତି ମୋ ମନ କଥା ଜାଣିଲ ?

ଶୁଭକାନ୍ତ ହସି ହସି ଉତ୍ତର ଦେଲା– 'ଶୁଭ ସତ୍ୟକୁ ଜାଣିପାରେ ଯେମିତି ସତ୍ୟ ଶୁଭକୁ ବୁଝିପାରେ ଆଉ ମଝିରେ ସୌନ୍ଦର୍ଯ୍ୟ– ଏଇ ନବଜାତ ଶିଶୁ, ସେ ଯାହାର ହେଉନା କାହିଁକି, କେଡ଼େ ନିଷ୍ପାପ, ଶାନ୍ତ ଓ ସରଳ ଦେଖିଲ। ଜାଣ ସତ୍ୟ ? ତୁମେ ଦୁଃଖ କର ନାହିଁ। ଯେ ଦୁନିଆ ସହସ୍ର 'ଶଠତା, ଅସତ୍ୟ, ଅସୂୟା ଓ ହିଂସାରେ ଏଯାଏ ପ୍ରତିପାଳିତ ଥିଲା, ସେ ଦୁନିଆ ଧୀରେ ଅପସୃତ ହୋଇ ଯାଇଛି। ଆସୁଛି ଆଉ ଏକ ଜଗତ୍ ଯାହା କାହାକୁ ବିଚାର କରିବ ନାହିଁ। ଅବିଚାର ବି ଦେବ ନାହିଁ। ସେ କେବଳ ମଣିଷକୁ ମଣିଷ ଭାବରେ ସହି ନେବାକୁ ଶିଖାଇବ। ସହନ ଓ କରୁଣା ଆଗାମୀ ଦୁନିଆର ବୀଜମନ୍ତ୍ର ହେବ। ଆଉ ମଣିଷ ବିଶ୍ୱବୋଧରେ ଅନୁରଞ୍ଜିତ ଥିବ। ଏଇ ନର୍ସ ଆସୁଛନ୍ତି।

ସେବିକା କହିଲେ– ପିଲାଟି ସୁସ୍ଥ ଅଛି। ଭୟର କାରଣ କିଛି ନାହିଁ। ନିୟମ ଅନୁସାରେ ବାପାର ନାମ ଲେଖିବାକୁ ପଡ଼ିବ। କିନ୍ତୁ... ଏ ଅବସ୍ଥାରେ...

ଶୁଭକାନ୍ତ ଉଚ୍ଛ୍ୱସିତ ହର୍ଷରେ କହିଲା– ସିଷ୍ଟର, ତା ବେଶ୍, ମୁଁ, ମାନେ ମୋ ନାଁ ଲେଖିଦିଅ– ମୁଁ ଶୁଭକାନ୍ତ।

ନର୍ସ ଫେରିଗଲା।

ପ୍ରୀତଚକିତ ଡୋଳାରେ ସତ୍ୟଭାମା ଜିଜ୍ଞାସୁ ହୋଇଉଠିଲା। ସେ ଚାହାଣୀକୁ ନିରସ୍ତ କରି ଶୁଭକାନ୍ତ ସତ୍ୟଭାମାର ବିଷଣ୍ଣ ମୁଖ ଉପରେ ହାତ ବୁଲାଇ ଆଣି କହିଲା–

'ନା, ବିଚାର କର ନାହିଁ, ସହିନିଅ, ଭବିତବ୍ୟତାକୁ ସହିନିଅ। ଈଶ୍ୱର ତାହାହେଲେ ସନ୍ତୁଷ୍ଟ ହେବେ।'

ଉଜ୍ଜ୍ୱଳ ଆଲୋକ ଓ ପରମ ଆନନ୍ଦ ଭିତରେ ସତ୍ୟଭାମା ମୁଦି ଆଣିଲା ତା'ର ତନ୍ଦ୍ରାଛନ୍ନ ଚକ୍ଷୁପଲ୍ଲବକୁ...

ବିମୁଗ୍ଧ ଭାବରେ ଚାହିଁ ରହିଥାଏ ଶୁଭକାନ୍ତ ସେହିଆଡ଼େ– ବାହାରେ ଜନାକୀର୍ଣ୍ଣ ରାସ୍ତା ଉପରେ ଦୃଢ଼ ପଦକ୍ଷେପରେ ଚାଲୁଥାନ୍ତି ମଣିଷକୁ ବିଚାର କରୁଥିବା ବିଚାରକଦଳ, ନ୍ୟାୟ ନୀତିବଣ୍ଟନକାରୀ ଅସହିଷ୍ଣୁ ମଣିଷଦଳ– ମଣିଷ ଆଉ ମଣିଷ!!!



# ଅଖ୍ୟାତ ଶୋଣିତ ଲିପି

ମୋ ମାଆର ସ୍ତନରୁ ମୋ ମୁହଁକୁ ଟାଣି ନେଇ ଯେଉଁ ଲୋକଟା ମତେ କୋଳ କରି ଚାଲିଗଲା, ତା ଉପରେ ସେତେବେଳେ ମୋର ଭୟଙ୍କର ରାଗ ହୋଇଥିଲା।

ସେ ବୟସରେ ମୋ ହୃଦୟରେ ସୂକ୍ଷ୍ମ ଅନୁଭୂତି ନଥିବାର କଥା। କିନ୍ତୁ ସେହି ଲୋକଟା ମତେ ଯେତେବେଳେ ମାଆର ଆରାମ ପ୍ରଦ ଆଶ୍ରୟରୁ ଟାଣି ନେଇ ବଡ଼ ବଡ଼ ପାଦ ପକାଇ ସହରର ରାଜପଥ ଉପରେ ଦିଗ୍‌ବିଜୟୀ ବୀର ଭାବରେ ଚାଲିଗଲା, ମୁଁ ତାକୁ କେବଳ ଶିଶୁହନ୍ତା ରାକ୍ଷସ ବୋଲି ଭାବିଥିଲି।

ଶୀତ ରାତ୍ରିର ସଂଧ୍ୟା। ପବନ ହେମାଳ ହୋଇ ଆସୁଥାଏ। ଲାଇଟ ତଳେ ଅଜସ୍ର ପତଙ୍ଗ। ମରିବା ପାଇଁ ଇଚ୍ଛା ଘେନି ସେମାନେ ନିଆଁ ସହିତ ଖେଳୁଥାନ୍ତି।

ମାଆ ପେଟ ଉପରେ ଲୋଟିଯାଇ ତାର ରକ୍ତ ଓ ଚର୍ମର ଉଷ୍ମାକୁ ପ୍ରତି ଇନ୍ଦ୍ରିୟରେ ଉପଲବ୍‌ଧି କରି ମୁଁ ପଡ଼ି ରହିଥାଏ ମାଆର ସ୍ତନ ମୁହଁରେ ଦେଇ। ଜନନୀର କ୍ଷୀରଧାରା ଦେବତାର ଅମୃତ ଭଳି ଝରି ଆସୁଥାଏ ମୋର କଣ୍ଠନଳୀ ଭିତରକୁ।

ମୁହଁ ଓ କଣ୍ଠ ଭରା ମାତୃସ୍ତନ ପାନୀୟ ଯେ ଗୋଟାଏ କ୍ଷଣରେ ମୋ ଦୁର୍ଭାଗ୍ୟକୁ ଶୁଷ୍କ ହୋଇଯିବ ମୁଁ ଜାଣି ନଥିଲି।

ଆଃ କି ଆରାମ, କି ଶାନ୍ତିରେ ବାହାରର ଥଣ୍ଡା ପବନକୁ ଭ୍ରୂକ୍ଷେପ ନକରି ମୁଁ ଜାକିଜୁକି ମାଆର ଗାଲ ଉପରେ ଗାଲ ରଖି ପଡ଼ିଥାଏ। ପୁଣି କେତେବେଳେ ତାର ସ୍ତନ ଉପରେ ମୁହଁ ବୁଲାଇ ଅମୃତ ପିଇ ଯାଉଥାଏ।

ମୁଁ ଜାଣୁଥିଲି ମୁଁ ମାଆକୁ ବିରକ୍ତ କରୁଛି। ଯେତେବେଳେ ଇଚ୍ଛା କରୁଥିଲି ମୁଁ ଟାଣି ଆଣୁଥିଲି ତାଠାରୁ କ୍ଷୀର ଧାରା। ମାଆ ବି ସେଥିରେ ଆତ୍ମ ଚୈତନ୍ୟ ହରାଇ ତାର ସର୍ବାଙ୍ଗକୁ ମହା ପ୍ରଶାନ୍ତିରେ ଦେଇ ମୋତେ କୋଳ ଉପରେ ରଖି ଆଦର କରୁଥାଏ। ତାର ଘନ ଘନ ଚୁମ୍ବନ ତାର ଆଲିଙ୍ଗନ ମତେ ବଡ଼ ଭଲ ଲାଗୁଥାଏ। ମୁଁ କେବଳ ଜାକିଜୁକି ହୋଇ ପଡ଼ିଥାଏ।

କ୍ରମେ ଶୀତ ଘନେଇ ଆସିଲା। ଦିନଟିଯାକ ଆପଦ ବିପଦରୁ ରକ୍ଷାପାଇ ଯାଇଛୁ ବୋଲି ମାଆ ବୋଧହୁଏ କ୍ଷଣକ ପାଇଁ ଭଗବାନଙ୍କୁ ପ୍ରାର୍ଥନା କରିଥିଲା। ମୁଁ ବି କିଛି ନବୁଝି ନଶୁଝି ମାଆର ପ୍ରାର୍ଥନାରେ ଯୋଗ ଦେଇଥିଲି। ତାର ସ୍ତନରୁ ମୁହଁ ଟେକି ମାଆର ମୁହଁକୁ ସେତେବେଳେ ବଲବଲ ଚାହିଁଥିଲି।

କିନ୍ତୁ କେଜାଣି କାହିଁକି ମାଆ ଆଖିରୁ ଲୁହ ଝର ଝରି ଯାଉଥାଏ। ଆମ ଜୀବନରେ ଏ'ଲୁହ ଝର ନୂଆ କଥା ନୁହେଁ। କାନ୍ଦି କାନ୍ଦି ପୁଣି ଆମେ ସକାଳ ସୂର୍ଯ୍ୟକୁ ନମସ୍କାର କରୁ। କେଉଁଦିନ ଗଛ ଛାଇତଳେ ରାତି କଟାଇ ଦେଉ; କେଉଁଦିନ ରାଜପ୍ରସାଦ ଗବାକ୍ଷ ତଳେ କାତର ଦୃଷ୍ଟି ପକାଇ ଆମେ ମାଆ ଝିଅ ଛିଡ଼ା ହୋଇଥାଉ।

ମୋର ଭାଇ ଦିଓଟି ଭଉଣୀ ତିନୋଟି। ମତେ ମିଶାଇ ଏ ଛଅ ପ୍ରାଣୀକୁ ମାଆ ଏତେ କେଉଁଠୁ ଆଣିବ ଯେ ଆମ ପେଟ ପୂରାଇବ? ଆମେ ତ ନିରାଶ୍ରୟ ଭାବରେ ଜଳ ଜଳ ଚାହିଁବା ଛଡ଼ା ଆଉ କିଛି କରି ପାରୁନଥିଲୁ।

ମାଆ କିନ୍ତୁ ଆମକୁ ହୋସ ଦେଉଥାଏ– ଆମେ ଦିନେ କୋଟିକରେ ଗୋଟିଏ ହେବୁ; ଆମ ଦେହରେ ଶକ୍ତି ଆସିବ; ଆମ ମନରେ ବଳ ଆସିବ; ଆମେ ଶତ୍ରୁ ଦେଖିବା ମାତ୍ରେ ତାକୁ ଜବତ କରିବା ପାଇଁ ନଖ ଦନ୍ତ ଦେଖାଇବୁ।

ମାଆ କେବେ ଦୁଃଖ କରି ନାହିଁ ତାର ଏତେ ସନ୍ତାନ ଜନ୍ମିଲେ। ଛୋଟ ବଡ଼ ଏତେ ଭାଇ ଭଉଣୀ ମାଆକୁ ଘେରି ଆମେ ବଞ୍ଚିଯାଉ। ତା'ର କି ତ୍ୟାଗ!! ତାର ଆହାର ସେ ଆମକୁ ଦିଏ। ତାର ସ୍ତନ ଆମକୁ ଦିଏ। ଆମକୁ ଭୟ ବିପତ୍ତିରୁ ରକ୍ଷା କରିବା ପାଇଁ ସେ ସବୁବେଳେ ସଜାଗ ଥାଏ।

ଆମ ଭାଇ ଭଉଣୀ ଭିତରେ ପ୍ରଗାଢ଼ ସ୍ନେହ ଥାଏ। କିଏ ଟିକିଏ ଦୂରକୁ ଚାଲିଗଲେ, ଅନ୍ୟମାନେ ତା' ପାଖକୁ ଦଉଡ଼ି ଯାଆନ୍ତି। ଠୁକୁ ଠୁକୁ ଚାଲିରେ ସଭିଏଁ ଭାରି ସୁନ୍ଦର ଦେଖାଯାନ୍ତି

ମୁଁ ବଡ଼। ମତେ ମାଆ ଭାରି ଭଲ ପାଉଥାଏ, ପୁଣି ଝିଅଟିଏ ହୋଇଥିବାରୁ ତା'ର ସ୍ନେହ ମୋ ଉପରେ ବେଶୀ ବର୍ଷିଯାଉଥାଏ। ଏମିତି ସୁଖ ଦୁଃଖରେ ଆମର ଛୋଟ ପରିବାର ଏଡ଼େ ବଡ଼ ଦୁନିଆରେ ବାଟ କାଟି ଚାଲିଲା।

ହଠାତ୍ ସେଇ କାଳରାତ୍ରି ଆସିଗଲା। ଚାରିଆଡ଼େ କଳା ମିଟି ମିଟି ଅନ୍ଧାର। ଶୀତରେ ଦେହ ଥରି ଯାଉଥାଏ। ସେହି ସନ୍ଧ୍ୟାରେ ମାଆ କାହିଁକି ବେଶୀ କାନ୍ଦିଲା।

ନିଶୂନ ସେଇ ସ୍ଥାନରେ ମାଆ ମୋ ଗାଲ ଉପରେ ବୋକ ଦେଇ କହିଲା– 'ଶୋଇ ପଡ଼ରେ ମୋର ଗଛାମାଳି, କାଲି ଉଠିଲେ ଭଲ ଜିନିଷ ଖାଇବାକୁ ଦେବି।' ମୋ ଆଗରୁ ମୋର ଭାଇ ଭଉଣୀ ମାନେ ଶୋଇ ପଡ଼ିଥିଲେ। ମାଆର ସ୍ନେହ ସୋହାଗ କଥା ପଦକରେ ମୋର ଆଖି ବୁଜି ଆସିଲା। ମୁଁ ଶୋଇ ପଡ଼ିଲି।

ମାଆର ଚିତ୍କାରରେ ମୋ ନିଦ ଭାଙ୍ଗିଗଲା। ମାଆ କେବଳ ଚିତ୍କାର କରୁଥାଏ ଆଉ କହୁଥାଏ ତାକୁ ନିଅ ନାହିଁ, ତାକୁ ନେଇ ଗଲେ ମୁଁ ମରିଯିବି।

ଆମ ଆଗରେ ଛିଡ଼ା ହୋଇଥାଏ କଳାପୋଷାକରେ ଗୋଟାଏ ଉଚ୍ଚା ଲୋକ। ତାର ବେକ ତଳକୁ ଗୋଟାଏ ନାଲି କନା ଓହଳି ପଡ଼ିଥାଏ ସେଇଟା ତାର କୋଟ୍ ମଝିରେ ଝୁଲୁଥାଏ। ତା'ର ଆଖି ଦୁଇଟାରେ ଜଳୁଥାଏ ଆନନ୍ଦ। ଆନନ୍ଦ ଯେ ଏପରି ଜଳିପାରେ ଏମିତି କେବେ ଦେଖି ନଥିଲି। ଏ' ଅଲୋଡ଼ା ଜୀବନରେ ମଣିଷର ଆନନ୍ଦର ଆଭା କି ନୃଶଂସତା କ'ଣ କହିବି, ମୁଁ ଆଉ ଥରେ ଦେଖି ନାହିଁ।

ତା'ର ଓଠର ହସ ଓ ଆଖିର ଦୀପ୍ତି ଦେଖି ମୁଁ ଭାବିନେଲି ଏ ବୋଧହୁଏ ମତେ ଛୁରୀରେ ଖଣ୍ଡ ଖଣ୍ଡ କରି କାଟି ଖାଇବ। ହଁ, ମୁଁ ଟିକିଏ ହୃଷ୍ଟପୁଷ୍ଟ ଥିଲି। ମାଆର ସ୍ତନଧାରାର ଅକ୍ଷୟ ଜୀବନୀଶକ୍ତି ମୋ ଅଙ୍ଗକୁ ଲାବଣ୍ୟ ଦେଇଥିଲା। ମୋର ଶ୍ୟାମ ରୂପରେ ଯେ କେହି ମୋହି ହୋଇ ଯିବାର କଥା। କିନ୍ତୁ ଏ ନୃଶଂସ ଲୋକଟାକୁ ଦେଖି ମୁଁ ଭୟରେ ଶିହରି ଉଠିଥିଲି।

ବାଟରେ ଘାଟରେ ପିଲାଚୋରର ଉପଦ୍ରବ କଥା ମୁଁ ଆଗରୁ ଜାଣିଥିଲି। କିନ୍ତୁ ଆମଭଳି ନିଉଛୁଣା ଅଲୋଡ଼ା ପିଲାଙ୍କୁ କିଏ କାହିଁକି ଚୋରି କରି ନେବ?

ସେଦିନ ରାତ୍ରିରେ ଦେଖିଲି ମୋର ଆଉ ନିସ୍ତାର ନାହିଁ। ଲୋକଟି ଯୋତା ମଚ୍ ମଚ୍ କରି ମୋ ପାଖକୁ ପାଖେଇ ଆସିଲା। ମାଆ ଆହୁରି ବଡ଼ ପାଟିରେ ଚିତ୍କାର କରୁଥାଏ। ସେ ଚିତ୍କାରରେ ମୋର ଭାଇ ଭଉଣୀ ନିଦରୁ ଉଠିଲେଣି; ସେମାନେ କେବଳ ହାଉଳି ଖାଉଛନ୍ତି। କିଛି ବୁଝି ପାରୁ ନାହାନ୍ତି। କେବଳ ଏଇ ଲୋକଟାର ପ୍ରେତମୂର୍ତ୍ତି ଆମ ଆଡ଼କୁ ମାଡ଼ି ଆସୁଥାଏ।

ଆସନ୍ନ ବିପଦରେ ମାଆର ଆଉ ଚିତ୍କାର ଶୁଭିଲା ନାହିଁ। ମତେ ଶେଷଥର ପାଇଁ ସେ କଣ୍ଠ, ହୃଦୟ ହାତ ପାଦରେ ଜଡ଼ାଇ ଧରି ତା'ର ଜୀବନର ଶେଷ ଲୁହ ବିନ୍ଦୁଟିକୁ ଝରାଇ ଦେଲା। ବୋଧହୁଏ ଶାନ୍ତ ସମାହିତ କଣ୍ଠରେ ବିନା ଶବ୍ଦରେ ଆମ ସମସ୍ତଙ୍କର ସୃଷ୍ଟିକର୍ତ୍ତାଙ୍କୁ ପ୍ରାର୍ଥନା କରି ସେ ତା'ର ଶରୀର ଭିତରୁ ମତେ ମୁକୁଳେଇ ଦେଲା। ଏବେ ମନେ ପଡୁଛି, ମାଆ ମୋ ଗଣ୍ଡ ଉପରେ ଶେଷ ଚୁମ୍ବନ ଆଙ୍କି ଦେଇଥିଲା। ସେଥିରେ ଝରି ପଡ଼ିଥିଲା ଏ ଅଲୋଡ଼ା ଜୀବନ ପାଇଁ ଆଶା ବିଶ୍ୱାସର ଆଶୀର୍ବାଦ।

କୁହୁକ ଛୁଇଁଲା ଭଳି ମୋ ମନରୁ ଭୟ ଚାଲିଗଲା। ମାଆର କଲ୍ୟାଣ କି ଆଉ କଅଣ ମତେ ସେଇ ମୁହୂର୍ତ୍ତରେ ଶକ୍ତି ଦେଇଥିଲା। ମୁଁ ଝାଡ଼ିଝୁଡ଼ି ହୋଇ ଛିଡ଼ା ହେଲି, ଥରେ ମାଆକୁ ଆଉ ଥରେ ଏଇ ଭୀଷଣାକୃତି ରାକ୍ଷସକୁ ଅନାଇ ପୁଣି ଆଖି ବନ୍ଦ କରିଦେଲି।

ସେ ସମୟରେ ଶୁଣିଲି– 'ସାବାସ ଝିଅ, ଭୟ କରନା, ତୋ କପାଳରେ ପଲାଉ, କୁର୍ମା ଅଛି, ଗଦିରେ ଶୋଇବୁ, ତୁ ଯାହା ଦୁଧ ପିଇବୁ, କୌଣସି ପୁଅ ଝିଅ ସ୍ୱପ୍ନରେ ଭାବି ନ ଥିବେ।' ଟିକିଏ ପୁଣି ଢୋକ ଗିଳି ସେ କହିଲା– 'ଭଗବାନ ତତେ ଏତେ ରୂପ ଦେଇଛନ୍ତି, ଏତେ କୋମଳତା– ମୁଁ କଅଣ ତତେ ଛାଡ଼ି ଦେଇପାରେ?'

କଅଣ ଘଟିଲା ବୋଲି କିଛି ନିର୍ଦ୍ଦିଷ୍ଟ ଭାବରେ ଜାଣିବା ପୂର୍ବରୁ ମୁଁ ସେଇ ପାଷାଣ୍ଡର ଛାତି ଉପରେ ମୁହଁ ଲୁଚାଇ ଦେଇଥିଲି। ସେ ତା'ର ବଜ୍ର ହସ୍ତରେ ମତେ ଟେକି ଉଠାଇ ନେଇ ଛାତି ପାଖରେ ତା'ର ଲୌହ ପଂଝା ହାତଟାରେ ମତେ ସାଉଁଳେଇ ଗେଲ କରୁଥାଏ।

ସେଇ ଟିକକ ସ୍ପର୍ଶରେ ମୁଁ ଭାବିନେଇଥିଲି ଏତେ କଠୋର ଓ ଭୀଷଣ ହେଲେ କଅଣ ହେବ ଏ ଲୋକର ଅନ୍ତରରେ ଦୟା ଅଛି। କିନ୍ତୁ ଏପରି ଭାବି ମୁଁ ଭୁଲ କରିଥିଲି। ଦୁଃଖିନୀ ଜୀବନର କାହାଣୀ ଶେଷ ହେଲା ବେଳକୁ ସମସ୍ତେ ବୁଝିପାରିଥିବେ ତାହା ଦୟା ଥିଲା କି ସହାନୁଭୂତି ଥିଲା ନା ଆଉ କିଛି ଥିଲା।– ମାତ୍ର ମୋ କଅଁଳ ମନରେ ବରାବର ଏଇ ଭାବଟି ଉଙ୍କିମାରୁଥାଏ– ରକ୍ଷକ କଅଣ କେବେ ଭକ୍ଷକ ହୋଇପାରେ?

କାରଣ ମାଆ ଆମକୁ ରକ୍ଷା କରି ଆସିଛି। ବହୁବାର ତା'ର ଜୀବନକୁ ବିପନ୍ନ କରି। ସେଇ ସ୍ନେହ ମୋ ମନକୁ ଆସୁଥାଏ ଆଉ ସେଇ କଷଟୀ ପଥରରେ ମୁଁ ଦୁନିଆର ଭଲ ପାଇବା, ସ୍ନେହ, ପ୍ରଣୟକୁ ପରୀକ୍ଷା କରୁଥାଏ– କି ବାଚାଳ ସତେ ମୁଁ?

ମାଆ ଚାହିଁରହିଥାଏ ଚାହିଁରହିବା ଛଡ଼ା ଏତେବଡ଼ ଦୁର୍ଦ୍ଧର୍ଷ ଶକ୍ତି ବିପକ୍ଷରେ ତା'ର ଆଉ କି ଅସ୍ତ୍ର ଥିଲା ? ଦୁଇ ଧାରରେ ଲୁହ ବହିଯାଇଥାଏ। ତା'ପାଟି ଆଁ ହୋଇ ରହିଥାଏ– ଦେହ ଥରୁଥାଏ। ତା'ର ମନ ଭିତରୁ ବୋଧହୁଏ ଏତିକି ଅବ୍ୟକ୍ତ ଭାଷା ବ୍ୟକ୍ତ ହେଉଥାଏ– ନିଅ ପଛକେ ଝିଅକୁ ମୋର, ଭଲରେ ରଖ– ତାକୁ ସ୍ନେହରେ ପାଳନ କର ସେ ଯେପରି ଅଚିରେ ମାଆର ସ୍ନେହ ଭୁଲିଯିବ।

ଭାଇ ଭଉଣୀଙ୍କୁ ଚାହିଁଲି ସେମାନେ ଲୁହ ଝରାଉଛନ୍ତି। କାଳ ରାତ୍ରି ଆହୁରି ପ୍ରଚଣ୍ଡ ହେଉଥାଏ। ଶିଶିର ଖସିପଡୁଥାଏ ବୃକ୍ଷ ପଲ୍ଲବରୁ। ସେଇ ନିର୍ଜନ ନିଥର ଭୂମି ଉପରେ ମୋର ଶେଷ ପଦ ଚିହ୍ନ ପଡ଼ିରହିଲା, ଆଉ ମାଆକୁ ଶେଷଥର ପାଇଁ ଚାହିଁବା ଶେଷ ହୋଇଗଲା।

ଲୋକଟା ମତେ ଛାତି ପାଖରେ ଟାଣି ରଖି ଆଗକୁ ପାଦ ବଢ଼ାଇଲା। ମୋର ବୋଧହୁଏ ଜ୍ଞାନ ନଥିଲା। ଚୈତନ୍ୟ ହରାଇବା ପୂର୍ବରୁ ମୁଁ କେବଳ ଶୁଣିଥିଲି– ହାୟରେ ଝିଅ ଏହାହିଁ ଆମ ଭାଗ୍ୟ। ଈଶ୍ୱର ତୋର ଭଲ କରନ୍ତୁ।' ଏହା କହି ମାଆ ବୋଧହୁଏ କେଉଁଆଡ଼େ ଦଉଡ଼ି ଚାଲି ଯାଇଥିଲା– ଭାଇ ଭଉଣୀ ଅଦୃଶ୍ୟ ହୋଇ ଗଲେ।

ମୋର ଜ୍ଞାନ ଫେରି ଆସିବା ପରେ ମୁଁ ଦେଖିଲି ରାତ୍ରି ଆସାନସୋଲ ଗାଡ଼ିରେ ଗୋଟାଏ ଥାର୍ଡ଼ କ୍ଲାସ କାମେରାରେ ମୁଁ ବସିଛି। ମୋ ଦେହରେ କିଛି ନାହିଁ। ମୁଁ ଶୀତରେ ଫୁଲି ଫୁଲି କାନ୍ଦୁଚି।

ଶୀତଟା ମତେ ଏତେ ବାଧି ନ ଥାନ୍ତା। କାରଣ, ଆମଭଳି ଜୀବ ଖରା, ବର୍ଷା, ଶୀତକୁ ସହିନେବାରେ ଅଭ୍ୟସ୍ତ। କିନ୍ତୁ ମାଆର ସେ କରୁଣ ଚାହାଣୀ, ମାଆର ସେ ବୁକୁଫଟା ଚିତ୍କାର, ମାଆର ସେ ସଜଳ ଆଖି ଦୁଇଟି, ଶେଷରେ ତାର ସେ ଆଶୀର୍ବାଦ ମତେ ଅସ୍ଥିର କରୁଥାଏ। ମୋ ଆଗରେ ଜନନୀର ସେ ସେବାମୟୀ ମାତୃମୂର୍ତ୍ତି ଭାସି ଆସୁଥାଏ। ମୁଁ ବହୁବାର ମୋର ରକ୍ଷକ କି ଭକ୍ଷକ ଆଡ଼କୁ ନିଷ୍ପନ୍ଦ ଚକ୍ଷୁରେ ଚାହିଁ ମିନତି ଫୁଟାଇ କହୁଥାଏ– ଏବେ ବି ବେଳ ଅଛି। ମତେ ମାଆ ପାଖରେ ଛାଡ଼ି ଦେଇଆ। ଯେଉଁ ଭଗବାନ ମୋର ମାଆକୁ ମୋ ପାଖକୁ ପଠାଇଛନ୍ତି, ସେହି ଭଗବାନ ତତେ ବି ମାଆ କୋଳରେ ଶାନ୍ତି ଓ ସୁଖ ଦେଇଥିବେ। ତୁ କଅଣ ବୁଝିପାରୁନୁ ମୁଁ ଏଇ ମୁହୂର୍ତ୍ତରୁ ମାଆ ଛେଉଣ୍ଡ ହୋଇଗଲି। ଅଥଚ ମୋ ମାଆ ବଞ୍ଚିଛି। ଏବେ ସେ ଦୂର ଦିଗ୍‌ବଳୟକୁ ଚାହିଁ ଅଶ୍ରୁ ଝରାଉଥିବ। ଏବେ ବି ସେ ଝିଅ ଝିଅ ଡାକି ପାଗଳିନୀ ଭଳି ଚାରିଆଡ଼େ ମତେ ଖୋଜୁଥିବ।

ମୋର ଯେପରି ବିଶ୍ୱାସ ଥିଲା ମାଆର ବି ସେପରି ବିଶ୍ୱାସ ଥିଲା। ମଣିଷ ମଣିଷ ଭିତରେ ସ୍ନେହ, ପ୍ରେମ ସହାନୁଭୂତି ଏବେ ବି ଅତୁଟ ରହିଛି। କେବଳ ମଣିଷ–ମଣିଷ ଭିତରେ ନୁହେଁ ବିଶ୍ୱର ସର୍ବ ପ୍ରାଣୀ ଭିତରେ ଏଇ ପ୍ରେମହିଁ ସାର କଥା। କିନ୍ତୁ ସେହିଦିନ ଦେଖିଲି ସବୁ ମିଛ। କେଉଁଠି କଅଁଳ ଚେହେରା ଦେଖିଲେ ମଣିଷ ପ୍ରଲୁବ୍‌ଧ ହୋଇଉଠେ। କେଉଁ ପରିପୁଷ୍ଟ ଉତ୍ତମାଙ୍ଗ ଦେଖିଲେ ମଣିଷ ତାକୁ ଅଧିକାର କରିବାକୁ ବ୍ୟଗ୍ର ହୋଇଉଠେ। ଏଇ ଲାଳସା ଦିନେ ମଣିଷ ସମାଜକୁ ଧ୍ୱସ୍ତ ବିଧ୍ୱସ୍ତ କରି ଦେବ। ଆଜି ସେ ବୁଝି ପାରୁନାହିଁ।

ମୁଁ ଗୋଟିଏ ଧୂଳିର ଜୀବ। ଧୂଳିରେ ମୁଁ ଦିନ ରାତି ମିଶି ରହିଥାଏ। ମୋର ଜୀବନର ଶେଷ କ୍ଷଣ ଧୂଳିରେ ମିଶିଯିବ। ମାଆର କ୍ଷୀର ଖାଇ ଦେହରେ

ଟିକିଏ କେଉଁଠି ଲାବଣ୍ୟର ସଂଚାର ଆସିଛି ସେଥିପାଇଁ ଏତେ ମୋହ ! ଏତେ ବୁଭୁକ୍ଷା !! ମଣିଷ ଏତେ ପ୍ରଲୁବ୍ଧ।

ଗାଡ଼ି ଭିତରେ ମୁଁ ସମସ୍ତଙ୍କୁ ଚାହିଁଲି। ଆଖି ତ ଫାଟି ଯାଇଥାଏ ଲୁହଧାରରେ ! କ'ଣ ବା ଚାହିଁବି ? ତେବେ ଦେଖିଲି ଯାତ୍ରୀମାନେ ମୋ ଆଡ଼କୁ ସଦୟ ଚାହାଣୀ ଢାଳୁଛନ୍ତି। କିଏ କେତେ କଥା ପଚାରୁଛନ୍ତି।

ଲୋକଟି ନିର୍ବିକାର ଭାବରେ ବସିଥାଏ। ତା'ର ଗୋଡ଼ପାଖରେ ମୁଁ ଲୋଟି ପଡ଼ିଥାଏ। କ୍ରମେ ରାତ୍ରି ଘନ ହେଲା। ଲୋକମାନେ ଯେ ଯାହାର ଆସନ ପାତି ଆରାମ କରିବାକୁ ଉଦ୍ୟତ ହେଲେ।

ମାଆର କ୍ଷୀରଧାରା ମୋ ପେଟ ଭିତରେ ସଞ୍ଚିତ ରହିଥିଲା। କିନ୍ତୁ ଭୟ, ହତାଶା ଓ ନୈରାଶ୍ୟରେ ସେତକ କେତେବେଳୁ ଶୁଖି ଯାଇଥାଏ। ମତେ ଭୋକ କରୁଥାଏ। ଭୋକ ଅପେକ୍ଷା ପ୍ରବଳ ଶୋଷରେ ମୋ କଣ୍ଠନଳୀ ଶୁଖି ଯାଇଥାଏ।

ଆଗରେ ଦେଖିଲି ଗୋଟିଏ ଯାତ୍ରୀ ତା'ର ରାତ୍ରି ଆହାର ଘେନି ବସିଛି। ମନେ ହେଉଥାଏ ତାକୁ କିଛି ମାଗିବି। କିନ୍ତୁ ପରକ୍ଷଣରେ ସେଇ ଲୋକଟାକୁ ଚାହିଁ ଦେଇ ମୁଁ ଶଙ୍କି ଯାଇଥାଏ।

ଗାଡ଼ି ଛାଡ଼ିଦେଲା। ମୋ ଜୀବନରେ ଏଇ ପ୍ରଥମଥର ମୁଁ ଚଳନ୍ତା ଗାଡ଼ିରେ ଯାଇଥିଲି। ଏତେ ଦୁଃଖ ଏତେ ଶୋକ ଭିତରେ ଟ୍ରେନଯାତ୍ରା ମତେ ଭଲ ଲାଗୁଥାଏ। ଆମଭଳି ଜୀବ ଭାଗ୍ୟରେ ଏଭଳି ଯାତ୍ରା ସବୁ ସମୟରେ ସମ୍ଭବ ନୁହେଁ। ଏ ଲୋକଟା ମୋତେ ଏତିକି ସୁବିଧା ଦେଇଥିବାରୁ ମୋ ମନ କୃତଜ୍ଞ ହୋଇଗଲା। କିନ୍ତୁ ମୁଁ କୁଆଡ଼େ ଯାଉଛି ? କେଉଁଠି ରହିବି ? କିଏ ମୋ କଥା ବୁଝିବ ? ଏଇ ସବୁ କଥା ମତେ ଦୁଃଖ ଦେଉଥିଲା। ମୋ ଆଖିରୁ ଅନବରତ ଝର ବୋହୁଥିଲା।

ମାଆ ଖୁବ ମନେ ପଡ଼ିଲା– ସେ ଏକ୍ଷଣି କଅଣ କରୁଥିବ ? କାନ୍ଦି କାନ୍ଦି ତାର ଆଖି ସେ ଫୁଲାଇ ଦେଲେ ବି ମତେ ଆଉ ଫେରି ପାଇବ ନାହିଁ। ସବଳର ଦୁର୍ବଳ ଉପରେ ଏଇ ଅତ୍ୟାଚାର ଆଜିର ଘଟଣା ନୁହେଁ, ଯୁଗେ ଯୁଗେ ଏହା ଚାଲି ଆସିଛି। ମୁଁ ନିରାଶ୍ରୟ ବୋଲି ମୋ ମାଆ ଅସହାୟ ବୋଲି ସିନା ଏଇ ଶକ୍ତିମାନ ଲୋକଟା ଆମ ସଂସାରକୁ ଛିନ୍ନ ଭିନ୍ନ କରିଦେଲା ? ଆମର ବଳ ଥିଲେ, ଆମର ଅଧିକାର ଥିଲେ ସେ ଏକଥା କଅଣ କରିଥାନ୍ତା ?

ମନେ ହେଉଥାଏ ଏ ଜନ୍ମରେ ଆଉ କିଛି କରିହେବ ନାହିଁ। ଆର ଜନ୍ମରେ ଆଉ ଏ ଅତ୍ୟାଚାର ଆମେ ସହିବୁ ନାହିଁ। ଆମେ ବିପ୍ଳବୀ ହେବୁ, ଆମେ ବିକ୍ଷୋଭ ଦେଖାଇବୁ। ସବୁ ପ୍ରାଣୀ ଯେ ସମାନ, ସମସ୍ତଙ୍କର ସମାନ ଅନୁଭବ ଶକ୍ତି ଅଛି– ଏସବୁ ବାଣୀ ପ୍ରଚାର କରିବୁ।

– 'ଟିକିଟ୍'–

ଗୋଟାଏ କଳା ପୋଷାକର ଲୋକ ସେ ଲୋକଟାଆଡ଼େ ଚାଲି ଆସିଲା। ଟ୍ରେନ ଷ୍ଟେସନରେ ଛିଡ଼ା ହୋଇଥାଏ।

ଲୋକଟି ଟିକିଟ ଖଣ୍ଡିଏ ବାହାର କରି ବଢ଼ାଇଦେଲା।

– 'ଆଉ ଯା ପାଇଁ ?'

ଏଥିରେ ମୋର ରକ୍ଷକ କି ଭକ୍ଷକ ବିବ୍ରତ ହେଲା। ସେ ଭାବିଥିଲା ମୋ ଭଳି ଜୀବପାଇଁ ଟିକିଟ ଦରକାର ହୁଏ ନାହିଁ। ତା' ଛଡ଼ା ଏ ଗଭୀର ରାତ୍ରିରେ କିଏ ବା କାହିଁକି ଟିକିଟ ମାଗିବାକୁ ଆସିବ।

– 'ପାଞ୍ଚଟଙ୍କା ଦିଅ !'

– 'ଏଁ ପାଞ୍ଚଟଙ୍କା ?'

ଇସ ଲୋକଟାର ମୁହଁ କେମିତି ଭୟରେ ସଙ୍କୁଚିତ ହୋଇଗଲା। ମୋ ମାଆର ଭୟ–କାତର ମୁହଁ ମୋ ଭାଇ ଭଉଣୀଙ୍କର ସେଇ ଯେ ରକ୍ତହୀନ ରୂପ ମୁଁ ଆଖିରେ ଦେଖିଛି ସେଇ ଭୟ ଏଇ ମୁହୂର୍ତ୍ତରେ ଯାକୁ ଗ୍ରାସ କରିଛି। କାହାର ସବୁଦିନ ସମାନ ଯାଏ ନାହିଁ। ଦେ'ରେ ବନ୍ଧୁ ପାଞ୍ଚଟି ଟଙ୍କା ଗଣି ଦେ। ମନେ ମନେ ଇମିତି ସବୁ କଅଣ କହି ମୁଁ ମଜା ଦେଖୁଥାଏ।

– 'ନ ଦେଲେ ତମେ ବାହାରି ଯାଅ।'

ଏତକ ଶୁଣି ମୋ ମନରେ ଆଶାର ସଂଚାର ହେଲା। ଏ ଲୋକଟା ନିଜେ ବାହାରିଗଲେ ମତେ କ'ଣ ଆଉ ସାଙ୍ଗରେ ନେବ ? ମତେ ଏଇଠି ଛାଡ଼ି ଦେଇଯିବ। ତା'ପରେ ? ଏହି ଅଜଣା ରାଜ୍ୟରେ ମୁଁ କେଉଁଆଡ଼େ ବୁଲିବି ? ନା, ନା, ସେ ମତେ ସାଙ୍ଗରେ ନେଉ, ପଳାଉ, କୁର୍ମା, ଦୁଧର ସ୍ୱପ୍ନ ସେ ମତେ ଦେଖାଇଛି।

– 'ହଉ ମୁଁ ଟଙ୍କା ଦେଉଛି ଟିକିଏ ପରେ ଆସ' କହି ଲୋକଟି ଗାଡ଼ିରୁ ଓହ୍ଲେଇଗଲା।

ଅରକ୍ଷ ମୁଁ ଏତେ ବଡ଼ କୋଠରୀରେ ବସି କମ୍ପୁଥାଏ।

– 'ବାବୁ'

– 'ବାବୁ'

– 'କିଏ ?'

ପ୍ରଥମଶ୍ରେଣୀ ଡବାର ଜଣେ ଭଦ୍ରବ୍ୟକ୍ତି ବିରକ୍ତିରେ କବାଟ ଖୋଲିଲେ।

– 'କଅଣ ?'

– 'ମତେ ରକ୍ଷା କରନ୍ତୁ।'

– 'ରକ୍ଷା।'

– 'ହଁ ଆଜ୍ଞା, ସକାଳ ହେବାଯାଏ ମୋ ସାଙ୍ଗରେ ଆସିଥିବା ଗୋଟିଏ ଝିଅକୁ ଏଇ ଡବାରେ ରଖନ୍ତୁ। ଟିକିଟବାଲା ତା'ପାଇଁ ଟିକିଟ ମାଗୁଛି। ମୋ ପାଖରେ ପଇସା ନାହିଁ, ମୁଁ ବିନା ଟିକିଟରେ ତାକୁ ଆଣିଛି।

– 'ବୟସ ?'

'ଖୁବ୍ ଛୋଟ ଝିଅ।'

ଓଃ ଆଚ୍ଛା, ଏଇଠିକି ନେଇଆ, କିନ୍ତୁ ମନେରଖ ଖୁବ୍ ସକାଳୁ ତାକୁ ନେଇଯିବୁ।

ମତେ ଧରି ଲୋକଟା ପ୍ରଥମ ଶ୍ରେଣୀର ଡବା ଭିତରକୁ ଉଠିଲା। ମତେ ସେଠାରେ ଛାଡ଼ିଦେଇ ସେ ଡବାରୁ ଓହ୍ଲେଇଗଲା। ସାଙ୍ଗେ ସାଙ୍ଗେ ସେ ଭଦ୍ରବ୍ୟକ୍ତି ମତେ ଦେଖି କହି ପକାଇଲେ–

–ବାଃ, ଖୁବ୍ ସୁନ୍ଦର ତ ?

ମୁଁ ଚାରିଆଡ଼େ ଚାହିଁ ଦେଖିଲି କି ସୁନ୍ଦର ଗଦି, କି ସୁନ୍ଦର ଆଲୁଅ। ମୋର ଇଚ୍ଛାହେଲା ସେଇ ଗଦି ଉପରେ ମୁଁ ଶୋଇଯାନ୍ତି କି ଆଉ ମୋ ଉପରେ ସେ ଭଦ୍ରଲୋକର କମ୍ବଳଟା...

ମୁଁ ବୋଧହୁଏ ଚେଷ୍ଟା କରୁଥିଲି ଗଦି ଉପରକୁ ଉଠିଯିବା ପାଇଁ। ମୁଁ ପୂର୍ବେ ବୁଝି ନଥିଲି ଯେ ଆମ ଭଳି ଲାଞ୍ଛିତ ହୀନିମାନ ଜୀବପାଇଁ ସବୁ ଲୋକ ସମାନ। ତୃତୀୟ ଶ୍ରେଣୀ ଡବାର ଲୋକ ଅବା ପ୍ରଥମ ଶ୍ରେଣୀ ଡବାର ଲୋକ ଆମପାଇଁ ସମାନ।

ସେ ଭଦ୍ରଲୋକ ଚିତ୍କାର କଲା–

–ଏ, ଉପରକୁ ଉଠୁଛୁ କଅଣ? ତଳେ... ତଳେ ଶୁଅ।

ଲାଜ ଅପମାନରେ ମୁଁ ମରିଗଲି। ଗୋଟିଏ ରାତ୍ରିର ଏ ନୂଆ ଖାଉନ୍ଦ ଠାରୁ ମୁଁ ଟିକିଏ ବେଶୀ ସ୍ନେହ ଆଦର ଆଶା କରିଥିଲି। ମୋ ମନ ଭାରି ଖରାପ ହୋଇଗଲା। ମାଆ ମନେପଡ଼ି ମୋ ଅନ୍ତର ବିଦୀର୍ଣ୍ଣ ହୋଇଗଲା।

ମାଇପି ଜାତି। କାନ୍ଦଣାରେ ଆମେ ଗୀତ ଗାଉଁ। ମୁଁ ବୋଧହୁଏ କାନ୍ଦି କାନ୍ଦି ଟିକିଏ ବଡ଼ ପାଟିରେ ମୋ ଦୁଃଖ ମୁଁ ଜଣାଇଥିଲି।

ଉପରୁ ଚିତ୍କାର ଆସିଲା–

–ପାଟି ଆରମ୍ଭ କରିଦେଲା, ବାହାର... ସେ ଗାଧୁଆ ଘର ଭିତରକୁ ବାହାର... ମୋ କାନକୁ ଟାଣିନେଇ ଭଦ୍ରଲୋକ ଗାଧୁଆ ଘର ଭିତରେ ମତେ ଫିଙ୍ଗିଦେଲା। ଏ ନିର୍ମମ ବ୍ୟବହାରରେ ମୋ ଅନ୍ତରାତ୍ମା କମ୍ପିଉଠିଲା। ମୋର ପ୍ରଥମ ରକ୍ଷକ ତୁଳନାରେ ଏ ଲୋକଟାର ନିଷ୍ଠୁରତା ବଳିଗଲା।

ଟ୍ରେନ ଆଉ ଗୋଟାଏ ଷ୍ଟେସନରେ ରହିଛି। ଦରଜାରେ ଧକ୍କା ହେଲା–

ଉପରୁ ଚିତ୍କାର ଆସିଲା–

କୋନ୍ ହାୟ?

ହାମ, ଟିକେଟ କଲେକ୍ଟର, ଦରଜା ଖୋଲୋ।

ଭଦ୍ରବ୍ୟକ୍ତି ଦରଜା ଖୋଲି ଚଢ଼ା ସ୍ୱରରେ ଫଁ ଫଁ ହେଲେ– "ତୁମେ ଜାଣ ଫାଷ୍ଟକ୍ଲାସ ଯାତ୍ରୀଙ୍କୁ ରାତିରେ ଉଠାଇବା ନିୟମବିରୁଦ୍ଧ?"

ଟିକିଟ କଲେକ୍ଟର କହିଲେ– ସେ ଯଦି ବେଆଇନ କାମ କରନ୍ତି ତେବେ ଅଲବତ୍ ଉଠାଇବାକୁ ହେବ। ମୁଁ ଖବର ପାଇଛି– ସେ ଲୋକଟା ଝିଅଟାକୁ ତୁମରି ପାଖରେ ରଖିଯାଇଛି। ଆଉ ସେ ଝିଅ ରହିଛି ବାଥ ରୁମରେ।

ମତେ ଗାଧୁଆଘରୁ ବାହାର କରି ନିଆଗଲା। ମୁଁ ଭୟ, ଅପମାନ, ଲଜ୍ଜାରେ ଥରୁଥାଏ। ମୁଁ ଛୋଟ ଜୀବ ହେଲେ କ'ଣ ହେବ, ଭଗବାନ କଣ ଆମ ହୃଦୟରେ ଅନୁଭବ ଶକ୍ତି ଦେଇ ନାହାଁନ୍ତି?

ଟିକେଟବାଲା ଆଦେଶ କଲା–

– 'ଦଶଟଙ୍କା ଦିଅନ୍ତୁ'–

'ଫାଷ୍ଟକ୍ଲାସରେ ଟ୍ରାଭେଲ କରୁଚି।'

ଭଦ୍ରଲୋକ ପାଣ୍ଡୁର ହୋଇଗଲେ। ଦଶଟଙ୍କା? ପୁଣି ପରର ବୋଝ ବୁହାଇ ଏଇ ଦୁର୍ଗତି?

ସେ ଅନୁନୟ କରି କହିଲେ– ଆଚ୍ଛା, ଆଗ ଷ୍ଟେସନରେ ଟଙ୍କା ମୁଁ ଦେଇ ଦେବି।

ଠିକ୍ ତ? ଟିକିଟ୍ ଚେକର ସାବଧାନ କରିଦେଇ ଚାଲିଗଲା।

ମୁଁ ଅନୁଭବ କଲି ମୋ ଉପରେ ସେଇ ଲୋକଟା ଘୃଣାର ସ୍ରୋତ ଢାଳୁଛି। ତାହାର ସମଗ୍ର

ଅନ୍ତରଟା ଯେପରି ମୋ ପାଇଁ ଘୃଣାରେ ପୂର୍ଣ୍ଣ ହୋଇଯାଇଛି। ଯେଉଁ ଲୋକଟା କେତେକ୍ଷଣ ଆଗରୁ ମୋ କଅଁଳ ରୂପ ଦେଖି କହିଥିଲା ବାଃ, କି ସୁନ୍ଦର; ସେଇ ଲୋକର ତୀବ୍ର ଦୃଷ୍ଟି କେବଳ ଘାତକର ଦୃଷ୍ଟି ଧରିଛି।

ମୁଁ ଭଗବାନଙ୍କୁ ଡାକୁଥାଏ, ମାଆକୁ ଖୋଜୁଥାଏ। ଭୋକ ଶୋଷ ଭୁଲିଗଲିଣି; କେବଳ ମରଣକୁ ମୁଁ ଚାହୁଁଥାଏ।

ଲୋକଟା ଚିତ୍କାର କରି କଅଣ ଗୁଡ଼ାଏ ମତେ କହିଲା। ଟ୍ରେନ୍ ଗତି କରିବାକୁ ଆରମ୍ଭ କରିଛି। ହଠାତ୍ କୋଠରିର ଦରଜାକୁ ଖୋଲି ଦେଇ ସେ ଚିତ୍କାର କଲା– ବାହାର, ବଜାତ୍, ଯାପାଇଁ ଦଶଟଙ୍କା ଗଣିବି ? ଯାଭଳି ଜୀବ ଗଣ୍ଡା ଗଣ୍ଡା ମରୁଛନ୍ତି। ଏଇ ରେଳ ଇଞ୍ଜିନ୍ ତଳେ ପିଟି ହୋଇ ମରିଗଲେ କିଛି ଭାସିଯିବ ନାହିଁ। ମୁଁ ଟିକିଏ ଶାନ୍ତିରେ ଶୋଇ ପାରିଲି ନାହିଁ। ଆଉ ଏତେ ଟଙ୍କା ଦେଇ ଫାଷ୍ଟକ୍ଲାସ ଟିକଟ କିଣିଥିଲି କିଆଁ ?

ଗୋଟାଏ ପ୍ରଚଣ୍ଡ ଗୋଇଠା, ମୋର କ୍ଷୀଣ ଚିତ୍କାର, ତାପରେ... ଆଉ ମୋର କିଛି ମନେ ନାହିଁ।

ସକାଳର ସୂର୍ଯ୍ୟ ଉଠିଲା ଆକାଶକୁ ସବୁଦିନ ଭଳି ଗୋଟିଏ ଦିନ ଆରମ୍ଭ ହେଲା। ମାଆ ଏଇ ସୂର୍ଯ୍ୟକୁ ଦେଖି ନମସ୍କାର କରେ। ମୋର ଭାଇ ଭଉଣୀ ନମସ୍କାର କରନ୍ତି। ମାଆ ଏହା କରିବାକୁ ଆମକୁ ଶିଖାଇଥାଏ। କାରଣ ପ୍ରଭୁଙ୍କର ଅନୁଗ୍ରହ ନହେଲେ ଆମ ଭଳି ଜୀବଙ୍କର ନିର୍ବିଘ୍ନରେ ଗୋଟିଏ ଦିନର ଜୀବନଯାତ୍ରା ଶେଷ ହୁଏ ନାହିଁ।

ସଂଜ୍ଞା ଫେରିଲା ପରେ ଅନୁଭବ କଲି ମୋ କାନ ମୁଣ୍ଡାରୁ ଗୋଟାଏ ରକ୍ତଧାର ବହି ଚାଲିଛି। ଆଉ କେତୁଟା ଲଙ୍ଗଳା ଛୁଆ ମୋ ଚାରିପଟେ ଘେରି ଛିଡ଼ା ହୋଇଛନ୍ତି। ସମସ୍ତେ ହସୁଛନ୍ତି, ସମସ୍ତେ ଚିତ୍କାର କରୁଛନ୍ତି। ଦୁଇ ତିନି ଜଣଙ୍କର ହାତରେ ଇଟା ପଥର। କେହି ଗଛର ଡାଳଖଣ୍ଡି ଭାଙ୍ଗି ମୋ ଆଡ଼କୁ ଉହୁଁକି ଆସୁଛନ୍ତି।

ମୋ ଆଖି ଆଗରେ ବିଶ୍ୱ ବ୍ରହ୍ମାଣ୍ଡ ଘୂରିଗଲା। ମୁଁ ପ୍ରଭୁଙ୍କୁ ପ୍ରାର୍ଥନା କଲି ମତେ ମାରିଦିଅ। ଏ ଜନ୍ମର ସୁଖ ଦୁଃଖ ସବୁ ଭୁଞ୍ଜିଲି। ଦୟା କ୍ଷମା ବୋଲି ଏ ଜଗତରେ କିଛି ନାହିଁ। ଯେଉଁ ଘାତକମାନେ ମତେ ଘେରି ଛିଡ଼ା ହୋଇଛନ୍ତି ସେମାନଙ୍କ ହାତରେ ମୁଁ ରକ୍ଷା ପାଇବି ନାହିଁ। ତେବେ ମରିବା ପୂର୍ବରୁ ତୁମକୁ ଏତିକି ପ୍ରାର୍ଥନା ଆଉ ଏ ଜନ୍ମ ଆମକୁ ଦିଅନାହିଁ। ଯଦି ନିହାତି ଦବାକୁ ଇଚ୍ଛା ଥାଏ ତେବେ ଆମକୁ ପଠାଅ ସେଇ ରାଜ୍ୟକୁ ଯେଉଁଠି ପ୍ରତ୍ୟେକ ଜୀବ ଅନ୍ତରରେ ଦୟା, କରୁଣା, କ୍ଷମାର ସ୍ରୋତ ଝରୁଥିବ। ଆଉ ସେଇ ସ୍ୱର୍ଗୀୟ ଅନୁଭବରେ ପ୍ରତ୍ୟେକଟି ପ୍ରାଣୀ ସୁନ୍ଦର ହୋଇଥିବେ।

ଆଖି ବୁଜି ପ୍ରାର୍ଥନା କରି ସାରିବା ପରେ ମୁଁ ପ୍ରସ୍ତୁତ ହୋଇ ଗଲି ମରିବା ପାଇଁ।

ଥରେ ମୋର ଆଖି ଫିଟି ଯାଇଥିଲା। ଦେଖିଲି କେତେଗୁଡ଼ିଏ ଭଦ୍ରଲୋକ ସେଇବାଟେ ଆସୁଛନ୍ତି। ଭାବିଲି ଏମାନେ ବୋଧହୁଏ ଦୟାପରବଶ ହୋଇ ମୋର ଆତତାୟୀଙ୍କ ଠାରୁ ମତେ ରକ୍ଷା କରିବେ। ବୃଥା ସେ ଭାବନା।

'ହଇରେ ପିଲାଏ, କଅଣ କରୁଛ କିରେ ?

'ଦେଖମ ଜେଜେବାବା, ଏଇଟା କୁଆଡୁ ଆସିଲା ? ତମେ ଛିଡ଼ାହୋଇ ଦେଖ ଆମେ କିମିତି ଟେକା ଫୋପାଡ଼ି ଯାକୁ ଶେଷ କରିଦେବା।

—ହଁରେ ନାତି, ଏଗୁଡ଼ାକ ଏତେ କୁଆଡୁ ଆସୁଛନ୍ତି ? ମାର ମାର ମୁଁ ଶୁଦ୍ଧପୂତ ହୋଇ ଏକ୍ଷଣି ଗାଧୋଇ ଆସିଛି । ଏଇଟା ଉପରେ ଆଖି ପଡ଼ିଲା, ନିର୍ମୂଳ କର, ନିର୍ମୂଳ କର ।'

ଦୁଇ ପାଖରୁ ଦୁଇଟି ଟେକା ସାଇଁ କରି ଛୁଟି ଆସିଲା । ବହୁଲୋକର ଚିତ୍କାର ଓ ମୋର ଯନ୍ତ୍ରଣା ଭିତରେ ମୋର ପଶୁ ଜୀବନର ଯବନିକା ଟାଣି ହୋଇ ଆସିଲା । ମୁଁ ଶେଷଥର ପାଇଁ ଏ ଜଗତରେ ଗୋଟାଏ ନ୍ୟୂନ, ନିଉଛୁଣା, ଲାଞ୍ଛିତ କୁକୁରୀ ଜୀବରୁ ବିଦାୟ ଘେନି ଟଳି ପଡ଼ିଥିଲି ମାଟି—ମାଆ ଉପରେ । ସେଠି ଝରି ଯାଇଥିଲା କେତେ ଟୋପା ରକ୍ତ ବିନ୍ଦୁ । କିନ୍ତୁ ସେ ଥିଲା ଅଲୋଡ଼ା ଜୀବନର ଅଖ୍ୟାତ ଶୋଣିତ—ଲିପି ଯାହାକି ପୃଥିବୀର ସାଧୁସନ୍ଥ ଧାର୍ମିକ ବିରାଟ ମହାଜନମାନଙ୍କର କର୍ମ ପ୍ରବାହରେ ସାକ୍ଷର ରଖିନାହିଁ କି ରଖି ପାରିବ ନାହିଁ । ସେମାନେ ଜୀବନ କଅଣ ଜାଣନ୍ତି, ଆଉ ଆମେ ଜାଣୁ ମୃତ୍ୟୁ । ପ୍ରତି ମୁହୂର୍ତ୍ତରେ ଆଘାତ ଓ ଅପମାନ ତାହାହିଁ ଆମପ୍ରତି ବରଣୀୟ ଆଶୀର୍ବାଦ...



# ରଥ-ବଢ଼େଇ

ଦୀନନାଥ ବଢ଼େଇ ଏ ବର୍ଷ ରଥ ଗଢ଼ା କାମରେ ଯୋଗ ଦେଇପାରି ନାହାନ୍ତି। ବୃଦ୍ଧ ଦୀନନାଥଙ୍କ ଜୀବନରେ ଏଇ ହେଲା ପ୍ରଥମ ବ୍ୟତିକ୍ରମ।

କିଶୋର ବୟସରୁ ଆଜିଯାଏ ଦୀନନାଥ ରଥକାମ କରି ଆସିଛନ୍ତି। ବାପ, ବଡ଼ବାପ ସହିତ ସେ ଶ୍ରୀକ୍ଷେତ୍ର ଆସି ନିହାଣ ମୁଗୁର ଧରିଥିଲେ।

ଆଜି ହାତ ଥରୁଛି। ମାଂସପେଶୀ ଶକ୍ତ ନାହିଁ। ତଥାପି ଦୀନନାଥ ଆସନ୍ତି ନନ୍ଦିଘୋଷ ରଥରେ ଖଣ୍ଡେ ଦୁଇଖଣ୍ଡ ଚକ ଗଢ଼ିଦିଅନ୍ତି।

ଅନ୍ୟ ଭାଇଆଳି ବଢ଼େଇମାନେ ସଂଭ୍ରମରେ ଦୀନନାଥଙ୍କୁ ଦେଖନ୍ତି। ତାଙ୍କର କାଠଗୋଲା ନାହିଁ କି ଦୋକାନ ନାହିଁ। ପିତୃପୁରୁଷର ଜମି ଉପରେ ଶସ୍ୟତକ ସେ ଭୋଗ କରନ୍ତି। ଗଜପତିଙ୍କର ଦାନ କିଛି ଭୂସମ୍ପତ୍ତି। ରଥ ଗଢ଼ାଳି ବଢ଼େଇଙ୍କ ପାଇଁ ଏ ସମ୍ପତ୍ତି ବହୁ ଦିନରୁ ଖଞ୍ଜା ରହିଛି।

ରଥଗଢ଼ା ଦୀନନାଥଙ୍କର ଏକମାତ୍ର କର୍ତ୍ତବ୍ୟ ନୁହେଁ। ସେହି ସୂତ୍ରରେ ସେ ବଡ଼ଦାଣ୍ଡଧୂଳି ଉପରେ ବସି ପତିତପାବନଙ୍କର ଦର୍ଶନ କରନ୍ତି।

ସମୟ-ସ୍ରୋତ ବହିଚାଲିଛି। ରଥଚକ୍ର ଆଉ ଓଜନଦାର ହେଉନାହିଁ। ରଥକାଠ ଯଥେଷ୍ଟ ଆସୁନାହିଁ। ଆଗେ ରଥ ଗଡ଼ି ଯାଉଥିଲେ ବଡ଼ଦାଣ୍ଡର ଶକ୍ତ ମାଟି ଦି'ଧାରରେ ଫାଟି ଯାଉଥିଲା।

କମକୂଟ କିଛି କମ ହେଉ ନଥିଲା। ପିତୁଳା, ସାରଥୀ, ଘୋଡ଼ା, ନାନା ବିଚିତ୍ର ରୂପର ସାଜସଜ୍ଜା ଚମତ୍କାର ହେଉଥିଲା। ଆଜି ଏସବୁ ନାହିଁ। ଲୋକଙ୍କର ଧର୍ମବିଶ୍ୱାସ ନାହିଁ କି ଏପରି ଗୋଟାଏ ଉତ୍ସବରେ ଯେ ବିଧି ବ୍ୟବସ୍ଥା ଆଗରୁ ଥିଲା, ତାହା ଉପରେ କାହାର ଆସ୍ଥା ବି ନାହିଁ।

ପାହାଡ଼ପୁର ଗାଁର ଏଇ ବୃଦ୍ଧ ବଢ଼େଇ ଏବର୍ଷ ଅକ୍ଷୟତୃତୀୟା ଦିନଠାରୁ ମୌନ ହୋଇ ବସିଛନ୍ତି। ଥରେ ଥରେ ଆଖିପତା ଓଦା ହୋଇଯାଏ। ଏହି ଦିନରେ ରଥଗଢ଼ା କାମର ଶୁଭ ଦିଆଯାଏ। ପ୍ରତିବର୍ଷ ଦୀନନାଥ ପ୍ରଥମ ଦିନଟିରେ ନିହାଣ ଉଠାନ୍ତି। ପ୍ରଭୁଙ୍କର ରଥକାଠ ଉପରେ 'ଠନ୍' ଶବ୍ଦ ହେଲେ ଦୀନନାଥଙ୍କର ଛାତିଭିତରେ ତାର ଗୁଞ୍ଜନ ଉଠେ।

ଏ ଛାତି ବହୁତ ସହିଛି, ବହୁତ ଦେଖିଛି। ଓଡ଼ିଶାର ବଢ଼ି, ମରୁଡ଼ି, ହଇଜା ସବୁ ଦେଖିଛି। ଗୋପବନ୍ଧୁ ଏଇ ବଡ଼ଦାଣ୍ଡ ଉପରେ ଚାଲିଯାଇଥିବାର ଦୃଶ୍ୟ ଦୀନନାଥ ଦେଖିଛନ୍ତି। ଏହି ପଥ ଉପରେ ଗାନ୍ଧୀ ଯାଇଛନ୍ତି, ସମସ୍ତଙ୍କ ଚଲାଫେରା ଦୀନନାଥ ଦେଖିଛନ୍ତି।

ଭେଣ୍ଡିଆ ବେଳେ ସେ ଜାତୀୟବାଦୀ ଦେଶକର୍ମୀଙ୍କୁ ପାହାଡ଼ପୁରର ତାଙ୍କ ଛୋଟ କୁଡ଼ିଆରେ ଆଶ୍ରୟ ଦେଇଥିଲେ। ସେତେବେଳେ ସ୍ତ୍ରୀ ଚମ୍ପକଲତା ବଞ୍ଚିଥିଲେ। ପୁଲିସ ଆସିଥିଲା; ତଦନ୍ତରେ କିଛି ବାହାରିଲା ନାହିଁ। ନିଜେ ଦୀନନାଥ ବିପ୍ଳବୀ ଥଲେ।

ମହାରଣା ବଂଶର ଗୋଟିଏ ମାତ୍ର ପ୍ରଦୀପ ଏବେ ଜଳୁଛି। ସେହି ପ୍ରଦୀପର ଜ୍ୟୋତି ଯେତିକି ବିଚ୍ଛୁରିତ ହେଉଛି, ଦୀନନାଥ ସେତିକି ନିଜେ ଦୀପ୍ତିହୀନ ହେଉଛନ୍ତି।

ସମାଜ ବଦଳିଲା, ସଂସାର ବଦଳିଲା, ଲୋକଙ୍କର ଚାଲିଚଳଣ, ନୀତି ବିଶ୍ୱାସ– ସବୁ ବଦଳିଲା। ହାତ ପରିବର୍ତ୍ତେ ଯନ୍ତ୍ର ଆସିଲା। ଲୋକ ଗୋଡ଼ରେ ନ ଚାଲି ଧରିଲେ ଯାନବାହନ। ଏମିତି କେତେ କଣ ସମ୍ଭବ ହେଲା।

ଏ ପରିବର୍ତ୍ତନକୁ ସହଜରେ ଲୋକେ ଚଳେଇ ନେଇ ପାରିଲେ ନାହିଁ, ଯେଉଁମାନେ ପାରିଲେ ସେମାନଙ୍କର ଲାଭ ଛଡ଼ା କ୍ଷତି ହୋଇ ନାହିଁ।

ସଂସ୍କାର, ସମାଜ, ଧର୍ମର ମୂଲ୍ୟ ଆଗପରି ଆଉ ରହିଲା ନାହିଁ। ରୁଚିରେ ପରିବର୍ତ୍ତନ ଘଟିଲା।

ଏଇ ଯୁଗସନ୍ଧିରେ ଦୀନନାଥଙ୍କର ନୟନ ପ୍ରତିମା ଅମରନାଥ ମହାରଣା ବଂଶର ଗୌରବ ବଢ଼ାଇଲେ। ମାତ୍ର ଏ ଗୌରବ ପ୍ରାକ୍ତନ ବଂଶାନୁସାର ବାଟେ ଆସିଲା ନାହିଁ। ଆସିଲା ଅନ୍ୟ ବାଟରେ।

ଅମରନାଥଙ୍କର ସ୍ୱର୍ଗତା ମାଆଙ୍କର ସ୍ୱପ୍ନ ଥିଲା ପୁଅ ହାତରୁ ନିହାଣ, ମୁଗୁର, ବଟାଳି ଖସାଇ ଧରାଇବେ ଲେଖନ। ସେ ହେବ ବାବୁଭାୟା। ଚୌକିରେ ବସିବ, ଇଜିଲାସ କରିବ। ଖାତିର ପାଇବ।

ଏ ବାସନା ହୁଏତ ଦୀନନାଥଙ୍କର ଥିଲା। କିନ୍ତୁ କୌଳିକ ପ୍ରଥାରୁ ଓହରିଯାଇ ଏପରି ହେବାଟା ସେ ସମ୍ପୂର୍ଣ୍ଣ ଭାବରେ ପସନ୍ଦ କରୁନଥିଲେ।

କିନ୍ତୁ କାଳର ନିର୍ଦ୍ଦେଶ ତ ଅନ୍ୟଥା ହେବ ନାହିଁ। ଦୀନନାଥ ପ୍ରତିବର୍ଷ ରଥ କାମରେ ବାହାରିଲେ, ସାଙ୍ଗରେ ଅମରକୁ ନେଇ ଯାଆନ୍ତି। ଅମର ଦେଖେ ସାଙ୍ଗ ସାଥି ଭାଇଆଳି ଗହଣରେ ବାପା ତାର ରଥକାମ କରୁଛନ୍ତି।

ମୁଣ୍ଡ ଉପରେ ନଡ଼ିଆ ବରଡ଼ା ଚାଞ୍ଚ। ଧୂଳି ଉପରେ ଆସନ। ଖୋଲା ଦେହ; କପାଳରେ ଚନ୍ଦନଚିତା। କାନ ଦୁଇଟି ଉପରେ ଦୁଇଗାର ଚନ୍ଦନ। ବେକରେ ତୁଳସୀ ମାଳି, ମୁଣ୍ଡରେ ଚୁଟି। ଏଇ ହେଲା ଦୀନନାଥଙ୍କର ବେଶ। ଏଇ ବେଶରେ ସେ ରଥଚକ୍ର ଗଢ଼ିବାରେ ତନ୍ମୟ।

ଅମର ପାଖରେ ବସି ଦେଖେ ସ୍କୁଲ ପିଲାଏ ପଢ଼ିବାକୁ ଯାଉଛନ୍ତି। କେଉଁ ଦୂର ସ୍କୁଲକୁ ସେମାନଙ୍କ ଗତି ସେ ଜାଣେ ନାହିଁ। କାଖରେ ବହି ବସ୍ତାନୀ, ହାତରେ ଦୁଆତ କଲମ ଧରି ପିଲାଏ କର୍ମରତ ବଢ଼େଇମାନଙ୍କୁ ଚାହିଁ ଚାହିଁ ଚାଲିଯାଆନ୍ତି। ଥରେ ଅଧେ ଅମରର ଆଖି ସହିତ ସ୍କୁଲପିଲାଙ୍କର ଆଖି ମିଳିଯାଏ। ତାଙ୍କ ଆଖିରେ ଏଇ ଫୁଙ୍ଗୁଳା ଦେହ ବଢ଼େଇ ପିଲାଟି ପାଇଁ ହୁଏତ ଟିକିଏ ସ୍ନେହଭାବ ଫୁଟି ପଡ଼ିଥିବ।

ଅମର ପ୍ରତିଦିନ ଏଇ ଦୃଶ୍ୟ ଦେଖେ। ତାର ପିଲା ମନ ଦୁଃଖ ପାଏ। ସେ ବଢ଼େଇ ହେବ, ଭବିଷ୍ୟତ ତାର ଦେଖିବ କେବେ କାଠ... କାଠ... କାଠ। ସେଇ କାଠରେ ସେ ଗଢ଼ିବ ଆସନ ଯେଉଁ ଆସନରେ ସେ ବସିବ ନାହିଁ। ସେ ତିଆରି କରିବ କେତେ ସୌଖୀନ କାଠୋପକରଣ ଅଥଚ ତାର ସମ୍ବଳ ନଥିବ ନିଜପାଇଁ କିଛି କରି ବ୍ୟବହାର କରିବ।

ବଢ଼େଇର ପୁଅ ବଢ଼େଇ। ବାଟ ତାର ପିତୃ ଅର୍ଜିତ ବାଟ। ସେ ବାଟରେ ବହୁ ବଢ଼େଇ ଆଗରୁ ଯାଇଛନ୍ତି, ପରେ ବି ଯିବେ। ସେ ସେହି ଯାତ୍ରୀ ଦଳର ଜଣେ।

ଛୋଟ ହୃଦୟର ଛୋଟ ବ୍ୟଥା ସେତେବେଳେ ଅମରର ଆଖିକୁ ପାଣି ଆଣିଥିଲା। ବାପ ପୁଅକୁ ଅନେଇ ଦେଇ କହିଥିଲେ–

'ପୁଅ, ଟିକିଏ ଦୂରକୁ, ବଅ, ଆଖିରେ ଧୂଳି ପଡୁଛି, ଦେଖ୍ କିମିତି କାମ ହେଉଛି'–

ସମୟର ସୁଅ ଭିତରେ ଅମରର ଶୈଶବ ଅବା କୈଶୋର ଆଜି ବିସ୍ମୃତ।

ସମ୍ବଲପୁର କୋର୍ଟ ଇଜଲାସରେ ଶ୍ରୀ ଅମରନାଥ ମହାପାତ୍ର ଆଜି ଉଦାସୀନ ଭାବରେ ନଥିପତ୍ର ଓଲଟାଉଛନ୍ତି। କାଲି ଶ୍ରୀଗୁଣ୍ଡିଚା। ଆଜି କାମର ଭିଡ଼ ସେତେ ନାହିଁ। ଯାହା କେସ୍ ଥିଲା ତାହାର ବିଚାର ଶେଷ ହୋଇଛି।

ମନ ତାଙ୍କର ଭଲ ନାହିଁ। ଯେଉଁମାନେ ବୁଢ଼ା ହୋଇଯାଆନ୍ତି ସେମାନେ ଏତେ ଅବୁଝା ହୁଅନ୍ତି କାହିଁକି ? ବାର୍ଦ୍ଧକ୍ୟର ଏଇଟା କଅଣ ଯୁବଶକ୍ତିକୁ ଗୋଟାଏ ପ୍ରଚ୍ଛନ୍ନ ବିଦ୍ରୂପ ?

ଅକ୍ଷୟତୃତୀୟାର ଦୁଇଦିନ ପୂର୍ବରୁ ସେ ଯେଉଁ ଚିଠି ବାପାଙ୍କୁ ଲେଖିଥିଲେ ସେକଥା ସେ ମନେ କଲେ। କାମଟା ଠିକ୍ କରିଛନ୍ତି ବୋଲି ତାଙ୍କର ହୃଦ୍‌ବୋଧ ହୋଇଛି।

ସେ ଲେଖିଥିଲେ– ବାପା, ତମେ ଆଜି କେବେ ଦୀନନାଥ ମହାରଣା ନୁହଁ। ତୁମେ କେବଳ ସହସ୍ର ବଢ଼େଇ ଭିତରର ଜଣେ ସାଧାରଣ କାଠକଟାଳୀ, ବୃତ୍ତିଧାରୀ ବଢ଼େଇ ନୁହଁ। ତୁମେ ହେଉଛ ଡେପୁଟି ମାଜିଷ୍ଟ୍ରେଟ ଉଚ୍ଚ ଶିକ୍ଷିତ ଶ୍ରୀ ଅମରନାଥ ମହାପାତ୍ରଙ୍କର ବାପା। ତେଣୁ ତୁମକୁ କିପରି ଚଳିବାକୁ ହେବ କିଭଳି ଆଚରଣ ଦେଖେଇବାକୁ ହେବ କିପରି ସମ୍ମାନବୋଧ ତୁମର ହେବା ଉଚିତ ପୁଣି ମୋର ପଦମର୍ଯ୍ୟାଦା ସହିତ ସବୁ ଖାପ ଖୁଆଇ କିପରି ତୁମକୁ ସବୁ କରିବାକୁ ହେବ ଏସବୁ ନିର୍ଦ୍ଦେଶ ଏଣିକି ମୁଁ ଦେବି।

ଏହାର କାରଣ ଅଛି। ପ୍ରତିବର୍ଷ ଏପରିକି ବିଗତ ବର୍ଷ ପର୍ଯ୍ୟନ୍ତ ତୁମେ ଅକ୍ଷୟ ତୃତୀୟା ଦିନ ସେହି ଖୋଲା ଦେହରେ ମୁଣ୍ଡରେ ଚୂରକି ଉଡ଼ାଇ ଧୂଳି ଉପରେ ବସି ରଥ ଚକ ଗଢୁଥିଲ। ସେଇଠି ହଜାର ଦର୍ଶକ ଦେଖନ୍ତି ଯେ ଡେପୁଟି ମାଜିଷ୍ଟ୍ରେଟ ଅମରନାଥର ବାପା ଏବେ ବି କାଠ ହାଣୁଛି, କରତ ଧରୁଛି, ନିହାଣରେ ଠକ୍ ଠକ୍ କରୁଛି।

ଏକଥା ଆଉ ହେବ ନାହିଁ। ତୁମେ ଜାଣ ତୁମ ବୋହୂ ବଢ଼େଇ ଘରୁ ଆସିନାହିଁ। ମୋର ଶିକ୍ଷା ଓ ପଦମର୍ଯ୍ୟାଦା ଯାହା ସେଥିପାଇଁ ବଢ଼େଇ କୁଳରୁ ଝିଅ ଆଣି ମୁଁ ବିବାହ କରିଥାନ୍ତି, ଏକଥା ହୁଅନ୍ତା ନାହିଁ, ଆଜି ବି ତାହା ହୋଇ ନାହିଁ। ତୁମେ ଅମତ ଥିଲ, ତୁମର ଯୁକ୍ତି ଥିଲା କୁଳର ଝିଅକୁ ନେଇ ତାକୁ ମଣିଷ କର, ଶିକ୍ଷିତା କର। କିନ୍ତୁ ସଜଡ଼ା ଜିନିଷ ଥାଉ ଥାଉ ମାଟି ପିଣ୍ଡଟାକୁ ଘେନି ମୁଁ ଜୀବନରେ କଅଣ କରନ୍ତି ?

ସେଥିପାଇଁ ମୁଁ ଜଣେ ଗ୍ରାଜୁଏଟ ଝିଅକୁ ବିବାହ କଲି। ତୁମେ ଗାଁବାଲା ବଢ଼େଇକୁଳ ସବୁ ମୋ ବିପକ୍ଷରେ ଗଲ। ମୁଁ ମୋ ପ୍ରତିଜ୍ଞାରେ ଦୃଢ଼ ରହିଲି।

ସବିତା ବଢ଼େଇ ଝିଅ ନୁହେଁ କି ବଢ଼େଇ ସ୍ୱାମୀର ସ୍ତ୍ରୀ ନୁହେଁ। ସେ ମିସେସ୍ ଅମରନାଥ ମହାପାତ୍ର। ତାର ପରିଚୟ ତାର ସ୍ୱାମୀର ପଦମର୍ଯ୍ୟାଦା ନେଇ, ଅନ୍ୟ କିଛି ନୁହେଁ।

ମୁଁ ଏବେ ତୁମକୁ ବାରଣ କରୁଛି, ତୁମେ ଏ ବର୍ଷ ଅକ୍ଷୟ ତୃତୀୟାରେ ରାଜନବର ସାମନା ଭୂଇଁରେ ବସି ତିରିଶ ଚାଳିଶଟା ଦୁର୍ଭିକ୍ଷିଆ, ନୀଚ ଅଭାବଗ୍ରସ୍ତ ବଢ଼େଇଙ୍କ ଭିତରେ ରଥକାଠ ଛୁଇଁବ ନାହିଁ। ଯଦି ମୋ କଥା ନ ମାନି ଏକଥା କର, ମୁଁ ତେବେ ତୁମକୁ ପାଗଳ ସାବ୍ୟସ୍ତ କରିବାରେ ଦ୍ୱିଧା କରିବି ନାହିଁ। ଅମରନାଥ ମହାପାତ୍ରର ବାପା ପାଗଳ ଛଡ଼ା ସୁସ୍ଥ ଜୀବ ହୋଇପାରିବ ନାହିଁ।

ମୁଁ ଜାଣେ ତୁମେ ମୋ ଉପରେ ବିରକ୍ତ ହେବ। କାହାର ବିରକ୍ତି ସହିତ ମୋର ସମ୍ପର୍କ ନାହିଁ। ମୁଁ ମାଜିଷ୍ଟ୍ରେଟ ଅମରନାଥ ମହାପାତ୍ର, ମୋର ବାପା ମାସେ ଯାଏ ସେଇ ଅପରିଷ୍କୃତ ଜାଗାରେ ବସି ରାଜାଙ୍କର ସିପାହୀଠାରୁ ଧକ୍‌କା ଖାଇ ରଥ ଗଢ଼ିବ। ଏ କଥା ଆଉ ହେବନାହିଁ।

କାଳେ ତୁମେ ଗାଁରୁ ଲୁଚି କରି ଯାଇଥିବ ସେଥିପାଇଁ ମୁଁ ଲୋକ ସେଠାରେ ରଖିଛି। ଏ କଥାର ଏପଟ ସେପଟ ହେଲେ ବାପ ପୁଅର ସମ୍ୱନ୍ଧ ଆଉ ରହିବ ନାହିଁ। ମୁଁ ସାବଧାନ କରିଦେଲି। ଏ ଚିଠିକୁ ଗାଁ ସରପଞ୍ଚଙ୍କ ଦ୍ୱାରା ପଢ଼ାଇ ନେବ।

ଅମର।

ବୃଦ୍ଧ ଦୀନନାଥ ଅକ୍ଷୟ ତୃତୀୟା ଦିନଠାରୁ ମୌନ ଭଜିଛନ୍ତି। ଆଜି ପ୍ରଭୁଙ୍କର ନବଯୌବନ ବେଶ। ପ୍ରତିବର୍ଷ ସାହି ଭାଇଙ୍କ ସହିତ ଦୀନନାଥ ରଥକାମ ସାରି ନବଯୌବନ ଦର୍ଶନ କରନ୍ତି ଏବଂ ନିର୍ବିଘ୍ନରେ ରଥକାମ ସରିଛି ବୋଲି ତ୍ରିମୂର୍ତ୍ତିଙ୍କୁ ପ୍ରଣାମ କରନ୍ତି।

ଆଜି ସେହି ଦୀନନାଥ ପାହାଡ଼ପୁର ଗାଁର ତାଙ୍କ ନିଜ କୁଟୀରରେ ଦୁଇଧାର ଅଶ୍ରୁ ବୁହାଇ ଜଗନ୍ନାଥଙ୍କୁ କହୁଛନ୍ତି–

ପୁଅ ଦୋଷ କ୍ଷମାକର ପ୍ରଭୁ! ସେ ଚଗଲା ଜାଣେନାହିଁ ଯେ ମୁଁ ଆପଣଙ୍କ ରଥ ଗଢ଼ିଲାବେଳେ ସାମାନ୍ୟ ଦରିଦ୍ର ବଢ଼େଇ ଭାବରେ ଆପଣଙ୍କ ଶ୍ରୀ ମନ୍ଦିର ଆଗରେ ବିରାଜମାନ କରି ନ ଥାଏ। ମୁଁ ହୋଇଥାଏ ବିଶ୍ୱକର୍ମା। ପ୍ରଭୁଙ୍କର ଅନୁଗ୍ରହରୁ ରଥ ଗଢ଼ା କାମ ଚାଲେ। ଆମେ କେବଳ ନିହାଣ ଉଠାଉ। କାମ କରନ୍ତି ଆପଣେ। ସବୁ ସର୍ଜନା ଭିତରେ ଏ ଗୋଟିଏ। ବାଳୁତ ପୁଅ ମୋର ଏସବୁ ବୁଝିଲା ନାହିଁ। ମତେ ମନା କରିଦେଲା। ହଁ ସତ କଥା, କେତେ ଉଚ୍ଚରେ ସେ ବସିଛି। ପେଟରୁ କାଟି ତାକୁ ମୁଁ ପଢ଼ାଇଲି। ମାଆ ତାର ସ୍ୱପ୍ନକୁ ସାର୍ଥକ କଲା। ପୁଅ ହାକିମ ହେଲା। ସତ କଥା ମୁଁ ଯଦି ଆଜି ସେଇ ବାଲିମାଟିରେ ବସି ନିହାଣ ଧରେ, ତାକୁ ଅପମାନ ହେବ ନାହିଁ କି?

କିନ୍ତୁ ପ୍ରଭୁ, ମନ ତ କାହିଁ ମାନୁ ନାହିଁ। ଏବର୍ଷ ଆପଣଙ୍କ ଦର୍ଶନ ପାଇଲି ନାହିଁ। ଆଉ ବଞ୍ଚିବି ନାହିଁ। ମୋରି ହାତ ତିଆରି ସିଂହାସନରେ ଆପଣେ ଉଭା ହେଉଥିଲେ ପ୍ରତିବର୍ଷ। ପ୍ରଭୁ ଆଉ ବଞ୍ଚିବି ନାହିଁ। ମୋର ବଞ୍ଚିବାର ସୁଖ ଚାଲିଗଲା।

ସଞ୍ଜ ମଉଳି ଆସୁଛି। ଶ୍ରୀଗୁଣ୍ଡିଚା ଘରପାଖକୁ ଲାଗି ଆସିଲେଣି ପ୍ରଭୁ ଜଗନ୍ନାଥ। ଆଉ ଟିକିଏ ବାଟ କାଟିଦେଲେ ରକ୍ତ ପତାକା ପାଖରେ ନନ୍ଦିଘୋଷ

ରହିଯିବ। ହରିବୋଲ ହୁଳହୁଳି ଧ୍ୱନିରେ ଯାତ୍ରା ଶେଷ ହେବ।

ସେଇ ଟିକକ ବାଟକୁ କାହିଁକି କେଜାଣି ପତିତପାବନ ଜଗନ୍ନାଥ ଖୁବ୍ କ୍ଷିପ୍ର ଗତିରେ ଅତିକ୍ରମ କରିବାକୁ ଭାବିଲେ ସେତିକିବେଳେ। ଚାହୁଁ ଚାହୁଁ ରଥ ଚକ୍ର ଘର୍ଘର ନାଦରେ ଗଡ଼ିଗଲା। 'ଜୟ ପ୍ରଭୁ, ଜଗନ୍ନାଥ' ଧ୍ୱନି ତୋଳି ଜନତା ବିକ୍ଷୁବ୍ଧ ହୋଇ ଉଠିଲା।

ହାଁ–ହାଁ–ହାଁ ରବ ହଠାତ୍ ସବୁଆଡ଼େ ଶୁଣାଗଲା। ଗୋଟିଏ ମୁହୂର୍ତ୍ତର ଅବକାଶ ଭିତରେ ରଥଚକ୍ର ତଳେ ପଷ୍ଟ ବିନଷ୍ଟ ରକ୍ତାକ୍ତ ବୃଦ୍ଧ ଦୀନନାଥ ଅନ୍ତିମ ଶଯ୍ୟା ରଚନା କରିଦେଲେ।

ବେଦନାବିଧୂର ସମଗ୍ର ଧର୍ମପ୍ରାଣ ଜନତା ଏ ମୃତ୍ୟୁରେ ଅଶ୍ରୁ ତର୍ପଣ କଲେ। ଗଜପତିଙ୍କର ହସ୍ତଦତ୍ତ ପୁଷ୍ପମାଲ୍ୟରେ ବିଭୂଷିତ ଶବାଧାର ଚାଲିଲା ଶ୍ମଶାନକୁ।

ଦୀନନାଥ ଥିଲେ ଜଣେ ରଥବଢ଼େଇ, ସାମାନ୍ୟ ଦୀନତମ ଓ ଦରିଦ୍ର ପ୍ରାଣୀ...।



ମାଳବିକା

ମନସ୍ୱିନୀ

ମହାଶ୍ୱେତା

ଓ

ସିଦ୍ଧାର୍ଥଶଙ୍କରଙ୍କୁ

**"ପଙ୍କ ଚନ୍ଦନ"**

ଅର୍ପଣ କଲି ।

ପଙ୍କ-ବିମୁକ୍ତ ସେମାନଙ୍କର ଲଲାଟ ଚନ୍ଦନାକ୍ତ ହେଉ ।

ଆଶୀର୍ବାଦକ

**ବାପା**

**ଶ୍ରୀକ୍ଷେତ୍ର,**

୧୫ ଜୁଲାଇ, ୧୯୬୩

# ଭୂମିକା

ଯଶସ୍ୱୀ ଗଳ୍ପଲେଖକ ଶ୍ରୀ ରାଜକିଶୋର ରାୟଙ୍କ ରଚନା ସହିତ ମୁଁ ପରିଚିତ ଥିଲି। ଏଥର ତାଙ୍କର ନୂତନ ଗଳ୍ପ ସଂଗ୍ରହ 'ପଙ୍କ ଚନ୍ଦନ' ପଢ଼ିବାପରେ ସେ ପରିଚୟ ଦୃଢ଼ ହେଲା।

ରାଜକିଶୋର ରାୟ ଜଣେ born story-teller। ଯେ କୌଣସି ବିଷୟରେ ସେ ଗଳ୍ପଟିଏ ଲେଖିବେ। ପଢ଼ିଲେ ମନେହେବ ସବୁ ସତ-ସବୁ ତାଙ୍କୁ ଜଣା। ତାଙ୍କର ଏଇ ଗୁଣ ସହିତ ଯୋଗ ଦେଇଛି ତାଙ୍କର ରୋମାଣ୍ଟିକ୍ ସ୍ୱଭାବ। ଅନ୍ତଃସଲିଳା ଫଲ୍‌ଗୁ ନଦୀ ଭଳି ତାଙ୍କର ଏଇ ରୋମାଣ୍ଟିକ୍ ସ୍ୱଭାବ ବାସ୍ତବଧର୍ମୀ ରଚନାର ବାଲି ତଳେ ପ୍ରଚ୍ଛନ୍ନ ରହିଛି।

ଦେଶବ୍ୟାପୀ ଦୁର୍ନୀତି ଓ ବିଶୃଙ୍ଖଳା ବହୁତ ଲେଖକଙ୍କୁ ଅସ୍ଥିର କରିଛି। ଏଇ ଅସ୍ଥିରତାରୁ ରାଜକିଶୋର ରାୟ ମୁକ୍ତ ନୁହନ୍ତି। କିନ୍ତୁ ହେବା ଦରକାର। ନୋହିଲେ ଏ ରସଧାରା ମରୁଭୂମିରେ ହଜିଯିବ। ଲେଖକର ମୁକ୍ତି ଆଜି ସହଜସାଧ୍ୟ ନୁହେଁ। ତଥାପି ଅତ୍ୟାବଶ୍ୟକ। ଏ ମୁକ୍ତି ବାହାରୁ ଆସିବ ନାହିଁ; ଆସିବ ନିଜ ଭିତରୁ।

**ଶାନ୍ତିନିକେତନ** **ଅନ୍ନଦାଶଙ୍କର ରାୟ**

ଜୁଲାଇ, ୧୯୬୩

# ନିଜକଥା

"ପଙ୍କ ଚନ୍ଦନ" ନାମ ଦେଇ କେତେଗୁଡ଼ିଏ ଗଳ୍ପ ପୁସ୍ତକାକାରରେ ପ୍ରକାଶ କଲି। ନାନା ସମୟରେ ବିବିଧ ପତ୍ର ପତ୍ରିକାରେ ଏଗୁଡ଼ିକ ଆଗରୁ ପ୍ରକାଶ ପାଇଯାଇଛି।

ଗ୍ରୀଷ୍ମର ଏକ ଗୋଧୂଳି ଓ ସଂଧ୍ୟାର ଶାନ୍ତ ପବିତ୍ର ରୂପ ତଳେ ଅନ୍ନଦାଶଙ୍କର ରାୟଙ୍କୁ ମୁଁ ପାଇଥିଲି ଶ୍ରୀକ୍ଷେତ୍ରର ସାଗର ତୀର ଉପରେ। ସେହିଠାରେ ତାଙ୍କ ପାଖରେ ଆତ୍ମ ନିବେଦନ କରିଥିଲି ଓ ଜାଣିବାକୁ ଚାହିଁଥିଲି ଏ ଯୁଗ ଓ ଏ ଯୁଗର ମଣିଷକୁ ଘେନି ସେ କଅଣ ଚିନ୍ତା କରନ୍ତି।

ସେ ମତେ କହିଥିଲେ ସେ ଯାହା ଚିନ୍ତା କରନ୍ତି। ଆତ୍ମାଭିମାନଶୂନ୍ୟ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଏଇ ସରସିକ ଶିଳ୍ପୀ ମୋ ହୃଦୟର ଅସ୍ଥିରତାକୁ ସେତେବେଳେ ବୁଝିଥିଲେ।

ସେଥିପାଇଁ ମୋ ନୂତନ ବହିର ଭୂମିକା ସେ ଲେଖି କହିଛନ୍ତି- "ଲେଖକର ମୁକ୍ତି ଆଜି ସହଜସାଧ୍ୟ ନୁହେଁ। ତଥାପି ଅତ୍ୟାବଶ୍ୟକ। ଏ ମୁକ୍ତି ବାହାରୁ ଆସିବ ନାହିଁ; ଆସିବ ନିଜ ଭିତରୁ।"

ତାଙ୍କର ଏ କେତୋଟି ମହାମୂଲ୍ୟ ବଚନ ପାଇଁ ମୁଁ ତାଙ୍କ ପାଖରେ ଋଣୀ ରହିଲି।

**ଶ୍ରୀକ୍ଷେତ୍ର** — **ରାଜକିଶୋର ରାୟ**

୧୫ ଜୁଲାଇ, ୧୯୬୩

# ପଙ୍କ-ଚନ୍ଦନ

ଅସୁରିଆ ଝଙ୍କାଳ ବରଗଛଟାର ଉପରେ ଗୋଟିଏ ଶାଗୁଣା ବସିଥିଲା। ତଳେ କାଉଙ୍କର ମେଳନ। ସିଅଗୁଡ଼ାକ ଉପରକୁ ଶୂନ୍ୟରେ ରହିଛି। ତଳୁ ମାଟି ଅତଡ଼ା ଧୋଇଯାଇ ବିବର ଦେଖାଗଲାଣି। ପୁରୁଷା ପୁରୁଷା ଗାତ।

ଏଇ ବିବରଗୁଡ଼ାକରେ ପାଣି ଭଉଁରି ନାଚୁଥିଲା। ଘରଘର ସରସର ପାଣିସୁଅ। ତଳେଇ ତଳେଇ ପାଣିସୁଅ ମାଟି କାଟି ବାସୁକୀର ଫଣା ଛୁଉଁଥିଲା। ଏବେ ପାଣି ନାହିଁ। ବିବରଗୁଡ଼ାକ ମହାକାଳର ଗ୍ରାସଭଳି ଆଁ କରି ରହିଛି।

ସେଇ ଗାତର ଗୋଟାଏ ପାଖ ତଟରେ ବସି ଖୁଁ-ଖୁଁ କାଶ କାଶୁଥିଲେ ବୁଢ଼ା ମାଧବ ଜେନା। ଜେନାଏ କଅଣ ଖୋଜିଲାଭଳି ସବୁଆଡ଼କୁ ଆଖି ପକାଉଥିଲେ। ମାଟି ଚକଟି ହାତ ପାପୁଲିକୁ ସେ ପରୀକ୍ଷା କରୁଥିଲେ।

ଶାଗୁଣାଟା ଫଡ଼ଫଡ଼ ହୋଇ ଶୂନ୍ୟକୁ ଉଡ଼ିଗଲା। ଗୋଟାଏ ତୀବ୍ର ପୋଚା ଗନ୍ଧ ତାରି ପକ୍ଷଝଡ଼ାରେ ଜେନାଙ୍କର ନାକରେ ପଶିଗଲା।

ଚାରିଆଡ଼େ ବାଉଁଶ, ଛଣ, ପତର ପଚା, ସଢ଼ା ଦୁର୍ଗନ୍ଧ। ମହାବଟ ଯୋଗୀଶ୍ୱର ନାଚି ଦେଇଯାଇଛି। ଅହିଫଣାର ଶତଶତ କୁଣ୍ଡଳୀ ଖେଳିଯାଇଛି ଏଇ ମୂଳବସନ୍ତ ଗାଁରେ...

ବୁଢ଼ୀ ଜେନାଏ କାଦୁଅ ମୁଠାଏ ଚକଟି କେତୁଟା ପଚାପତର ଉପରେ ରଖିଲେ। ସେଥିରେ ଗୋବର ମିଶାଇଲେ। ଗୋବରମିଶା କାଦୁଅ ମେଞ୍ଚାକ ଆଖି ଉପରକୁ ଉଠାଇ କୁହାଟ ଛାଡ଼ିଲେ...

'– ଆରେ, ମୁଁ ଦେବୀ ଗଢ଼ିବି ରେ... ମଙ୍ଗଳକ୍ଷଣ ଆସିଗଲା। ଶଙ୍ଖ ବଜାଅ, ହୁଳହୁଳି ଦିଅ। କିଲୋ ଲବଣୀ, ତୋ ମାଆ କାଇଁରେ? ସାଇର ଯୁଆନମାନେ କାହାନ୍ତି? ଫି ବର୍ଷ ସେମାନେ ଏମିତି ଡେରି କରିବେ। କାହିଁ ଗଲା? ମଙ୍ଗଳଘଟ ହାତକୁ ବଢ଼ାଅ।'

କେହି ଶୁଣିଲେ ନାହିଁ। କେହି ନଥିଲେ। ଜେନାଙ୍କର କୁହାଟ ବରଗଛଟାର ପତ୍ର ଛୁଇଁ ଉପରକୁ ଉଠିଗଲା।

ଜେନାଏ ଚାରିଆଡ଼କୁ ଚାହିଁଲେ। ଏଡ଼େ ଆସ୍ପର୍ଦ୍ଧା ଏମାନଙ୍କର। ଏ ବର୍ଷ ମାଆ ଆସିବା ଉପରେ। ଧାନ ଶିଁଷା ଆଉ ଛନଛନିଆ କଅଁଳ ଗଛପତ୍ର ଉପରେ ମାଆ ଆସୁଛନ୍ତି। କେହି କଅଣ ଏ କଥା ଜାଣୁନାହାନ୍ତି?

ସତ, ଏ ବର୍ଷ ମାଆ ଆସୁଛନ୍ତି। ଦିଗନ୍ତ ଶ୍ୟାମଳ ରଥ ଉପରେ ଜନନୀ ସନ୍ତାନ ନିକଟକୁ ଆସୁଛନ୍ତି। କିନ୍ତୁ କାହିଁ ସେ ଶ୍ୟାମଳିମା? ଚାରିଆଡ଼େ ମାଟି ତାଡ଼ି ବିବର ଫୁଟିଛି। ଗଛ ନଇଁଯାଇଛି। ଏଡ଼େ ବଡ଼ ଗାଁଟାରେ ଗୋଟିଏ ଚାଳ ବି ନାହିଁ।

ପଦ୍ମପୋଖରୀର ଶୋଭା ନାହିଁ। ଦିନ ଥିଲା, ଏଠି ମୂଳବସନ୍ତର କୁଆଁରୀମାନେ ଝାମ୍ପ ଦେଉଥିଲେ

ପୋଖରୀ ଭିତରୁ ପଦ୍ମ ତୋଳିବାକୁ। କେତେ ହସ, କେତେ ଉନ୍ମାଦ, କେତେ ରଙ୍ଗ!

ବିଚିତ୍ର ଏ ଜୀବନ, ବିଚିତ୍ର ଏ ମହାକାଳ। କାହିଁକି କଅଣ ସେ ଘଟାଏ, କେଉଁଆଡ଼େ ତଡ଼ିନିଏ, ପୁଣି କେଉଁଠି ଲଗାଇଦିଏ, ସେଇ ଜାଣେ।

ଏତେ ବିଜ୍ଞାନର ବାହାଦୂରୀ, ଏତେ ପାରିବାପଣ, ଏତେ ଶକ୍ତି ମଣିଷ ଅର୍ଜନ କଲା ବୋଲି ନାଗର ଦୋଳାରେ ବସି ଖଣ୍ଡମଣ୍ଡଳର ପ୍ରଭୁ ବୋଲାଉଛି; ଅଥଚ ଗୋଟାଏ ମାତ୍ର କ୍ଷଣରେ ମହାକାଳ ମହାନୃତ୍ୟ ନାଚିଯାଏ। ସବୁ ତଉଲ-ତାଉଲ ଓଜନ, ପରିମାପ; ମଣିଷର ବିଧାନ ଛାରଖାର ହୋଇଯାଏ। ଏହା ହିଁ ଲୀଳା, ଏହା ହିଁ ବ୍ୟକ୍ତ ଅବ୍ୟକ୍ତ ମହାନଟର ବହୁ ବିଚିତ୍ର ଭଙ୍ଗୀ।

ଢେନାଏ ଓଦା ସରସର ଲୁଗାରେ କାଦୁଅ ସାଉଁଳୁଥିଲେ। ଗୋଟାଏ କଅଣ ରୂପ ଫୁଟାଉଥିଲେ। ସବୁ ଚାଲିଗଲା, ହେଲେ ମାଆର ଆବାହନ ହେବ। ସେଥିପାଇଁ ଧାରେ ଅଶ୍ରୁ ବୁହାଇ ମାଧବ ବାୟାଙ୍କ ଭଳି ମାଟି ଚକଟୁଥିଲେ।

ଏଠି ମହାମହିମ ସ୍ୱଚ୍ଛଳ ଖଣ୍ଡେ ଗାଁ ଥିଲା। ବୁଢ଼ା ଢେନାଙ୍କର ଷୋହଳ ବର୍ଷର ଝିଅ ଲବଣୀ ଅକାତ ପାଣିରେ ଭାସି ଯାଇ ପାଟିକଲା– ବାପା ବଞ୍ଚାଅ! ତା'ପରେ ସବୁ ଶେଷ।

କେଉଁଠି ତା' ଶବ ଲାଗିଲା କିଏ ଜାଣିଲା ନାହିଁ। ପିଲାଦିନେ ଲବଣୀ ମାଆ ସାଙ୍ଗେ ପଦ୍ମପୋଖରୀ ତଟରେ ବସି ପାଣି ଚାବୁ ଚାବୁ କରୁଥିଲେ ମାଆ ପାଟିକରି ଉଠନ୍ତି– ଇଲୋ ପାଣିସୁଅରେ ଭାସିଯିବୁ ବା' ଏମିତି ହଉଚୁ। ଆ, ଉଠିଆ–

ଏବେ ସେଇ ଅଭିଶାପ ଫଳିଲା। ଲବଣୀ ଭାସିଗଲା।

କେଡ଼େ ସହଜ ଏ କଥା– ଭାସିଗଲା, ସବୁ ଭାସିଗଲେ। କାଲି ଯାହାର ସଂସାର ପୂରିଥିଲା ଆଜି ନାହିଁ। କାଲି ଯାହାର କ୍ଷେତରେ ସୁନାର ଲହରୀ ଖେଳୁଥିଲା, ଆଜି ସେଠି ଅକାତ ପାଣି। କାଲି ଯାହାର ଖଳାରେ ମେଳା ମଉଛବ ହେଉଥିଲା, ଆଜି ତା ବଂଶରେ କେହି ନାହିଁ।

ବୁଢ଼ାଙ୍କ ପାଖରେ ଆସି ଛିଡ଼ା ହେଲେ ଚାରିଜଣ ଲୋକ। ଅଧା ଖାକି ପ୍ୟାଣ୍ଟ, ଅଧା ଖାକି ସାର୍ଟ ପିନ୍ଧି ଏଇମାନେ...

ଏମାନେ ପାଣି ବୋତଲ କାନ୍ଧରେ ଝୁଲେଇଥିଲେ, ଅନ୍ୟ କାନ୍ଧରେ ଥଳି ଭିତରେ ରଖିଥିଲେ ବିସ୍କୁଟ, ଲଞ୍ଜେନ୍‌ସ, ଲହୁଣୀ ଟିଣ, ଫଳରସର ବୋତଲ, ସିଝା ଅଣ୍ଡା ଥୋଡ଼ାଏ, ରୁଟି ଚାରିପାଞ୍ଚଟା।

ଏମାନେ ସୁବାସିତ ରୁମାଲ ମୁହଁରେ ଗୁଞ୍ଜୁଥିଲେ। ହାତରେ ଏମାନଙ୍କର ଭିଟାମିନ୍ ଟାବ୍‌ଲେଟର ଟିଣ ଆଉ ଇଞ୍ଜେକ୍‌ସନ ସିରିଞ୍ଜ୍।

ପ୍ରତିବେଶୀ ପ୍ରଦେଶରୁ ଆସିଛନ୍ତି ଏଇ ଡାକ୍ତରମାନେ ବନ୍ୟାପୀଡ଼ିତ ଲୋକଙ୍କ ସେବା ପାଇଁ–

ଆସିଲାବେଳେ ସଂପୃକ୍ତ ଶାସକମାନଙ୍କଠୁ ଚିଠି ଆଣିଥିଲେ। ସେଥିରେ ଲେଖାଥିଲା– ଏମାନଙ୍କୁ ଭଲରେ ରଖି ଭଲ ଖୁଆଇ ଏମାନଙ୍କ ସ୍ୱାସ୍ଥ୍ୟପ୍ରତି ଯତ୍ନ ନେଇ ଟିକିଏ ସେବା କରିବାକୁ ସୁଯୋଗ ଦେବେ।

ବୁଢ଼ାଙ୍କୁ ଜଣେ କହିଲେ– ଆପଣ ହାତ ଦେଖାନ୍ତୁ, ଇଞ୍ଜେକ୍‌ସନ ଦିଆଯିବ।

ଯେଉଁ ହାତ ବର୍ଷ-ବର୍ଷ ଧରି ଜଗତ୍‌ମାତାର ମୂର୍ତ୍ତି ଗଢ଼ିଥିଲା, ସେ ହାତରେ ଛୁଞ୍ଚି ଫୋଡ଼ାହେବ। ବୁଢ଼ା ଶିହରି ଉଠିଲେ।

ବୁଢ଼ା ଉପରକୁ ଚାହିଁଲେ– କଅଣ ଭାବିଲେ। କହିଲେ– ଦରକାର ନାହିଁ ଏ ଗାଁରେ କେହି ବଞ୍ଚିନାହିଁ– ମୁଁ ବି ବଞ୍ଚିବି ନାହିଁ। ମାଆ ବୋଧହୁଏ ମତେ ରଖିଦେଇଗଲା ତାର ରୂପ ଶେଷଥରକ ଗଢ଼ି ମୁଁ ଚାଲିଯିବି। କିନ୍ତୁ ମାଟି କାହିଁ? ଗୋବର କାହିଁ? କୁଟା କାହିଁ? ଜେନାଏ ପାଗଳ ଭଳି କଥାବାର୍ତ୍ତା କଲେ।

ଡାକ୍ତରଦଳ ଭିତରେ ସେତେବେଳେ ଜଣେ ପାଟିକୁ ଲେମ୍ବୁଚୁସ୍ ପକାଉଥିଲେ। ଆଉ ଜଣେ ଗରମ୍ ଚା' ଫ୍ଲାସ୍କରୁ ଢାଳି ପିଇଲେ... ତାଙ୍କୁ ଭାରି ଶୋଷ।

ଶେଷରେ ଜଣେ କହିଲେ– ଓଡ଼ିଶାଟା ଦରିଦ୍ର ଦେଶ। ଏବେ ଦରିଦ୍ରତର ହୋଇଗଲା। ଆମ ଚାଉଳ ଗଣ୍ଡାକ ଆମେ ପାଇଲେ ହେଲା। ପଟୁମାଟି ତ ପଡ଼ିଯାଇଛି; ଆର ବର୍ଷକୁ ଫସଲ ବଢ଼ିଆ ହେବ।

ସେମାନେ ଆଉ ସେଠି ରହିଲେ ନାହିଁ; ଏଡ଼େ ବଡ଼ ଗାଁଟା ମହାକାଳର କୁକ୍ଷି ଭିତରେ ଲୁଚିଗଲା। ମାଧବ ଜେନାଏ ରହିଯାଇଥିଲେ କାଦୁଅ ଚକଟିବାକୁ।

ସହରରେ କିଶୋର କିଶୋରୀ, ପ୍ରୌଢ଼ ପ୍ରୌଢ଼ା, ଯୁବକ ଯୁବତୀଙ୍କୁ କାମ ମିଳିଗଲା।

ବିଗତଯୌବନା ନାରୀନେତ୍ରୀ ବାହାରିଲେ ରାଜପଥ ଉପରକୁ। ତାଙ୍କ କଣ୍ଠରେ କୀର୍ତ୍ତନ ସ୍ୱର...

"ଆମର ସବୁ ସରିଗଲା,
ବଢ଼ି ଆମକୁ ମାରିଦେଲା
ହେ ଦେଶଭାଇ...
ମୁଣିରେ ପୂରାଇ ହାତ
ଦେଶ ଏ କି ଅଦଭୁତ।
ଟଙ୍କା ପଇସାରେ ଭରିଗଲା
ବଢ଼ି ଆମକୁ ସାରିଦେଲା,
ହେ ଦେଶଭାଇ...
ଯେ ଯାହା ପାଉଛ ଦିଅ,
ଆମ କଇଲାଣ ନିଅ।
ଝିଅ ବାହାପାଇଁ ଟଙ୍କା ନ ଥିଲା,
ନୂଆ ଘର ତୋଳା ଅଟକିଥିଲା,
ଏବେ ଏ ମୁଣିଟା ଭରିଗଲା,
ବଢ଼ି ଆମକୁ ମାରିଦେଲା,
ହେ ଦେଶଭାଇ...

ତାଙ୍କ ପଛରେ କିଶୋରୀମାନେ ଗୀତ ଗାଇଲେ। ନେତ୍ରୀଙ୍କର ଯୌବନ ଫେରିଆସିଲା। ଭଗବାନଙ୍କୁ ସେ ଶତକୋଟି ଜୁହାର ହେଲେ, ତାଙ୍କ ବଢ଼ିଲା ଝିଅ ବଢ଼ି ଯୋଗୁଁ ହାତକୁ ଦି'ହାତ ହୋଇଯିବ।

ନାଚ ତାମସାର ସ୍ରୋତ ଛୁଟିଲା। ବହୁ ମନ୍ଦିର, ବହୁ ନାଟ୍ୟ ସଂସ୍ଥା ଗର୍ଜୁରି ଉଠିଲେ। ହେଲା ନାଟକ, ଭରିଲା ମୁଣି...

– କିଓ, ଏତେ କାର୍ଯ୍ୟବ୍ୟସ୍ତ କାହିଁକି?

ଉତ୍ତର– ନାଟକ ...

– କିଓ, ଏତେ ଧଇଁସଇଁ ହେଉଚ କାହିଁକି?

ଉତ୍ତର– ବିଚିତ୍ରାନୁଷ୍ଠାନ...

– କିଓ, ଏମିତି ଝାଳନାଳ କାହିଁକି?

ଉତ୍ତର– ଗେଷ୍ଟ ହାଉସ୍‌ରେ ଚିତ୍ରତାରକା ସୁକାନ୍ତି ଦେବୀ ବନ୍ୟାପାଣ୍ଠି ପାଇଁ ଆସିଛନ୍ତି। ତାଙ୍କର ସୋ' ଅଛି।

– କିରେ ପିଲାଏ, ଏ' କଅଣ ?

ଉତ୍ତର– ମ୍ୟାଜିକ୍ ସାର୍, ଆପଣ ପାଞ୍ଚଟଙ୍କା ଟିକେଟ ନିଅନ୍ତୁ।

ନିଶ ଉଠିନାହିଁ, ଜୁଲୁଜୁଲୁ ଛାହୁଁଛନ୍ତି। ବିଡ଼ି କଠାକୁ ଦଶ ପଇସା, ପାନ ଖିଲେକୁ ଦୁଇ ପଇସା, ପ୍ରାଇମେରୀ ପଢୁ ପଢୁ ବିଡ଼ି ଧରିଛନ୍ତି। ତାଙ୍କର ହୋବ୍ ଦେଖ, କହୁଛନ୍ତି ପାଞ୍ଚଟଙ୍କା ଟିକେଟ ନିଅନ୍ତୁ।

କେହି ଜଣେ ଟିକେଟ କିଣା ଚାପରେ ଚାପିତ ଅତ୍ୟାଚାରିତ ପଚାରିଲେ...

– ଆପଣମାନେ ଶେଷରେ ବାହାରିଲେ ?

ଓଢ଼ଣା ତଳୁ ଥିରି ଥିରି ଭାଷ, ଆଖିପତା ତଳେ "ଏ କଅଣ ଗୋଟାଏ ସୁଆଙ୍ଗ ଲାଗିଛି"ର କୌତୁକ ନିର୍ଝର......

– ଆଁମେ ଚାନ୍ଦା ନେଁବାକୁ ଆସିଚୁଁ.........

ଝିଅଟି ମାଇହାତୀଙ୍କ ଦ୍ୱାରା ଧରାହୋଇ ଏବେ ନଗଦରେ ପଦାକୁ ବାହାରିଛି। ତା କଣ୍ଠ ଟାଣ ହୋଇନାହିଁ।

– ଆଁପଣ ଦଁଶଁ ଟଁଙ୍କାର ଟିଁକିଟ କିଁଣଁନ୍ତୁ.......

ନାକୀସ୍ୱର......

ଭଦ୍ରବ୍ୟକ୍ତି ପଚାରିଲେ– କିଛି ମନୋରଞ୍ଜନର ବ୍ୟବସ୍ଥା କରିଛନ୍ତି ?

- ହଁ-ଅଁ-ଅଁ

- କଅଣ ?

-ଆଁନନ୍ଦଁ ମେଁଳା......

ନିରାନନ୍ଦ ପଥିକ ଚାଲିଯାଏ ତା ରାସ୍ତାରେ.... ମହାନନ୍ଦରେ ଥୋକେ ଏମିତି ମାତିଉଠିଲେ।

ଦଳ ଦଳ ପରପ୍ରାଣଚିହ୍ନାଳି ନାଟକ କରୁଛନ୍ତି। ଚିତ୍ରତାରକା ଆଣି ନଚାଉଛନ୍ତି। ପିଲାଏ ମୁଣି ଭର୍ତ୍ତିକରି ବୁଲୁଛନ୍ତି।

ଟିକଟବିକା ଦୁଇଶ, ଫିମେଲ ଆର୍ଟିଷ୍ଟ ଭଡ଼ା ଶହେ ପଚାଶ, ନାୟକଙ୍କର ନୂଆ ହାଓ୍ୱାନି ଓ ଜୋତାକିଣା ବାବଦ ତିରିଶ। ଆଉ ସବୁ ଖର୍ଚ୍ଚ ଯାଇ ବଳିଲା ନୂଆ ପଇସାଟିଏ.......।

ମୂଳବସନ୍ତ ଗାଁର ମାଧବ ଜେନା ଯେପରି ଅନାଇଁ ବସିଥିଲା ଏଇ ନୂଆ ପଇସାଟିଏ ପାଇଁ!

ଶହ ଶହ ମାଧବ ଜେନା, ଶହ ଶହ ଲବଣୀ, ଶହ ଶହ ପାଟ ଗାଇଙ୍କ ଆତ୍ମା କେଉଁଠି ଅଛି କେହି ଜାଣିଲେ ନାହିଁ।

ସନ୍ଧ୍ୟା ନଇଁ ଆସେ। ଦେବାଳୟରେ ଆଳତି ନାହିଁ। ଈଶ୍ୱର କେଉଁଠି ଅଛନ୍ତି ବୋଲି ଖୋଜି ଖୋଜି ଲୋକ ଏବେ ବି ଖୋଜି ପାଉନି।

ଏଇ ବୋଧହୁଏ ଈଶ୍ୱର... ଏଇ ଲୀଳାମୟ ଯେ କ୍ଷଣକ ଭିତରେ ସୃଷ୍ଟି କରନ୍ତି ମହାପ୍ଲାବନ..... ମହାମୃତ୍ୟୁ..... ପରମ ବିଳୟ; ଆଉ ସେଇଥିରେ ସେ ମହା ଆଶ୍ୱାସିତ ହୋଇ ସୃଷ୍ଟିର ଚକ ଘୂରାନ୍ତି।

ଏତେ ଓଲଟପାଲଟ ପରେ, ଏତେ ବିଳୟ ପରେ ଗୋଟିଏ ଦରିଦ୍ର କୁଟୀରରେ ଦୂବଘାସ କେରାଏ, ଅକ୍ଷତ ତଣ୍ଡୁଳ ପୋଷେ, ଗୋଟିଏ ଘିଅଦୀପ ଧରି ଉଭା ତରୁଣୀଟିଏ ମାଆର ଅଭ୍ୟର୍ଥନା ପାଇଁ।

ମାଆ ଆସୁଛନ୍ତି । ଭଙ୍ଗାଗଢ଼ା, ସର୍ଜନ ବିସର୍ଜନ ପଥରେ ଜନନୀ ଆସୁଛନ୍ତି ବରାଭୟକର ମୁଦ୍ରା ଧରି ।

ମାଧବ ଜେନା ନାହାନ୍ତି ସତ, ତାଙ୍କର ହାତ ସହସ୍ର ହାତ ହୋଇଛି । ଲବଣୀ ନାହିଁ ସତ; କିନ୍ତୁ ମାତୃପ୍ରତିମା ଆଗରେ ସର୍ବହରା ଓଡ଼ିଆ ପୁଣି ଲୋଟିଯାଇଛନ୍ତି ବେଦନାବିଦ୍ଧ ଅନ୍ତର ଓ ଅଶ୍ରୁସିକ୍ତ ଚକ୍ଷୁ ନେଇ....... ସେମାନଙ୍କ କଣ୍ଠରେ ଏଇ ପ୍ରାର୍ଥନା...... କଲ୍ୟାଣ କର ମାଆ ! ତୁ ଯେତିକି ଭାଙ୍ଗୁଛୁ, ସେତିକି ଗଢ଼ିଦେ ମା ! ଆମେ ଅଧମ ସନ୍ତାନ ତୋର, ସୃଜନ ଓ ବିଲୟ ଭିତରେ ରହସ୍ୟ କଅଣ ଅଛି ଆମେ ବା କଅଣ ବୁଝିବୁ ?

ଶେଷରେ ଭଙ୍ଗା ଅଣ୍ଟା ଠିଆହେଲା । ଭଙ୍ଗା ଗୋଡ଼ ଚାଲିଲା । ଭଙ୍ଗା ମନ ଯୋଡ଼ିହେଲା । ଭଙ୍ଗା ଘର ନୂଆ ସାଜିଲା । ଭାଙ୍ଗି ଯାଇଥିବା ବିଶ୍ୱାସ ଫେରିଆସିଲା ।

ମାତ୍ର ଫେରିଲେ ନାହିଁ ସହସ୍ର ମାଧବ ଜେନା... ଶିଳ୍ପୀ ଓ ଗୃହସ୍ଥ ।

ଫେରିଲେ ନାହିଁ ସହସ୍ର ଲବଣୀ କନ୍ୟା, ମାଆ, ଗର୍ଭବତୀ ଜନନୀ ଓ ଆଗତ ଅନାଗତ ଶିଶୁସନ୍ତାନ ।

ମହାପ୍ଳାବନରେ ମହାଜୀବନର ଏଇ ଲୟ ପଙ୍କକୁ ଚନ୍ଦନ କରୁ... ସର୍ବହୃଦୟରେ ଆଶା ବିଶ୍ୱାସର ବନ୍ଦନ ରଚିତ ହେଉ ।

ମାଆର ଉଦଯୋତ୍ସବ ପରିପୂର୍ଣ୍ଣ ହେଉ ।



# ହେ ଅରଣ୍ୟ, ହେ ମହାସାଗର

ସଂକଳ୍ପପାଠ ପରେ ହାତରେ ଡିଗ୍ରୀ-ପତ୍ରଖଣ୍ଡି ଧରି ମୁକୁଳ ଚାହିଁଲା ଚାରିଆଡ଼େ..... ସମାବର୍ତ୍ତନ ଉତ୍ସବର ମଣ୍ଡପ, ଜନାକୀର୍ଣ୍ଣ ଭୂଖଣ୍ଡ। ବର୍ଷ-ବର୍ଷର ଅଧ୍ୟବସାୟ, ବର୍ଷ-ବର୍ଷର ଆଶା କାମନାର ବୃନ୍ତପୂର୍ଣ୍ଣ କୁସୁମଗୁଡ଼ିକ ଆଜି ସରସ ପ୍ରାଣମୟତାରେ ସ୍ପନ୍ଦିତ। ଆଗାମୀକାଲର ଅନାଗତ ପଦସଞ୍ଚାର ଏଯାଏ ସମ୍ଭବ ହୋଇନାହିଁ। କିଏ ଜାଣେ କଅଣ ରହିଛି ଭବିଷ୍ୟତର କୁକ୍ଷି ଭିତରେ।

ଶେଷ ହୋଇଛି ଉତ୍ସବ। କଳା ଚପକନ, କଳା ମଥାଭୂଷଣ ଧରି ଶତ ଶତ ତରୁଣୀ ଆଗକୁ ପାଦ ବଢ଼ାଇଛନ୍ତି। ପ୍ରତ୍ୟେକଟି ପଦକ୍ଷେପରେ ନିଶ୍ଚିତ ପୁରୁଷକାରର ବଜ୍ରଦୃଢ଼ ଭାବ ହୁଏତ ଅଛି। ଫିଟିଯାଇଛି ଭାବୀ କଳ୍ପନାର ରଙ୍ଗମୟ ତୋରଣ। କିଏ କଅଣ କରିବ, କିଏ କଅଣ ହେବ, ଏସବୁର ବିଚାର ମନ ଭିତରେ କ୍ରମେ କୁଣ୍ଡଳୀ ପକାଉଛି।

ମୁକୁଳ ସ୍ଥିର ନିଷ୍କମ୍ପ ଦୃଷ୍ଟିରେ ଚାହିଁଲା ଦୂରକୁ..... ସେ ଦୂର କାହିଁ କେତେ ପ୍ରସାରୀ। ଆଉ ସେ ପଢ଼ିବ? ନାଁ ରାଜନୀତି? ନାଁ ବିବାହ? ବୋଧହୁଏ ନାଁ ତେବେ ଆଉ କ'ଣ? ସର୍ଭିସ୍? ବାପା ବୋଉ ସେଇଆ ଚାହାନ୍ତି। ତା'ପରେ କୌଣସି ତରୁଣୀକୁ ଗୃହାଙ୍ଗନକୁ ଆଣି ପ୍ରତିବର୍ଷ ନବକଳେବରରେ ତାର ଶୋଣିତ ଶକ୍ତିକୁ ପରିସ୍ଫୁଟନ କରିବାକୁ ସେମାନେ ଚାହାନ୍ତି। କିନ୍ତୁ?

– ନମସ୍କାର, ମୁକୁଳ ବାବୁ, ଅଭିନନ୍ଦନ ନିଅନ୍ତୁ।

– ଓ, ସ୍ମୃତିରେଖା! ଏ ବେଶରେ ତ ଖୁବ୍ ସୁନ୍ଦର ଦେଖାଯାଉଛ......।

– ଆଉ ସୁନ୍ଦର କଣ ମ? ଛିଃ, ଉପର ତଳ ସବୁ କଳା- ଏଇ କଳା ବେଶ ଧରି ଜୀବନଟାଯାକ କଳା ହୋଇଯିବ କି?

ସ୍ମୃତିରେଖା ସତ କହିଛି। ଏ କଳା ଗାଉନ୍, ଏ କଳା ଶିରସ୍ତ୍ରାଣ ଜୀବନକୁ ସତେ କଣ କଳା କରିଦେବ? କାହିଁକି ଏ ଆଶଙ୍କା ସ୍ମୃତିରେଖାର?

ବାପା ବିଭବଶାଳୀ ସଂଭ୍ରାନ୍ତ ଲୋକ; ଅଲିଅଳ ଝିଅ ସେ, ସୁବର୍ଣ୍ଣପୁରୀର ସୁବର୍ଣ୍ଣ କନ୍ୟା। ଅପ୍ରାପ୍ତି ବୋଲି ତାର କିଛି ନାହିଁ। ହୁଏତ ତାର ମନର ମଣିଷ ତାକୁ ମିଳିଯିବ। ସ୍ମୃତି ସହିତ ପାଦ ମିଳାଇ ଜୀବନ-କୁଞ୍ଜ ଭିତରେ ଆଶ୍ରୟ ପାଇବାକୁ ମୁକୁଳ ଥରେ ଥରେ ଉତ୍ତପ୍ତ ହୋଇ ଉଠିଛି। ଆଜି କିନ୍ତୁ ତାକୁ ସମାବର୍ତ୍ତନର ସମାରୋହ ମଝିରେ ଶୁଭ୍ର-ଶଙ୍ଖ ଦେଖି ସେଥିରେ ଜଳଦାନ କରି ବିଶ୍ୱଦେବତା ଉଦ୍ଦେଶ୍ୟରେ ହାତ ଉଠାଇବା ପାଇଁ ସେ ଆତଙ୍କିତ ହୋଇପଡ଼ିଲା।

– ମୁକୁଳ ବାବୁ, ଏତେ ନୀରବ ଯେ? କଅଣ ହୋଇଛି?

– ନାଁ କିଛି ନୁହେଁ। ଭାବୁଛି, ଦରିଦ୍ର ବାପା-ମାଆଙ୍କ ପାଇଁ ଆଉ କି କର୍ତ୍ତବ୍ୟ ବାକି ରହିଲା। ଉଚ୍ଚଶିକ୍ଷା ପାଇଁ ସମ୍ବଳ ନାହିଁ। ବହୁକୁଟୁମ୍ବୀ ଘର। ହାତରେ ଏ ଡିଗ୍ରୀ-ପତ୍ରିକା ଝରାପତ୍ର ଭଳି ଲାଗଛି।

— ଆସନ୍ତୁ, ଏକାଠି ଫଟ ଉଠାଇବା। ବାଃ, ଆଜି ଦିନର ସ୍ମୃତିକୁ ବାନ୍ଧି- ରଖିବାନି ? ଆସନ୍ତୁ ନାଁ ?

ମୁକୁଳ ନିର୍ବାକ୍। କହିଲା- ମୋ ସହିତ ତମେ ଫଟ ଉଠେଇବ ?

— ଆରେ ଆଚ୍ଛା ଲୋକ, ଆଉ କାହା ସଙ୍ଗେ ?

— କିନ୍ତୁ ସେଇଟା କଅଣ ସୁନ୍ଦର ହେବ ? ତୁମର ବାପା ମା' ହୁଏତ କିଛି ମନ୍ତବ୍ୟ କରିପାରନ୍ତି। ମୁଁ ତାଙ୍କର ଅଜଣା ଅଶୁଣା।

— ସୁବର୍ଣ୍ଣ ପଦକଟା ନେଲାବେଳେ ଆପଣଙ୍କୁ ବାପା ମାଆ ଦେଖିଛନ୍ତି। ତା'ପରେ ସେ ତାଙ୍କ ଭବିଷ୍ୟତ ଓ ମୋ ଭବିଷ୍ୟତ ଠିକ୍ କରିନେଇଛନ୍ତି ଏବଂ ତାଙ୍କରି ଇଙ୍ଗିତରେ ମୁଁ ଏ ମହତ୍ କାର୍ଯ୍ୟ ସାଧନ କରିବାକୁ ଯାଉଛି।

— ମାନେ ?

— ମାନେ ଅତି ସ୍ପଷ୍ଟ। ଜାଣନ୍ତି, ଏ ଯେ ଜନତା କ୍ରମେ ମଉଳି ଯାଉଛି, ଯା' ଭିତରେ ବାପା ମାଆ ବହୁତ ଅଛନ୍ତି। ସେମାନଙ୍କର ଆଖି ନଥିଲା ଉତ୍ସବ ଉପରେ, କାନ ଶୁଣୁ ନଥିଲା ବିଶିଷ୍ଟ ଅତିଥିଙ୍କର ଭାଷଣ। ସେମାନେ କେବଳ ଖୋଜୁଥିଲେ କେତେଟା ଫାଷ୍ଟ କ୍ଲାସ ଏମ୍.ଏ. ଏବର୍ଷ ଉତୁରିଲେ। କେତୁଟା ଦ୍ୱିତୀୟ ଶ୍ରେଣୀ ଆଉ କେତେ ଜଣ ସୁନା ପଦକର ଅଧିକାରୀ। ତାଛଡ଼ା ତାଙ୍କ ଦେହ ବର୍ଣ୍ଣ ଯଦି କନକଶ୍ରୀ ଧରିଥାଏ, ତେବେ ତ ନଦୀ- ସାଗର ସଙ୍ଗମ ଘଟିଲା। ଗୋଟିଏ କଥାରେ ଏମାନେ ଝିଅଙ୍କ ପାଇଁ ଜ୍ୱାଇଁ ଖୋଜୁଥିଲେ। ଏଇ ଜାମାତା ଖୋଜିବା ବ୍ୟାପାରରେ ସମାବର୍ତ୍ତନ ଉତ୍ସବଟା ଗୋଟାଏ ପ୍ରଦର୍ଶନୀ ସ୍ଥଳ। ଆସନ୍ତୁନାଁ ଫଟଟାଏ ଉଠେଇଂନିଏ !

ମୁକୁଳ ଏ ତରୁଣୀର ପ୍ରେମହୀନ ହୃଦୟକୁ ଅବଲୋକନ କଲା। ସତେ କଅଣ ପ୍ରେମହୀନ ? ପିତାର ଆଜ୍ଞାବାହିନୀ ସ୍ମୃତିରେଖା ତାର କର୍ତ୍ତବ୍ୟ କରୁଛି ମାତ୍ର।

ମୁକୁଳ ହସି କହିଲା– କିନ୍ତୁ ଏସବୁ କଥାରେ ତୁମ ମନର ଚଉଛକି ଉପରେ ଯାନବାହନ ଅତି ବେଶି।

ସ୍ମୃତିରେଖା କଟାକ୍ଷ ହାଣି କହିଲା– ମୁକୁଳବାବୁ, ଏ ଜୀବନଟାକୁ ଠିକ୍ କହିଛନ୍ତି ଚଉଛକି। ବାପା କେବଳ କେବେ ହାତ ଟେକି ଟ୍ରାଫିକ୍ ପୋଲିସ୍ ଭଳି ଯାନବାହନ ଅଟକାଇ ଦିଅନ୍ତି। ଦେଖନ୍ତି ଝିଅ ପାଇଁ କେହି ଯାତ୍ରୀ ରହିଛି କି ନାହିଁ। ଟିକିଏ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ ଝିଅର ଏ ବିଷୟରେ କିଛି ବକ୍ତବ୍ୟ ଅଛି ବୋଲି।

ଦୁହେଁ ଚାଲୁଥିଲେ, କଥା କହୁଥିଲେ, ସମୟ ବି ତାଙ୍କ ସଙ୍ଗେ ସଙ୍ଗେ ଚାଲୁଥିଲା।

× × ×

ଭାରତବିଖ୍ୟାତ ବାରାଣସୀ ସହର। ତହିଁ ମଧ୍ୟରେ ବାବା ବିଶ୍ୱନାଥ ମନ୍ଦିର। ସେଦିନ ଥିଲା ମକର ସଂକ୍ରାନ୍ତି। ଧର୍ମପ୍ରାଣ ବ୍ୟକ୍ତିଙ୍କର ସମାଗମରେ ମନ୍ଦିରଟି ଉଛୁଳି ପଡୁଥିଲା। ଶିବଙ୍କର ଶକ୍ତିଲିଙ୍ଗ ଉପରେ ଅଜସ୍ର ବିଲ୍ୱଦଳମାଳା। ବଂ ବଂ ହରେ ହରେ ନାଦରେ ମୁଖରିତ ଏଇ ପୁରାଣପ୍ରସିଦ୍ଧ ଶିବ ନିଳୟର ପ୍ରବେଶପଥ ଉପରେ ଛିଡ଼ାହୋଇଥିଲେ ଜଣେ ମହିଳା। ହାତରେ ପୂଜାର ଡାଲା। ଅଳ୍ପ ଅବଗୁଣ୍ଠନବତୀ ଏଇ ରମଣୀ ଅଙ୍ଗରେ ଶୋଭା ପାଉଥିଲା ପୂଜାବସ୍ତ୍ର।

ମନ୍ଦିର ପୂଜକ ଆଗରୁ ସତର୍କ କରିଥିଲେ, ସେଇ ଦିନଟିରେ ଶିବଦର୍ଶନ କରିବାକୁ ଭାରତବର୍ଷର ବହୁରାଜ୍ୟରୁ ଯାତ୍ରୀ ଆସୁଛନ୍ତି। ସ୍ଥାନୀୟ ଭକ୍ତମାନେ ଶୀଘ୍ର ପୂଜା ବଢ଼ାଇ ଚାଲିଯିବାକୁ ସେ ବାରମ୍ବାର ଅନୁରୋଧ କରୁଥିଲେ।

ଏହି ମହିଳାଟି ପୂଜକଙ୍କୁ ପୂଜାର ଥାଳି ବଢ଼ାଇ ଦେଇ ପଚାରିଲେ—

— ମହାରାଜ, ଏତେ ଲୋକ କାହିଁକି ଆସୁଛନ୍ତି ?

— ସରକାର ଏ ଦେଶର କେଉଁଠି କେଉଁଠି ଯୋଜନା ହେଉଛି ଜଣାଇବା ପାଇଁ ବହୁଆଡ଼ରୁ ଲୋକଙ୍କୁ ସ୍ୱତନ୍ତ୍ର ଟ୍ରେନରେ ଆଣୁଛନ୍ତି।

ମହିଳା ସ୍ଥିର ହୋଇ ଦୁଇଦଣ୍ଡ କଅଣ ଭାବିଲେ। କହିଲେ— ମହାରାଜ, ଓଡ଼ିଶାରୁ କେହି ଆସିବେ ?

—ଓଡ଼ିଶା ? ଓ, ହାଁ... ଜଗନ୍ନାଥଧାମ... ନିଶ୍ଚୟ ଆସୁଥିବେ। କେତେ ଜଣ, ମୁଁ କହିପାରିବି ନାହିଁ।

ଆଉ କିଛି ବୋଧହୁଏ ପଚାରିବାର ନଥିଲା। ଧୀରେ ଆଳତିଗନ୍ଧ ଆଘ୍ରାଣ କରି ମହିଳା ଜଣକ ଚାଲିଗଲେ।

ପ୍ରାୟ ପାଞ୍ଚଶହ ଲୋକ ଦେବଦର୍ଶନ କରୁଛନ୍ତି। କାଶ୍ମୀର, ଆଣ୍ଡାମାନ, ସୌରାଷ୍ଟ୍ର, ବଙ୍ଗ, ଉତ୍କଳ- ସବୁଆଡୁ ଆସିଛନ୍ତି ଯାତ୍ରୀମାନେ।

ଶିବଲିଙ୍ଗ ପାର୍ଶ୍ୱରୁ ଜନତା କ୍ରମେ ମଉଳିଆସିଲା।

— ମୁକୁଳବାବୁ !

— କିଏ ?

ମୁକୁଳ ଦେଖିଲା ତା'ର ଚରଣଲଗ୍ନ ହୋଇ ଜଣେ ଅପରିଚିତା ରମଣୀ ବସିପଡ଼ିଛି। ସମସ୍ତଙ୍କ ଆଖି ଏଇ ଦୃଶ୍ୟ ଉପରେ- ଏ ନାରୀ କିଏ ?

ସହଯାତ୍ରୀ କେହି କହିଲେ- ଆଇୟେ କୃଷି- ପଣ୍ଡିତ୍ ମୁକୁଲ୍‌ବାବୁ, ହାମ୍ କୋ ବହୁତ୍ ଜେଗେପର୍ ଯାନେ ହୋଗା।

ମୁକୁଳ ବିଚଳିତ ଭାବରେ ଉତ୍ତର ଦେଲା—

- ହାଁ, ହାଁ, ଯାତା ହୁଁ, ଆପ୍ ଚଲିଏ। ମୁକୁଳ ମହିଳାକୁ ଉଠାଇ ଚମକି ପଡ଼ିଲା- ଏ ଯେ ସ୍ମୃତି !!

- ସ୍ମୃତିରେଖା ! ତମେ ଏଠି ? ଦୁଇଧାର ପବିତ୍ର ଅଶ୍ରୁ ସ୍ମୃତିର ନେତ୍ରରୁ ଖସିପଡୁଥିଲା ସେତେବେଳେ।

ସ୍ମୃତି ତାର ପ୍ରାର୍ଥନା ଜଣାଇଲା- ଟିକିଏ ନିରୋଳାକୁ ଆସ।

ତା'ପରେ ସେଇ କେତୋଟି କ୍ଷଣ ଭିତରେ ସ୍ମୃତିରେଖା ତାର ଜୀବନର ଆଦ୍ୟ ପ୍ରାନ୍ତ ଅଶ୍ରୁସ୍ରାବ ଭିତରେ ବର୍ଣ୍ଣନା କରିଗଲା। ବାରାଣସୀରେ ତାର ସ୍ଥିତି ଶୋଭନୀୟ ନୁହେଁ- ଅନ୍ତତଃ ଲୋକେ ତାହା ଜାଣନ୍ତି। ତା'ର ଏତେ ଶିକ୍ଷା, ଏତେ ଆଶା ବିଶ୍ୱାସକୁ ଯେଉଁ ପୁରୁଷ ବିପର୍ଯ୍ୟସ୍ତ ଓ ଅଭିଶପ୍ତ କରିଦେଲା, ତାକୁ ସେ ଜୀବନାବଧି କ୍ଷମା କରିନାହିଁ। ଆଜି ସେ ପଥପ୍ରାନ୍ତର ଏକ ଶୁଷ୍କ ଦୁର୍ବା; ବୃନ୍ତଚ୍ୟୁତା...

ମୁକୁଳ ସ୍ତବ୍ଧ। ଆଖି ଉପରେ ତାର ପ୍ରସାରିତ ହୋଇଗଲା ତାଆରି ହାତଗଢ଼ା ଦୁଇଶହ ଏକର ଜମି, ଯେଉଁଥିରେ ସେ ଶସ୍ୟ ଫଳଉଚି। କିନ୍ତୁ ଜୀବନରେ ସେ ଆଜି ନିଃସଙ୍ଗ। ଏଇ ଚରଣଲଗ୍ନା ଆଜି ତାର ସମସ୍ତ ସ୍ୱପ୍ନ ହରାଇଦେଇଛି। କି ବିଚିତ୍ର ସଂସାର

ଏ... ସେ ଆଜି ଏକାକୀ। ନୀଡ଼ ରଚନା ତା'ର ଅପୂର୍ଣ୍ଣ। ଏଇ ସଦାହାସ୍ୟମୟୀ, ଲାସ୍ୟମୟୀ ସ୍ମୃତିରେଖା କେତେ ସୁବର୍ଣ୍ଣ ସ୍ୱପ୍ନରେ ବିଭୋର ହୋଇନଥିଲା। ଦେହ-ସର୍ବସ୍ୱ କୌଣସି ଆତତାୟୀ ପୁରୁଷ ନାରୀମନର ସହଜ ବିଶ୍ୱାସ ଭିତରେ ତାକୁ ଆଜି ବୃନ୍ତଚ୍ୟୁତ କରିଦେଇଛି; ଅଥଚ ଦେଇପାରିଲା ନାହିଁ ଆଉ କୌଣସି ସଙ୍ଗତି କି ମହାଦର୍ଶନ।

ଯେଉଁ ଉଦାରବକ୍ଷା ଧରିତ୍ରୀକୁ ମୁକୁଳ ଆଲିଙ୍ଗନ କରି ସେଥିରୁ ରସ ସଞ୍ଚୟ କରୁଛି, ସେଇ ଧରିତ୍ରୀ ତାକୁ ଶିଖାଇଛି ଉଦାର ଓ କ୍ଷମାପ୍ରବଣ ହେବା ପାଇଁ।

କ୍ଷଣକ ଭିତରେ ସେ ନିଷ୍ପତ୍ତି କରିଦେଲା। ବାପାଙ୍କ ପାଖକୁ ତାରବାର୍ତ୍ତା ଦେଲା- ସେ ବାରାଣସୀରୁ ବଧୂ ନେଇ ଘରକୁ ବାହୁଡ଼ିଯାଉଛି। ସବୁ ସମ୍ଭାରରେ ଶଙ୍ଖଧ୍ୱନି ଯେପରି ଉଚ୍ଛୁଳି ପଡ଼ିବ ତାର ଦ୍ୱାରଦେଶରେ।

ମଧୁରାତ୍ରିର ପ୍ରାନ୍ତ ଯାମରେ ମୁକୁଳ ସ୍ମୃତିର ଗଣ୍ଡ ସ୍ପର୍ଶ କରି କହିଥିଲା– "ମନେପଡ଼େ ଅତୀତଦିନର ସମାବର୍ତ୍ତନ ଉତ୍ସବ କଥା? ତମେ କହିଥିଲ– ଛିଃ, ଉପର ତଳ ସବୁ କଳା। ଏଇ କଳା ବେଶ ଧରି ଜୀବନଟାଯାକ କଅଣ କଳା ହୋଇଯିବ କି?

"କେତେ ଅଶୁଭ ଇଙ୍ଗିତ ସେଇ କଥାପଦକରେ ତୁମେ ସଞ୍ଚୟ କରି ନ ଥିଲ! ଆଜି ତୁମର ସେ କଳଙ୍କିତ ଜୀବନକୁ ମୁଁ ଶୁଭ୍ର ପ୍ରେମଧାରାରେ ପୋଛିଦେଲି। ଏ ଜଗତରେ ମୁଁ କାହାକୁ ତୁଚ୍ଛ ଦେଖେ ନାହିଁ। ମୋ ଆଗରେ କେହି ପତିତ ପତିତା ନାହାନ୍ତି।

ଏହା ବିଶ୍ୱବିଦ୍ୟାଳୟର ଶିକ୍ଷା ନୁହେଁ କି ସୁବର୍ଣ୍ଣ ପଦକର ଅଭିମାନ ଏଥିରେ ନାହିଁ। ଏହା ଜୀବନ-ଶିକ୍ଷା।

"ନା-ନା, ମୋ ଗୋଡ଼ ଉପରେ ଢଳିପଡ଼ ନାହିଁ ସ୍ମୃତି। ଭାବ ନାହିଁ ମୁଁ କ୍ଷମାସାଗର, ଗୋଟାଏ ମହତ୍ କାର୍ଯ୍ୟ କରିବସିଲି। ମୁଁ ମଣିଷ, ମଣିଷଭାବରେ ମତେ ଗ୍ରହଣ କର। ଆସ, ମୋ ପ୍ରଶସ୍ତ ବକ୍ଷକୁ ଆସ। ତୁମର ଏଇଟା ହିଁ ନିରାପଦର ସ୍ଥାନ। ଭୁଲିଯାଅ ସେ କଳା ଅତୀତକୁ । ଆଗାମୀ କାଳସ୍ରୋତରେ ପଦ୍ମ ଫୁଟାଇବାକୁ ସାହସ ରଖ।

"ମୁଁ ଆଜି କୃଷି-ପଣ୍ଡିତ। ଦେଶ ଏହା ହିଁ ମତେ ନାମ ଦେଇଛି– ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକଧାରୀ ମୁକୁଳ ଦାସ ନୁହେଁ। କୃଷିକୁ ଶେଷରେ ଜୀବନରେ ସାଧନା ଭାବରେ ଗ୍ରହଣ କରିଦେଲି। ମୁଁ ବଢ଼ାଇବି ଶସ୍ୟ, ତୁମେ ସେଥିରେ ବୁହାଇବ ରସଧାରା। ତୁମେ ବୃନ୍ତଚ୍ୟୁତ ନୁହଁ; ମୁଁ କରିଛି ଆହୁରି ମହିମାମୟଭାବରେ ତୁମକୁ ବୃନ୍ତଖଚିତ।"

ସ୍ମୃତିରେଖା ଆଶ୍ରୟ ପାଇଥିଲା ମୁକୁଳର ପ୍ରଶସ୍ତ ବକ୍ଷ ଉପରେ ସେଇ ମୁହୂର୍ତ୍ତରେ......।



# ପର୍ବତର ନାମ ପାହାଡ଼

ସରିତା ମତେ ଅପେକ୍ଷା କରି ରହିଥିଲା। ପ୍ରାୟାନ୍ଧକାର......।

ତାଳବନ ଭିତର ସେଇ କ୍ୱାଟର। ରେଲୱେ ପ୍ଲାଟଫର୍ମର ଟିକିଏ ଦୂରରେ। ମୁଁ ଖୋଜି ଖୋଜି ଯାଇଥିଲି।

ଅଖୋଜା ଜିନିଷ ସହଜେ ମିଳିଯାଏ। ଖୋଜିବା ଦୃଶ୍ୟ ଏତେ ଆୟାସହୀନ ଭାବରେ ପାଖକୁ ଆସେ ନାହିଁ।

ଆଶ୍ୱିନର ରଙ୍ଗ ଲାଗିଛି ପତ୍ରକାନ୍ତିରେ। ଶ୍ୟାମ ଆଭାର ନରମ ବୈଦୁର୍ଯ୍ୟ ଦିଗନ୍ତରେ ଝରିଯାଉଛି।

ଏକୁଟିଆ ସେ କ୍ୱାଟର। ମନେହେଉଥିଲା ତାଳବନଘେରା ସେଇ ଆବାସ ଅସମାପ୍ତ ରହସ୍ୟରେ ସତେ କି ବୁଡ଼ିରହିଛି।

ଗୋଟିଏ ମାତ୍ର ଅଲୋକ ଜଳୁଥିଲା। କେଉଁଆଡୁ ରଶ୍ମି ଆସୁଥିଲା, ମୁଁ ଜାଣିପାରୁ ନ ଥିଲି। ସରିତା କହିଥିଲା– ସେ ପ୍ରାୟ ଗବାକ୍ଷତଳେ ବସେ, ଆଲୋକ ସେଇଠି ଥାଏ।

ଆଲୋକକୁ ଅନୁସରଣ କରିଯିବାର ମନୋବୃତ୍ତି ମୋର ନ ଥିଲା; ବରଂ ଅନ୍ଧକାରର ମସୀତଳେ ଯାହା ଆବିଷ୍କୃତ ହୁଏ, ସେଥିରେ ସତ୍ୟ ଥାଏ। ମୋର ହୃଦୟ ଜାଣେ-ଆଲୋକ ତ ସବୁବେଳେ ଆଲୋକିତ।

ଏବେ ଦର୍ଶନ ବଖାଣୁଛି। ସେତେବେଳେ କିନ୍ତୁ ମନପ୍ରାଣ ସରିତାକୁ ଆବିଷ୍କାର କରିବାକୁ ଦଉଡୁଥିଲା। ସରିତା କାହିଁକି ମତେ ଡାକିଥିଲା, ମୁଁ ଜାଣି ନଥିଲି। ମାତ୍ର ସେ ଡାକିଥିଲା, ଆଖିରେ ଆଖିଏ ନିମନ୍ତ୍ରଣ ଧରି। ମତେ ବୋଧହୁଏ ଡାକିଦେଇ ସରିତା ମନରେ ଅନାବନା ଭାବ ଆସିଥିବ। ହୁଏତ ଅନୁତାପ.......

ଉତ୍ତାପ ଅନୁତାପ ବିଷୟରେ ମୁଁ ଭାବୁ ନ ଥିଲି। ଯାହା ଭାବୁଥିଲି ତାହା ସଖ୍ୟର କଥା, ମୈତ୍ରୀର କଥା। ସରିତା, ତା'ର ବାପା, ମାଆ, ଭାଇ, ଭଉଣୀ........

ଗେଟ୍ ବୋଲି କିଛି ନାହିଁ। ଗୋଟାଏ ସରୁ ରାସ୍ତା। ଦୁଇପଟେ ଯେତକ ଆବର୍ଜନା, ଗୁଳ୍ମଲତା। ତାଆରି ଭିତରେ ନିଃଶବ୍ଦରେ ପଥ ଦେଖି ଚାଲିଲି।

ଏଇ କ୍ୱାଟର୍ ହୋଇଥିବ। ପାଖଆଖରେ ତ ଘର ନାହିଁ। ସରିତା କାଗଜଖଣ୍ଡକ ଉପରେ ଛକ କାଟି ଘରର ଅବସ୍ଥିତି ମତେ ବୁଝେଇ ଦେଇଥିଲା।

ସେଇ ଆଲୋକ; ଠିକ୍ ଗବାକ୍ଷ ପାଖରେ ତାକୁ ଚାହିଁ ଚାହିଁ ମୁଁ ଟିକିଏ ଅନ୍ୟମନସ୍କ ହୋଇଯାଇଥିଲି।

– ଆସନ୍ତୁ!

ସରିତା ପ୍ରତୀକ୍ଷା କରି ଛିଡ଼ା ହୋଇଥିଲା।

– ବାଟ ପାଇଲେ ତ? ଅନ୍ଧାର ଏତେ, ଟର୍ଚ୍ଚ ଖଣ୍ଡେ ବି ଆଣି ନାହାନ୍ତି?

ସେ ଏକ ସଲ୍ଲଜ କୌତୁକରେ ଏ କ୍ୱାଟର୍‌ର ଗୋଟିଏ କରୁଣ ଅକଲ୍ୟାଣୀୟ ରୂପକୁ ଯେପରି ମନ୍ଥି ଦେବାକୁ ବସିଥିଲା।

ଅକଲ୍ୟାଣୀୟ ରୂପ? ବୋଧହୁଏ ତାହାହିଁ। ଗବାକ୍ଷତଳେ ଗୋଟିଏ ମାତ୍ର ରଶ୍ମିଦୀପ୍ତ ଆଲୋକ ବ୍ୟତୀତ ଅନ୍ୟ କେଉଁଠି କିଛି ଜ୍ୟୋତି ନ ଥିଲା।

ମୋ ମନ ଉଦାସ ହୋଇଗଲା। ବହୁ ଗୃହାଙ୍ଗନରେ ଅଭ୍ୟର୍ଥନାର ରଙ୍ଗ ଦେଖିଛି। କଳକାକଳିରେ ସମସ୍ତେ ଭାସିଆସନ୍ତି ଆଗନ୍ତୁକ ପାଖକୁ- ଶିଶୁ, ତରୁଣ, ତରୁଣୀ, ପିତା ଓ ଜନନୀ। ତା'ପରେ କାକଳି ସ୍ତିମିତ ହୋଇଆସେ। ଅତିଥି ହୁଏ ପୁରୁଣା।

ବସିଲି ସେଇ ଗବାକ୍ଷତଳ ଆଲୋକ ପାଖରେ! ଗୃହଟି ଯଥାସମ୍ଭବ ପରିଷ୍କୃତ। ଶାଢ଼ିଗୁଡ଼ିକ ବିନ୍ୟସ୍ତ ଭାବରେ ଲମ୍ବିରହିଛି ଆଲନାରେ..... ଗତିବିଧିରୁ ବୁଝିଲି ସବୁବେଳେ ପରିଧେୟର ଏ ଅଭ୍ୟାସ ନାହିଁ। ଆଜି ବ୍ୟତିକ୍ରମ।

ଛୋଟ ଗୋଟିଏ ଟେବୁଲ। ବହି ଖାତାପତ୍ର। ଟିକଟ କଲେକ୍‌ଟରର କଳା ପୋଷାକ ଓ ଟୋପି ଘରକଣର ଗୋଟାଏ ଟ୍ରଙ୍କ ଉପରେ ପଡ଼ିରହିଛି। ଦୁଇଟା ଖେଳନା କାଚ-ଆଲମାରୀର କାଚ ସେପଟେ ରହିଛନ୍ତି। କେତେଟା କାଲେଣ୍ଡର- ପୁରୁଣା ନୂଆ ମିଶା। ଗୋଟାଏ ଦର୍ପଣ, ତା ଉପରେ ଶିଙ୍ଘପାନିଆ- କେତେଟା ଦାନ୍ତ ଭାଙ୍ଗିଗଲାଣି।

ପାଣି ଗ୍ଲାସେ ଆଗରୁ ଥୁଆହୋଇଛି ଟେବୁଲ୍ ଉପରେ।

ପାଖ ଘରୁ କିଏ ଜଣେ କାଶିଲେ। ସେ କାଶର ଲହରୀ ଅସରନ୍ତି। ସେ କାଶୁଥାନ୍ତି ଆଉ ଯନ୍ତ୍ରଣାରେ କାତର ହୋଇ "ମାଆ ସରି" ବୋଲି ଅତି କଷ୍ଟରେ କହୁଥାନ୍ତି। ମନଟା ମୋର ବିକଳ ହୋଇଗଲା।

ହଠାତ୍ ଦେଖିଲି ମୋ ପାଖକୁ ଘୁଷୁରି ଘୁଷୁରି ଗୋଟିଏ ନଅ ଦଶ ବର୍ଷର ପୁଅ ଆସୁଛି। ତା'ର ଗୋଡ଼ ଦୁଇଟି ଚଳତ୍‌ଶକ୍ତିହୀନ।

"-କିରେ ଗୋପାଳ, ନମସ୍କାର କର।" ମୁଁ ବସିବାଠାରୁ ଉଠିପଡ଼ିଲି। ମୋର କିମିତି ମନେହେଲା ସେଇ ବାତାୟନ ତଳ ଆଲୋକଟି ଥରିଉଠିଲା। ମୁଁ ଗୋପାଳକୁ ପ୍ରତିନମସ୍କାର କରି ତାକୁ ସ୍ପର୍ଶ କଲି।

ସରିତା ଏ ଦୃଶ୍ୟ ପରେ ସହଜ ଭଙ୍ଗୀରେ କହିଲା- "ଗୋପାଳ ଏମିତି ବସି ଘୁଷୁରି ଘୁଷରି ଯାଏ। ଆଗେ କଷ୍ଟ ହେଉଥିଲା, ଏବେ ଯନ୍ତ୍ରଣା ନାହିଁ। ତେବେ ସେ ଆବ୍‌ନରମାଲ୍ କଥା କହେ; ମାତ୍ର ସ୍ପଷ୍ଟ ନୁହେଁ। ବୟସ ଦଶବର୍ଷ; ଦେଖୁଛନ୍ତି ତ ମଣିଷ ହୋଇ ବି ସେ ପଶୁ ଭଳି ଘୁଷୁରୁଛି?

ପଶୁ?

ମୋର ଭିତରଟା ବେଦନାରେ ହାହାକାର କଲା।

ସରିତା ଅବଲୀଳାକ୍ରମେ କହିଗଲା ତା'ର ଭାଇଟିର ଆବ୍‌ନରମାଲିଟିର କଥା। ମୋ ଭଳି ହଜାର ଜଣଙ୍କ ଆଗରେ ସେ ଏହି ପଶୁ ପରି ମଣିଷର କାହାଣୀ କହିଥିବ। ଦୁଃଖ ଏମିତି ସହନଶୀଳ ହୋଇଯାଏ, ହୁଏତ କେତେବେଳେ ବା କୌତୁକ ପର୍ଯ୍ୟାୟରେ ପଡ଼ିଯାଏ।

ଜଣେ ଭଦ୍ରଲୋକ ଘର ଭିତରକୁ ଆସିଲେ। ମଇଳା ସାର୍ଟ। ପିନ୍ଧାଲୁଗା ଅପରିଷ୍କୃତ। ମୁଣ୍ଡରେ ବୋଝେ ବାଳ ବିନ୍ୟସ୍ତ ଭାବରେ ରହି ନାହିଁ। ବ୍ୟକ୍ତି

ଜଣକ ଭିତରକୁ ଆସି ମତେ ଦେଖି ସଙ୍କୋଚ କଲେ। ତାହା କ୍ଷଣକ ପାଇଁ।

ସେ ସଙ୍କୋଚ ତୁଟିଗଲା। ସେ ହୋଃ.....ହୋଃ....ହସି ସରିତାକୁ କହିଲେ- "ନାଃ, ହେଲା ନାହିଁ, ଆଉ ବି ହବ ନାହିଁ। ଏଣିକି ଟ୍ରେନ୍ ଚକତଳେ ଅବା ଝୁଲା ଦଉଡ଼ିରେ।"

ସରିତା ଅସଂବୃତ ଭାବରେ ଯଥାଶକ୍ତି କଣ୍ଠକୁ ଉଚ୍ଚ କରି କହିଲା- "ମାମୁ, ଦେଖୁନ ଜଣେ ଭଦ୍ରଲୋକ ବସିଛନ୍ତି; କଅଣ ଏଣୁତେଣୁ ଗୁଡ଼ାଏ କହୁଛ ? ଯାଅ, ବୋଉ ଖୋଜୁଥିଲା। ଆଜି ଯଦି ନ ହୋଇଛି କାଲିକି ହେବ।"

ମୁଁ କିଛି ବୁଝିପାରିଲି ନାହିଁ। ସରିତାକୁ ଅନାଇଁ ରହିଲି।

ମାମୁ ଟିକିଏ ଉତ୍ତ୍ୟକ୍ତ ଭାବରେ କହିଲେ- "ହଁ, ସେ ଭଦ୍ରଲୋକ ମୁଁ ଜାଣେ; ମୁଁ ବି ଭଦ୍ରଲୋକ। ସେଥିପାଇଁ କହୁଛି ମୁଁ ଭଦ୍ରଭାବରେ ଜୀବନ ନେବି। ଏତେ ଚେଷ୍ଟା କଲି, ଚାକିରି ଖଣ୍ଡେ ମିଳିଲା ନାହିଁ। ସୁପାରିସ୍ ଜୋର୍ ମୋର ନାହିଁ, କପାଳର ବି ଜୋର୍ ନାହିଁ। ଚାକିରି ମିଳିବ କୁଆଡୁ ? ଏଇ ଘରେ- ଶୁଣୁଛନ୍ତି ଆଜ୍ଞା, ବର୍ଷ ବର୍ଷ କଟାଇଦେଇଛି, ଖାଉଛି ପିଉଛି; ଏମାନଙ୍କର ଗଳଗ୍ରହ ହୋଇଛି। ଆଉ କେତେ କାଳ ଏମିତି ନିର୍ଲ୍ଲଜ୍ଜ ଭାବରେ ଚଳିବି ? ତେଣୁ ମୁଁ କହୁଥିଲି......"

"ମାମୁ"..... ସରିତା ଚିତ୍କାର କଲା। ତା'ର ଅଧର ଥରିଗଲା।

ସରିତା ମୋ ପାଖେ ଆଉ ଗୋଟିଏ ଆସନରେ ବସିଯାଇ ମୋ ମନର ବିବ୍ରତ ଭାବକୁ ସ୍ନିଗ୍ଧ କରିବାକୁ ପ୍ରୟାସ କଲା।

ମୋ ଆଗରେ ସେଇ ଆଲୋକ ଥିରି ଥିରି ଦୀପ୍ତି ଝରାଉଛି। ଦଶବର୍ଷର ପଙ୍ଗୁ କିଶୋର ବାଳକ ଘୁଷୁରି ଘୁଷୁରି ଚାଲିଗଲା। ଅଣ୍ଟାଠାରୁ ପାଦଯାଏ ନିର୍ଜୀବ ନିରାସକ୍ତ ଶୁଷ୍କ ମେଦାସ୍ଥି ମାଂସ।

ଆଉ ସେଇ ଜ୍ୟୋତି ତଳେ ଏଇ ମାମୁ-ରୂପକ ଜୀବ...... ବେକାରର ଆତ୍ମପୀଡ଼ନ ଭାଷା ଓ ଭ୍ରାନ୍ତି।

ସରିତା କହିଲା ଅଧରରେ ହସ ଟାଣି, "ଆପଣ କିଛି ଭାବନ୍ତୁ ନାହିଁ। ମାମୁଙ୍କର ଆବ୍‌ନରମାଲିଟି ପ୍ରାୟ ଏମିତି ରହିଛି। ଅବଶ୍ୟ ସେ ଚାକିରି ପାଉନାହାନ୍ତି; ତା ବୋଲି ଯେତେକ ଅଲକ୍ଷଣା କଥା......ମାନେ....."

ମୁଁ ସ୍ତବ୍ଧ। ମୋ ମୁହଁ ଉପରେ ଆଲୋକିତ ଅଂଶରେ ସରିତା ବୋଧହୁଏ କିଛି ଅଙ୍କନ ଖୋଜୁଥିଲା। କିଛି ଅଙ୍କନ ସେ ଦେଖିଥିଲେ ବିଚାରି ଆଶ୍ୱସ୍ତ ହୋଇଥାନ୍ତା; ମାତ୍ର ମୁଁ ନିରନ୍ଧ୍ର ଘନ ଏକ ପାଷାଣ ମୂର୍ତ୍ତି; ପ୍ରକାଶର ତରଙ୍ଗ ସେଠି ଆସିବ କୁଆଡୁ ?

କ୍ରମେ ସହଜ ଭାବ ଧରିଲି। ସରିତାକୁ ଚାହିଁଲି। ସ୍ୱାଭାବିକ, ସହଜ ସରିତା ସୁନ୍ଦରୀ ପର୍ଯ୍ୟାୟରେ ପଡ଼ିବ ନାହିଁ; ମାତ୍ର ତା'ର ବ୍ୟକ୍ତିତ୍ୱରେ ପାଛୋଟି ଆଣି ପୁଣି ନିରାସକ୍ତଭାବରେ ଫେରାଇଦେବାର ଗୋଟାଏ ଅବ୍ୟକ୍ତ ମାଧୁରୀ ଦେଖିଲି।

ଜଣେ କିଏ ଦୂରରୁ ପାଟିକରି ଆସିଲା- "କମଳି ଅପା, ଗାଈଟାକୁ ବିକ୍ରି କରିଦେଲି। ଓଃ, ବାବାରେ..... ଏତେ ଦିନେ ଗରାଖଟାଏ ଜୁଟିଲା। ନିଅ ରଖ ସତୁରୀ ଟଙ୍କା। ବାଛୁରୀଟାକୁ ବି ନେଲା।

ନେଉ, ଜଞ୍ଜାଳ ତୁଟିଲା, ସଙ୍ଗେ ବି' ଟଙ୍କା ହାତକୁ ଆସିଲା। ଯାଏଁ, ଏକ୍‌ସପ୍ରେସ ବେଳ ହେଲା।"

କମଳି ଅପା କିଏସେ ମୁଁ ଜାଣେନି। ସରିତା ଉଠିଗଲା। ଲୋକଟାକୁ ଚାହିଁ ଦେଖିଲି ରେଳ ଖଲାସୀ ଶ୍ରେଣୀର ଲୋକ। କଳାକନା ଚାଦର ମୁଣ୍ଡରେ ଠେକା କରିଛି।

ସରିତା ଫେରିଆସିଲା। ମୁହଁରେ ତା'ର ଟିକିଏ କେମିତି ତୃପ୍ତିର ଆଭା ଖେଳିଗଲା।

କହିଲା- "ଆମରି ଗାଈ ବିକିବାକୁ ପଡ଼ିଲା; କିନ୍ତୁ ଏଇସବୁ ଦୃଶ୍ୟ ଯେ ଆଜି ଏଇ ମୁହୂର୍ତ୍ତରେ ଆପଣଙ୍କ ଆଖିରେ ପଡ଼ିବ, ମୁଁ ଜାଣି ନ ଥିଲି। ମାମୁ, ଗୋପାଳ, ଆଉ ଏ ଗାଈବିକା।

ଟିକିଏ ପରେ ସେ ଆତ୍ମଚିନ୍ତନ କରି କହିଲା- "ଗାଈଟାର ବି ଆବ୍‌ନରମାଲିଟି ଥିଲା। ଓଲେଇ, କାନ୍ଥବାଡ଼ ଡେଇଁ ଏଣେତେଣେ ପଶେ, ତେବେ ବାନ୍ଧି ରଖିଥିଲେ. ରହିଥାନ୍ତା- ଛାଡ଼ନ୍ତୁ।"

– ସରି, ଇମିତି କଅଣ ଗପୁଥିବୁ? ସେତେବେଳୁ ପୁଅ ବସିଛନ୍ତି, ମୁହଁ ଧୋଇବାକୁ କହ।

ସବୁ ଜନନୀଙ୍କର ଏଇ ଅମୃତୋପମ ଭାଷା। ଏଇ ବୋଧହୁଏ ସରିତାର ମାଆ। ମୁଁ ଅଦୃଶ୍ୟ ରମଣୀର ମୂର୍ତ୍ତିକୁ ନମସ୍କାର କଲି।

ସରିତା ନେଇଆସିଲା ଗୋଟାଏ ଭରା ପ୍ଲେଟ୍‌। ପ୍ଲେଟ୍‌ ସାଙ୍ଗେ ଘୁଷୁରି ଘୁଷୁରି ଆସିଲା ଗୋପାଳ। ମୁଁ ଆନନ୍ଦରେ ପ୍ଲେଟ୍‌ରୁ ଗୋଟିଏ ମିଠା ଗୋପାଳକୁ ଖୁଆଇଦେଲି।

କାଶର ଲହରୀ ପୁଣି ତେଜି ଉଠିଲା। ଯନ୍ତ୍ରଣାଦାୟକ କାତରୋକ୍ତି 'ମାଆ ସରି।' ମୁଁ ପଚାରିଲି- 'କିଏ?' ସରିତା କହିଲା– "ବାପାଙ୍କର ବୋଉ, ବହୁ ଦିନରୁ ରୋଗରେ ପଡ଼ିଛନ୍ତି- ଉଠିବସି ପାରନ୍ତି ନି।"

ଖାଇବାର ସ୍ପୃହା ନ ଥିଲା। ମୁଁ ଫେରନ୍ତା ପଥ ଧରିଲି।

ସେଇ ଗବାକ୍ଷ ତଳେ ଆଲୋକଟି ଜଳୁଥିଲା। ସରିତା ସରୁ ପଥ ଉପରେ ମୋ ପାଖେ ପାଖେ ଚାଲୁଥାଏ। ଥରେ ଛିଡ଼ା ହୋଇ ଯାଇ ପଚାରିଲା......

– "ଆଉ କେବେ ଆସିବେ?"

ମୁଁ ନିରାସକ୍ତ ଭାବରେ କହିଲି- "ଆସିବି।"

– "ମୁଁ ଯେ କିଛି ଆପଣଙ୍କ ସଙ୍ଗେ କଥାବାର୍ତ୍ତା କରିନି।"

ମୁଁ କହିଲି- "ଆସିବି ଆଉ ଥରେ।"

× × ×

କିଛିଦିନ ବିତିଯାଇଛି। ଘନ ନୀଳ ଆଶ୍ୱିନ ଦେଖାଦେଇଛି ଗଗନପଥରେ। ଖଣ୍ଡେ ଖଣ୍ଡେ ବାଦଲ ଭାସିଯାଉଛି।

ଧରିଲି ସେଇ ଚିହ୍ନାପଥ। ସେଇ ଆଲୋକ। ସରିତା ପ୍ରଥମ ଥର ଭଳି ପ୍ରତୀକ୍ଷା କରି ନ ଥିଲା। ସେଇ ଘରେ ବସିଲି।

ସରିତାର ଦେଖା ନାହିଁ। ଦୁଇ ଖଣ୍ଡ ବହି ପଡ଼ିରହିଛି ଟେବୁଲ ଉପରେ।

ଅବଗୁଣ୍ଠନବତି ଜଣେ ପ୍ରୌଢ଼ା ଭଦ୍ରମହିଳା ଆସିଲେ ଘର ଭିତରକୁ। ମୁଁ ତାଙ୍କୁ ପ୍ରଣାମ କଲି। ସେ ବୋଧହୁଏ ସରିତାର ମାଆ।

ସେ କହିଲେ–

–"ସରିତା ଯାଇଛି ଟିଉସନ୍ କରିବାକୁ। ଏଇକ୍ଷଣି ପହଞ୍ଚିଯିବ। ବସ।"

ସରିତା ଯେ ଟିଉସନ୍ କରେ ମୁଁ ଜାଣି ନ ଥିଲି। ମୋର ପ୍ରଥମ ଥର ଆସିବା ପରେ ବୋଧହୁଏ ସେ ଟିଉସନ୍ ଧରିଛି। ମନଟା ଉଦାସ ହୋଇଗଲା। ସରିତା ତାହାହେଲେ ଏ କଥା ମତେ ଲୁଚେଇଛି। କି ଦୁଃଖରେ ଏ ଟିଉସନ?

କାନ୍ଥବାଡ଼ ଦରାଣ୍ଡି ଦରାଣ୍ଡି ଗୋଟିଏ ନାରୀ ସେଇ ଘର ଭିତରକୁ ପଶି ଆସିଲେ। ସରିତାର ମାଆ ତାଙ୍କୁ ଧରିପକାଇ କହିଲେ–

"ତମେ ପଡ଼ିଯିବ, ତମେ ଏଠିକି କାହିଁକି ଆସିଲ? ହଉ, ଆସିଲ ଯଦି ବସ।"

ଏ କିଏ? ଚାହିଁ ଦେଖିଲି ଏକ ଯୁବତୀ। ଅଙ୍ଗର ସୌଷ୍ଠବ ଅନିନ୍ଦ୍ୟ। ମାତ୍ର ଏ କ'ଣ? ଦୁଇଟିଯାକ ଆଖି ଅନ୍ଧ।

ଅନ୍ଧ ତରୁଣୀ ଚଉକି ବାଡ଼ ଅଣ୍ଡାଳି ବସିପଡ଼ିଲେ। ସୁଗଠିତ କାନ୍ତି; କେବଳ ନେତ୍ରଦୁଇଟି ବ୍ୟତୀତ ପ୍ରତ୍ୟେକଟି ଅଙ୍ଗ ନିଟୋଳ। ଝଲମଲ ଯୌବନକାନ୍ତି ପରିପୂର୍ଣ୍ଣତାରେ ଯେମିତି ଅସ୍ଥିର।

ସେ ପ୍ରୌଢ଼ା ମହିଳା ମତେ ଇଙ୍ଗିତରେ ବୁଝାଇଲେ– "ମୋ ନଣନ୍ଦ, ଅନ୍ଧ। ଏବେ ଆସିଛନ୍ତି, ଏଇଠି ରହିବେ।" ମୁଁ ବସିରହିଲି ସରିତାର ପଥକୁ ଚାହିଁ। ସରିତାର ମାଆ ଅନ୍ୟ ଘରକୁ ଚାଲିଗଲେ।

ଏଇ ଅନ୍ଧୁଣୀ ଯୁବତୀଟି ବସି ରହିଲେ। ସମସ୍ତ ପରିମଣ୍ଡଳଟି ମତେ ଦୁର୍ବହ ବୋଧ ହେଲା। ଏ ଆବାସ କଅଣ ତେବେ ସର୍ବମୟ ପୀଡ଼ାର ଗୋଟାଏ ଅଭିଶପ୍ତ ସ୍ଥଳ?

ଘୁଷୁରି ଘୁଷୁରି ଆସିଲା ଗୋପାଳ। ଚାହାଣିରେ ତା'ର ମୋ ପ୍ରତି ସ୍ନେହକମ୍ପନ; ମାତ୍ର ମୁଁ ଅନ୍ୟମନସ୍କ ରହିଥାଏ। କାହିଁ ଏପର୍ଯ୍ୟନ୍ତ ସରିତା ଫେରିଲା ନାହିଁ? ମୁଁ ଚଞ୍ଚଳ ହୋଇଉଠିଲି।

ଚକ୍ଷୁହୀନାର ବୋଧଶକ୍ତିରେ ମୋର ଚଞ୍ଚଳତା ବୋଧହୁଏ ଧରାପଡ଼ି ଯାଇଥିଲା। ସେ କହିଲେ– "ଆପଣଙ୍କୁ ସରିତା ଭାରି ଶ୍ରଦ୍ଧା କରେ; କିନ୍ତୁ ମୁହଁ ଖୋଲି କିଛି କହିପାରେନି।"

ଆଶ୍ଚର୍ଯ୍ୟ ହେଲି। ବାହାରେ ଘନ ତମିସ୍ରା। ତା'ରି ଭିତରେ ଆଲୋକଦୀପ୍ତ ଅଦୂର ଷ୍ଟେସନ ପ୍ଲାଟଫର୍ମ। କେତେ ଲୋକଙ୍କର ଗମନାଗମନ। କିଏ ଦୂରକୁ ଯାଉଛି, କିଏ ପାଖକୁ ଆସୁଛି। ମିଳନ ବିରହର ଏ ସନାତନ ଦୃଶ୍ୟ...... ସେଇଆଡ଼େ ଚାହିଁ ରହିଲି।

ଉତ୍ସାହ, ପ୍ରୀତି ଓ ସଂଘର୍ଷକୁ ଭ୍ରୂକ୍ଷେପ ନ କରୁଥିବା ଭଙ୍ଗୀ ଘେନି ପଶି ଆସିଲା ସରିତା। ମତେ ଦେଖି ସେ ତଟସ୍ଥ ରହିଗଲା।

– "ଆପଣ?"

– "ହଁ ସରିତା, ମୁଁ କେତେବେଳୁ ଆସିଛି। କହିଥିଲି ଆସିବାକୁ। ୟାଙ୍କ ସାଙ୍ଗରେ ଦୁଇପଦ କଥାବାର୍ତ୍ତା ହୋଇଛି।"

ଅଲକ୍ଷ୍ୟରେ ଦେଖିନେଲା ସରିତା– ମୋର ଜାଣିବାରେ ଆଉ କିଛି ବାକୀ ନାହିଁ। ମୁଁ କହିଲି– "ସରିତା, ତମେ ନିଜେ ପଢ଼ି ଟିଉସନ୍ କରୁଛ! ଭଲ ପଢ଼ି ପାରିବ ତ?"

ଅଧୋବଦନା ସରିତାକୁ ଚାହିଁଲି; ସେ ଝାଉଁଳି ପଡ଼ିଛି। ବୁଝିଲି ସେ କାହିଁକି ତା'ର ଟିଉସନ୍ କରିବା କଥା ମୋ ପାଖରେ ଗୋପନ ରଖିଛି।

କଥାର ମୋଡ଼ ଫେରାଇ ମୁଁ ଆରମ୍ଭ କଲି- "ଦେଖ ସରିତା, ଲାଜ କଥା ନୁହେଁ, ଟିଉସନ କରି କିଛି ଅର୍ଥ ଉପାର୍ଜନ କରିବା ଭଲ କଥା; ମାତ୍ର...."

ଅନ୍ୟ ଘରୁ ଚିତ୍କାର ଶୁଣିଲି...." କେହି କଅଣ ଡାକ୍ତର ଡାକିବ ନାହିଁ? ମୁଁ ଏମିତି ମରିଯିବି? ମୁଁ ମରିବାକୁ ଭୟ କରୁଛି। ସରିତା, ଡାକ୍ତର ଡାକି ଆଣିଲୁ?"

ଏ ସେଇ ମାମୁ। ଜ୍ୱରରେ ବିଶେଷ କଷ୍ଟ ପାଉଛନ୍ତି। ଏ ଦୁଃଖାର୍ଣ୍ଣବ ଭିତରେ ସରିତା ବୋଧହୁଏ ଏକମାତ୍ର ନୌକା ଆରୋହିଣୀ।

ସରିତା ନିବେଦନ କଲା- "ଆଜି ବସିପାରୁନି। ମାମୁ ଜରରେ ପଡ଼ିଛନ୍ତି। ଡାକ୍ତର ପାଖକୁ ଯିବି। ଚାଲ କାଦମ୍ବରୀ, ତମକୁ ସେ ଘରେ ପହଞ୍ଚାଇଦିଏ।"

ଦେଖିଲି ସରିତା ଧୀରେ ଅନ୍ଧ ତରୁଣୀ କାଦମ୍ବରୀକୁ କୋଳକରି ଘେନିଗଲା ଅନ୍ୟ ଘରକୁ।

ମୋ ମନ ଅନାବନା ଭାବରେ ଭରିଗଲା

ଟିଉସନ.........

ଡାକ୍ତରଖାନା........

ଘରେ ରୋଗୀ ଶଯ୍ୟାଶାୟିନୀ ବୃଦ୍ଧା।

ଅନ୍ଧ ତରୁଣୀ।

କାଶର ଲହରୀ ପ୍ରବଳ। ସେ ଜୀର୍ଣ୍ଣା ମହିଳା ଡାକ ଦେଲେ "ମାଆ ସରି କୁଆଡ଼େ ଗଲୁ?"

ସରିତା ଫେରିଆସିଲା। ମୁଁ ଉଠି ଛିଡ଼ାହେଲି। ମୁଁ ବାହୁଡ଼ିଯିବା ପୂର୍ବରୁ ମୋର ଗୋଟିଏ ମାତ୍ର ପ୍ରଶ୍ନ ଥିଲା ସରିତା ପ୍ରତି......

– "ଦୁଇଥର ଆସିଲି, ତମ ବାପାଙ୍କୁ ତ ଦେଖିଲି ନାହିଁ। ତାଙ୍କ ସଙ୍ଗେ ପରିଚୟ ବି ହେଲାନି।"

ସରିତାର ଓଷ୍ଠାଗ୍ରରେ କମ୍ପନ ଲକ୍ଷ୍ୟ କଲି, ଯେପରି ଏକ ହୃଦ୍‌ଗତ କୋହକୁ ସେ ପ୍ରାଣବିକଳରେ ଚାପି ଦେଇଛି।

ମର୍ମାନ୍ତିକ ଏ ଅନୁଭବକୁ ମୁଁ ଶୁଷ୍କ ଆଖିରେ ବରଣ କରି ପାରିଲି ନାହିଁ। ମୋର ନେତ୍ର ଅଶ୍ରୁସିକ୍ତ ହୋଇଉଠିଲା।

ସରିତା କହିଲା- "ବାପା ଏକ୍‌ସପ୍ରେସ ଟ୍ରେନ୍‌ର ସ୍ଲିପିଂ କୋଚ୍‌ର ଟିକେଟ କଲେକ୍‌ଟର.... ରାତ୍ରିଟା ସେ ଚଳନ୍ତା ଟ୍ରେନ୍‌ରେ କଟାଇ ଦିଅନ୍ତି......ଏଣେ ସଂସାର ସର୍ବପ୍ରକାରେ ଅଚଳ। ଚାଲନ୍ତୁ, ମୁଁ ଛାଡ଼ିଦେଇ ଆସେ; ବାଟ ଅନ୍ଧାର।"

ସତେ, ପଥ ଉପରେ ଯେତେ ଅନ୍ଧାର ଥିଲା, ମୁଁ ସେ ଗବାକ୍ଷତଳ ଆଲୋକରୁ ବାହାରି ଆସିବା ପରେ ତାହା ଆହୁରି ଘନ ହୋଇଗଲା।

ତିମିରର ଏକ ମହାପ୍ରଲେପ ଭିତରେ ମୁଁ ଆତ୍ମ ବିସର୍ଜନ କଲି।

ସରିତା ଫେରି ଚାହିଁ କହିଲା- ନମସ୍କାର.....

ମୁଁ ଆତ୍ମସଂବରଣ କରି କହିଲି- ନମସ୍କାର.....

× × ×

ପିଲାଏ ଭଲ ସାଂସ୍କୃତିକ ଉତ୍ସବ କଲେ ବୋଲି ମୋ ମନ ଭାରି ଖୁସି। କାହିଁ ମୁହଁ- ଚୋରା ଓଡ଼ିଶାର ପୁଅଝିଅ, କାହିଁ ପ୍ରଖ୍ୟାତ କଲିକତା ସହରର ରଙ୍ଗମଞ୍ଚ।

ସାବାସ୍ ପୁଅ ଝିଅ, ଚହଳ ପକେଇଦେଲେ। ଓଡ଼ିଶାର କଳା, ସଂସ୍କୃତିକୁ ଏ ସହରରେ ଲୋକେ ବୁଝିଲେ, ସାଧୁବାଦ ଦେଲେ।

ଗୁଡ଼ାଏ ପୁଅଝିଅଙ୍କୁ ଏକାଠି କରି ନେଇ ଆଣିବା ଯେ କି କଷ୍ଟକର କଥା, ତାହା ଅଙ୍ଗେ ଲିଭେଇଲି। ଆଉ ବାବା ନାହିଁ, ଏତିକି। ମନଟା ହାଲୁକା ଥାଏ।

ସେମାନଙ୍କୁ କହିଲି ଆଉ ଦୁଇଦିନ ରହି କଲିକତା ସହର ବୁଲି ଦେଖିବାକୁ।

ମୁଁ କଲିକତା ଛାଡ଼ିବାପାଇଁ ଷ୍ଟେସନକୁ ଆସିଲି।

ଲୋକାରଣ୍ୟ ଷ୍ଟେସନ। ଅତି କଷ୍ଟରେ ବସିବା ସ୍ଥାନଟିଏ ପାଇଁ ରିଜର୍ଭ କଲି ସ୍ଲିପିଂ କୋଚ୍‌ରେ।

ଏକ୍‌ସପ୍ରେସ୍ ଟ୍ରେନ୍- ଆମର ଅତି ପରିଚିତ। ସକାଳୁ ସକାଳୁ ଆମକୁ ପହଞ୍ଚାଇ ଦିଏ ଆମ ସହରରେ।

ସେ ଟ୍ରେନ୍‌ର ସ୍ଲିପିଂ କୋଚ୍‌କୁ ଉଠିଗଲି।

ଷ୍ଟେସନ୍‌ଟି ରୋମାଣ୍ଟିକ୍ ଭାବରାଜିରେ ଗଭୀର। କେତେ ବେଦନା, କେତେ ଅଶ୍ରୁ ଝରିଯାଉଥାଏ ପ୍ଲାଟ୍‌ଫର୍ମ ଉପରେ। ନମସ୍କାର, ଆଲିଙ୍ଗନ, ଅର୍ଥପର୍ଣ୍ଣ ଦୃଷ୍ଟି- କେତେ କଅଣ ବିନିମୟରେ; ମୁଁ କିନ୍ତୁ ରହିଗଲି ନିଃସଙ୍ଗ।

ଟ୍ରେନ୍ ଛାଡ଼ିଦେଲା।

ଟିକେଟ୍ କଲେକ୍‌ଟର ଆସିଲେ। ଅଙ୍ଗାବରଣ ସେଇ ପରିଚିତ କଳା ପୋଷାକ ଓ କଳା ଟୋପି। ବଡ଼ ଗମ୍ଭୀର ଭଦ୍ରଲୋକ।

ଟିକେଟ୍ ଦେଲି। ମୋ ଆଖିରେ ବୋଧହୁଏ କିଛି ଅନୁନୟ ସେ ଦେଖିପାରିଲେ, କହିଲେ......

-ଆପଣ ସିଟ୍ ରିଜର୍ଭ କରିଛନ୍ତି, ନଅ ନମ୍ବର; କିନ୍ତୁ ଦୁଇଜଣ ଯାତ୍ରୀଙ୍କ ଭିତରେ ସାରା ରାତି ଖୁନ୍ଦିହୋଇ ବସିକରି ଯିବେ। ତା ଅପେକ୍ଷା ବରଂ.......

ମୁଁ ଆଶ୍ୱସ୍ତ ହେଲି, ଭଦ୍ରଲୋକ ଓଡ଼ିଆ। କହିଲି- ବରଂ.....

– ବରଂ ଆପଣ ଅପେକ୍ଷା କରନ୍ତୁ। ଆପଣଙ୍କ ପାଇଁ ଯଦି ଗୋଟାଏ ଶୋଇବା ବର୍ଥ ମୁଁ ଖୋଜି ଦେଇପାରେ......

'ୟା ଆଲ୍ଲା' କହି ମୁଁ ନିଜକୁ ସମ୍ଭାଳି ନେଲି।

– କିଛି ସାମାନ ଅଛି କି ?

ମୁଁ କହିଲି- ନାଁ...

– ତେବେ ଚିନ୍ତା ନାହିଁ।

ଏ ଯେ ଦେବଦୂତ ! ସବୁବେଳେ ଫଁ ଫଁ ହେଉଥିବା କଠୋର-କଠିଣ ଜଣେ ଇଣ୍ଡିଆନ୍ ଟିକେଟ୍ କଲେକ୍‌ଟର ପରିବର୍ତ୍ତେ ମୁଁ ଯେ ସତ୍ୟ ଏକ ଦେବଦୂତଙ୍କୁ ସଂଦର୍ଶନ କରୁଛି।

ନଅ ନମ୍ବର ସିଟ୍‌ରେ ଆପାତତଃ ବସିରହିଲି।

ଟ୍ରେନ୍ ଖଡ଼ଗପୁର ଷ୍ଟେସନ୍ ଛାଡ଼ିଦେଲା। ଆଖି ଦୁଇଟି କ୍ଲାନ୍ତ ଓ କିଛିଦିନ ଯାବତ୍ ଅନିୟମ ଯୋଗୁଁ

ଅବଶତାରେ ମୁଦି ହୋଇ ଆସୁଥାଏ; ମାତ୍ର ଦୁଇ ବିପୁଳକାୟ ମାରୁଆଡ଼ିଙ୍କର ମୃଦୁ ଅଙ୍ଗ ମଡ଼ାମଡ଼ିରେ ମୁଁ ମଧ୍ୟସ୍ଥଳରେ ରହି ଈଶ୍ୱରଙ୍କୁ ଡାକୁଥାଏ- 'ତ୍ରାହି ମଧୁସୂଦନମ୍ !'

ମୋ ଆଗରେ ସେଇ ଦେବଦୂତ ଉଭା ହୋଇ ମତେ ସଙ୍କେତ ଦେଲେ, ତାଙ୍କ ପଛରେ ଯିବାପାଇଁ; କହିଲେ—

"ଚଉଦ ନମ୍ବର ଅପର ବର୍ଥ ଫାଙ୍କା ଅଛି, ଶୋଇପଡ଼ନ୍ତୁ। ପାହାନ୍ତାରେ ଦେଖା- ସାକ୍ଷାତ୍। ହଁ, ଶୋଇବା ପୂର୍ବରୁ ଟିକେଟ୍ ଭଡ଼ାଟା, ମାନେ ଏଇ ସ୍ଲିପିଂ ସୁବିଧା ପାଇଁ ଦେଇ ଦିଅନ୍ତୁ। ମୁଁ ସକାଳେ ଟିକେଟ୍ କାଟିଦେବି।

ମୁଁ ପରମ ପରିତୋଷ ସହକାରେ ବର୍ଥ ଉପରକୁ ଉଠିଗଲି।

ଟିକେଟ୍ କଲେକ୍ଟର ମୋ ମୁହଁକୁ ଚାହିଁ ହସିଲେ। ଏଇ ଆଦର୍ଶ ଓ ପରୋପକାରୀ କର୍ମଚାରୀଙ୍କୁ ନୀରବରେ ମୁଁ କୃତଜ୍ଞତା ଜଣାଇଲି।

ପ୍ରାଭାତିକ ଅରୁଣିମାରେ ଦିଗନ୍ତ ଉଜଳି ଉଠିଲା। ଜଣେ ବୈଷ୍ଣବ ଯାତ୍ରୀ ଭଜନ ଗାନ କଲେ। ଟ୍ରେନ୍‌ର ଗତି ପ୍ରଖର ଥିଲା।

ମୁଁ ଚାହିଁ ଦେଖିଲି ଦୂରଦିଗନ୍ତକୁ। ବର୍ଥରୁ ଓହ୍ଲାଇ ଆସି ଗବାକ୍ଷ ନିକଟରେ ବସି ବିଶ୍ୱଦେବତାଙ୍କର ଅପୂର୍ବ ସୃଷ୍ଟିକୁ ନିରୀକ୍ଷଣ କଲି।

କେତେ ଶ୍ୟାମ ଧାନ୍ୟ-ଶୀର୍ଷ ପ୍ରାନ୍ତର- କେତେ ପଲ୍ଲୀ, କେତେ ଧେନୁପଲ, କେତେ ଶାନ୍ତ ଶ୍ରୀମଣ୍ଡିତ...

— ଶୁଣନ୍ତୁ।

— ଓ, ଆପଣ, ତିନି ଟଙ୍କା ପଞ୍ଚସ୍ତରୀ ପଇସା ତ ଭଡ଼ା... ଟିକେଟ୍ କାଟି ଦିଅନ୍ତୁ। ଷ୍ଟେସନରେ ଓହ୍ଲାଇଲାବେଳେ ଦରକାର ହେବ। ଆପଣଙ୍କୁ ଅଶେଷ ଧନ୍ୟବାଦ। କାଲି ରାତ୍ରରେ ମୁଁ ତ ଟଙ୍କା ଦେଇଛି !

— ହଁ ଦେଇଛନ୍ତି।

— ବେଶ୍ ଟିକେଟ୍ କାଟନ୍ତୁ।

ଟିକେଟ୍ କଲେକ୍‌ଟ୍‌ର ମୋ ଆଗରେ ଛିଡ଼ାହୋଇ ଦୁଇଥର ଢୋକ ଗିଳି ଗୋଟାଏ ବିଷଣ୍ଣତାର ଚାହାଣି ଢାଳି କହିଲେ...

— ଆପଣ ତ ବସିବା ପାଇଁ ରିଜର୍ଭ ସିଟ୍ କରି ଆଣିଛନ୍ତି ?

ମୁଁ କହିଲି- ହଁ......

— ସେଇଟାକୁ ଦେଖାଇ ଦେଲେ ଆପଣ ଷ୍ଟେସନରେ ଛାଡ଼ ପାଇଯିବେ।

— କିନ୍ତୁ ମୁଁ ଯେ ଅଧିକା ଟଙ୍କା ଦେଲି ?

ଟିକେଟ କଲେକ୍‌ଟରଙ୍କ ମୁହଁରେ ବିଭୀଷିକାର ଛାୟା। ତଥାପି ବୋଧହୁଏ ଅଭ୍ୟାସବଶରୁ ଟିକିଏ ସତେଜ ଭାବ ଦେଖାଇ କହିଲେ.....

— ଏଇ ଦେଖନ୍ତୁ, ମିଛରେ ଆଉ ଟିକେଟ୍ କାଟିବେ କାହିଁକି। ମୁଁ ବରଂ ସେ ତିନି ଟଙ୍କା ପଞ୍ଚସ୍ତରୀ ପଇସାରୁ ପଞ୍ଚସ୍ତରୀ ପଇସା ଫେରାଇ ଦେଉଛି !

ସେ କହିଲେ-ଅର୍ଥ ଆଉ କଅଣ ? ଆପଣ ତ ଶୋଇକରି ଆସିଛନ୍ତି ଆରାମରେ...

ମୁଁ ବୁଝିଗଲି। ମୁଁ ସହସା ଚିତ୍କାର କଲି- "ତା ମାନେ ଆପଣ ତିନୋଟି ଟଙ୍କା ଆତ୍ମସାତ୍; ଏ ଦୁର୍ନୀତି.....ଦୁର୍ନୀତି....."

ପାହାନ୍ତି ନିଦରେ ଘାରି ହୋଇ ଯାଇଥିବା କେତେ ଜଣ ଯାତ୍ରୀ ମୋ ଚିତ୍କାରରେ ଉଠିପଡ଼ିଲେ....। ବ୍ୟାପାରଟା ସେମାନଙ୍କୁ ବୁଝିବା ପାଇଁ ବିଳମ୍ବ ହେଲା ନାହିଁ; ଯେମିତି ଏଇଟା ତାଙ୍କର ଅତି ପରିଚିତ ଦୃଶ୍ୟ।

ଜଣେ କେହି କହିଲେ- "ଓ ମଶାଏ, ସାହୁ ବାବୁ ଟିକେଟ୍ କଲେକ୍ଟର, ଓନାର ଏଟା ପେଶା- ଛେଡ଼େଦିନ୍ ମଶାଏ, କତଟା ବା ଟାକା.... ବେଚାରା ବଡ଼ ଅଭାବଗ୍ରସ୍ତ..... ଆପନି ଚଲେଯାନ୍....ଓ ହମେସାଇ ହଏ....।"

ମୋ ଭିତରର ଗୋଟାଏ ନୀତିବୋଧ ମତେ ପାଗଳ କରିଦେଇଥାଏ। ସାହୁବାବୁ? ଅଭାବଗ୍ରସ୍ତ? ମାତ୍ର ଏ ଯେ ଅନ୍ୟାୟ! ନୀରବରେ ଅନ୍ୟାୟକୁ ମଥା ପୋତିଦେବା ଆହୁରି ସାଂଘାତିକ ଅନ୍ୟାୟ!

ଟିକେଟ କଲେକ୍ଟର ବାଥ୍ରୁମ୍ ଭିତରେ ସେତେବେଳକୁ ପଶିଯାଇଥିଲେ।

ବ୍ୟାଗରୁ ଖଣ୍ଡେ କାଗଜ କାଢ଼ି ମୁଁ ଲେଖିବସିଲି, ଏଇ ଦୁର୍ନୀତିପରାୟଣ ରେଲୱେ କର୍ମଚାରୀ ବିରୁଦ୍ଧରେ ଅଭିଯୋଗ। ଏଭଳି କର୍ମଚାରୀଙ୍କୁ ତୁରନ୍ତ କାର୍ଯ୍ୟରୁ ବରଖାସ୍ତ କରିବାକୁ ମୁଁ ପ୍ରାର୍ଥନା କଲି ମୋ ଦରଖାସ୍ତରେ।

ଖୋରଧାରୋଡ଼ ଷ୍ଟେସନ... ବେଶ୍ ଖରା ପଡ଼ିଆସିଛି। ମୁଁ ପ୍ରସ୍ତୁତ ହୋଇଗଲି ପୋଲିସ୍ ଷ୍ଟେସନ୍‌କୁ ଯିବାପାଇଁ। ଅନ୍ତର ଭିତରେ ଆହ୍ଲାଦର ବେଗ ମୁଁ ଅନୁଭବ କରୁଥାଏ, କିଛି ଗୋଟିଏ ବିହିତ କାର୍ଯ୍ୟ କରୁଛି ବୋଲି।

ହଠାତ୍ କେଉଁଠୁ ଆସି ମୋ ବାଟ ଓଗାଳି ଛିଡ଼ା ହୋଇଗଲେ ସେଇ ମିଷ୍ଟର ସାହୁ ଟିକେଟ୍ କଲେକ୍ଟର। ଧୀରେ ହସି ସେ କହିଲେ-

"ଆପଣ ଖୁବ୍ ରାଗିଯାଇଛନ୍ତି ନାଁ? ଚାଲନ୍ତୁ ଭିତରକୁ ସେଇ କଣ ସିଟ୍‌କୁ, ଟିକିଏ ଆଳାପ କରିବା। ଏଠି ମୁହଁ ଧୋଇବେନି? ଚାହା ମଗାଇ ଦେଉଛି..."

ମୁଁ କ୍ରୋଧରେ ଫେରିଆସିଲି ସେଇ କ'ଣ ସିଟ୍‌କୁ ଏବଂ କହିଲି...

– ଏ ଘୋର ଅନ୍ୟାୟ।

ଟିକେଟ୍ କଲେକ୍ଟରଙ୍କର ମୁହଁ ଶୁଷ୍କ, ପାଣ୍ଡୁର ବର୍ଣ୍ଣ। ସେ ହସ ଆଉ ନାହିଁ, ଯେଉଁ ହସରେ ସେ ଇଚ୍ଛା କରିଥିଲେ ମତେ ବଶୀଭୂତ କରି କଥାଟାକୁ ଲଘୁ କରିଦେବେ।

ସେ ଗୋଟିଏ ଟଙ୍କା ମୋ ହାତକୁ ବଢ଼ାଇଦେଲେ ଏବଂ ଧୀର କଣ୍ଠରେ କହିଲେ- "ଆଉ ଦୁଇଟି ଟଙ୍କା ମୁଁ ଭିକ୍ଷା ମାଗି ନେଉଛି।"

ଭିକ୍ଷା? ମୁଁ ସ୍ତବ୍ଧ ହୋଇଗଲି।

ମୁଁ ପୁଣି ଦୃଢ଼କଣ୍ଠରେ- କହିଲି- "ମିଷ୍ଟର ସାହୁ! ମୁଁ ଜଣେ ଗେଜେଟେଡ୍ ଅଫିସର। ଏଇ ରିପୋର୍ଟରେ ମୁଁ ଆପଣଙ୍କ ବିରୁଦ୍ଧରେ ଦୁର୍ନୀତିର ଅଭିଯୋଗ ଲେଖି ପୋଲିସ୍ ଷ୍ଟେସନକୁ ଯାଉଛି। ଏହାର ଫଳ କ'ଣ ହେବ ଆପଣ ଅନୁମାନ କରିପାରୁଛନ୍ତି କି?

ମୁଁ ରାଗରେ ଥରୁଥାଏ।

ପ୍ରୌଢ଼ ଟିକେଟ୍ କଲେକ୍ଟରର ଥକ୍କା ହୋଇ ବସିପଡ଼ିଲେ ମୋ ପାଖରେ..... ଜୀବନର ସମସ୍ତ କାଳିମା ତାଙ୍କର ଯିମିତି ଏଇ ମୁହୂର୍ତ୍ତରେ ତାଙ୍କ ମୁହଁ ଉପରେ ବୋଳି ହୋଇଗଲା।

ମୋ ହାତ ଦୁଇଟିକୁ ଧରି କହିଲେ- "ମୁଁ ବଡ଼ ଅଭାବଗ୍ରସ୍ତ ସାର୍.... ନିଅନ୍ତୁ ଆପଣଙ୍କ ଦୁଇଟି ଟଙ୍କା। ମତେ କ୍ଷମା କରିବେ।"

ସେତେବେଳକୁ ତାଙ୍କ ଆଖି ଦୁଇଟିରେ ଲୋତକ ଜମି ଆସିଥିଲା। ସେ ପୁଣି ଅନୁନୟ କରି କହିଲେ.. "ୟେସ୍, ପନିଶ୍ ମି (Yes, punish me)। ମାତ୍ର ଏଇ ଦୁଇଟି ଟଙ୍କାରୁ ମୁଁ ଆଠଅଣା ସଞ୍ଚୟ କରି ରଖିଥାନ୍ତି ମୋର ଅନ୍ଧ ଭଉଣୀର ଦୃଷ୍ଟି ଶକ୍ତି ଫେରାଇ ଆଣିବା ପାଇଁ; ଆଉ ଆଠଅଣା ବ୍ୟୟ କରିଥାନ୍ତି ବୁଢ଼ୀ ମାଆର କାଶ ଆଉ ଶ୍ୱାସ ବେମାରି ପାଇଁ ଔଷଧ କିଣିବାରେ; ଆଉ ଆଠଅଣାରେ ମୋର ପଙ୍ଗୁ ପୁଅକୁ ଆନନ୍ଦ ଦେବା ପାଇଁ କିଛି ଜିନିଷ କିଣି ଦେଇଥାନ୍ତି; ବାକୀ ଆଠଅଣାରେ...."

ମୁଁ ଗଦ୍ ଗଦ୍ କଣ୍ଠରେ ଅଶ୍ରୁସିକ୍ତ କୋହ ମିଶ୍ରିତ ଭାଷାରେ ପଚାରିଲି...

- "ଅବଶିଷ୍ଟ ଆଠଅଣାରେ କେତେଦୂର ଆପଣ ସରିତାର ବେକାର ମାମୁର ଭରଣପୋଷଣ କରିବେ ? ଆଉ ସେ ପଇସାର କେତେ ଅଂଶରେ ସରିତା ଯେ ନିଜକୁ ଅନ୍ୟର ଦ୍ୱାରରେ ବିକିଦେଇଛି- ଟିଉସନ କରୁଛି- କେତେ ମାତ୍ରାରେ ତାକୁ ଶାନ୍ତି ଦେବେ କହନ୍ତୁ ?"

ସେ ସ୍ତବ୍ଧ ବିସ୍ମୟରେ ମୋ ଆଡ଼କୁ ଚାହିଁ ରହିଗଲେ। ତାଙ୍କର ନେତ୍ର ପଲକହୀନ।

ମୋ ଆଖି ଜଳଭରା।

ତାଙ୍କ ଆଖି ବିସ୍ମୟ ଭୀତିରେ ପଥହରା। ଭୀତିମିଶ୍ରିତ କଣ୍ଠରେ ସେ କେବଳ କହିଲେ.....

- "ଆପଣ ?"

ବକୁଳବନ ଛାୟା ପାଖଦେଇ ଟ୍ରେନ୍ ଗତି କରୁଥାଏ ସେତେବେଳେ.... ସାକ୍ଷିଗୋପାଳ। ଏଇଠି ଦିନେ ମୂକ ସାକ୍ଷୀରୂପେ ଛିଡ଼ା ହୋଇଗଲେ ପ୍ରଭୁ ବଂଶୀଧର ଗୋଟାଏ ଦୁଃସ୍ଥ ବ୍ରାହ୍ମଣର ଭ୍ରାନ୍ତିବିଳାସ ଦେଖି।

ଭାନ୍ତି....ଭ୍ରାନ୍ତି....ଭ୍ରାନ୍ତି !

ସରିତାର ସେଇ ନିଷ୍ପାନିବିଷ୍ଟ ରୂପଟି ମୋର ଜଳସ୍ନାତ ନେତ୍ର ଦେଇ ଭାସି ଚାଲିଗଲା।

ମୁଁ ମର୍ମଦଗ୍ଧ ଓ ଆହତ ଅବସ୍ଥାରେ ସେଇ ଅବିଚାର ଓ ଅଭିଯୋଗର ରିପୋର୍ଟଟିକୁ ଚିରି ଚିରି କରି ଚିରି ସକାଳର ଶୀତଳ ପବନ ଭିତରକୁ ଉଡ଼ାଇଦେଲି।

ଭାବି ଆଶ୍ଚର୍ଯ୍ୟ ହେଲି ପର୍ବତ ଓ ପାହାଡ଼ ଭିନ୍ନ ଥିଲେ ବି ପର୍ବତର ନାମ ପାହାଡ଼। ଏ ସତ୍ୟ କଅଣ ସନାତନ ନୁହେଁ ?

■ ■ ■

# ପିତୃପୁରୁଷ ଜବାବ ଦିଅ

ମଝି ରାତିରେ ପଦ୍ମଚରଣଙ୍କର ନିଦ ଭାଙ୍ଗିଗଲା। ସେ ଦୁଃସ୍ୱପ୍ନ ଦେଖୁଥିଲେ। ପ୍ରଦୀପ ଜଳେଇଲେ। ମୁହଁରେ ଥଣ୍ଡା ପାଣି ଛାଟିଲେ। ହରିନାମ ସ୍ମରଣ କଲେ।

ପଦ୍ମଚରଣ ଏକ ଗ୍ରାମର ଗ୍ରାମବାସୀ। ଏତେ ସେତେ କିଛି ସେ ବୁଝନ୍ତି ନାହିଁ। ବିଲ ଅଛି, ହଳ ଅଛି, ଚଳିଯାନ୍ତି ଦୁଃଖେ କଷ୍ଟେ।

ମାତ୍ର ସେ ସୁଖୀ ନୁହନ୍ତି। କିଏ ବା ଏକାଳେ ସୁଖୀ ଅଛି ? ନାଁ, କଥାଟା ତାହା ନୁହେଁ। ସେ ଥିଲେ ଗାନ୍ଧିବାଦର ଲୋକ। ଅହିଂସା ଅସହଯୋଗ ଆନ୍ଦୋଳନରେ ନିର୍ଭିକ ସୈନିକ ଭାବରେ ସେ ଯୋଗ ଦେଇଥିଲେ।

ଏ ଦେଶରେ ଜନସୁମାରି ଚାଲିଛି। ଭାରି ଆଟୋପରେ ଏ କାମ ହୁଏ। ପୁରୁଷ ଗଣାଯାଆନ୍ତି, ନାରୀ ଗଣାଯାଆନ୍ତି। ନିଷ୍କର୍ମା, ଅକର୍ମୀ, ଭିକାରି, ପଙ୍ଗୁ, ବାଚାଳ କେହି ଗଣନାରୁ ବାଦ୍ ଯାଆନ୍ତି ନାହିଁ।

ମାତ୍ର ବାଦ୍ ଯାଆନ୍ତି ଗୋଟାଏ ଶ୍ରେଣୀର ଲୋକ। ସେମାନେ ସ୍ୱରାଜ ରଥ-ଦଉଡ଼ିରେ ପ୍ରଥମେ ହାତ ଦେଇ ଚକ ଗଡ଼େଇଥିଲେ। ତାଙ୍କ ହାତ ଫୋଟକାର କଳା ଚିହ୍ନ ଏବେ ବି ଛାଡ଼ିଯାଇନି। ତାଙ୍କ ଗୋଡ଼ ଓଡ଼ିଶାର ନଈ, ନାଳ, କେଦାର, ହାଟ, ଘାଟ ସର୍ବତ୍ର ପଡ଼ିଛି। ସେହିଭଳି ଲୋକ ଭିତରୁ ପଦ୍ମଚରଣ ବଞ୍ଚିରହିଛନ୍ତି ସ୍ୱାଧୀନ ଦେଶର ଘିଅ, ମହୁ ଚାଷ ଦେଖିବାକୁ।

ଏ ଚାଷ ହେଉଛି। ପରିପୂର୍ଣ୍ଣ ଭାବରେ ଏ ଚାଷ ହେଉଛି। କିନ୍ତୁ କେତେବେଳେ ଘିଅ ମହୁ କେଉଁଠି ବୋହି ଆସୁଛି, ତାହା ପଦ୍ମଚରଣ ଜାଣିପାରୁନାହାନ୍ତି।

ଦୁଃସ୍ୱପ୍ନର ବିଭୋର ଭାବ ଏ ଯାଏ କଟିନାହିଁ। ନୀଳାଭ ଆକାଶତଳେ ସିନ୍ଦୁରା ଫାଟି ଆସିବାକୁ ବେଶି ବିଳମ୍ବ ନାହିଁ। ପଦ୍ମଚରଣ ଚକ୍ଷୁ ମୁଦ୍ରିତ କରି ପ୍ରାର୍ଥନା କଲେ।

ତାଙ୍କ ଜୀବନକୁ ମୃତ୍ୟୁ ଆଘ୍ରାଣ କରିଯାଇଛି। ସ୍ୱାଧୀନ ଦେଶର ସ୍ୱାଧୀନ ମୃତ୍ୟୁ। ମନେପଡ଼େ ସେଇ ଏକ ବର୍ଷାମୁଖର ସନ୍ଧ୍ୟାର କଥା।

କଥାବାର୍ତ୍ତା ହେଉଥିଲେ ଦୁହେଁ। ଟିପି ଟିପି ବର୍ଷାର ରାଗିଣୀ ତଳେ କେତେ ପାସୋରା ଅପାସୋରା ସ୍ମୃତିର ଝଲକ ରତ୍ନା ଓ ପଦ୍ମଚରଣଙ୍କ ହୃଦୟକୁ ବିମଥିତ କରୁଥିଲା।

ସେ ସନ୍ଧ୍ୟା ଗତ ହୋଇଯାଇଛି। ମାତ୍ର ବଞ୍ଚିରହିଛନ୍ତି ପଦ୍ମଚରଣ ସେ ବିପୁଳ ଜାତିକୁ ଆଉଁଶି ତାରି ଉପରେ ଅଶ୍ରୁ ଝରାଇବାପାଇଁ।

– ହଇଓ ଶୁଣୁଛ, ପେଟଟା କାହିଁକି ଓଲଟି ପଡ଼ୁଛି, ମୁଁ ବାରିଆଡୁ ଆସେ।

– ମୁଁ ତମ ସଙ୍ଗରେ ଯାଏ। ଅନ୍ଧାର ହୋଇଛି। ଲଣ୍ଠନଟା ନେଇ ଯାଉଛି ଚାଲ।

– ନାଇଁ ମ, ଆଲୁଅଟା କଅଣ ନେଇଯିବ ? ମୁଁ ଏକା ଯିବି। ତମେ ପୁଅ ପାଖରେ ଥାଅ।

ପାରିବାରିକ ଏକ ସାଧାରଣ ଚିତ୍ର। ରତ୍ନା ଚାଲିଗଲା ବାରିଆଡ଼କୁ।

ପଦ୍ମଚରଣ ପୁଅ ପାଖରେ ବସି ରହିଲେ। କୋଳର ପୁଅ; କିନ୍ତୁ ଆସ୍ୱାଭାବିକ ଭାବରେ ରତ୍ନା ବାରିଆଡୁ ଆସିବାକୁ ଡେରି କଲା।

ପଦ୍ମଚରଣ ଉଠିଗଲେ, ଫେରି ଆସିଲେ ରତ୍ନାକୁ ଧରି। ରତ୍ନାର ସଂଜ୍ଞା ନାହିଁ।

ସହର ପାଖ ଗାଁ। ଶଗଡ଼ ସଜିଲ କରି ରୋଗିଣୀକୁ ଆଣିଲେ ପଦ୍ମଚରଣ ବଡ଼ ଡାକ୍ତରଖାନାକୁ।

ଡାକ୍ତର ଦେଖିଲେ, ହସିଲେ, କହିଲେ – "କେଉଁ ଜାଗାକୁ କାହାକୁ ଆଣୁଛ? ନର୍ସ ଜ୍ୟୋସ୍ନା ଦେଖିଲ, କେବେ ଏ ଲୋକଗୁଡ଼ାଙ୍କର ଅକଲ ହେବ? ଆହେ ବାବୁ ୟାକୁ କଲେରା ଧରିଛି। କଲେରା ହାସପାତାଳକୁ ଯାଅ। ସରକାର କଲେରା ରୋଗୀପାଇଁ ସ୍ୱତନ୍ତ୍ର ଡାକ୍ତରଖାନା କରିଛନ୍ତି। ସେଇଠି ଆଡ଼ମିଶନ୍ କରିଦିଅ। ଚାଲ ଜ୍ୟୋସ୍ନା, କଫି ଥଣ୍ଡା ହୋଇଗଲା। କି ଦୁର୍ଯୋଗ!"

ପଦ୍ମଚରଣ ମାଇଲିଏ ବାଟରେ ସହରର ଉପାନ୍ତରେ ଥିବା ଡାକ୍ତରଖାନାକୁ ରତ୍ନାକୁ ଶଗଡ଼ରେ ପକାଇ ନେଲେ।

ସେଠାର ଡାକ୍ତର ଏକ ତରୁଣ। ପୂର୍ବ ଡାକ୍ତର କେବଳ ହସିଥିଲେ, ଏ ଡାକ୍ତର ଅଟ୍ଟହାସ୍ୟ କରି ଗଗନ ପବନ କମ୍ପାଇ ଦେଲେ। ସେତେବେଳେ ସେ ବନ୍ଧୁମେଳରେ ଥିଲେ।

ପଦ୍ମଚରଣ ମିନତି କଲେ। ଖଦଡ଼ ଚାଦର ତଳୁ ଦୁଇଟି ଶିରାଳ ହାତ ତାଙ୍କର ବାହାରି ଆସି ସ୍ୱାଧୀନ ଦେଶର ସ୍ୱାଧୀନ ଚିକିତ୍ସକଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା।

– କଅଣ ହୋଇଛି?

– ମୋର ସ୍ତ୍ରୀର ଝାଡ଼ାବାନ୍ତି...

– ଦେଖେ।

ଡାକ୍ତର ଦେଖିଲେ। କଅଣ ସେ ଦେଖିଲେ ସେ ଜାଣନ୍ତି। ପାଞ୍ଚ ହାତ ଦୂରରୁ ଶଗଡ଼ ସହିତ ରତ୍ନାର ପିଣ୍ଡଟାକୁ ସେ ଦେଖିନେଲେ। ତା'ପରେ ହୋ' ହୋ' ହସିଲେ।

ସ୍ୱାଧୀନ ଦେଶରେ ସ୍ୱାଧୀନ ହସ ଏତେ ଚିତ୍ତହର, ସେ କଥା ପଦ୍ମଚରଣ ଅବାକ୍ ହୋଇ ସେଇ ଦିନ ଅନୁଭବ କଲେ।

"– କିରେ ମଧୁଆ, ଅଣ୍ଡାଭଜା ଆସିଲା? ଆପଣ ଛିଡ଼ା ହେଲେ କାହିଁକି? ଏ ରୋଗୀର ତ ଏଠି ଆଡ଼ମିଶନ୍ ହେବନି, ଏହାର ଡାଇରିଆ ହୋଇଛି। ବଡ଼ ଡାକ୍ତରଖାନାକୁ ନେଇ ଯାଆନ୍ତୁ। ସରକାର ପ୍ରତ୍ୟେକ ରୋଗପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିଛନ୍ତି।" ଏତକ କହି ତରୁଣ ଡାକ୍ତର ବନ୍ଧୁ ମେଳକୁ ଫେରିଗଲେ।

ପଦ୍ମଚରଣଙ୍କର ଖଦଡ଼ ଉତ୍ତରୀୟ ଥରି ଉଠିଲା। ଏଇଭଳି ଉତ୍ତରୀୟକୁ ପାଣିରେ ଓଦା କରି ସେ ହଇଜା ମଲୁ ମୁହଁରେ ଚିପୁଡ଼ିଛନ୍ତି। କେବେ କେବେ ଚାଦର ଖଣ୍ଡିକ ଦେହ ଉପରୁ ଅପସରେଇ ଆଣି ରୋଗୀ ଉପରେ ଘୋଡ଼ାଇ ଦେଇଛନ୍ତି। ସେ ଅତୀତର ଘଟଣା।

ଅନୁକମ୍ପାର କମ୍ପନ ସେତେବେଳେ କଂଗ୍ରେସକର୍ମୀ ପଦ୍ମଚରଣଙ୍କର ନଖରୁ ଶିଖା ପର୍ଯ୍ୟନ୍ତ ଥରାଇ ଦେଇଥିଲା। ତା' ଛଡ଼ା ଆଦର୍ଶ ଥିଲେ ଗୋପବନ୍ଧୁ ଓ ଆଚାର୍ଯ୍ୟ ହରିହର।

ପଦ୍ମଚରଣ ବୁଝିପାରିଲେ ନାହିଁ ସେ ଏ ପରିସ୍ଥିତିରେ କଅଣ କରିବେ। ପୁଣି ମାଇଲିଏ ବାଟ ଯାଉ ଯାଉ ରତ୍ନା କଅଣ ବଞ୍ଚିବ?

ମାତ୍ର ସରକାରୀ ବିଧାନରେ ଏ ହାସପାତାଳରେ ରତ୍ନାର ସ୍ଥାନ ନାହିଁ।

ପଦ୍ମଚରଣ ଫେରିଯାଇ ପୂର୍ବର ବଡ଼ଡାକ୍ତରଖାନାର ଡାକ୍ତରଙ୍କୁ ନିବେଦନ କଲେ, "ରତ୍ନାର ଜୀବନ ରଖ- ଡାଇରିଆ ହେଉ ବା କଲେରା ହେଉ, ଗୋଟାଏ ସ୍ଥାନ ଠିକ୍ କରିଦିଅ- ଯେଉଁଠି ଟିକିଏ ଶାନ୍ତିରେ, ଯେଉଁଠି ମଣିଷର ମରଣ ଭଳି ମରଣରେ ରତ୍ନା ସ୍ୱର୍ଗକୁ ଚାଲିଯିବ।"

ନ ହେଲା। ଡାକ୍ତର କହିଲେ ଏପରି ଅନିୟମ କାମ କଲେ ତାଙ୍କର ଚାକିରି ଓ ଉନ୍ନତି ଉପରେ ବାଧା ଆସିବ। ଅତଏବ ଏ ରୋଗିଣୀ ହଇଜାରେ ଆକ୍ରାନ୍ତ ହୋଇଥିବାରୁ ତାର ଚିକିତ୍ସା ହଇଜା ଡାକ୍ତରଖାନାରେ ହେବା ନିୟମସିଦ୍ଧ।

– ମାତ୍ର...

– ମାତ୍ରଫାତ୍ର କିଛି ନାହିଁ। ଆପଣ ତାକୁ ନେଇଯାଆନ୍ତୁ ହଇଜା ଡାକ୍ତରଖାନାକୁ।

– ନେଇଥିଲି।

– ଆଉ ଥରେ ନେଇଯାନ୍ତୁ, till she dies.

– ଶଗଡ଼ ଯେତେବେଳେ କଲେରା ଚିକିତ୍ସାଳୟକୁ ପୁଣି ଥରେ ଆସେ, ତା' ଉପରେ ପ୍ରାଣହୀନ ରତ୍ନାର ପିଣ୍ଡ ପଡ଼ି ରହିଥିଲା। ଦୁଇଟା ଡାକ୍ତର ତାର ଜୀବନକୁ ଗୋଟାଏ ମାଟିର ଖେଳଣା ଭଳି ଖେଳି ଖେଳି ଶେଷରେ ଭାଙ୍ଗି ଦେଲେ।

ସେଇ ସନ୍ଧ୍ୟାର କଥା ମନେପଡ଼େ ପଦ୍ମଚରଣଙ୍କର। ତାଙ୍କର ମଇଳା ଖଦଡ଼ ଧୋତି ଅଗ କୁଞ୍ଚରେ ସେ ପୋଛି ଆଣିଲେ ତାଙ୍କ ଆଖି ଦୁଇଟିକୁ।

ଆଜି ଶାସନ ପରିଷଦ ରହିଛି। ଦୂରକୁ ଭାରି ସମ୍ଭ୍ରାନ୍ତ, ଭାରି ନିର୍ମଳ। ମଣିଷର ହୃଦୟ ପରିବର୍ତ୍ତନ ପାଇଁ ଏ ଦେଶରେ ଏପର୍ଯ୍ୟନ୍ତ ଘାସ ବି ସଫା ହୋଇନାହିଁ। ସେଠାରେ ଜାତୀୟତାବୋଧର ପ୍ରାସାଦ ତିଆରି ହେବ କେବେ?

ମଣିଷର ଜୀବନକୁ ସମ୍ମାନ କରିବାର ବେଦମନ୍ତ୍ର ଏ ଯାଏଁ ଯେଉଁଠି ଓଁକାରି ଉଠିନାହିଁ, ସେଠି ମଣିଷକୁ ଗୋଟାଏ ସାମ୍ରାଜ୍ୟ ଦେଇଦେଲେ ବି ସେ ଦୁର୍ଦ୍ଧର୍ଷ ପ୍ରଭୁ ହେବ ସିନା; ଶାନ୍ତ ସୁକୋମଳ ମିତ୍ର ମାନବ ତ ହୋଇ ପାରିବ ନାହିଁ?

ରତ୍ନା ଛାଡ଼ିଯାଇଥିବା କୋଳର ପୁଅକୁ ବକ୍ଷ ଉପରେ ତୋଳି ଧରି ପଦ୍ମଚରଣ ଗାନ୍ଧିବାଦର ସମର୍ଥକ ଓ ସାଧକ ପଦ୍ମଚରଣ ପୁଣି ଅଣ୍ଟା ସଳଖ କରି ଛିଡ଼ାହେଲେ। ଭାବିଲେ ଆଗ ଦେଶ, ପଛେ ବ୍ୟକ୍ତି। ବ୍ୟକ୍ତିର ଦୁଃଖ ଆଗରେ ଦେଶର ସମୃଦ୍ଧି ବେଶୀ ପ୍ରୟୋଜନ।

ଗୁଡ଼ାଏ ଆଦର୍ଶର ବୋଲି ଅଭ୍ୟାସଗତ ଓ ରୁଚିଗତ ହୋଇ ଯାଇଥିବାରୁ ପଦ୍ମଚରଣ ଯୌବନ କାଳର ଦେଶାତ୍ମବୋଧକୁ ପୁଞ୍ଜି କରି ପଡ଼ି ରହିଲେ ସେଇ ତିମିରେ। ସେ ଅନ୍ଧକାର ଅପସୃତ ହେଲା

ନାହିଁ। ସେ ଖୋଜିଲେ ନାହିଁ ସିମେଣ୍ଟ, ସେ ଖୋଜିଲେ ନାହିଁ ବ୍ୟବସ୍ଥାପକ ସଭା, ସେ ଖୋଜିଲେ ନାହିଁ ଲୁହାର ଏକଚାଟିଆ ବ୍ୟବସାୟ, ସେ ଦଉଡ଼ିଲେ ନାହିଁ ତୀର୍ଥସ୍ଥଳକୁ ଯେଉଁଠି ବହୁ ତୀର୍ଥକାକ ମୁକ୍ତି ପାଉଛନ୍ତି କେବଳ ସ୍ତୁତି, ସ୍ତବ ଓ ବାକ୍ୟରେ।

ପୁଅ ବଢ଼ିଲା। ମା' ଛେଉଣ୍ଡ ପୁଅର ସମସ୍ତ ବିକଳତା ସତ୍ତ୍ୱେ ସୁଶାନ୍ତ ବଢ଼ିଲା। ପଦ୍ମଚରଣ ତା'ର ଭବିଷ୍ୟତ କଥା କିଛି ଭାବିଲେ ନାହିଁ। ରତ୍ନା ଥିଲେ ଭାବିଥାନ୍ତା। ସେ ତ ନାହିଁ। ନିରଙ୍କୁଶ ନିର୍ଭାବନାରେ ପଦ୍ମଚରଣ କେବଳ ସୁଶାନ୍ତ ଆଡ଼େ ଅନାଇଁ ଦୃଷ୍ଟିକୁ ଅଶ୍ରୁସ୍ନାତ କରୁଥିଲେ।

ମନେପଡ଼େ ସେଇଦିନ ସକାଳୁ ସକାଳୁ ମେଘୁଆ ଆକାଶ ଗୋଟାଏ ଭୀତତ୍ରସ୍ତ ଲୋମଶ ପଶୁ ଭଳି ଶୋଇ ରହିଥାଏ। ସୂର୍ଯ୍ୟ ଉଠି ନ ଥିଲେ। ଗୋଟାଏ କିମିତି ଅପରିଷ୍କୃତ ଉଦାସ ଭାବ ପଦ୍ମଚରଣଙ୍କୁ ଜଡ଼ କରି ଦେଇଥିଲା ସେଦିନ।

ସପ୍ତମ ଶ୍ରେଣୀର ଛାତ୍ର ସୁଶାନ୍ତ। ସ୍ତ୍ରୀଙ୍କର ଦେହାନ୍ତ ଦିବସ। ପଦ୍ମଚରଣ ଏଇ ଦିନଟିକୁ ପ୍ରତିବର୍ଷ ଶ୍ରଦ୍ଧାର ସହିତ ପାଳି ଆସୁଛନ୍ତି।

ବିଶେଷ କିଛି ନାହିଁ। କେବଳ ଜନନୀର ଚିନ୍ତନ, ପତ୍ନୀର ସ୍ମୃତି। ସୁଶାନ୍ତ ହାତ ଯୋଡ଼ି ବସେ, ମାଆକୁ ସ୍ମରଣ କରେ। ଠିକ୍ ସ୍ପଷ୍ଟ ଭାବରେ ସେ କିଛି ଦେଖିପାରେ ନାହିଁ। ବାପାଙ୍କଠାରୁ ଶୁଣେ, ଲବଣ ସତ୍ୟାଗ୍ରହର କଥା। ଦାଣ୍ଡି ପଦଯାତ୍ରା ପରେ ବାପାଙ୍କର କାରାବରଣ। ଅସହନୀୟ ଅତ୍ୟାଚାରରେ ସୁଦ୍ଧା ବାପାଙ୍କର ଅଚଳ ଓ ଅଟଳ ଦେଶପ୍ରୀତିର କଥା। ଏସବୁ ଶୁଣେ- ଶ୍ରଦ୍ଧା ଓ ଭକ୍ତିର ସହିତ ବାପାଙ୍କୁ ନମସ୍କାର କରେ।

ଆଜି ସେଇ ଅଶ୍ରୁପୂତ ଦିନଟି ଆସିଛି। ରତ୍ନାର ସାମ୍ବତ୍ସରିକ ଶ୍ରାଦ୍ଧ ଦିବସ। -"ସୁଶାନ୍ତ, ଚଞ୍ଚଳ ଚାଲିଆସିବୁ ଶିକ୍ଷକଙ୍କୁ କହି, ଆଜି ତୋ ମାଆର ଶ୍ରାଦ୍ଧ ଦିନ।" ପଦ୍ମଚରଣ ପୁଅର ମଥା ସ୍ପର୍ଶ କରି ଏତକ କହିଲେ।

ଯଥାରୀତି ସୁଶାନ୍ତ ଚାଲିଗଲା ସ୍କୁଲକୁ। ଯଥାରୀତି ବିଦ୍ୟାଳୟରେ ପାଠ ଆରମ୍ଭ ହେଲା।

ମୃତା ପତ୍ନୀର ଶ୍ରାଦ୍ଧ ପାଇଁ ଉପକରଣ ସଜାଉଥିଲେ ପଦ୍ମଚରଣ। ଖଣ୍ଡିଏ ନୂଆ ଖଦଡ଼ ଲୁଗା ସେ ପିନ୍ଧିଛନ୍ତି। ପୁଅ ପାଇଁ ରଖିଛନ୍ତି ଆଉ ଖଣ୍ଡେ।

ଅକସ୍ମାତ ମନ ତାଙ୍କର କାହିଁକି ଅଶାନ୍ତ ହୋଇ ଉଠିଲା- ସେ ସ୍ଥିର ରହିପାରିଲେ ନାହିଁ। ପୁଅକୁ ଡାକି ଆଣିବାକୁ ନିଜେ ଚାଲିଆସିଲେ ସ୍କୁଲଆଡ଼େ।

ସ୍କୁଲ ଲୋକାରଣ୍ୟ। ଛାତି ଫଟାଇ ଲୋକେ ଚିତ୍କାର କରୁଛନ୍ତି। ଚାହୁଁ ଚାହୁଁ ଆଠଗୋଟି ଶିଶୁର ଶବ, ଆଠଗୋଟି ସ୍ତବକିତ ପୁଷ୍ପ, ଆଠଗୋଟି ସମ୍ଭାବନାପୂର୍ଣ୍ଣ ଜୀବନର ହଠାତ୍ ସମାପ୍ତି... କେହି କିଛି ବୁଝି ପାରିଲେ ନାହିଁ। ଦର୍ଶକ ଭିତରୁ ଅନେକେ ପାଗଳ ଭଳି ହୋଇଗଲେ।

ହସି ହସି ଜାତିର ଏକ ନିଷ୍ପାପ ସନ୍ତାନମାନେ ଶିକ୍ଷକଙ୍କ ହାତରୁ ଗ୍ରହଣ କରିଥିଲେ ଖାଦ୍ୟ,- ଦୁଧ!

ପଦ୍ମଚରଣ ସୁଶାନ୍ତକୁ ଚିତାରେ ଶୁଆଇ ଦେଇ କେବଳ ଚିତ୍କାର କରୁଥିଲେ- "ହେ ପିତୃପୁରୁଷ, ଏ ସବୁ ମୃତ୍ୟୁର ଜବାବ ଦିଅ। ସୁଶାନ୍ତ ମଲା, ତାର ଜବାବ ଦିଅ। ରତ୍ନା ଚାଲିଗଲା, ତାର ଜବାବ ଦିଅ। ସ୍ୱାଧୀନ ଦେଶରେ ଅପକର୍ମ ପ୍ରବଳ ହେଉଛି। କାହିଁକି ହେଉଛି ତାର ଜବାବ ଦିଅ। ଏ ଜବାବ ତୁମକୁ

ଦେବାକୁ ପଡ଼ିବ। କାରଣ ତୁମେ ଯେଉଁ କାର୍ଯ୍ୟ କରି ଅମର ହୋଇଗଲ, ସେହି କାର୍ଯ୍ୟ କରିବା ବାହାନାରେ ତୁମରି ବଂଶଧର କଅଣ କରୁଛନ୍ତି? ପିତୃପୁରୁଷ, ତୁମକୁ ଉତ୍ତର ଦେବାକୁ ପଡ଼ିବ- ଜବାବ ଦେବାକୁ ପଡ଼ିବ।”

ପ୍ରତିବେଶୀ ଶ୍ୟାମାଚରଣ ଦୁର୍ଗତ ପଦ୍ମଚରଣଙ୍କୁ ଧରି ବାଟ ଦେଖାଇ ଆଣିଲେ ଜାତୀୟ ତ୍ରିରଙ୍ଗ ପତାକାର ସ୍ତମ୍ଭତଳକୁ। ସେଠି ପଦ୍ମଚରଣ ଛିଡ଼ା ହେଲେ।

ମନକୁ ମନ ପଚାରିଲେ– ପତାକା ଠିକ୍ ବନ୍ଧା ହୋଇଛି ତ? ଠିକ୍ ଉଡୁଛି ତ? ତଳକୁ କେଉଁ ରଙ୍ଗ ରହିଛି?

ପ୍ରତିବର୍ଷ ଏଇ ଶୋଭା ଚାଲିଛି। ଆନ୍ତରିକତାହୀନ ବାଣୀ-ବିନ୍ୟାସରେ ମହାସ୍ୱାର୍ଥପର ବ୍ୟକ୍ତି ଆଜି ଗଦ୍ ଗଦ୍ କଣ୍ଠରେ ‘ବନ୍ଦେ-ମାତରଂ’ କହୁଛି।

ପାରାବତ ଉଡ଼ି ଯାଉଛନ୍ତି ପୋଷା ପାରାବତ। ସୁନୀଲ ଆକାଶରେ ସ୍ୱଚ୍ଛ ସୁନ୍ଦର ତେଜୀୟାନ ସୂର୍ଯ୍ୟ କ୍ରମେ ଦିକ୍‌ମେଖଳା ଛାଡ଼ି ଉଠିଆସୁଛନ୍ତି।

ସବୁ ହୁଏତ ପରିଷ୍କାର, ସବୁ ନିର୍ମଳ; ମାତ୍ର ମଣିଷର ଅନ୍ତର? ଯାହାକୁ ଘେନି ମଣିଷ ଗର୍ବ କରେ, ତାର କି ଅବସ୍ଥା? କିଏ ଜବାବ ଦେବ ତାର, କି ଅବସ୍ଥା?

ଯେଉଁମାନେ ଗତାୟୁ ସେଇ ପିତୃପୁରୁଷମାନେ ଏହାର ଜବାବ ଦିଅନ୍ତୁ।

ପଦ୍ମଚରଣ ଚାହିଁ ରହିଲେ ଧୀର ସ୍ଥିର ଭାବରେ ଦୂର ଭବିଷ୍ୟତକୁ- ସେ ଯେ କେତେ ଦୂର, କେଉଁ ଦିଗନ୍ତ...।



# ଛାଗମାଂସ ଓ ମାଗୁର ମତ୍ସ୍ୟ

ନା ଆପଣମାନେ ଏଥିରୁ ବୁଝନ୍ତୁ ନାହିଁ ଯେ ଜଗଦ୍ଧାତ୍ରୀ ଜନନୀ ଦୁର୍ଗାଙ୍କର ଆଗମନ ଉତ୍ସବ ପାଇଁ ମୁଁ ଛାଗମାଂସ ଓ ମାଗୁର ମତ୍ସ୍ୟର ବଳିଭୋଗ ଆୟୋଜନରେ ବ୍ୟସ୍ତ ରହିଛି।

ମାଆ ଆସୁଛନ୍ତି ସତ; ଦିଗ୍‌ଦିଗନ୍ତରେ ତାଙ୍କର ସ୍ୱର୍ଣ୍ଣ ଚେଳାଞ୍ଚଳର ଲହରୀ ଖେଳିଯାଉଛି। ଆଉ ତାଙ୍କ ଆସିବାପୂର୍ବରୁ କଟକ ସହର, ଯେଉଁଠି ତାଙ୍କ ମୃଣ୍ମୟ ବିଗ୍ରହକୁ ଶିଳ୍ପୀ କେତେ ଆୟାସରେ ସୁନ୍ଦର କରି ଫୁଟେଇଥାଏ, ସେହି ସହରରେ ଏ ବର୍ଷ ବହୁତ ପଙ୍କ, କାଦୁଅ, ପାଣି ଜମିରହିଛି। ମାଆ ବୋଧହୁଏ ଭାବିଲେ, ଏଥର ହଜାର ହଜାର ମୂର୍ତ୍ତି ଆବାହନ ଭିତରେ ସେ ଆସିବେ। ପାଣି, କାଦୁଅ, ପଙ୍କର ଯିମିତି ଅଭାବ ନ ପଡ଼େ, ତାଆରି ବ୍ୟବସ୍ଥା କରିଦେଲେ। ଜନନୀ ତ ସବୁ ଜାଣିପାରନ୍ତି। ସନ୍ତାନମାନଙ୍କର ଦୁଃଖ ବୁଝିଲେ। କଟକ ସହରକୁ ସିନ୍ଧୁରେ ପରିଣତ କଲେ।

ନାଁ, ମୁଁ ସେ କଥା କହୁନାହିଁ। ବର୍ଷକ ପରେ ଦଶଭୁଜା ଦେବୀ ମଙ୍ଗଳବେଦୀକୁ ଆସୁଛନ୍ତି। ଆମେ ପ୍ରଣତ ହୃଦୟରେ ତାଙ୍କୁ ଆବାହନ କରୁଛୁ। ସେ ଆସନ୍ତୁ।

ଅତିମାତ୍ରାରେ ସନ୍ନିଧାନ-ସଚେତନ ଓ ସୁସ୍ଥ ନାଗରିକତାବିଳାସୀ ହୋଇଥିବାରୁ ନ୍ୟାୟ ଅନ୍ୟାୟ ପ୍ରତି ମୋର ତୀକ୍ଷ୍ଣ ଦୃଷ୍ଟି ଥାଏ। କିଏ କେଉଁଠି ଠକି ନେଇଗଲା, କିଏ ଲାଞ୍ଚ ଦେଲା, କିଏ କମିଶନି ଦେଲା, କିଏ ଅନ୍ୟାୟକୁ ପଶୟ ଦେଇ ନ୍ୟାୟ ବେକମୂଳରେ ସବାର ହେଲା—ଏସବୁ ବିଷୟରେ ମୁଁ ସତର୍କ ଥାଏ।

ମାତ୍ର ମୋର ପାୱାର ଅର୍ଥାତ୍ କ୍ଷମତା କିଛି ନାହିଁ। ଘଣ୍ଟା ବାଜିଲେ ରେଜିଷ୍ଟ୍ରି ଖାତା ବୁହାଇ କେତେଗୁଡ଼ାଏ ଲୋକଙ୍କ ମୁହଁରେ ଆକାର ବିକାର ଫଳୁନଥିବା ମୁଖମଣ୍ଡଳକୁ ଚାହିଁ କିଛି ବଖାଣି ଆସିବା କାମ। ସେଥିରେ ପାୱାର କଥା କୁଆଡୁ ଆସିବ? ତେବେ ସଭାସମିତିରେ ଆମ ଦଳଙ୍କ ପାଇଁ ଭଲ ଭଲ କଥା ଶୁଣାଯାଏ। ସ୍ୱସ୍ତି ଆପ୍ୟାୟନ କରାଯାଏ ଯେ ଆମେ ଜାତି ନିର୍ମାତା, ଚରିତ୍ର-ସଂଗଠକ, ଆମରି ଉପରେ ନିର୍ଭର କରୁଛି ରାମରାଜ୍ୟ ପ୍ରତିଷ୍ଠା କରିବା ଦାୟିତ୍ୱ ଇତ୍ୟାଦି।

ଯେଉଁ ସହରରେ ମୁଁ ଜୀବିକା ଅର୍ଜନ କରେ, ସେଥିରେ ଗୋଟିଏ ମ୍ୟୁନିସିପାଲିଟି ଅଛି। ମଣିଷକୁ ଜୀଅନ୍ତା ପୋତି ରଖିବା ଭଳି ଗର୍ତ୍ତବହୁଳ ମାର୍ଗଗୁଡ଼ିଏ ବି ସେ ସହରରେ ଅଛି। ଏଇ ସଂସ୍ଥାକୁ ପୌରସଭା କୁହାଯାଏ। ଏହା ସଭାପତିଙ୍କୁ ପ୍ରଥମ ନାଗରିକ କୁହାଯାଏ—ଏମିତି ଅନେକ ଭଲ ଭଲ ଗୁଣ ବହୁଥିବା ଓ ହୃଦୟରେ ଧରିଥିବା ବହୁ ସେବାପରାୟଣ ବ୍ୟକ୍ତି ଏଇ ଅନୁଷ୍ଠାନରେ ଅଛନ୍ତି। ସେମାନେ ନମସ୍ୟ।

ମୁଁ ମାଛମାଂସଭୋଜି। ସେଥିରୁ ଟିକିଏ ପତ୍ରରେ ନ ପଡ଼ିଲେ ମନଟା ଚିଡ଼ି ଚିଡ଼ି ହୋଇଯାଏ। ମୋଭଳି ଅନେକେ ଏଇ ଗୁଣ ଘେନି ସଂସାରରେ ଅଛନ୍ତି। ମୋର ଏଇ ପ୍ରବୃତ୍ତି ଘେନି ମାଛମାଂସ

କିଣିବାବେଳେ ଟିକିଏ କଠୋର ବ୍ୟକ୍ତିତ୍ୱ ମୁଁ ପ୍ରୟୋଗ କରିଥାଏ।

ଜିନିଷ ଯେଉଁଆଡ଼େ ସେଆଡ଼କୁ ଦଣ୍ଡି ତରାଜୁ ଓହଳା କରି ଆଜି କେହି ଜିନିଷ ବିକୁନାହାନ୍ତି। କହିଲେ, ଦେଖଣାହାରିଏ ମନ୍ତବ୍ୟ ଦିଅନ୍ତି, "ଏଡ଼େ ବଡ଼ ଚାକିରି କରନ୍ତି, ଏମିତି ଅଙ୍କକିଆ କଥାରେ ରାଗୁଛନ୍ତି ?"

ମାତ୍ର ଚଢ଼ାଦରରେ ଜିନିଷ କିଣି ସାତ ପ୍ରାଣୀ କୁଟୁମ୍ବଙ୍କୁ ଆହାର ଦେବା କେତେ ଯେ ନରକ ଯନ୍ତ୍ରଣା, ତାହା ଅନୁଭବୀ ଜାଣେ। କଥା କଣ କି, ସେମାନେ ଉଘେଇ ହୁଅନ୍ତି, ମାଛ ମାଉଁସ ବିକାଳିକୁ ଆଡ଼ ଆଖିରେ ଚାହିଁ ଟିକିଏ ତା' ପଟିଆ ହୋଇ ସହାନୁଭୂତି ଦେଖାନ୍ତି। ମୁଁ ଚାଲିଆସିବା ପରେ ସେମାନେ ବେଶ୍ ଓହଳା କରି ଜିନିଷ କିଣନ୍ତି। ଏଇ ତ ସଂସାର ବେଭାର।

ଅନେକ ଦିନ ହେଲା ସେକ୍ ମୁନି ଖାଁର ଔରତ୍ ଉପରେ ମୋର ରାଗ ରହିଛି। ଲୋକଟା ସିନା ଔରତ୍, କିନ୍ତୁ ସାତଟା ମରଦଙ୍କର କୂଟକାପଟ୍ୟ ଜାଣେ। ମହା ଓସ୍ତାଦ୍। ଛେଳି ମେଣ୍ଢାକୁ କହେ ହୀରା ଜହରତ୍। ନିଜ ସ୍ୱାମୀକୁ କହେ ରାଜା। ତା ଘର ଆଗରେ ଶହ ଶହ ଛେଳି ମେଣ୍ଢା ପରସ୍ପରକୁ ଆଲିଙ୍ଗନ କରି ଦଉଡ଼ିଛନ୍ଦା ବେକରେ ଯେତେବେଳେ ମେଁ ମେଁ ହେଉଥାନ୍ତି ଆସନ୍ନ ଜବାଇ ପାଇଁ, ସେତେବେଳେ ସେ ଔରତ୍ ଜଣକ ସାକ୍ଷାତ୍ ଖରଖର୍ପରଧାରିଣୀ ତ୍ରିମୁଣ୍ଡମାଳିନୀ କାଳୀ ଭଳି ସେମାନଙ୍କୁ ଛୁଇଁଯାଏ, ଆଉ କହେ "ଏଇ ମୋର ରାଜ୍ୟ, ଏଇ ମୋର ସୁନା, ମାଣିକ, ହୀରା, ମୋତି... ?

ବିନା ଲାଇସେନ୍‌ସରେ ତାର ଦୋକାନ, ଘରପଛ ମୂତଖାନା ପାଖେ। ତାର ଅବଶ୍ୟ ଆଉ ଗୋଟାଏ ଦୋକାନ ଅଛି ମ୍ୟୁନିସିପାଲିଟି ମାର୍କେଟରେ। ସକାଳ ହେଲେ ବୁଢ଼ା ମୁନି ଖାଁ ଛୋଟେଇ ଛୋଟେଇ ଚାଲିଯାଏ ମ୍ୟୁନିସିପାଲିଟି ମାର୍କେଟକୁ। ଏଣେ ଘର ମୂତଖାନା ପାଖେ ବିନା ଲାଇସେନ୍‌ସ୍‌ରେ କଟା ହୁଅନ୍ତି ଛେଳି ମେଣ୍ଢା–ବଛା ବଛା ଟି.ବି., କାନ୍‌ସର ଓ ବାତୁଆ ରୋଗୀ। ମଝିରେ ମଝିରେ ଅବଶ୍ୟ ଖଣ୍ଡେଅଧେ କଅଁଳ ଛନ୍‌ଛନ୍ ଖାସି ସେ ଖୋସିଦିଏ। ହାଙ୍କେ, ପାଞ୍ଚ ଟଙ୍କା ଏକ ସେର।

ଘର ପାଖ ଦୋକାନ ବୋଲି ସାକିନା ବିବିଠୁ ମାଂସ ମୁଁ କିଣେ। ମାତ୍ର ଅତିମାତ୍ରାରେ ସମ୍ବିଧାନ-ସଚେତନ ଓ ସୁସ୍ଥ ନାଗରିକତାର ବିଳାସ ମୋ ଚିତ୍ତରେ ବିଦ୍ରୋହ ସୃଷ୍ଟି କରେ। ଏ ମହା ଅନ୍ୟାୟ। ପାଞ୍ଚଟଙ୍କା ସେରରେ ସାକିନା ମାଉଁସ ବିକିବ ? ଆମେ କିଛି ନ କହି ଟଙ୍କା ଗଣିଦେଇ ଆସିବୁ ?

ସକାଳ ହେଲେ ସାକିନା ବିବିର ମୂତଖାନା ପାଖେ ସହରର ଗଣ୍ୟମାନ୍ୟ ଅଫିସରଙ୍କର ପିଅନ, ଚପରାଶି ମେଳା ବାନ୍ଧନ୍ତି। ମୁଁ ଲକ୍ଷ୍ୟ କଲି, କେବଳ ପିଅନ, ଚପରାଶି, ଚାକର, ଡ୍ରାଇଭର, ଖାନସାମା ଏଇମାନେ ଏଠାକୁ ଆସନ୍ତି। ମୁଁ ବୋଧହୁଏ ଏକମାତ୍ର ବ୍ୟତିକ୍ରମ।

କ୍ରମେ କ୍ରମେ ଏ ଅନ୍ୟାୟ ବିରୁଦ୍ଧରେ ମୋ ମନରେ ଜାଗ୍ରତ ହେଲା ଗୋଟାଏ କିଛି କରିବା ପାଇଁ। ଇୟେ ମାନେ ଗୋଟାଏ ପ୍ରତିବାଦ, ଗୋଟାଏ ଦୃଢ଼ କାର୍ଯ୍ୟାନୁଷ୍ଠାନ। ଲାଇସେନ୍‌ସ ନାହିଁ, ପୁଣି ଅତିରିକ୍ତ ଦାମ, ତାଛଡ଼ା ଟି.ବି., କାନସର, ବାତୁଆ ରୋଗୀଙ୍କର ମାଉଁସ ବିକା।

କି ରହସ୍ୟ କହିବି ସାକିନା ବିବିର ମୁଠାତଳେ, ବୁଝିବାକୁ ଚେଷ୍ଟାକଲି। ଇମିତି ବେଧଡ଼କ ଅପରାଜେୟ ରମଣୀ ଭୂମିକାରେ ଏ ନାରୀ ଏଯାବତ୍ ସହରବାସୀଙ୍କୁ ଠକଉଛି; ଅଥଚ କେହି ଟିକିଏ ହେଲେ ଉଁ ଚୁଁ ହଉନାହାନ୍ତି।

ସେଦିନ ଘରକୁ ଅଖୋଜା ଅଲୋଡ଼ା କୁଣିଆ ଆସିଥିଲେ। କହିଲେ ମାଉଁସ ଖାଇବେ। ମୋର ମନେହୁଏ, ଆଣବିକ ବୋମା ଫୁଟି କାହାର କଅଣ କ୍ଷତି କରୁଥିବ କେଜାଣି, ଏ ଯେଉଁ ଅଲୋଡ଼ା କୁଣିଆ ହାଣ୍ଡି ପିଛୁଳା ପାଣି ନିଗିଡ଼ି ବୋହିଯିବା ପରେ ଆସି ନିର୍ଲ୍ଲଜ୍ଜ ହସ ହସି- "ହେଁ ହେଁ, ଆମେ ଆସିଗଲୁ" କହି ଗୃହସ୍ଥର ତତ୍‌କ୍ଷଣାତ୍ ଶ୍ରାଦ୍ଧ କରିବସନ୍ତି, ବୋମାଫୁଟାଠାରୁ ତାଙ୍କ ଫୁଟିବା ଆହୁରି ମାରାତ୍ମକ।

ପୁଣି କଣ ନାଁ, ପିଲାଠୁ ମାଇପିଯାଏ କହନ୍ତି ଆଜି ଆମେ ମାଉଁସ ଖାଇବୁ। ଭାଗ୍ୟକୁ ସେଦିନ ଗୁରୁବାର ପଡ଼ିଥିଲେ ବି ମାଇପିଗୁଡ଼ାକ ବାହାଡ଼ାଦାନ୍ତ ଦେଖାଇ କହିବେ- "ମଲା, ପୁରସ୍ତମରେ ଗୁରୁବାର କଣ ବା? କିଛି ବାଛବିଚାର ନାଇଁମ ଅପା, ଆମେ ଗୁରୁବାରେ ମାଉଁସ ଖାଇବୁ। ଏଠି ପରା କଇବଲ ଖାଆନ୍ତି ବ୍ରାହ୍ମଣ, ହାଡ଼ି ଏକା ପତ୍ରରେ...।"

ଶୁଣ, କେଉଁ କଥାକୁ କୋଉ କଥା। ଅଗତ୍ୟା ମାଂସ ପାଇଁ ଗଲି ସାକିନା ବିବିର ମୂତଖାନା ପାଖକୁ। କାରଣ, ଘରପାଖ ଦୋକାନ। ମତେ ଦେଖି ମୁହଁ ବଙ୍କେଇ କହିଲା ସାକିନା- "ବାବୁ ଆଇଲେ! ଲେକିନ୍ ବାବୁ ତୁମ ସାଥିରେ ଆମର ଦରଦାମ୍ ପଟୁନି। ଆଜ ଛେ' ରୂପିୟା- ଏକ୍ ସେର ଗୋସ୍।"

ମୋ ଇଚ୍ଛା ହେଲା ଗୋଟାଏ ଢେଲା ଉଠାଇ...ଛି, ଛି, ଯେତେ ବାଧୁ ପଛକେ, ଢେଲା ଉଠାଇବା ଠିକ୍ ହେବନି। ମୁଁ ଧୀରେ କହିଲି- "ଦୁଇ ସେର ଗୋସ୍।"

ଦୁଇ ସେର ଗୋସ୍ ଧଇଲି। ତିନିଟଙ୍କା ହିସାବରେ ଟଙ୍କା ବଢ଼େଇଲି। ସାକିନା ବିବିର ମୁହଁଟା ଦପ୍‌କିନା ଜଳିଉଠିଲା। କହିଲା, "କ୍ୟା..."

ମୁଁ କହିଲି-ରୂପୟା।

– ଆପ୍ ଗୋସ୍ ଫେରସ୍ତ୍ ଦୋ।

– ନେହିଁ ଦେଙ୍ଗା।

– ଆଲ୍‌ବତ୍ ଦେଙ୍ଗା।

– ନେହିଁ।

ସାକିନା ଛିଡ଼ାହେଲା। ଏଇ ଘଟୋତ୍‌କଚରୂପିଣୀ ସାକିନାକୁ ଦେଖି ମତେ ଡରମାଡ଼ିଲା। ମାତ୍ର ଅତିମାତ୍ରାରେ ମୋର ସମ୍ବିଧାନ-ସଚେତନ ମନରେ ବିଦ୍ରୋହ ନିଆଁ ଜଳିଉଠିଲା। ମୁଁ ପାଟିକଲି। ଏତେ ଦିନର ସଞ୍ଚିତ ଅନ୍ୟାୟ ବିରୁଦ୍ଧରେ ଲଢ଼ିବାର ଶକ୍ତି କ୍ଷରିତ ହେଲା।

କହିଲି - "ସାକିନା ବିବି, ତମର ଲାଇସେନ୍‌ସ ନାହିଁ। ଛେଳି, ମେଣ୍ଢା କାଟି ଲୁଚେଇ ବିକୁଛ। ଚଢ଼ାଦାମ୍ ନଉଚ। ମୁଁ ଏଇକ୍ଷଣି ଜିଲା ମାଜିଷ୍ଟ୍ରେଟ, ପୁଲିସ ସାହେବ, ମ୍ୟୁନିସିପାଲିଟି ଚେୟାରମ୍ୟାନଙ୍କ ପାଖରେ ଫେରାଦି ହେବି; ଆଉ ଦେଖିବି କେତେଦିନ ଏ ଘର, ଏ ଦୋକାନ ଏଠି ଥିବ। ମୁଁ ଏଯାଏ କିଛି କହୁ ନ ଥିଲି। ଆଜି ଶେଷ। ମୁଁ ଚାଲିଲି।"

ସାକିନା ତାର ସ୍ୱରରେ ଚିତ୍କାର କଲା- ହଃ ହେ ବାବୁ, ବହୁତ ଦେଖିଚି। ମତେ କଅଣ ଧମକ

ଦେଉଚ ? ଏ ଜବାନ୍‌ରେ ବହୁତ ମାଜିଷ୍ଟ୍ରେଟ, ପୁଲିସ ସାହେବ, ଚେୟାରମ୍ୟାନ୍ ଦେଖିଲିଣି। ଲାଇସେନ୍‌ସ ନାହିଁ ତବ୍‌ବି ଦୋକାନ ଚାଲିଚି। ମାଜିଷ୍ଟ୍ରେଟ ପୁଅର ବାହାଘରେ ପାଞ୍ଚଟା ଖାସି ମୋଫତ୍ ଦେଇଚି। ପୁଲିସବାଲା ତିନି ମାସରେ ଥରେ ଫିଷ୍ଟ କରନ୍ତି। ଦୁଇଟା ଖାସି ସାକିନା ଦେଇଦିଏ-ଇସ୍‌ସେ ବୋଲା ମୋହବତ୍। ଚେୟାରମ୍ୟାନ ପଠେଇ ଦିଅନ୍ତି ପିଅନକୁ, ଯା ସାକିନା ପାଖରୁ ମାଉଁସ ଆଣ୍। ମୁଁ କଥା ବୁଝେ ବାବୁ ! ଅସଲି ଫାଷ୍ଟ କିଲାସ୍ ମାଲ ପଠେଇଦିଏ। ସାକିନା ବିବି ଆଜି ଏଇ ଦୋକାନ ବନ୍ଦ କରିଦେଲେ କାଲି ମାଜିଷ୍ଟ୍ରେଟ୍, ପୁଲିସ, ମୁନିସିପାଲିଟିର ଲୋକ ମୋ ଘରେ ଛିଡ଼ା ହୋଇ ମାଉଁସ କାହିଁ ବୋଲି ହଲ୍ଲା କରିବେ। ଦୁଆର ଖୋଲିବେ। ହାମ୍‌କୁ ବାବୁ କହୁଛ, ବିନା ଲାଇସେନ୍‌ସ ? ବହୁତ ଆଚ୍ଛା, ଆପ୍ ଯାଇୟେ। ଏଇ ତିନ୍ ରୂପିୟାମେଁ ହୋଙ୍ଗା, ଯାଇୟେ।

ନିଷ୍ଫଳ କ୍ରୋଧ, ଅତିମାତ୍ରାରେ ସଂବିଧାନ ସଚେତନ ମନର ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରିବାର ଶକ୍ତି ଏକମୁହୂର୍ତ୍ତରେ ପାଣି ଫାଟିଗଲା। ତେବେ ଏତେ ରହସ୍ୟ ଯା ଭିତରେ ରହିଛି !

ମୁଣ୍ଡ ଭିତରେ ଗରମ। ଅନ୍ୟାୟ ! ଅନ୍ୟାୟ ! କଅଣ କରାଯିବ ! ଗୋଟାଏ ସୁସ୍ଥ ନାଗରିକ କଅଣ କରିପାରେ ଏ ଅବସ୍ଥାରେ ?

ପୁଣି ଅତିମାତ୍ରାରେ ସଂବିଧାନ-ସଚେତନ ମନ ଆବିଷ୍କାର କଲା ଗୋଟିଏ ବାଟ-ଦରଖାସ୍ତ। ଦରଖାସ୍ତ ଦେବାକୁ ହେବ।

ମାଉଁସ ଥଳୀଟା ରାଗରେ ଘରେ ଫୋପାଡ଼ି ଦେଇ ଟାଇପ୍ ରାଇଟ୍‌ର ଧରି ଟାଇପ୍ କଲି ଦରଖାସ୍ତ-ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦର ଦରଖାସ୍ତ।

ନିଜେ ଗଲି ମ୍ୟୁନିସିପାଲିଟି ଅଫିସକୁ। ଭାଗ୍ୟକୁ ନଗରପାଳକ, ତାଙ୍କର ଅଧସ୍ତନ ନଗରପାଳକମାନେ ସଶରୀରରେ ବିଦ୍ୟମାନ ଥିଲେ। ସଂଭ୍ରମ ଦେଖାଇଲେ, ଆସନ ଦେଲେ, ପାନ ଚାହାର ବ୍ୟବସ୍ଥା କଲେ ଏବଂ କହିଲେ- ଏଡ଼େ ଭାଗ୍ୟ ଆପଣ ଆସିଛନ୍ତି ! କଅଣ ଅସୁବିଧା ଘଟିଥିଲେ, ଟେଲିଫୋନ କରିଥିଲେ ଆମେ ହାଜର ହୋଇଥାନ୍ତୁ।

ମୁଁ ଦରଖାସ୍ତ ନଗରପାଳକଙ୍କ ହାତକୁ ବଢ଼ାଇଦେଲି। ସେ ପଢ଼ିଲେ। ମୁଁ ସିଗାରେଟ୍ ଖାଉଥାଏ। ମୁଁ କଣେଇ ଦେଖିଲି ଦୁଇଜଣ ନଗରପାଳକଙ୍କ ଦୃଷ୍ଟି ବିନିମୟ ହେଲା; ସ୍ମିତହାସ୍ୟ ସେମାନଙ୍କ ଅଧରରେ ଫୁଟିଲା।

ନଗରପାଳକ କହିଲେ- ସେ ମିଆଁ ବଦମାସ୍।

ମୁଁ କହିଲି - ତାର ଭିଟାମାଟି ସବୁ ଉଠେଇ ଦିଅ। ତାର ଔରତ୍ ମତେ କହୁଛି, ଆପଣମାନେ ତାଠାରୁ ମାଉଁସ ମାଗଣାରେ ଖାଆନ୍ତି; ସେ କାହାକୁ ପରବାଏ କରେନି।

ଏକଜିକ୍ୟୁଟିଭ ଅଫିସର କହିଲେ- କଅଣ କହିଲା ? ଏ କଥା କହିଲା ?

ମୁଁ କହିଲି- ଦେଖ, ମତେ ବଡ଼ କଷ୍ଟ ହେଲା ବ୍ରଦର୍ ଅଫିସରଙ୍କ ନାଁରେ...।

ନଗରପାଳକ ଟେଲିଫୋନ୍ ଉଠାଇଲେ- ହାଲୋ, ହେଲ୍‌ଥ ଅଫିସର ? ମୁଁ କହୁଛି ଚେୟାରମ୍ୟାନ। ସେ ମିନୁ ମିଆଁର ମାର୍କେଟ ଦୋକାନର ଲାଇସେନ୍‌ସ କାଟିଦିଅ। ତା ବିରୁଦ୍ଧରେ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ଅଭଯୋଗ କରିଛନ୍ତି।

ଅତଏବ ଆଉ କିଛି ବିଚାର ନାହିଁ। ହାଲୋ...ହଁ, ଠିକ୍।

ମତେ ଚାହିଁ କହିଲେ- ଆପଣ ନିଶ୍ଚିନ୍ତ ଥାଆନ୍ତୁ ତାର ଲାଇସେନ୍‌ସ କଟିଲା।

ମୁଁ ଫେରିଆସିଲି। ଗୋଟାଏ ବିଜୟଦୀପ୍ତ ସମ୍ମାନବୋଧରେ ମୁଁ ଘରକୁ ଚାଲିଆସିଲି। ଅନ୍ୟାୟର ଅବସାନ ଘଟିଲା। ସାକିନା ବିବି ଜବତ୍ ହେଲା।

ତହିଁଆରଦିନ ସକାଳ। ପ୍ରାତଃଭ୍ରମଣ ଉଦ୍ଦେଶ୍ୟରେ ବାହାରିଯାଇଥାଏ। ଫେରୁ ଫେରୁ ଟିକିଏ ବିଳମ୍ବ ହୋଇଯାଇଛି। ସିଧା ରନ୍ଧନଶାଳା ଆଡ଼କୁ ଗଲି। କାରଣ ବଜାର ସଉଦା କରି ଆଣିବା ପୂର୍ବରୁ ଗୃହିଣୀଙ୍କଠାରୁ ତାଲିକାଟା ଦରକାର।

ଦେଖିଲି କଅଣ ଜାଣନ୍ତି ? ଆଃ, କଳା ମିଟିମିଟି ଅଧସେରିଆ ଚାରିଗୋଟି ମାଗୁର ମାଛ ହଲ ହଲ ହୋଇ ଖେଳୁଛନ୍ତି ରନ୍ଧନଶାଳାର ଚତ୍ୱର ଉପରେ।

ଅଭାବନୀୟ ଦୃଶ୍ୟ। ମାଗୁର ମାଛର ଝୋଳ୍! ଏ ଦିବ୍ୟ ପଦାର୍ଥ ଆସିଲା କୁଆଡୁ ? ମନଟା ଆନନ୍ଦରେ ଝରିଆସିଲା। ମାତ୍ର ଦେଲା କିଏ ? ମୁଁ ତ ଆଣିନି !

ପୁଣି ସଂବିଧାନ-ସଚେତନ ମନ ଆଶଙ୍କାରେ ଜର୍ଜ୍ଜରିତ ହେଲା। କିଛି କାହାକୁ ପଚାରିବା ପୂର୍ବରୁ ଗୃହିଣୀ କହିଲେ କେଉଁ ପ୍ରକାର ତରକାରି ତମର ଲୋଡ଼ା ? ଝୋଳ ନା ଭଜା, ବେଶୀ ମସଲା ନା କେବଳ ସିଝା-ପରେ ଗୋଲମରିଚ ଡାଳି ଖାଇବ ? ଯିମିତି କହିବ ତିଆରି କରିଦେବି। ରକ୍ତିଆ ମାଛ, କେଉଁ ଦିନରୁ ମନ ଚାହୁଁଥିଲା। ହେଇଟି ଫକୀରା ବଡ଼ ଡରି ଡରି ପିଣ୍ଡା ତଳେ ବସିଛି। ତମେ ଆସିଲାବେଳେ ଦେଖିଲଟିକି ? ସେଇ ଆଣିଛି, କହିଲା - ବଡ଼ କଷ୍ଟରେ ପୋଖରୀରୁ ରାତିଯାକ ବନ୍‌ଶି ପକେଇ ଧରିଛି।

ମୁଁ ଚିକ୍ରାର କଲି- ଏ ଫକୀରା କିଏ ?

ଗୃହିଣୀ ଭୟରେ କହିଲେ- ମଲା, ଏମିତି କାହିଁକି ହେଉଛ ? ସେ ପରା ମିନୁ ଖାଁ ପୁଅ ! ମାଉଁସ ଦୋକାନୀ। ତାର ଲାଇସେନ୍‌ସ କଟିଛି। ତମେ ଦରଖାସ୍ତ କରିଥିଲ ?

ମୁଁ ପାଟିକଲି - ମାଛ କାହିଁକି ଆଣିଲା ? ଫୋପାଡ଼ ସେ ମାଛକୁ। ଏ ଲାଞ୍ଚ ତାକୁ ଫେରାଇ ଦିଅ।

ମୁଁ ରାଗରେ ଚିତ୍‌କାର କରୁଥାଏ। କଳା ଛନ୍ ଛନ୍ ମାଗୁର ମାଛ ଚାରିଟାକୁ ଚାକର ଫେରାଇଦେଇ ଆସିଲା।

ଫକୀରା ପିଣ୍ଡାତଳେ ବସିଥିଲା। ମତେ ଦେଖି କାନ୍ଦିପକାଇଲା। କହିଲା-ଆମେ ମରିଗଲୁ ବାବୁ! ସେ ଡାହାଣୀ ମାଆ ଯୋଗୁ ଆମେ ମରିଗଲୁ। ଲାଇସେନ୍‌ସ କଟିଗଲା। ଟିକିଏ ସୁପାରିସ କରନ୍ତୁ ବାବୁ!

ମୁଁ ପଚାରିଲି- ମାଛ କାହିଁକି କିଣିଥିଲୁ ?

ଫକୀରା କହିଲା- ଖାଲି ହାତରେ କିମିତି ଆସିଥାନ୍ତି ? କିଣି କରି ଆଣିନି ବନ୍‌ସୀ ମାଛ; ରଖନ୍ତୁ ଆଜ୍ଞା !

ମୋର ଅତିମାତ୍ରାରେ ସଂବିଧାନ-ସଚେତନ ମନ ଏ ଲାଞ୍ଚ ନେବାରେ ଅନ୍ତରାୟ ହେଲା। ତା'ଛଡ଼ା ମୁଁ ଆଉ କି ସୁପାରିସ କରିବି ?

ଫକୀରା ମାଛ ସହିତ ଫେରିଗଲା। ମୁଁ ଖୁବ୍ ଖୁସି ହେଲି ଯେ, ମାଛରୂପୀ ପ୍ରଲୋଭନକୁ ମୁଁ ଏଡ଼ାଇ ପାରିଲି, ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କଲି ମୁଁ ସଫଳ ହେଲି। କିଏ କହେ ଯେ ଆମରି ଦେଶ ଲୋକେ ଆମରି ଶତ୍ରୁ? ଅଭିଯୋଗ କଲେ ସେମାନେ ନ ଶୁଣିବେ କାହିଁକି? ସ୍ୱାଧୀନ ଦେଶରେ ଅନ୍ୟାୟ ଚଳିପାରିବ କି? ଆମେ ସବୁ ଅନ୍ୟାୟ ଅନୀତି ସହିଯାଉଥିବାରୁ ଦୁର୍ନୀତି ବଢ଼ୁଛି। ଜୀବନରେ ତ ବଡ଼ କଥା କିଛି କରିହେଉନି। ଏଇତକ ଯେ ହୋଇପାରିଲା, ଯଥେଷ୍ଟ। ଅନ୍ୟାୟ ବିରୁଦ୍ଧରେ ଗୋଟାଏ ସାଫଲ୍ୟ ଅର୍ଜନ କରାଗଲା।

ଦୁଇଦିନ ପରେ ମାର୍କେଟକୁ ଗଲି ମାଉଁସ କିଣିବାକୁ। ଆହା, ବିଚାରୀ ମିନୁ ମିଆଁ ତା ବସିବା ଜାଗାରେ ଆଉ କର୍ମହୀନ ଛାଗ ମେଷକୁ ଝୁଲାଇ ଗରାଖକୁ କହୁ ନ ଥିବ–ଆଇୟେ ସାହେବ, ଫାଷ୍ଟ କିଲାସ୍ ମାଲ୍।

ପୁଣି ଦମକାଏ ସନ୍ତୋଷର ବାତ୍ୟା ହୃଦୟ ଭିତରେ ରହିଗଲା।

ହଁ, ଠିକ୍ କଥା, ସବୁ କୋଠରିରେ ଛେଳି ମେଣ୍ଢା ଦଉଡ଼ିରେ ଝୁଲୁଛନ୍ତି। କେବଳ...

ଏ କଅଣ?

କିଏ ଏ? ମିନୁ ମିଆଁ ତ!

ହଁ, ମିନୁ ମିଆଁ। ଆଜି ତା ଦୋକାନକୁ ଛେଳି ମେଣ୍ଢାରେ ଭରା ରଖିଛି। ମତେ ହଁ ଯେମିତି ବିଦ୍ରୂପ କରିବାପାଇଁ, ମୋର ତଥାକଥିତ ଅତିମାତ୍ରାର ସଂବିଧାନସଚେତନ ମନକୁ ଆଉ ଥରେ ନ୍ୟାୟ ଅନ୍ୟାୟର ଶିକ୍ଷା ଦେବାପାଇଁ ମିନୁମିଆଁ ଆଜି ତା' ବିପଣୀକୁ ବେଶୀ ରଙ୍ଗରେ ସଜେଇଛି।

ମତେ ଦୂରରୁ ଦେଖି ଗଳା ଖଁକାରି, ଗୋଟାଏ ଆଖିରେ ଚାହିଁ, ନିଶରେ ହାତ ବୁଲେଇ ଖରିଦ୍‌ଦାରକୁ କହିଲା- ଆଇୟେ ସାହେବ, ନୂଆ ଲାଇସେନ୍‌ସର ନୂଆ ମାଲ-ଫାଷ୍ଟକିଲାସ ଖାସି- ଆଉ ଘରେ ବିବି ଚଲାଇଚି ତାର ବେବସା-ସାକିନା ବିବି ସେ-ଯାହା କହ, ଦମ୍ ଅଛି ବିବିର।

ମୁଁ ଲଜ୍ଜା, କ୍ରୋଧ ଓ ନିଷ୍ଫଳ ବ୍ୟଥା ଘେନି ସେଠାରୁ ମୁହଁକୁ ତଳକୁ କରି ସେରେ ବାଇଗଣ କିଣି ଘରକୁ ଫେରିଆସିଲି। ରକ୍ଷକ ଯଦି ଭକ୍ଷକ ହୁଅନ୍ତି, ତେବେ ମଣିଷ ନିରୂପାୟ। ଅତିମାତ୍ରାରେ ସମ୍ବିଧାନ-ସଚେତନ ମନ ଓ ନ୍ୟାୟ-ଅନ୍ୟାୟର କଥାକୁ ଘେନି ବିଚାରଶୀଳ ମଣିଷ ଆଜି ନୀରବ ନ ରହି କରିବ ବା କଅଣ?

ମୁଁ ନୀରବ ରହିଗଲି। ଏ ମହାକାଳ ଶକ୍ତି ବିରୁଦ୍ଧରେ ଲଢ଼ିବାକୁ ମୋର ଶକ୍ତି ରହିଲା ନାହିଁ।



# ପ୍ରେତଭୂମିର ପ୍ରତିମା

ପ୍ରେତଗୁଡ଼ାକ ବିକଟାଳ ହସ ହସି ଆଗକୁ ମାଡ଼ିଆସିଲେ। ହସୁଥିଲେ ଆଉ ସମସ୍ତଙ୍କୁ ଚାହିଁ ଇଙ୍ଗିତରେ କଅଣ କହୁଥିଲେ।

ପ୍ରେତଭୂମିର ବେଢ଼ାଜାଲ ଆଜି ଫିଟିଯାଇଛି। ଏମାନଙ୍କୁ ଆଉ କେହି ବାଧା ଦେଇନାହାନ୍ତି। ଏମାନେ ସିଧା ଚାଲିଆସିଛନ୍ତି ଉତ୍ସବ ପ୍ରାଙ୍ଗଣକୁ।

କେଉଁ ଉତ୍ସବ? ଦେଶରେ କଅଣ ଉତ୍ସବର ଅଭାବ ଅଛି? ପ୍ରମୋଦ କାର୍ଯ୍ୟର ଅଭାବ ଅଛି? ସବୁ ଉତ୍ସବରେ ଭାଷଣ ହେଉଛି। ସମସ୍ତେ ଶୁଣୁଛନ୍ତି। ଉଦ୍‌ବୋଧିତ ହେଉଛନ୍ତି।

ଜୀବନ୍ତ ପ୍ରାଣୀ ଶ୍ରୋତାମାନଙ୍କ ଭିତରେ ଆଜି ରୁଣ୍ଡ ହୋଇଛନ୍ତି ପ୍ରେତମାନେ। ଏଇ ଅଶରୀରୀ ପ୍ରାଣୀଗୁଡ଼ିକ ଦିନେ ଆମରି ପୂର୍ବଜ ଥିଲେ। ଆମ ପୂର୍ବରୁ ପରପାରିକୁ ଚାଲିଯାଇଛନ୍ତି। ହେଲେ ମମତା ଛାଡ଼ି ନାହାନ୍ତି। ଉତ୍ସବମୁଖରିତ ମଧ୍ୟାହ୍ନ ଓ ସନ୍ଧ୍ୟାରେ ଏମାନେ ଭାସିଆସନ୍ତି ଆମରି ପାଖକୁ।

ଭାଷଣରେ ଥାଏ – "ହେବ, ହେବା ଉଚିତ, କରିବା ଆବଶ୍ୟକ, ନିତାନ୍ତ ପ୍ରୟୋଜନୀୟ, ଉଚିତ, ସର୍ବବାଦିସମ୍ମତ, ନ ହେଲେ ଚଳିବ ନାହିଁ, ଏହା ହେବା ବାଞ୍ଛନୀୟ" ଇତ୍ୟାଦି ବହୁ ବାଣୀ, ଅନେକ ପ୍ରଚାର।

ସବୁଆଡ଼େ ଏଇ 'ହବା ଉଚିତ'ର ଚହଳ ଭିତରେ କେତେଟା କଅଣ ହେଲା ବା ହେଉଛିର ଅନୁସନ୍ଧାନ ନାହିଁ। ଯେତେବେଳେ ସନୁସନ୍ଧାନ ହେଉଛ, ଦେଖାଯାଉଛି ଯାହା ହୋଇଛି ସେଥିରେ ତ୍ରୁଟି ରହିଛି। କେତେକ ଫାଟିବାକୁ ଲାଗିଲାଣି, କେତେକ ଫୁଟିବାକୁ ଲାଗିଲାଣି, ଅବଶ୍ୟ ପ୍ରସ୍ଫୁଟନ ଅର୍ଥରେ ନୁହେଁ। କେତେକ ବ୍ୟବସ୍ଥା ପରିତ୍ୟକ୍ତ ହେଲାଣି। କେତେକ କାର୍ଯ୍ୟ ଆଉଥରେ ହେଉଛି; କାରଣ ଯା ଭିତରେ ଦୃଷ୍ଟିର ଭିନ୍ନତା ଆସିଯାଇଛି।

ଭାଷଣବେଳେ ଲୋକମାନେ ତନ୍ମୟ ହୋଇ ଶୁଣୁଥାନ୍ତି। ଅଶରୀରୀମାନେ ତନ୍ମୟ ହୁଅନ୍ତି ନାହିଁ। ସେମାନେ ଜାଣନ୍ତି ତାଙ୍କର ଆଉ ଇପ୍‌ସା କିଛି ନାହିଁ, ପ୍ରବୃତ୍ତି ନାହିଁ, ଭୋଗ ସ୍ପୃହା ନାହିଁ। ତେବେ ଆସୁଛନ୍ତି କାହିଁକି? ପ୍ରେତଭୂମି ଛାଡ଼ି ଏମିତି ମେଘପଟଳ ଦେଇ, ସୂର୍ଯ୍ୟରଶ୍ମି ଧାରାରେ ଅବା ଶିଶିର ବିନ୍ଦୁର ହେମାଳ ଆଶ୍ୱସ୍ତି ଭିତରେ ଆସିଛନ୍ତି କାହିଁକି?

ସେମାନେ ଆସିଛନ୍ତି ଦେଖିବାକୁ ଯେଉଁମାନଙ୍କୁ ଛାଡ଼ିଦେଇ ଗଲେ ସେମାନେ ଆଜି କିପରି ଧର୍ମକୁ ସାକ୍ଷୀ ରଖି, ଈଶ୍ୱରଙ୍କୁ ଆଗରେ ଥୋଇ, ଧର୍ମଶାସ୍ତ୍ର ଛୁଇଁ, ଉର୍ଦ୍ଧ୍ୱ ଆକାଶକୁ ଚାହିଁ, ଦେଶର ପ୍ରାକ୍ତନ ସଂସ୍କୃତି ଓ ସେଥିରେ ଯାହା ମହତ୍ ଓ ଉଦାର ତାକୁ ମନେପକାଇ ଗଦ୍‌ଗଦ୍ କଣ୍ଠରେ କହୁଛନ୍ତି– ଆମେ ଭଲ ହେବୁ।

– ଆମେ ମଣିଷ ହେବୁ।

– ଦେଶ କଥା ଭାବିବୁ।

– ଅନ୍ୟାୟକୁ ବିରୋଧ କରିବୁ।

– ଦେଶ ଓ ବିଶ୍ୱବିଦ୍ୟାଳୟର ସୁନାମ ରଖିବୁ।

– ପବିତ୍ର ଜୀବନ-ମାର୍ଗରେ ଗତି କରିବୁ।

ବାସ୍ତବରେ ଉତ୍ସବ ପ୍ରାଙ୍ଗଣଟା କେମିତି ଗୋଟାଏ ପାରମାର୍ଥିକ, ସାତ୍ତ୍ୱିକ ଭାବାବେଶରେ ଥନ୍ ଥନ୍ ହୋଇଉଠିଲା।

ଏଇ ଆମର ପୁଷ୍ପସ୍ତବକଗୁଡ଼ିକ ସତେ କେତେ ମହତ୍ କାମନାରେ କାମୀ ହୋଇ ଆଜି ମାତୃପୀଠ ଓ ଜ୍ଞାନ-ବିଜ୍ଞାନର ମନ୍ଦିର ବିଶ୍ୱବିଦ୍ୟାଳୟକୁ ଛାଡ଼ି ଜୀବନର ରୁକ୍ଷ କଠୋର ମାର୍ଗ ଉପରକୁ ଚାଲି ଆସିବେ ! ଏଇମାନେ ଦିଗ ଦେଖାଇବେ ଆସନ୍ତାକାଲିର ମଣିଷକୁ। କୋଣାର୍କ ଯାଙ୍କର କରଣୀ ଦେଖି ଲଜ୍ଜା ପାଇବ। ଗୋପବନ୍ଧୁ ସମାଧି ଭିତରେ କର ଓଲଟାଇବେ। ଗଙ୍ଗାଧର ଆଉଥରେ 'ତପସ୍ୱିନୀ' ପୃଷ୍ଠା ଓଲଟାଇବେ। କୃପାସିନ୍ଧୁ ଇତିହାସ ଲେଖିବାକୁ ଆଉଥରେ ଲେଖନୀ ଧରିବେ। ଶ୍ରୀଧର ମହାପାତ୍ର ପୁଣି ସମାଧିରୁ ଉଠିଆସି ପଥର ଉପରେ ଜାତୀୟ କଳା ଫୁଟାଇବେ।

ଏଗୁଡ଼ାକ ସବୁ ହବ। ସେମିତି ଜଣାପଡୁଛି। ମାତ୍ର ପ୍ରେତଗୁଡ଼ାକ କାହିଁକି ହସିବାରେ ଲାଗିଛନ୍ତି ? ମଧୁରିଆ ହସ ନୁହେଁ ବିକଟାଳ। ପରସ୍ପର ଭିତରେ କଥା କହୁଛନ୍ତି।

ଜଣେ କହୁଛି – ମୁଁ ଏମିତି ଦିନେ ଉତ୍ସବରେ ଶପଥ ନେଇଥିଲି, ଭଲ ହେବା ପାଇଁ, ମଣିଷପଣିଆ ଦେଖାଇବାପାଇଁ। ମାତ୍ର ଜୀବନ-ମାର୍ଗରେ ଯାଉ ଯାଉ କଅଣ ସବୁ ଗୋଳମାଳ ହୋଇଗଲା। ମୁଁ ଲୋଭୀ ହୋଇପଡ଼ିଲି। ଖାଲି ଲୋଭ-ଲୋଭ-ଲୋଭ।

ମତେ ମୋ ସ୍ତ୍ରୀ ସାହାଯ୍ୟ କଲା। ମୋ ସନ୍ତାନମାନେ କହିଲେ ମୋ ଉପାର୍ଜ୍ଜନଠାରୁ ଆହୁରି ବେଶି ଉପାର୍ଜ୍ଜନ କରିବାକୁ। ସେମାନେ ଚାହିଁଲେ ଆରିଷ୍ଟୋକ୍ରାଟ ହେବା ପାଇଁ। ସ୍ତ୍ରୀ ଚାହିଁଲେ ଘରବାଡ଼ି, ବଗିଚା ଓ ଭୂଷଣ।

ମୁଁ ଝାସ ଦେଲି ଦୁର୍ନୀତି ତରଙ୍ଗିଣୀରେ.. ଆସିଲା ଅର୍ଥ ଆଗ ପଛ ଚତୁର୍ଦ୍ଦିଗ ଖୋଲା ପଥରେ। ଆଜି ମୁଁ ବଞ୍ଚିନାହିଁ; ମାତ୍ର ମୁଁ ଦେଖୁଛି ମୋରିଭଳି ଏମାନେ ଶପଥ ନେଉଛନ୍ତି ଭଲ ହେବାପାଇଁ। ମତେ ହସ ମାଡୁଛି।

ଏହା କହି ପ୍ରେତ ଆଉଥରେ ବିକଟାଳ ହସ ହସିଲା। ସେ ହସ କେହି ଶୁଣିପାରିଲେ ନାହିଁ।

ପୁଣି ସେ କହିଲା—ଭଲ ହେଲେ ଲୋକ ଦୁଃଖ ପାଇବ, ଏ ସତ୍ୟଟା ଏବେ ବି ବହୁ ଦୂରେ ରହିଯାଇଛି। ଭଲପଣିଆ ସାଙ୍ଗରେ କ୍ଷତବିକ୍ଷତ ହେବାର ସହସ୍ର ଚିହ୍ନ ବହନ କରିବ ଭଲଲୋକ। କିନ୍ତୁ କାହିଁକି ? ମୁଁ ଏବେ ମରିଛି। କାଁ ଭାଁ ଯଦି କେହି ଭଲଲୋକ ଆମ ସମୟର ଥିବ, ସେ ବି ମରିଛି। ମାତ୍ର ସଂସାରରେ ମୁଁ ରଖିଗଲି ପ୍ରତି ସହରରେ କୋଠାଘର; ଆଉ ସେ କୋଠାଘର ସାମନା ଗେଟ୍ ସ୍ତମ୍ଭରେ ମୋର ନାମାଙ୍କନ। ବଡ଼ ମଜବୁତ୍ ସେ କାନ୍ଥିନି-ସହଜରେ ହଲିବ ନାହିଁ।

ପରମିଟ୍, ଲାଇସେନ୍ସ, ତୋଷାମୋଦ, ମୂକ ଜନତାକୁ ଫୁସୁଲାଇ କାର୍ଯ୍ୟ ସିଦ୍ଧି– ଏଇ ଥିଲା ମୋର କୌଶଳ।

ଯେ ଭଲଲୋକ ଥିଲା, ସେ କେଉଁଠି କିଛି ରଖିଯାଇନାହିଁ। ସେ ମରି ଯାଇଛି। ତାର ଆସିବାଟା

ଯେମିତି ନିରର୍ଥକ ଓ ନିରାଭରଣ, ଯିବାଟା ବି ସେମିତି ଠିକ୍ ଅଭୂଷିତ ଓ ଅକାରଣ।

ଏମାନେ ମୋରିଭଳି ଆଜି ଶପଥ କରୁଛନ୍ତି– ଭଲ ହେବେ। ମାତ୍ର ସଂସାରର ଗତି ଯେମିତି, ମୁଁ କହୁଛି, ମୁଁ ଜଣେ ପ୍ରେତ; ସର୍ବଭୁବନଚାରୀ ଜଣେ ପ୍ରେତ କହୁଛି, ସେମାନେ ଭଲ ହୋଇପାରିବେ ନାହିଁ। କାରଣ ଭଲ ହେବା ସାଙ୍ଗରେ ଯେ ଦୁଃଖ, ବେଦନା, ଯନ୍ତ୍ରଣା ରହିଛି ତାକୁ ସେମାନେ ହସି ହସି ଗ୍ରହଣ କରି ପାରିବେ ନାହିଁ।

ଆଉ ଜଣେ ପ୍ରେତ ବିକଟାଳ ହସି କହିଲା- ରଖ ଭାଇ, କେତେ ବକ୍ ବକ୍ କରୁଛ? ଦେଖ୍ କେମିତି ଝିଅଟା ସାର୍ଟିଫିକେଟ ନେଉଛି। ମାତୃଜାତିକୁ ଟିକିଏ ଦେଖ୍।

ଏ ପ୍ରେତ ନାରୀ। ଅଳ୍ପ ବୟସରୁ ପ୍ରେତର ଭୂମିକା ତାକୁ ନେବାକୁ ପଡ଼ିଛି। ମରଣ ତା ପାଖକୁ ସହଜ ଓ ସ୍ୱାଭାବିକ ଭାବରେ ଆସି ନ ଥିଲା। ଚିକିତ୍ସାଳୟର ଟେବୁଲ ଉପରେ ସଂଜ୍ଞାହୀନ ଅବସ୍ଥାରେ ସେ ଚାଲିଗଲା।

ତାର ବି ମନେପଡୁଛି ସେଇ ଦିନ ଉତ୍ସବର କଥା। କେତେ ଆଶା, କେତେ ସ୍ୱପ୍ନ, ବଧୂର ସ୍ୱପ୍ନ, ଜନନୀର ସ୍ୱପ୍ନ, ସେବିକାର ସ୍ୱପ୍ନ, ପ୍ରେୟସୀର ସ୍ୱପ୍ନ ଧରି ସେ ଆଣିଥିଲା ଏଇ ବାଂଛିତ ପତ୍ରଖଣ୍ଡିକ। ତାର ବିଳାପ ହିଁ ସାର ହେଲା। ପୁରୁଷ ତାକୁ ବିଶ୍ୱାସ ଦେଇଥିଲା। ପୁରୁଷର କାନ୍ଧ ଉପରେ ଭାରା ରଖି ସେ ଚାହିଁଥିଲା ପଥ ନିର୍ଦ୍ଦେଶ, କିନ୍ତୁ ସେ ପଥ ହୁଡ଼ିଲା। ଏଇ ଯେ ତରୁଣୀମାନେ ଆଜିର ଉତ୍ସବରେ ନୂଆ ଜଗତ ଭିତରକୁ ଯାଉଛନ୍ତି, ସେମାନେ ଜାଣନ୍ତି ସେଠି କେତେ ଆନନ୍ଦ କେତେ ବେଦନାର ଲୀଳା ରହିଛି?

ଅତିଥି ଭାଷଣ ଦେଉଥିଲେ– 'ହେବା ଉଚିତ୍' ବାଣୀରେ ଭାଷଣଟି ପରିପୂର୍ଣ୍ଣ ଖାଲି ଜାଗୃତିର କଥା-ଦେଶକୁ ଚିହ୍ନ, ଭାଷାକୁ ଚିହ୍ନ, ଭାବକୁ ଚିହ୍ନ, ସଂସ୍କୃତିକୁ ଚିହ୍ନ, ଭଲ ମଣିଷ ହୁଅ।

ଆଉ ଜଣେ ପ୍ରେତ ଜୀବନର ଅଭ୍ୟାସ ନେଇ ମୁଣି ଖଣ୍ଡିଏ ଧରି ବସିଥାନ୍ତି। ସେ ଜାଣନ୍ତି, ସେ ମୁଣି ତାଙ୍କୁ ଦେଇଥିଲା କଅଣ। ମୁଣି ଦେଖାଇ ସେ ନିଜପାଇଁ, କେବଳ ନିଜପାଇଁ ନୁହେଁ ତାଙ୍କର ବହୁ ସ୍ତରର ବଂଶଜମାନଙ୍କ ପାଇଁ ରଖିଗଲେ ଐଶ୍ୱର୍ଯ୍ୟ।

ସେ ପ୍ରତିନିଧି। ପ୍ରେତ-ସଂସାରରେ କେହି କାହାର ପ୍ରତିନିଧିତ୍ୱ କରନ୍ତି ନାହିଁ। ତେଣୁ ତାଙ୍କର ଭୂମିକା ନାହିଁ; ମାତ୍ର ମୁଣିଟି ଅଛି। ଜୀବନରେ ପ୍ରତିନିଧିତ୍ୱ କଲାବେଳେ ମୃତ୍ୟୁ ଯେ ଆସିବ, ସେ କଥା ସେ ଭାବି ନ ଥିଲେ। ମାତ୍ର ପାଞ୍ଚବର୍ଷ ପାଇଁ ସେ ଜନତାର ପ୍ରତିନିଧି ଥିଲେ। ସେଥିରେ ବହୁ ଡାକ୍ତରଖାନା, ବହୁ କୂପ ଖନନ, ବହୁ ସେବାଶ୍ରମ, ବହୁ ଲୋକହିତକର ଅନୁଷ୍ଠାନ କରିବାକୁ ଅର୍ଥ ଉପଯୋଗ କଲେ।

ଉପଯୋଗ ଆତ୍ମଯୋଗରେ ବହିଗଲା। ପ୍ରେତ ଜଣକ ବିମର୍ଷ ଦିଶୁଥିଲେ। ଏଇ ଯୁବକମାନେ ତାଙ୍କ ଆଖିରେ ସମସ୍ତେ ମୁଣିଧରାବୋଲି ଜଣାପଡୁଥିଲେ। ଅଶରୀରୀ ଭାବୁଥିଲେ, ଯାଙ୍କର ମୁଣିଗୁଡ଼ିକ ତାଙ୍କ ମୁଣି ଅପେକ୍ଷା ବେଶୀ ଗଭୀର ହେବ କି? ବେଶୀ ଟାଣ ହେବ କି? ଯେତେ ଲମ୍ୱାଉଥିଲେ ସେତିକି ବଢୁଥିବ କି? ଉତ୍ତର ତାଙ୍କ ମନକୁ ଆପେ ଆସୁଥିବ।

ଆଉ ଜଣେ ପ୍ରେତଙ୍କର ଆଖି ଛଳଛଳ ହେଉଥିଲା। ସେ ଭାବୁଥିଲେ, ସେ କଅଣ କରି ଅସ୍ତମିତ ହୋଇଗଲେ। ସେ ଥିଲେ ଶିକ୍ଷକ। ଭଲ

ଚାକିରି ନ ମିଳିବାରୁ ସେ ଆସିଲେ ସହଜ ପନ୍ଥାକୁ। ହୃଦୟରେ କେବେହେଲେ ଜ୍ଞାନର ପିପାସା ନଥିଲା, କେବେହେଲେ ପ୍ରାଣରେ ବିଶ୍ୱବୋଧ ନ ଥିଲା; ତିଳେ ମାତ୍ର ନ ଥିଲା ତାଙ୍କ ଆଶ୍ରୟରେ ସଂଗୃହୀତ ହୋଇଥିବା ତରୁଣମାନଙ୍କୁ ଉଦ୍‌ବୋଧନ କରିବା ପାଇଁ ମମତା।

ସେ ଆସିଲେ। ନିଜେ ଜ୍ଞାନଦୀପ୍ତ ନ ଥିବାରୁ ପିଲାଙ୍କୁ ସନ୍ତୁଷ୍ଟ କଲେ ଅନ୍ୟ ଉପାୟରେ। ଦଳ ବାନ୍ଧିଲେ, ଛାତ୍ରଙ୍କୁ ହୋଟେଲକୁ ଡାକିଲେ, ପ୍ରିୟ ଓ ଅପ୍ରିୟ ବ୍ୟବଧାନ ସୃଷ୍ଟି କଲେ। ଯାହା ନୁହଁନ୍ତି ତାହା ପ୍ରଚାର କଲେ। ଦଣ୍ଡିଧରି ତୁଳିବାକୁ ତାଙ୍କର ଯୋଗ୍ୟତା ନ ଥିଲା। ସେ ହେଲେ ପ୍ରିୟପାତ୍ର, ଶସ୍ତା ନେତୃତ୍ୱ ନେଇ ଦିନକାଳ କଟେଇଲେ।

ମୃତ୍ୟୁ ଆସିଲା। ସେ ଖୋଜିବସିଲେ ଜୀବନ-ଗ୍ରନ୍ଥ। ସେଥିରେ ଗୋଟିଏ ବି ଗାର ପଡ଼ି ନ ଥିଲା। ଆଜି ଏ ଉତ୍ସବ ପ୍ରାଙ୍ଗଣରେ ବି ସିଗାରେଟ୍ ଖୋଳର ସ୍ତୂପ ଓ ହୋଟେଲରେ ଭୋଜ୍ୟ ପଦାର୍ଥଶୂନ୍ୟ ଖାଲି ପ୍ଲେଟ୍ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି। ସେ ବୋଧହୁଏ ବିଗତ ଜୀବନକୁ ଚାହିଁ ଦୁଃଖ କରୁଥିଲେ।

ପାଖକୁ ପାଖ ବସିଥିଲେ ପ୍ରେତ ପ୍ରେତିନୀ। ଜୀବନରେ ଥରେ ଯଦି ଏମିତି ବସିଥାନ୍ତେ, ଆଉ ବସାବସିର ମୈତ୍ରୀ ନେଇ ଶିଶୁଟି ସହଜରେ ଭୂମିଷ୍ଠ ହୋଇପାରିଥାନ୍ତା, ତେବେ ପ୍ରେତିନୀଟି ଆଜି ବି ସଂସାର ଆବର୍ତ୍ତରେ ସୁଖଦୁଃଖରେ ରହିଥାନ୍ତା।

ପ୍ରେତିନୀ ପଚାରିଲା-ଚିହ୍ନି ପାରୁଛନ୍ତି ?

ପ୍ରେତଭୂମିରେ ଚିହ୍ନା ଅଚିହ୍ନା କଅଣ ? ତେବେ ଖାଲି ଖୁଆ ଦେବାପାଇଁ ପ୍ରେତିନୀ ଡାକିଲା ପ୍ରେତ-ଡାକ୍ତରଙ୍କୁ।

ବିଶାଳପଡ଼ାର ହରି ବିଶ୍ୱାଳର ସ୍ତ୍ରୀ କନକ। ପହିଲି ପ୍ରସବ। ହରି ଦୁଇ ମାଇଲ ଦୂରରେ ରହିଥିବା ଡାକ୍ତରଙ୍କୁ ଡାକିଥିଲା ତା'ର ସ୍ତ୍ରୀକୁ ଉଦ୍ଧାର କରିବା ପାଇଁ। ଦେଶର ତହବିଲରୁ ଡାକ୍ତରୀ ପାଠ ପଢ଼ିଥିଲେ। ଏମିତି ଏକ ଉତ୍ସବରେ ସେ ସ୍ୱର୍ଣ୍ଣ ପଦକ ପାଇଥିଲେ। ସର୍ଜରୀରେ ସୁନାମ ଥିଲା। ନିଜେ ଇଚ୍ଛା କରି ଗାଁଗହଳକୁ ଯାଇଥିଲେ ଜନସେବା କରିବାପାଇଁ। ସ୍ୱର୍ଣ୍ଣ ପଦକ ପାଇବା ପରେ ପରେ ଏ ଇଚ୍ଛା ଜନ୍ମିଥିଲା। ତାପରେ ଖାଇଲା ଅର୍ଥମୋହ। ତା ପାଖରେ ତରୁଣୀର ପ୍ରସବ-ଯନ୍ତ୍ରଣା, ପୁରୁଷର ଲୁହ, ଗାଁବାଲାଙ୍କର କାକୁତି ମିନତି କିଛି ରହିଲା ନାହିଁ।

ଗୋଟାଏ ଡେଲିଭରି କେସ୍ ପାଇଁ ଦୁଇଶ' ଟଙ୍କା ନ ହେଲେ ନ ଚଳେ– ଡାକ୍ତର ସାରାକଥା ଶୁଣାଇଦେଲେ। ଗରିବ ହରି ଯେତେବେଳେ ହରିବୋଲ ଦେଇ କନକର ମଡ଼ା ଉଠାଏ, ସେତେବେଳେ ପିଲାଟାର ମୁଣ୍ଡ ଅଧା ବାହାରିଆସିଥିଲା। ଟିକିଏ ଯନ୍ତ୍ରଚାଳନା, ଟିକିଏ ଚିକିତ୍ସା, ଟିକିଏ ସ୍ନେହବାଣୀ ଦରକାର କରୁଥିଲା ପ୍ରକୃତି। ସେତକର ଅଭାବରେ ହରିର ସଂସାର ଜଳିଗଲା।

– "କଅଣ ଚିହ୍ନି ପାରୁଛନ୍ତି ?" ପଚାରିଲା କନକ ପ୍ରେତିନୀ। ଡାକ୍ତର-ପ୍ରେତ ତାକୁ ଚିହ୍ନିଥିଲେ। ସେତିକିବେଳେ ମେଡ଼ିକାଲ କଲେଜର କୃତୀ ଛାତ୍ର ସୁବର୍ଣ୍ଣ ପଦକ ନେଉଥିଲେ। କନକ ଏଇ ଦୃଶ୍ୟ ଦେଖି ପ୍ରେତ-ଡାକ୍ତରଙ୍କୁ ଡାକିଥିଲା।

ମାଗଣାରେ ଚିକିତ୍ସା ପାଆନ୍ତି ନର୍ସିଂ ହୋମ୍‌ରେ ସେଇ ଲୋକଗୁଡ଼ାକ- ଯାହାଙ୍କର ବିଶ୍ୱାଳପଡ଼ାରେ ଘର ନାହିଁ, ଯେଉଁମାନଙ୍କର ହାତରେ ବିଣ୍ଡି ବସିନାହିଁ ଲଙ୍ଗଳ ଧରି, ଯାହାଙ୍କର କନକଭଳି ଗ୍ରାମ୍ୟ-ସ୍ତ୍ରୀ ନାହିଁ।

ଏହି କଥା କନକ ଚେତାଇଦେଲା ପ୍ରେତ-ଡାକ୍ତରଙ୍କୁ। ଡାକ୍ତରଙ୍କର ଆଖିରୁ ଲୁହ ଝରୁଥିଲା। ବୋଧହୁଏ ମନେ ମନେ ଭାବୁଥିଲେ, ଆଉଥରେ କିଏ ତାଙ୍କୁ ମଣିଷ ଜୀବନ ଦିଅନ୍ତା କି ସେ କନକର ଦୁଃଖ ଦୂର କରନ୍ତେ। ମାତ୍ର ଆଉ କଅଣ ଆସିବ ଏ ଦୁର୍ଲ୍ଲଭ ମଣିଷ ଜୀବନ? ଆଉ କଣ ଥରେ ଏଇ ପ୍ରେତ-ଡାକ୍ତରର ଅଭିଳାଷପାଇଁ କନକ ସନ୍ତାନସମ୍ଭବା ହେବ ?

ଛୁରି, ପିସ୍ତଲ, ଠେଙ୍ଗାରେ ଶୋଭିତ ଏକ ଛାୟାମୂର୍ତ୍ତି ବସିଥିଲା ଉତ୍ସବ ପ୍ରାଙ୍ଗଣରେ ଭଲଲୋକଙ୍କର ଏ ହନ୍ତାର...ପଛୁଆ ଯାଙ୍କର ସାଧନା। ମୁହଁରେ ହସ, ନିର୍ମଳ ହସ। ମୈତ୍ରୀ ହସ ଝରିଯାଉଥାଏ; ମାତ୍ର ଶରଶଯ୍ୟାରେ ସଜ୍ଜିତ ଯାଙ୍କର କଳେବର। ଏ ପ୍ରଥମେ ପଠାନ୍ତି କୁତ୍ସା ସହଚରକୁ। ଭଲଲୋକର ସମ୍ମାନ ନଷ୍ଟ କରିବାକୁ, ତାକୁ ହୀନବଳ କରିବାକୁ ଆଗ କୁତ୍ସା ଓ ନିନ୍ଦା ସହଚରକୁ ପଠାଇ ଦିଅନ୍ତି। ଶୂନ୍ୟଗର୍ଭ, ବିଚାରହୀନ କେତେ ଲୋକ ସ୍ନାୟୁଚଟକ ଏଇ କୁତ୍ସାକୁ ବିଶ୍ୱାସ କରି ନିଜର ସତୀଧର୍ମ ଦେଖାନ୍ତି। ତା ପରେ ଛୁରା-ଛୁରିରେ ପିଠି ପଛକୁ ଆଘାତ କରି ତା'ର ଭୂଲୁଣ୍ଠିତ ଦେହ ଉପରେ ନିଶୁଣି ବସାଇ ପାହାଚ ପରେ ପାହାଚ ଉପରକୁ ଚଢ଼ନ୍ତି ଏଇ ନରାଧାମମାନେ।

ଏ ସେଇ ଲୋକ। ଦିନେ ସେ ବି ଜୀବନକାଳରେ ଏମିତି ସମାବର୍ତ୍ତନ ଉତ୍ସବରେ ଭଲ ମଣଷ ହେବା ପାଇଁ ଶପଥ ନେଇଥିଲା; ଆଜି ସେ ଶପଥ କାହିଁ ?

ଉତ୍ସବ ଶେଷ ହୋଇଆସିଲା। ତା ସଙ୍ଗେ ସଙ୍ଗେ ଅନ୍ଧାର ସ୍ପର୍ଶ କଲା ଦିଗନ୍ତକୁ। ପ୍ରେତ-ପ୍ରେତିନୀମାନେ ଜୀବନ୍ତ ପ୍ରାଣବନ୍ତ ଲୋକଙ୍କୁ ଅଭିନନ୍ଦନ ଜଣାଇ ସଞ୍ଜ ଛାଇ ଭିତରେ କ୍ରମେ ମଉଳିଗଲେ ଦିଗନ୍ତ ପରପାରେ। କି ବାର୍ତ୍ତା ନେଇ ଗଲେ ସେମାନେ ଜାଣନ୍ତି।

ନା, ବାର୍ତ୍ତା ଆଉ କଅଣ ? ଆରବର୍ଷ ବି ଏଇ ଉତ୍ସବ ଆସିବ। ଆରବର୍ଷବେଳକୁ ଏ· ଉତ୍ସବରେ ଆଜିର ଦର୍ଶକ ପ୍ରେତ-ପ୍ରେତିନୀଙ୍କ ସଂଖ୍ୟା ଆହୁରି ବେଶି ହୋଇଥିବ।

ଯେଝା ବାଟରେ ଯେ ଚାଲିଗଲେଣି। ହାତରେ ପ୍ରମାଣପତ୍ର ଯେ ସେମାନେ ଶିକ୍ଷିତ। ଗୋଡ଼ରେ ଦୃପ୍ତ ଭଙ୍ଗୀ ଯେ ସେମାନେ ଦୃଢ଼ଚେତା, ଆଖିରେ ତୀକ୍ଷ୍ଣ ଅବଲୋକନ ଯେ ସେମାନେ ଦୂରକୁ ଦେଖିପାରୁଛନ୍ତି, ମୁହଁରେ ବିଳସିତ ପ୍ରତିଭା ଯେ ସେମାନେ ଆଗାମୀ ଯୁଗର ସାର୍ଥକ ପଥଚାରୀ। ଏଇ ପ୍ରମାଣ, ଭଙ୍ଗୀ, ଚେତନା, ଅବଲୋକନ ଓ ପ୍ରତିଭାକୁ କିଏ ବା ସ୍ୱାଗତ ନ କରିବ ?

ପ୍ରେତାତ୍ମାଗୁଡ଼ାକ ମଉଳିଯାଇଛନ୍ତି-ଭଲ ହୋଇଛି। ସେମାନେ କେବଳ ପ୍ରାଣକୁ ଅବସାଦ ଦେଉଥିଲେ, ନୁହେଁ ? ସେଗୁଡ଼ାକ ଦୂରରେ ରହନ୍ତୁ।



# ଅମୃତର ଜୟ ହେଉ

ଅରଣ୍ୟକୁ ପରିଷ୍କୃତ କରାଯାଇ ସେଠାରେ ନୂତନ ସୌଧ ତୋଳାଯାଇଛି। ଏଇ ସୌଧର ନାମକରଣ କରାଯାଇଛି–

"ଚନ୍ଦନା ମାତୃମଙ୍ଗଳ ଓ ଚିକିତ୍ସାଳୟ।"

ଦେଶରେ ବହୁ କେନ୍ଦ୍ର ଏମିତି ପ୍ରତିଷ୍ଠିତ ହେଉଛି। ବିଶେଷରେ ରୋଗବ୍ୟାଧିର ଚିକିତ୍ସାପାଇଁ ଏବଂ ମାତୃଗର୍ଭରୁ ନବଜାତକକୁ ଏ ଧରା ଉପରକୁ ଆଣିବା ପାଇଁ ଚିକିତ୍ସା କେନ୍ଦ୍ର ଓ ମାତୃମଙ୍ଗଳ କେନ୍ଦ୍ରସ୍ଥାପନ କରାଯାଉଛି।

ଏଗୁଡ଼ିକ ମହତ୍ କର୍ମ। ଯେଉଁମାନେ ଏଥିରେ ଉଦ୍ୟୋକ୍ତା, ଏ ନିର୍ମାଣ କର୍ମର ବିନ୍ଧାଣୀ, ସେମାନଙ୍କୁ ଏ ଜାତି ମନେରଖିବ; ସେମାନଙ୍କ କୀର୍ତ୍ତିକୁ ଭାବୀ କାଳର ଆଗାମୀ ମଣିଷ ମନେରଖିବ।

ଚନ୍ଦନା କିଏ ? ଯାହାଙ୍କ ନାଆଁରେ ଏ କଲ୍ୟାଣକର ଅନୁଷ୍ଠାନଟି ଗଢ଼ାଗଲା, ସେ କିଏ ? ଆଜି ଏ କଥାର ପ୍ରତିଧ୍ୱନି ହୁଏତ ସେଇ ଅରଣ୍ୟର ପତ୍ରପଟରୁ ବାହାରିଆସିବ ବା ଯେ ନଦୀଟି ଆଶ୍ରମକୁ ଘେରିଯାଇ ବହିଯାଉଥିଲା, ଆଜି ତାର ଚିହ୍ନବର୍ଣ୍ଣ ନାହିଁ, ସେ ହୁଏତ କହିପାରିବ। ମାତ୍ର ଅରଣ୍ୟ, ଆଶ୍ରମ ବା ନଦୀ ବାକ୍‌ଶକ୍ତିହୀନ ପ୍ରକୃତି। ସେମାନେ କିଛି କହି ପାରିବେ ନାହିଁ କି ତାଙ୍କ କଥା କେହି ଶୁଣି ପାରିବେ ନାହିଁ।

ଏବେ ଦଶ କୋଡ଼ିଏ ଧୁନିକୁ ପୋତିପକାଇ ସେଗୁଡ଼ିକ ଉପରେ କୋଠା ତିଆରି କରାଯାଇଛି। ରାଜମିସ୍ତ୍ରୀମାନେ ଏଡ଼େ ବଡ଼ ବଡ଼ ଗର୍ତ୍ତକୁ ପୋତିବାରେ କମ୍ ଘର୍ମାକ୍ତ ହୋଇନାହାନ୍ତି। ବଡ଼ ବଡ଼ ଗର୍ତ୍ତର ଧୁନି, ଯେଉଠି ଦିନେ ସୁବର୍ଣ୍ଣ ଅଳଙ୍କାର, ପାଟଶାଢ଼ି, ଗରାଏ ଗରାଏ ଘିଅ, ମହୁ ଓ ବସ୍ତା ବସ୍ତା ଅକ୍ଷତ ତଣ୍ଡୁଳ ସର୍ବଭୁକ୍ ଅଗ୍ନି କ୍ଷଣକେ ଭୋଜନ କରି ଦେଇଥିଲା, ସେଠି ଏବେ ଷାଠିଏ, ସତୁରି, ଅଶୀ ନମ୍ବର ଜନ୍ମ ପ୍ରକୋଷ୍ଠ, କେବିନ୍ ଛିଡ଼ା ହୋଇଛି। ସେଠି ନବ ପ୍ରାଣୀ ଜନ୍ମନେଉଛି।

ଡାକ୍ତରଖାନାର ବୁଢ଼ା ବେହେରା ହାଡୁଦାସ ସେଦିନ ମାଟି ଖୋଳୁ ଖୋଳୁ ପାଇଲା ଗୋଟାଏ ରକ୍ତଚନ୍ଦନବୋଳା ତ୍ରିଶୂଳ। ଯେଉଁ ମାଟିତଳୁ ତ୍ରିଶୂଳ ବାହାରେ ଏବଂ ତାହା ଚନ୍ଦନଚର୍ଚ୍ଚିତ ଥାଏ, ସେ ମାଟି ଯେ କେତେ ପବିତ୍ର ତାହା କାହାକୁ ଜଣାଇବାକୁ ପଡ଼ିବ ନାହିଁ।

ସେତିକି ଆବିଷ୍କାରରେ କିଛି ଆଶ୍ଚର୍ଯ୍ୟ ହେବାର ନ ଥିଲା। ପ୍ରତ୍ନତତ୍ତ୍ୱ ବିଭାଗ ସେ କଥା ପରୀକ୍ଷା କରିଥାନ୍ତା ବା ଯାହା କିଛି ଗୋଟାଏ ବ୍ୟବସ୍ଥା ହୋଇଥାନ୍ତା–ମାତ୍ର ସେତିକିରେ କିଛି ସରିଗଲା ନାହିଁ।

ଧାଇ ସେବତୀ ଏବେ ସେଦିନ ଖରାବେଳଟାରେ ପ୍ରସୂତିର ଫୁଲନାଡ଼ୀ ପୋତିବାକୁ ଯାଇ ସେଇ ମାଟି ଗର୍ତ୍ତରୁ କେତେଖଣ୍ଡ କୌପୀନବସ୍ତ୍ର ପାଇଗଲା। ଆଶ୍ଚର୍ଯ୍ୟ କଥା, ସେ କୌପୀନଗୁଡ଼ିକର କି ଜୀବନୀଶକ୍ତି ସତେ, କି ପରମାୟୁ ଯେ ସେଗୁଡ଼ାକ ମାଟିତଳେ ରହି ବି ଖୁବ୍ ସତେଜ ଦେଖାଯାଉଥିଲେ।

ଅବଶ୍ୟ ଧାଇ ତାହା ସ୍ପର୍ଶ କଲା ନାହିଁ। ବିଚିତ୍ର କଥା ! ଯେଉଁ ଧାଇ ଚବିଶ ପ୍ରହର ରକ୍ତ ପୂଜ ଫୁଲନାଡ଼ିକୁ ଦିବ୍ୟ ଆନନ୍ଦରେ ଏ ହାତ ସେ ହାତ କରେ ସେ ପୁଣି ଏଇ କୌପୀନ କନାକୁ ଘୃଣା କଲା ! !

ଫୁଲନାଡ଼ ସହିତ ସେଗୁଡ଼ିକୁ ସେବତୀ ପୋତିଦେଲା ମାଟି ଭିତରେ ଆହୁରି ଗହୀରା କରି।

ଅଲକ୍ଷଣୀ କୁଆଟାଏ ସେତିକିବେଳେ ରାବିଦେଲା। ଭୟ ପାଇଲା ସେବତୀ। ଛାଟିପିଟି ପଳାଇଆସିଲା ଡାକ୍ତରଖାନା ଭିତରକୁ।

କଥାଟାକୁ କେହି ସେମିତି ଗୁରୁତ୍ୱ ଦେଲେ ନାହିଁ। କଅଣ ବା ଏଥିରେ ଅଛି ? ମା' ଧରିତ୍ରୀ ଏମିତି କେତେ ଐଶ୍ୱର୍ଯ୍ୟ ସଂପାଦି ରଖିଛି।

କଥାଟା କିନ୍ତୁ ବଡ଼ ହୋଇଗଲା ଯେତେବେଳେ ଡାକ୍ତରବାବୁ ନିଜ କ୍ୱାଟର ଚାରିପଟେ ବାଡ଼ ବାନ୍ଧୁ ବାନ୍ଧୁ ମାଟି ଖୋଳିବା ସମୟରେ ପାଖକୁ ପାଖ ଲାଗି ଶୋଇରହିଥିବା ଯମଜ ସନ୍ତାନ ଭଳି ଦୁଇଟି ଆପାଦମସ୍ତକ ସୁନାଛାଉଣି ଚିଲମ ପାଇଗଲେ। ଖୁବ୍ ଦୀର୍ଘାକୃତି ଚିଲମ, ଜାତିର ସଂଗ୍ରହାଳୟରେ ରହିବା ଭଳି ପଦାର୍ଥ।

ଡାକ୍ତରବାବୁ ଚିଲମ ଦୁଇଟିକୁ ପରିଷ୍କାର କରି ପୋଛି ହାତ ଉପରେ ଗଡ଼େଇଲେ, ଧରିଲେ, ସୁନାକୁ ପରୀକ୍ଷା କଲେ। ବୋଧହୁଏ ଭାବିଲେ, ଏହା ଗହ୍ୱରରେ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ମହଣ ମହଣ ଗଞ୍ଜେଇ ଶୋଷିତ ହୋଇଥିବ ଏବଂ ଯେଉଁମାନେ ତାକୁ ଶୋଷିଥିବେ ସେମାନେ ଏଇ ଗଞ୍ଜାନିଶାରେ ଏକପ୍ରକାର ତୁରୀୟ ଅବସ୍ଥାକୁ ଯାଇ କେତେ କୀର୍ତ୍ତି କରିଥିବେ।

ମନ୍ତ୍ରପାଠ ଯେଉଁ ତୁଣ୍ଡରୁ ବାହାରେ, ଯେଉଁ ଶ୍ରୀମୁଖରେ ବାଣୀକୁ ଶୁଣିବା ପାଇଁ ହଜାର ହଜାର ନରନାରୀ ବାବାଙ୍କ ପାଦ ପାଖରେ ବସିଥାନ୍ତି, ସେଇ ଶ୍ରୀମୁଖର ସ୍ୱର୍ଣକାତର ଚିଲମଗୁଡ଼ିକ ଏତେ କାଳ ରହିଯାଇଥିଲେ।

ସମସ୍ତଙ୍କୁ ଏବଂ ସର୍ବ ପଦାର୍ଥକୁ ମାଟି ଯେ ଏମିତି ଆତ୍ମସାତ୍ କରିଦିଏ ଓ ଶେଷରେ ତାର ସତ୍ତା ବି ରଖେ ନାହିଁ, ଏ କଥା ଭାବିଲାବେଳକୁ ପ୍ରାଣରେ ଚମକ ଲାଗେ।

କୌତୂହଳୀ ଡାକ୍ତର ସେଗୁଡ଼ିକୁ ଆଣ୍ଟି-ସେପ୍‌ଟିକ୍‌ରେ ଧୋଇ ଡାକ୍ତରଖାନାର ଟେବୁଲ ଉପରେ ସଜାଇ ରଖିଛନ୍ତି।

ଆହା, ଧାଇଟାର ଟିକିଏ ବୁଦ୍ଧି ଥିଲେ ସେ ହୁଏତ କୌପୀନ ବସନଗୁଡ଼ିକୁ ଆଉ ଟିକିଏ କଡ଼ା ଲୋସନ୍‌ରେ ଧୋଇ, ଶୁଖେଇ, କ୍ରମ-ଅପସୃତ-ଯୁଗର ଉପଢ଼ୌକନ ଭାବରେ ରଖିଦେଇଥାନ୍ତା ସେଇ ଟେବୁଲ ଉପରେ।

ଗଭୀର ରାତ୍ରିରେ, ବିଶେଷରେ ବର୍ଷଣମୁଖର ରଜନୀରେ କେହି ଜଣେ ନାରୀ ଡାକ୍ତରଖାନାର ପ୍ରାଚୀର ମୂଳରେ କଇଁ କଇଁ କାନ୍ଦୁଥିବା ଶୁଣାଯାଏ। ହୁଏତ କେହି ରୋଗୀ; କିନ୍ତୁ ତାହା ନୁହେଁ।

କାନ୍ଦଟା ବାସ୍ତବିକ୍ ମର୍ମଫଟା। ବର୍ଷାର ଗୁଞ୍ଜନ ସହିତ ନାରୀଟିର ଏଇ ଯେ ବିଳାପ ବହୁ ସମୟଯାଏ ପ୍ରସରିଯାଏ କେତେ ଦୂରକୁ....।

କ୍ରମେ ଘଟଣାଟା ଦେହସୁହା ହୋଇଗଲା। ତା' ଛଡ଼ା ଡାକ୍ତରୀ ବିଜ୍ଞାନରେ ଭୂତପ୍ରେତ ଦେଖିବାଭଳି କୁସଂସ୍କାର ପାଠ କିଛି ନାହିଁ। ତେଣୁ ଏ ଚିକିତ୍ସାଳୟର କର୍ମଚାରୀମାନେ ଏ ଘଟଣାକୁ ବେଶୀ ଗୁରୁତ୍ୱ ଦେଲେ ନାହିଁ-କିନ୍ତୁ ସେ କାନ୍ଦ ଅବ୍ୟାହତ ରହିଲା।

କାହିଁକି କେଜାଣି କଅଣ ମନେ କରି ସବୁ କର୍ମଚାରୀ ଗୋଟାଏ ବର୍ଷ ଅଗିଜଳା ପୂନିଅଁର ଧୁନି ରଚନାକଲେ। ବଡ଼ ବଡ଼ କାଠଗଡ଼ ଆଣି ନିଆଁ ଲଗେଇଲେ। ସେଠାର ପୁଅ ଝିଅ ନିଆଁ ଚାରିପଟେ ନାଚିଲେ। ନଡ଼ିଆଗୁଡ଼ାକ ଫାଟିଲା—ଚାରିଦିଗ ଉଜଳି ଉଠିଲା।

ଆରମ୍ଭ ହେଲା ଏ ଉତ୍ସବ ପୁଅଝିଅଙ୍କର ଆନନ୍ଦରୁ; ମାତ୍ର ବୟସ୍କମାନେ ବି ମାତିଗଲେ। ରାତି ବଢ଼ିଲା। କୁହୁଳା ନିଆଁରେ କିଛି ପରିମାଣ ଘିଅ ବି ସେମାନେ ଢାଳିଲେ।

ମନେହେଲା ଯେମିତି ଗୋଟାଏ ଯଜ୍ଞ ହେଉଛି।

ହଠାତ୍ ସେଇ ଅଗ୍ନି ବଳୟ ପାଖରେ ଦେଖାଗଲା ଗୋଟାଏ ନାରୀ ଛାୟାମୂର୍ତ୍ତି। ବିଲମ୍ବିତ କେଶପାଶ, ରକ୍ତାକ୍ତ ଚକ୍ଷୁ, ତାର ଉଦର ଭେଦକରି ଏପଟ ସେପଟ ଫୁଟିଆସିଛି ଗୋଟାଏ ତ୍ରିଶୂଳ, ଆଉ ସେଇ ବିଦୀର୍ଣ୍ଣ ଫାଟ ପାଖରୁ ଗଡ଼ି ଆସୁଛି ରକ୍ତଧାର ପ୍ରବଳ ବେଗରେ। ଏଇ ଛାୟାମୂର୍ତ୍ତି ନାରୀର ମୁହଁ ଉପରେ ଅଧରକୁ ମାଡ଼ି ଗୋଟାଏ କଅଣ ଲାଗିରହିଛି। ହଁ, ସ୍ପଷ୍ଟ ଦେଖାଯାଉଛି, ତାର ପାଟି ଭିତରେ ଗୁଡ଼ାଏ କୌପୀନ ବସ୍ତ୍ର ଗୁଞ୍ଜିଦିଆଯାଇଛି।

ଦୃଶ୍ୟଟା ମଣିଷର ହାଡ଼କୁ ହିମଶୀତଳ କରିବାର ଦୃଶ୍ୟ।

ଡାକ୍ତରବାବୁ ପ୍ରଥମେ ଚମକିପଡ଼ିଲେ। ଅଗ୍ନିଶିଖାରେ ସେ ମୂର୍ତ୍ତି ବେଶ୍ ଆଲୋକିତ। ସେ ପୁଣି ଦେଖିଲେ ସେଇ ନାରୀର ଗର୍ଭ ଭିତରୁ ତ୍ରିଶୂଳଟଣା ଖଣ୍ଡବିଖଣ୍ଡ ଏକ ଭ୍ରୂଣର ମେଦ ମାଂସ ଖସିଆସୁଛି।

ସେ ଚିତ୍କାର କରିଉଠିଲେ ଏବଂ କହିଲେ—ଲିଭାଅ, ସେ ନିଆଁକୁ ଲିଭାଅ! ତା ପରେ ସେ ମୂର୍ଚ୍ଛାଗଲେ।

କଥାଟା ପ୍ରଘଟ ହେଲା। କାନକୁ କାନ ପ୍ରସରିଲା।

ଗଭର୍ଣ୍ଣର ଯେଉଁଦିନ ଏହି ମାତୃମଙ୍ଗଳ ଓ ଚିକିତ୍ସା କେନ୍ଦ୍ରକୁ ଉଦ୍‌ଘାଟନ କଲେ, ସବୁ ବ୍ୟବସ୍ଥା ପୂର୍ଣ୍ଣ ଯାଜ୍ଞିକ ଓ ବୈଦିକ ରୀତିରେ ସମାହିତ ହେଉଥିଲା। ବ୍ରାହ୍ମଣ ବେଦ ପାଠ କଲେ। ସ୍ରୁବରୁ ଘିଅ ଢାଳିଲେ ଏକ ଛୋଟ ହୋମପୀଠ ଉପରେ। ନିଆଁ କ୍ରମେ ତେଜିଉଠଲା ଓ ତା ସଙ୍ଗେ ସଙ୍ଗେ ଗଭର୍ଣ୍ଣରଙ୍କର ଲଲାଟ ଉପରେ ଚନ୍ଦନ ବିନ୍ଦୁଟି ଝଲସିଗଲା।

ସେ ସଭାସ୍ଥଳରେ ଜଣେ ବୃଦ୍ଧ ଶୁକ୍ଳ ଶ୍ମଶ୍ରୁ ଉପରେ ଧାର ଛୁଟାଇ କାନ୍ଦୁଥିଲେ। ସେ ଅତି ବୃଦ୍ଧ ଥିଲେ ଓ ତାଙ୍କର ମେରୁହାଡ଼ ନଇଁଆସିଥିଲା। କୋଟରଗତ ଚକ୍ଷୁରୁ ଅଶ୍ରୁ ଝରିଆସୁଥିଲା।

ଜଣେ କିଏ ପ୍ରସ୍ତାବ କଲେ—ଆମର ଲୋକପ୍ରିୟ ଗଭର୍ଣ୍ଣଙ୍କର ନାମାନୁସାରେ ଏ ପବିତ୍ର ଜନକଲ୍ୟାଣ ଚିକିତ୍ସାଳୟ ନାମିତ ହେଉ।

ସମସ୍ତେ କରତାଳି ଦେଇ ସମର୍ଥନ କଲେ। ପୂଜକ ଆଉଥରେ ଘିଅ ଢାଳି ସ୍ୱସ୍ତିବାଚନ କଲେ। ତାଙ୍କର ସ୍ୱଗତୋକ୍ତି ଜଣେ ଉନ୍ମତ୍ତ ପାଗଳର ସହସା ଭୟଙ୍କର କାଣ୍ଡରେ କେଉଁଆଡ଼େ ମିଳେଇଗଲା।

ଏ ଉନ୍ମତ୍ତ ଆଉ ଏକ ବୃଦ୍ଧ। ସେ କିଏ? କେଉଁଠୁ ଆସିଲେ? ସେ ଦୌଡ଼ିଆସି ଗୋଡ଼ରେ ହୋମାଗ୍ନିକୁ ଲିଭାଇ ସବୁ ପଦାର୍ଥ ବିକ୍ଷିପ୍ତ କରି ପ୍ରମତ୍ତ ଅଟ୍ଟହାସରେ ଚିତ୍କାର କଲେ— "ନାଁ, ତା ହୋଇ ପାରିବ ନାହିଁ। ମୋ ଝିଅ ଚନ୍ଦନା ନାଆଁରେ ଏ ଡାକ୍ତରଖାନାର ନାଁ ରହିବ।"

ଗଭର୍ଣ୍ଣର ହାତ ଉଠାଇଲେ। ସମସ୍ତେ ନୀରବ ହେଲେ।

ଗଭର୍ଣ୍ଣର ପଚାରିଲେ— "ଆପଣ କଅଣ କହିବାକୁ ଚାହୁଁଛନ୍ତି? ଏମିତି ଫୋପଡ଼ା ଫୋପଡ଼ି କାହିଁକି କଲେ?"

ପାଗଳ ସ୍ଥିରନେତ୍ରରେ ତାଙ୍କୁ ଚାହିଁ କହିଲେ—

"ମୋ ଝିଅ ନାଁରେ ଏ ଡାକ୍ତରଖାନାର ନାମ ରହୁ, ନ ହେଲେ ସେ ଏଇଠି ଘୂରିବୁଲୁଛି ଆଉ କାନ୍ଦୁଛି।

କିଓ ସମୁଦୀ କହୁନ, କିଏ କେମିତି ତାକୁ ମାଇଲା କହୁନ ?"

ସମସ୍ତେ ଚାହିଁଲେ। ସମୁଦୀ ଆଉ କେହି ନୁହନ୍ତି, ସେଇ ମେରୁଦଣ୍ଡବଙ୍କା ବୃଦ୍ଧ, ଯେ ଅନବରତ ଆଖିରୁ ଲୁହ ଝରାଇ ବସିଥିଲେ।

ସେ ଗଭର୍ଣ୍ଣରଙ୍କ ପାଖକୁ ଅତି କଷ୍ଟରେ ଆସି କହିଲେ- "ମହାଶୟ, ବସିକରି କହୁଛି, କ୍ଷମା କରିବେ। ଚନ୍ଦନା ମୋ ପୁତ୍ରବଧୂ ହୋଇଥାନ୍ତା। ମାତ୍ର ଏଇ ପୀଠ ଉପରେ ଯେଉଁ ବାବାମାନେ ଲୋକଦେଖାଣିଆ ଆଶ୍ରମ କରି ଏଠାରେ ନିରଙ୍କୁଶ ରାଜତ୍ୱ କରୁଥିଲେ, ସେମାନେ ଚନ୍ଦନାକୁ ନଷ୍ଟଭ୍ରଷ୍ଟ କରିଦେଲେ। ତାକୁ ମାରି କୁକୁରମୁହଁକୁ ଫୋପାଡ଼ିଦେଲେ।

"ସରଳା ବାଳିକା ଯଜ୍ଞ ଦେଖିବାକୁ କେତେଥର ଆସିଛି। ସେ ଭାବିଥିଲା ଯେଉଁମାନେ ଧର୍ମକୁ ଚିଲମ, ତ୍ରିଶୂଳ, ଖଣ୍ଡା ତରବାରିରେ ଧରିରଖିଛନ୍ତି ସେମାନେ ପ୍ରକୃତ ସାଧକ। ସେମାନଙ୍କ ପାଖରେ ନଇଁପଡ଼ିଲେ କିଛି କ୍ଷତି ହେବନାହିଁ।

"ମାତ୍ର ମହାଶୟ, ତାର ଯେତେବେଳେ ଭୁଲ ଭାଙ୍ଗିଗଲା, ସେ ଆଉ ସଜାଡ଼ି ହୋଇ ପୁଣି ଥରେ ଛିଡ଼ା ହୋଇପାରିଲା ନାହିଁ। କିଓ ସମୁଦୀ କହୁନ ? କିପରି ତାର ଗର୍ଭକୁ ତ୍ରିଶୂଳରେ ଫଟେଇ ତାଙ୍କରି ଅପକୀର୍ତ୍ତିର ଭ୍ରୂଣକୁ ହତ୍ୟା କରିଥିଲେ, କହୁନ ? ହଁ, ମହାଶୟ, ଗୋଟାଏ ବର୍ଷା ରାତ୍ରିରେ ସେହିଭଳି ଅବସ୍ଥାରେ ଚନ୍ଦନାର ଶବ ମିଳିଥିଲା ଗୋଟାଏ ଗଛମୂଳରେ।

"କୁହନ୍ତୁ, ଚନ୍ଦନାଠାରୁ ଆଉ କିଏ ବେଶୀ ସତୀ ସାଧ୍ୱୀ ରହିଛି ? ସେ ଯେଉଁ ସ୍ୱର୍ଶ ପାଇଥିଲା, ତାହା ଯଜ୍ଞର ସ୍ୱର୍ଶ, ଧର୍ମର ସ୍ୱର୍ଶ ନୁହେଁ କି ?"

ଦୁଇ ସମୁଦୀ କୋଳାକୋଳି ହେଲେ। ଦୁଇ ବୃଦ୍ଧ ନାଚିଗଲେ ଯେତେବେଳେ ଲାଟସାହେବ ସେହିଠାରେ ଏତିକି ମାତ୍ର ଘୋଷଣା କଲେ—ଏ ଅନୁଷ୍ଠାନର ନାମ ରହିଲା 'ଚନ୍ଦନା ମାତୃମଙ୍ଗଳ କେନ୍ଦ୍ର'।

କେତେ ଲାଟସାହେବ ଆସିଲେ, କେତେ ଗଲେ, ମାତ୍ର ସେ ନଥିଟା ସମସ୍ତଙ୍କ ଆଖିରେ ପଡ଼ିଲା। ସମସ୍ତେ ପଢ଼ିଲେ। ନଥିଟା ଯେମିତି କାଳଜୟୀ ହୋଇଗଲା।

ନଥିରେ ଲେଖାଥିଲା— 'କେତେଜଣ ତରୁଣ ଛାତ୍ରଙ୍କର ଆନ୍ଦୋଳନ ଫଳରେ ଅସାମାଜିକ, ଧର୍ମଧ୍ୱଜାଧାରୀ ଅଧ୍ୟୁଷିତ ଏଇ ମଠର ସମସ୍ତ ସମ୍ପତ୍ତି ଓ ଭୂମି ସରକାର ବାଜ୍ୟାପ୍ତ କରିନେଇ ସେଇ ହତ୍ୟା, ଲୁଣ୍ଠନ ଓ ଅସାମାଜିକ କ୍ରିୟାର ପୀଠ ଉପରେ ତୋଳିଦେଲେ ଏକ ଜନକଲ୍ୟାଣର ତୀର୍ଥଭୂମି - ନବଜାତକମାନଙ୍କର ଜନ୍ମସ୍ଥାନ। ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ ଏ ଗୋଟାଏ କଳଙ୍କମୟ ପୀଠର ମାଟି ଉପରେ ଆଜି ଶ-ଶ ଶତ ଶିଶୁ ଜନ୍ମନେଇ ପ୍ରତ୍ୟକ୍ଷ କରୁଛନ୍ତି ନୂତନ ସୂର୍ଯ୍ୟକୁ। ଧର୍ମ ସେମାନଙ୍କର ବାହାରେ ଅବସ୍ଥିତ ନୁହେଁ—ଭିତରେ, ବହୁ ପ୍ରାଣୀର ପ୍ରାଣ ଭିତରେ। ଚନ୍ଦନାର ମୃତ୍ୟୁ ଏଇ ଅମୃତ ଆଣିଛି। ସେ ଅମୃତର ଚିରକାଳକୁ ଜୟ ହେଉ।



# ଖଣ୍ଡେ ନୀଳ କାଚ

ସେଦିନ ବସ୍‌ଟି କାହିଁକି ମତେ ଖୁବ୍ ଭଲଲାଗିଲା। ଯନ୍ତ୍ର ସତ, ମାତ୍ର ମଣିଷର ଆୟତ୍ତରେ ରହିଥାଏ। ପରିଚ୍ଛନ୍ନ ଦେହ, ଓଦାଳିଆ; ସାମନା କାଚ ଉପରେ ଶିଶିରବିନ୍ଦୁ। ତା ଉପରେ ରବିରଶ୍ମିର ଝଲକ। କ୍ରମେ ବସ୍ ଛାତ ଉପରେ ଧାଡ଼ି ବାନ୍ଧି ବସିଗଲେ କାଉପଲ।

ଟିକିଏ ଦୂରରେ ଜଗନ୍ନାଥବଲ୍ଲଭର ଚୂଡ଼ା ଉପରେ ପକ୍ଷ ବିସ୍ତାରି ଖେଳିଗଲେ କେତେ ପକ୍ଷୀ। ଗୁଞ୍ଜନ ଉଠିଲା ନୀଳ ନାରିକେଳ ବନ ଭେଦ କରି। ଉପରେ ପ୍ରଶାନ୍ତ ଆକାଶ। ଏପଟେ ଧ୍ୱଜା ଉଡୁଛି– ରକ୍ତ କେତନ, ଦେବତାର ମନ୍ଦିର...ତାରି ଚୂଡ଼ା ସ୍ପର୍ଶ କରି ଖେଳିଯାଇଛି ନବୋଦିତ ସୂର୍ଯ୍ୟର କିରଣ ସମ୍ଭାର।

ତଟସ୍ଥ ମୁଁ। ଏ ସହର କ୍ରମେ ସୁଷୁପ୍ତିରୁ ଜାଗୃତିକୁ ପହଁରି ଆସୁଛି। ସମୟ ଯେତିକି ଆଖର ହେବ, ଲୋକର ଏହି ପ୍ରଭାତୀ ପ୍ରସନ୍ନତା ଆଉ ରହିବ ନାହିଁ। ସେ ଜଞ୍ଜାଳରୁ ଜଞ୍ଜାଳକୁ ଗତି କରି, ସଂଗ୍ରାମ କରିବ; ଶଠତା, କପଟତା ଆଚରଣ କରିବ। ପୁଣି ଶୋଇ ନ ପଡ଼ିବାଯାଏ, ପୁଣି ତା'ର ଚେତନା ଅବଲୁପ୍ତ ନ ହେବାଯାଏ ସେ ଥିବ ପ୍ରମତ୍ତ ଅବସ୍ଥାରେ। କେତେବେଳେ ସେ ସଂହାର କରିବାକୁ ଉଦ୍ୟତ ହେବ, କେତେବେଳେ ସେ ବିପନ୍ନ ବୋଧ କରିବ; କିନ୍ତୁ ପ୍ରଶାନ୍ତି ଆସିବ ନାହିଁ।

ଡ୍ରାଇଭର ବେଶ୍ ସୁସ୍ଥ। ଯାତ୍ରାର ମୋହ ଯେପରି ତାଙ୍କର ସର୍ବାଙ୍ଗରେ ଲେପ ହୋଇଯାଇଛି। ମୁଁ ଭାବିପାରେନା ଏକା ପଥ ଉପରେ, ଏକା ଯାନର ଚକ୍ର ଚଳେଇନେଇ ଯେଉଁ ଚାଳକ ନିର୍ଦ୍ଦିଷ୍ଟ ସଂଖ୍ୟକ ମାଇଲ ଅତିକ୍ରମ କରେ, ପୁଣି ଫେରିଆସେ, ସେ ପ୍ରତିଥର ଯାତ୍ରା ପୂର୍ବରୁ ଏତେ ସତେଜ ଥାଏ କିପରି ?

ବୋଧହୁଏ ପଥ'ର ଗୋଟାଏ ମୋହନ ମନ୍ତ୍ର ଅଛି। ସବୁ ଏକା ହୋଇପାରେ; ମାତ୍ର ପଥ ଉପର ଯାତ୍ରା ଏକା ହୋଇପାରେନା। ଦୁଇପାର୍ଶ୍ୱରେ ବୃକ୍ଷ, ପାହାଡ଼, ନଦୀ, ଭୂମି ସବୁ ଏକ ରଙ୍ଗରେ ରଙ୍ଗାୟିତ ଥାଏ ସତ୍ୟ; ମାତ୍ର ଏଇ ରଙ୍ଗ ଭିତରେ ସୁରଙ୍ଗର ବୈଚିତ୍ୟ ଆଉ କିଛି ଥାଏ, ଯାହାର କଳନା କରି ହୁଏ ନାହିଁ।

ସେଥିପାଇଁ ଚାଳକ ପ୍ରତି ଥରର ଯାତ୍ରା ଆରମ୍ଭରେ ଏତେ ସୁସ୍ଥ। ସେଥିପାଇଁ ପରିବହନକାରୀ କର୍ମଚାରୀ ଏତେ ଶାନ୍ତ ଓ ସମାହିତ।

ଲୋକେ ଆସୁଥିଲେ–ଯାତ୍ରାର ସୁଗନ୍ଧ ଘେନି ଆସୁଥିଲେ। ମାତ୍ର ସବୁ ବାଟଚଲାର ଗୋଟିଏ ରସ ନାହିଁ। ଏ ରସ ଭିନ୍ନ ହୋଇଯାଏ ଜୀବନର ବିଚିତ୍ର ଭୂମିକା ଘେନି।

ଯାତ୍ରୀ ବସିଥାଏ ନିବିଷ୍ଟ ମନରେ–ଅଥଚ ପୁଦ୍ର ପଡ଼ିଛି ଦୂରସ୍ଥ ଚିକିତ୍ସାଳୟର ଜୀବନ ମରଣର ସନ୍ଧିସ୍ଥଳରେ–ମକଦ୍ଦମାର ହାରଜିତ ଘେନି କାହାର ପ୍ରାଣ ଉଦ୍‌ବେଳିତ। କିଏ ବା ନବ-ବିବାହିତ ନବବଧୂକୁ ଦେଖିବାପାଇଁ ଆଖିରେ ଅଞ୍ଜନ ଭରିଛି। ଲେଖିଯାଉଛି କେତେ କଥା ମନ ଭିତରେ ଅପୂର୍ବ ଚିତ୍ର ବିନ୍ୟାସରେ।

ମଣିଷ ଏହିପରି ହୁଏ, ପ୍ରକୃତି ତାକୁ ଏହିପରି କରାଏ। ଶିଶୁଟିଏ କାନ୍ଦିବାକୁ ଆରମ୍ଭ କଲାଣି। ମାଆ ତାକୁ ତୁନି କରାଉଛି–ଭୟ, କାଳେ କିଏ ବିରକ୍ତ ହେବ। ସଭ୍ୟ ଲୋକମାନେ ପିଲାକାନ୍ଦଣାକୁ ବିରକ୍ତ ହୁଅନ୍ତି।

ମୋ ଉପରେ ବସ୍‌ର ଝରକା ଦେଇ ସୂର୍ଯ୍ୟକିରଣ ପଡୁଥିଲା। ଏତେ ସକାଳୁ ବି ବଢ଼େଇମାନେ ନୂଆ ରଥର କାଠ ଉପରେ ହଣାହଣି ଆରମ୍ଭ କରିଦେଇଅଛନ୍ତି। ରାଜନବର ଦିଶୁଥାଏ...ସେଇଠି ରଥଚକ୍ର ତିଆରି ହେଉଛି।

ସହସା ଗୋଟାଏ ଶବ୍ଦ ଶୁଣିବାକୁ ପାଇଲି। କେତେ ଶବ୍ଦ ଏ ଜୀବନରେ ଶୁଣିଛି– ଶବ୍ଦ ଅଶବ୍ଦ କେତେ–ମାତ୍ର ଏ ଧ୍ୱନିକୁ ବିଳାପ କହିହେବ ନାହିଁ କି ସରସ ହାସ କହିହେବ ନାହିଁ।

ଏ ଏକପ୍ରକାର ବିଚିତ୍ର ଧ୍ୱନି ବା ଧ୍ୱନିର ସମବାୟ। ରାଜପଥ ମୁଖରିତ ହୋଇଗଲା ଏ ଧ୍ୱନିରେ। ସମସ୍ତେ ଚାହିଁଲେ ସେଆଡ଼େ... ହଁ ... ଦେଖିଲି...

ଏ ଜୀବନରେ ପଦ୍ମ ଫୁଟେ, ବିଷ ବି ଚହଟେ। ଏହି ଜୀବନକୁ ଗ୍ରାସ କରେ, ପୁଣି ଏ ଜୀବନରେ ଆସେ ଦେବବିଭୂତି। ଶ୍ମଶାନ ସିନା ସବୁ ବୈଚିତ୍ର୍ୟର, ସବୁ ବିଭିନ୍ନତାର ଏକ ସମାପ୍ତ ସମନ୍ୱୟ କ୍ଷେତ୍ର; ମାତ୍ର ଜୀବନ ଥିବାଯାଏ ଏ ବିଭିନ୍ନ ଆସ୍ୱାଦନକୁ ଲୋକ ଗ୍ରହଣ କରିଥାଏ।

ସହଯାତ୍ରୀମାନଙ୍କୁ ପଚାରେ ମନେଅଛି କି ସେ ଦୃଶ୍ୟ ? ମନେପଡୁଛି କି ସେଇ ଜୀବଟି ? ନା ଯାରି ଭିତରେ, ଜଞ୍ଜାଳର ସ୍ତୂପାକାର ସୁଖଦୁଃଖ ଭିତରେ ୨୫ତାରିଖ ସକାଳର ସେଇ ଦୃଶ୍ୟଟି ହଜି ଯାଇଛି ଏକାବେଳକେ।

ମୁଁ ଲକ୍ଷ୍ୟ କରିଥିଲି– କାହାର ସେ ଦିଗକୁ ତନ୍ମୟତା ନଥିଲା। ଥିବ କିପରି ? ସେ ତ ଆମ୍ରସଙ୍ଗୀତ ନୁହେଁ ଯେ ତାର ମୂର୍ଚ୍ଛନା ମନପ୍ରାଣ ଭରି ରଖିଥିବ ? ବରଂ ଦେଖିଲି ଘୃଣା...ଘୃଣାବୋଧ...ଛି, ମାଇପିଟା ଏମିତି ନାଚୁଛି, ଏମିତି କଥା କହୁଛି ? ଏମିତି ଲଙ୍ଗଳା !

ଆମେ ସୁସ୍ଥ, ଆମର କୌଣସି ଅଙ୍ଗ ବିକଳ ହୋଇନାହିଁ। ଜୀବନର ଧାରା ଅବ୍ୟାହତ ରହିଛି। ସେଥିପାଇଁ ସେ ସକାଳର ସେଇ ନାରୀଟି ପ୍ରତି– ଯାହର ପ୍ରତ୍ୟେକଟି କାର୍ଯ୍ୟ, ପ୍ରତ୍ୟେକଟି କଥା, ପ୍ରତ୍ୟେକଟି ଆଚରଣ ସଭ୍ୟସମାଜର, ସଭ୍ୟ ବୁଦ୍ଧିର ବହିର୍ଭୂତ, ତାକୁ ଆମେ ବାଟର ମାଟି ମୁଠାଏ ଭାବି ଭୁଲିଯାଉଛୁ। ତା'ର ଅସଂଗତ ସ୍ୱଭାବକୁ ବୁଝିବାକୁ ଆମର ତନ୍ମୟତା ଆସିବ ନାହିଁ।

ସମସ୍ତେ ବୁଝିଥିବେ ମୁଁ ଜଣେ ଅର୍ଦ୍ଧଉଲଗ୍ନା ବିକୃତମସ୍ତିଷ୍କା ଉନ୍ମାଦିନୀ ନାରୀର କଥା କହିବାକୁ ଯାଉଛି। ମାତ୍ର ଏଭଳି ଅପାଙ୍‌କ୍ତେୟ ଜୀବର ଏଇ ଦୁର୍ଗତ ଜୀବନକୁ ଲେଖି ଜଣାଇବାର କି ପ୍ରାସଙ୍ଗିକତା ଅଛି ?

ନାଁ, ନାହିଁ। ଅଥଚ ଶାଶ୍ୱତ ମହାକାଳର ପ୍ରବାହ ଭିତରେ ଏ ଦୃଶ୍ୟର, ଏ ଜୀବନର ସ୍ଥାନ ଅଛି। ସେ ନାରୀ ହସୁଥାଏ, କାନ୍ଦୁଥାଏ, ନାଚୁଥାଏ, କଣ୍ଠ ତାର ଛିଣ୍ଡିଯାଉଥାଏ ଚିତ୍କାର କରି।

ବସ୍ ପାଖର ପ୍ରତ୍ୟେକଟି ଝରକା ପାଖକୁ ସେ ଆସୁଥାଏ। ଶକ୍ତ ଓ ଦୃଢ଼ ଚକ୍ଷୁରେ ଚାହୁଁଥାଏ– ଖୋଜୁଥାଏ ସେ କାହାକୁ–ଯାହାରି ଯୋଗୁଁ ଆଜି ସେ

ରାଜପଥ ଉପରେ ନାଚି ନାଚି ସମସ୍ତଙ୍କର ଘୃଣିତ ଚକ୍ଷୁପତା ତଳେ ବୀଭତ୍ସ ରୂପ ଧରିଛି। ସେହି ଲୋକ ବା ଲୋକମାନଙ୍କୁ ସେ ଖୋଜୁଥାଏ କି ?

ସେ ଏକ କ୍ଷଣ ସ୍ଥିର ଭାବରେ ଛିଡ଼ାହୋଇଥାଏ–ପୁଣି ଫେଁ କିନା ହସେ–ହସର ଫୁଆର ଉଠେ–ହସି ହସି ମାଟିକୁ ଚାହେଁ ଓ ମାଟି ଚାହେଁ ତାକୁ।

ସମସ୍ତେ, ଯେଉଁମାନେ ଝରକା ପାଖରେ ବସିଥାନ୍ତି, ଥରିଉଠନ୍ତି–ଛୁଇଁଦେଲା କି ? ହାତ ବଢ଼ାଇଦେଲା କି ? ଭାରି ଭୟ।

ସାୟା ଖଣ୍ଡେ ପିନ୍ଧିଥିଲା ସେ। ବକ୍ଷ ଉପରେ ଖଣ୍ଡିଏ ମଇଳା କନା। ଏହି ତ ତା'ର ଆଭରଣ! ଲଜ୍ଜାବୋଧ ତାର ନ ଥାଏ। ଜନତାର ଲଜ୍ଜାକୁ ଯେ ସର୍ବାଙ୍ଗରେ ଆବୋରି ରଖିଛି, ତାର ପୁଣି ଲାଜ ଘୋଡ଼ାଇବାର ଆଭରଣ ଦରକାର ହେବ କାହିଁକି ?

ଗୋଟାଏ ତୁଚ୍ଛ ବାୟାଣୀଟାର କଥା ଲେଖୁଛି ବୋଲି କେହି କେହି ଅସନ୍ତୁଷ୍ଟ ହେବେଣି। ମୋ ସଂସାରରେ ବାୟା ବାୟାଣୀଙ୍କ ଚଳାଚଳ ବେଶି। ସଂସାର ଯେଉଁମାନଙ୍କୁ ବାୟା ବାୟାଣୀ ବେଶରେ ସଜେଇଛି, ସେଇମାନେ ମୋର ଅତି ପ୍ରିୟ। ଏମାନଙ୍କ ସାଙ୍ଗରେ କଥା କହିବାକୁ ମୋର ଭୟ ନ ଥାଏ, କାରଣ ତାଙ୍କ ମନ ଓ ଶରୀରର ଉଲଗ୍ନତା ଏଇ ସଭ୍ୟ, ବୁଦ୍ଧିଦୀପ୍ତ, ରକ୍ତହୀନ, ଦୁର୍ବୋଧ ମଣିଷଙ୍କର ଯତ୍ନସାଧିତ ବସନଭୂଷଣ ପରିପାଟୀ ଅପେକ୍ଷା ଅଧିକ ବିଶ୍ୱସ୍ତ ଓ ଅଧିକ ଅକୃତ୍ରିମ। ଛାଡ଼ ସେ କଥା।

କଅଣ ସେ କହୁଥାଏ, କି ଅଭିଯୋଗ ସେ ବାଢ଼ୁଥାଏ ବୁଝିବା ଶକ୍ତ। ତେବେ ସେ ଯେ ଆହତ, ତାର ନାରୀତ୍ୱ ପଶୁ କବଳରେ ଯେ ଛିନ୍ନଭିନ୍ନ, ତାର ଅତୀତ ରକ୍ତଝରରେ ଯେ ଲୋହିତ, ସେ ଯେ ଝରା ପତ୍ର–ବିଶୁଷ୍କ ଓ ସହସ୍ର ପଦପ୍ରାନ୍ତରେ ଦଳିତ; ଏହାର ସାର୍ଥକ ପ୍ରତିଲିପି ତାର ପ୍ରତି ଲୋମକୂପରେ ଚିହ୍ନିତ ରହିଥାଏ।

କେଜାଣି କାହିଁକି ତାର ନାଚିବା, ହସିବା, କୁଦାମାରିବା ଆଉ ବକାବକି ଭିତରେ ମୋ ଆଡ଼କୁ ତାର ଦୃଷ୍ଟି ପ୍ରସାରିତ ରହିଥିଲା।

ଗୋଟିଏ ଉନ୍ମାଦିନୀର ଦୃଷ୍ଟି ପ୍ରସାରଣରେ ଅର୍ଥ କିଛି ନାହିଁ। ତଥାପି ଅସ୍ୱାଭାବିକ ମନେହେଲେ ବି ତା'ର ଚାହାଣି ମୋ ଉପରେ ବେଶି ପଡୁଥିଲା।

ସହଯାତ୍ରୀମାନେ ଆତଙ୍କିତ ଅବଲୋକନରେ ମତେ ସତର୍କ କରୁଥାନ୍ତି। ତାଙ୍କ ମନୋଭାବରୁ ଜଣାପଡୁଥାଏ, ମୁଁ ଅବିଳମ୍ବେ ସେଇ ପାଗଳିନୀଦ୍ୱାରା ଆଘାତ ପାଇବି।

ଲୋକେ ହସାହସି କରୁଥାନ୍ତି। ଗୋଟାଏ ଉଲଗ୍ନା ନାରୀର ଦେହସୌଷ୍ଠବ କିଛି ନ ଥିଲେ ବି ତାହା ଯେ ନାରୀ ଦେହ ଏଇଟା ହିଁ ଯଥେଷ୍ଟ– ଅବଚେତନ ମନର କାମନାକୁ ପ୍ରଜ୍ୱଳିତ କରିବାପାଇଁ। ତାଛଡ଼ା ମାଇପିଟି ଅଧାବୟସୀ ବି ନୁହେଁ। ଖରା ବର୍ଷା ଅଭୋଜନରେ ସେ କଳଙ୍କ-କୃଷ୍ଣ ହେଲେ ବି ନାରୀ ଦେହର ଗଠନଭଙ୍ଗୀ ତ ଅଛି। ଦୋକାନ ବଜାରର ଲୋକେ ଜମା ହୋଇ ବେଶ୍ ଗୋଟାଏ ମଉଜ ଦେଖୁଥାନ୍ତି।

ବସ୍ ଛାଡ଼ିବା ସମୟ ହୋଇ ଆସିଲା। ମୁଁ ଚିନ୍ତାରେ ବୁଡ଼ି ରହିଥିଲି। ଏ କାହାର ଝିଅ, କାହାର ବଧୂ, ଏହାର ଜନ୍ମର ପ୍ରୟୋଜନ କଅଣ ବା ଥିଲା ? ଜଞ୍ଜାଳ ସହି ନ ପାରି ବୋଧହୁଏ କୁଳଲୋକେ

ଏଇଠାରେ ତାକୁ ଆଣି ଛାଡ଼ି ଦେଇଗଲେ ଜଗନ୍ନାଥ ଆଶ୍ରୟ ତଳେ। ଏକ ପୁଣ୍ୟ କାମ କଲେ ବୋଧହୁଏ!

ଅଳ୍ପ ଦିନରେ ଯେ ସେ ଶୁଖି ଶୁଖି ମରିଯିବ, ତାର ଭାଲପଟରେ ସେଇ କଥା ଜକ୍ ଜକ୍ ଜଳୁଥାଏ। ମୋ ପଛ ସିଟ୍‌ର ଜଣେ ଭଦ୍ରଲୋକ ମତେ ଡାକି କହିଲେ – "ଆପଣଙ୍କ ଆଡ଼େ ତାର ବେଶୀ ନଜର। ଭଲ ମଣିଷ ଭଳି ଆପଣଙ୍କୁ ଚାହିଁ ହସୁଛି।"

ମୁଁ କଅଣ ବା ଉତ୍ତର ଦେବି? ମନକୁ ଆସୁଥିଲା କହିଦେବାପାଇଁ, ବୋଧହୁଏ ମୋ ଆଖିରେ ସେ ଦେଖିଛି ଏକ ବୃନ୍ତଚ୍ୟୁତ, ପ୍ରହୃତ, କବଳିତ ଜୀବନପାଇଁ କଣାଏ ମାତ୍ର ସହାନୁଭୂତି, ଟିକିଏ ସ୍ନେହ। ଆଉ ଆପଣଙ୍କ ନେତ୍ରରୁ ଝରିପଡୁଛି କେବଳ ଘୃଣା...ଘୃଣା...ଘୃଣା!

କିନ୍ତୁ ସେ ସବୁ ତ କହିବା କଥା ନୁହେଁ। ଅଗତ୍ୟା ନୀରବ ହେଲି।

ତାପରେ ଏକ ଅଦ୍ଭୁତ ଘଟଣା ଘଟିଗଲା, ଯାହା ଏପରି ଅଚିନ୍ତନୀୟ ଯେ ମନରୁ ପୋଛି ହୋଇ ପାରିବ ନାହିଁ।

ସେ ବସିପଡ଼ିଲା ମୋର ଝରକା ତଳକୁ, ମାଟି ଉପରେ। କ'ଣ ଗୋଟିଏ ପଦାର୍ଥ ଧରି ସେଇ ଉନ୍ମାଦିନୀ ଲେଖିଲା କେତୁଟା ଅକ୍ଷର।

ଟିକିଏ ଦୂରରୁ ଭାସି ଆସିଲା କଣ୍ଠସ୍ୱର–ମଲା ଯାଆ, ପାଠଶାଠ ପଢ଼ିଛି ନା କ'ଣ?

ଯେ ଏ କଥା କହିଲେ, ସେ ବୋଧହୁଏ ଭାବିଥିଲେ ସତରେ ସେ କିଛି ଲେଖୁନାହିଁ – ପେଖନା କରୁଛି; ବାୟାଣୀଟାର ଉନ୍ମତ୍ତତା ମାତ୍ର।

ତେଣୁ ତା ଆଡ଼କୁ ଦୃଷ୍ଟି ନ ଦେଇ ଯିଏ ଯେଉଁଆଡ଼େ ଚାହିଁଲେ।

କଣ୍ଡକ୍‌ଟର ଧୀରେ ପଚାରିଲେ– 'ଆଉ କାହାର ଟିକେଟ ହେବ? ଗାଡ଼ି ଛାଡ଼ିବ।' ଏ କଥା ଶୁଣି ସମସ୍ତେ ନିଶ୍ଚିନ୍ତ ହେଲେ।

ମୁଁ ଚାହିଁ ରହିଥାଏ ସେଇ ଉନ୍ମାଦିନୀ ଆଡ଼େ। ଆହା, ବିଚାରୀ ଯେଉଁ ମାଟି ଉପରେ ବସିପଡ଼ିଛି ସେଇ ମାଟି ଶତ ସହସ୍ର ଆଲିଙ୍ଗନ ଚୁମ୍ବନରେ ଡାକିନେବ ତାକୁ...ଆଉ ଅଳ୍ପ ସମୟ ରହିଲା। ଆସିବ ସେ ଶେଷ ମୁହୂର୍ତ୍ତ।

ଗୋପ...

'ଗ'ରେ ଓକାର, ପ..ବେଶ୍ ଗୋଲ୍ ଗାଲ୍ ଦୁଇଟି ଅକ୍ଷର।

ଏତକ ଲେଖିଦେଇ ବାୟାଣୀ ମୋରିଆଡ଼କୁ ଚାହିଁ ହସି ହସି କହିଲା- "ତାକୁ ଦେଖିବୁ–ସେ ଚାଲିଯାଇଚି। ନେ-ରଖ୍ ପାଖରେ-ରଖିତା-ଏଁ!" ଏତକ କହି ମୋର ବସିଥିବା ଝରକା ପାଖକୁ ଆସି କଅଣ ଗୋଟାଏ ଜିନିଷ ମୋ ଉପରକୁ ପକାଇଦେଲା।

ମୁଁ ସେତେବେଳକୁ ସେଇ ଦୁଇଟି ମାଟି-ଖୋଳା-ଅକ୍ଷର 'ଗୋପ' ଆଡ଼କୁ ଚାହିଁଥାଏ। ବିଶ୍ୱାସ ହେଉନାହିଁ ସହଯାତ୍ରୀମାନଙ୍କର? ଆପଣମାନେ ଅନ୍ୟମନସ୍କ ହୋଇ ବି ଦେଖିଛନ୍ତି, ମାତ୍ର ବୁଝିପାରିନାହାନ୍ତି।

ସେଇ ପଦାର୍ଥଟି ଠିକ୍ କରି ମୋର ବାଁ ପକେଟ୍ ମନିବ୍ୟାଗରେ ବାଜି ଆଶ୍ରୟ ନେଲା ପକେଟ୍

ଭିତରେ। ମୁଁ ସବୁ ଜାଣୁଥାଏ, ମାତ୍ର ରହିଗଲି ନିର୍ବିକଳ୍ପ ସମାଧିରେ।

ମୋ ପାଖ ସିଟ୍‌ରେ ଭଦ୍ରଲୋକ ଆତଙ୍କିତ ହୋଇ ପାଟିକଲେ—ଏଁ, କଅଣ କଲା? କଅଣଟାଏ ପକେଇ ଦେଲା? ଦେଖନ୍ତୁନା!

ମୁଁ ସ୍ଥିରଭାବରେ ବସିଥାଏ। ଭାବୁଥାଏ ଉନ୍ମାଦିନୀ କଅଣ ଲେଖିଲା? 'ଗୋପ'?

ଭଦ୍ରଲୋକ ବ୍ୟସ୍ତ ହୋଇ ପଚାରିଲେ—କ'ଣ ବିଡ଼ିଖଣ୍ଡେ, ପୋଡ଼ା ବିଡ଼ି?

ମୁଁ ଅତି ଧୀର ଭାବରେ କହିଲି—ନାଁ, ମୁଁ ଜାଣିନି।

—ତେବେ କଅଣ ଗୋଡ଼ିଟାଏ?

—ନାଁ, ତା ବି ଜାଣିନି।

—ଆଚ୍ଛା ଲୋକ ଆପଣ? ଦେଖିବେନି ସେ କଅଣ ପକେଇଲା?

ମୁଁ ତାଙ୍କ ଆଡ଼କୁ ମୁହଁ ଫେରାଇ ଉତ୍ତର ଦେଲି—ମୁଁ ଦେଖିସାରିଛି, ଯାହା ଆପଣମାନେ ଦେଖି ପାରିବେ ନାହିଁ। ଏଇ ମାଟି ତଳେ ଯାହାର ହାଡ଼ ମାଂସ ପୋତା ରହିଛି ଏବଂ ଯାହାର ଦେହ ଉପରେ ଦେଶବାସୀ ଜାଲିଯାଆନ୍ତୁ ବୋଲି ଯେଉଁ ଲୋକ ପ୍ରାର୍ଥନା କରିଥିଲା, ସେଇ ଲୋକକୁ ମୁଁଦେଖିପାରିଛି।

ମୁଁ ବୋଧହୁଏ ଆଉ ଏକ ବଦ୍ଧପାଗଳ ଭାବି ଭଦ୍ରଲୋକ ଚୁପ୍ ରହିଲେ।

'ଗୋପ' ଚାଲିଯାଇଛି। ଉନ୍ମାଦିନୀ ସେଇ ରମଣୀ ଭୂଇଁ ଉପରେ ରେଖା କାଟି ବର୍ଣ୍ଣ ପରିଚୟ ଦେଇଗଲା—ଗୋ-ପ!

କାହିଁକି କେଜାଣି ଚମକିଉଠିଲି। କ୍ରମେ ସମସ୍ତ ଘଟଣାଟା ଅର୍ଥସମୃଦ୍ଧ ହୋଇଗଲା। କିଏ ଏହି ଗୋପ? ସେ ନାରୀର କଅଣ ସ୍ୱାମୀ? ପୁତ୍ର? କିଏ ସେ?

ହୋଇପାରେ କେହି ଜଣେ। ମାତ୍ର ମୋ ହୃଦୟରେ ଦୁଇଟି ମାଟି-ଖୋଳା ଅକ୍ଷର ଏକ ଅସ୍ପଷ୍ଟ ପ୍ରଜ୍ଞାରେ ଛିଡ଼ା କରାଇଦେଲା ସେହି ଦେବମୂର୍ତ୍ତି ଉତ୍କଳମଣି ଗୋପବନ୍ଧୁଙ୍କୁ।

ହୋଇପାରେ ମୋ ମନର ସେ ଏକ ଭ୍ରମ। ଗୋଟାଏ ଉଲଗ୍ନା ଉନ୍ମାଦଗ୍ରସ୍ତା ମୃତ୍ୟୁକୁ ଅପେକ୍ଷମାଣା ନାରୀର ହାତ ଲେଖା ଭିତରେ ମୁଁ ସେହି ମୁହୂର୍ତ୍ତରେ ବରଣ କରିନେଲି ଆଜନ୍ମ ସାଧକ ଗୋପବନ୍ଧୁଙ୍କୁ। ସେ ହଜିଯାଇଛନ୍ତି। ତାଙ୍କୁ ସେ ବାୟାଣୀ ଖୋଜୁଛି, ମୁଁ ଖୋଜୁଛି, ଆପଣ ଖୋଜୁଛନ୍ତି, ସମସ୍ତେ ଖୋଜୁଛନ୍ତି। ଏ ଯୁଗସନ୍ଧି ବେଳେ ସର୍ବତ୍ର ତାଙ୍କର ଖୋଜାପଡ଼ିଛି।

ଯାନ ସାକ୍ଷିଗୋପାଳ ଡେଇଁ ଆସିବା ପରେ ମୋର ସଂବିତ୍ ଫେରିଆସିଲା। କଣ ଗୋଟାଏ ପଦାର୍ଥ ବାୟାଣୀ ମୋ ପକେଟ୍ ଭିତରେ ରଖି ଦେଇଥିଲା, ଦେଖେଁ।

ଦେଖିଲି ଖଣ୍ଡେ ନୀଳ ଛୋଟ କାଚ। ତାହାରି ସାହାଯ୍ୟରେ କେଉଁ ପଲ୍ଲୀ ଚାଟଶାଳୀରେ ଅ, ଆ, କ, ଖ ଶିଖିଥିବା ସେତେବେଳର ବାଳିକା ଏଇ ବାୟାଣୀ କେତେ ମୁହୂର୍ତ୍ତ ପୂର୍ବରୁ ଶ୍ରୀକ୍ଷେତ୍ରର ପଥ ଉପର ବାଲି ଉପରେ ଲେଖିଥିଲା 'ଗୋପ'।

ମୁଁ ଉନ୍ମାଦିନୀର ଦାନ ଓ ଉପହାର ସେଇ ଛୋଟ ନୀଳ କାଚଖଣ୍ଡିକୁ ସାଇତି ରଖିଛି। ମୋର ବହୁ ସ୍ମୃତି ଓ ଉପହାରର ଏକ ମିଉଜିୟମ୍‌ରେ ଏଇ ନୀଳ କାଚଖଣ୍ଡିକ ଅକ୍ଷୟ ରହିବ କାଳକାଳକୁ।

ମୁଁ ନ ଥିବି, ନ ରହିପାରେ; ମାତ୍ର ମୋର ବିଶ୍ୱାସ, ମୋ ଯିବା ପୂର୍ବରୁ ଯାହା ହାତକୁ ମୁଁ ଏ ସମସ୍ତ ସ୍ମୃତିମୟ ପଦାର୍ଥ ବଢ଼ାଇଦେଇ ଯିବି, ସେ ନିଜେ ଏକ ଶିଳ୍ପୀ, ମୋ ଶିଳ୍ପୀ ମାନସର ପ୍ରକୃତିକୁ ବୁଝି ସେ ରକ୍ଷଣାବେକ୍ଷଣ କରିବ– କେବଳ କରିବ ନାହିଁ, ଅଶ୍ରୁ ସଜଳ ଆଖିର ଧାରାରେ ସେଗୁଡ଼ିକୁ ନିର୍ମଳ କରିଦେଉଥିବ।

ଏଇ ଲେଖାଟି ଲେଖିସାରି ମୋ ହାତରେ ନୀଳ କାଚଖଣ୍ଡିକ ମୁଁ ପରୀକ୍ଷା କରୁଛି, ଆଉ ଦେଖୁଛି ତା'ର ନୀଳବର୍ଣ୍ଣ ବିଭାକୁ।

ମନେପଡୁଛି ଦୁଇଜଣଙ୍କୁ...ମନେରହିବ ଚିରକାଳକୁ। ମୃତ୍ୟୁର ନିବିଡ଼ ଆଶ୍ରୟକୁ ଭାସିଯାଉଥିବା ବିଚାରୀ ସେଇ ଉନ୍ମାଦିନୀକୁ...

ଆଉ ମହାମୃତ୍ୟୁର ଅଂଶୁମାଳୀ ଭିତରେ ଅବଲୁପ୍ତ ରହି ଚିର ଉଜ୍ଜ୍ୱଳ ଗୋପବନ୍ଧୁଙ୍କୁ।

ଦୁହେଁ ନମସ୍ୟ, କାରଣ ଦୁହେଁ ମଣିଷ...ଏବଂ ଦୁଇଜଣଯାକ ମଣିଷଦ୍ୱାରା ହିଁ ନିଗୃହୀତ–ସେଥିପାଇଁ ଆହୁରି ପ୍ରଣମ୍ୟ।



# ରାସ୍ତା କୁଆଡ଼େ ?

ରାସ୍ତା କୁଆଡ଼େ ? ଏ କି କଥା ? ଯୋଜନାମୟ ଦେଶରେ ରାସ୍ତାର ଅଭାବ ଅଛି କି ? ସବୁଆଡ଼େ ଲମ୍ବିଯାଇଛି ରାସ୍ତା। କେବଳ ପଥ ନୁହେଁ, ପଥିକ ବି ଅଜସ୍ର। ଯାଉଛନ୍ତି ଆସୁଛନ୍ତି; ଯେତେ ଫେରୁଛନ୍ତି, ତାହାଠାରୁ ବହୁଗୁଣ ଯାତ୍ରୀ ଯାଉଛନ୍ତି।

ଏ ଯିବାଆସିବା ରହସ୍ୟରେ ରାସ୍ତା ପଡ଼ିରହିଛି। ରାସ୍ତା ତଳେ ସଡ଼କ ଯାଇଛି। ଭୂଗର୍ଭ ଭିତରେ ପଥ, ପୁଣି ଉପରେ ଶଙ୍ଖ। ଏମିତି ଦେଖିବସିଲେ ଚାରିଆଡ଼େ ରାସ୍ତା।

ନୀଳମାଧବପୁରର ଶଙ୍କର ଜେନା ରାସ୍ତା ଖୋଜି ବୁଲୁଛନ୍ତି। ତାଙ୍କୁ ସଡ଼କଟା ଦେଖାଯାଉନାହିଁ। ନାଁ, ସେ ଅନ୍ଧ ନୁହନ୍ତି। ତାଙ୍କୁ ଅନ୍ଧ କରିଦେଇଛି ଏଇ କାଳିଆ ଦେବତାଟା ଯେ ବର୍ଷକରେ ଥରେ ଗୋଟାଏ ଛଇଛୋପରା ହୋଇ ଭଉଣୀ ଭାଇଙ୍କୁ ସାଙ୍ଗରେ ଧରି ରାସ୍ତା ଉପରେ ବସିରହିଛି।

ଦେବତା ବି ଆଜି ରାସ୍ତା ଉପରେ। ଶଙ୍କର ଜେନା ଘରୁ ବାହାରିଲେ ଦଣ୍ଡ ପ୍ରଣାମ କରି। ସାଙ୍ଗରେ ପରିବାର। କେବେ ପିଲା ବୟସରେ ମହାପ୍ରଭୁଙ୍କୁ ଦେଖିଥିଲେ। ଆଉଥରେ ପାପନେତ୍ର ପତିତପାବନଙ୍କୁ ଦେଖି ମୁକ୍ତିପାଇବ।

ଶଙ୍କର ଜେନା ପ୍ରଥମେ ନାଁ ଲେଖାଇଲେ ଲିଷ୍ଟରେ। ଏ ଲିଷ୍ଟ୍ କଅଣ ? ନୀଳମାଧବପୁରର ବିଖ୍ୟାତ ଟାଉଟର ନାରଣ ମିଶ୍ରେ ଲିଷ୍ଟ୍ ତିଆରି କଲେ। ପୁରୀ ଯିବାକୁ ହେଲେ ଆଗ ଗାଁ ଠାକୁରାଣୀଙ୍କ ପାଖରେ ଚାନ୍ଦା ଦେବାକୁ ହେବ ପାଞ୍ଚ ଟଙ୍କା। ଶଙ୍କର ଜେନା ଟଙ୍କା ଦେଲେ।

ପୁଣି ଏକ ଲିଷ୍ଟ୍ – ମଟର ଭଡ଼ାଠାରୁ ଆଉ ତିନି ଟଙ୍କା ପ୍ରତ୍ୟେକଙ୍କୁ ବେଶି ପଡ଼ିବ। କାରଣ ମିଶ୍ରେ ଯେତେବେଳେ କହୁଛନ୍ତି, ପୁଣି ସେ ପଞ୍ଚାୟତରେ ସଭ୍ୟ; ସେଥିରେ ମୁଣ୍ଡ-ପୋତିଦେଲେ ଶଙ୍କର ଜେନା।

ଯାତ୍ରୀବାହୀ ବସ୍‌ରେ ଶଙ୍କର ଜେନା ଚକ ଉପରେ ବସିଲେ। ତାଙ୍କର ପରିବାର କାକୁର୍ତ୍ତି ହୋଇ ସେଇ ଚକ ଉପରେ ରହିଲେ। ବସ୍‌ଟା ଯେତେବେଳେ ଯୋଜନାମୟ ଦେଶର ମରଣାବର୍ତ୍ତ ଭିତରେ ଗତି କରୁଥିଲା, ଜେନାଙ୍କ ପରିବାର ଚକ ଉପରେ ନାଚୁଥିଲେ। ଜେନାଏ ଦାନ୍ତ କାମୁଡ଼ି ରହିଗଲେ।

ପୁଣି ଚାନ୍ଦା – ଏ କି ଚାନ୍ଦା ? ଟଙ୍କାଟିଏ। ଯେଉଁବାଟେ ବସ୍ ଯାଉଛି ତାକୁ ଲାଗି ଗୋଟାଏ ନିର୍ଦ୍ଦିଷ୍ଟ ଜାଗାରେ ସାଇନବୋର୍ଡ଼ ଟଙ୍ଗାଯାଇଛି–ଏଠି କଲେଜ ହେବ। ପ୍ରତ୍ୟେକେ ଟଙ୍କାଟିଏ ଦେବାକୁ ବାଧ୍ୟ!

ବାଧ୍ୟ ? ଓଡ଼ିଆ ସବୁଠି ବାଧ୍ୟ–ବିଶେଷରେ ଓଡ଼ିଶା ଦେଶରେ। କାରଣ ଏଠି ଖାଲି ତ୍ୟାଗର ବାନା ଉଡ଼ୁଛି। ମାଛ ସେର ଛ ଟଙ୍କା ଦେବାକୁ ବାଧ୍ୟ। ସିମେଣ୍ଟ ମିଳୁନାହିଁ, କିଳାପୋତେଇ ବାଧ୍ୟ। ଟ୍ରେନ୍‌ରେ ଜାଗା ନାହିଁ, ଜାଗା ଟିକିଏ କରିଦେଲେ ବକ୍‌ସିସ୍

ଦେବାକୁ ବାଧ। ଏମିତି କେତେ କଅଣ ବାଧ ସାଧ ଭିତରେ ଓଡ଼ିଆ ଜୀବନାଟା ଶ୍ରୀ ଫେରିପାଇଛି।

ଶଙ୍କର ଜେନାଏ ଅନାଗତ ଅଦୃଶ୍ୟ ମହାବିଦ୍ୟାମନ୍ଦିର ପାଇଁ ଟଙ୍କାଟିଏ ଦେଲେ। ରସିଦ ନାହିଁ କି ସେ ସାଇନ୍‌ବୋର୍ଡ଼ ପାଖରେ କେହି ଲୋକ ନାହିଁ। କଣ୍ଡକ୍‌ଟର ଟଙ୍କା ନେଲେ।

ତାପରେ ଟ୍ରେନ୍‌ଯାତ୍ରା ଆରମ୍ଭ। ଶଙ୍କର ଜେନା ଅଣ୍ଟାଟାକୁ ସଳଖ କରି ପରିବାର ଧରି ଟିକଟ କରିବାକୁ ଗଲେ; ମାତ୍ର ଧାଡ଼ିବନ୍ଧା ଲୋକଙ୍କୁ ଦେଖି ସେ ହତ ଚକିତ ହେଲେ। ତାଙ୍କର ଚକିତ ଭାବ ବେଶୀ ସମୟ ରହିଲା ନାହିଁ।

ଶରଣପଞ୍ଜର କେତେ ହାତ ତାଙ୍କ ପାଖକୁ ବଢ଼ିଆସିଲା। ସମସ୍ତେ ମିତ୍ର, ମୁହଁରେ ହସ। ଜେନାଙ୍କର ଅସୁବିଧା ହେଉଛି କି? ନାଁ, ଅସୁବିଧା କଅଣ? ଟିକଟ ଦାମ ଟଙ୍କାଏ ତେରଣା, ସାହାଯ୍ୟକାରୀ ଲୋକର ପାରିଶ୍ରମିକ ଆଠଅଣା ମାତ୍ର। ଶଙ୍କର ଜେନା ସେତକ ଦେଲେ। ଚାହିଁ ରହିଲେ ବିରାଟ ଷ୍ଟେସନର ଜନସମାଗମକୁ।

ଜନ ଗଲେ, ଆସିଲେ। ଦୁଇଘଣ୍ଟା ପରେ ଶଙ୍କର ଜେନା ପରିବାରଙ୍କ ମୁହଁକୁ ପାଣି ଛାଟିଲେ ପାଣି ପାଇପ୍ ସ୍ତମ୍ଭରୁ। ସାହାଯ୍ୟକାରୀ ଆଉ କାହାକୁ ସାହାଯ୍ୟ ଦେବାପାଇଁ ବୋଧହୁଏ ବ୍ୟସ୍ତ ଥିଲା।

ଟିକ୍‌ଟ କଲେକ୍‌ଟର ଆସିଲେ। ଯାତ୍ରୀଙ୍କର ସୁଖଦୁଃଖର ମିତ୍ର। କାନ ପାଖରେ ଫୁସ୍ ଫୁସ୍ ହେଲେ—ମୋଟରୁ ଚାରିଅଣା ପଇସା ବେଶି ନେବେ। ନିଅନ୍ତୁ। ଜେନାଏ ଗାଡ଼ିରେ ବସିଲେ।

ପରିବାରଙ୍କୁ ଶୋଷ ହେଉଛି। ସେ ଟିକିଏ ଚାହାପାଣି ଚାହିଁଲେ। ଚା'ବାଲା ତାର ବ୍ୟବସାୟ ବୁଦ୍ଧିରେ ଜାଣିନେଲା, ଏ ଓଡ଼ିଆ ଜଣକ ଓଡ଼ିଶା ଦେଶରେ ବି ପ୍ରତାରିତ ହୋଇଛି ବହୁବାର। ସେ କାହୁଁ ଛାଡ଼ିବ?

ସେ ମାଟି କପ୍‌ରେ ଚାହାନାମକ ଏକ ତରଳ ପଦାର୍ଥ ଦେଇ; ଇସ୍ପେସିଆଲ୍ କହି ରଥଯାତ୍ରା ପାଇଁ ଦାମ ବଢ଼ିଛି ବୋଲି ଜଣାଇ, ଅଣାଏ ଜାଗାରେ ଚାରିଅଣା ନେଲା। ଶଙ୍କର ଜେନାଙ୍କର ତାଳୁରୁ ତିଳପାଯାଏ ଥରିଲାଣି। କିନ୍ତୁ ଧର୍ମଭାବ ଖୁବ୍ ବେଶି। ସେ ଜାଣନ୍ତି ନାହିଁ ଯେ ଓଡ଼ିଶା ଦେଶଟା ଯେତେ କ୍ଷିପ୍ର ଗତିରେ ଶିଳ୍ପସମୃଦ୍ଧ ହେଉଛି, ସେତିକି ଏ ଠକାଠକି ବ୍ୟାପାର ବଢୁଛି।

ଜେନାଏ ପୁରୀ ଷ୍ଟେସନରେ ଓହ୍ଲାଇଲେ। ପରିବାର ତାଙ୍କର ପଛେ ପଛେ।

—ଆସନ୍ତୁ, ବିଖ୍ୟାତ ବାଙ୍ଗାଲୀ ହୋଟେଲ।

—ବଡ଼ପଣ୍ଡା ଚକ୍ର ଖୁଣିଆ, ମାହାର୍ଜେ ଆସିବା ହେଉ। ଖାଲି ଚକ୍ର ଖୁଣ୍ଟିଆ କହିବେ। ବାପ ଅଜା କାଳରୁ ଆମେ ତମର ପଣ୍ଡା—(ସ୍ୱଗତ-ଶଳା ଅନାଉଚି କିମିତି? ପାଖରେ ପଇସା ନାହିଁ, ଏଇୟାକୁ କାହିଁକି ନେବି? ହଉ ଆସୁ।)

—ଧର୍ମଶାଳା, ବିଖ୍ୟାତ ଠୁନ୍ ଠୁନ୍ ଠକ୍‌କର ଧର୍ମଶାଳା।

ଏ ଶବ୍ଦ, ଏ ଟଣାଓଟରା ଭିତରେ ଜେନାଏ କଣ କରିବେ କିଛି ଠିକ୍ କରି ପାରିଲେନି। ଶେଷରେ ଚକ୍ର ଖୁଣ୍ଟିଆଙ୍କ ଶରଣାପନ୍ନ ହେଲେ।

ଦେବତାମାନେ ଦାଣ୍ଡକୁ ଆସିଲେଣି। ଶଙ୍କର ଜେନାଏ ଏଯାଏ କିଛି ତୁଣ୍ଡରେ ଦେଇନାହାନ୍ତି। ପଣ୍ଡା ଲଜିଂ ହାଉସ୍‌ରେ ଛାଡ଼ିଦେଇ ଚାଲିଗଲାଣି।

ଆଗରେ ପୁରି ତରକାରି ଦୋକାନ। ସେଇଠି ଶଙ୍କର ଛିଡ଼ାହେଲେ। ଖଣ୍ଡିଏ ପୁରିକୁ ଦୁଇଅଣା। ତରକାରି ନେଲେ ଆଉ ଅଣାଏ। ଶଙ୍କର ଖଣ୍ଡେ ପୁରି ପାଟିକୁ ନେଇ ଥୁ-ଥୁ କଲେ। ପରିବାର ଖାଲି ଚାହିଁଥାନ୍ତି। ସେଇବାଟେ ସ୍ୱାସ୍ଥ୍ୟରକ୍ଷକ କର୍ମଚାରୀ ଡାହାଣ ବାହା ଉପରେ ରକ୍ତବସନ ଗୁଡ଼େଇ ଯାଉଥିଲେ। ସେ ହୁଁ କାର ଦେଲେ-କିରେ ଦୋକାନୀ! ଏ' ଥୁ-ଥୁ କରୁଛି? ଖରାପ ଘିଅ ନାଁ ବାସି ପୁରି? ଦୋକାନୀ ହସି ହସି କହିଲା—ଆଜ୍ଞା ଭିତରକୁ ଆସନ୍ତୁ।

ସ୍ୱାସ୍ଥ୍ୟରକ୍ଷକ ଭିତରକୁ ଗଲେ। ବାହାରକୁ ଆସିଲାବେଳକୁ ମାତ୍ର ପାଞ୍ଚଟି ଟଙ୍କାରେ ସହରର ସ୍ୱାସ୍ଥ୍ୟରକ୍ଷା କରିଦେଇ ସେ ଚାଲିଗଲେ।

ଢୋନଏ ରାସ୍ତା ଖୋଜିଲେ ଫେରିବାକୁ। ଦେବତା ଏବେ ବି ଯାତ୍ରା କରି ନାହାନ୍ତି। କିନ୍ତୁ ଢେନାଏ ଆଉ ରହି ପାରିବେ ନାହିଁ ବୋଲି ଭାବିଲେ। ଗହଳି ବଢ଼ିଲା। ପରିବାର ଝାଉଁଳିଲେଣି। ଠେଲାପେଲାରେ ସମସ୍ତେ ହତ ଚକିତ। କେବଳ ମଟରରେ ଯାଉଥିବା ଲୋକେ ଚାଲିଯାଉଛନ୍ତି। ତାଙ୍କୁ ବାଟ ଛାଡ଼ିଦିଆଯାଉଛି। କିଏ ଜଣେ ଆସି କହିଲା—ବେପ୍-ପ, ଦିଅଁ ଦେଖିବୁ, ରଥ ଉପରକୁ ଆ-ଘେର ଦଉଡ଼ି ଭିତରକୁ ଆ-ଆଠଅଣା ପଇସା ଦେ-ମୁଁ ସୁବିଧା କରିଦେବି!

ଏତେ ବାଟରୁ ଆସି ଗୋଟାଏ ସୁବିଧାର ସୁଯୋଗ ନ ନେବାଟା ଠିକ୍ ହେବ ନାହିଁ ଭାବି ଶଙ୍କର ପଇସା ଦେଲେ। ଏତେ ପୁଲିସ ଘେରିରହିଛନ୍ତି, ଅଥଚ ପଚାଶ ପଚାଶ ଭାଗରେ କାମଟା ହେଲା। ମାତ୍ର ପରିବାର ଉଠିପାରିଲେ ନାହିଁ। ରଥ ଉପରକୁ ଉଠିବାର ପାହାଚ ନାହିଁ। ଢେନାଏ ନିଜେ ଧର୍ମପୁଣ୍ୟ କରି ତାଙ୍କୁ ଛାଡ଼ିବେ କିମିତି? ସେ ପରିବାରଙ୍କୁ ଉଠାଇଲେ। ମୁଠା ଖସିଯିବାରୁ ପରିବାର ଖଣ୍ଡିଆ ଖାବରା ହୋଇ ଡାକ୍ତରଖାନାକୁ ଗଲେ।

ଡାକ୍ତରଖାନାର ବାରଣ୍ଡାରେ ବସି ଶଙ୍କର ଏତେବେଳକୁ ଦୁଇ ବୁନ୍ଦା ଲୁହ ଢାଳିଲେ। ଡାକ୍ତରମାନେ ସେବିକାଙ୍କ ସହିତ ଡାକ୍ତରଖାନା ଛାତ ଉପରେ ହସି ଖେଳି ଫଟ ଉଠାଉଛନ୍ତି। ଧୋତି କୁର୍ତ୍ତାର ଓଡ଼ିଆକୁ କିଏ କାହିଁକି ପଚାରିବ? କେତେବେଳକୁ କିଏ ଆସି ଦି'ତିନିଟା ପଟି ବାନ୍ଧି ଦେଇଗଲା। ପରିବାରଙ୍କୁ ଧରି ଶଙ୍କର ଜେନା ରାସ୍ତା ଉପରକୁ ଆସିଲେ। ରାସ୍ତା କୁଆଡ଼େ? ଓଡ଼ିଶାର ଦୁଇଟା ରାସ୍ତା। ଗୋଟାଏ ଭୋଟ ରାସ୍ତା, ଆଉ ଗୋଟାଏ ଭାଟ ରାସ୍ତା; ମାତ୍ର ଶଙ୍କରଙ୍କୁ ଏ ଦୁଇଟା ଯାକ ରାସ୍ତା ଅଚିହ୍ନା।

ପତିତପାବନଙ୍କୁ ଟାଣି ନେଉଛନ୍ତି ଭକ୍ତବୃନ୍ଦ। ଖାଲି ଗଦ୍‌ଗଦ୍ ଉତ୍ତାପରେ ଟାଣି ନେଉଛନ୍ତି।

ଶଙ୍କରଙ୍କର ସୁଟ୍‌କେଶ ଉପରେ ଏ ଉତ୍ତାପ କମିଲା। ତାଙ୍କ ହାତରୁ କିଏ ଜଣେ ସୁଟ୍‌କେଶ ଟାଣିନେଲା। ଦିନ ଦି'ପହରେ ଏ ଟଣାଟଣି! ମନେହେଲା ଦେଶଟା ବାସ୍ତବିକ ଶକ୍ତିଶାଳୀ ହୋଇଛି, ସମୃଦ୍ଧ ହୋଇଛି। ଏ ଯେ ଶକ୍ତିର ଖେଳ; ଯାକୁ ତ ନିଜେ ସର୍ବଶକ୍ତିମାନ୍ ଈଶ୍ୱର ବି କଳ୍ପନା କରିପାରିବେ ନାହିଁ—ବିବେକାନନ୍ଦ ତ ଛାରଛିକର! ସୁଟ୍‌କେଶ ହରେଇ ଶଙ୍କର ଫେରନ୍ତା ରାସ୍ତାକୁ ଅନାଇଁଲେ। ସବୁ ରାସ୍ତା ବନ୍ଦ। କେବଳ ଡାଇଭର୍ସନ ରାସ୍ତାଗୁଡ଼ାଏ ଦେଖାଯାଉଛି। ଅସଲି ରାସ୍ତା, ମାନବିକତା ରାସ୍ତା, ସହଯୋଗର ରାସ୍ତା, ବନ୍ଧୁତ୍ୱର ରାସ୍ତା କେଉଁଦିନରୁ କଙ୍କରମୟ ହୋଇଯାଇଛି। ଶଙ୍କର ଦେଖିଲେ ସ୍ୱେଚ୍ଛାସେବକମାନେ ଯାଉଛନ୍ତି, ଆସୁଛନ୍ତି। ରଥତଳୁ

ପଇଡ଼ ଆଉ ବରଫ ଆଣି ସାଙ୍ଗସାଥୀଙ୍କୁ ବାଣ୍ଟୁଛନ୍ତି। ଶଙ୍କର ଡାକିଲେ—ହଇଏ, ବାବୁ! ଆମକୁ ଟିକିଏ ସାହାଯ୍ୟ କରିବ ?

ଉତ୍ତର ଆସିଲା—ରଖ ହୋ, ଆମର ପୁରି ତରକାରି ଖାଇବା ବେଳ ଆସିଲାଣି।

ରାସ୍ତା କୁଆଡ଼େ ? ବୋଧହୁଏ ନାହିଁ। ରାସ୍ତାଟାର ଆରମ୍ଭ ଅଛି ଶେଷ ନାହିଁ।

ଷ୍ଟେସନକୁ ଆସି ଶଙ୍କର ଜାଣିଲେ—ସବୁ ରିଜର୍ଭଡ଼, ସବୁ ଇସ୍‌ପେସିଆଲ୍—ଶଙ୍କରଭଳି ଲୋକଙ୍କୁ କୌଣସି ଜାଗାରେ ଠାବ ନାହିଁ। ପଣତକାନିରେ ବାନ୍ଧି ଆଣିଥିଲେ ଶଙ୍କରଙ୍କ ପରିବାର ପାଞ୍ଚଟି ଟଙ୍କା, ବିପଦ ଆପଦରେ ସାହାଯ୍ୟ ହେବ। ସେଇଆ ହେଲା। ତିନିଦିନ ତିନିରାତି ଷ୍ଟେସନରେ ପଡ଼ି ଶଙ୍କର ଘରପିଣ୍ଡା ଉପରକୁ ଚଢ଼ିଗଲାବେଳେ ଓଡ଼ିଶାର ପ୍ରକୃତ ରୂପ ଦେଖିଲେ। ଚାଷୀ ସେ - ମୂର୍ଖ, ଅର୍ଥାତ୍ ଆଜିକାର ପାଠ ସେ ପଢ଼ିନାହାନ୍ତି। ପୁରୁଣାକାଳିଆ ପାଠ—ଭାଗବତ ପଢ଼ା; ତା'ସାଙ୍ଗକୁ ଜିଲାପରିଷଦ, ପଞ୍ଚାୟତର କଥା ଟିକିଏ ଟିକିଏ ଜାଣନ୍ତି।

ମାତ୍ର ଯେଉଁ ପତିତପାବନଦେଖା ପର୍ବ ସେ ଶେଷ କଲେ, ସେଥିରୁ ସେ ଜାଣିଲେ ରାସ୍ତା ନାହିଁ। କିଏ କୁଆଡ଼େ ଯାଉଛନ୍ତି କେହି ଜାଣନ୍ତି ନାହିଁ। ରାସ୍ତା କୁଆଡ଼େ ? ମଣିଷର ମଣିଷକୁ ହାତ ବଢ଼େଇବାର ରାସ୍ତା ହୁଏତ ଚିରଦିନପାଇଁ ତିମିରିତ ହୋଇଗଲା। ରାସ୍ତା ନାହିଁ।



# ମୃତ ନାଁ ଅମୃତ

ଷ୍ଟେସନ-ମାଷ୍ଟର ଆପ୍‌ପା ରାଓ ସାନବାବୁ ସାହାଣୀଙ୍କୁ କହିଲେ ସେଇ ସନ୍ଧ୍ୟାର ଏକ୍‌ସପ୍ରେସ ଟ୍ରେନ୍‌କୁ 'ଇନ୍' ସିଗନାଲ୍ ଦେବାପାଇଁ। ଯଥାରୀତି ସାହାଣୀବାବୁ ଲାଇନ୍ କ୍ଲିଅର ଦେଲେ।

ଛୋଟ ଷ୍ଟେସନ। କଳଗୁଞ୍ଜନ ନାହିଁ। ପୁଣି ରାତି। ଦି'ଚାରିଟା ଲୋକ ପ୍ଲାଟଫର୍ମ ଉପରେ ଏପଟ ସେପଟ ହେଉଥାନ୍ତି। ସେମାନେ ଯାତ୍ରୀ ନୁହନ୍ତି। ଗାଁ ଫେରନ୍ତା କେହି ପ୍ଲାଟଫର୍ମ ଉପରେ ବନ୍ଧୁବାନ୍ଧବ କୁଲି ଖଲାସୀଙ୍କୁ ସଙ୍ଗୋଳି ଦେଇଯାଆନ୍ତି।

ଏ ଷ୍ଟେସନରେ ଏକ୍‌ସପ୍ରେସ ଟ୍ରେନ୍ ରହେ ନାହିଁ। ନ ରହିଲେ କଅଣ ହେବ, ତାର ପ୍ରକୋପ ଏଠି ବେଶି। ବରଂ ରହୁଥିଲେ ସମ୍ଭଳା ପଡ଼ନ୍ତା। ନ ରହିବାରୁ ଘଣ୍ଟାକ ଆଗରୁ ତାର ଟଣାଓଟରା, ପଏଣ୍ଟ ଠିକ୍ ଅଛି କି ନାହିଁ ପରୀକ୍ଷା, ଆଉ କୋଉ ଗାଡ଼ି ସେତେବେଳେ କଣ୍ଟ୍ରୋଲର ଛାଡ଼ୁ ଛି କି ନାହିଁ ତାର ତଦାରଖ, ନେଳି ନାଲି ଆଲୁଅ ସଫା ଅଛି କି ନାହିଁ, ପ୍ଲାଟଫର୍ମ ଉପର ବତିଗୁଡ଼ାକ ଭଲ ଜଳୁଛି କି ନାହିଁ, ଶେଷରେ ଲାଇନ କ୍ଲିଅର୍ ଚକ୍ର ନେବା ପାଇଁ ଡ୍ରାଇଭରକୁ ପରିଷ୍କାର ଦେଖିବାଭଳି ମଶାଲ ଜଳୁଛି କି ନାହିଁ ଏଇସବୁ ସହସ୍ର ଚିନ୍ତାରେ ଧନ୍ଦି ହୋଇଯାନ୍ତି ଷ୍ଟେସନ ମାଷ୍ଟର ଆପ୍‌ପା ରାଓ।

ଏ ଧନ୍ଦି ହେବା କାମରେ ସେ ପୋଖତ ହୋଇଗଲେଣି। ଷ୍ଟେସନ-ମାଷ୍ଟର ଚାକିରି। କେତେ ଖଣ୍ଡିଆ ଖାବରା ଛେଳି କୁକୁର ଗାଈ ମେଣ୍ଢା ସେ ଦେଖି ଆସିଲେ ତାଙ୍କ ଚାକିରି ଭିତରେ।

ଦୈତ୍ୟ ଦାନବ ଲୌହ ଇଞ୍ଜିନ ଗଡ଼ିଯାଏ। କାହାକୁ କାଟେ, କାହାକୁ ଫୋପାଡ଼େ, କାହାର ପ୍ରାଣ ନିଏ, କିଏ ବା ଅଧାମରା ହୋଇ ପଙ୍ଗୁ ହୋଇଯାଏ। ଆପ୍‌ପା ରାଓଙ୍କ ଜୀବନରେ ଏଇ କଟା ମରା ଆଘାତ ସେ ବହୁତ ଦେଖିଛନ୍ତି। ନୂଆ ଚାକିରି କଲାବେଳେ ଥରେ ଥରେ ଶିହରି ଉଠନ୍ତି—ଉଃ, କୁକୁରଟା କଟିଗଲା।

ସତେ, କୁକୁରଟା କଟିଗଲା! ଦିଖଣ୍ଡ ହୋଇ ଚିପି ହୋଇ ରହିଯାଇଛି ରକ୍ତିଆ ପୁଳାଏ ମାଟି ଧରି ସେ ଜୀବଟା। ତେବେ ବି ଜୀବନ ଯାଇନି। ଲାଞ୍ଜଟା ଥରି ଥରି ପୁଣି ତଳକୁ ନଇଁଆସିଲା।

ଏବେ ଆଉ ବିକାର ନାହିଁ। କୁକୁର କଅଣ, ମଣିଷ ବି ଚିପି ହୋଇଯାଏ ଲୁହାଧାରଣା ଉପରେ। ଆଃ, କଟି ତ ଗଲା, କିଏ କଣ କରିବ ? ଦିଅ ଡାକ ପୁଲିସକୁ। ଲାସ୍ ଉଠେଇ ନିଏ ଷ୍ଟେସନ୍ ମେହେନ୍ତର। ରିପୋର୍ଟ ଉପରକୁ ଯାଏ....ଆକ୍‌ସିଡ଼େଣ୍ଟ।

ଆପ୍‌ପା ରାଓ ଜାଣନ୍ତି ତାଙ୍କର ଚାକିରିଟା ଆକ୍‌ସିଡ଼େଣ୍ଟ। ତେଲୁଗୁ ରାମାୟଣ ବହି ଓଲଟାଇ ସେ ଯେତେବେଳେ 'ଓଁ ରାମଚନ୍ଦ୍ର' କହି ମୁଣ୍ଡ ନୁଆନ୍ତି, ସେତେବେଳେ ସେ ଭାବି ନିଅନ୍ତି—ମଣିଷ ଜୀବନଟା ଆକ୍‌ସିଡ଼େଣ୍ଟ ଭିତରେ ତିଆରି। ତାର ସମାପ୍ତି ବି ଏଇ ଆକ୍‌ସିଡ଼େଣ୍ଟକୁ ଘେନି।

ଡିଷ୍ଟାଣ୍ଟ ସିଗ୍‌ନାଲ ଦୁଇଟାଯାକରେ ଏକାବେଳକେ ନାଲି ଆଉ ନେଳୀ ଆଲୁଅ

ଜଳିଉଠିଲା । ଗୋଟାଏ ପଟ ନାଲି । ପରଖ କରିନେଲେ ଆପ୍‌ପା ରାଓ ଲାଇନ ଉପରେ କିଛି ବିଘ୍ନ ଅଛି କି ? ନାଁ, ବିଘ୍ନ ଆଉ କଅଣ ?

ସେଇଟା ବି ମୁହୂର୍ତ୍ତକ ପରେ ନେଳୀ ହୋଇଗଲା । ପ୍ରସ୍ତୁତି ପର୍ବ ଶେଷ ହେଲା । ଏକ୍‌ସପ୍ରେସ୍ ଟ୍ରେନ ଆସିଯିବ । ଗତିର ମହିମା ଦେଖାଇ, ମଣିଷଗୁଡ଼ାକୁ ତୁଚ୍ଛ କରି, ଭୂ ଥରାଇ ଏକ୍‌ସପ୍ରେସ ଆସିଯିବ ।

—ହେଃ...ହେଃ, ମୋର ଚାରିଟା କୋଠା । ଗୋଟାଏ ପୁରୀରେ, ଗୋଟାଏ କଟକରେ, ଗୋଟାଏ ଚଉଦ୍ୱାରରେ, ଆଉ ଗୋଟାଏ ଏବେ କରିଛି ରାଉରକେଲାରେ । ପୁଣି ଭୁବନେଶ୍ୱରରେ ଦଶ ଏକର ଜମି ନେଇଛି ।

ଯାତ୍ରୀଗୁଡ଼ାକ ଖାଲି ଆଁ କରି ବକ୍ତା ହୋମିଓପାଥି ଡାକ୍ତରଙ୍କର ଏ କୋଠା ନିର୍ମାଣ ଖବର ପାଇଯାଉଥିଲେ । ବ୍ୟବସାୟ ମାତ୍ର ହୋମିଓପାଥି, ସେଥିରେ ପୁଣି ଏତେ କୋଠା ?

—ହେଃ... ହେଃ ଆଜି ଯାଇଥିଲି ପୁରୀ, ରାତିରେ ଫେରିଲି । ସକାଳେ ଯିବି ଚଉଦ୍ୱାର—ଖରାବେଳକୁ ଯାଜପୁର—ଫେରିବି ସନ୍ଧ୍ୟାରେ—ଧରିବି ଏକ୍‌ସପ୍ରେସ, ଚାଲିବି କଲିକତା । ତା'ପର ଦିନ ଫେରିବି ମାଡ୍ରାସ ସେଦିନ ଧରିବି ଏରୋପ୍ଲେନ୍... ।

ଜଣେ କିଏ କାଶି ଆରମ୍ଭ କଲେ—ବୋମ୍ବାଇ !
ଏ କଅଣ ମନପବନ ଡଙ୍ଗାର ମାଲିକ ?
ଏ କଣ ଯାଦୁକର ?
ଏ କିଏ ?

ସୁବେଶା ତରୁଣୀଟି ଟିକିଏ ଦୂର ସିଟ୍‌ରେ ବସି ମହିଳା ମାଗାଜିନ୍ ଦେଖୁ ଦେଖୁ ଏଇ ଯାଦୁକରଙ୍କୁ ଅନାଇଁ ମୃଦୁ ହସୁଥିଲେ । ରିଟାୟାର୍ଡ଼ ହେଲଥ୍ ଅଫିସର ଗମ୍ଭୀରମୀ ଢଙ୍ଗର କଥା କହି ହୋମିଓପାଥି ଡାକ୍ତରଙ୍କର କୋଠା ନିର୍ମାଣ କୃତିରେ ସାବାସ୍ ସାବାସ୍ କରୁଥିଲେ ।

ଏକ୍‌ସପ୍ରେସ ଟ୍ରେନ୍ ଚାଲିଛି । ମୋ ପାଖରେ ମୋର ଜଣେ ଭୂତପୂର୍ବ ଛାତ୍ର ବସି ଆରାମରେ ସିଗାରେଟ ଟାଣୁଛି । ଅବଶ୍ୟ ପ୍ରଥମେ ମତେ ନମସ୍କାର କରି ତା'ପରେ ଧରିଛି ସିଗାରେଟ । ଗୋଡ଼ଟା ଲମ୍ବାଇ ଦେଇଛି ସାମନା ବର୍ଥକୁ ଯେଉଁଠି କୋଠାନିର୍ମାତା ହୋମିଓପାଥି ଡାକ୍ତର ସେଇ ଗୋଡ଼ଟାକୁ ଦେଖି ଦେଖି ଅନର୍ଗଳ ବକ୍ତୃତା ଦେଇ ଯାଉଛନ୍ତି ।

ଆରପାଖ ବର୍ଥରେ ଦୁଇଜଣ ଲୋକ ଡିନର ଖାଉଛନ୍ତି । ଭଜା, କଟ୍‌ଲେଟ୍ ସହିତ ବିଲାତି ବାଇଗଣ ଚେକା ଚେକା—ତା ସଙ୍ଗେ ପାଉଁରୁଟି ।

ଅସହ୍ୟ ହେବାରୁ ସିଗାରେଟ ଗନ୍ଧରୁ ନିଷ୍କୃତି ପାଇବାପାଇଁ ଭୂତପୂର୍ବ ଛାତ୍ର ସହିତ କଥା ମୁଁ ଆରମ୍ଭ କଲି । କେଜାଣି ବା ସେ ଅଧାପୋଡ଼ା ସିଗାରେଟ ଫୋପାଡ଼ି ଦେଇ, ମୋ ସଙ୍ଗେ କଥା କହି, ଟିକିଏ ମାନ୍ୟଥାନ୍ୟ ଦେଖେଇବ ।

—ତମେ ପରା ପ୍ରାକ୍‌ଟିସ୍ କରୁଥିଲ ?

—ହଁ ସାର, ଭଲ ପ୍ରାକ୍‌ଟିସ୍ କରୁଛି ।

ତେଣେ ବେଶି ଜୋରରେ ଛାତ୍ରର ବର୍ଥ ଉପରେ ଗଡୁଥିବା ଗୋଡ଼ ଆହୁରି ଗଡ଼ିଲା । ସିଗାରେଟ ବି ଅଧରଲଗ୍ନ ହୋଇ କଥା ଭିତରେ ପାଉଁଶ ଝରାଇଲା । ସେ ପାଉଁଶର କିଛି ଅଂଶ ପବନ ନେଇଗଲା, ବାକିତକ ମୋ ଉପରେ ପଡ଼ିଲା ।

ଗାଡ଼ି ଗୋଟାଏ ଷ୍ଟେସନ ଡେଇଁଗଲା। ଲୁହା ଧାରଣା ଉପରେ କେତେ ସମୟ ଲୁହାର ବଜ୍ରଧ୍ୱନି। ତା'ପରେ ଅନ୍ଧକାର ଭିତରେ ଛୁଟିଲା ଏକ୍‌ସପ୍ରେସ।

ଆପ୍‌ପା ରାଓ ବିରକ୍ତ ହୋଇ କହିଲେ—ଯା, ଆମ୍ମା ପାଖକୁ ଯା। କିରେ, ଟିଉସନ୍ ମାଷ୍ଟର ଆସି ନାହିଁକି ? ସବୁବେଳେ ଆସି ଷ୍ଟେସନ ଭିତରେ ଏଣେ ତେଣେ ଦଉଡୁଥିବୁ। ଆରେ ରାଜୁଲୁ, ଟୋକାଟାକୁ ଘରେ ଛାଡ଼ି ଦେଇ ଆସିଲୁ।

ଆପ୍‌ପା ରାଓଙ୍କର ରାମସ୍ୱାମୀ ରାଓ ଆଠବର୍ଷର ସନ୍ତାନ। ସେ ଜନ୍ମିଛି ଷ୍ଟେସନ କ୍ୱାଟରରେ; ପ୍ରଥମ କାନ୍ଦଣା କାନ୍ଦିଲାବେଳେ ସେ ଶୁଣିଛି ଇଞ୍ଜିନ୍‌ର କ୍ରନ୍ଦନ। ପ୍ରଥମ ହସିଲାବେଳେ ସେ ଶୁଣିଛି ପ୍ଲାଟଫର୍ମ ଯାତ୍ରୀଙ୍କର ହସ ଓ କାନ୍ଦ।

ସେ କାହିଁକି ଡରିବ—ହେଉ ଅନ୍ଧାର ସେପଟ ଟିକିଏ। କେତେ ମଜାରେ ଥୁଆ ହୋଇଛି ଚାଉଳ ଅଖା ଗୋଟାକ ଉପରେ ଗୋଟାଏ। ତା ଉପରେ ଚଢ଼ିଗଲେ ସ୍ୱର୍ଗକୁ ହାତ ଛୁଇଁବ। କେତେ ମଜା ସତେ !

ସ୍ୱର୍ଗ ? ହଁ ସ୍ୱର୍ଗ ସେଇ ଉପରେ ଅଛି। ରାମସ୍ୱାମୀ ସ୍ୱର୍ଗକୁ ଛୁଇଁବ ବୋଲି ମାଟି ଉପରେ ରହିବାକୁ ତା'ର ମନ ନାହିଁ। ବାପା ଆପ୍‌ପା ରାଓ ଘଣ୍ଟା ଉପରେ ଦୃଷ୍ଟି ଦେଇ ଛିଡ଼ା ହୋଇଛନ୍ତି— କେତେବେଳେ ଏକ୍‌ସପ୍ରେସ 'ଇନ୍' କରିବ। ବଡ଼ ଜଞ୍ଜାଳ ଏ ଡାକଗାଡ଼ିଗୁଡ଼ାକର 'ଇନ୍' ଆଉ 'ଆଉଟ୍'। ପାସେଞ୍ଜର ଗାଡ଼ି ହେଲେ ଏତେ ଚିନ୍ତା ନ ଥାନ୍ତା। ଗତି ଅଛି ବୋଲି ଏତେ ଖାତିର ଏମାନଙ୍କୁ।

—ହେଃ...ହେଃ ମୋର ପରା ସବୁଦିନ ଖବର କାଗଜରେ ନାଁ ବାହାରେ !

ଜଣେ କିଏ ଉତ୍ସୁକ ଶ୍ରୋତା କହିଲେ—କାହିଁକି ଆଜ୍ଞା ?

—ମୁଁ ପରା ସହରଯାକର ସମିତିର ସମ୍ପାଦକ, ସଭାପତି। କଅଣ ଟିକିଏ କହିଲେ ନାଁ ବାହାରିବ ନିଶ୍ଚୟ।

ସମସ୍ତେ ଅବାକ୍ ହେଲେ, ଅଥଚ ବିଦ୍ୟାଗାରିମା ହୋମିଓପ୍ୟାଥି ପର୍ଯ୍ୟନ୍ତ। ମଣିଷ ହୁଏ ତ ଭଲ, ଜନନାୟକ, ବ୍ୟକ୍ତିତ୍ୱ ଅଛି...ନ ହେଲେ ଏମିତି ମୁଖ୍ୟ କେମିତି ସେ ହୁଅନ୍ତେ ?

ଛାତ୍ରଟି ଚେନ ସ୍ମୋକର, ଅର୍ଥାତ୍ ଅଧ୍ୟବସାୟ ସହିତ ସେ ଧୂଆଁ ପିଉଛି। ଅଧାପୋଡ଼ା ସିଗାରେଟ ସହିତ ତା'ର ବାଁ ହାତ ଯେତେବେଳେ ମୋ ପଛପଟକୁ ବୁଲି ଆସୁଛି...ମୋର ଆତଙ୍କ ଜନ୍ମୁଛି। କାରଣ ମୋ ଜାମାରେ ନିଆଁ ଲାଗିଯାଇପାରେ !

ଦୁର୍ଘଟଣା... !

ନିଆଁ, ଦୁର୍ଘଟଣା...ନାଁ, ନାଁ, ସରସ ସୁନ୍ଦର ମଣିଷ ଜୀବନରେ ନିଆଁ କାହିଁକି ଲାଗିବ ? ଲାଗିଲେ କଅଣ ଏଠି ଯେତେକ ବସିଛନ୍ତି ସହୃଦୟ ବ୍ୟକ୍ତି, ସଙ୍ଗେ ସଙ୍ଗେ ସେ ଜ୍ୱାଳାକୁ ଲିଭେଇ ଦେବେ ନାହିଁ ? ମଣିଷ ହୋଇ ମଣିଷର ଦହନକୁ କିଏ ସହିବ ?

ଦୂରକୁ ଚାହିଁଲି। କେତେ ସୁନ୍ଦର ଏଇ ଦିଗନ୍ତଘେରା ତମିସ୍ରା। ଅନ୍ଧକାରର ବି ଏକ ଅପରୂପ ଅଛି। ଆଲୋକ ଭିତରେ ଯେମିତି ବିଶ୍ୱାସ ଅଛି, ତିମିର ଭିତରେ ସେମିତି ବିଶ୍ୱାସ ଅଛି। ବରଂ ଅନ୍ଧକାରକୁ ଯେ ବିଶ୍ୱାସ କରେ ସେ ବିଶ୍ୱାସୀମାନଙ୍କ ଭିତରେ ବିଶ୍ୱାସୀ। ଆଲୋକ ତ ବିଶ୍ୱାସ ସଂଚାର କରେ—ବଡ଼ କଥା କଅଣ ?

ଏକ୍‌ସପ୍ରେସ୍ ଛୁଟିଛି। ଏଇ ତ ଦୂରରେ ଆଲୋକ ଦେଖାଯାଉଛି। ଛୋଟ ଷ୍ଟେସନ-ପାରି ହୋଇଯିବ ଏକ୍‌ସପ୍ରେସ୍।

ପାରଉତ୍ତାର ଯେ କରନ୍ତି ସେ ପ୍ରଭୁ ଜାଣନ୍ତି ଧୀରେ ଧୀରେ କାହିଁକି ଏକ୍‌ସପ୍ରେସର ଗତି କମି ଆସିଲା। ଷ୍ଟେସନରେ ରହିବ ନାଁ କଅଣ?

ଯାତ୍ରୀମାନେ ଉଚ୍ଛନ୍ନ ନିଜ ନିଜ ଆବାସକୁ ଫେରିବାପାଇଁ। କାହିଁକି ଗତିର ଏ ଶିଥିଳତା?

ଅବଶେଷରେ ଏକ୍‌ସପ୍ରେସ୍ ରହିଯାଇ ଫୁତ୍‌କାର କଲା। କିଏ କହିଲା ଏଠି କ୍ରସିଂ ହେବ, କିଏ ହୁଏତ ବିପଦ ଶିକୁଳି ଟାଣିଛି...ହୁଏତ...ସାହାଣୀ ବାବୁ ରକ୍ତାକ୍ତ ରାମସ୍ୱାମୀକୁ ବକ୍ଷରେ ଧରି ପାଗଳଭଳି କହୁଥିଲେ—ଆପ୍‌ପା ରାଓ, ପୁଅର ଜୀବନ ଅଛି। ମୁଁ ସେଥିପାଇଁ ଗାଡ଼ି ବନ୍ଦ କରିଛି। ମୁଁ ନେଇଯାଉଛି ଟ୍ରେନ୍‌ରେ ଜେନେରାଲ ହାସ୍‌ପାତାଳକୁ। ଆଉ ଷ୍ଟେସନରେ ପହଞ୍ଚିବା ମାତ୍ରେ ଫୋନ୍ କରି ଆମ୍ବୁଲେନ୍‌ସ ମଗାଇବି।

ଆପ୍‌ପା ରାଓ.......

ରାଓ ସ୍ତବ୍‌ଧ—କିନ୍ତୁ ତାହା ମୁହୂର୍ତ୍ତକ ପାଇଁ। ତାଙ୍କର ଆଖିରୁ ଗୋଟିଏ ବିନ୍ଦୁ ଖସି ଆସିଲା ମାତ୍ର। ସେ କହିଲେ, "ସାହାଣୀ, ତୁମେ ଡିଉଟିରେ ଖିଲାପ କଲ। ଏ ଷ୍ଟେସନରେ ଏକ୍‌ସପ୍ରେସ ରହେ ନାହିଁ। ତମେ ମୋ ବିନାନୁମତିରେ ବିପଦ ସଙ୍କେତ ଦେଇ ହଜାର ହଜାର ଯାତ୍ରୀଙ୍କର ଅସୁବିଧା ଘଟାଇଲ। ଆଉ ପୁଅ, ସେ ତ ଆକ୍‌ସିଡ଼େଣ୍ଟ—ଚାଉଳ ବସ୍ତା ଉପରେ ଚଢ଼ି ଖେଳୁଥିଲା, ଖସି ପଡ଼ିଲା। ବାସ୍, ଆକ୍‌ସିଡେଣ୍ଟ—ଯେମିତି କୁକୁରଟା କଟିଯାଏ। ତମେ ତ ସାହାଣୀ କହଛ କେତେଥର, ଫୋପାଡ଼ିଦିଅ ସେ ଜୀବଟାକୁ। ଆଉ ଏ ରାମସ୍ୱାମୀ...ମୋ ପୁଅ...।"

ନୀଳ ଆଲୋକ ଦେଖାଇଲେ ଆପ୍‌ପା ରାଓ। ଧୀର, ନିଷ୍ପନ୍ଦ, ଅବିଚଳିତ—ଧ୍ୟାନସ୍ଥ ମୂର୍ତ୍ତି...।

ଏକ୍‌ସପ୍ରେସ ଛାଡ଼ିଲା। ତା'ର ବଂଶୀ ଧ୍ୱନିରେ କିଛି ମାତ୍ର କାରୁଣ୍ୟ ନ ଥିଲା। ଯଥାରୀତି ତାର ପ୍ରଚଣ୍ଡ ନିନାଦ ଖେଳିଗଲା।

ରାମସ୍ୱାମୀ ବାପାର ବକ୍ଷରେ ନୁହେଁ ସାହାଣୀଙ୍କର ବକ୍ଷରେ ଝାଉଁଳିଗଲା ଚିରଦିନ ପାଇଁ। ଆପ୍‌ପା ରାଓ ଡିଉଟିରେ ଥିଲେ। ହଜାର ହଜାର ଯାତ୍ରୀଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ଦେଖିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ। ସେ ଦେଖିଲେ, ଛୋଟ ଷ୍ଟେସନର ଛୋଟ ମାଷ୍ଟରଟିଏ...।

ଖବର ଆସିଲା ଆମ ଡବା ଭିତରକୁ—ଡିନର୍ ଖାଇଥିବା ଭଦ୍ରବ୍ୟକ୍ତି ବାହାରୁ ଖବର ଆଣି ଆମ ଆଗରେ ଏମିତି ଭାବରେ ପରଷିଲେ...ଏଇ ଷ୍ଟେସନର ଷ୍ଟେସନ-ମାଷ୍ଟର ପୁଅଟା ଏକ୍ଷଣି ମରିଗଲା। ତାକୁ ହସ୍‌ପିଟାଲକୁ ନେବାପାଇଁ ଗାଡ଼ି ଅଟକିଲା। କେତେ ବେଆଇନ କାମ ସତେ? ପିଲାଟା ଖେଳୁଥିଲା, ପଡ଼ିଗଲା, ମୁଣ୍ଡ ଫ୍ରାକଚର-ମରିଗଲା। ରକ୍ଷା ହେଇଛି ଗାଡ଼ି ଛାଡ଼ିଛି, ନ ହେଲେ ମୁଁ କମ୍ପ୍ଲେନ କରିଥାନ୍ତି।

ହୋମିଓପ୍ୟାଥି ଡାକ୍ତର ଏଇଭଳି ମୁଣ୍ଡ ଫ୍ରାକଚର କିମିତି ଭଲ କରିଛନ୍ତି ସେ ବିଷୟ ଚିତ୍କାର କରି କହିବାକୁ ଲାଗିଲେ।

ରିଟାର୍ଡ଼ ହେଲ୍‌ଥ ଅଫିସର ସେତେବେଳକୁ ଶୋଇ ପଡ଼ିଥିଲେ। ଚେତନା ପାଇ କହିଲେ-କିଏ ମରିଗଲା? ହେଉ, ମଲା ତ ଆଉ କଣ କରିବା? ଏ

ଡବାରେ ଲାର୍ଜ ମସ୍‌କୁଇଟୋ-ଗୁଡ଼ାକ ହଇରାଣ କରୁଛନ୍ତି।

ମୋର ଭୂତପୂର୍ବ ଛାତ୍ର ଅଧା ଶୋଇ ମୋ ଉପରକୁ ଆଉଜି ଆସିଲାଣି। ମଲା ଖବର ଶୁଣି ସେ ଆଉ ଖଣ୍ଡେ ନୂଆ ସିଗାରେଟ୍ ଲଗାଇ ଏମିତି ଫୁଙ୍କି ଦେଲା ଯେ ସେ ଖଣ୍ଡମଣ୍ଡଳ ଧୂଆଁରେ ଛାଇ ହୋଇଗଲା।

ରାମସ୍ୱାମୀ କ୍ଷଣକରେ ହଜିଗଲା। କାହାକୁ କିଛି ଲାଗିଲା ନାହିଁ, ବାଧିଲା ନାହିଁ।

ସୁବେଶା ତରୁଣୀ ପିଲାଟିର ମୃତ୍ୟୁ ଖବର ଶୁଣି ଆମ ଆଡ଼କୁ ଟିକିଏ ଚାହିଁଲେ ପୁଣି ଫିସ୍ କରି ହସିଦେଇ ଦେବାନନ୍ଦର ଚେହେରା ଉପରେ ଚିବୁକ ବୁଲାଇଆଣିଲେ।

ଗାଡ଼ି ଜଙ୍କସନ୍‌ରେ ରହିଲା। ଛାତ୍ର ମୋର ତରତରରେ ଉଠିଗଲା ସୁଟ୍‌କେଶ ଧରି। କବାଟ ପାଖରେ ମନେପଡ଼ିଲା ସେ ଦିଆସିଲି ଓ ସିଗାରେଟ୍ ଟିଣ ମୋ ପାଖରେ ଛାଡ଼ିଯାଇଛି। ଟିକିଏ ବି ନ ବାଧିବା ଭଳି ସେ ମତେ କହିଲା...ସାର୍, ବଢ଼େଇଦେବେଟି ମୋ ଦିଆସିଲି ଆଉ ସିଗାରେଟ୍ ଟିଣକୁ!

ମୁଁ କମ୍ପିତ ଅଙ୍ଗୁଳିରେ ତା'ର ଉପଭୋଗର ସାମଗ୍ରୀ ସିଗାରେଟ୍ ଟିଣ ତାକୁ ବଢ଼ାଇଦେଲି।

ଏପର୍ଯ୍ୟନ୍ତ ଦେଖି ନ ଥିଲି ମୋର ଉପର ଆଲୁଅ କାଚଟା ଭାଙ୍ଗି ଯାଇଛି। ସେଠି ଆଲୁଅ ନାହିଁ। ଯେଉଁ ଆଲୁଅତକ ମୋ ଉପରେ ପଡୁଛି ସେ ଆସୁଛି ଟିକିଏ ଦୂରର ଅନ୍ୟ କାଚରୁ। ମୋର ଉପର କାଚ ଓ ଆଲୋକ ଭାଙ୍ଗିଯାଇଛି, ରିକ୍ତ ହୋଇଯାଇଛି। ଯେଉଁ ଆଲୋକ ଦୂରରୁ ଆସୁଥିଲା ତାହାର ଉତ୍ସ କେଉଁଠି ମୁଁ ଜାଣିପାରୁ ନ ଥିଲି; କିନ୍ତୁ ତାର ଯେ ଗୋଟାଏ ଉତ୍ସ ଅଛି ଏବଂ ତାର ରଶ୍ମି ପ୍ରବାହିତ ହୋଇଆସୁଛି, ଏତିକି ମୋର ଥିଲା ସାନ୍ତ୍ୱନା ଓ ବିଶ୍ୱାସ।



# ବେହେଲା

ଜୀବନର ଯେତେବେଳେ ସବୁ ସୁଗନ୍ଧ ଉଡ଼ିଯାଉଛି, ସବୁ ପ୍ରଜାପତି ଫୁଲଗଛ ଛାଡ଼ି ଝୁରୁଝୁରୁ ହୋଇ ଉପରକୁ ଭାସି ଯାଉଛନ୍ତି, ସେତେବେଳେ ମୁଁ ଧରିଲି ବେହେଲା ଖଣ୍ଡିଏ।

ଏହି ବେହେଲାଟି ମୋର ପ୍ରାଣର ସର୍ବସ୍ୱ ହୋଇଗଲାଣି। ଛୋଟ ଘରଟି ଭିତରେ କାନ୍ଧ ଉପରେ ବେହେଲାଟିକୁ ଥୋଇ ମୁଁ ଯେତେବେଳେ ତାର ଉପରେ ଛଡ଼ି ଚଳାଏ, ମୁଁ ଆଘ୍ରାଣ କରେ ଯନ୍ତ୍ରଟିର ତନୁ ଉପରେ ବୋଳାହୋଇଥିବା ବାର୍ଣ୍ଣିସ୍ ରଙ୍ଗର ଗନ୍ଧକୁ...ଆଃ ବଡ଼ ମିଠା ଗନ୍ଧ।

ତା'ପରେ ସବୁ ତାରକୁ ପରୀକ୍ଷା କରିନିଏ, ସା' ପା'ରେ ବନ୍ଧା ହୋଇଛନ୍ତି କି ନାହିଁ। ବେସୁରୀ ଥିଲେ ଠିକ୍ କରିନିଏ। ଗୁଞ୍ଜନ ଉଠେ– ମଧୁ ଗୁଞ୍ଜନ।

ଏଇ ଝଙ୍କାରରେ ପ୍ରାଣ ମୋର ମୋପାଇଁ ପ୍ରିୟତମ ହୋଇଉଠେ। ସା'ପା'ର ମଝିରେ ଆଉ କେତେ ସ୍ୱର ଲୁଚିଛନ୍ତି। ଟିକିଏ ଆଙ୍ଗୁଠି ଟିପକୁ ଏପଟ ସେପଟ ଖସାଇଦେଲେ କୋମଳ କଡ଼ା, ବେସୁର ସ୍ୱର କେତେ ବାହାରିଆସିବେ।

ବେହେଲାଟି ଧରି ମୁଁ ଘଣ୍ଟା ଘଣ୍ଟା ଦେହଟାକୁ ଆରାମଚୌକିରେ ମେଲାଇ ଦେଇ ବସିଥାଏ। ସପ୍ତସ୍ୱରର ଆରୋହଣ ଅବରୋହଣ କେତେ ସ୍ୱପ୍ନ ମଧୁର ସ୍ମୃତି ସୃଷ୍ଟି କରେ।

ଆଖି ଆଗରେ ମୋର ଛବି ଝୁଲୁଛି। ଯୌବନ କାଳରେ ଉଠାଇଥିଲି–ଭରା ଯୌବନର ଖରସୁଅ ଭିତରେ ମୋର ରୂପକୁ ମୁଁ ଚିତ୍ରାୟିତ କରିଥିଲି– ଗାଲଭରା ଯୌବନ, ଦେହଭରା ସ୍ୱାସ୍ଥ୍ୟ, ମନଭରା ଆନନ୍ଦ।

ତା'ରି ପ୍ରତିଲେପ ଏବେ ବି ସେଇ ଛବିଟାରେ ସିମିତି ରହିଛି। ଅକ୍ଷତଅବିନଶ୍ୱର; କିନ୍ତୁ ମୁଁ ବହୁ ଦୂରକୁ ଭାସି ଆସିଲିଣି। ତା ପାଖକୁ ପାରଳାଖେମଣ୍ଡିର ପ୍ରସିଦ୍ଧ ଶିଙ୍ଘଂକାମର ଗୋଟିଏ ବଗମୂର୍ତ୍ତି। ସେ ଝୁଲୁଛି ବୃକ୍ଷ ଶାଖା ଉପରେ। ଟିକିଏ ପବନ ହେଲେ ସେ ଝୁଲିବା କାମ ଆରମ୍ଭ କରିଦିଏ।

ମୁଁ ଯେତେବେଳେ ବେହେଲାରେ ସ୍ୱର ସର୍ଜନା କରୁଥାଏ, ବଗଟା କେଡ଼େ ବଜ୍ଜାତ୍ ସତେ, ଦୋହଲୁଥାଏ ମତେ ଉପହାସ କରି ବୋଧହୁଏ।

ମୋର ବୁଝେଇଦେବାକୁ ମନ ଚାହେଁ...ଆରେ ମୂର୍ଖ ବଗ, ତୁ ଦୋହଲୁଚୁ ସ୍ୱାଭାବିକ ଛନ୍ଦରେ; ମୁଁ ଦୋହଲୁଛି ଗଛର ଶେଷ ପତ୍ର ଝଡ଼ିଯିବା ଆଗରୁ ଯେଉଁ ଦୋହଲାଟାକୁ ଗଛ ସମ୍ଭାଳିନିଏ, ସେହିଭଳି।

ବଗ ପାଖକୁ ଦୁଇଟି ଆଦିବାସୀ ନର ଓ ନାରୀ। ଅଳ୍ପ ବସନରେ ତାଙ୍କର ଶରୀର ମଣ୍ଡିତ। ମୁଁ ସେମାନଙ୍କୁ ଦୀର୍ଘକାଳଯାଏଁ ଚାହିଁରହିଥାଏ। ବଳିଲା ବଳିଲା ଅଙ୍ଗ, ଛାତି ଉପର ମାଂସପେଶୀ ସୁଦୃଢ଼ ତିଆରି। ଧନୁହାତରେ ଆଦିବାସୀ, ଆଉ ତୀର ଧରିଛି ତାର ସ୍ତ୍ରୀ। ଏ ଦୁଇଟି ଖେଳଣା କିଣି ଆଣିଥିଲି ଚନ୍ଦନଯାତରୁ।

ସେପଟକୁ ମୋର ସ୍ତ୍ରୀ ଓ ମୁଁ। ବାଟ ଚାଲୁଛୁ। ଅସରନ୍ତି ବାଟ। ବାମପଟରେ ଦୁଇଟା ନଡ଼ିଆ ଗଛ। ଆମ ଦୁଇପାଖରେ କେତେ ବୃକ୍ଷ, କେତେ ଲତା। ସ୍ତ୍ରୀ ଭୟ ପାଇ ବୋଧହୁଏ ମୋ ହାତ ଧରିବାକୁ ଇଚ୍ଛା କରିଛନ୍ତି; କିନ୍ତୁ ଧରି ପାରି ନାହାନ୍ତି।

ଭୟ? ବୋଧହୁଏ ମୋ ସାଙ୍ଗରେ ଏତେ ବାଟ ଚାଲିଯିବାପାଇଁ ତାଙ୍କର ସାହସ ନାହିଁ।

ବେହେଲାରେ ସା' ସ୍ୱର ଉପରୁ ମା'କୁ ଯିବାବେଳେ ମୁଁ ସ୍ତ୍ରୀଙ୍କ ଆଡ଼େ ଚାହେଁ। ସେ ପଛକୁ ଫେରିବାକୁ ଚାହୁଁଛନ୍ତି, ମୁଁ ଆଗକୁ ପଦକ୍ଷେପ କରିବାକୁ ଚାହୁଁଥିଲି।

ଛବିଟି ମତେ ମୁଗ୍ଧ କରେ। କାନ୍ଥ ଉପରେ ରହିଥିଲେ ବି ଆମ ଜୀବନ-ଛନ୍ଦରେ ତାହା ଛନ୍ଦସ୍ନିଗ୍ଧ। ଏବେ ଘରେ ଘରେ ପିଲା। ଜଞ୍ଜାଳ ଅମାପ – କୁକୁରଠାରୁ ମୂଷା ପର୍ଯ୍ୟନ୍ତ। ତଥାପି ଏ ଲମ୍ବା ଦଉଡ଼ି ଭିତରେ ସମସ୍ତେ ହାତ ଟାଣ କରିବାକୁ ଅଭ୍ୟାସ କରୁଛନ୍ତି। ଦଉଡ଼ିକୁ ଛାଡ଼ି କେହି କାହାର ଅସ୍ତିତ୍ୱ ଯେପରି ଜାଣିପାରୁ ନାହାନ୍ତି।

ଏହି ମହାରଜ୍ଜୁ–ଟାଣି ଟାଣି ତାକୁ ଆମେ ଜୀର୍ଣ୍ଣ କରିସାରିଲୁଣି; କିନ୍ତୁ ସେ ଛିଣ୍ଡି ନାହିଁ। କେଉଁଠି ହେଲେ ଖିଅ ପରିମାପରେ ଆପେ ବାନ୍ଧି ରହିଛି।

ସ୍ତ୍ରୀଙ୍କ ପାଦ ପାଖରେ ପଥଟା ଲମ୍ବିଯାଇଛି। ସେ ପଥ ଉପରେ ପଛ କଥା, ପଛ ସ୍ମୃତି, ପଛ ମାନ, ଅଭିମାନ ପଛରେ ପଡ଼ିଯାଇଛି। ଆଗକୁ ରହିଛି ବିଶ୍ୱାସ, ଆଶା ଓ ସ୍ୱପ୍ନ।

କାନ୍ଥ ଆଲମାରିରେ ଦୁଇଟା ତିନିଟା ବୋତଲ ରହିଛି। ଏ ବୋତଲଗୁଡ଼ାକୁ ମୁଁ ସହିପାରେ ନାହିଁ। ଏଥିରେ କଣ ଅଛି କହିପାରିବେ? ନାଁ, କହିପାରିବେ ନାହିଁ। ସ୍ତ୍ରୀଙ୍କର ଏ ଏକପ୍ରକାର ଅଳି। ଏଗୁଡ଼ାକ ସେଇଠି ରହିବ। ହଉ ବାବୁ, ରଖ!

କିନ୍ତୁ କେତେ ଲୋକ କେତେ ବିଭିନ୍ନ ମନ ଘେନି ଏ ଘରକୁ ଆସୁଛନ୍ତି। ସେମାନଙ୍କ ଦୃଷ୍ଟି ପଡୁଛି ଏ ବୋତଲଗୁଡ଼ାକ ଉପରେ। ସେମାନେ କଅଣ ଭାବୁଥିବେ?

ଭାବୁଥିବେ ଯାହା ମୁଁ ବୁଝିପାରୁଛି। ସେମାନେ ଭାବୁଥିବେ–ଏ ଲୋକଟା ସତେ କେଡ଼େ ଦେଖାକପିଳା!

ଦେଖାକପିଳା ଅର୍ଥ? ଦେଖେଇହେବା ଗୁଣ ସମସ୍ତଙ୍କର ଅଛି–ଆଦିମ ପ୍ରବୃତ୍ତି; କିନ୍ତୁ ସତରେ କଅଣ ମୁଁ ଦେଖାଇହେଉଛି? ସ୍ତ୍ରୀଙ୍କର ଏଭଳି ପରିପାଟୀରୁ ମୁଁ ଏତେ କଥା ଶୁଣିଲି ସିନା!

ଘର ସଜା ଭିତରେ ଏ ଶିଶି ବୋତଲଗୁଡ଼ାକର ସ୍ଥାନ ନଥିଲେ ଚଳିଥାନ୍ତା। ମୁଁ ବହୁବାର ବୁଝେଇଛି ଧରିତ୍ରୀକୁ – "ଦେଖ, ଆଗର ସମାଜ ଭଳି ଏ ସେ ସମାଜ ନୁହେଁ, କି ଲୋକଗୁଡ଼ାକ ସାଧା, ସହଜ ଓ ସାବଲୀଳ ନୁହଁନ୍ତି। ସଜ ମାଛରେ ପୋକ ପକେଇ ଦେଉଛନ୍ତି। ଅନ୍ଧାରୁଆ ସରୀସୃପଭଳି ଏଗୁଡ଼ାକ ଯିବାଆସିବା କରୁଛନ୍ତି।

"ତୁମେ ତ ଜାଣ ଧରିତ୍ରୀ, ଝିଅମାନେ ମୋ ସଙ୍ଗେ ଲଗେଇଲେ ଥିଏଟର କରିବେ, ତାଙ୍କୁ ଖଣ୍ଡିଏ ଲେଖା ଦେବାକୁ ହେବ। ଦେଲି। ଏଇ ଅଳ୍ପ ଦିନର କଥା ତ! କଣ ହେଲା ଫଳ? ଅସହିଷ୍ଣୁ ଭାଇ ଭଗାରି ମାତିଉଠିଲେ। ଶିଳ୍ପୀ ମନ ଘେନି ମୁଁ ଝିଅଙ୍କ ପାଖକୁ ଗଲି। କଥା ରଟିଲା କ'ଣ ନା, ମୁଁ ସେମାନଙ୍କର ସାନ୍ନିଧ ଲାଭ କରିବା ମାନସରେ ଏଇ ଆୟୋଜନ କରିଥିଲି।

"ଭେଦୁଆ ପଶିଲେ, ଭାଙ୍ଗିଲେ—ଝିଅଗୁଡ଼ାକ କାନ୍ଦ କାନ୍ଦ ହୋଇ ରହିଲେ। ଏଇ ହେଲା ସମାଜ, ଏଇ ହେଲା ଲୋକଚରିତ୍ର !"

ସେଇ ମୁହୂର୍ତ୍ତରେ ବେହେଲାଟା ମୋର ବେସୁରା ଶୁଣାଗଲା। ଛଡ଼ିଟା ତାର ଛାଡ଼ି ଅବାଟକୁ ଚାଲିଗଲା। ଥରେ ଥରେ ବେସୁରା ଗୀତ ଶୁଣିବାକୁ ହେବ, ତାହା ନ ହେଲେ ଶୁଦ୍ଧସ୍ୱର ମୂର୍ଚ୍ଛନାର ମୋହ ଆସିବ କୁଆଡୁ ?

ସେ ବୋତଲଗୁଡ଼ିକରେ ଆଉ କିଛି ନ ଥିଲା, ଥିଲା କର୍ପୂର ମାଳ ଗୁଡ଼ାଏ। ମୁଣ୍ଡ ନୁଆଇଁ ଏଗୁଡ଼ିକ ମୁଁ ଗ୍ରହଣ କରିଥିଲି ବହୁ ସଜ୍ଜନଙ୍କଠାରୁ। ସେମାନଙ୍କର ପ୍ରାଣର ଶ୍ରଦ୍ଧା ଏଇ ମାଳାଗୁଡ଼ିକରେ ଜୀବନ୍ତ ରହିଛି।

ଯେଉଁମାନେ ଅମୃତରେ ନର୍ଦ୍ଦମାଜଳ ଆବିଷ୍କାର କରୁଛନ୍ତି, ସେମାନେ ଏହି ସୁଗନ୍ଧ କର୍ପୂରମାଳଗୁଡ଼ିକରେ ମୋର ପୌଢ଼ି ଦେଖିବେ, ମୋର ଦେଖାଇବାପଣ ବାରିବେ—ଏଥିରେ ବୈଚିତ୍ର୍ୟ କଅଣ ଅଛି ?

ତେଣୁ ଧରିତ୍ରୀକୁ ବାରଣ କରିଥିଲି ସେ ଘରେ ଏ ସବୁ ନ ରଖିବାକୁ। ସେ ଶୁଣିଲା ନାହିଁ।

ବୋତଲ ପାଖକୁ ଗୋଟାଏ ପାଚିଲାବାଳିଆ, ପାଚିଲା ଦାଢ଼ିଆ ବୁଢ଼ା ବସିଛି। ମୁଁ ଜାଣିଶୁଣି ଏଇ ବୁଢ଼ା ଆଡ଼କୁ ପିଠିକରି ବେହେଲା ବଜାଏ। ବୁଢ଼ାଟା ବଡ଼ ଖିଟ୍ ଖିଟ୍ ମିଜାସର। ବେହେଲାରେ ସୁର ସଞ୍ଚାର କରିବାବେଳେ ଏଇ ବୁଢ଼ା କଥା ମନେ ପଡ଼ିଯାଏ। ପିଠିକରି ବସିଛି ବୋଲି ଯେ ସେ ମତେ ଚାହୁଁ ନାହିଁ କି ନିରେଖୁ ନାହିଁ ଏପରି ନୁହେଁ।

ବୁଢ଼ା ଚାହିଁ ରହିଥାଏ। ଥରେ ଥରେ ମୁଣ୍ଡ ହଲାଏ। ପ୍ରଥମେ ଧୀରେ, ତା ପରେ ବଡ଼ ବେଗରେ। ସେତେବେଳେ ତାର ଦାଢ଼ି ଝୁରୁଝୁରୁ ଥରିଯାଏ, ବେକ ଆଗକୁ ଟିକିଏ ଲମ୍ୱି ଆସେ।

ଇସ୍, ଏତେ ପାଚିଲା ବାଳ ଆଉ ଏପରି ଘନ ଓ ଧଳା, ମୁଁ କେଉଁଠି ଦେଖି ନାହିଁ। ଅଥଚ ଦେହର ବର୍ଣ୍ଣ ଭାରି ଗୋରା-ହଳଦି ଗରଗର।

ସେ ମୋତେ ଖତେଇ ହୁଏ—ମୁଁ ବୁଝିପାରେ। ମୁଁ ପିଠିକରି ବସିଛି ବୋଲି ତା'ର ରାଗ ବେଶୀ। ପଛୁଆ କରି ବାର୍ଦ୍ଧକ୍ୟକୁ ମୁଁ କଅଣ ଏଡ଼ି ପାରିବି ? ମୃତ୍ୟୁକୁ କଅଣ ଲାଞ୍ଚ ଦେଇ ଫାଇଲ୍ ହଜିଯାଇଛି ବୋଲି କହିବି ?

ସେ ଆସିବ—ସ୍ଥିର ନିଶ୍ଚିତ ଭାବେର ଆସିବ। ତେବେ ବି ମୁଁ ପିଠିକରି ବସିଛି। ବେହେଲାରେ ସ୍ୱର ସୃଷ୍ଟି କରୁଛି।

ବୁଢ଼ା ଥରେ ଥରେ ବେଗରେ ମୁଣ୍ଡ ହଲାଏ। କଅଣ ବୋଧହୁଏ କହେ। ତା'ର ହାତରେ ସେ ଧରିଛି ସୁତୁ ସୁତୁ ନଳୀ—ଗୁଡ଼ାଖୁ ନଳୀ; କିନ୍ତୁ ଖାଇ ପାରୁନାହିଁ। ବୋଧହୁଏ କାଶ ଆସୁଛି।

ଏ ବୁଢ଼ା ମରିବ ନାହିଁ କି ମତେ ନିସ୍ତାର ଦେବ ନାହିଁ—ବୁଢ଼ା ମୃତ୍ୟୁଞ୍ଜୟ। ମୋର ବେହେଲା ବାଦନରେ ଇଏ କେବେ ଖୁସି ହୋଇଛି ? ବରଂ ଜଳିଛନ୍ତି। ଚୁଲାରେ ନିଆଁ ଧରିଲା ଭଳି ନିଜକୁ ପୋଡ଼ିଛନ୍ତି।

ସବୁ ଦେଖେ, ଧରିତ୍ରୀକୁ କହେ, ବେହେଲାକୁ ଶୁଣାଏ। ଏଇ ଯନ୍ତ୍ରଖଣ୍ଡିକ ଧରି ମୁଁ ଶ୍ମଶାନକୁ ଯିବି—ଏ କଥା ଧରିତ୍ରୀକୁ କହିଦେଇଛି।

ଧରିତ୍ରୀ ଶିହରି ଉଠେ। ସେ କଅଣ ବୁଝେ କିଛି ? ସବୁଠାରେ ଅସଙ୍ଗ ଅସଙ୍ଗତି ଦେଖିଲି। ଶେଷରେ ସ୍ଥିର କଲି ସଙ୍ଗୀତ ଘେନି ଶେଷଯାତ୍ରା ଆଚରିବି।

ସା' ଠାରୁ ପା' ଯାଏ ଛଡ଼ି ଚଳେଇ ଆଣି କୋମଳ ଗାନ୍ଧାରରେ ଅଟକି ଗଲେ ପ୍ରାଣଟା କେତେ ଶାନ୍ତ ହୋଇଯାଏ ? ଏଇ ଶାନ୍ତି ମୁଁ ଏତେଦିନେ ସଙ୍ଗୀତରେ ଆବିଷ୍କାର କଲି।

ବୁଢ଼ା ପାଖକୁ–ହସ ମାଢ଼େ କହିବାକୁ–ଦୁଇଟା କୁକୁର ରଖିଛି। ପରସ୍ପରକୁ ଚାହିଁ ସେମାନେ ବସିଛନ୍ତି। ଆହା କୁକୁର! ଏ ପୃଥିବୀର ସର୍ବଶ୍ରେଷ୍ଠ ଜୀବ!! ମଣିଷ ? ଛିଃ ଛିଃ, ମଣିଷ ନିଜେ କହି ବୁଲୁଛି ଯେ ସେ ପରମାତ୍ମା ପରମେଶ୍ୱରଙ୍କ ସୃଷ୍ଟିରେ ଶ୍ରେଷ୍ଠ ଜୀବ। ଏହାଠାରୁ ଝୁଟାବାତ୍ ଆଉ କିଛି ଅଛି ? କୁକୁର ବେନାମୀ ଚିଠି ଲେଖେ ନାହିଁ। ସେ ନାମି ବେନାମୀ କିଛି ଜାଣେ ନା'ହିଁ। ସେ ବିଶ୍ୱସ୍ତ, ପ୍ରଭୁପାଇଁ ପ୍ରେମମୟ ତା'ର ଅନ୍ତର ସବୁବେଳେ ଉନ୍ମୁକ୍ତ। ହୀନ, ଚୋର, ଦସ୍ୟୁ ଓ ପ୍ରତାରକକୁ ସେ ଚିହ୍ନେ।

ଯେଉଁମାନେ ଅନ୍ୟର ଶ୍ରୀ ଦେଖି ଜଳୁଥାନ୍ତି, ସେ ଲୋକକୁ ଗ୍ରାସ କରିବାକୁ ରାତି ଅଧରେ କନ୍‌ଫରେନ୍‌ସ କରନ୍ତି, ସେମାନେ ଏଇ କୁକୁରଠାରୁ ହୀନ। କୁକୁର ଭୁକେ ପୁଣି ଦେହ ଚାଟେ, ମୁଖ ଚୁମ୍ବନ କରେ। ଶତ୍ରୁକୁ ଭୁକେ, ମିତ୍ରକୁ ଆଦର କରେ। ମଣିଷ ଶତ୍ରୁକୁ ମୁହଁରେ ଚୁମ୍ବନ ଦିଏ, ପଛରେ ଛୁରା ଭୁଷେ। ଏ କଥା ଶ୍ୱାନ କରିବ ନାହିଁ।

ଦଶହରାର ସକାଳ। ଜ୍ୟୋତି ଓ ସୁବାସର ସ୍ନିଗ୍‌ଧ ପରିବେଶ। ଆଲୁଅ ଉପରେ ଛାଇ ଖେଳିଯାଉଛି, ପୁଣି ଛାଇ ଉପରେ ଆଲୁଅ ନାଚିଯାଉଛି। ସ୍ତରେ ସ୍ତରେ ଆରାମ, ଶୋଭା। ମନେ ମନେ କେତେ ଗୁଞ୍ଜରଣ! ଦେହେ ଦେହେ ଶୀତ୍କାର!!

ବେହେଲା ଆଜି ବେଶୀ ଉଷତ। ସ୍ୱର ଝରାଉଛି ଆବେଗମୟ ଭାଷାରେ।

ଦେଖିଲି ନୀଳଭ ଆକାଶର ସପ୍ତପର୍ଣ୍ଣୀ ମେଘର ବିଚିତ୍ର ଲୀଳା। ଜନନୀ ଆସୁଛନ୍ତି। କୋଟି କୋଟି ସନ୍ତାନ ଲୋଟିଯାଉଛନ୍ତି ତାଙ୍କରି ଚରଣର ତଳେ।

ସେଇ ଫଟଟି ଆଡ଼େ ଚାହିଁଲି। ଧରିତ୍ରୀ ବୋଧହୁଏ କ୍ଲାନ୍ତ। ସେଇ ବୁଢ଼ାକୁ ଚାହିଁଲି। ତା'ର ମୁଣ୍ଡହଲା ବୋଧହୁଏ ଆଉ ବେଶୀଦିନ ନୁହେଁ। କୃଷ୍ଣ ବଗକୁ ଚାହିଁଲି। ସେ ଯେପରି ଆଉ ବୃକ୍ଷ ଶାଖା ଉପରେ ରହିବାକୁ ଚାହୁଁନାହିଁ। ଆଉ କର୍ପୂରମାଳା! ବାସ ଫିଟିଯାଇଛି ଅଣୁରେ ଅଣୁରେ। କର୍ପୂର ଚାଲିଯିବ, କେବଳ ସୂତା ଖଣ୍ଡିକ ପଡ଼ିରହିବ।

ପଡ଼ିରହିବ ଏଇ ପୃଥିବୀ। ମାନ, ଅଭିମାନ, ଅଶ୍ରୁ, ବେଦନାମୟ ଏଇ ଶୂନ୍ୟ ପୃଥିବୀ!

ଉଦାସ ବାଜଣା ବାଜୁଥିଲା ବେହେଲାର ତାର ତରଙ୍ଗରେ। ମୁଁ କରିପାରୁ ନଥିଲି ସୁଖମୟ ଆନନ୍ଦର ଝଙ୍କାର ସୃଷ୍ଟି।

ପ୍ରାଣ ଉଦାସ, ମନ ଅସ୍ଥିର। ଠିକ୍ ଏତିକିବେଳେ ଶୁଭିଲା ଅନ୍ତର-ଫଟା ଚିତ୍‌କାର, "– ତମେ ମରିଗଲ, ମତେ ଛାଡ଼ି ସେପୁରକୁ ଚାଲିଗଲ।"

ଘର ଆଗର ଡାକ୍ତରଖାନାରୁ ଏଇ ବାର୍ତ୍ତା ଭାସିଆସିଲା। ଛଡ଼ିଟା ସେତେବେଳେ ଆରୋହଣ କରିଥିଲା ତାରର ସା'ପଦରେ। ଖସି ଆସିଲି ଖୁବ୍ ତଳକୁ।

ମୋ ପଛର ବୁଢ଼ା ଆଉ ମୁଣ୍ଡ ହଲାଉ ନାହିଁ। କୃଷ୍ଣଚୂଡ଼ାର କେତୋଟି କଳି ନବଯୌବନ ଧରିଛି। ପଡ଼ିଶା ଘରର ନବଜାତ ସନ୍ତାନ କାନ୍ଦୁଛି ମାଆର ସ୍ତନ ମୁହଁରେ ଦେବାପାଇଁ।

ଝଡ଼ବେଗରେ ରମେଶ ପଶିଆସିଲା। କହିଲା—ଏହାର ଜବାବ ଆମେ ଦେବୁ।

ମୁଁ ଜଣେ ତରୁଣ ପ୍ରାଣ ଆଘାତ ପାଇଲେ ଏମିତି ବଜ୍ରଦଣ୍ଡ ଧରେ। ମୁଁ ତାକୁ ଆଶ୍ୱାସନା ଦେଇ ପାଖରେ ବସାଇଲି।

ରମେଶ ପାଟି କଲା— 'ସେମାନେ ଜାଣିଶୁଣି ଭାଙ୍ଗିଦେଲେ।' ମୁଁ ହସି ହସି କହିଲି—ଅଭଙ୍ଗା ଜିନିଷ ସଂସାରରେ କିଛି ନାହିଁ। ଏଇ ମୁହୂର୍ତ୍ତକ ପୂର୍ବରୁ ଗୋଟାଏ ମହାଜୀବନ ଭାଙ୍ଗିପଡ଼ିଲା। ମୋ ଆଗରେ ଏଇ ଯେଉଁ ପୁଷ୍ପିତ କୃଷ୍ଣଚୂଡ଼ା ଲତା ଦେଖୁଛ, କେତେ ସୁନ୍ଦର ଫୁଲରେ ତାହା ସର୍ବାଙ୍ଗ ମଣ୍ଡଣି ମାରିଛି। ସେ ବି ଭାଙ୍ଗିଯିବ। ତେଣୁ ଏତେ ଚିନ୍ତା କାହିଁକି ?

ରମେଶ ଉତ୍‌କ୍ଷିପ୍ତ। ସେ ସହଜରେ ମୋ କଥା ବୁଝୁନାହିଁ। କହିଲା— "ଆପଣଙ୍କର ଏ ଦର୍ଶନ ମୁଁ ମାନିବି ନାହିଁ। ଏ ସବୁ ଏମିତି ଆମ ଆଗରେ ଭାଙ୍ଗିଦେଉଥିବେ, ଆମେ ସହିବୁ ? ନିରୀହ କଳାଚର୍ଚ୍ଚାରେ ଏତେ ହିଂସା ?"

ରମେଶ ଯୁବକ। ପ୍ରାଣ ତା'ର ବହୁ ରଙ୍ଗରେ ବର୍ଣ୍ଣମୟ। କିଏ ବାସ୍ତବରେ ଭାଙ୍ଗେ ଅବା କିଏ ଗଢ଼େ, ସେ ଜାଣେ ନାହିଁ।

ରମେଶକୁ ଶାନ୍ତ କରି ବିଦାୟ ଦେଲି। ବେହେଲା ଆଉ ରାଗିଣୀ ଝରାଇଲା ନାହିଁ। ମୋ ହାତ ପଥର ହୋଇଆସିଲା।

ହାତ ପଥର ହେଉ ବା ହୃଦୟ ପଥର ହେଉ, ଏ ସଂସାରରେ ବାଟ ଚାଲିବାକୁ ହେବ। ଧରିତ୍ରୀ ବି କହେ—ହଁ ବାଟ ଚାଲିବାକୁ ହେବ।

ବାଟ ତ ଅସରନ୍ତି। କଳସୀର ଜଳଧାରା ଅନନ୍ତ ନୁହେଁ। ଛିଦ୍ରପଥରେ ଝରିଆସୁଛି ବିନ୍ଦୁ ବିନ୍ଦୁ ହୋଇ।

କେତେ ସ୍ନେହମୟ କ୍ଷଣ ମୋ ଜୀବନ ଭୋଗିଛି, କେତେ ସ୍ପର୍ଶ ଏ ହୃଦୟ ଜାଣିଛି। ଏତେ ଚାହାଣି, ଏତେ ସ୍ପର୍ଶ ସବୁ ମୁଣ୍ଡ ଉପର ଆକାଶ ନାଗର ଦୋଳାରେ ଭାସି ଭାସି ଆସେ। ଶିଳ୍ପୀର ପ୍ରାଣକୁ ସମ୍ମୋହିତ କରେ। ଏହାହିଁ ଜୀବନ।

'ଢାଳେ ପାଣି ପିଆଇ ଦେଲୁ', 'ଭାଙ୍ଗିଦେଲୁ' ଏପରି କହିବାର ପୁରୁଷକାର ସେଇମାନଙ୍କୁ ଶୋହାଏ, ଯେଉଁମାନେ ଅତି ଦରିଦ୍ର....ବହୁ ବିଷୟରେ ଅତି ଦୀନ।

ରଙ୍ଗ ବେରଙ୍ଗ ତରଙ୍ଗ ତଳେ ଶାରଦୀୟ ମହିମା ଉଜ୍ଜ୍ୱଳ ରୂପ ଧରୁଛି। ମୋ ଆଖି ଆଗରେ ପ୍ରାଣ-ପୁଲକିତ ଶୋଭା ସମ୍ଭାର। ଏ ସବୁ ଦେଖିଲେ, ଅନୁଭବ କଲେ ପ୍ରାଣ ତ ମହାପ୍ରାଣ ହୋଇଯିବ, ଦ୍ରୁମ ମହାଦ୍ରୁମ ହେବ, ସାଗର ମହାସାଗର ହୋଇଯିବ। ଏତେ ସଂକୀର୍ଣ୍ଣ ଭାବ କାହିଁକି ?

ସୁଚରିତା ଚିଠି ଲେଖିଥିଲା, ସେ ଭାଙ୍ଗି ପଡ଼ିବା ବେଳେ ମୁଁ ତାକୁ ସାହସ ଦେଇଥିଲି, ତେଣୁ ସେ ମୋ ପାଖରେ କୃତଜ୍ଞ। ଶଙ୍କର ଜଣାଇଛି, ତା'ର ବିପଦବେଳେ ମୋର ସେଇ ପଦକ କଥା ତାକୁ ସଂଗ୍ରାମରେ ଜୟୀ କରିଛି। ସେ କୃତଜ୍ଞ।

ନାଁ, ନାଁ, ମୁଁ କୃତଜ୍ଞତା କାହାଠାରୁ ଆଶା କରୁନାହିଁ। ମୋ ପଛରେ ଦୀର୍ଘଜୀବୀ ଏଇ ବୃକ୍ଷ। ମୋ ଆଗରେ ଅନନ୍ତ ନୀଳିମାରେ ପକ୍ଷ ପିଟି ଭାସିବାପାଇଁ ଉଚ୍ଛନ୍ନ ବଗପକ୍ଷୀ।

ବେହେଲାର ତାର ଉପରେ ରାଗ ବିସ୍ତାର ଚାଲିଛି।

ଜଗତ୍‌ମାତା ଆସିଛନ୍ତି। ସେ ଭାଙ୍ଗିବାକୁ ଆସି ନାହାନ୍ତି। ତେବେ ତାଙ୍କ ସନ୍ତାନମାନେ ଭାଙ୍ଗିବେ କାହିଁକି ?

କାଶତଣ୍ଡୀ ଫୁଲର ମଧୁର ଶ୍ୱେତ ଶୋଭା। ନଦୀର ବାଲିଶଯ୍ୟା ଉପରେ ନିରହଙ୍କାର ଆକାଶର ପ୍ରଣମିତ ଢଙ୍ଗ। ଅଧା ଦୁବଘାସ ଅଧା କଙ୍କରିତ ପତ ଉପରେ ପଥିକର ଚଳନଭଙ୍ଗୀ.....ଆଃ, କେତେ ସୁନ୍ଦର.....କେତେ ଅପାର୍ଥିବ !

ବେହେଲାଟିକୁ କାନ୍ଧ ଉପରୁ ଖସାଇ ଚାହିଁଲି ଦୂର ଦିଗନ୍ତକୁ। ସେଠି ଖଚିତ ହୋଇଛି ଅନେକ ସୌନ୍ଦର୍ଯ୍ୟ, ଶାନ୍ତି ଓ ସୁଷମା।

ଆଦରର ଯନ୍ତ୍ରଟିକୁ ପୋଛିଦେଲି। ଚୁମ୍ବନ କଲି। କହିଲି......କେତେ ଖଣ୍ଡି କାଠ, କେତୋଟି ତାରରେ ତୋର ହୃଦୟ ଓ ତୋର କଣ୍ଠ ତିଆରି। ଅଥଚ ତୁ ଯାହା ସୃଷ୍ଟି କରୁ ତାହା ଅନିର୍ବଚନୀୟ, ଅପୂର୍ବ.... !

ଧୀରେ ତା'ର ଆଶ୍ରୟ ଭିତରେ ବେହେଲାଟିକୁ ରଖିଲି। ସେ ସେଠାରେ ଶାନ୍ତ ହୋଇ ପଡ଼ି ରହିଲା। ଚାରିଆଡ଼େ ମୁଁ ଚାହିଁ ଦେଖିଲି, କେଉଁଠି କିଛି ଭାଙ୍ଗୁ ନାହିଁ, ସର୍ବତ୍ର ନିର୍ମାଣର ପ୍ରସ୍ତୁତି। କିନ୍ତୁ ମଣିଷ ? ସେ ଏତେ ଛୋଟ କାହିଁକି ? ପୁଷ୍ପିତ କୃଷ୍ଣଚୂଡ଼ା ଉପରେ ସେତେବେଳେ ଥୋପି ଥୋପି ଆକାଶର ନୀଳ ଖସି ପଡୁଥିଲା–ପ୍ରାଚୀନ....ଆଦିମ ଓ ସ୍ୱଚ୍ଛ ସେ ନୀଳିମା....ସେହି ଆଡ଼କୁ ଚାହିଁରହିଥିଲି।



# ଡାଉନ୍ ଟ୍ରେନ୍

ଡାଉନ୍ ଟ୍ରେନ୍...

ତା'ର ଗତିପଥ ପୁରୀଠାରୁ ହାବୁଡ଼ା ପର୍ଯ୍ୟନ୍ତ ପ୍ରସାରିତ।

ଚୈତ୍ରର ଗୋଟିଏ ଉଦାସ ସକାଳ। ସିନ୍ଧୁ ତୀରରୁ ବହିଆସୁଥାଏ ସୈକତସ୍ପର୍ଶୀ ବାୟୁପ୍ରବାହ ପ୍ଲାଟଫର୍ମ ପରିପୂର୍ଣ୍ଣ କରି।

ସେଇ ପ୍ଲାଟଫର୍ମ ଭିତରେ ଛିଡ଼ା ହୋଇଥାଏ ଡାଉନ୍ ପାସେଞ୍ଜର ଟ୍ରେନ୍।

ପ୍ଲାଟଫର୍ମର ଏପଟୁ ସେପଟୁ ଅନେକ କିଛି ଦେଖିବାକୁ ମିଳେ। ଅତି ପରିଚିତ ସେଇ ସବୁ ଭେଣ୍ଡର୍, ବୁକ୍‌ଷ୍ଟଲ୍, କଳା ହାପ୍‌ପ୍ୟାଣ୍ଟ-ପିନ୍ଧାଳୀ ରେଲଓୟେ ଶ୍ରମିକ ଆଉ ପଏଣ୍ଟସ୍‌ମ୍ୟାନ।

ଦୂରକୁ ସଦା ଜାଗ୍ରତ ପ୍ରହରୀଭଳି ଛିଡ଼ା ହୋଇଥାନ୍ତି ସିଗ୍‌ନାଲ ଶ୍ରେଣୀ। ସେଥିରୁ ଗୋଟାକର ଠିକ୍ ତଳେ ଚକିଦେଇ ଶୋଇଥିଲା ରେଳ ଚକ ତଳେ କେବେ କଟିଯାଇଥିବା ଖଣ୍ଡିଆଗୋଡ଼ୀ କୁକୁରୀ।

ଦୁଇ ତିନିଟା କାଉ ଥଣ୍ଟ ମାରୁଥିଲେ ପାଣି ପାଇପ କୁଣ୍ଡ ଧାରରେ। ଝାଡୁ ଧରି ଚାଲିଛି ହରିଜନ ସେବକଭାଇ। ଲୁହା ହାତୁଡ଼ି ପିଟି ପରୀକ୍ଷା କରୁଥିଲା କେହି ଜଣେ କର୍ମଚାରୀ ଚକର ଅକ୍ଷଗୁଡ଼ାକୁ।

ଡାଉନ୍ ଟ୍ରେନ୍...

ସେହି ଟ୍ରେନ୍‌ରେ ମୁଁ ଥିଲି ଆରୋହୀ। ଦ୍ୱିତୀୟ ଶ୍ରେଣୀ କକ୍ଷଟିଏ ବାଛି ନେଇଥିଲି।

ସେଇଟି ମତେ ନୀରବ ଓ ନିରୁପଦ୍ରୁତ ମନେହେଲା। କେହି ନ ଥିଲେ ସେ ଡବା ଭିତରେ। ମୋର ବି ଲଗେଜ୍ କିଛି ନଥିଲା, ଯାହା ଥିଲା ତାହା ବହୁ ବ୍ୟବହାରରୁ ଛିଣ୍ଡି ଆସୁଥିବା ଖଣ୍ଡିଏ ହାତବ୍ୟାଗ୍। ତେବେ ସାଥୀ ଭାବରେ ମୋ ସାଙ୍ଗରେ ମୁଁ ନେଇଥିଲି ଖଣ୍ଡିଏ ରାଧାନାଥ ଗ୍ରନ୍ଥାବଳୀ। ସେ କଥା ମୁଁ ପରେ କହିବି।

ବାସ ନିର୍ଦ୍ୱନ୍ଦ୍ୱ...ବିରକ୍ତ କରିବାକୁ ପାଖରେ କେହି ନାହାନ୍ତି। ଯେଉଁମାନେ ପ୍ରାୟ ବିରକ୍ତ କରନ୍ତି "ବାପା ଯା ଦିଅ ତା ଦିଅ", ନ ଦେଲେ ନାକକାନ୍ଦଣା କେଁ ଭେଁ କ୍ରନ୍ଦନରୋଳ ଉଠାଇବାପାଇଁ ସେଇ ଆତ୍ମଜମାନେ ପାଖରେ ନଥିଲେ, କି ମଧୁର ବିରକ୍ତିରେ ସାରା ଶରୀରକୁ ରୋମାଞ୍ଚ କରିବା ପାଇଁ ସ୍ତ୍ରୀ ନ ଥିଲେ, ରହସ୍ୟରୋମାଞ୍ଚକର ପତ୍ରିକା ଅବା ଡିଟେକ୍‌ଟିଭ କିଣିବାରେ ଅକାରଣେ ଅର୍ଥ ଶ୍ରାଦ୍ଧ ପାଇଁ।

ସବୁଆଡୁ ନିର୍ଜଞ୍ଜାଳ।

ଅନୁଭବୀ ଜାଣେ ଏ ତନ୍ଦ୍ରାସକ୍ତ ନିର୍ଜନତା କେତେ କାମ୍ୟ! ପରମ ଶାନ୍ତି ଓ ସନ୍ତୋଷରେ ଆଖି ବୁଜି ହୋଇ ଆସୁଥାଏ। ଆଖି ବୁଜିଦେଲି, ଆଉ ସେଇ ପ୍ରଶାନ୍ତି ଭିତରେ ଟାଣିନେଲି ଦମକାଏ ସିନ୍ଧୁ ପବନ।

ଆଃ, ପରମ ରହସ୍ୟମୟ ଏହି ପାରାବାର!

ପୁଣି ପରମ ସ୍ନିଗ୍ଧ ଶୀତଳ ଏଇ ବାୟୁସ୍ରୋତ !

ଆଖି ଖୋଲିବାକୁ ଇଚ୍ଛା ହେଉ ନ ଥାଏ। ସେଇତକ ସୁଷୁପ୍ତି ଭିତରେ ପୃଥିବୀ ମତେ ବଡ଼ ଭଲ ଲାଗୁଥାଏ। ଆଖି ଫିଟାଇଦେଲେ ଯେତେକ ଜଞ୍ଜାଳ ସିନା !

ଠୁକ୍...

କବାଟ ଖୋଲିବା ଆବାଜ୍ ହେଲା।

ଠାକ୍...

କଅଣ ଗୋଟାଏ ଓଜନଦାର ଜିନିଷ ତଳେ ଫୋପଡ଼ା ହେବା ଶବ୍ଦ ଶୁଣିଲି।

ମୁଁ ଆଖି ବୁଜି ବସିରହିଥାଏ। ମାତ୍ର ଅନୁଭବ କରୁଥାଏ ଗୋଟିକ ପରେ ଗୋଟିଏ ଏଇ ଶବ୍ଦମାଳାକୁ।

– ଓରେ ବାବୁଆ, ଲେ ଆଓ ସମାନ୍, ଲେ ଆଓ।

ବୁଝିନେଲି ଏ କଣ୍ଠସ୍ୱର କେଉଁ ସଂପ୍ରଦାୟର। ଆଖି ଫିଟାଇ ଦେଖିବାକୁ ଇଚ୍ଛା ହେଉ ନଥାଏ। ଏ ମହାଜନମାନେ କେତେ ବିସ୍ତାର ସମାନ୍ ଧରି, କେତେ ପ୍ରାଣୀ କୁଟୁମ୍ବ ସହିତ କୋଠରିରେ ଭର୍ତ୍ତି ହେଲେ କିଏ ଜାଣେ ?

ଦେଖିବା ଇଚ୍ଛାକୁ ଦମନ କରି ମୁଁ ବସିରହିଲି ଆଖି ନ ଖୋଲି ଜଣେ ମୌନୀ ବାବା ମୂର୍ତ୍ତି ଧରି।

ସଣ୍ଟିଂ ଇଂଜିନ୍ ଦୁଇଥର କିଳିକିଳା ଚିତ୍କାର କରି ପାଖ ରେଳପଥ ଦେଇ ଚାଲିଗଲା। ମୁଁ ସେମିତି ଆଖିବୁଜି ବସିଥାଏ।

ଝରକା ପାଖ ସିଟ୍।

ପବନ-ସ୍ରୋତରେ ମୋର ଗହଳ କେଶଗୁଚ୍ଛ ଉଡୁଥାଏ, ଆଉ କାନ୍ତାର ସୁଗନ୍ଧ ସେଣ୍ଟରେ ଓଦା ହୋଇଥିବା ମୋ ହାତଧରା ରୁମାଲର ଭୁରୁଭୁରୁ ଗନ୍ଧ ମୋ ପ୍ରାଣକୁ ମତାଇ ଦେଉଥାଏ।

—ଓଗୋ, ଓଇଖାନେ ବସ୍ ବ ଗୋ...ଓରେ ଦାମା, ଦାମଚରନ୍, ତୁଇ ଆମାର ହାତ ବାକ୍ସଟା ଧରିଛିସ୍ ତ? ଆମର ଅମୂଲ୍ୟଧନ୍ ଓରି ଭେତରେ ଆଛେ। ବୁଝିସ୍ ତ? ଶିଗିରି ଥାଏ, ମୁଖପୋଡ଼ା !

ମୁଁ ତ ଆଖି ବୁଜିଛି, କିଛି ଦେଖିପାରୁ ନାହିଁ। କାହିଁକି ମୁଁ ଏମିତି ଆଖି ବନ୍ଦ କରିଛି ? କାହିଁକି ଥରେ ଥରେ ମଣିଷ ପ୍ରବୃତ୍ତି ଦେଖାଏ ? ପ୍ରଥମେ ଗୋଟାଏ ସ୍ନିଗ୍ଧ ଶୀତଳ ମୋହାବେଶରେ ଆଖି ବୁଜି ବସି ରହିବା ପାଇଁ ପ୍ରବୃତ୍ତି ପାଇଲି, ଅଥଚ ସେଇ ବୁଜିବା ପ୍ରକ୍ରିୟାଟାକୁ ଆଉ ଭାଙ୍ଗିବାକୁ ଇଚ୍ଛା ହେଉ ନାହିଁ। ଯେମିତି ଗୋଟାଏ ଅଳସ ଅବସ ଭାବ—ଗୋଟାଏ ଜଡ଼ୀଭୂତ ସ୍ୱପ୍ନ ଛାୟାର ରୋମାନ୍ସ ଆଖି ପତା ଉପରେ ସଞ୍ଚରୁଛି ! ସତେ କି ଅପୂର୍ବ ଏଇ ମନୋମୟ ଭାବାଲୁତା !

କେତେଗୁଡ଼ିଏ ଲବଙ୍ଗଲତା ଧୂପ୍ ଧାପ୍ ହୋଇ ଡବା ଭିତରକୁ ପଶିଆସିଲେ। ସେମାନଙ୍କର ଚପଲ ଗୁଡ଼ିକର ଧୀର ଶବ୍ଦ, ତାଙ୍କ ନିଃଶ୍ୱାସ ପ୍ରଶ୍ୱାସର ସ୍ୱଚ୍ଛନ୍ଦ ପ୍ରବାହ ଏବଂ ସେମାନଙ୍କର ଆରୋହଣ ଛନ୍ଦରୁ ମୁଁ ବୁଝିନେଲି ସେମାନେ କୋମଳ କାନ୍ତ ଲବଙ୍ଗଲତାଗୁଡ଼ିଏ—ଆଜି ଏଇ ଉଦାସ ଚୈତ୍ର ସକାଳରେ ଯାତ୍ରାପଥ ବାଛିନେଇଛନ୍ତି।

ଡାଉନ୍ ଟ୍ରେନ୍—

ତାର ଯାତ୍ରାକାଳୀନ ପ୍ରଥମ ଘଣ୍ଟା ବାଜିଲା।

ମୋ ବସିଥିବା ଝରକା ପଥ ଦେଇ ଚାଲିଯାଉଥିଲା ଖବରକାଗଜର ହକର୍ କେତେ କିସମର ପତ୍ରିକାର ନାଁ ଡାକି ଡାକି। ଖଣ୍ଡିଏ ନାମଯାଦା ସିନେମା ପତ୍ରିକା ପାଇଁ ହାତ ବଢ଼ାଇଦେଲି। ଆଖି ଦୁଇଟି କିନ୍ତୁ ମୋ ଠିକ୍ ନିବୁଜ୍ ଥାଏ।

ହକର୍ ଏ ଦୃଶ୍ୟ ଦେଖି ବିମୂଢ଼ ହୋଇଯାଇଥିଲା ବୋଧହୁଏ। ତା ଆଗରେ ପଇସା ସହିତ ମୋ ପ୍ରସାରିତ ପାଣିକୁ ସେ ପତ୍ରିକାଟି ବଢ଼ାଇ ଦେଇଥିଲା। ପଇସାତକ ସେ ନେଇଯାଇଥିଲା ଯଥାରୀତି।

ଶୁଣିଲି ଲବଙ୍ଗଲତାଗୁଡ଼ିକ ମୋର ଅନ୍ଧତ୍ୱ ଘେନି ଟିପ୍ପଣୀ କରୁଛନ୍ତି।

ରୂପପାୟୀ ମନ ମୋର ସେମାନଙ୍କର ରୂପ ଖୋଜୁଥିଲା ମୁଦ୍ରିତ ମୋର ନେତ୍ରପଲ୍ଲବ ଭିତରେ। କିନ୍ତୁ କି ଅର୍ଥ ସେ ଅଭିମାନର, ଆଉ କାହା ପ୍ରତି ବି ଅଭିମାନ? ମୁଁ ନିଶ୍ଚଳ ହୋଇ ବସିରହିଲି...ଅନ୍ଧ।

ଦ୍ୱିତୀୟ ଘଣ୍ଟା ବାଜିଲା–

ଡାଉନ୍ ଟ୍ରେନ୍ ବର୍ତ୍ତମାନ ପ୍ରସ୍ତୁତ।

–ଇଲୋ ବାଜିଅମା, ଧପଡ଼ି ଆ ଭଲା! ଆରେ ସବୁ ଧପଡ଼ି ଆସିଲ?

ଝନ୍ ଝନ୍ ଝନତ୍କାର ତୋଳି ଗୁଡ଼ାଏ ରୂପାଗହଣାର ବାଜେଣି-ସୁଅ ଭାସି ଆସିଲା।

–ଆରେ ରଥିଆ, ମଲା, ମଲା, ଏଇଟା ଦେଢ଼ା-ଗାଡ଼ିରେ...ଆଗକୁ ଚାଲ୍‌ରେ, ଆଗକୁ ଚାଲ୍। ଟିକିଟି ଗାମୁଛାରେ ବାନ୍ଧିଛୁ ତ?

ନୀରବ ରହିଯାଇଥିବା ରୂପାଳଙ୍କାରର ଝନତ୍କାର ପୁଣି ଝନ୍ ଝନ୍ ହୋଇ ଖେଳେଇହୋଇଗଲା ପ୍ଲାଟଫର୍ମ ଗୋଟାକଯାକ।

ଆଗରୁ କହିଛି ରାଧାନାଥ-ଗ୍ରନ୍ଥାବଳୀ ଧରି ମୁଁ ଗାଡ଼ି ଚଢ଼ିଥିଲି। କବିବର ରାଧାନାଥଙ୍କର ଜନ୍ମସ୍ଥାନ ଉପରେ ଛିଡ଼ା ହୋଇ ଶ୍ରଦ୍ଧାଞ୍ଜଳି ନିବେଦନ କରିବା ସଙ୍ଗେ ସଙ୍ଗେ ଶ୍ରୋତାମାନଙ୍କୁ ଚନ୍ଦ୍ରଭାଗା, ନନ୍ଦିକେଶ୍ୱରୀ, ଉଷା, ପାର୍ବତୀରୁ କିଛି କିଛି ଉଦ୍ଧୃତି ଶୁଣାଇବି।

ମୋର ତୃତୀୟ ନେତ୍ର ନ ଥିଲା। ଥିଲେ ଦେଖିଥାନ୍ତି କିପରି କଂପାର୍ଟମେଣ୍ଟ ଗୋଟାକଯାକ ଭରିଯାଇଛି।

ଆଖି ଦୁଇଟି ଅଧଘଣ୍ଟା ହେବ ବନ୍ଦ ରଖିଥିବାରୁ କଷ୍ଟ ବି ଅନୁଭବ କଲିଣି। କାହିଁକି ଆଉ ବେଶି କାଳ ସେଗୁଡ଼ିକୁ ସ୍ୱର୍ଗର ଜ୍ୟୋତିଧାରାରୁ ବଞ୍ଚିତ ରଖିବି? ଭାବିଲି ଏବେ ଆଖି ଖୋଲି ଚଳମାନ ଜନସ୍ରୋତକୁ ଦେଖେ। ବୈଚିତ୍ର୍ୟମୟ ଏଇ ବିପଣିରେ ଲାଭ ଲୋକସାନ୍ ଆଡ଼େ ଦଉଡୁଥିବା ଲୋକଙ୍କୁ ଦେଖି ଟିକିଏ ଦାର୍ଶନିକ ପାଲଟେ..କ୍ଷତି କଅଣ?

ଆଖି ଖୋଲିଦେଲି।

ରୂପାନ୍ୱିତ ଯାହା ଥିଲା ଅପରୂପ ଦେଖାଗଲା। ବର୍ଣ୍ଣ, ବାର୍ଣ୍ଣିସ୍ ଓ ପାଲିସ୍ ବିବର୍ଣ୍ଣତାରେ ରୂପର ହାଟ ଚକ୍‌ମକ୍ କଲା।

ତୃତୀୟ ଘଣ୍ଟା ବାଜିଲା–

ଡାଉନ୍ ଟ୍ରେନ୍ ସାମାନ୍ୟ ଦୋହଲି ଯାଇ ଯାତ୍ରା ଆରମ୍ଭ କରିଦେଲା...ଦୁରନ୍ତ ଓ ଦୁର୍ବାର।

ମୋର ଆଖି ଫିଟା ଦେଖି ତିନୋଟି ତରୁଣୀ, ଯାହାଙ୍କୁ ମୋର ଅନ୍ଧ ଅବସ୍ଥାରେ ମୁଁ ଲବଙ୍ଗଲତା ଆଖ୍ୟା ଦେଇଥିଲି, ସେମାନେ ମତେ ଚକ୍ଷୁଷ୍ମାନ୍ ଦେଖି ଆବାକାବା ହୋଇଗଲେ। ମୁଖଭାବରୁ ତାଙ୍କର ଜଣାଗଲା ମୁଁ ଜଣେ ଭଲଲୋକ ନୁହେଁ–ସିନେମାର ଛନି କି ଆଗା ପର୍ଯ୍ୟାୟର ଲୋକ।

ତାଙ୍କ ପାଖରେ ବସିଥିଲେ ଜଣେ ବର୍ଷୀୟସୀ ବିଧବା ସ୍ତ୍ରୀ। ଅନ୍ୟ ଧାର ସିଟ୍ ଉପରେ ଆଉ ଦୁଇଜଣ ପ୍ରଗତିଶୀଳା ନାରୀ–ବୋଧହୁଏ କୌଣସି ଶିକ୍ଷାୟତନର ଛାତ୍ରୀ।

ନିତମ୍ବିନୀଗୁଡ଼ିକର ଆଖିରେ ଦେଖିଲି ଲାଗିଛି ସୁନା ସୋରିଷିଆ ଚୈତ୍ରର ଚୈତାଳୀ ସ୍ୱର୍ଣ୍ଣ।

ସେପଟର ଦୁଇଟି ତଳ ବର୍ଥରେ ମାରୁଆଡ଼ୀ ପରିବାର ପୌଷମାସିଆ ଧୂଳିଆ ଜନ୍ଦାର ଲାଇନ୍ ଭଳି ବିସ୍ତୃତ ହୋଇଯାଇଛନ୍ତି। ପୁରୀ ଷ୍ଟେସନରୁ ସେମାନେ ବିଛାୟମାନ ଅବସ୍ଥାରେ ବିଛଣା ଧରିଥିଲେ।

ଗୋଟିଏ କଣକୁ ଚଉଖଣ୍ଡିଆ ବହିଟିଏ ଧରି ଜଣେ ଗୈରିକବସନ ଭଦ୍ରଲୋକ ନାଗରୀ ଲିପି ପଢୁଥିଲେ–ବୋଧହୁଏ ଗୀତା ବା ରାମଚରିତମାନସର କିଛି ଅଂଶ।

ତାଙ୍କ ମୁହଁରେ ଅଳ୍ପ ଦାଢ଼ି, କିନ୍ତୁ କଞ୍ଚା ଓ ଘନ। ଗୃହସ୍ଥ ଓ ସାଧୁ–ଏଇ ମଝି ମଝିଆ ଅବସ୍ଥାକୁ ଭଦ୍ରଲୋକ ଏବେ ଅବତରଣ କରିଛନ୍ତି।

ତଳେ ବସିଯାଇଛି ବିଚାରା ପୃଥିବୀର ସର୍ବହରା।

ବିନାଟିକିଟ୍‌ର ପଳାତକ ଯାତ୍ରୀ, ବୋଧହୁଏ ଦକ୍ଷିଣୀ ହରିଜନ।

ଏଇ ଅଦ୍ଭୁତ ସଂସାର ଘେନି ମୋ କମ୍ପାର୍ଟମେଣ୍ଟ ପୂର୍ଣ୍ଣ ଥିଲା। ଚୈତ୍ର ସକାଳର ଛାୟାଲୋକ ଭିତରେ ଏମାନଙ୍କ ମନର ଦୋଦୁଲ୍ୟଶୋଭା ଅକଳନୀୟ ବୋଲି ମନେହେଲା।

ଡାଉନ୍ ଟ୍ରେନ୍...

ସୁତରାଂ ତା'ର ରହି ରହି ଯିବାର ଅବସର ବେଶି।

ହଠାତ୍ ଦେଖିଲି ଆରପାଖ କଣରେ ଅଧ୍ୟୟନରତ ଥିବା ବୈରାଗୀ ମୋତେ ଘନ ଘନ ଚାହୁଁଛନ୍ତି। ତାଙ୍କୁ ଦେଖି ଏ ବିଚିତ୍ର ଜନଗୋଷ୍ଠୀ ଭିତରେ ବୈଚିତ୍ର୍ୟତର ଏଇ ମହାପୁରୁଷଙ୍କ ସହିତ ଆଳାପ କରିବାକୁ ମୋର ଇଚ୍ଛା ହେଲା।

ରାଷ୍ଟ୍ରଭାଷାରେ ପଚାରିଲି–ଆପ କାହାଁ ଯାଏଙ୍ଗେ ?

ବୈରାଗୀ ବାବା ସହାସ ବଦନରେ ମତେ ଲାଜ ଦେଇ କହିଲେ–ମୁଁ ଓଡ଼ିଆ ତୀର୍ଥବାସୀ, ହୃଷୀକେଶ ଯାଉଛି। ଓଡ଼ିଆ ମୋର ମାତୃଭାଷା। ଆପଣଙ୍କ ହାତରେ ଦେଖୁଛି ରାଧାନାଥ ଗ୍ରନ୍ଥାବଳୀ। ମୋ ହାତରେ ରାମଚରିତ-ମାନସ। ତୁଳସୀସ୍ତବକ ତ ଉଣା ଅଧିକେ ରାମଚରିତର ବର୍ଷା ବର୍ଣ୍ଣନା !

ମୁଁ କ୍ଷମା ମାଗିଲି ହିନ୍ଦୁସ୍ଥାନୀରେ ତାଙ୍କୁ ଜିଜ୍ଞାସାବାଦ କରିଥିବାରୁ।

ସେ ଟିକିଏ କଅଣ ଭାବି ମୋ ଆଡ଼କୁ ଅନାଇଁ ପଚାରିଲେ–ଆପଣ ଉପେନ୍ଦ୍ରଭଞ୍ଜଙ୍କ କାବ୍ୟରେ ଅଶ୍ଳୀଳତା କିଛି ଦେଖନ୍ତି କି ?

ପ୍ରଶ୍ନ ପ୍ରାସଙ୍ଗିକ ନ ହେଲେ ବି ସାହିତ୍ୟ-ଚର୍ଚ୍ଚାର ଆରମ୍ଭ ଦେଖି କହିଲି–ନାଁ, ତାଙ୍କର କାବ୍ୟ

ଅବଶ୍ୟ କ୍ଷେତ୍ରବିଶେଷରେ କାମଚିତ୍ର ଦେଇଥାଏ, ଏହା ବୋଲି ସେ ସବୁକୁ ଅଶ୍ଳୀଳ କହି ହେବ ନାହିଁ। ତା ଛଡ଼ା ମଣିଷର ମନ ଏମିତି ତିଆରି ହୋଇଛି, ଆପଣ ବି ଜାଣିଥିବେ ଯେ ସେ ମନ ତଥାକଥିତ ଅଶ୍ଳୀଳଭାବ ବା ଚିତ୍ରାଙ୍କନ ପ୍ରତି ବେଶି ଆକୃଷ୍ଟ ହୋଇଥାଏ। ନୁହେଁ କି ?

'ସତ କହିଲେ'–କହି ବୈରାଗୀ ତାଙ୍କ ଘନକୃଷ୍ଣ ଦାଢ଼ିକୁ ଆଉଁସିଲେ।

ଖୋରଧାରୋଡ଼ –

କେହି ଡବା ଭିତରକୁ ଉଠିଲେ ନାହିଁ।

ତରୁଣୀ ଗୋଷ୍ଠୀ ଭିତରୁ କେହି କେହି କେଶବାସ ସଜାଡ଼ିନେଲେ, ମୁଣ୍ଡରେ ପାଣି ମାରିଲେ। କେହି ଖଣ୍ଡେ ଖଣ୍ଡେ ବିସ୍କୁଟ ପାଟିକୁ ପକେଇଲେ। ଓଠରେ ରକ୍ତଦାଗ ଦେଲେ, ଭ୍ରୂ ସାଉଁଳିଲେ।

କାହାର ବା ପୂର୍ବରାଗର ବନ୍ଧୁ ଆସିଥିଲେ ପ୍ଲାଟଫର୍ମ ଉପରକୁ। କେହି ବଗପକ୍ଷୀ-ଭଳି ବେକ ବଢ଼ାଇ ସେମାନଙ୍କ ସଙ୍ଗେ ଆଳାପ ରତ ରହିଲେ।

ହଟ୍ଟଗୋଳ ଜଞ୍ଜାଳ। ଟ୍ରଙ୍କ ସୁଟ୍‌କେଶ ବିଛଣା, ଶିଶୁମାନଙ୍କର କେଁ କାଁ ବିଳାପ, ଜଳଖିଆ ଠେଲା ଗାଡ଼ିପାଖ ଲୋକ ଭିଡ଼, ଛେପ ଖଙ୍କାର, ପାନପିକର ପିଚ୍ ପିଚ୍ ଶବ୍ଦ, ଚା କପ୍‌ର ଟୁଂ ଟାଂ ଆବାଜ, ତା ସହିତ ବହୁ ଲୌହଚକ୍ରର ଇସ୍ପାତୀୟ ଧ୍ୱନି।

ଟ୍ରେନ୍ ଛାଡ଼ିଦେଲା।

ଡାଉନ୍ ଟ୍ରେନ୍ –

ଦେଖିଲି, ତରୁଣୀ ମେଳ ଭିତରୁ ଜଣେ ଝିଅ ଆଖି ଠାରିଲା ସଙ୍ଗୀନୀ ଆଡ଼େ। ମୁଁ ପଞ୍ଚେନ୍ଦ୍ରିୟକୁ ଏକ କରି କେବଳ କର୍ଣ୍ଣେନ୍ଦ୍ରିୟକୁ ପ୍ରଖର କରିନେଲି।

ହଇଲୋ, ଇଏ କିଏ କି ? ଭଦ୍ରଲୋକ ଗ୍ରନ୍ଥାବଳୀ ଧରିଚନ୍ତି ?

ସଙ୍ଗିନୀଟି ଚପଳ ଛନ୍ଦରେ ବକ୍ଷବାସ ଆକର୍ଷି କହିଲା–

ମାଷ୍ଟ୍ର ଫାଷ୍ଟ୍ର ହୋଇଥିବ। ବହି ଦେଖୁଛି, ପ୍ରିପେୟାର କରୁଛି। ଓଡ଼ିଆରେ ଏମ୍.ଏ. ପରୀକ୍ଷା ଦେବ କି କଅଣ ?

ପ୍ରଥମା ପଚାରିଲା–ଉପେନ୍ଦ୍ରଙ୍କର ଶ୍ଳୀଳ ଅଶ୍ଳୀଳ କଥା ଚର୍ଚ୍ଚା କରୁଚି ? ବଡ଼ ରସିକ ଜଣାପଡୁଛି। ଦେଖୁନୁ ରୁମାଲ ଧରା ଢଙ୍ଗରୁ ? ସତେ ଲୋ ଶାନ୍ତି, ଠାବେ ଠାବେ ଭଞ୍ଜେ ଏମିତି ଅଶ୍ଳୀଳ କଥା ଲେଖିଛନ୍ତି ସେ ସେଇ ଭାବକୁ ନିଜ ଭିତରେ ଚିତ୍ର କଲେ ତୁ ଲାଜ ସରମରେ ମରିଯିବୁ, ଆଉ ତୋ ସର୍ବାଙ୍ଗ ଥରିଯିବ। ମାନେ, ତୁ କଅଣ ବୋଲି କଅଣ ହୋଇଯିବୁ।

ସଙ୍ଗିନୀ ଟିକିଏ ଚପଳ ଆଖିରେ ହସ ଝରେଇଲା। କହିଲା–ଦେଖିବୁ ଲୋ ଦେଖିବୁ, ଆଉ ଦି'ଟା ମାସ ଯାଉ। ମେ' ମାସ ଆସୁ ଦେଖିବୁ– ପେଡ଼ିଲୁଗା କାଢ଼ି ଗାଅଣ ବାଅଣ ଭଞ୍ଜବକ୍ତାଗଣ ସଜବାଜ ହୋଇଯିବେ ବୁରୁଲାଠାରୁ ପାରଳା ଯାଏ ପରସ୍ତେ ନାଚିଯିବାପାଇଁ। ହଉ ନାଚ, ଖୁବ୍ ନାଚ, କିନ୍ତୁ ସେଇ ଖଡ଼ା ବଡ଼ି ଥୋଡ଼, ଥୋଡ଼ ବଡ଼ି ଖଡ଼ା।

ମୋର ପ୍ରଖର କର୍ଣ୍ଣେନ୍ଦ୍ରିୟ ଆହୁରି ସତେଜ ହେଲା। କିନ୍ତୁ ଦୁର୍ଭାଗ୍ୟ, ଠିକ୍ ସେତିକି ବେଳକୁ ମାରୁଆଡ଼ୀ ମହାଶୟ ଚେଇଁ ଉଠି ଚିତ୍କାର କଲେ– ବାବୁଆ, ଭଗବାନ୍ ଜୀ ଔର୍ ସୁଭଦ୍ରା ମାଈକୋଁ ଯୋ ଫଟୋ ହାମେ ଆନେଥା, ତୁମ୍ କାହାଁ ରଖ୍ ଦିଆ ? ହାମ୍‌କୋ ଦୋ, ପତିତପାବନକୋଁ ଏକବାର୍ ଦେଖୁଁ।

ବାବୁଆପ୍ରଦର୍ଶିତ ଭଗବାନ୍‌ଜୀଙ୍କ ଚାରିପଇସାର ଚିତ୍ରପଟକୁ ସେ ମୁଣ୍ଡରେ ମାରି କହିଲେ—ଆଃ, ମୁକ୍ତି ହୋଗେ।

ଏକା ଅବିମୁକ୍ତ ମୁଁ ଏଇ ହର୍‌ରଙ୍ଗୀ ଗୋଲକଧନ୍ଦାରେ ପଥ ଖୋଜୁଥାଏ। ମଣିଷ ସତେ କେଡ଼େ ବିଚିତ୍ର!!

ସଁଡ଼ାସ—

ଆମେ ଯାହାକୁ ପାଇଖାନା କହୁ, ଇଂରାଜି ଭାଷାରେ ଯାହା ଲାଭେଟରୀ, ରାଷ୍ଟ୍ରଭାଷାରେ ତାହା — ସଁଡ଼ାସ। ପଢ଼ିବାରେ ଭୁଲ୍ ହେଲେ ସଁଡ଼ାସ୍ ଥରେ ଥରେ ସନ୍ଦେଶ ବୋଲି ପଢ଼ି ହୋଇଯାଏ।

ଜଣେ ତରୁଣୀ ସେଇ ସଁଡ଼ାସ, ଅର୍ଥାତ୍ ଲାଭେଟରୀ, ଅର୍ଥାତ୍ ପାଇଖାନଦ୍ୱାର ଖୋଲି ଭିତରକୁ ଗଲେ।

ସମସ୍ତଙ୍କ ଆଖି ସେଇଆଡ଼କୁ ଢଳିଗଲା। ମାରୁଆଡ଼ିଜୀ ବି ଦେହକୁ ବଙ୍କେଇ ଟିକିଏ କଷ୍ଟ ପାଇଲା ଭଳି ମୁହଁ ବିକୃତ କରି ଚାହିଁଲେ।

ଟ୍ରେନ୍‌ର ଗତି ବଢ଼ିଛି—

ଡାଉନ ଟ୍ରେନ—

ସେକ୍ରେଟେରୀଏଟ୍‌ର ଚୂଡ଼ା ଦେଖାଗଲାଣି। ଅଶୋକ, ଖାରବେଳ, ଗଙ୍ଗନଗର-ଗୁଡ଼ିକ ତା ତଳେ ବହୁଶତାବ୍ଦୀର ସ୍ୱପ୍ନ ଦେଖୁଥିଲେ, ଆଉ ଭାବୁଥିଲେ— ସତେ କଅଣ ନ ହେଲା?

ଖଟ୍‌କିନା ଶବ୍ଦରେ ପୁଣି ସମସ୍ତେ ଫେରି ଚାହିଁଲେ। ତରୁଣୀଟି ଦ୍ୱାର ଖୋଲି ଲାଭେଟରୀରୁ ବାହାରିଆସୁଚନ୍ତି।

ମୁଁ ତାଙ୍କୁ ଖୁବ୍ ନିବିଡ଼ ଭାବରେ ଚାହିଁ ରହିଲି ଏକ ମୁହୂର୍ତ୍ତ ପାଇଁ।

ଦେଖିଲି, ଏଇ ନାରୀଟି ଲାଭେଟରୀକୁ ଯିବାବେଳେ ଯେଉଁ ଅବସ୍ଥାରେ, ଅର୍ଥାତ୍ ଯେଉଁ ମାନସିକ ଅବସ୍ଥାରେ ଯାଇଥିଲେ, ଫେରିଲାବେଳେ ତାଙ୍କର ସେ ଅବସ୍ଥା ନାହିଁ।

କଥାଟାକୁ ଆଉ ଟିକିଏ ପରିଷ୍କାର ଭାବରେ କହିଦିଏ।

ତାଙ୍କର ଦୁଇ ଅଧର ଫୁଟାଇ ଗୋଟାଏ ଚାପା ହସର ମନୋରମ ଭଙ୍ଗୀ ଯେପରି ତାଙ୍କର ସର୍ବାଙ୍ଗରେ ଲହରୀ ଖେଳାଇଥିଲା।

ବକ୍ଷପ୍ରାନ୍ତର ଘନ ଘନ ଶ୍ୱାସ, ଅଧରର ସ୍ପଷ୍ଟ ରୁମାଲର କମ୍ପନ—ଆଖିରେ ଫାଟିପଡୁଥିଲା ଅଫୁରନ୍ତ କୌତୁକ-ଜୁଆର। ସେ ଦିଶୁଥିଲେ ମନୋମୟୀ ରହସ୍ୟାୟିତ ଏକ ଛନ୍ଦର ଛନ୍ଦପୂର୍ତ୍ତି!!

ସେ ଆସି ବସିଲେ ତାଙ୍କ ସ୍ଥାନରେ।

ସଙ୍ଗିନୀର କାନ ପାଖରେ କହିଲେ— "ଉପେନ୍ଦ୍ର ଭଞ୍ଜ।"

ତାଙ୍କର ଇଛା ସେ ଧୀରେ ଏ କଥା କହିବେ; କିନ୍ତୁ ହୃଦୟର ବିସ୍ଫାରିତ ଆବେଗ ତାଙ୍କ କଣ୍ଠରୁ ମୃଦୁ କରି ପାରିଲା ନାହିଁ।

ମୁଁ ଶୁଣିପାରିଲି - 'ଉପେନ୍ଦ୍ର ଭଞ୍ଜ'।

ଦୁଇ ମିନିଟ୍ ପରେ ସଁଡ଼ାସ୍ ଦ୍ୱାର ଖୋଲିଲା। ତା ଭିତରକୁ ଗଲେ ଅନ୍ୟ ଏକ ତରୁଣୀ-ସେଇ ଯେ ପ୍ରଥମାର ସଙ୍ଗିନୀ।

ବାବାଜୀ ରାମଚରିତ-ମାନସ ଉପରେ ମାନସ ଢାଳିଥାନ୍ତି । ମୁଁ ଦିଗନ୍ତ ଦେଖୁଥାଏ ।

ଯେତେ ସମୟ ଲାଭେଟରୀରେ ରହିବା ସ୍ୱାଭାବିକ, ତହିଁରୁ ଅଧିକା ସମୟ କଟାଇ ତରୁଣୀ ବାହାରିଆସିଲେ ।

ଆଶ୍ଚର୍ଯ୍ୟ ! ୟାଙ୍କର ବି ଦେଖିଲି ସେଇ ଆଖିଝରା ଓଠଚିପା ହସ ।

ବର୍ଷୀୟସୀ ବିଧବା ଆଖି ଟେକି ପଚାରିଲେ— କଅଣ କିଲୋ ଝିଅ ?

ମୁଁ ତେଣିକି ଆଉ କିଛି ଶୁଣି ପାରିଲି ନାହିଁ ।

ହଠାତ୍ ଦେଖିଲି ବିଧବା ଲାଭେଟରୀ ଖୋଲି ଭିତରକୁ ଗଲେ ।

ସାଧୁ ବୈରାଗୀ ହୃଷୀକେଶ-ଯାତ୍ରୀ ସେତେବେଳକୁ ଚଞ୍ଚଳ ହେଲେଣି । ତାଙ୍କର ସ୍ଫୁରିତ ଅଧରରୁ ବୁଝିଲି କେମିତି ଗୋଟାଏ ମଧୁର ଉତ୍ତାପ ତାଙ୍କ ମନ ଓ ଶରୀରରେ ଆସ୍ୱସ୍ତି ଆଣିଦେଇଛି ।

ଡାଉନ୍ ଟ୍ରେନ୍ ଚାଲିଥାଏ । ସୂର୍ଯ୍ୟ ତେଜରେ ଦିଗନ୍ତ ଧରିଥାଏ ଅପୂର୍ବ ନିର୍ମଳତା ।

ବିଧବା ବାହାରିଆସିଲେ । ଲକ୍ଷ୍ୟ କଲି ତାଙ୍କ ମୁହଁଟି ବଡ଼ ପାଂଶୁଳ । ଲଥିକିନା ତାଙ୍କ ଜାଗାରେ ବସିପଡ଼ି ସେ କକ୍ଷ ବାହାରକୁ ଦୃଷ୍ଟି ଦେଲେ । ଅଜାଣତରେ ବୋଧହୁଏ ସେ ଦୀର୍ଘଶ୍ୱାସ ପକାଇ ଦୂର ଚକ୍ରବାଳକୁ ଅନାଇଁ ରହିଲେ ।

ଏତିକିବେଳେ ମାରୁଆଡ଼ୀ ମହାଶୟ ହାଉ ହାଉ ଚିତ୍କାର କଲେ—ଏତନା ବାର୍ ସଁଡ଼ାସ୍ କା ଦରଜା କେଉଁ ଖଟ୍ କଟ୍ କର ରହେ ହୋ ?

ତାଙ୍କର ସେଇ ଯେ ସହଧର୍ମିଣୀ ଏଯାଏ ଲମ୍ବ ହୋଇ ଶୋଇ ରହିଥିଲେ, ସେ ଉଠି ସିଂହିନୀ ଭଳି ଗର୍ଜି ଉଠିଲେ — ତୁମ୍ ସେ କ୍ୟା ? ଓ ଲୋଗୋଁ କୋ ବେଗ୍ ଲଗାତା ହୈ । ଯାନେ ଆନେ ତୋ ହୋଗା; ତୁମ୍ ସେ କ୍ୟା ?

ୟା ଭିତରେ ଆଉ ଜଣେ ମହିଳା ଲାଭେଟରୀ ଭିତରକୁ ଯାଇଥିଲେ । ସେ ଫେରିଲେ । ଦେଖିଲି ଏଇ ଲବଙ୍ଗଲତାର ଲାବଣ୍ୟ ଉପରେ ଯୋଡ଼ାଏ ଗଙ୍ଗଶିଉଳି ଝରିଯାଉଥିଲା । ଲାଜ, ହସ, ରୋମାଞ୍ଚ-କେଳି-କଲ୍ଲୋଳିତ ମଦିରାଭାଣ୍ଡ ଯେପରି ଫାଟିପଡ଼ି ସୁଭଗାର ସର୍ବ ଶରୀର ଉପରେ ରସଧାରା ବର୍ଷଣ କରୁଥିଲା ।

ରାମଚରିତ-ମାନସ-ପାଠକ ସାଧୁ ବାବା ମୋରି ଭଳି ନାରୀରୂପ ଦର୍ଶନ କରୁଥିଲେ । ସେ ଉଠି ପଡ଼ିଲେ — ଖଡ଼ମ୍ ଦୁଇଟା ଖଟ୍ ଖଟ୍ ଶବ୍ଦ ହେଲା । ସେ ଶବ୍ଦ ଧୀରେ ବହିଗଲା ଲାଭେଟରୀ ଦ୍ୱାରଆଡ଼େ ।

ଶବ୍ଦ ହେଲା ଧଡ଼ାସ୍ । ବିଚାରା ନିଦ୍ରାପ୍ରିୟ ମାରୁଆଡ଼ିଜୀଙ୍କର ବୋଧହୁଏ ଧୃତି-ବନ୍ଧ ଭାଙ୍ଗିଗଲା ।

ସେ ଚିତ୍କାର କଲେ—

—ଆରେ ଓ୍ୱାଃ, ଅପ୍ କ୍ୟା ସବ୍ ପାଗଲ ବନ ଗୈ ? ସବ୍‌କୋ କ୍ୟା ବହୁମୂତର ବ୍ୟାଧି ଆକରମନ କର୍‌ଲିୟା ?

ଦୀର୍ଘକାଳ କଟାଇ ଗୈରିକ ସନ୍ନ୍ୟାସୀ ସଁଡ଼ାସଦ୍ୱାର ଠେଲି ବାହାରିଲେ । ତାଙ୍କର ଦକ୍ଷିଣ ହସ୍ତ ରହିଥିଲା ନିଜର କଳା ଘଞ୍ଚ ଶ୍ମଶ୍ରୁକୁ ସାଉଁଳିବାରେ । ଆଖି ଦୁଇଟି ଲୋହିତ ଓ ସ୍ତିମିତ । କିମିତି ଏକପ୍ରକାର ଟଳ ଟଳ ଭଙ୍ଗୀରେ ଯେ ଯାଇଥିଲେ ନିଜର ଆସ୍ଥାନଆଡ଼କୁ ।

ଦେଖିଲି, ସେ ଅତି ଗମ୍ଭୀର ଓ ନିସ୍ତେଜ।

ଶେଷରେ 'ଓଃ' କହି ଶରୀର ନଚାଇ, ମେଦନିଃସୃତ ଘର୍ମ ପୋଛି ପୋଛି ଆଗକୁ ପାଦ ବଢ଼ାଇଲେ ମାରୁଆଡ଼ୀଜୀ। ଲକ୍ଷ୍ୟ ସେହି ସଁଡାସଦ୍ୱାର।

ତାଙ୍କ ସହଧର୍ମିଣୀ ପାଟି ଶୁଣାଇଲେ–ଶୁନୋ, ଜଲ୍‌ଦି ଆନା। ମୈଁ ଯାଉଙ୍ଗି।

ଚୈତ୍ରର ମଧ୍ୟାହ୍ନ କ୍ରମେ ତେଜୀୟାନ୍ ହୋଇଆସୁଥିଲା।

ଡାଉନ ଟ୍ରେନ୍ ଛୁଟିଛି। ତା ସହିତ ବଳୟିତ ଦିଗନ୍ତ ନାଚି ନାଚି ମେଘମାଳା ସାଥୀରେ ଭାସିଯାଉଥିଲା।

ଥରେ ଥରେ ସବୁ ତରୁଣୀଙ୍କ ପୁଷ୍ପିତ ଆନନକୁ ଚାହିଁଗଲି। ଦେଖିଲି, ସେହି ମୁହଁଗୁଡ଼ିକରେ ଲାଜ ଓ ପ୍ରୀତିର ଝଲକ। ସଁଡ଼ାସ୍ ଦ୍ୱାରଟା ଯେପରି ସମସ୍ତଙ୍କପାଇଁ ସ୍ୱର୍ଗର ଦ୍ୱାର ଭଳି ଉନ୍ମୁକ୍ତ ହୋଇଯାଇଛି। ପାପୀ, ପାପିନୀ ଯାଉଛନ୍ତି–ଫେରୁଛନ୍ତି ପୁଣ୍ୟବାନ୍ ଓ ପୁଣ୍ୟବତୀ ହୋଇ।

ମାରୁଆଡ଼ି ମହାଶୟ ପାଇଖାନା ଭିତରୁ ଗଳ ଗଳ କରି ଗାଲେ ଗାଲେ ପାଣି ପୂରାଇ ହସି ହସି ମେଦ ନଚାଇ ବାହାରିଆସିଲେ ଆଉ ମୋର ଝରକା ଭିତରେ ମୁହଁ ବଢ଼ାଇ ପାଣିତକ 'ଅଗ୍' ଶବ୍ଦରେ ପିଚ୍ କରିଦେଲେ।

କହିଲେ – କ୍ୟା ବାତ୍, କ୍ୟା ବାତ୍!

ଅବଶିଷ୍ଟ ମହିଳାମାନେ ଗୋଟିଏ ପରେ ଗୋଟିଏ ଉଠିଆସି ଲାଭେଟରୀ ଆଡ଼େ ଚାଲିଲେ। ଦେବଦର୍ଶନ ପାଇଁ ସାହାଣମେଲା ମନେହେଲା।

ବୁଝିବାକୁ ବାକୀ ରହିଲା ନାହିଁ ଯେ ଏଇ ମୁହୂର୍ତ୍ତରେ ଫାଇଭ୍ ଡାଉନ୍ ପାସେଞ୍ଜର ଟ୍ରେନ୍, ଯାହାର ଗତିପଥ ପୁରୀରୁ ହାବଡ଼ାଯାଏ ପ୍ରସାରିତ, ତା'ରି ଗୋଟାଏ ସେକେଣ୍ଡ କ୍ଲାସ ଡବା ଭିତରେ ଲାଭେଟରୀଟି ଅନନୁମେୟ ରହସ୍ୟରେ ଆଚ୍ଛନ୍ନ ରହିଛି।

ଯେଉଁ ଅଭିମାନ ଅବା ଜିଦ୍‌ରେ ମୁଁ ଅଧଘଣ୍ଟାକାଳ ଆଖି ବୁଜି ବସିଥିଲି, ଠିକ୍ ସେଇ ପ୍ରବୃତ୍ତି ମତେ ଅନ୍ୟ ସମସ୍ତଙ୍କଭଳି ଲାଭେଟରୀ ଆଡ଼େ ଚଳାଇ ନେଇ ପାରିଲା ନାହିଁ।

କାହାରି ସ୍ଥିତି ଓ ଉପସ୍ଥିତିକୁ ନ ମାନି ଲାଜର ପ୍ରାଚୀର ଭାଙ୍ଗି ହସି ହସି ଲୋଟି ଆସିଲେ ଦୁଇ କିଶୋରୀ ମୃଗିଣୀ। ସ୍ୱର୍ଗର ମଧୁକଣା ଯେପରି ତାଙ୍କ ରକ୍ତରେ ମୂର୍ଚ୍ଛନା ତୋଳୁଥିଲା।

ବିଧବାଙ୍କ ମୁହଁରେ ବି ହସର ଗୋଟିଏ ସ୍ନିଗ୍ଧ କଳି ଫୁଟିଯାଇଥିବାର ଦେଖିଲି। ଏହି ଉଦାସିନୀ ନାରୀକୁ ଦେଖିଆସିଛି ସ୍ଥିର, ସଂଯତ ଓ ସାବଲୀଳ; କିନ୍ତୁ ଏଇ ମୁହୂର୍ତ୍ତରେ ତାଙ୍କ ଭିତରର ନାରୀତ୍ୱ ସତେ କି ଗୁଞ୍ଜନ ତୋଳିଲା ଅପସୃୟମାନ ଜୀବନ-ଦିଗନ୍ତଆଡ଼େ ?

କେଜାଣି କାହିଁକି ବୈରାଗୀ ହୃଷୀକେଶ ଯାତ୍ରୀ ହଜିଲା ସଂପତ୍ତି ପାଇଲା ଭଳି ମତି ଦେଖାଇଲେ ଆଉ ରାମଚରିତର-ମାଳା ତାଙ୍କୁ ବାନ୍ଧି ରଖି ପାରିଲା ନାହିଁ।

ସେ ଚାହୁଁ ଥିଲେ...ଠିକ୍ ଚାହିଁବା ନୁହେଁ...ଜୀବନର ଅନେକଗୁଡ଼ାଏ ଦିନ ନିଷ୍ଫଳ ସାଧନା ଓ ଅଧ୍ୟୟନରେ ଯାପନ କରିଛନ୍ତି ବୋଲି ଗୋଟାଏ ଅବ୍‌ଶୋଷ ଭାବ ଯେପରି ତାଙ୍କ ଦୃଷ୍ଟିଧାରାରୁ ସଞ୍ଚରି ଯାଇ ଫୁଟିଲା ଫୁଲର ସୁରଭି ଓ

ଯୌବନ ଧରି ଉଭା ହୋଇଥିବା ତରୁଣୀମାନଙ୍କ ମୁଖ, ବକ୍ଷ, କେଶବନ୍ଧନ ଉପରେ କ୍ଷଣେ କ୍ଷଣେ ସ୍ଥିର ରହିଯାଉଥିଲା।

ବିଚଳିତ ହୃଦୟ, ବିଗଳିତ ଦୃଷ୍ଟି, ଅଭିଭୂତ-ଯୌବନ!!

କେତେ ସମୟ ପାଇଁ ଆମେ ଏହି କକ୍ଷ ଭିତରେ ମିଳିତ ହୋଇଥିଲୁ। ପୁଣି ଯାତ୍ରାପଥରେ ଭିନ୍ନ ସ୍ଥାନରେ ବିଦାୟ ଘେନି ଚାଲିଯିବୁ–ଏହି କଥା ମୁଁ ଭାବୁଥିଲି।

ମୋ କକ୍ଷ ଭିତରେ ଯାତ୍ରୀମାନେ ଓହ୍ଲାଇ ଗଲେ ଡାଉନ୍ ଟ୍ରେନ୍‌ରୁ ନିଜ ନିଜର ଗନ୍ତବ୍ୟ ପଥରେ।

ହୃଷୀକେଶବାବା ଯାଜପୁର ତୀର୍ଥ ଦେଖିବାପାଇଁ ଅବତରଣ କଲେ। ତାଙ୍କ ପୂର୍ବରୁ ରୁକ୍ଷ କକ୍ଷ ଭିତରେ ଏପର୍ଯ୍ୟନ୍ତ ସମ୍ମୋହିତ କରୁଥିବା ପ୍ରାଣୀମାନେ ଓହ୍ଲାଇ ଯାଇଥିଲେ।

ସୋର ଷ୍ଟେସନ ଅନତିଦୂରରେ। ଏହିଠାରେ ମୋ ଯାତ୍ରାର ଅନ୍ତିମ ପର୍ବର ଉଦ୍‌ଯାପନ। ମୁଁ କିଛି କ୍ଷଣପରେ ଗୋଡ଼ ଦେବି କବିର ଜନ୍ମଭୂମି ଉପରେ, ସାଧନାପୀଠ ଉପରେ। ସିଗ୍‌ନାଲ୍ ଦେଖାଗଲାଣି।

ଭାବିଲି ମୁହଁ ହାତ ଟିକିଏ ଧୋଇ ନେବି ଆଉ ବିସ୍ରସ୍ତ କେଶରାଜିରେ ଚିରିଣୀ ଚଳାଇଦେବି।

ମୁଁ ଲାଭେଟରୀ ଫିଟାଇ ଭିତରକୁ ଗଲି।

ଏହିଠାରେ ଏ କାହାଣୀଟି ଶେଷ କରିଥିଲେ ଗୋଟାଏ ଯାତ୍ରାର ସ୍ନିଗଧ ଓ ରୁକ୍ଷ ଭାବର ସମ୍ମିଳିତ ଆବେଗ ସୃଷ୍ଟି ହୁଅନ୍ତା – କେତେଗୁଡ଼ିଏ ଜନମେଳାରେ କେତୋଟି ମୁହୂର୍ତ୍ତର ବିକାଶ ଓ ସମାପ୍ତି ଯେପରି ଘଟିଥିଲା, ତାହାହିଁ ଯଥେଷ୍ଟ ହୋଇଥାନ୍ତା।

କିନ୍ତୁ ଆହୁରି ବାକୀ ଅଛି।

ଲାଭେଟରୀ ଭିତରକୁ ଯାଇ ଟ୍ୟାପ୍‌ରୁ ଟଳେ ପାଣି ମୁହଁରେ ଛାଟି ଦେବା ମାତ୍ରେ ଦର ଦର ଓଦା ଆଖିପତା ଭିତର ମୋ ଚକ୍ଷୁ-ତାରକାର ଜ୍ୟୋତିରେ ମୁଁ ଦେଖିଲି..

ଦେଖିଲି ଗୋଟିଏ ଚିତ୍ରାଙ୍କନ ପ୍ରତିବିମ୍ବିତ ହୋଇ ମୋର ସାମ୍ନା ଦର୍ପଣ ଉପରେ ଝଲସି ଉଠୁଛି।

ଚଟ୍‌କିନା ବୁଲିପଡ଼ି ଯାହା ଦେଖିଲି ସେଥିରେ ମନ ମୋର ସ୍ଥିର ହୋଇଗଲା। ଆଖି ଦୁଇଟି ବି ସେ ରୂପକୁ ଦେଖିବାରେ ଲାଗିଲା ଲୋଭାସକ୍ତ ହୋଇ।

ଦେଖିଲି ଗୋଟିଏ ବିଶିଷ୍ଟ ଉଡାନ ଭଙ୍ଗୀରେ ଦୁଇଟି ନରନାରୀ, ଖୁବ୍ ବୃଷାଳ ଓ ସୁସ୍ଥଦେହୀ, ଚଉଷଠି ବନ୍ଧରୁ ଗୋଟିଏ ରତିକ୍ରିୟା ବନ୍ଧକୁ ସମ୍ଭୋଗ କରୁଛନ୍ତି।

ତାହା ଚିତ୍ରାଙ୍କନ ମାତ୍ର। ଲାଭେଟରୀ କାନ୍ଥରେ ଏହି ଅଙ୍କନ।

କିନ୍ତୁ ସେ କି ଅଙ୍କନ! ପରସ୍ପର ଆଲିଙ୍ଗିତ ଏଇ ଦୁଇ ମହାପ୍ରାଣୀ ଯେଉଁ ପରିଶୋଭିତ ଏବଂ ଆଦିମ ନଗ୍ନତାରେ ଜଣେ ଜଣକୁ ଉପଭୋଗ କରୁଥିଲା, ସେହି ଉପଭୋଗରୁ, ସେଇ ରସାନୁଭୂତିରୁ କୋଟି କୋଟିଜୀବ, ପ୍ରାଣୀ ପୁଣି ଅମୃତର ପୁତ୍ର ଏଇ ମଣିଷ ପ୍ରଥମ ମୁହୂର୍ତ୍ତରୁ ସୃଷ୍ଟି ହୋଇ ଆସୁଛି। ଅବ୍ୟାହତ ଏଇ ଧାରାର ଏଯାଏ ମଳିନତା ଆସିନାହିଁ।

ନାଁ, ମୁଁ ସେ କଥା କହୁ ନାହିଁ– ଏ ବିଚାର ଦାର୍ଶନିକର। କିନ୍ତୁ ମୁଁ ଭାବୁଛି କିଏ ସେ ଅଖ୍ୟାତ

ଆର୍ଟିଷ୍ଟ, କଣ ବା ତାର ପ୍ରେରଣା ? କି ବା ତାର ଅନୁଭବ ଯାହା ଅପରିଷ୍କୃତ ଲାଭେଟରୀ କାନ୍ଥକୁ ବାଛି ନେଲା ତାର କାନଭ୍ୟାସରୂପେ ଆଉ ବାଛିନେଲା ତାର ହାୱାଇ ସାର୍ଟ ପକେଟର ଫାଉଣ୍ଟେନ ପେନକୁ ତୁଳୀଭାବରେ ଶେଷରେ ରଙ୍ଗ ପରିବର୍ତ୍ତେ ବାଛିନେଲା ଫାଉଣ୍ଟେନ୍‌ପେନ୍ କାଳି !

ବିଶ୍ୱାସ ହେଲା ଏଇ ଆତ୍ମଗୋପନକାରୀ ଅଦୃଶ୍ୟ ଚିତ୍ରଶିଳ୍ପୀର ଦକ୍ଷତା ଅଛି। ସର୍ବତ୍ର–ଶିଳା, କାନ୍‌ଭ୍ୟାସ ଅବା ମାଟି ଯେଉଁଠି ହେଉ ପଛକେ ସେ ରୂପ ଫୁଟାଇ ପାରିବ। ରସମୟ ହେବ ସେଇ ରୂପର ଆବେଦନ। ପୁଣି ତାହା ଜୀବନକୁ ଦେବ ମଧୁର ସଙ୍ଗୀତ। ଆଉ ଅପସୃତ ଜୀବନରେ "କରିପାରିଥିଲେ କେତେ ରଙ୍ଗମୟ ହୋଇପାରିଥାନ୍ତା" ଏହି ଭାବର ସ୍ନିଗ୍ଧ ନୈରାଶ୍ୟକୁ ବି ତାହା ଚେତାଇ ଦେବ।

ଆଜି ବି ସେଇ ଫାଇଭ ଡାଉନ୍ ପାସେଞ୍ଜର ଟ୍ରେନ୍ ପୁରୀ ଯାତ୍ରା କରୁଛି ପ୍ରତି ସକାଳେ। ତା ସହିତ ଗଡ଼ି ଚାଲିଛି ସେହି ନିର୍ଦ୍ଦିଷ୍ଟ ସଁଡ଼ାସ କକ୍ଷ ଆଉ ତାରି ସହିତ ଚାଲିଛନ୍ତି ସେଇ ଦୁଇଟି ଉଲଗ୍ନ ରତିକ୍ରିୟା-ପ୍ରବୀଣ ନରନାରୀ...ଆମରି ଆଦି ଓ ଅକୃତ୍ରିମ ପୂର୍ବଜ...କିମ୍ବା ଚିର ନୂତନ ସହୃଦୟ ସାଥୀ ଚିରକାଳର।



# ଅପୁଷ୍ପ-ପୁଷ୍ପିତା

ଛନଛନିଆ କଅଁଳ ସବୁଜ ପତର ଉପରେ ମେଘ ବରଷୁଥିଲା ଟପର ଟପର। ଅଧା ଜ୍ୟୋତ୍ସ୍ନିଆ ଅସରା ଛୋଟ ଛୋଟ ଧାରାରେ ବହିଯାଉଥିଲା ଗାଁ ଓ ପଥ ଉପରେ। ଆମ୍ବଗଛର ଆକାଶିଆ ଫାଙ୍କରେ ମଥାନ ଗର୍ଜୁଥିଲା।

ସକାଳ ପହର। ଧେନୁ ଫିଟିଗଲେଣି। ଖଳା ବାଡ଼ିର ସଜନା ଲଟାରୁ ଫଳ ଓହଳିଛି। ସନ୍ତସନ୍ତିଆ ଗୋବର ଗାତ, ପାଳଗଦା ଆଉ ଘର ମଥାନ ଘେରି କୁଣ୍ଡଳୀ ଧୂଆଁ ସାରି ସାରି ଅତୁଆ ସୂତା ଭଳି ଉଠିଯାଇ ନେଳୀ ଆକାଶକୁ ଭେଦିଗଲାଣି। ଶାଶୁମାନେ ଭଣ୍ଡାରଘରୁ ଦିଅଣ ନିଅଣ ଆରମ୍ଭ କରିଛନ୍ତି।

ଗାଁ ତରୁଣୀ ପାହାନ୍ତି ଶୀତୁଆ ନିଦରେ ଢଳିଯାଇଛି ଶେଯ ଉପରେ। ଭାରି ଅଳସ। ହାତ ଗୋଡ଼ ନିତମ୍ବରେ ଯେପରି ଅଳସ ଖୁନ୍ଦି ହୋଇ ରହିଛି। ସେଥିପାଇଁ ନିତମ୍ବ ଭାରି, ଆଖିପତା ଭାରି। ମନଟା କି ଫୁଲଫୁଲିଆ ନାହିଁ। ଶ୍ଳଥ କବରୀରୁ ମହକ ଝରିଆସି ଓଲଟା ଦିଗକୁ ଚାଲିଗଲାଣି।

ଖାଲି ଅଳସ କ୍ଳାନ୍ତି! କାନ ପାତି ପୃଥିବୀର ସମସ୍ତ ବିଚିତ୍ର ଗୁଞ୍ଜନ ଶୁଣିବା ପାଇଁ ଉପାସିଆ ମନ ଉସୁକି ରହିଛି। ମନ କହୁଚି ଆଉ ଟିକିଏ ଗଡ଼ିପଡ଼ିବି–ସବୁଦିନେ ତ ପାହାନ୍ତରୁ ଉଠେ, ଆଜି ଏବେ ଆଉ ଟିକିଏ ବେଳଯାଏ ଦେହଟାକୁ ଅସଜଡ଼ା ଭାବ୍‌ରେ ଗଡ଼େଇଦିଏ। ଗଡ଼ିଯାଉ ଏ ଦେହଟା ଏପଟୁ ସେପଟୁ। ଚିପି ହୋଇଯାଉ ତାତିଲା ଗଣ୍ଡ ଉରୁ। କୁଞ୍ଚୁକୁଞ୍ଚିଆ ବିଛଣା ଚାଦର ତଳ ଉଷୁମ ସାଙ୍ଗକୁ ମନର ତାତିଲା ତାଉ ଧରି ରଖିଛି ଦେହଟାକୁ।

ଚଢ଼େଇଟା, କିଚିରି ମିଚିରି କଲା–ଅତି ପାଖ–କାନ ପାଖରେ। ଦାଣ୍ଡପଟରୁ ଶୁଭିଲା ହଳିଆ ଡାକ। ଦର ଆଉଜା କବାଟ ମୁକୁଳା କରିବାକୁ ମନ ହେଉନି। ପିଲାଏ କାନ୍ଦିଲେଣି। ବଳଦ ଖାଇବା କୁଣ୍ଡକୁ ମାଠିଆ ପାଣି ଗଡ଼ିଯିବାର ଶବ୍ଦ। ନାପିତୁଣୀ ଡାକିଲାଣି...ଆସଲୋ ଆସ...କେମାମାନେ, ଏତେବେଳଯାଏ ପହଡ଼ ଭାଙ୍ଗିନାହିଁ କି? ବୀରଘର ବୁଲି କାମ ସାରି ଯାଉ ଯାଉ ସଞ୍ଜବତି ଜଳିବ–ଆସ ଗୋ।

ଦର ଆଉଜା ଦୁଆର ଆଉ ଟିକିଏ ମୁକୁଳା ହେଲା। ମୁକୁଳି ଗଲା ମନର ପକ୍ଷୀ। ଝର ଝର ଡେଣା ପିଟି ଉଡ଼ିଯିବ...ବନସ୍ତ...ପର୍ବତ... ନଈ...ନାଳ ପୁଣି ଆଉ କେତେ ରାଜ୍ୟ।

ମୁକୁଳା ଦୁଆର। ରଜୋବତୀ ଭୂଇଁର ଓଦା ମାଟି, ଶିଶିର ବିନ୍ଦୁ, ସୁରଭି, ଚୁଆ, କଜ୍ଜଳ, ମେଥି, କର୍ପୂର ଗନ୍ଧ ବହି ଆସିଲା ଲବଣୀ ମନ ଭିତରକୁ। ଟୁପୁଟୁପୁ ବରଷା, କୁତୁ କୁତୁ କେତେ କଥା, ଆଗାମୀ ଦିନର ସପନମାଳାର ଇନ୍ଦ୍ରଧନୁ...ସବୁ ଆଜି ଲବଣୀ ମନ ଗହୀରରେ ଲୀଳା ରଚିଲେଣି।

ଚାଉଁ ଚାଉଁ ଚକିତ ଭାବ। ଷୋହଳ ପୂରି ସତର ଚାଲିଲା। ଗଭା ବଡ଼ ହୋଇ ଆସିଲାଣି। ତନୁ ଭାର ଅସମ୍ଭାଳ। ଏତେ ଗୁରୁ ଭାରକୁ ମନ ଗରୁ

ନୁହେଁ। ବାଇଗବା ଗଛ କ୍ଷୀରଧରା ଫୋଟକା ଭଳି ଉପରକୁ ଉଠିଯାଉଛି। ନିର୍ମଳ ଆଉ ଉଶ୍ୱାସିଆ ସେ ମନ। ସପ୍ତରଙ୍ଗୀ ସୂର୍ଯ୍ୟ କିରଣ ସେଥିରେ ଥୋପ ଥୋପ ପଡୁଛି। କେଡ଼େ ସୁନ୍ଦର ସେ ମନ।

ବର୍ଷ ବର୍ଷ ହୋଇ ଭୂଇଁ ରଜୋବତୀ ହୋଇଛି। ବର୍ଷ ବର୍ଷ ଧରି ଓଦା ମାଟିରୁ ଗନ୍ଧ ବାହାରିଛି। ସେ ଗନ୍ଧ ଭିତରେ କେତେ ସପନ, କେତେ କାମନା, କେତେ ଅଭିଳାଷ, ନାରଙ୍ଗ ଗାଁ ଅଭିଆଡ଼ୀ ତରୁଣୀଙ୍କୁ ମତେଇ ଦେଇଛି। ଆରବର୍ଷ ଯେ କୁନ୍ଦିଲା ଭଳି ଦେହ ଧରି ମନର ମଣିଷ ସାଙ୍ଗେ ତରୀ ବାହି ଅକୂଳ ସାଗରରେ ଭାସିଗଲା, ଆଜି ତାର ଦେଖାନାହିଁ। ଆରବର୍ଷ ସେ ତୁଠ ପଥର ଉପରେ ଗୋଡ଼ ଘଷି, ଓଦା ପଣତରେ ମୀନ ଧରି ଚାକୁଳୁ ଚାକୁଳୁ କରି ଗାଲଭରା ପାଣି ଉପରକୁ ଛାଟି ଦେଇଥିଲା, ଆଜି ଏ ବର୍ଷ ସେ ମାଟିରେ ମିଶିଗଲାଣି। ନାରଙ୍ଗ ଗାଁ ପଡ଼ିରହିଛି। ଗାଁ ପାଖ ପାଟବତୀ ଛୋଟ ନଈଟି ବହି ଚାଲିଛି। ସେଇ ଯେଉଁ ତୁଠ-ପଥରଟା ସେଠି ଆଉ ଜଣେ କିଏ ରୂପଧନୀ ଗୋଡ଼ ଘଷି ସଫା ହେଉଛି।

ପାଟବତୀ ଏଇ ସଫାସୁତୁରା ଝିଅଙ୍କୁ ନିର୍ମଳ ଜଳ ଦେଇ ଆହୁରି ସଫା କରୁଥିଲା।

ସାବ ଅପା ଡାକ ଛାଡ଼ିଲା—ଲବଣୀ ଲୋ, ନିଦ ଭାଙ୍ଗୁନାହିଁ କି ?

ଏଇ ସାବ ଅପା। ସାବ ଅପା ଭଳି ରଙ୍ଗଦୋଳିରେ କେହି ଏମିତି ଝୁଲୁ ନ ଥିଲେ। ଗୋଟାଏ ଠେଲାରେ ଆମ୍ବ ଗଛ ଉପରକୁ ଉଠିଯାନ୍ତି-ନେଲିଆ ଆମ୍ବପତର ଗହଳି। କୋଇଲି ଚକିତରେ ସ୍ୱନ ତୋଳେ...କୁଉ...କୁଉ...କୁଉ। ସାବ ଅପା ଆକାଶ ନୀଳକୁ ଭେଦ କରିବା ବେଳେ ଖଡେଇ ହୋଇ କହନ୍ତି - କୁଉ... କୁଉ.... କୁଉ !

ଦୁଇ 'କୁଉ' ମିଶିଯାଏ, ଯିମିତି ମିଶିଯାଏ ନେଳୀ ଆମ୍ବପତର ସାଙ୍ଗେ ନୀଳ ଅଙ୍କୁରିତ ରଜଭୂଇଁର ଶ୍ୟାମ ଶୋଭା। ସେ ଶବ୍ଦ...ଏ ବର୍ଣ୍ଣ।

ଖସିଆସିବାବେଳେ ସାବ ଅପା କିରି କିରି ହସି ମେଘ ମେଦୁର ଆକାଶ ବକ୍ଷ ଉପର ବଳାକା ଭଳି ଖସି ଆସି ଧରାଛୁଅଁନ୍ତି। ପେଣ୍ଡା ଉପରୁ ଲୁଗା ଉଠିଯାଏ। ଛାତି ବସ୍ତ୍ର ଧରେ ନାହିଁ। ପବନ ସୁଅରେ କାଳିନ୍ଦୀ-କଳା କେଶ ଚାରିଆଡ଼େ ଝୁରୁ ଝୁରୁ ଖସିପଡ଼େ।

ଲବଣୀ ତଳେ ଠିଆ ହୋଇ ପାଟିକରେ—ଏ...ଏ...

ସାବ ଅପା ଶ୍ୱାସ ଉଠାଇ ଦାନ୍ତରେ ପଣତ ଚିପି କହନ୍ତି—କଅଣ ଏ ? ଏଠି କିଏ ଅଛି କି ?

ସତେ, ସେଠି କେହିନଥାନ୍ତି। ବନଭୂମି ନିଥର। ଚାରିଆଡ଼େ ନିସ୍ତବ୍ଧ ଆମ୍ବବୃକ୍ଷର ନୀଳ ରେଖା। ତଳେ ଅଜସ୍ର ଦୁର୍ବାଙ୍କୁର। ସାବର ଅଳତାଲେଖା ପାଦ ଦୁଇଟି ଶୂନ୍ୟରେ ଛାଟି ହୋଇଯାଇଥାଏ। ଟୁପ୍‌ଟୁପ୍ ବର୍ଷଣ ଆକାଶ ଭିତରକୁ ସାବର ଅଲକ୍ତଅ ପାଦ, ମୁହଁଟି ଉପରେ ଚନ୍ଦନ ଚର୍ଚ୍ଚା, ଅଣ୍ଟା ଉପରେ ପଣତବନ୍ଧର ଆଭା, ଘନକୃଷ୍ଣ ଭ୍ରୂରେ ଆଗାମୀ ଜୀବନର କାମନା-ନୃତ୍ୟ! ଲବଣୀ ଥରିଯାଏ। ସେ ପୁରୁଷ ହୋଇଥାନ୍ତା କି ?

ନାରଙ୍ଗ ଗାଆଁର ରଜ ଚାରିଦିନରେ ଛନଛନିଆ ଟୋକାଗୁଡ଼ାକଙ୍କର ରକ୍ତ ତାତିଯାଏ। ଯାହା ପାଖକୁ ଶତ ଚେଷ୍ଟା ଓ ସହସ୍ର କୌଶଳରେ ପଶି ପାରୁ ନ ଥିଲେ ସିଏ ଆଜ ଫାନ୍ ଧରି ହାତ ବଢ଼େଇଦେଇଛି। ଖାଲି ବଢ଼େଇ ଦେଇ ନାହିଁ,

ଅଙ୍ଗୁଳି ଅଙ୍ଗୁଳିକୁ ଛନ୍ଦିଛି, ଆଖି ତଳକୁ ନଇଁଛି, ଓଠ ଥରିଯାଇଛି।

ବୋଉ ଡାକ ଦିଅନ୍ତି—ଚମ୍ପା, ରଞ୍ଜୁ ଭାଇକୁ ପାନ ଦେଲୁ? ତାକୁ କହ ସଞ୍ଜବେଳକୁ ଆସିବ। ପୋଡ଼ପିଠା ଖାଇବ।

ଚଟ୍‌କିନା ଚମ୍ପା ବୁଲିପଡ଼େ। ହଳଦି ଗରଗର, କଜଳ ସାଲୁବାଲୁ, ସୁରସ ପାନରସ ବିମ୍ବିତ ମୁହଁଟି ଘୂରିଯାଏ। ନିଃଶ୍ୱାସରୁ ଶବ୍ଦ ବାହାରେ ଫୁସ୍ ଫୁସ୍ ଧ୍ୱନି କରେ...ଆସିବ, ନିଶ୍ଚେ ଆସିବ, ନିଛାଟିଆ ପୋଖରୀ କୂଳ। ସେଇଠି ବସିବା...କଥାଭାଷା ହେବା।

ମାଟ୍ରିକ୍ ପାଶ ରଞ୍ଜୁଭାଇ ମାଟି ଉପରକୁ ଥରେ ଚାହିଁଦେଇ ବୁଲିପଡ଼ନ୍ତି। ପାଞ୍ଚମାଇଲ ଦୂର ଆୟୁର୍ବେଦ ହାସ୍‌ପାତାଳରେ ସେ କମ୍ପାଉଣ୍ଡରୀ କାମ କରନ୍ତି। ଅର୍କ, କ୍ୱାଥ, ତୈଳ ତିଆରି କରିବାବେଳେ ଚମ୍ପାର ମୁହଁଟି ଭାସିଉଠେ। ସେ ମୁହୂର୍ତ୍ତେ ସ୍ଥିର ରହିଯାଆନ୍ତି। କେଉଁ ଚେର ସଙ୍ଗେ କେଉଁ ଚେର ଗୁଣ୍ଡ ହୋଇ ମିଶିବ ଭୁଲିଯାଆନ୍ତି।

ଆସେଂବ୍ଲି ଏମ୍.ଏଲ୍.ଏ. ଏହି ରଜ ଚାରିଦିନ ନିଜ ରାଜ୍ୟରେ ବୁଲି ବାହାରନ୍ତି। ଅବିବାହିତ ଲୋକ-ପ୍ରତିନିଧି। ହାତରେ ଖଦଡ଼ ମୁଣି, ପକେଟରେ ଚାରମିନାର ସିଗାରେଟ୍ ପ୍ୟାକେଟ୍, ମୁଣ୍ଡ ଉପରେ ରାଜ୍ୟର ଭଲମନ୍ଦର ବୋଝ, ଓଠରେ ସରୁ ହସର ଲହର, କାହା କଥା ଶୁଣିବାବେଳେ ଅମନୋଯୋଗ ସହିତ ସବୁ କରିଦେଇ ପାରିବା ଭଳି ଚକ୍ଷୁ ତରଙ୍ଗର ନିଶ୍ଚିତ ନର୍ତ୍ତନ।

ସେ ସମସ୍ତଙ୍କର ଭାଇ। 'ଏମେଲି ଭାଇ ବୋଲି ତାଙ୍କର ନାଁଟା ସଂକ୍ଷିପ୍ତସାର ହୋଇ ନାରଙ୍ଗ ଗାଁର ବାଟହାଟରେ ଶୁଣାଯାଏ। ଏମେଲି ଭାରି ବହୁମାନ୍ୟ ପାଆନ୍ତି। ଆସନରେ ବସନ୍ତି। ପାଣି ଢାଳକରେ ଗୋଡ଼ ଧୁଅନ୍ତି। ଦିଆସିଲି ମାଗିଆଣି ଭୁଲରେ ଫେରାଇ ପାରନ୍ତି ନାହିଁ।

ଏହି ସମ୍ମାନିତ ବ୍ୟକ୍ତିଙ୍କର ନଖଦର୍ପଣରେ ରହିଛି କେଉଁଠି ନଈ ଉପରେ ପୋଲ ହେବା, କେଉଁ ଗଡ଼ିଆରେ ମାଛ ଜାଆଁଳ କେତେ ପଡ଼ିଛି, କେଉଁ ଟ୍ରକ୍‌ରେ କେତେ ଧାନ ଗଲା, କେଉଁ ଦୋସାମିଲ ଜମି ଉପରେ କେତେ ଦଫା ମକଦ୍ଦମା ହୋଇଛି।

ଏମେଲି ଭାଇ ଆଜି ନାରଙ୍ଗ ଗାଁର ରଜକୁମାରୀପରିବୃତ୍ତ ହୋଇ ଧୂମପାନ କରି ବସିଛନ୍ତି। ଖଣ୍ଡିଏ ପୁରୁଣା ଖବରକାଗଜ ଧରି ସେ ଦେଖାଇଲେ ଯେ ତାଙ୍କ ବକ୍ତୃତା ସେଠି ଛପା ହୋଇଛି। ବକ୍ତୃତାର ବିଷୟ 'ବିବାହ ଓ ଜନ୍ମନିୟନ୍ତ୍ରଣ'। ଏମେଲି ଭାଇ ଏ ବିଷୟରେ କମିଟିର ମେମ୍ବର ଓ ବିଶେଷଜ୍ଞ।

ସୁବାସୀ ଝିଅଟି ପ୍ରଗତିଶୀଳା। ଅନେକ ଉପନ୍ୟାସ ପଢ଼ିଛି। ଅନେକ ଖବର ରଖେ। ଖର ଖର ବଚନ। ଟୋକାମାନଙ୍କୁ ହରକତ କରି ତାଙ୍କ ମୁହଁ ଉପରେ ସେମାନଙ୍କର ଅପୌରୁଷ ଛଡ଼ା ଆଉ କିଛି ନାହିଁ ବୋଲି ଖୁଣିଦିଏ।

ସୁବାସୀ କହିଲା—ଏମେଲି ଭାଇ, ତମେ କାଇଁକି ବାହା ହଉନ, ଆଉ ବାହା ନ ହୋଇ ଜନ୍ମନିୟନ୍ତ୍ରଣ କଥା ଅନ୍ୟକୁ କିମିତି ବୁଝଉଚ?

ସମସ୍ତେ ଖିଲି ଖିଲି ହସିଉଠିଲେ। ଏମେଲି ଭାଇ ରୁକ୍ଷ ଗଳାରେ କହିଲେ—ବାହା ନ ହୋଇ କଅଣ ଜନ୍ମ...

ସୁବାସୀ କଥାଟାକୁ ଛଡ଼ାଇ ନେଇ ଶାଣ ଦେଇ କହିଲା—ଆଉ ନୁହେଁ କଅଣ? ବାହା ନ ହୋଇ ଜନ୍ମ କରୁ ନାହାନ୍ତି ବା କରଉ ନାହାନ୍ତି?

ସମସ୍ତେ ପୁଣି ଠୋ ଠୋ ହସି ଉଠିଲେ। ଆରତି ବାହାରିପଡ଼ି କହିଲା—ଏମେଲି ଭାଇ, ତମେ କୁଆଡ଼େ ଜଣେ ମାଷ୍ଟରାଣୀଙ୍କୁ ବାହା ହେବ—ତା ବୟସ ଚାଳିଶ ପାଖାପାଖି ?

ସୁବାସୀ କଟାକ୍ଷ ଢାଳି କହିଲା—ଯାଙ୍କ ବୟସ ଆଉ କେତେ କି—ପଇଁଚାଳିଶ ପରା ? ଦେଖୁନ, ଆଖି ତଳେ କିମିତି କଳା ଦାଗ ! ଆଲୋ ବୟସ ଖସିଲାଣି ଲୋ ବୟସ ଖସିଲାଣି।

ଏଇ ପଦକ କଥା, ହରେ କୃଷ୍ଣ ହରେ ରାମ ନିତାଇ ଗୌର ରାଧେ ଶ୍ୟାମ, ଭଳି କୀର୍ତ୍ତନିଆଙ୍କ ପାଟିରୁ ଝରିଲା—ଆଲୋ ବୟସ ଖସିଲାଣି ଲୋ ବୟସ ଖସିଲାଣି।

ଗୀତର ଲହରୀ ତାଳେ ତାଳେ ପୂରିଲା ବୟସର ରଜୋବତୀମାନଙ୍କର ଆନନ୍ଦ ଉଜ୍ଜ୍ୱଳ ମୁହଁ ଦେଖି ଏମେଲି ଭାଇ 'ଥ' ହୋଇ ରହିଗଲେ। ଏମାନେ, ଏଇ ତରୁଣୀମାନେ ଭରା ନଈର ଜଳପ୍ଳାବନ—ଆଉ ସେ ଶୁଷ୍କ କାଷ୍ଠର ଅଗ୍ରେ ତିଷ୍ଠିଥିବା ଖୁଣ୍ଟା ମାତ୍ର।

ସତେ ଚାହୁଁ ଚାହୁଁ ବୟସ ଖସିଗଲା। ମନର ହରିଣୀ ମିଳିବ ବୋଲି କେହି ଏମେଲି ଭାଇଙ୍କୁ ମନ ଦେଲେ ନାହିଁ। ସେ ବୈଷ୍ଣବ ପାଲଟିଲେ; ରାଜନୀତିଜ୍ଞ ହେଲେ। ହୁଏତ ଯା ପରେ ଟ୍ରକ୍ ଚଲେଇବେ ବା ଶେଷରେ ରୁଗ୍ଣ ମନ ଆଉ ରୁଗ୍ଣ ଦେହ ଧରି ଆଶ୍ରମ ରଚିବେ।

କ୍ଷଣକପାଇଁ ନିସ୍ତେଜ ଭାବକୁ ଘଉଡ଼ାଇ ଦେଇ ଏମେଲି ଭାଇ କହିଲେ—ନାଃ ଆଉ ଅପେକ୍ଷା କରିବି ନାହିଁ। ତମ ଭିତରୁ ଜଣକୁ ଛଞ୍ଚାଣ ଭଳି ଛୁ କରି ଉଡ଼େଇ ନେବି-ଅବଶ୍ୟ ଟିକିଏ ବେଶୀ ବୟସୀ ଦେଖି।

ସୁବାସୀ କହିଲା—ଆହା ହା, ଛୁ କରି ଉଡ଼େଇ ନେବେ କାହିଁକି ? ମତେ ତ ଚୁ ଚୁ କରି ଡାକିଲେ ପୋଷା ମିଉଁ ଭଳି ମୁଁ ତମ ଖଦଡ଼ ଜାମା ତଳେ ଲୁଚି ଗୁମୁରି ଉଠିବି। ମତେ ଡାକୁନ ?

ଏମେଲି ଭାଇ ଏଇ ଝିଅଟିକୁ ବେଶୀ ପସନ୍ଦ କରନ୍ତି। ଜଣେ ଏମ. ଏଲ. ଏ. ର ସ୍ତ୍ରୀ ହେବାପାଇଁ ଏ ଖୁବ୍ ଉପଯୁକ୍ତା। କଥା କହିପାରେ, ଯୁକ୍ତି ବାଢ଼ିପାରେ, ତା ଛଡ଼ା ବହିପତ୍ର ପଢୁଛି। ରସାଳ କଥା କହେ। ମାତ୍ର ଏମ୍. ଏଲ. ଏ. ପୋଷ୍ଟ ତ ପରମାନେଣ୍ଟ ନୁହଁ। ସେତକ ଗଲେ ପୁଣି ସେହି ଚାଷବାସ, ପୁଣି ସେହି ଧନ୍ଦା, ପୁଣି ସେହି ଦରିଦ୍ର ଜୀବନ। ସେତେବେଳେ ସୁବାସୀ ଯଦି ମୁହଁ ଫେରାଇ ଦିଏ ? ଯେ ଉପନ୍ୟାସର ସ୍ୱାଦ ଜାଣେ, ବହି ପଢ଼ି ନାରୀର ତୃଷ୍ଣା ବିଷୟରେ ଗୋଟାଏ ଧାରଣା କରିଛି, ସେଇ ତୃଷ୍ଣାତକ ଯଦି ସୁବାସୀର ଅପୂର୍ଣ୍ଣ ରହିଯାଏ— ତେବେ ?

ବୋଉ ଡାକଛାଡ଼ିଲା—ସୁବାସୀ, ପଟୁଭାଇ ସାଙ୍ଗରେ ଗୁଡ଼ାଏ ନଗଉଚ କି ତାକୁ ପିଠା ଖାଇବାକୁ ଦେଉଚୁ ? ହଇଲୋ, ସେ ଦେଶ କାମ କରୁଛି—ତାକୁ ମାନ୍ୟ କରି ଚଳିବୁ ନାଁ ମୁହଁ ଉପରେ ଏମିତି କହିବୁ ? ହଇଲୋ ଆରତୀ, ତୁ ବି ଆଜିକାଲି ଲାଜ ସରମ ପୋଡ଼ି ଖାଇଲୁଣି। ପଟୁଭାଇକୁ ଖାଇବାକୁ ଦେ। ହଁ, ପଚାରିଲୁ ସୁବାସୀ, ରାଜୁଆଟାର ଚାକିରି କଅଣ ଠିକ୍ କଲେ ? ଗାଁ ଯାକ ଆମେ ଅନେଇଁ ବସିଛୁ ଆମକୁ କିଛି ଦବ। ଗାଁର ହାନିଲାଭ ତାଆରି ହାତରେ। ହଇଲୋ ସୁବାସୀ—ଏ ଗାଁ ରାସ୍ତାଟା—ବର୍ଷା

ଦିନ ତ ଆସିଲା–ବାଟ ମାଟି କାଦୁଅରେ ଭରି ଉଠିବ। ପତୁ ପରା କଅଣ ପକ୍‌କା ରାସ୍ତା କରିବ ବୋଲି କୁହୁଥିଲା ? କାଇଁ ? କେବେ ହେବ ?

କାଇଁ–କେବେ ହେବ– ଏଇ କଥାଗୁଡ଼ାକୁ ସବୁ ଏମେଲି ଭାଇ ଡରନ୍ତି। ଅଥଚ ମାଉସୀ ଆଜି ରଜପର୍ବରେ 'କାଇଁ...କେବେ ହେବ' କଥାଗୁଡ଼ାକ ପକାଇ ସବୁ ମାଟି କରି ଦେଉଛନ୍ତି। ପତୁବାବୁ ରସଭଙ୍ଗ ହେବା ଦାରୁଣ ଦୁଃଖକୁ ହୃଦୟରେ ଧରି ସୁବାସୀ ସହିତ ଜାତକ ମିଳେଇଲେ କିମିତି ହେବ ଭାବନାରେ ଦିଗଦିଗନ୍ତ ଜ୍ୟୋତି ଦେଖିଲେ।

ଏଇଠି ଅଛି– ଏଇଠି ନାହିଁ ଭଳି କଥାଟା ସେୟା। ବର୍ଷ ବର୍ଷ ଧରି ସେ ସୁବାସୀକୁ ଦେଖି ଆସିଛନ୍ତି। ତା ଦେହର ନିଟୋଳ ଯୌବନଶ୍ରୀ ଆଡ଼େ ଅନାଇଁଛନ୍ତି–ସ୍ୱପ୍ନ ଦେଖିଛନ୍ତି। କିନ୍ତୁ କଞ୍ଚାବୟସୀ ଏଇ ଝିଅ ସହିତ ତାଙ୍କ ଭଳି ପ୍ରୌଢ଼ର ଶୁଭ ପରିଣୟ।

କାହିଁକି ସେ ଏମିତି ବସିରହିଲେ ? କାହିଁକି କାହା ପାଖକୁ ହାତ ନ ବଢ଼ାଇଲେ ? ବୋଧହୁଏ ହାତ ବଢ଼ାଇଛନ୍ତି। ସେ ହାତ ଅଗ୍ରହଣୀୟ ହୋଇ ରହିଯାଇଛି।

ମନଟା ବେଦନାର୍ତ୍ତ ହୋଇଗଲା। ଶତମାର୍ଗ ଆନ୍ଦୋଳନ, ଭୂଦାନ, ଜୀବନଦାନ ସବୁ ଆନ୍ଦୋଳନ ଓ ସ୍ପନ୍ଦନ ଭିତରେ ନାରୀ-ହୃଦୟ-ମାର୍ଗ ଉପରେ ପାଦ ପକେଇ ଚାଲିଯିବା ସମସ୍ତଙ୍କର ସୌଭାଗ୍ୟ ନ ଥାଏ।

ଝୁପୁଝୁପୁ ବର୍ଷା। ଦୂର ଗ୍ରାମ ସୀମାନ୍ତ ଆଡୁ ଦୋଳିଗୀତ, ପୋଖରୀ ହୁଡ଼ା ଉପରେ ଦଉଡ଼ା ଦଉଡ଼ି ଛନ୍ଦ ଭାସି ଆସୁଛି ନାରଙ୍ଗ ଗାଁ ଭୂଇଁ ଉପରେ।

ଏତେ ଆନନ୍ଦ ଭିତରେ ଅହ୍ୟ ଡେଙ୍ଗୁରା ବାଜି ଉଠିଲା। ଦିନ ଦିପହର ଶିଆଳ ଭୁକିଲା।

ନେତବୁଢ଼ୀ ଆଗେଇ ଆସିଲା ବାଡ଼ି ଠୁକୁ ଠୁକୁ କରି।

ସୌଦାମିନୀ ଶୁଣି ସାରିଛି। କନକ ବି ଶୁଣି ନେଇଛି। ରାମ ନାମ ସତ୍ୟ...ରାମ ନାମ ସତ୍ୟ।

ଶ୍ମଶାନକୁ ଚାଲିଲା କୋକେଇ। ପଦ୍ମା ଆଜି ଚାଲିଗଲା। ନେତବୁଢ଼ୀ କହିଲା–ଆଲୋ, ମାଇପିଟା କେତେ ସହିବ ? ମରଦଟା ରାଉରକେଲା ଯାଇଚି ତ ଫେରିବାର ନାଁ ନାଇଁ। ଚିଠିଗଲା ଯେ ବେଉରା ନାଇଁ। ଅଖିଆ ଅପିଆ କୋଳର ଛୁଆଟାକୁ ଚାହିଁ ଚାହିଁ ପଦ୍ମା ଚାଲିଗଲା। ଗୋଟିଏ ସାହାନ୍ତାଳୀକୁ ଧରି ଘର କରି ରହିଲା; ପଦ୍ମାକୁ ପଚାରିଲା ନାହିଁ। ମରିଯାଇଚି ତରିଯାଇଚି।

ସପନବିଭୋରା ତରୁଣୀଙ୍କ ମନମନ୍ଦିରରେ ଚିତାଗ୍ନି ଝଲସି ଗଲା। ତେବେ ଏମିତି ହୁଏ ? ପୁରୁଷ ଅନ୍ୟ ନାରୀ ଧରି ସ୍ତ୍ରୀକୁ ଭୁଲିଯାଏ। ଲୁହାର ସହର, ସୁନାର ସହର, ବିଜୁଳି ସହର–ସେଇଠି ପୁରୁଷ ମେଣ୍ଢା ହୋଇଯାଆନ୍ତି।

ଏତେ ଅଳତା ଏତେ ସିନ୍ଦୂର, ଏତେ କଜ୍ଜଳ ସବୁ କଅଣ ବୃଥା ? ଦୋଳି ଉପରେ ଝିଅ ଖସିପଡୁଛି। ସାହା ଭରସା କେହି ନାହିଁ। ପଦ୍ମା ଆଜି ମାଟିରେ ମିଶିଗଲା। ଜୀବନ ଓ ମୃତ୍ୟୁ ଏତେ ପାଖାପାଖି ! ସ୍ୱପ୍ନ ଓ ଆଶାଭଙ୍ଗ ଏତେ ପାଖାପାଖି !

"ଆଲୋ ଶୁଣୁଚୁ, ରାଉରକେଲା ସହରରେ ମାଇପିଗୁଡ଼ାକ ଭେଳା ଭେଳା। କେଉଁ ଛଟକରେ ମରଦଗୁଡ଼ାକୁ କାବୁ କରିଦିଅନ୍ତି ଯେ ଅଣାୟତ୍ତ ହୋଇଯାଆନ୍ତି। ଆହା ବିଚାରୀ ପଦ୍ମା, ଆମରି ସାଥିରେ ଦି ବର୍ଷ ତଳେ ରଜ ପାଳିଥିଲା। ଦୋଳିରେ

ଆକାଶକୁ ଉଠିଥିଲା – ଆଜି ନାହିଁ?" ରାଧା ଏତିକି କହି ଗୁମ୍‌ମାରି ବସିରହିଲା।

ସାଙ୍ଗେ ସାଙ୍ଗେ ଦମ୍‌କାଏ ପବନ ଭାସି ଆସିଲା। ଉଚ୍ଛ୍ୱସିତ ଆନନ୍ଦ ଓ ପ୍ରେମର ପବନ। ଆଶା ଓ ଆକଙ୍‌କ୍ଷାର ବାୟୁପ୍ରବାହ।

ନାରଙ୍ଗ ଗାଁର ଦଳେ ସ୍କୁଲ ଝିଅ ନଇ ମଝିର ଭାସନ୍ତା ଫୁଲତୋଡ଼ା ଭଳି କହି ଆସିଲେ– "ଉଠଲୋ, ରଜଗୀତ ଗାଇ ନାଚିବା। ସାଆନ୍ତଙ୍କ ଘର ପିଣ୍ଡା ଉପରେ ସିନ୍ ଦିଆହୋଇଛି। ନଟୁ ଭାଇ କେତେବେଳୁ ପ୍ରୋଗ୍ରାମ୍ ତିଆରିକରି ଛିଡ଼ା ହୋଇଛନ୍ତି। ଆସ ଗୋ, ମୋ ପାର୍ଟ ମୁଁ ମୁଖସ୍ଥ କରିଛି। କନକ-ହରିଣୀ ଡ୍ରାମା ହେବ।"

ପଦ୍ମାର ମୃତ୍ୟୁଶୋକ ଅଳ୍ପକ୍ଷଣ ଭିତରେ ବିସ୍ମୃତ ହୋଇଗଲା। କାହିଁ କେଉଁଠି ଗୋଟାଏ ଆଦିବାସୀ ଝିଅ ଗୋଟାଏ ଶ୍ରମିକକୁ ମୁଗ୍‌ଧ କରି ନେଇଯାଇଛି। ସେଥିପାଇଁ ସବୁ ପୁରୁଷ କଅଣ ଏକାଭଳି କି?

ସଞ୍ଜବତିର ଶିଖାଏ ଶିଖାଏ 'କନକ ହରିଣୀ' ନାଟିକା ଅଭିନୀତ ହେଉଥିଲା। ହରିଣୀ ସୁନାର - ରାମର ବି ସୁବର୍ଣ୍ଣ – ସୀତା ସୁବର୍ଣ୍ଣ ସୁନ୍ଦରୀ।

ଏଇ ସୁନାର ସ୍ୱପ୍ନ ଦେଖି ଦେଖି ଶେଷ ଯାମ ଆଡ଼କୁ ନାରଙ୍ଗ ଗାଁର ତରୁଣୀ ଶୋଇପଡ଼ିଲେ। କାହାର ମୁକୁଳା କବରୀରେ ଚୁମ୍ବନ ଲାଗିଛି, କାହାର ଅଧରରେ ଆଙ୍ଗୁଳି ସ୍ପର୍ଶ ରହିଛି। ଜୀବନର ସହସ୍ର ରୂପାୟନରେ ଏଇତକ ବର୍ଣ୍ଣଶୋଭା, ଆଶାର ଏଇତକ ପ୍ରସାରିତ ଚାହିଁବା ଓ ପାଇବା ଜୀବନ ମଧୁର–ଜୀବନ ସୁନ୍ଦର!

ଲବଙ୍ଗ, ସାବଅପା, ସୁବାସୀ, ଆରତୀ, ଏମେଲି ଭାଇ ରଜ ଭୂଇଁର ଜର୍ଜରିତ ପ୍ରାଣୀର–ଏମିତି କେତେ କେତେ ହୃଦୟ – କେତେ ମନର ଆନନ୍ଦ ନିରାନନ୍ଦ ରୂପ ଓ ଶେଷରେ ପଦ୍ମାର ଆତ୍ମଶୁଦ୍ଧି–ସବୁ ଯେପରି ଏକ ମହାନ୍ ଜୀବନର ମହା ବିସ୍ମୃତି।

ଏଇ ବିସ୍ମୃତି ନମସ୍ୟ।

ଏଇ ଧ୍ୟାନଦୃଷ୍ଟ ପ୍ରଣାମ୍ୟ।



# ଅନେକ ଦୂରେ ଗ୍ରାମ୍ୟ ନଦୀର ତୀରେ

ଅନେକ ଦୂରେ ଗ୍ରାମ୍ୟ ନଦୀର ତୀରେ ସେଇ ଯେ ପ୍ରଦୀପର ଶେଷ ସଳିତାଟି ଜଳିଯାଇ ଚିରଦିନ ପାଇଁ ନିର୍ବାପିତ ହୋଇଗଲା, ଯାର ବାଷ୍ପସୁରଭି ଶରତର ଶ୍ୟାମଦୂର୍ବା ଶୀର୍ଷେ ଶୀର୍ଷେ ସଂଚରି ଉଡ଼ିବୁଲୁଥିଲା ଅତି ସଂଗୋପନେ, ସେଇ ପ୍ରଦୀପର ବହ୍ନିତଳେ ଦଗ୍ଧ ହୋଇଥିଲା ଗୋଟିଏ ସାଧାରଣ ଜୀବନର ଲୀଳାଖେଳା—ମାତ୍ର କେତୋଟି ବର୍ଷର ଆଗମନ ପ୍ରତ୍ୟାଗମନର କରୁଣ କାହାଣୀ।

ସେ ସନ୍ଧ୍ୟା ଥିଲା ଅତି ବାଂଛିତ, ଅତି ଆକାଂକ୍ଷିତ। ପଲ୍ଲୀର ଘନ ସବୁଜ ଶ୍ୟାମକ୍ଷେତ, ଦିଗନ୍ତବିସ୍ତାରୀ ଶରତର ଶ୍ୟାମଳିମା, ମନୋହର ସୂର୍ଯ୍ୟାସ୍ତର ସ୍ୱଚ୍ଛ ଭଙ୍ଗୀର ଐନ୍ଦ୍ରଜାଲିକ ଆବେଗ ତା ପ୍ରାଣରେ ତୋଳୁଥିଲା ତରଙ୍ଗ ପରେ ତରଙ୍ଗ। ଉଦ୍‌ବେଳିତ ହୃଦୟରେ ସେ ଚାହୁଁଥିଲା ଚାରିଆଡ଼େ। ଅସୀମ ପୁଲକ। ସେ ପୁଲକରେ ପୃଥିବୀ ସୁନ୍ଦର ଦିଶୁଥିଲା। ଜୀବନ, ତା'ର ନିଜର ଜୀବନ, କେତୋଟି ମାତ୍ର ବର୍ଷା ବସନ୍ତରେ ପରିପୂର୍ଣ୍ଣ ତାର ଜୀବନ। ନାଚି କୁଦି ବୁଲିବା ବୟସ ତାର। ଉଚ୍ଛନ୍ନ ଗିରିସ୍ରୋତ ନିର୍ବାଧାରେ ପ୍ରବାହିତ ହୋଇଯିବାର ସଂକଳ୍ପ। ବାଧା ବିଘ୍ନକୁ ସେ ଭୂକ୍ଷେପ କରିନାହିଁ। ଭିତରର ଐଶ୍ୱର୍ଯ୍ୟ, ବାହାରର ରଙ୍ଗ ବେରଙ୍ଗ ବର୍ଣ୍ଣସବୁ ଯେପରି ତାକୁ ଦେଖାଇଥିଲା ଅମରାବତୀର ସ୍ୱପ୍ନ। ସେ ଥିଲା କିଶୋରୀ, କଳିର ଅର୍ଦ୍ଧପ୍ରସ୍ଫୁଟ ଅରୁଣାୟିତ ଆଭା। ସେ ଥିଲା ସଇତାନ। କୁଳୁକୁଳୁ ସ୍ରୋତସ୍ୱିନୀରେ ଥିଲା ସେ ପ୍ରତି ସ୍ୱାକ୍ଷର। ଏତେ ମନମତାଣିଆ ପ୍ରବାହ ତାର? ଝରିଯାଉଥିଲା, କେଉଁଆଡ଼େ ଝରିଯାଉଥିଲା, ନାଚୁଥିଲା ବିଶ୍ୱର ସୌନ୍ଦର୍ଯ୍ୟ ଚୈତନ୍ୟ। ପ୍ରଖର ବିସ୍ମୃତିରେ ପ୍ରକଟିତ ହେଉଥିଲା ଯାହା କିଛି ସୁନ୍ଦର ଓ ଆବୃତ।

ଦିନେ ସେ ଧରାଦେଲା ଜଣକର ଚିତ୍ତପଥରେ। ବହୁ ନଗଣ୍ୟ ଭିତରେ ସେ ଜଣକ ଥିଲା ଅଧମତମ ନଗଣ୍ୟ। ଯଶ ନାହିଁ, ସମ୍ମାନ ନାହିଁ, ତାହାର କିଛି ନାହିଁ। ସେଇ ଯେ ଗ୍ରାମ୍ୟ ନଦୀ, ଯାର ତୀରେ ତୀରେ ଲୋଟିଯାଏ ଅଜସ୍ର ପୁଷ୍ପରେଣୁ, ଯାର ଜଳ ସ୍ପର୍ଶ କରି ଭାସୁଥାନ୍ତି ଅସଂଖ୍ୟ ବିହଙ୍ଗ, ଯାର ତୁଠ ପଥର ଉପରେ ଘଷି ମାଜି ନିର୍ମଳ ହୁଏ କେତେ କାହାର ପାଦ ଭୂଷଣ, ସେଇ ନଦୀ ତୀର ପଥ ଦେଇ ଦୟିତର ବଦନ ସୁଷମାକୁ ଅପାଙ୍ଗରେ ଚାହିଁ ଚାହିଁ ସେଦିନ ସେ ଚାଲିଥିଲା ଅସରନ୍ତି ପଥ। ବଳାର ବାଜେଣୀ ବାଜି ସ୍ୱନିତ ହେଉଥିଲା ବାଲିଚର ବେଣାପାଟ। ଗଭୀର ଚଉତାଳ ତୋଳୁଥିଲା ଆଷାଢ଼ର ନବ ମେଘମାଳା। ଥରେ ଥରେ ଚମକିପଡ଼ି ସେ ଆଉଜି ଆସୁଥିଲା ସହଯାତ୍ରୀ ପାଖକୁ।

ସେ ତ କେଉଁଦିନ କେଉଁ ଅତୀତର କର୍ପୂରବାସ! ସୁଗନ୍ଧ ଉଡ଼ିଯାଇଛି। ଛୋଟ ଗାଁର ଛୋଟ ଝିଅ—ବଡ଼ କୁଳର ସନମାନ ତାର ନଥିଲା। ଭାଗ୍ୟ ଦେଇଥିଲା ତାକୁ ଠିକ୍ ସମୟର ପରିପୂର୍ଣ୍ଣ ଯୌବନ, ମନ ଦେଇଥିଲା ଶୋହାଗଭରା ଅମୀୟ ପ୍ରୀତି।

ସେ ନଦୀ ଆଜି ବି ଜଳଭରା, ଆଜି ବି ବିହଙ୍ଗ-ମୁଖରା। ତାର ତୁଠ ପଥର ଆଜି ବି ଡାକିଆଣେ କେତେ ଅବଗୁଣ୍ଠନବତୀର ଚରଣ ଯୁଗଳକୁ। ଗ୍ରାମ୍ୟ ନଦୀପାଖେ ଅଶ୍ୱତ୍ଥ ଓ ପାଖେ ବିସ୍ତୃତ ଚକ୍ରବାଳସ୍ପର୍ଶୀ ପଡ଼ିଆ ଗୋହରୀ ଗୋଧନ ଖେଳିବୁଲେ। ସେଇ ଅଶ୍ୱତ୍ଥ ମୂଳେ ବସିଥାଏ ଗ୍ରାମର ଗୋପାଳ ବାଳକ। ଅନାଏଁ ଦୂର ପାଖ ସବୁଆଡ଼େ। ସେଇ ତାର ପାଟପଟନୀ, ସେଇ ତାର ଚମ୍ପା। ଶରତର ନୀଳ ଜ୍ୟୋତି ତଳେ ନୀଳିମ ହୋଇ ଉଠେ ତାର ଧେନୁପଲ।

ହଃ...ହଃ କରି ଦିଅର ସେ ହକାରେ। ବାଉଟିଆ ଲାଞ୍ଜ ଟିପି ଗୁମରି ଉଠେ। ନେତ ହମ୍ବା ଦିଏ। ମୟୂର ଦୂରରେ ରହି ଖୁରା ଘଷେ। ଆଶ୍ୱିନର ଖରା ଧୀରେ ନଇଁଆସେ। ହୁଡ଼ା ଉପରେ ଚକ୍ରଧାରୀ ଗୋଡ଼ ଥୋଇ ଡାକେ—କୌଶଲ୍ୟା, ଚାଲ ଯିବା।

ଏଇ କୌଶଲ୍ୟା ଚକ୍ରଧାରୀକୁ ତତାଏ। ଚକ୍ରଧାରୀ ସେଇ ଉତ୍ତାପକୁ ଫେରସ୍ତ ଦିଏ। ଗାଁର ନଈଟି ହସିଉଠେ, ବଣବୁଦାରୁ ଡାହୁକ ଡାକେ।

ଦୁହେଁ ଡକାଡ଼କି ହୋଇ ଚାଲିଯାନ୍ତି। ଧରିତ୍ରୀ ନିସ୍ତବ୍ଧ ହୁଏ। ଦିନ ବେଳର ହୁଡ଼ା ତଳ ଭେଟ ଭୋକ ମାରି ନ ଥାଏ। ସଞ୍ଜ ପହଡ଼ରେ ପୁଣି ଦେଖା—କୌଶଲ୍ୟା ଆଉ ଚକ୍ରଧାରୀ।

ଦିନ କେତୁଟାରେ ସେଇ ଗାଁକୁ କେନ୍ଦ୍ର କରି ଗଢ଼ାହେଲା ବ୍ଲକ୍ ଉନ୍ନୟନ। ନବ ପରିଣତ ଚକ୍ର ଓ କୌଶଲ୍ୟାଙ୍କୁ ଘଟଣାଟି ବେଶ୍ ଭଲ ଲାଗିଲା।

ସହରରୁ ଆସିଲେ ଅଦ୍ଭୁତ ଜୀବ। ବେଶ୍ ଟୋକାଟାକରା ସୁସ୍ଥ ଜୀବନଗୁଡ଼ିଏ। ଭୂଇଁକୁ ନ ଅନେଇଁ ସେମାନେ ଚାହିଁଲେ ସବୁଆଡ଼େ। ସଡ଼କ ତିଆରି, ପୋଖରୀ ଖୋଳା, ସଞ୍ଜବେଳେ ସଭା, ସଭା ଶେଷରେ ଆମୋଦ ପ୍ରମୋଦ।

ତାପରେ ଆସିଲା ମ୍ୟାଲେରିଆ ଇଉନିଟ୍। ଡାକ୍ତର, ମଟରଗାଡ଼ି, ବଡ଼ ବଡ଼ ମଶାଙ୍କ ରଙ୍ଗୀନ ଛବି—କିମିତି ମଣିଷ ଦେହରେ ମଶା କାମୁଡ଼ିଲେ ମ୍ୟାଲେରିଆ ରୋଗ ହୁଏ—ଏଇସବୁ ରୋଗ, ପ୍ରଚାର ଆଡ଼ମ୍ବର।

ଆସିଲେ ସମାଜ ସଂଗଠକ, ପ୍ରୌଢ଼-ଶିକ୍ଷା ଅଫିସର, କୃଷି କର୍ମଚାରୀ, ଗୋରୁଙ୍କର ଫାଟୁଆ ରୋଗର ବିଶେଷଜ୍ଞ। ଆସିଲା ପୋକ ମାରିବା ପାଇଁ ଗାମାକ୍ସିନ୍ ଔଷଧ। ଟିଣ ଟିଣ ଜମା ହେଲା ରୋଗୀ ପିଲାଙ୍କ ପାଇଁ ଆମେରିକାନ ଦୁଧ ଘିଅ। ସେମାନେ ଖାଇଲେ—ବାନ୍ତି କଲେ। ପୁଣି ଖାଇଲେ। ବାନ୍ତି କଲେ; ହଜମ ହେଲା ନାହିଁ।

ଚାରିଆଡ଼େ ଉନ୍ନତିର ସଂକେତ। ଘର କରିବାକୁ ଟଙ୍କା ମିଳିବ ବୋଲି ପ୍ରଚାର ହେଲା। ସମସ୍ତେ ଶୁଣିଲେ। କୌଶଲ୍ୟା ଶୁଣିଲା। ଚକ୍ର ଭାବିଲା, ଘରତୋଳା ଟଙ୍କା ଆଣି ମଣିଷ ରହିଲା ଭଳି ଖଣ୍ଡେ ଘର ସେ କରିବ। କୌଶଲ୍ୟା ନାଚିଗଲା—ତାର ଖଣ୍ଡେ ଘର ହେବ। ଫର୍ମ ଖଣ୍ଡେ ଦେଖି ପ୍ରଥମେ ଚକ୍ର କିଛି ବୁଝିପାରିଲା ନାହିଁ। ତା ବୁଝିବା ଦରକାର ନାହିଁ। ସବୁ ବୁଝେଇବା ପାଇଁ ପ୍ରତିନିଧି ଅଛନ୍ତି। ଶାଗୁଣା ଦୁର୍ଗନ୍ଧ ମାଂସ ଶୁଙ୍ଘିଲା ଭଳି ମୁଣିହସ୍ତେ ପ୍ରତିନିଧି ହଠାତ୍ ପହଞ୍ଚିଗଲେ। ସେ ଖୋଜିଲେ ପାରିଶ୍ରମିକ—ଦଶଅଣା ଛଅଣା। ନ ହେଲେ ଏତେ ବଡ଼ ଦେଶ କାମ ସେ କିପରି କରିବେ ? ଇଞ୍ଜିନିୟର ତାଙ୍କର ପାବାରରେ ଅଛି—ହାକିମକୁ ସେ ନଚାନ୍ତି ଉଠାନ୍ତି।

କାମ ହୋଇଯିବ। ତେବେ ଘର ତୋଳାକୁ ଚୁକ୍ତି ହେବ ନଅ ଅଣା ଛଅଣା। ସେ କିଛି ଫିକରରେ ମାରିନେବେ।

ଦିନେ ଚକ୍ର ହଳକାମ ସାରି ତୋରାଣି ପିଉ ପିଉ ଥରିଗଲା। ସେ ଥରା ଆଣିଲା ମ୍ୟାଲେରିଆ। ଇଉନିଟ୍‌ର ବାବୁ ଆସିଲେ। କୌଶଲ୍ୟା ଏତେଗୁଡ଼ାଏ ଲୋକଙ୍କୁ ଏକାଠି କେବେ ଦେଖିନଥିଲା। ଚକ୍ର ଦେହରୁ ରକ୍ତ ନିଆଗଲା। ରୀତିମତ ଗବେଷଣା ଚାଲିଲା। ଚକ୍ର ଔଷଧ ଖାଇଲା।

ସାନ୍ତ୍ୱନା ଦେବାକୁ ନିତି ସନ୍ଧ୍ୟାରେ ଆସନ୍ତି ଜଣେ ଯୁବକ ବାବୁ। ଔଷଧ ଦିଅନ୍ତି। ଆଉ ଜଣେ ଘର ତୋଳିବାକୁ ପରାମର୍ଶ ଦେବାକୁ ଆସନ୍ତି। ଗୋରୁର ଫାଟୁଆ ରୋଗ ଚିହ୍ନିବାକୁ ଆସିଲେ ଯୁବକ ପଶୁଡାକ୍ତର। ଧାନ ଗଛରେ ପୋକ ମାରିବାକୁ ଗାମାକ୍ସିନ୍ ଧରି ଆସନ୍ତି ଆଉ ଜଣେ ସୁଶ୍ରୀ ଯୁବକ।

ଏ ଏକପ୍ରକାର ଯୁବ ସମ୍ମେଳନ। କୌଶଲ୍ୟାର କୁଡ଼ିଆଟି ମହାତୀର୍ଥରେ ପରିଣତ ହେଲା। ବହୁ ଛନଛନ ଯୁବକଙ୍କର ପଦରଜ ପଡ଼ିଲା।

ବେଶି ଦିନ ଲାଗିଲା ନାହିଁ। ଏକ ନିର୍ଜ୍ଜନ ସନ୍ଧ୍ୟାରେ ମ୍ୟାଲେରିଆ ବାବୁ କୌଶଲ୍ୟାର ହାତକୁ ଛାତି ଉପରେ ରଖି ସଁ ସଁ ହୋଇ କହିଲେ, "ହେଇ ନେ ଦୁଇଟଙ୍କା–ମଙ୍ଗିଲୁ ତ? ଆଉରି ବେଶି ଦେବି।"

କୌଶଲ୍ୟା ଛାଟିପିଟିହେଇ ଖସି ଆସି ଚକ୍ରର ଛାତି ଉପରେ ଲୋଟିପଡ଼ି କହିଲା–"ତମେ ଭଲ ହୋଇଯିବ, ମନରେ ଦମ୍ଭ ଧର। ତମେ ବେହୋସ ହୁଅନାହିଁ। ତମେ ଭଲ ହୋଇଯିବ। ନଇଲେ ଏମାନେ...।" ଆଖିରୁ ବାରି ଝରାଇ କୌଶଲ୍ୟା ଦେବତାକୁ ହାତ ଯୋଡ଼ିଲା।

ଆଉ ଦିନେ–ଯୁବକ କୃଷି ଓଭରସିଅର କୌଶଲ୍ୟାକୁ ବଢ଼ନ୍ତା ଧାନଗଛ ପାଖେ ମିନତି ଜଣାଇଲେ, "ଏତେ ସୁନ୍ଦର ଦେହ! ହେଇଟି ତିନୋଟି ଟଙ୍କା–ଆଉରି ଦେବି। ଖୁବ୍ ସୁବିଧା ଏଠି କୌଶଲ୍ୟା।"

କୌଶଲ୍ୟା ଶୂନ୍ୟରେ ପହଁରି ଆସି ଛିଡ଼ା ହେଲା ଚକ୍ରର ମୃତ୍ୟୁ ପାଣ୍ଡୁର ମୁହଁ ପାଖେ– "ଶୁଣ, ତମେ ଉଠ। ସେମାନେ ମତେ ଧରିବାକୁ ଗୋଡ଼େଇଛନ୍ତି। ତମେ ଭଲ ହୁଅ। ମୁଁ ଆଉ କେତେ ଲଢ଼ିବି? ଶୁଣୁଛ? ଉଠ...ଉଠ...।"

ଦୁଇ ଦିନ ପରେ ପ୍ରତିନିଧି ଆସିଲେ। ମୁଣାରେ ହାତ ପୂରାଇ ବାସନା ତେଲ ବୋତଲ ବାହାର କରି କହିଲେ - "କୌଶଲ୍ୟା, ମୁଣ୍ଡ ଲୁଖୁରା କରି ପଡ଼ି ରହିଛୁ? ଟିକିଏ ଚକ୍‌ମକ୍ ହ। ଘର ନିଅଁ ପଡ଼ିଲା ଭଳି ମନେକର। ପ୍ଲାନ୍ ହୋଇଯାଇଛି। ପ୍ଲାନ୍ ଏଷ୍ଟିମେଟ ସବୁ ଠିକ୍। ନୂଆ ଘର ଭିତରେ ତୁ ରାଜରାଣୀ ହୋଇ ବସିବୁ। ମୁଁ ଥିବି ତୋ ପାଖେ ପାଖେ। ଚକରା ଆଉ କେତେ ଦିନ?"

"ନା, ନା, ଚକରା ଭଲ ହୋଇଯିବ, ତମେ ଯାଅ। ଯାଅ, ଘର–ଲୋଡ଼ା ନାହିଁ"– କହି କୌଶଲ୍ୟା ଛିଡ଼ା ହୋଇଗଲା ନିର୍ଜ୍ଜୀବ କଙ୍କାଳସାର ଚକ୍ରଧର ପାଖରେ– "ତମେ ତେବେ ଶୁଣିନାହଁ? ତମେ ଏମିତି ପଡ଼ିରହିବ? ମୁଁ ଏତେ ଦମ୍ଭ ଦେଲି, ଶୁଣିଲନାଇଁ? ଘରେ ଆଉ କାଣି କଉଡ଼ି ନାହିଁ। ତମେ ଉଠ। ପୁଣି ଆମେ ଯୁଝିବା–ମୁଁ ତମ ପଛେ ପଛେ ରହିଛି। ତମେ ଉଠ, ନହେଲେ ଏମାନେ...ହଁ ଏମାନେ ମତେ ଖାଇଯିବେ, ମୋର ସବୁ ଲୁଟି ନେଇଯିବେ। ତମେ ଉଠ..।"

ଅନେକ ଦୂରେ ଗ୍ରାମ୍ୟ ନଦୀର ତୀରେ ଏକ ବିଷଣ୍ଣ ସନ୍ଧ୍ୟାରେ ଜଳିଲା ଚକ୍ରଧରର ଚିତାଗ୍ନି...ସମାପ୍ତି ଉତ୍ସବ।

ସବୁ ଦେଶସେବୀ ଯୁବକଙ୍କର ମୁହଁରୁ ବାହାରିଲା–

'ଏଥର ?'

'ଏଥର ?'

'ଏଥର କୌଶଲ୍ୟା ?'

ଏଥର କୁଆଡ଼େ ଯିବ ?'

କୌଶଲ୍ୟାର କିଛି ଭୟ ନ ଥିଲା। ମତେ ମ୍ୟାଲେରିଆ ଜୀବାଣୁ ଯେଉଁଠି ସାଲୁବାଲୁ ଗହନ ମନ ତଳେ, ସେଇ ମନର ମାନବିକ ବାବୁମାନେ ପୁଣି ଆସିଛନ୍ତି ଅନ୍ୟର ରୋଗ କୀଟ ନିର୍ମୂଳ କରିବା ପାଇଁ ? କୌଶଲ୍ୟା ହସିଲା।

ଧୀରେ ଗ୍ରାମର ନଦୀଟି ଡାକିଲା–ଆ କୌଶଲ୍ୟା, ସେପଟେ ଅସ୍ତବର୍ଣ୍ଣର ସମାରୋହ ସଙ୍ଗେ ଚକ୍ରଧାରୀ ଚିତାରଙ୍ଗ ମିଶିଯିବା ପୂର୍ବରୁ ତୁ ମୋ ଶୀତଳ ବାରିଧାରାରେ ମିଶି ଯା। ଦୁଃଖର ଜୀବନ ତୋର ଅସ୍ତ ହୋଇଯାଉ।

ଫେରି ଚାହିଁଲା କୌଶଲ୍ୟା। ଦୂରେ ଗ୍ରାମ୍ୟ ନଦୀର ତୀର ଉପର ଆକାଶରେ ଫୁଟି ପଡୁଥିଲା ଗୋଟି ଗୋଟି ନକ୍ଷତ୍ର–ଜ୍ୟୋତି ଅଭିମାନୀ ନକ୍ଷତ୍ର–ସେ ଜ୍ୟୋତିକୁ ଦେଖି ଦେଖି ପାଦ ବଢ଼ାଇଲା ଅଭାଗିନୀ କୌଶଲ୍ୟା।



# ଶିଳ୍ପୀ ସଂଗ୍ରହ

ବହି ଦୋକାନରେ ମିଳୁଥିବା 'ପାଠ ସଂଗ୍ରହ' ଭଳି ଶିଳ୍ପୀ ସଂଗ୍ରହ ଖଣ୍ଡିଏ ବହି ନୁହେଁ। ଗାଆଣ, ବଜାଣ ଓ ନାଚରେ ମତୁଆଲା ହୋଇ ରହିଥିବା ବଡ଼ ବଡ଼ ଝିଅଙ୍କୁ ସଂଗ୍ରହ କରିବାକୁ ପଡ଼େ ଜୟନ୍ତବାବୁଙ୍କୁ। ଏଇଆ ତାଙ୍କର କାମ। ଏଇଥିରୁ ପେଟ ପୋଷିବାକୁ ତାଙ୍କୁ ଅର୍ଥ ମିଳେ।

ଦେଶରେ ସଂସ୍କୃତି ନାମରେ ନାଚ ଗାନ ବାଜଣାର ବେଶ୍ ଚଳଣି ଚାଲିଛି। ଜୟନ୍ତବାବୁ ସୁଶ୍ରୀ ଯୁବକ, ନାକଟି ଖଣ୍ଡାଧାର। କାନ ଉପରେ କଳା ମଚମଚ ବହଳା କେଶ ଝୁଲୁଥାଏ। ସମଗ୍ର ମୁହଁଟିରେ ଶିଳ୍ପୀଭାବ। ହସିଲେ, ବସିଲେ, କହିଲେ, ଠାଣିମାଣିରେ ଗୋଟାଏ ଶ୍ରୀ ଝରିପଡ଼େ।

ଜୟନ୍ତ ନୟାନ୍ତ ହୋଇଯାଆନ୍ତି। ଥରେ ଥରେ ସେ ଭାବନ୍ତି, ଚାକିରି ଛାଡ଼ିଦେବେ। ନୟାନ୍ତ ହେବାର କାରଣ–ଦର୍ଶକ ଶ୍ରୋତା ଆଉ ଛୋଟ ଝିଅଙ୍କୁ ଚାହୁଁନାହାନ୍ତି। ପାଦପ୍ରଦୀପ ପାଖରେ ଛୋଟ ଝିଅଗୁଡ଼ିକ ବଡ଼ ନିରୀହ ନିରାମିଷାଶୀ ଭଳି ଦେଖାଯାଆନ୍ତି।

ବକ୍ତୃତା ପରେ ଭୋଜି, ପରେ ନୃତ୍ୟଗୀତ, ସଭା ମଉଳିଲେ ଫୁଟିଉଠେ ଓଡ଼ିଶୀ ନାଚ–ଜଣେ, ଦୁଇଜଣ ଓ ଥରେ ଥରେ ତିନିଜଣଙ୍କର ଏକତ୍ର ତ୍ରିତାଳ ଭଙ୍ଗିମା।

ମୁଗ୍ଧ କରନ୍ତି ଏମାନେ। ନୀପ ମୂଳରେ ଶ୍ରୀକୃଷ୍ଣଙ୍କୁ ଛିଡ଼ା ନ କଲେ, କିମ୍ବା ଚନ୍ଦ୍ରାବତୀ କୁଞ୍ଜରେ ତାଙ୍କୁ ବିଜେକରି ପାଞ୍ଚଜଣ ସଖୀଙ୍କୁ ସେଠାରେ ଠାବ କରିବାକୁ ନ ଛାଡ଼ିଲେ ଆମ ଧର୍ମପ୍ରାଣ ଦର୍ଶକମାନେ ଥୟ ଧରନ୍ତି ନାହିଁ। ଧୋଇ ଶୁଖେଇ 'ମାନ-ଭଞ୍ଜନ', 'ଭଞ୍ଜନ-ମାନ', 'ଭଞ୍ଜ-ନମାନ ସେଇ ଏକା କଥାକୁ ଓ ଏକ ବେଲ୍‌କୁ ଟିକିଏ ଭିନ୍ନ ରୀତିରେ ଦେଖେଇ ବ୍ୟବସାୟୀ କଳାବିତ୍ ଡିଣ୍ଡିମ ପିଟନ୍ତି ସେମାନେ ଅସାଧ ସାଧନ କଲେ ବୋଲି। ମୁହଁ ଉପରେ ଭାବ ଖେଳୁନି। ଶ୍ରୀକୃଷ୍ଣଙ୍କର ଦୁଇଦିନ ପରେ ପରୀକ୍ଷା ଅଛି–ତର୍କ ଶାସ୍ତ୍ର ଭଲ ପଢ଼ା ହୋଇନାହିଁ ମନେପଡ଼ିଯାଉଛି। ପ୍ରେମ ଗଦ୍‌ଗଦ ଭାବ ପରିବର୍ତ୍ତେ ଆସୁଛି ଆଶଙ୍କା, ଖେଳିଯାଇଛି ସେଇ ଭଙ୍ଗୀ। ଜୟନ୍ତ ଦେଖନ୍ତି, ହସନ୍ତି। ଥରେ ନୁହେଁ ବହୁବାର ଦେଶର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏ ନୃତ୍ୟକଲ୍ଲୋଳିତ ହେଉଛି। ସେଇ କଳ ତାନରେ ସମସ୍ତେ ବିକଳ ହେଉଥିଲେ ବି ସବୁ ସହିଯାନ୍ତି।

ଆଦେଶ ଆସିଲା– ଜୟନ୍ତବାବୁଙ୍କୁ ଚାରିଦିନ ଭିତରେ ହାଇଡ୍ରୋଜେନ ବୋମା ତିଆରି କରିବାରେ ଲିପ୍ତ ଥିବା ବୈଜ୍ଞାନିକମାନଙ୍କର ସମ୍ମିଳନୀରେ ନାଚ ଗୀତର ଆସର ଜମାଇବାକୁ ହେବ। ଜୟନ୍ତବାବୁଙ୍କର ନଖ-ଦର୍ପଣରେ ଅଛି ଏଇ ଆୟୋଜନ ପଦ୍ଧତି।

ଦଉଡ଼ିଲେ ବାଉଁଶ ବିକ୍ରେତା ପାଖକୁ–ରଙ୍ଗମଞ୍ଚ ବନ୍ଧା ହେବ। ବାଉଁଶ, ଦଉଡ଼ି, କାଠପଟା, ଲୁହାକଣ୍ଟା, ସାଲୁକନା ଖୋଜି ଆଣୁ ଆଣୁ ମନେପଡ଼ିଲା–ଆରେ ଯାଃ–ଅସଲ ତ ଲାଇଟ୍‌ମ୍ୟାନକୁ ଅନୁରୋଧ କରାଯାଇନି।

ଜୟନ୍ତ ଦଉଡ଼ିଲେ ଫୋକ୍‌ସ କରିବାରେ ଅଭ୍ୟସ୍ତ ଓ ବିଶେଷଜ୍ଞ ଶ୍ରୀଗୋପାଳ ନିକଟକୁ। ଶ୍ରୀଗୋପାଳ ବିଶେଷଜ୍ଞ। ଓଡ଼ିଶାରେ ସେହିଭଳି ଲୋକ ଜଣେ ଅଛନ୍ତି—ଅଦ୍ୱିତୀୟ। ଏକା ଫୋକସ୍ ବାବୁ କାହିଁକି, ସବୁ କ୍ଷେତ୍ରରେ ଜଣେ ଜଣେ ବିଶେଷଜ୍ଞ ରହିଛନ୍ତି। ଦ୍ୱିତୀୟ ଜଣକ ଉଧେଇ ପାରନ୍ତି ନାହିଁ। ଶ୍ରୀଗୋପାଳ ସବୁଦିନେ ରହିଥିବେ—ରହିବା ଭଳି ସେ କାର୍ଯ୍ୟ କରୁଛନ୍ତି ମଧ୍ୟ। ଶିଳ୍ପୀମାନେ ବି କହିବେ, ସେ ନ ରହିଲେ ଆଲୋକପାତ ଭଲ ହୋଇପାରିବ ନାହିଁ। କେତେବେଳେ ଗ୍ରୀବା, କେତେବେଳେ କଟି, କେତେବେଳେ ନିତମ୍ବ ଉପରେ ଲୋହିତ, ପୀତ, ଶୁଭ୍ର ଆଲୋକ ପଡ଼ିବ ତାହା ଶ୍ରୀଗୋପାଳ ଜାଣନ୍ତି। ଏପିରିକି ତନ୍ଦ୍ରାଛନ୍ନ ଅବସ୍ଥାରେ ମଧ୍ୟ ତାଙ୍କ ହାତ ବିଭିନ୍ନ ସୁଇଚ୍‌କୁ ଚାଲିଯାଏ; କମନୀୟ ଆଲୋକଝରଣା ଝରିପଡ଼େ।

ଜୟନ୍ତ ଏମ୍.ଏ.ପାସ୍ କରିଛନ୍ତି ସଙ୍ଗୀତ ଶାସ୍ତ୍ର ଓ ନୃତ୍ୟ ବିଷୟରେ ସମଧିକ ଜ୍ଞାନ ଅର୍ଜନ କରିଛନ୍ତି। ସେ ଛିଡ଼ା ହୁଅନ୍ତି ପ୍ରସିଦ୍ଧ ସଙ୍ଗୀତଭବନର ଫାଟକ ପାଖରେ ଶିଳ୍ପୀସଂଗ୍ରହ ପାଇଁ। ଚାରିଦିନ ସମୟ ଭିତରେ ତାଙ୍କୁ ଦେଖାଇବାକୁହେବ ଓଡ଼ିଆ ସଂସ୍କୃତିର ବୈଶିଷ୍ଟ୍ୟ।

ପାଞ୍ଚ ମିନିଟ ଛିଡ଼ା ହେବା ପରେ ସେ ଦେଖିଲେ ତାଙ୍କ ଆଡ଼କୁ ଅନାଇଁ ପାଞ୍ଚଜଣ ଯୁବକ ନିର୍ଲ୍ଲଜଭାବରେ ହସୁଛନ୍ତି। ଜୟନ୍ତ ଭାବିଲେ, ତାଙ୍କ ବେଶଭୂଷାରେ ହୁଏତ କିଛି ଗୋଳମାଳ ଥିବ—ନହେଲେ ସୁସ୍ଥ ମସ୍ତିଷ୍କ, କଳାପ୍ରେମୀ, ଏତେଗୁଡ଼ିଏ ଯୁବକ ହସନ୍ତେ କାହିଁକି ? ସେ ନିଜ ଆଡ଼କୁ ଚାହିଁଲେ। ନାଁ ତ, ସବୁଦିନର ସାଧାରଣ ପୋଷାକ ସେ ପିନ୍ଧିଛନ୍ତି।

ସେଥିରୁ ତିନିଜଣ କାପ୍‌ସଟାନ୍ ଖୋଳ ଭିତରୁ ତିନିଖଣ୍ଡ ବିଡ଼ି ଭିଡ଼ିଆଣି ନିର୍ଲିପ୍ତ ଭାବରେ ନିଆଁଲଗାଇଲେ। ଆଉ ଦୁଇଜଣ ପ୍ରକୃତରେ ସିଗାରେଟ୍ ଖାଇଲେ ଓଡ଼ିଶୀ ଠାଣୀରେ।

ଚପା ଗଳାରେ ଜଣେ କହିଲେ—ଆଇୟେ !

ଆଉ ଜଣେ ସୁରସ ଉତ୍ତର ଦେଲେ – ହଁ, ବନ୍ଧୁ !

ଅପର ଜଣେ କହିଲେ – ମତଲବ ?

ଚତୁର୍ଥ ବିଡ଼ିଧାରୀ କହିଲେ—ସିଏ ପଠେଇଚି।

ପଞ୍ଚମ ହସିଲେ, କାଶିଲେ ଓ ଶବ୍ଦ କରି କହିଲେ—ଆସନ୍ତୁ, ଆସନ୍ତୁ, ଜୟନ୍ତବାବୁ! କଣ ଆଉ ଗୋଟାଏ ଆସର ? ନୃତ୍ୟ ଗୀତ ମେଳା ? ସବୁବେଳେ ମନେ ରଖିଥିବେ ଏକମାତ୍ର ସଙ୍ଗୀତ ଭବନ। ହୁଏତ ଆଉ ଦୁଇ ତିନିଟା ଏଇପରି ରହିଛି; କିନ୍ତୁ ସେମାନେ ଶିଳ୍ପୀଗୋଟାଇ ଆଣନ୍ତି। ଆମେ ତା କରୁନା। ଆମର ରେଜିଷ୍ଟରରେ ଗୋଟାଗୋଟି ମାମଲ୍‌ା ନାହିଁ। ଆସନ୍ତୁ, କଅଣ ଦରକାର ? କହନ୍ତୁ ବାଦ୍ୟ କେତେ ପର୍ସେଣ୍ଟ ? ସୋଲୋ ଗୀତ କେତେ ପର୍ସେଣ୍ଟ ? ଗ୍ରୁପ୍ ଡାନ୍‌ସ କେତେ ପର୍ସେଣ୍ଟ ? ଉତ୍ତେଜନା ଶତକରା କେତେ ? ସବୁ ଟୋଟାଲ କରିଦେଲେ ଆମେ ଯଥାରୀତି ଗୋଟାଏ ପ୍ରୋଗ୍ରାମ୍ ଦେଇଦେବୁ।

ଜୟନ୍ତ ଦେଖିଲେ ସଂସ୍କୃତିର ଶବକୁ ଏମାନେ କେବଳ ବହନ କରୁନାହାନ୍ତି, ତାକୁ ଦିନ ଦିନ ଧରି ପକେଇ ରଖି ତା ଉପରେ ଜୀବାଣୁ ସୃଷ୍ଟି କରୁଛନ୍ତି। ଶିଳ୍ପର ସାଧନା ମୂଳରେ ଯେ ଶାନ୍ତ ସ୍ନିଗ୍ଧ ଆଧ୍ୟାତ୍ମିକତାର ବିକାଶ ଥାଏ, ଗୁରୁଗମ୍ଭୀର ଆଦର୍ଶର ରୂପାୟନ ଥାଏ, ତାହା ଏମାନେ ପାଇବେ କେଉଁଠୁ ?

ମୂର୍ଖ ଦେଶବାସୀଙ୍କୁ ଧୂର୍ତ୍ତ ଜମ୍ବୁକଗୁଡ଼ାକ ବେଶ୍ ପ୍ରତାରଣା କରୁଛନ୍ତି। କିନ୍ତୁ ଏମାନଙ୍କୁ ନ ଧରିଲେ ତାଙ୍କର କାମ ହେବନାହିଁ।

ସେ ଆଗକୁ ଗଲେ। କାନରେ ପଡ଼ିଲା–କେବଳ ନିଟ୍ ପ୍ରଫିଟ୍ ହଜାରେ ମନେହେଉଛି। ଅକାଶରେ ପଡ଼ିଛି। ଏତିକିବେଳେ ଭିଡ଼ି ଆଣିଲେ ହେବ।

ଭବନ ଭିତରୁ ଭବାନୀ ଗତି କରି ଆସିଲେ। ସେ ଖେୟାଲ୍ ଗାଆନ୍ତି। ଗାନରେ ଖେୟାଲ୍, ନିଜେ ବି ଏକ ଖିଆଲୀ ଶିଳ୍ପୀ।

ଜୟନ୍ତ ତାଙ୍କୁ ଅନୁରୋଧ କଲେ– 'ଆପଣଙ୍କ ପ୍ରୋଗ୍ରାମ୍ ରହିଲା।'

ଭବାନୀ ହାଣ୍ଡବ୍ୟାଗ୍‌ଟିକୁ ଉର୍ଦ୍ଧ୍ୱକୁ ଉଠାଇ ତାକୁ ତଳକୁ ଆଣିବା ଭିତରେ କହିଲେ–

"ମୁଁ ତ ପ୍ରଫେସନାଲ୍ ହୋଇଗଲିଣି ଜୟନ୍ତବାବୁ। ବାପା ମାଆ ପ୍ରଥମେ ପ୍ରଥମେ ମନା କରୁଥିଲେ। ମୁଁ ଜିଦ୍ ଧରିଲି, ମୁଁ ପ୍ରଫେସନାଲ ହେବି ଏବଂ ହୋଇଛି; ଅର୍ଥାତ୍ ଗୋଟାଏ ପ୍ରୋଗ୍ରାମକୁ ସାତଶହ ଟଙ୍କା ଓଡ଼ିଶା ଭିତରେ; ଆଉ ଓଡ଼ିଶା ବାହାରେ ଦୁଇହଜାର। ଏଇଥିରୁ କଅଣ ବୁଝୁନାହାନ୍ତି ଜୟନ୍ତବାବୁ ମୁଁ କେତେ ବିଚାର କରି କଥା କହେ? କେବଳ ଓଡ଼ିଆଝିଅ ବୋଲି ମୁଁ ଏପରି ପାଟ୍ରିଅଟିକ୍ ହୋଇପାରିଛି।"

ଜୟନ୍ତ ପାଖରେ ଏତେ ଟଙ୍କା ଖର୍ଚ୍ଚ କରିବାର ବ୍ୟବସ୍ଥା ନାହିଁ। ସେ ପ୍ରାର୍ଥନା ସ୍ୱରରେ କହିଲେ–ଟିକିଏ ବିଚାର କରନ୍ତୁ–ଆଉ କମାନ୍ତୁ। ଯେଉଁ ଅନୁଷ୍ଠାନ ଆପଣଙ୍କୁ ଅର୍ଥ ସାହାଯ୍ୟ କର ଏତେ ବଡ଼ ସମ୍ମାନନୀୟ ଶିଳ୍ପୀ କଲା, ତାରି ଏକ ଆୟୋଜନରେ ଆପଣ ଜିଦ୍ ଧରିଲେ ହେବ?

ଭବାନୀ ହସିଉଠିଲେ। କହିଲେ–ଅର୍ଥ ଆଉ ଆର୍ଟର ସୁନ୍ଦର ସମନ୍ୱୟ ମୁଁ ରଖିଛି। ଅର୍ଥ ମୋର ଦରକାର। ଆପଣ ଆର୍ଟିଷ୍ଟ ଦେଖନ୍ତୁ।

ବିମୂଢ଼ ଜୟନ୍ତ ବୁଝିପାରିଲେ ସେ ଇତିମଧ୍ୟରେ ସର୍କସର ମସ୍ତବଡ଼ ରିଙ୍ଗ୍‌ମାଷ୍ଟର ହୋଇପାରିଛନ୍ତି। ଦ୍ୱାର ଦ୍ୱାର ବୁଲି ଶିଳ୍ପୀ ସଂଗ୍ରହ କରି ସେମାନଙ୍କ ସାହାଯ୍ୟରେ ଅନାନ୍ତରିକ ଗୋଟାଏ ଗୋଟାଏ ପ୍ରଦର୍ଶନୀ ଦେଖାଇବା ପାଇଁ ସେ ଗୋଲାମ ହୋଇଛନ୍ତି।

ଯବନିକା ଉଠିଲା ଯେମିତି ସବୁବେଳେ ଉଠେ ଓ ପଡ଼େ–ପଡ଼ିଲା ମଧ୍ୟ। ଜୟନ୍ତ ବହୁବାର ଯବନିକା ଉଠିବାର ଦେଖିଛନ୍ତି।

"ଓ ମାଆ, ସେଫଟିପିନ୍‌ଟା ଦେହରେ ଫୁଟିଗଲା।" କି ଚିତ୍କାର! ଆର୍ଟିଷ୍ଟର ଚିତ୍କାର! ସମସ୍ତ ସାଜଘରଟା ଯେପରି ସଂତ୍ରସ୍ତ ହୋଇଉଠିଲା। ତାବଲା ବାଦକ ଆଗଭର ସାହାଯ୍ୟ କରିବା ପାଇଁ।

ନର୍ତ୍ତକୀ ହସିଲେ–ହିଃ–ହିଃ–ହିଃ। 'ସମସ୍ତଙ୍କୁ କେମିତି ଜବତ୍ କଲି' ବୋଲି କହି ସେ ଚଟୂଳ କଟାକ୍ଷ ଢାଳିଲେ। ଜୟନ୍ତ ଦେଖୁଥିଲେ ନାଗରିକାର ନାଗରୀ ରୀତି। ଅତ୍ୟଧିକ ନୃତ୍ୟ ବ୍ୟସନରେ ଉଦ୍ଧତା କିଶୋରୀମାନେ ଯେ ତିଳେମାତ୍ର ସଂଭ୍ରମ ରକ୍ଷା କରୁନାହାନ୍ତି ସେ ଉପଲବ୍ଧି କଲେ।

"ଆରେ, ମଣିଷ ଦିଶୁନାହାନ୍ତି? ଦୂରେଇ ହୋଇ ଯାଆନ୍ତୁ।" ଜଣକର କଳକଣ୍ଠ। ବିଚରା ଭଦ୍ରଲୋକ ଆକାଶରୁ ଖସିପଡ଼ିଲେ। ଦୁହିଁଙ୍କ ଚଳାବାଟ ଭିନ୍ନ, ଅଥଚ ଅଭିଯୋଗ!

ନାଁ - ଏ ଏକପ୍ରକାର ଫେସନ୍। ଦୃଷ୍ଟି ଆକର୍ଷଣ କରିବାର ଗୋଟାଏ ପନ୍ଥା ମାତ୍ର। ଯବନିକା ଅନ୍ତରାଳରେ ସଂସ୍କୃତି ନାମରେ ଏଭଳି ଚିତ୍କାର, ଏଭଳି ଆମନ୍ତ୍ରଣରେ ବାଣୀ ସମସ୍ତେ ବୁଝି ପାରିବେ ନାହିଁ।

ଦୃଶ୍ୟ ଶେଷ ହେଲା। ଲୋକେ ଯିବାପାଇଁ ଉଠିଲେ। ଜୟନ୍ତ କାନ ଡେରି ରହିଲେ ମନ୍ତବ୍ୟଟା କିପରି ହେବ। ହାୟ, ଭଗବାନ! ମନ୍ତବ୍ୟ ଝରି ଆସିଲା– "ନାଃ, ଭଲ ହେଲା ନାହିଁ। ଅତି ଛୋଟ ପିଲା। ଯାହା ବା ଖଣ୍ଡେ ଅଧେ ବଡ଼ ଅଛନ୍ତି ସେମାନଙ୍କର ଅନେକ କିଛି ଅଭାବ ଅଛି।" ଜୟନ୍ତ ବୁଝିଲେ, ସ୍ନାୟୁଚମକ ଉତ୍ତେଜନାର ଅଭାବ ରହିଗଲା। ଏଇ ହେଲା ରୁଚି ଓ ସଂସ୍କୃତି।

ସକାଳୁ କେତେ ଖଣ୍ଡ ବାଉଁଶ ରହିଲା। ହିସାବ ରଖୁ ରଖୁ ଜୟନ୍ତବାବୁ ଦେଖିଲେ ରାଧାଙ୍କର ପୂର୍ବରାତ୍ରର କଣ୍ଠ-ବିଲମ୍ବିତ ବାସି ଫୁଲହାର ତଳେ ଲୋଟୁଛି।

ହଠାତ୍ ତାଙ୍କର ମନେହେଲା, ଏ ଦେଶରେ ସବୁ ଯେପରି ବାସି ହୋଇଗଲାଣି। ସଦ୍ୟ ସୁନ୍ଦର ଶାନ୍ତ ଜୀବନ କେତେବେଳେ ବିକଶିତ ହେବ?

ସେଇଠି ବସି ରହି ଶଗଡ଼ିଆଭାଇଙ୍କୁ ପାଉଣା ଦେଉ ଦେଉ ସେ ଆଦେଶନାମା ପାଇଲେ– 'କୋରାପୁଟରେ ନୃତ୍ୟ ଗୀତ ଆୟୋଜନ କର। ସେଠାରେ ଓଡ଼ିଶାର ସଂସ୍କୃତି ଓ ବୈଶିଷ୍ଟ୍ୟ ଦେଖାଅ– ପ୍ରଚୁର ନୃତ୍ୟ, ଗୀତ କମ୍।'

ଜୟନ୍ତ ଚମକି ଉଠି ଭାବି ବସିଲେ– ଗତିମୁକ୍ତିଦାତା ସେଇ ପାଞ୍ଚଜଣ ବିଡ଼ି ଓ ସିଗାରେଟ୍‌ଧାରୀ ଅସୁଜନ ଯୁବକଙ୍କ ପାଖକୁ ଯିବାକୁ ହେବ–କାହିଁକି ନାଁ, ସେଇମାନେ ଓଡ଼ିଶାର କଳାସଂସ୍କୃତି ଭଣ୍ଡାରର ଚାବି ଧରି ରଖିଛନ୍ତି।

ହତାଶଦଗ୍ଧ ସ୍ୱରରେ ଜୟନ୍ତ କହିଲେ–ହଉ, ଚାକିରି ତ କରିଛି!!!



# ତମାଳ ତାଳ ବନରାଜି ନୀଳା

ଲଘୁ ଟ୍ରେନ୍।

ଲଘୁ ପଥ।

ଇଞ୍ଜିନ୍ ନାଁ ହନୁମାନ।

ବିଶଲ୍ୟକରଣୀ ଔଷଧ ଘେନି ଗନ୍ଧମାର୍ଦନ ପର୍ବତକୁ ବୋହିଆଣିଲାଭଳି, ନଉପଡ଼ା ଷ୍ଟେସନରୁ ଗୁଣୁପୁର ଯାଏ ଏହି ହନୁମାନ ରେଳଗାଡ଼ି କୋଡ଼ିଏ ପଚିଶ ଜଣ ଲୋକ ଆଉ ମାଲ ମହଣେ ଖଣ୍ଡେ, ଧରି ଦିନରେ ଥରେ ରାତିରେ ଥରେ ଯିବା ଆସିବା କରେ।

ହନୁମାନ ବଡ଼ ଦର୍ଶନୀୟ ଯନ୍ତ୍ରଘର। ଷ୍ଟିଭେନ୍‌ସନ ସାହେବର ବୁଦ୍ଧି ଚାତୁରୀର ଆଦ୍ୟ ନକ୍‌ସା ଓ ନମୁନା ଏହାଠାରେ ଅଛି। ଶତାବ୍ଦୀ ତଳର ନକ୍‌ସା। ପିଲାଙ୍କର କଣ୍ଢେଇ-ରେଳଇଞ୍ଜିନ ଭଳି ଲାଗେ। ଧୂଆଁ ବାହାରେ ଉପରମୁହାଁ ପାଇପ୍ ନଳୀ ଭିତରେ। ଶବ୍ଦଟା ଫୁସ୍ ଫୁସ୍। କଳା ସୂତାଗୁଡ଼ାଏ ଉପରକୁ ଲମ୍ବିଯାଉଥିବାର ଦେଖାଯାଏ।

ଯେଉଁ ଲୋକ ହନୁମାନକୁ ଚଳାଏ, ସେ ଯନ୍ତ୍ର ଚଳାଇ ଦେଇ ପାନ ଖଣ୍ଡିଏ କି ପିକାଟାଏ ପାଇଁ ତଳକୁ ଓହ୍ଲାଇ ଆସି ଜିନିଷ କିଣି ପୁଣି ଇଞ୍ଜିନ୍ ଘରକୁ ଚାଲିଯାଏ। ଲୋକେ ରେଳପଥ କରେ ଚିହ୍ନା ସାଙ୍ଗ ସାଥୀଙ୍କୁ ଦେଖି ଡବା ଭିତରୁ ତଳକୁ ଖସି ଦି'ପଦ ସୁଖ ଦୁଃଖ ହୋଇ ପୁଣି କୋଠରି ଭିତରକୁ ପଶିଯାଆନ୍ତି।

ରେଳଟି ଗାଁ ଭିତର, ସବୁଜ କେଦାର, ମଇଁଷିପଲ, ପିଲାଙ୍କ ଧୂଳିଘର, କୂଅ, ଚଉତରା ପାଖ ଦେଇ ଖର୍ ଖର୍ ହୋଇ ଚାଲିଯାଏ। ପିଲାଏ ଚାହିଁ ଦିଅନ୍ତି। ସେଇ ସଦାଦିନିଆ ପରିଚିତ ହନୁମାନକୁ ଦେଖି ମୁହଁ ବୁଲେଇ ଆଣି ପୁଣି ଧୂଳିଖେଳରେ ମନ ଦିଅନ୍ତି। ମଇଁଷିଗୁଡ଼ାକ ଟିକିଏ ରେଳପଥ ତଳକୁ ଖସି ଆସି ଶିଙ୍ଗ ହଲେଇ ଦେଇ ହନୁମାନ ଚାଲିଗଲେ ପୁଣି ଲାଇନ ଉପକରୁ ଚଢ଼ିଆସନ୍ତି।

ସକାଳ ପହର ନିଦମଳା ଆଖିରେ ଯେଉଁ ଦକ୍ଷିଣୀ ଭୂଆସୁଣୀଗୁଡ଼ିକ କେଶ-ଅଟକା ମଉଳା ଫୁଲ ଗୁଚ୍ଛକୁ ଦେଖେଇ ଗାଁ କୂଅରୁ ଗଗରି ଭସାଇ ପାଣି ଟାଣୁଥାନ୍ତି, ସେଇମାନେ ବାଙ୍କ ଚାହାଣିରେ ଚାଳକକୁ ଆଉ ଗାର୍ଡ଼ ସାହେବକୁ ଚାହିଁ ନିଅନ୍ତି। ଚାଳକ ହନୁମାନର ବେଗ କମାଇଦିଏ। ତାହା ଆଉରି ଶୋଇଯାଏ, ଧିମେଇ ଚାଲେ, କ୍ଳାନ୍ତିର ନିଶ୍ୱାସ ଛାଡ଼େ।

ଗାର୍ଡ଼ କୋଠରିଟା ନିତମ୍ବିନୀଙ୍କର ସମ୍ମୁଖ ହେଲାବେଳକୁ ମନେହୁଏ ଗାଡ଼ିଟା ଆଉ ନାହିଁ। ଗାର୍ଡ଼ ସାହେବ ନିଶ ଉପରେ ହାତ ପକେଇ, ଛାତିର ଚମଡ଼ାଟିକୁ ହଲେଇ ଦିଅନ୍ତି। ଅଣ୍ଟା ତଳକୁ କିମ୍ବା ପକେଟ ଭିତରେ ରହିଥିବା ହ୍ୱିସିଲ୍‌କୁ ଟେକିନେଇ ମୁହଁରେ ଗୁଞ୍ଜି ଦିଅନ୍ତି, ମାତ୍ର ସିଟି ମାରନ୍ତି ନାହିଁ। ସେଇ ଭଙ୍ଗିରେ ମୁରଲୀଧାରୀ ବନବିହାରୀ ଗୋପୀମୋହନଙ୍କ ଭଳି ଦଣ୍ଡେ ସେ ଛିଡ଼ା ହୋଇଯାଆନ୍ତି।

ଲାଜ ମିଶା ଥରା ଅପାଙ୍ଗରେ ଗୋପୀମାନେ ହସ ହସ ହୁଅନ୍ତି ମୁରଲୀ ବାଜି ଉଠେ—ପଛଆଡ଼ ନୀପ ମୂଳରୁ ନୁହେଁ, ଆଗ ଆଡୁ—ଯେଉଁଠି ହନୁମାନ ଛନ୍ଦ ତୋଳିଛି। ବଡ଼ କର୍କଶ ଝିଇଁ ଝିଇଁ ସେ ଭାବ। ସମଗ୍ର ବନଭୂମି ଥରିଯାଏ। ଚାଳକ ସେଇ ତୀବ୍ର ଧ୍ୱନିର ଉତ୍ପତ୍ତି ସ୍ଥଳକୁ ଅନାଇଁ ରହିଥାଏ। ମୁହଁରେ ଦର୍ପ, ଠାଣିରେ ରସିକତା।

ଗୋଟି ଗୋଟି ହୋଇ କଟି ଉପରେ କଳସୀ ଥୁଆ ହେଲାଣି। କୂଅ ମୂଳର ନୀରବୁହାଳୀ କାମିନୀ ଅଷ୍ଟା ହଲେଇ ଡାହାଣେ ନଇଁ ଚାଲିବାକୁ ଆରମ୍ଭ କଲେଣି।

ଶରତ୍‌ର ଶ୍ୟାମ କାନ୍ତିଉଛୁଳା ନୀଳ ତରଙ୍ଗ। ହିଲ୍ଲୋଳ ପରେ ହିଲ୍ଲୋଳ ଭାସିଯାଏ କେଦାରଶ୍ରୀ ଧାନ୍ୟ ଶୀର୍ଷ ଉପରେ। କ୍ଷିତିଜ ତଳ ଶାଦ୍‌ବଳ ଆଭା ଭିତରେ ପ୍ରକୃତି ପରାଗ ବିଞ୍ଚେ। ଅପୂର୍ବ ସେ ବିଭୂତି!

ହନୁମାନର ଗାର୍ଡ଼୍‌ସାହେବ ବେଶୀ ଥର ପତାକା ହଲାନ୍ତି—ବେଶୀ ସିଟି ମାରନ୍ତି—ବହୁଥର ବିପଦ ସଙ୍କେତ ଦିଅନ୍ତି। ଯାତ୍ରୀମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ବେଶୀମାତ୍ରାରେ ବୁଝନ୍ତି। ଥରେ ଥରେ ତୃତୀୟ ଶ୍ରେଣୀ ଯାତ୍ରୀଙ୍କୁ ମଧ୍ୟମ, ମଧ୍ୟମକୁ ଦ୍ୱିତୀୟ ଶ୍ରେଣୀକୁ ଉଠାଇ ଦିଅନ୍ତି।

ତାଙ୍କର ସବୁବେଳେ ବ୍ୟସ୍ତଭାବ। ଘଣ୍ଟାକେ ଚାରିମାଇଲ ଯିବା ଗାଡ଼ିକୁ ଏପରି ଅଯତ୍ନରେ ବେପରୁଆ ଭାବରେ ସେ ଛାଡ଼ି ପାରିବେ କି? କାହାର ପାଣି ଦରକାର, କିଏ କଫି ଚାହେଁ, କାହାର ସୁପୁଲି ଭଜା ଦରକାର, କିଏ କେଉଁ ଅସୁବିଧାରେ ପଡ଼ିଛି—ସବୁକଥା ସେ ବୁଝିବାକୁ ଆଗଭର ହୋଇ ଯାଆନ୍ତି। ପୁରୁଷ ହେଉ ବା ନାରୀ ହେଉ, କେବଳ ତାଙ୍କୁ ସମ୍ଭାଷଣ କରି ଯାତ୍ରୀମାନେ ଯଦି ହସି ଦିଅନ୍ତି, ତେବେ ଗାର୍ଡ଼ ସାହେବ ବୁଝି ନିଅନ୍ତି ଯେ ସେମାନେ ପାରଳାଖେମଣ୍ଡିକି ଗୁଣୁପୁର କି ପଥପତ୍ତନ ଯାଉନାହାନ୍ତି। ସେମାନେ ତାଙ୍କର ପରମ ଆତ୍ମୀୟ ହନୁମାନ ପିଠି ଉପରେ ବସି ସାତ ସମୁଦ୍ର ତେର ନଦୀ ଓ ବିସ୍ତୀର୍ଣ୍ଣ ଭୂଭାଗ ପାର ହୋଇ ଯାଉଛନ୍ତି।

ସେ କହନ୍ତି, ବିଶେଷ ଅଭିଜ୍ଞତା ନ ଥିଲେ ହନୁମାନ ରେଳ ତତ୍ତ୍ୱାବଧାରକ ଭାବରେ କାହାକୁ ନିଯୁକ୍ତି ଦିଆଯାଏ ନାହିଁ। କଥାଟା ସତ। ଯାତ୍ରୀମାନେ ଦେଖନ୍ତି ସେ କେଉଁ ଛଟକରେ ଆସି କୋଠରିର ଫିଟିଲା ଦ୍ୱାରକୁ ବନ୍ଦ କରି ଦିଅନ୍ତି, ବୁଜା ଦରଜାକୁ ପବନର ଯାତାୟାତ ପାଇଁ ଖୋଲିଦିଅନ୍ତି।

କାହାର କଅଁଳା ପିଲା ଯଦି କାନ୍ଦୁଥାଏ, ତାର ମାଆ-ଆଡ଼େ ସ୍ନେହସିକ୍ତ ଆଖି ଡାଳି ପୁଅର କାନ୍ଦିବା କାରଣ ସେ ପଚାରନ୍ତି। ଜନନୀ ବକ୍ଷ-ବାସ ଉନ୍ମୋଚନ କରିବା ପୂର୍ବରୁ ସେ ଘଟଣା ବୁଝିପାରି ଚାଲିଯାଆନ୍ତି, ମାତ୍ର ବେଶୀ ଦୂର ନୁହେଁ। ସେଇ କୋଠରିର ଗବାକ୍ଷ ଭିତରେ ମୁହଁ ଦେଖାଇ ବାହାରକୁ ଚାହିଁଥାଆନ୍ତି।

କେତେବେଳେ ପିଲାଟା ବେଶୀ ଅଝଟିଆ ହେଲେ ତା' କାନରେ ଦି'ଥର ହୁଇସିଲ ଫୁଙ୍କି ଦିଅନ୍ତି। ପିଲାଟା ଚମକି ପଡ଼େ। ଦେଖେ, କଳାପୋଷାକରେ କଳା ମଚ ମଚ ଲୋକଟାଏ ତାକୁ ଅନେଇଁ ହସୁଚି—ଚୁ ଚୁ କରୁଚି। ସେତିକିରେ ସେ ମାଆ ଛାତି ଉପରେ ଲେପଟି ପଡ଼େ। ଅପୂର୍ବ ବାତ୍ସଲ୍ୟ ମମତାର ମାଆ ତାକୁ ଆଲିଙ୍ଗନ କରି ଆଣେ। ଏକ ସାର୍ଥକ ହସ ଓ ଅର୍ଥକ ବାହାଦୁରୀ ଦେଖାଇ ଗାର୍ଡ଼ ସାହେବ ସେଠାରୁ ବିଦାୟ ନିଅନ୍ତି।

ତାଙ୍କର ସ୍ୱତନ୍ତ୍ର ଡବା ନାହିଁ। ଗୋଟାଏ ଅବଶ୍ୟ ଥାଏ; ମାତ୍ର ସେ ସେଠାରେ ରହନ୍ତି ନାହିଁ। ସେଥିପାଇଁ ପ୍ରାୟ ଦେଖାଯାଏ ଥରେ ଇଞ୍ଜିନ୍ ଘରୁ ନୀଳ ପତାକା ଉଇଁଲାଣି ତ ଥରେ ପଛ ମାଲ ଡବା ଭିତରୁ ଲୋହିତ ପତାକା ଦେଖାଗଲାଣି, ଆଉ କେବେ ଦ୍ୱିତୀୟ ଶ୍ରେଣୀ କୋଠରି ଭିତରୁ ଦେଖାଗଲାଣି ତ ପୁଣି ଥରେ ଗାଁ ସଡ଼କ ଉପରୁ।

ଯାତ୍ରୀମାନେ ବିସ୍ମିତ ହୋଇଯାଆନ୍ତି। ଗାଁ ରାସ୍ତା ଉପରେ ପତାକା ହଲିବା ଦେଖାଗଲା କିମିତି? ହନୁମାନ ବା କିପରି ଏକଥା ଜାଣିଲା ଯେ ତାହା ଧୀରେ ଚଳିବାକୁ ଆରମ୍ଭ କଲା?

ସମସ୍ତେ ଦେଖନ୍ତି, ଗାର୍ଡ଼ସାହେବ ଗାଁ ବାଟ ଉପରେ ପଠାଣ ମିଆଁଠୁ କୁକୁଡ଼ା କେତୁଟା କିଣୁଥିଲେ। ସେଇଠୁ ସେ ପତାକା ହଲେଇଦେଲେ। ତାଙ୍କର ଅର୍ଡ଼ରରେ ହନୁମାନ ଚାଲିଲା। କଥାଟା ବୁଝିବାକୁ ଯାତ୍ରୀମାନଙ୍କୁ ସମୟ ଲାଗିଲା। ଅତି ବୁଦ୍ଧିମାନ ନ ହେଲେ ଏହାକୁ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ। ଉପଲବ୍‌ଧି ପରେ ଆସେ ବିସ୍ମୟ। କେଡ଼େ କରାମତି ସତେ ଏଇ ଗାର୍ଡ଼ ସାହେବର!! ଏହିପରି ସେମାନେ କଥାଭାଷା ହୁଅନ୍ତି—ହନୁମାନ ଚାଲୁଥାଏ।

ସେଇ ରେଳପଥ ଉପରେ ଗୋଟିଏ ଛୋଟ ଷ୍ଟେସନ। ଆଭିଜାତ୍ୟ ନାହିଁ କି ବଡ଼ ଷ୍ଟେସନର ଗୌରବ ନାହିଁ। ଖୁବ୍ ବେଶୀ ହେଲେ ଦୁଇ ଚାରିଟା ଲୋକ ଅବତରଣ କରନ୍ତି, ଆରୋହଣ କରନ୍ତି। ତାର ବାଡ଼ ଦିଆହୋଇଥିବା ଖଣ୍ଡିଏ ପରିଷ୍କୃତ ଅଥଚ ଶ୍ୟାମଳ ଭୂମି ଉପରେ ଏଇ ଷ୍ଟେସନଟି ହନୁମାନ ରେଳଗାଡ଼ିକୁ ସ୍ୱାଗତ ଜଣାଏ, ପୁଣି ସମୟ ହେଲେ ବିଦାୟ ଦିଏ।

ଅଶ୍ରୁ ଆଚ୍ଛନ୍ନ ମୁଖରେ ଜଣେ ଅବଗୁଣ୍ଠନବତୀ ତରୁଣୀ ଦିନେ ଅପରାହ୍ନର ସ୍ୱର୍ଣ୍ଣନୀଳ କାନ୍ତି ଭିତରେ ହନୁମାନର ଏକ କୋଠରିରେ ଚଢ଼ିଲେ। ସାଙ୍ଗରେ ଜଣେ ସୁନ୍ଦର ତରୁଣ। ରୁଚିକର ପରିପାଟୀ ଓ ସଂଭ୍ରମରୁ ପୁରୁଷଟି ବିଦ୍ୱାନ ଓ ସରସ ବୋଲି ଜଣାପଡୁଥିଲେ। ମାତ୍ର ତାଙ୍କର ମୁହଁଟି ମେଘାଡ଼ମ୍ବରରେ କୃଷ୍ଣବର୍ଣ୍ଣ—ଯେପରିକି ତାଙ୍କର ସମସ୍ତ ଆନନ୍ଦର ଆଶ୍ରୟ ଆଜି ଶୁଷ୍କ।

ଗାର୍ଡ଼ ସାହେବ ଆସିଲେ - ଏକପ୍ରକାର ପାଛୋଟି ନେଲେ। ଏଭଳି ଗୋଟିଏ ବିଜନ ଷ୍ଟେସନରେ ସୁନ୍ଦର ପୁରୁଷ ଓ ସ୍ୱାସ୍ଥ୍ୟବତୀ ମନୋହର-କାନ୍ତି ନାରୀ ଯେ ହନୁମାନର କୋଠରିକୁ ପାଦ ଦେବେ, ଏକଥା ଗାର୍ଡ଼ ସାହେବଙ୍କର ବିସ୍ମୟ ସୃଷ୍ଟି କରିଥିଲା।

ଦୁହିଁଙ୍କ ଆଖିରୁ ଲୋତକ ଧାରା ବହି ଯାଉଥିଲା। ପକ୍ଷୀ ପକ୍ଷିଣୀ ଦୁଇଟିରୁ ବୋଧହୁଏ ଗୋଟିଏ ନୀଡ଼କୁ ଫେରିଯିବ, ଆଉ ଗୋଟିଏ ଶୂନ୍ୟକୁ ପକ୍ଷ ପିଟି ଚାଲିଯିବ—ଏଇଭଳି ଏକ କରୁଣ ପରିବେଶରେ କ୍ଳାନ୍ତିମୟ ଭାବ ମୁହୂର୍ତ୍ତଟିକୁ ଆଚ୍ଛନ୍ନ କରି ରଖିଥିଲା।

"—ନିଜର ଯତ୍ନ ନେବ। ଅନ୍ଧାରକୁ ଯିବ ନାହିଁ। ଗଲେ ସାଙ୍ଗରେ କାହାକୁ ନେବ। ମୋ ପ୍ରସ୍ତାବ ତ ବାପ ମା ମାନିଲେ ନାହିଁ। ମୋ ପାଖରେ ଥିଲେ ମୁଁ କଅଣ ଡାକ୍ତର, ଧାଇଙ୍କୁ ଦେଖାଇ ସବୁ ବନ୍ଦୋବସ୍ତ କରନ୍ତି ନାଇଁ। ହଉ ଯାଅ। ଟନିକ୍ ସବୁ ନେଇଛ ତ? ବଡ଼ ଉପକାର ମିଳୁଚି। ଆଗଥର ଷଠୀ ଯେଉଁ ଦଗା ଦେଲା ପାସୋର ଯାଇନାହିଁ। ଏଥର ଭଗବାନ ଜାଣନ୍ତି। ଭଲ ଖାଇବ। ଏତେବେଳେ ପୁଷ୍ଟିକର ଖାଦ୍ୟ ଖାଇବା ଦରକାର। ଟାଉନ୍ ଜାଗାକୁ ଯାଉଚ,

ସବୁ ସୁବିଧା ଈଶ୍ୱରଙ୍କୁ କହି କରିନେବ। ତମ ଚିଠି ନ ପାଇବା ଯାଏ ମୋ ଆତ୍ମା ଉପରେ ଉପରେ ଉଡୁଥିବ। ସାଙ୍ଗେ ସାଙ୍ଗେ ଖଣ୍ଡେ ଚିଠି ଦେବାକୁ ଡେରି କରିବ ନାଇଁ। ଛି, କାନ୍ଦ ନାଇଁ। ହଁ, ଥଟ୍ଟାରେ ଯେ ସେ ଦିନ ତମକୁ କହିଥିଲି ଝିଅ ହେଲେ ତମ ସୁନ୍ଦର ମୁହଁକୁ ଚାହିଁବିନି, ସେ କଥାକୁ ମନରେ ଥାନ ଦବ ନାଇଁ। ପୁଅ ଝିଅ କାହାର? ମୋର ତ ଇଛା ଝିଅଟିଏ ହେଲେ ତାକୁ ପୁଅଭଳି ବହୁତ ପାଠ ପଢ଼େଇ ବିଲାତ ପଠେଇବି। ସେଇ କଅଣ ବାପ ନାଁ ରଖିବ ନାଇଁ ଯେ ପୁଅଝିଅର ବିଚାର ଚାଲିଛି? ଟଙ୍କା ଯାହା ନେଇଚ ଅଣ୍ଟିଲେ ପୁଣି ମଗାଇ ପଠାଇବ। ଧାର ଉଧାର କରି ପଠାଇବି। ଧାଇଟିଏ ଆଗରୁ ଠିକ୍ କରିଥିବ। ମୁଁ ପୁଣି ଚିଠିରେ ଅନ୍ୟାନ୍ୟ କଥା ସବୁ ଲେଖିବି। ଏକ୍ଷଣି କିଛି ମନେପଡୁନି। ତମେ ଆଉ କାନ୍ଦନି। ସବୁ ଭଲରେ ଭଲରେ ହୋଇଗଲେ ପୁଣି ଫେରି ଆସିବ। ସେତେବେଳକୁ କୋଳରେ କୁଆଁ...କୁଆଁ...କେମିତି? ଯାଅ, ଗାଡ଼ି ଛାଡ଼ିବା ବେଳ ହେଲା......"

ତରୁଣୀ ଯୁବକଙ୍କର ପାଦ ଛୁଇଁ ପ୍ରଣାମ କଲେ। କେବଳ ଏତିକି କହିଲେ "ନିଜର ଖାଇବା ପିଇବା ନିଜେ ବୁଝିବ। ସବୁ କଥା ପୂଜାରୀ ହାତରେ ଛାଡ଼ିଦେବ ନାଇଁ। ସକାଳେ ମିଶିରି ପଣା ପିଇବାକୁ ଭୁଲିବ ନାଇଁ। ବେଶୀ କଫି ଖାଇବ ନାହିଁ। ସେ କ୍ଷୀର ସେରକ ପିଇଦେଉଥିବ—ନଇଲେ ସେତକ ବ୍ରାହ୍ମଣ ଟୋକା ତୁଣ୍ଡରେ ଯିବ। ମୁଁ ନାଇଁ ବୋଲି ଡଇଁ ଡଇଁ ହୋଇ ବଜାର ହାଟ ବୁଲିବ ନାଇଁ। ତମ ଦେହ ଘେନି ମୋର ଅସୁମାରି ଚିନ୍ତା। ଯାଅ.....ଦିନେ ଛଡ଼ା ଦିନେ ଚିଠି ଦେବ। ମନେ ରଖିଥିବ।"

ଦୁଇଟି ଚକୋର ଚକୋରୀଙ୍କର ଗୁଞ୍ଜରଣ ଶେଷ ହୋଇଗଲା। ହନୁମାନ ଡାକ ଦେଲା। ସୁରେନ୍ଦ୍ର ପଛରେ ରହିଗଲେ। ହନୁମାନ ହିମାନୀକୁ ଘେନି ଆଗକୁ ଚାଲିଲା।

ବନ୍ଧ ତୁଟିଗଲେ ବନ୍ୟା ବହିଯାଏ—ରୁଦ୍ଧ ଜଳରାଶି ବାଧା ମାନେ ନାଇଁ। କ୍ରମେ ସୁରେନ୍ଦ୍ର ବୁଝିଲେ ତାଙ୍କର ଆତ୍ମଭୂତା ସ୍ତ୍ରୀ ହିମାନୀ ପାଖରେ ସେ ଯାହା ପାଇବାକୁ ଆଶା କରୁଥିଲେ, ତାହା ସକଳ ପାଇ ନାହାନ୍ତି—ଆଉ କିଛି ରହିଯାଇଛି। ଅପୂର୍ଣ୍ଣତା ତାଙ୍କୁ ଏତେ ଦିନେ ପୀଡ଼ା ଦେବାକୁ ଆରମ୍ଭ କଲା।

ସେ ଟିକିଏ ବେଶୀ ଚଲାବୁଲା କଲେ। ନିଜକୁ ବେଶୀ ପରିପାଟୀରେ ମଣ୍ଡିଲେ। ଦର୍ପଣରେ ମୁହଁ ବେଶୀ ଥର ଦେଖିଲେ। କେଶ ପ୍ରସାଧନରେ ସମୟ ଅତିବାହିତ କଲେ। ନୂଆ ପୋଷାକରେ ନିଜକୁ ନବୀନ ଭାବରେ ସଜାଇଲେ। ଖଣ୍ଡେ ଖଣ୍ଡେ ପାନ ଖାଇଲେ। ଆଖିରେ କଳା ଦେଲେ। ସୁସମାହିତ ସୁସମ୍ପନ୍ନ ବ୍ୟକ୍ତିତ୍ୱ ତାଙ୍କର ଆଜି ଘନ କିଶଳୟ କୁଞ୍ଜରେ ପଲ୍ଲବିତ, ମୁଖରିତ।

ହିମାନୀଙ୍କ ପାଖରୁ ଚିଠି ଆସେ—ପ୍ରେମାଭିମାନର ଚିଠି—ନାରୀ ହୃଦୟର ସଂଗୋପନ କଥା— "ମୁଁ ନାଇଁ ବୋଲି ନିଜକୁ ଉଜାଡ଼ି ଦେବନି। ମୁଁ ଜାଣେ ତମେ ତାହା କରିବନି। ତୁମକୁ ବହୁବାର ପରୀକ୍ଷା କରିଛି, ତମେ ସେ ଦରର ଲୋକ ନୁହଁ। ତମର ଏଇ ଗୁଣଟିକୁ ମୋର ଏଠାରେ କେତେ ସାଙ୍ଗ ସାଥୀଙ୍କୁ କହିଛି। କହିଲାବେଳେ ତାଙ୍କ ଆଖିରେ ଚକିତ ଭାବ ଦେଖିଛି—ଯେମିତିକି ସେମାନେ ମୋ କଥା ବିଶ୍ୱାସ କରୁ ନାହାନ୍ତି। ଦେହ ଭାରି ଭାରି ଲାଗୁଛି। ଡାକ୍ତରାଣୀ ଦେଖି କହିଛି କଅଣ ସବୁ ଗୋଳମାଳ ଅଛି। ଇନ୍‌ଜେକସନ୍ ନେଉଚି।

ରକ୍ତଶୂନ୍ୟ ହୋଇଛି ବୋଲି ଡାକ୍ତରାଣୀର ବେଶୀ ଚିନ୍ତା। ଯାହା ଖାଉଛି ହଜମ ହେଉନି। ମନ ଭଲ ରହୁନି। ତମଠୁ ଦି'ପଦ କଥା ନ ଶୁଣୁଛି ବୋଲି ପାଗଳ ଭଳି ଲାଗୁଛି–" ଏଇଭଳି କେତେ କଥା–ଶେଷରେ ଥାଏ ମିଶିରିପାଣି, କ୍ଷୀର। "ଏଦିନେ ବେଶୀ ଭେଣ୍ଡି ମିଳୁଥିବ। ଖାଇଲେ ବଡ଼ ହିତ, ଖାଇବ...ମୋର ରାଣ, ଶୁଣି ହସିବ, ବୋଉ ଆଉ ଅପା ଏବଠୁଁ ପିଲା ପାଇଁ ନାଆଁ ବାଛିଲେଣି। ଗୋଟାଏ ତାଲିକା କରୁଛନ୍ତି ଯେତେକ ଭଲ ଭଲ ପୁଅ ନାଁର, ଆଉ ଗୋଟିଏ ତାଲିକା ଝିଅ ନାଁର। ଆଗତ ଭବିଷ୍ୟତକୁ କାହାର ହାତ ? ତାଙ୍କ ମନ ବୁଝିବା ପାଇଁ ସେମାନେ କରୁଛନ୍ତି, ମୁଁ କାହିଁକି ବାଧା ଦେବି ? ଦେହର ଯତ୍ନ ନେବ। ଭଲ ଖାଇବ, ଶୋଇବ..."

ଚିଠିର ଶେଷରେ ଥାଏ - ତମର ପ୍ରେମାଧିକାରିଣୀ ହିମାନୀ।

ସୁରେନ୍ଦ୍ର ଖଟ ଉପରେ ଶୋଇ ରହି ହିମାନୀର ଚିଠି ପଢ଼ନ୍ତି। ଥରକରେ ସନ୍ତୋଷ ଆସିଯାଏ। ହଁ ସେଇ କଥା ତ–ଖାଲି ଭଲ ଖାଇବ, ଶୋଇବ, ଭେଣ୍ଡି, କ୍ଷୀର, ଛେନା, ଗୁଡ଼...

ସହସା ଏପରି ବିରକ୍ତ କାହିଁକି ଜନ୍ମିଲା ନିଜେ ସୁରେନ୍ଦ୍ର ବୁଝିପାରିଲେ ନାହିଁ। ଅଥଚ ସେ ଦିନ ଅପରାହ୍ଣରେ ହିମାନୀକୁ ଗାଡ଼ିରେ ଉଠାଇ ଦେଇ ଆସି ସେ ଅଶ୍ରୁକାତର ହୋଇ କେବଳ ଦିନ ରାତି ଶୋଇରହିଥିଲେ।

ହଠାତ୍ ଘଣ୍ଟାରେ ବାଜିଲା ସଞ୍ଜ ପାଞ୍ଚଟା। ସୁରେନ୍ଦ୍ର ଚାହିଁଲେ... ଘଣ୍ଟାକଣ୍ଟାଟି ପାଞ୍ଚ ସଂଖ୍ୟା ଉପରେ ରହିଛି। କି ସୁନ୍ଦର ଏ ଟାଇମପିସ୍! ସଂଖ୍ୟାଗୁଡ଼ିକ ଗାଢ଼ କଳା ବର୍ଣ୍ଣରେ ଲେଖା। ସବୁ ଅଙ୍କ ଭିତରେ ଏଇ ପାଞ୍ଚ ଅଙ୍କଟି ଆହୁରି ସୁନ୍ଦର–ନାଃ, ଆଉ ଡେରି କଲେ ଚଳିବ ନାଇଁ।

ଦର୍ପଣ, ପାନିଆ, ମୁଖଚୂର୍ଣ୍ଣ, ତଉଲିଆ–ଚାହୁଁ ଚାହୁଁ କ୍ଷିପ୍ର ଅଭ୍ୟସ୍ତ ହସ୍ତରେ ବହୁବାର ବ୍ୟବହୃତ ହେଲା। ତଥାପି ଅମାନିଆ କେଶ କେତୋଟି ସାଉଁଳି ରହୁନି–ଛିଡ଼ା ହୋଇଯାଉଛି।

ସମସ୍ୟା ହେଲା–କଣ ପିନ୍ଧିବେ ? ଟ୍ରଙ୍କଯାକର ଲୁଗାପଟା ବିପର୍ଯ୍ୟୟ ଭାବରେ ଖଟଗୋଟାକ ଯାକ ପଡ଼ିଛି। ଖଣ୍ଡିଏ ଧୋତି ଉଠାଇ ସୁରେନ୍ଦ୍ର ଧ୍ୟାନମଗ୍ନ ବଗ ଭଳି ଦଣ୍ଡେ ନତ ଦୃଷ୍ଟିରେ ରହିଲେ। ତାପରେ ସେଇଟିକୁ ଛାଡ଼ି ଧରିଲେ କାମିଜ ଖଣ୍ଡିଏ। ଦୁଇଦଣ୍ଡ ପରେ ତାକୁ ଫୋପାଡ଼ି ଦେଲେ–ପୁଣି ଧରିଲେ ଖଣ୍ଡିଏ ପାନ୍ତଲୁନ୍। ଖୋଲି ଦେଖନ୍ତି ତ ଅଣ୍ଟା ପାଖରେ ମସ୍ତବଡ଼ ଏକ ଚିରା। ମୁଣ୍ଡକୁ ରକ୍ତ ଧାଇଁଲା। ନିର୍ଜନ ଘର ଭିତରେ ସୁରେନ୍ଦ୍ର ଚିତ୍କାର କଲେ–ଛେନାଗୁଡ଼ ସ୍ତ୍ରୀ ହୋଇଛି, କିଛି ଦେଖିବ ନାଇଁ–କେଉଁ ପୋଷାକ କେଉଁଠି ଚିରିଛି କି ଭଲ ଅଛି। ଖାଲି ଗୃହିଣୀପଣ ଦେଖାଇ ସ୍ୱାମୀ ଉପରେ ଯେତେକ କର୍ତ୍ତୃତ୍ୱ–ଯା ଖା, ତା'ଖା, ଭେଣ୍ଡି ଖା, କ୍ଷୀର ପି, ବେଆଡ଼ା ହ ନାଇଁ! କିଓ ତମ ପାଖେ କଅଣ ସବୁ ଇମିତି ଅଛି ଯେ, ମୁଁ ସବୁ ସୁଖରୁ ମୁହଁ ଫେରାଇ ତମକୁ ଖାଲି ଚାହିଁ ରହିଥିବି ?

ଆତ୍ମଗତ କଥା। କେହି ଶୁଣିଲେ ନାଇଁ। ଚିତ୍କାରରେ ଧ୍ୱନି ନ ଥିଲା। ନୀରବ ଭାଷା। ଆଖିରେ ବିରକ୍ତି, ହାତରେ ଚିରା ପାନ୍ତଲୁନ୍, କପାଳରେ କର୍କଶ ଶିରା ଦୁଇଟାର ନେଳିଆ ରକ୍ତଧାରା।

ଶୁଣୁଥିଲେ ହିମାନୀ। ଶାନ୍ତ ମୁଖମଣ୍ଡଳ। ଗୋଟିଏ ହାତ ତାଙ୍କର ପଣତଟିକୁ କଟି ଉପରେ

ଗୁଡ଼ାଇ ଆଣିଲାବେଳକୁ କୁଶଳୀ ଫଟୋଗ୍ରାଫର ଚିତ୍ର ତୋଳି ନେଇଛନ୍ତି। ଢଙ୍ଗଟି ବେଶ୍ ମନୋରମ। ସେଇ ଶୁଣୁଥିଲେ ସୁରେନ୍ଦ୍ରଙ୍କର ଜୀବନରେ ସହଧର୍ମିଣୀ ପ୍ରତି ପ୍ରଥମ ଥର ଅସହିଷ୍ଣୁ ଭାବର ନିର୍ଝର ଶବ୍ଦ।

କିନ୍ତୁ ସେ ତ ନିର୍ବାକ୍ ଚିତ୍ର—ଉତ୍ତର ଦେବେ କାହୁଁ? ଅପମାନର ତାପ ବା ତାଙ୍କୁ କେତେ ତପ୍ତ କରିବ?

ସୁରେନ୍ଦ୍ର ଠିକ୍ ପାଞ୍ଚଘଣ୍ଟା ତିରିଶ ମିନିଟରେ ନିରୂପିତ ସ୍ଥାନରେ ଉଭା ହୋଇଗଲେ। ନିଜର ଦେହକୁ ସହସ୍ର ଥର ଚାହୁଁଛନ୍ତି—ମନକୁ ବି ସଙ୍ଖୋଳିଛନ୍ତି। ସର୍ବତ୍ର ଦେବସଭାର ସୁଷମା। ରମ୍ଭା, ମେନକାଙ୍କର ନୃତ୍ୟ ମୂର୍ଚ୍ଛନା ସ୍ୱର୍ଗର ବାୟୁପ୍ରବାହରେ ଖେଳି ଯାଉଛି। କେତେ ଗନ୍ଧର୍ବ କିନ୍ନର ଗଳା ଫଟାଇ ସଙ୍ଗୀତ ଗାଉଛନ୍ତି। ସବୁଆଡ଼େ ମାଧୁରୀ, ପ୍ରେମାଙ୍କନ ଓ ପ୍ରଣୟ।

ସୁରେନ୍ଦ୍ର ଉପରକୁ ଚାହିଁଲେ। ଖଣ୍ଡିଏ ଆକାଶୀ ରଙ୍ଗର ଶାଢ଼ିରେ ତନୁଟିକୁ ସଜେଇ ଅପୂର୍ବ ନେତ୍ରକ୍ଷେପରେ ସେ ତାଙ୍କୁଇ ଚାହିଁ ଅଧେ ଅଧୋବଦନା ହୋଇଛି। ଏଇ 'ସେ'ଟି ସୁରେନ୍ଦ୍ରଙ୍କର ନବଜୀବନର ନବୀନ ସରୋଜ—ଉଜ୍ଜ୍ୱଳବର୍ଣ୍ଣା। ନାରୀମାନେ ଯେତେକ ଛଟକ, ଛଇଳ ଓ ଛଇ ଗୁଣ ଥିଲେ ନାରୀ ହୃଦୟଗ୍ରାହିଣୀ ହୋଇପାରେ ସେ ସମସ୍ତ ତା'ର ଅଛି।

ଆଜି ସୁରେନ୍ଦ୍ର ତାଠାରୁ ଉପହାର ପାଇଲେ ଗୋଟିଏ ଚମ୍ପାଫୁଲ। ସେଇଟି ଦ୍ୱିତଳ ପ୍ରାସାଦରୁ କକ୍ଷଭ୍ରଷ୍ଟ ତାରକା ଭଳି ଘୂରି ଘୂରି ଖସି ଆସିଲା। ସୁରେନ୍ଦ୍ର ଫୁଲଟିକୁ ଧୂଳିରେ ପଡ଼ିବାକୁ ଦେଲେ ନାହିଁ। ତାଙ୍କର ଅଞ୍ଜଳି ଭିତରେ ତାହା ଆସି ପଡ଼ିଲା।

ବାଟରେ ଲୋକ ଗତାଗତ ହେଉଥିଲେ। ସେମାନଙ୍କର ତ ନଗ୍ନ କଠୋର ଜୀବନ। ଜୀବନ ସମସ୍ୟାରେ ସମସ୍ତେ ପରିପିଷ୍ଟ। କିଏ ବା କାହିଁକି ଏଇ ପ୍ରଣୟର ଖବର ରଖିବ?

ସୁରେନ୍ଦ୍ର ଚାଲିଗଲେ। ଆକାଶୀ ରଙ୍ଗର ଶାଢ଼ି ବି ଲୁଚିଗଲା।

ହିମାନୀ ଲେଖିଛନ୍ତି—ସେ ଦିନ ଗାର୍ଡ଼ ସାହେବ ବଡ଼ ଉପକାର କଲେ। ଚାହା ଆଣି ଦେଲେ। ମୁଁ ଶୋଇବାକୁ ଚାହିଁବାରୁ କେଉଁଠୁ ଖଣ୍ଡିଏ ତକିଆ ଆଣିଦେଲେ। ବାକି ଯାହା ମୋର ସୁବିଧା ଅସୁବିଧା ବୁଝୁଥିଲେ। ବଡ଼ ଭଲ ଲୋକ। ଡାକ୍ତରାଣୀ ପରୀକ୍ଷା କରିଥିଲା। କହିଲା, ପୂର୍ବପରି ଗୋଳମାଳ ରହିଛି। ବିଶ୍ରାମ ନେବାକୁ ଉପଦେଶ ଦେଇଛି। ମୁଁ ବଡ଼ ଶେତା ଦିଶିଲିଣି। ଇଞ୍ଜେକ୍‌ସନ ନେଉଛି। ଭାଇ ଗୋଟାଏ କାଠର ଛୋଟ ଦୋଳନା ଖଟ ବଢ଼େଇକୁ ବରାଦ ଦେଇଛନ୍ତି। ତା'ର ଦି'ପଟ ଖୋଲା ରହିବ - ପୁଣି ଇଛା କଲେ ବାଡ଼ ବନ୍ଦ ହୋଇଯିବ। ପିଲା ଗଡ଼ି ଆସିଲେ ବି ପଡ଼ିବ ନାଇଁ। ଅପା ଫ୍ରକ୍ କରିବ କି ପୁଅ ଜାମା ତିଆରି କରିବ କିଛି ବୁଝି ପାରୁନି। ଖରାବେଳେ ଯାହା ଖାଲି ରାମ, ଲକ୍ଷ୍ମଣ, ସୀତା ପକଉଚି। ମୁଁ କହୁଚି ଲକ୍ଷ୍ମଣ ପଡ଼ିଲେ ତତ୍‌କ୍ଷଣ ଆସିଯିବ କି? ଅପା ହସିଲା।

—ଦି'ଦିନ ତଳେ ପେଟ ବଡ଼ ମୋଡ଼ିହେଲା। ବଡ଼ କଷ୍ଟ। ଡାକ୍ତରାଣୀ ଆସିଲା। ମୁହଁଟା କାହିଁକି ଶୁଖାଇଦେଲା। ତାକୁ ଦେଖିଲେ ମତେ ଚିଡ଼ି ଚିଡ଼ି ଲାଗୁଛି। ସବୁବେଳେ ଖାଲି ପରୀକ୍ଷା। ଦେହ ମୁଣ୍ଡ

ସବୁ ଯେମିତି ତା ପାଖରେ ମୁଁ ସମର୍ପି ଦେଇଚି। ସେ ଆମରି ମାଇପି ଲୋକ। ହେଲେ କଅଣ ହେବ ମତେ ବଡ଼ ଲାଜ ମାଡୁଛି।

—ତମେ ବେଶ୍ ଖୁସିରେ ଥିବ! ହେଇଟି, ଚିଠି ଲେଖୁ ଲେଖୁ ପେଟ ଓଲଟି ପଡ଼ିଲା ଭଳି ଲାଗୁଛି। ଆଉ ଲେଖିପାରିବିନି। ବଡ଼ କଷ୍ଟ.......

ସୁରେନ୍ଦ୍ର ଚିଠି ପଢୁ ପଢୁ ଘଣ୍ଟାରେ ପାଞ୍ଚଟା ବାଜିଲା। ଚିଠି ପଢ଼ା ଶେଷ ହୋଇନାହିଁ। ତକିଆ ତଳେ ତାକୁ ଗୁଞ୍ଜି ଦେଲେ। କୋଠା ଉପରୁ ହସ ଓ ଚାହାଣିତକ ସାଉଁଟି ଆଣିବା ପାଇଁ ସେ ସଜବାଜ ହେଲେ। ମିନିଟିଏ ଏପଟ ସେପଟ ହେଲେ ଆଉ ଦେଖା ମିଳିବ ନାହିଁ। ତେଣିକି ଅଭିମାନ, ରାଗ, ରୁଷା।

ମାସକ ପରେ—

ପାଞ୍ଚ ଘଣ୍ଟା ତିରିଶ ମିନିଟ୍ ବାଜିବାକୁ ପାଞ୍ଚ ମୁହୂର୍ତ୍ତ ବାକୀ।

ସୁରେନ୍ଦ୍ର ଶୀଘ୍ର ଶୀଘ୍ର ଚାଲିଯାଉଥାନ୍ତି। ଘର ବାରଣ୍ଡା ଉପରେ ଛିଡ଼ା ହୋଇ ସୁରେନ୍ଦ୍ରଙ୍କର ହିତୈଷୀ ବନ୍ଧୁ ରାମନାରାୟଣବାବୁ ଡାକିଲେ।

ସୁରେନ୍ଦ୍ର ପିଣ୍ଡା ଉପରକୁ ଆସିଲେ। ମନ ଉଚ୍ଛନ୍ନା ଆଖିରେ ଆବେଗର ସ୍ଫୁଟତର ସ୍ପନ୍ଦନ।

ରାମନାରାୟଣ ଛଳ ଛଳ ଆଖିରେ ଶୋକାର୍ତ୍ତ ହୋଇ କହିଲେ—ସୁର, ତିନିଦିନ ହେଲା ତମର ଦେଖାପାଉନି। ତମ ଘରକୁ ଯାଇ ଫେରି ଆସିଛି। ମାଆ ହିମାନୀର ପିଲାଟି ନଷ୍ଟ ହୋଇଯିବାର ଖବର ପାଇ ମୁଁ ତମ ପାଖକୁ ଦଉଡ଼ି ଯାଇଥିଲି ସାନ୍ତ୍ୱନା ଦେବାପାଇଁ। କିଛି ମନ କଷ୍ଟ କର ନାହିଁ। କାଲିକି କାଲି ଭଗବାନ ପୁଣି କୋଳ ପୂର୍ଣ୍ଣ କରିଦେବେ। ମାଆ ମୋର ବଡ଼ ବ୍ୟସ୍ତ ହେଉଥିବ। ତାକୁ ଖଣ୍ଡେ ଚିଠି ଲେଖିଦେବି। ଲେଖିବି, ଫଳିଲା ଗଛ କେତେ ଫୋପଡ଼ ସହେ।

ସୁରେନ୍ଦ୍ରଙ୍କର ଆଖିର ଚଳନ ଅବାରିତ ଗତିରେ ସେତେବେଳେ ଚଳୁଥିଲା ଶହେ ଗଜ ଦୂର କୋଠା ଉପରକୁ। ରାମନାରାୟଣଙ୍କର ଆଲିଙ୍ଗନରେ ସୁରେନ୍ଦ୍ରର ଶରୀରଟି ଆବଦ୍ଧ ଥିଲେ ବି ମନ ତାଙ୍କର ଛୁଟିଥିଲା ସେଇ ଆକାଶୀ ରଙ୍ଗର ଶାଢ଼ି ପରିହିତା ତରୁଣୀ ପାଖକୁ।

ସାଢ଼େ ପାଞ୍ଚଟା ବାଜିବାକୁ ମିନିଟାଏ ବାକୀ।

ହଁ—ସେମିତି ତ ହୋଇଗଲା' ସୁରେନ୍ଦ୍ର ତର ତର କରି ଏତିକି କହି ଚାଲିଆସିବାକୁ ବସିଲେ।

ରାମନାରାୟଣ ଜାବୁଡ଼ି ଧରି କହିଲେ—ତମ ମନରେ କେତେ ଦୁଃଖ ହୋଇଥିବ? ଥର ଥର ହୋଇ ଦି'ଥର ନଷ୍ଟ ହୋଇଗଲା!

ସୁରେନ୍ଦ୍ର ଉଦ୍‌ବିଗ୍ନ। ଅଧ ମିନିଟିଏ ବାକୀ—

ହଁ।

କଅଣ ହଁ, ତମ ମନରେ କଅଣ ଦୁଃଖ ହଉନି?

ହଁ—ହଉଚି। ମୋର କାମ ଅଛି—ମୁଁ ଯାଉଚି।

ହିମାନୀ ଭଲ ଅଛି ତ?

ହୁଁ ଥିବ। ଡେରି ହୋଇଗଲାଣି—ମୁଁ ଯିବି।

ଥିବ କଅଣ ମ? ତମର ଥରେ ଯିବା ଉଚିତ। ସେ ତମକୁ ଚାହୁଁଥିବ। ଏତେବେଳେ ତା ପାଖରେ ଦି'ଦିନ ରହି ଆସ।

ମୁଁ ତ ଏକ୍ଷଣି ଯାଇପାରିବିନି।

ଯାହା ଦେଖୁଛି ତମ ମନ ତ ବେଶ୍ ଭଲ ଅଛି !

ହଁ ଅଛି। ନାଁ, ରହିଲା ଆଉ କିମିତି ? ଆପଣଙ୍କ ଘଣ୍ଟାରେ କେତେ ?

ସାଢ଼େ ପାଞ୍ଚ ବାଜିଗଲାଣି।

ବାଜିଗଲା ? ମୁଁ ଯାଉଛି—ଖୁବ୍ ଡେରି ହୋଇଗଲା। ପରେ ଦେଖା।

ଟିକିଏ ଚା ଖାଇ ଯାଅ।

ଅସମ୍ଭବ, ଆଉ କେବେ।

ସୁରେନ୍ଦ୍ର ଦଉଡ଼ି ପଳେଇଲେ। ପ୍ରୌଢ଼ ରାମନାରାୟଣ ବୁଝିଲେ ଜନ୍ମ ମୃତ୍ୟୁ ଜରାକଷ୍ଟକୁ ଆଜିକାଲି ଯୁବକମାନେ ଦାର୍ଶନିକ ଦୃଷ୍ଟି ଭଙ୍ଗୀରେ ଗ୍ରହଣ କରୁଛନ୍ତି। ବଡ଼ ଭଲ କଥା। ସେଥିପାଇଁ ତାଙ୍କୁ କିଛି ବାଧୁ ନାହିଁ। କିନ୍ତୁ ମାଆ ହିମାନୀର କଷ୍ଟ କିଏ ବୁଝିବ ?

ଆକାଶୀ ରଙ୍ଗର ଶାଢ଼ିଟିର ପଣତ ଗୋଧୂଳିର ମନ୍ଦ ପବନରେ ସେତେବେଳେ ଧୀରେ ଉଡୁଥିଲା। ଉର୍ଦ୍ଧ୍ୱଶ୍ୱାସରେ ଛୁଟି ଯାଉଥିବା ସୁରେନ୍ଦ୍ରଙ୍କ ମନରେ ରୁଣୁଝୁଣୁ ହୋଇ ସେତିକି ବେଳେହିଁ ବାଜୁଥିଲା କବିଗୁରୁ କାଳିଦାସଙ୍କର ଅମରବାଣୀ ନିକ୍ୱଣ –

ତମାଳ ତାଳ ବନରାଜି ନୀଳା........



# ଦାନ ଭୂଃ

ରେଳ ଷ୍ଟେସନ ପାଖ ଚାଳିଶ ଏକର ବାଲିଆ ଜମିକୁ ଅନାଇ ବିପ୍ରଚରଣ ଛିଡ଼ା ହୋଇଛନ୍ତି। ଉଦୁଉଦିଆ ଦିପହର। ମୁଣ୍ଡ ଉପରେ ନିଆଁ ଝରୁଛି - ବୈଶାଖୀ ତାପ। ତାଙ୍କର କେଶହୀନ ଠାକର ମୁଣ୍ଡ ଚାହୁଁ ଚାହୁଁ ଚୁଲି ଉପର ହାଣ୍ଡି ତଳ ଭଳି ନିଆଁ ଧରିଲାଣି।

ପଲକହୀନ ଆଖିରେ ବିପ୍ରଚରଣ ଚାହିଁ ରହିଛନ୍ତି। ସେ ଦୃଷ୍ଟି ଆଗକୁ ଯେତେ ପ୍ରସାରିତ ନ ହେଉଛି ପଛକୁ ବେଶୀ ସଅରି ଯାଉଛି। ଟିକିଏ ବାଲିମିଶା ଜମି ହେଲେ କଅଣ ହେବ, ଯେଉଁ ଦିନ ସେଇ ଅରାକ ସେ ଦଖଲ କଲେ ସେ ରାତିରେ ଗୋଟିଏ ମହୋତ୍ସବ କରିଥିଲେ।

ଉତ୍ସବ ଭିତରେ ଜୟ-ରାଧା ହରି-କୀର୍ତ୍ତନ ଥିଲା; ଆଉ ଥିଲା ଦାସକାଠିଆଙ୍କର ପତିତପାବନ ଜଣାଣ। ଦୀନ ଦରିଦ୍ରନାଥ ଜଗନ୍ନାଥଙ୍କର ଜଣାଣ ଗାଇଲାବେଳେ ବିପ୍ରଚରଣ କାନ୍ଦିପକାଉଥିଲେ। ଉତ୍ସବ ଶେଷରେ ଦଶଗୋଟି ଛାଗର ମାଂସରେ ନିମନ୍ତ୍ରିତ ବ୍ୟକ୍ତିମାନେ ଅର୍ଚ୍ଚିତ ହେବା ପରେ ବାକୀ କେତେକ ବିଶିଷ୍ଟ ଜାତୀୟ ନରମାନଙ୍କର ମିଳନରେ ନିଭୃତିରେ ସୁରାପାନ ଚାଲିଥିଲା। ପାନୀୟ ଦାନ ଗ୍ରହଣବେଳେ କରାଙ୍ଗୁଳିରେ ଫୁଟନ୍ତା ପଦ୍ମଫୁଲ ତିଆରି କରି ଷୋଡ଼ଶୀ ନର୍ତ୍ତକୀ ସେତେବେଳେ ବିପ୍ରଚରଣଙ୍କର ଆଣ୍ଠୁ ଉପରେ ଆଣ୍ଠୁ ଥୋଇ ତାଙ୍କରି ପଦ୍ମମୁଖକୁ ବର୍ଣ୍ଣନା କରୁଥିଲା, ସେତେବେଳେ ଗୋଟିଏ ସଂଭ୍ରାନ୍ତବଂଶୀୟା ବିଧବା ସେ ଲୁହ ନୁହେଁ, ଲହୁ ଢାଳୁଥିଲା, ତାର ଇତିହାସ ଏଠାରେ ବଖାଣିବାର କୌଣସି ତାତ୍ପର୍ଯ୍ୟ ନାହିଁ!

ସାମନ୍ତବାଦୀ ଆଭିଜାତ୍ୟ ତଳେ ଏହିଭଳି କେତେ ନିରାଶ୍ରୟା ନାରୀ ସମ୍ପତ୍ତି ହରାଇ ଦାଣ୍ଡର ଭିଖାରୁଣୀ ସାଜିଛନ୍ତି। ଯେଉଁମାନେ ବାଟରେ ଘାଟରେ, ସଭା ସମିତି ଅଗଣାରେ, ମନ୍ଦିର ମସ୍‌ଜିଦରେ, ଧର୍ମପୂଣ୍ୟ କାମରେ କେତେଗୁଡ଼ାଏ ଲୋକଙ୍କୁ ଆଗୁଆ ହୋଇ ଦଉଡ଼ିଯିବାର ଦେଖିବାକୁ ପାଉଥିବେ, ଯାହାଙ୍କର ଉଦର ଓ ବଦନଶ୍ରୀରେ ଅତୀତ ଜୀବନର କାମନାର ପରିପୂର୍ତ୍ତି ଘଟିଛି ବୋଲି ଗୋଟାଏ ଆରାମଦାୟକ ପ୍ରସନ୍ନତା ଦେଖୁଥିବେ, ସେମାନେ ସେଇ ଲୋକଙ୍କୁ ଆଉ ଟିକିଏ ନିରେଖି ଦେଖନ୍ତୁ। ଦେଖିବେ, କେତେ ସଂସାରକୁ ଉଚ୍ଛନ୍ନ କରିବାରେ ଏମାନଙ୍କର ରାଜକୀୟ କ୍ଷମତା ଓ ଅସଦ୍ ଉପାୟ ଅବଲମ୍ବିତ ସ୍ୱାର୍ଥ-ସାଧନ କିପରି ସେମାନଙ୍କୁ ନିର୍ଲ୍ଲଜ ଓ ନିଉଛୁଣା କରି ସଜାଇ ଧରିଛି।

ଏଇଭଳି ଗୋଟିଏ ଲୋକ ବିପ୍ରଚରଣ। ସେତେବେଳର ଗଗନ ବକ୍ଷରେ ଗୋଟିଏ ତାରା। ଆଜି ବି ମିଞ୍ଜି ମିଞ୍ଜି ହୋଇ ବିପ୍ରଚରଣ ଜଳୁଛନ୍ତି।

ଅବସର ପାଇଲା ପରେ ଚାଳିଶି ଏକର ଜମି ତାଙ୍କୁ ବଡ଼ ସମସ୍ୟାରେ ପକାଇଛି। ଯେତେବେଳେ ସେ କ୍ଷମତାରେ ଥିଲେ, ସେତେବେଳେ ନିଜର ଏ ଭୂଭାଗକୁ ସେ ଦୃଷ୍ଟି ଦେଇନଥିଲେ। ମାଆ ବସୁମତୀ ପଡ଼ିଛି ତ ପଡ଼ିଛି। ଏକ୍ଷଣି ପଡ଼ିଥାଉ। ଅର୍ଥାତ୍ ଚାରିପଟେ ସୁଅ ଛୁଟେଇ ଆସୁଛି। ଜମିଟା ଉପରେ

କିଛି ଖର୍ଚ୍ଚ ନ କଲେ ତ ଆବାଦ ହେବ ନାହିଁ। ଅତଏବ ଅବସର ଗ୍ରହଣ କରିବା ପରେ ଯେତେବେଳେ ଲୋକଦେଖା ମନ୍ଦିର ଦର୍ଶନ ଓ ଲକ୍ଷ୍ମୀ ଦେଉଳ ଭିତରେ ପୁରାଣ ବାକ୍ୟ ଶ୍ରବଣ ଚାଲୁଥିବ, ମନର ସେଇ ଅମନୋଯୋଗ ସନ୍ଧି ଭିତରେ ଜମିଟାର ଭବିଷ୍ୟତ କଅଣ ହେବ ସେ ବିଷୟରେ ସେ ଚିନ୍ତା କରିପାରିବେ।

ବିପ୍ରଚରଣ ସ୍ୱାର୍ଥ ଜିନିଷଟା କଅଣ ଖୁବ୍ ଭଲ ଚିହ୍ନନ୍ତି। ଯେତେବେଳେ ଛାତ୍ର ଅବସ୍ଥାରେ ଛାତ୍ରାବାସରେ ପଙ୍‌କ୍ତି ଭୋଜନରେ ବସୁଥିଲେ, ପ୍ରତିବେଶୀ ଭାଇର ଥାଳିଟି ଉପରେ ବିଜୁଳି ମାରିଲାଭଳି ଆଖି ଚଳେଇ କେତେ ଖଣ୍ଡି ମାଂସ ରହିଛି ଗଣି ଦେଉଥିଲେ। ଦେଖିଲେ ଯଦି ତାଙ୍କର ସଂଖ୍ୟାଠାରୁ ତା'ର ସଂଖ୍ୟା ଏକରେ ଅଧିକ, ତେବେ କୌଶଳରେ ଏମିତି ହାତଛେଉକାପଣ ଦେଖାଉଥିଲେ ଯେ ପ୍ରତିବେଶୀର ଗିନାର ଅର୍ଦ୍ଧେକ ସମ୍ପଦ ଯାଙ୍କର ଥାଳିକୁ ଚାଲିଆସୁଥିଲା। ଏଥିରେ ବିପ୍ରଚରଣ ଦିଗ୍‌ବିଜୟୀର ଗୌରବ ଭୋଗୁଥିଲେ।

ଏ ପ୍ରବୃତ୍ତି ବଢ଼ିଲା। ଫଳରେ ଅଫିସ୍‌ର ପିନ୍‌କଣ୍ଟା, ପେନ୍‌ସିଲ, କାଗଜ ଘରକୁ ଆସିଲା। ପୁଅ ଝିଅ ବାପାଙ୍କର ଏତେ ବଡ଼ ସାମ୍ରାଜ୍ୟ ଜାଣିପାରି ଏମିତି ବାପର ଚରଣ ତଳେ କୃତଜ୍ଞ ହୋଇ ଲୋଟି ଯାଉଥିଲେ। ଗୃହିଣୀଙ୍କ କଥା ଛାଡ଼। ସେ ତ ଦେବତା ସ୍ଥାନରେ ବିପ୍ରଚରଣଙ୍କୁ ପୂଜା କରୁଥିଲେ। ହ୍ୟାଣ୍ଡନୋଟ୍ ପରେ ହ୍ୟାଣ୍ଡନୋଟ୍ ଟ୍ରଙ୍କ ଭିତରକୁ ଆସିବା ଦୃଶ୍ୟରେ ସ୍ତ୍ରୀ ଯେତେବେଳେ ସ୍ୱାମୀଙ୍କର ପୌରୁଷର ଜିନ୍ଦାବାଦ କରି ବସନ୍ତି ଓ ଅନ୍ୟ ମହିଳାମାନଙ୍କ ପାଖରେ ତାଙ୍କର ଗୁଣ ଗାୟନ କରନ୍ତି, ସେତେବେଳେ ଥରେ ଥରେ ଚୁଲ ଉପରକୁ ହାଣ୍ଡି ଚଢ଼ୁଉ ନ ଥିବା ସାଇପଡ଼ିଶାର ଦୁଃଖିନୀ ସ୍ତ୍ରୀମାନେ ଏକା ମଣିଷ ଭିତରେ ଜଣେ ଗରିବ ବିଧାତା କିଆଁ ସର୍ଜିଲା ବୋଲି ଭାବି ଅଦୃଷ୍ଟକୁ ଦୋଷ ଦେଉଥିଲେ।

ଗାଁର ଉପାନ୍ତରେ ରେଳ ଲାଇନ୍ ଚାଲିଯାଇଛି। ଦୁଇପଟରେ ତାଳ ବନ। କେତେ ସୁନ୍ଦର ସେ ବନ-ନୀଳିମା। ଗାଡ଼ି ଯାଏ ଆସେ। ତା'ର ଗଗନବିଦାରୀ ଶବ୍ଦରେ ବାୟାବସାର ଦମ୍ପତି ଉଡ଼ିଯାଆନ୍ତି ଚାରିଆଡ଼େ। ପୁଣି ଟିକକ ସମୟ ପରେ କାକଳି ତୋଳି ଫେରିଆସନ୍ତି କୁଲାୟକୁ।

ବିପରୀତ ଦିଗରୁ ଆସୁଥିଲେ ଆଉ ଜଣେ ବାହାଦୂର। ରାୟ କି ଦେବାନ୍ ଦିବାରେ ତାଙ୍କର ବିଶେଷ ପରିଚୟ ଦେଇ ହେବ ନାହିଁ। ସମଗୋତ୍ରୀୟ ଜୀବ। ତେବେ ଏତିକି, ଏ କ୍ଷୁଦ୍ର ସର୍ପ; ଅଜଗର ଭଳି ଯାଙ୍କର ବିସ୍ତୃତି ନାହିଁ।

"—କିହେ ଶ୍ୟାମସୁନ୍ଦର, ଖରାବେଳଟାରେ ଏଣିକି ଧସେଇଛ? ତମର ରିଟାୟାର୍ଡ଼ ଜୀବନ କିମିତି କଟଉଛ? ଗାଁରେ ନ ଥିଲ କି?" କହି କହି ବିପ୍ରଚରଣ ଆଗେଇଲେ।

ଶ୍ୟାମସୁନ୍ଦର ଲୋକଟି ବିନୟୀ—ଅର୍ଥାତ୍ ମୁଣ୍ଡଟି ତଳକୁ ପୋତି ଚାଲିବାର ଅଭ୍ୟାସ ଅଛି। ସେ ଧୀରେ ମୁଣ୍ଡ ଉଠାଇଲେ; କହିଲେ— "ଆପଣ ତ ଜାଣିଥିବେ, ଆମର ରିଟାୟାର୍ଡ଼ ଲୋକଙ୍କର ଗୋଟାଏ ଅନୁଷ୍ଠାନ ହେଲାଣି। ଦେଶସେବା ହେଉଛି ଲକ୍ଷ୍ୟ। ଆପଣ କଣ ମେମ୍ବର ହୋଇନାହାନ୍ତି?"

ବିପ୍ରଚରଣ ହସିଲେ। ଲଙ୍କାରେ ହରି ଶବ୍ଦ ଭଳି ଗାନ୍ଧି ନାମ ଉଚ୍ଚାରଣ କରି ସେ କହିଲେ— "ଦେଖ, ଶ୍ୟାମସୁନ୍ଦର, ମେଳି ହୋଇ ଗୋଟାଏ ଅନୁଷ୍ଠାନ ଗଢ଼ି ଦେଲେ ଯେ ଦେଶସେବା ହୋଇଯିବ

ଏପରି ନୁହେଁ। ଗାନ୍ଧି ଏ କଥା କହି ନ ଥିଲେ। ମୁଁ ନିଜେ ନିଜ ପନ୍ଥାରେ ଦେଶସେବା କରୁଛି। ଆଚ୍ଛା କହିଲ, ତୁମେ କେବେ ଦେଶ ବିଷୟରେ ଚିନ୍ତା କର ମିନିଟିଏ? କଅଣ ଚିନ୍ତା କରୁଛ? ଯଦି କରୁଥାଅ, ତେବେ ମୁଁ ପରୀକ୍ଷା କରିବି। ଚିନ୍ତା କରିବାର ଅଭ୍ୟାସ ତୁମର ଅଛି କି ନାହିଁ, ସେଇଥିରୁ ଜଣାପଡ଼ିଯିବ। କୁହ, ଏଇ ଯେଉଁ ଭୂମି ଉପରେ ତୁମେ ଗୋଡ଼ ଦେଇ ଛିଡ଼ା ହୋଇଚ, ଏ ତ ପବିତ୍ର ଭୂମି। କିନ୍ତୁ ଏ ଭୂମି ମୋର। ମୁଁ ତାକୁ ଆହୁରି ପବିତ୍ର କରିବାକୁ ଇଚ୍ଛା କରୁଛି। କିମିତି କରିବି କହି ପାରିବ?"

ଶ୍ୟାମସୁନ୍ଦରଙ୍କର ଚିନ୍ତା କରିବାର ଅଭ୍ୟାସ ପରୀକ୍ଷିତ ହେଉଛି ଜାଣି ସେ ବିକଳ ହୋଇ ଉଠିଲେଣି। କିଛି ତ ଗୋଟାଏ କହିବାକୁ ହେବ। ସେ ହଠାତ୍ କହିପକାଇଲେ– "ଦେଇ ଦିଅନ୍ତୁ।"

"କଣ କହିଲ, ଦେଇ ଦେବି? ମାଗଣାରେ?"

"ହଁ ଦେଇଦିଅନ୍ତୁ। ଆଜିକାଲି ଭୂମି ସବୁ ଦିଆହେଉଛି। ସେ ଏକ ପ୍ରକାର ଯଜ୍ଞ। ସେଇ ଯଜ୍ଞରେ ଘିଅ ଢାଳିଲା ଭଳି ଏତକ ସ୍ୱାହା କରି ଦିଅନ୍ତୁ। ପବିତ୍ର ହୋଇଯିବ।"

"ତୁମେ କେତେ ଦେଲଣି ଶ୍ୟାମସୁନ୍ଦର?"

"ସେ ପ୍ରଶ୍ନ ଉଠୁନାଇଁ।"

"ଅର୍ଥାତ୍?"

"ମୋ ଜମି ଓ ଧନ ସମ୍ପତ୍ତିକୁ ମୁଁ ପବିତ୍ର କରିବାକୁ ଇଚ୍ଛା କରୁନାଇଁ। ଅପବିତ୍ର ମାର୍ଗରେ ମୁଁ ତାକୁ ଆଣିଛି। ସେଗୁଡ଼ାକ ଅପବିତ୍ର ରହଥାଉ।"

ବିପ୍ରଚରଣ ହସିଲେ। ହସ ମଉଳିଯିବା ପରେ କହିଲେ– "ହାଁ, ଏବେ ମାନିଗଲ ନା? ମୁଁ କଅଣ ଜାଣେନି କେଡ଼େ ଅପବିତ୍ର ଭାବରେ ତୁମେ ସମ୍ପତ୍ତି କରିଛ! କେତେ ବିଧବାଙ୍କୁ ବଡ଼ଦାଣ୍ଡ ପେଜ ନଳା ପାଖରେ ବସେଇ. କେତେ କୁଳବୋହୂଙ୍କୁ ଟଙ୍କା ଲୋଭ ଦେଖାଇ କଲିକତା ସହରରେ ବିକିଛ ଆଉ ମୁନାଫା ପାଇଛ। ପୁଲିସ୍ ସାଙ୍ଗେ ସଲା ହୋଇ କାହାର କେତେ ଘର ବାଡ଼ି ନିଜର କରିଛ। ତମପାଇଁ ନରକ ଅଛି ହେ ଶ୍ୟାମସୁନ୍ଦର, ନରକ ଅଛି! ଦେଖିଲ, ମୋ ସମ୍ପତ୍ତିରେ ଧୂଳିମଳି ଅଛି? କାହାର ଲୁହ ଟୋପାଏ ଖସିଛି? ସବୁ ଜଗନ୍ନାଥଙ୍କର ମହିମା। ଆସିବାର ଥିଲା, ଆସିଛି। ତେବେ, କାଲେ କିଏ କଅଣ କହିବ ଏଇଥିପାଇଁ ମୁଁ ଅନ୍ତତଃ ଏଇ ଜମିତକ ପବିତ୍ର କରିବାକୁ ଚାହୁଁଛି।"

ଶ୍ୟାମସୁନ୍ଦରଙ୍କୁ ଖରା କାଟିଲାଣି। ଭିତର ଖରା ବି ବିନ୍ଧିଲାଣି।

ବିପ୍ରଚରଣଙ୍କର ଭାଳେଣି ପଡ଼ିଲାଣି କାଳେ ଶ୍ୟାମ ଲେଉଟିପଡ଼ି ନାହୁଡ଼ ଖେଳେଇବ। କିନ୍ତୁ ଶ୍ୟାମ ସ୍ଥିତପ୍ରଜ୍ଞ ଲୋକ। ସଂଯମୀ। କେବଳ ସେ ଏତିକି କହିଲେ– "ଆଉ ଗୁଡ଼ାଏ ଖୋଲାଖୋଲି କାହିଁକି ହେବା? ଆପଣ ଜାଣନ୍ତି ମୋ କଥା, ମୁଁ ବି ଜାଣେ ଆପଣଙ୍କ କଥା। ଆପଣ କହିଲେ ଜମିକୁ ପବିତ୍ର କରିବାର ଉପାୟ ବତାଅ–ମୁଁ କହିଲି ଦେଇ ଦିଅନ୍ତୁ– ରକ୍ଷା ପାଇବେ। ବାଲିଆ ଜମି, ଘର ତୋଳିଲେ ଲୋକସାନ। ପାଣି ପାଖରେ ନାଇଁ। ପୋଖରୀ ଖୋଳେଇଲେ ଅପର୍ଯ୍ୟାପ୍ତ ଟଙ୍କା ଖର୍ଚ୍ଚ। ରାସ୍ତା କରିବାକୁ ଗଲେ କେତେ ଖର୍ଚ୍ଚ ହେବ। କିଏ ବା ସେ ଘରେ ରହିବ? ନାନାଦି ଅସୁବିଧା। ତେଣୁ ଆଜିକାଲି ତ କେତେକ ବିବାଦୀୟ, ବାଲିଆ, ଦେବୋତ୍ତର ଜମି

ଅକାମୀ ହୋଇ ପଡ଼ିଛି–ସେଇତକ ଦାନ ଦିଆଯାଉଛି। ଏହାର ନାମ ସାଧନା, ମାନବିନିଷ୍ଟ କଳ୍ପନା, କ୍ରାନ୍ତି, କେତେ କଅଣ! ଓହୋ, ଆମେ ନାଁରୁ କଅଣ ପାଇବା? ଭୂଦାନ ଯଜ୍ଞକୁ ଦେଇଦିଅନ୍ତୁ। ମିଛରେ ଖରା ତାତିରେ ଜମିଟାକୁ ଅନେଇ ଅନେଇ କିପରି ଏଠି ସୁନା ଫଳିବ ବୋଲି ସ୍ୱପ୍ନ ଦେଖୁଥିବେ ଯଦି ଶେଷକୁ ସବୁ ଅଙ୍ଗାର ହୋଇଯିବ।"

ବିପ୍ରଚରଣ ସେତେବେଳକୁ ରାଗିଗଲେଣି। କହିଲେ – "ଭୂଦାନ? ଦାନ? ଦାନ ଭୂଃ?" ଏଇ କଥାଟା କହି କହି ସେ ଛେପ ନେଣ୍ଡାଏ ତଳକୁ ପକାଇଦେଲେ। ତାସଲ୍ୟମିଶା କଥାଟା!

ଶ୍ୟାମସୁନ୍ଦର ଆଗକୁ ଚାଲିଲେ। ବିପ୍ରଚରଣଙ୍କୁ ଏଇଟା ବାଧିଲା। ତାଙ୍କର କ୍ରୋଧ ଶାନ୍ତ ହୋଇନାହିଁ। ତାଙ୍କ ପିନ୍ଧା କୁଞ୍ଚକୁ ଧରି ସେ ଗଣ୍ଠି ପକାଇ ପକାଇ କହିଲେ– "ଶ୍ୟାମସୁନ୍ଦର, ମୋ କଥା ମିଛ ହେବ ନାହିଁ। ମୁଁ ଏ ଜମିକୁ ପବିତ୍ର କରିବି, ଏଥିରେ ସୁନା ଫଳେଇବି। ମୁଁ ଗାଡ଼ିଗାଡ଼ି ଗଙ୍ଗୋଦକ ଏହା ଉପରେ ଆଣି ଢାଳିବି କି ଏଠି ତୁଳସୀ ଗଛ ଲଗାଇ ପବିତ୍ର କରିବି, ସେ କଥା ବିପ୍ରଚରଣ ଦୁନିଆକୁ ଜଣାଇଦେବ। ମୁଁ ପୁଣି ଦାନ କରିଦେବି? ଦେଖ ହେ, ଯେଉଁଦିନ ଏ ଜମିତକ ମୋର ହେଲା ସେ ଦିନ ଭୋଜିର ଦଶଗୋଟା ଖାସିର ଖର୍ଚ୍ଚ ଏଯାଏଁ ଏ ଭୂଇଁରୁ ଉଠିନାହିଁ। ତମେ କହୁଛ ଦାନ କରିଦେବି? ଭୂଃ.....।"

ଦୁଇଟା ଧୂର୍ତ୍ତ ଏଣ୍ଡୁଅ ମୁଣ୍ଡ ଟୁଙ୍ଗାରି ବିପରୀତ ଦିଗକୁ ଚାଲିଗଲେ। ବିସ୍ତୀର୍ଣ୍ଣ ଜମି ପୂର୍ବପରି ପଡ଼ିରହିଲା–ନିଶ୍ଚଳ–ତା ଉପରେ ଅଧିକାର କାହାର ନାହିଁ। କିଏ ଏ କଥା ବୁଝିଲା ନାହିଁ। କିଏ ବା ବୁଝିବ?

× × ×

ଯିଏ ସେ କଥା ବୁଝୁଛନ୍ତି, ବୁଝାଉଛନ୍ତି, ପାଦରେ ଚାଲି ଚାଲି ଗାଁକୁ ଗାଁ ଭୂଦାନ ଓ ନୂତନ ସମାଜର ବାର୍ତ୍ତା ବାଢ଼ୁଛନ୍ତି, ତାଙ୍କରି କଥା ବଜାର ବାଟଘାଟରେ ପଡ଼ିଛି। ଲୋକେ କାନ ଡେରି ଶୁଣୁଛନ୍ତି। ଜମି ଉପରେ ମାଲିକାନା ସ୍ୱତ୍ୱ କାହାର ନାହିଁ–ଖରା, ବର୍ଷା, ପବନ ଭଳି ଜମି ଉପରେ ଅଧିକାର ନାହିଁ–ଭୂମିହୀନକୁ ଭୂମି ଦିଅ, ଯଜ୍ଞ କର–ଏଇପରି କେତେ କଥା।

ସେଦିନ ସ୍ତ୍ରୀ ରାଜରାଣୀ ବିପ୍ରଚରଣଙ୍କୁ ଏଇ କଥା କହୁଥିଲେ। ସେବିକା ସଂପ୍ରଦାୟ ଗଢ଼ାଯାଇଛି। ରାଜରାଣୀ ସେ ସଂସ୍ଥା ନେତ୍ରୀ। ବିପ୍ରଚରଣଙ୍କୁ ଏ କଥା ଭଲ ଲାଗି ନାହିଁ। ତଥାପି ଗାଁ ଗହଳରେ, ସହର ବଜାରରେ ସ୍ତ୍ରୀଙ୍କର ନାଁ ପଡ଼ିବ। ଲୋକେ ପ୍ରଶଂସା କରିବେ। କେଉଁ ରିଟାୟାର୍ଡ଼ ସ୍ୱାମୀ ଏ କଥା ନ ଚାହେଁ? ପୁଣି ରାଜରାଣୀଙ୍କର ବୟସ ଖସିଛି। ତାଙ୍କୁ ଆଖି ଠାରି କେହି ନଓଯଓ୍ୱାନ୍ ରାସ୍ତା ଉପରେ ଇଙ୍ଗିତ ଦେବେ ନାହିଁ– ଏଇ ବିଶ୍ୱାସରେ ରିଟାୟାର୍ଡ଼ ସ୍ୱାମୀ ପରଦା ବାହାରକୁ ଦେଶସେବା କରିବାପାଇଁ ସ୍ତ୍ରୀଙ୍କୁ ଛାଡ଼ିଦେଇଛନ୍ତି।

ଲାଭ ବି ହେଉଛି। ଲାଭ ନ ଥାଇ ଦେଶସେବା ବଣିଜ ବି ଚଳିବ ନାହିଁ। ଆମେରିକାନ୍ ଦୁଧ ପିମ୍ପା ରାଜରାଣୀଙ୍କର ମାରଫତ୍‌ରେ ଅଛି। ଭାଗ୍ୟକୁ ଦୁଧିଆଳି ଗାଈ ଛଡ଼େଇ ଯାଇଚି। ଆମେରିକାନ୍ ଦୁଗ୍‌ଧର ଅର୍ଦ୍ଧେକ ବିପ୍ରଚରଣଙ୍କ ପିଲାପିଲି ସେବା ମାତ୍ର କରୁଛନ୍ତି। ଯେଉଁ ସହୃଦୟ

ମାର୍କିନ୍ ବନ୍ଧୁ ଭାରତର ଲକ୍ଷ ଲକ୍ଷ ଜୀର୍ଣ୍ଣ ଶିଶୁଙ୍କ ପାଇଁ ଦୁଗ୍ଧ ପ୍ରେରଣ କରିଥିଲେ, ତାହା ଦେଶସେବିକାଙ୍କ ହାତରେ ପଡ଼ି ସେବିତ ହେଉଛି, ଏଥିରେ ସନ୍ଦେହ ନାଇଁ। ତେଣୁ ବିଷୟଟାକୁ ଊର୍ଦ୍ଧ୍ୱ ଅଧଃ ଚାରିଆଡ଼େ ବିଚାର କରି ବିପ୍ରଚରଣ ସ୍ୱାମୀଙ୍କୁ ସଭାସମିତି ଓ ଜନକଲ୍ୟାଣ ପାଇଁ ବସିଥିବା ସଂସ୍ଥାଗୁଡ଼ିକରେ ନେତୃତ୍ୱ ନେବା ପାଇଁ ଛାଡ଼ିଦେଇଛନ୍ତି।

କଥାବାର୍ତ୍ତା ଏହିପରି ଚାଲିଥିଲା—

"ହଇଓ, ଏ ଚାଳିଶ ଏକର ଜମି ପଡ଼ିଆ ପଡ଼ିଛି। କିଛି ଗୋଟାଏ ସଙ୍ଗଠନ ନାଁରେ ଏହାର ହେପାଜତ ହୋଇପାରିବନି ? ତମ ମାଇପିଙ୍କଆଡୁ ଗୋଟାଏ କିଛି ପ୍ରସ୍ତାବ ଜିଲ୍ଲା କିଲଟରଙ୍କ ପାଖକୁ ଯାଉ।" ବିପ୍ରଚରଣ ଖଣ୍ଡିଏ ବିଡ଼ି ଟାଣୁ ଟାଣୁ ଏ କଥା କହିଲେ।

ରାଜରାଣୀ ନିଜର ମୁଣିଟିକୁ ଖୋଲି ଗୋଟାଏ ପ୍ରଚାରପତ୍ର ବାହାର କଲେ। ତାହା ହେଉଛି ବିନୋବାଜୀଙ୍କର ଆଗମନ ଓ ରହଣିର କାର୍ଯ୍ୟ ନିର୍ଘଣ୍ଟ। ସେହି ସ୍ଥଳକୁ ସେ ଆସିବେ ଦୁଇମାସ ପରେ। ବୁଦ୍ଧିମତୀ ରାଜରାଣୀ କଅଣ କରିବାକୁ ହେବ ସ୍ଥିର କରି ଦେଲେ। ଆଖିରେ ବିଦ୍ୟୁତ୍ ଝଲସିଲା। ମୁହଁରେ ହସ ଖେଳିଲା। ଚୋଟ ଦର୍ପଣଟିରେ ମୁହଁ ଦେଖିନେଲେ। ଯୌବନ କ୍ରାନ୍ତି ଡେଇଁଲାଣି। ଦାନରେ ବହୁ ଅଂଶ ବ୍ୟୟିତ ହୋଇଛି। ଦୁଃଖ ନାହିଁ।

କହିଲେ, "ଶୁଣ, ମୁଁ ତାର ବ୍ୟବସ୍ଥା କରିବି। ଆଜି ଗୋଟାଏ ମିଟିଂ ଅଛି କିଲଟର ସାହେବଙ୍କ ସଙ୍ଗେ। ଆଉ ସବୁ ଲୋକ ଆସିବେ। ଜମି ଖୋଜା ଚାଲିଛି କେଉଁଠି ମେଳା ବସିବ। ଠିକ୍ ବେଳେ ମନେ କରି ଦେଇଛ। ମଲା, ମୋ ମନକୁ ଏ ସବୁ ବ୍ୟବସାୟ ବୁଦ୍ଧି କଅଣ ଆସୁଛି ? ସତେ ଗୋ, ଆମର ଚାଳିଶ ଏକର ଜମି –ମାଆ ବସୁନ୍ଧରା ଉପରକୁ ଅନେଇଁ ପଡ଼ିଚି। ତା ଉପରେ କେଉଁ ମହାପୁରୁଷଙ୍କ ପାଦ ପଡ଼ିଲା ନାଇଁ – ଗାଡ଼ି ମଟର ତା ଛାତିକୁ ଛୁଇଁଲା ନାଇଁ – ହଜାର ହଜାର ଲୋକଙ୍କର ରୋଷ ବସିଲା ନାହିଁ। ଏ କେମିତି କଥା ? ମୁଁ କରିଦେବି। ଆଚ୍ଛା, ମତେ କଅଣ ଦେବ କହିଲ ?"

ପ୍ରଣୟ ମିଥ୍ୟା କଥା। କେତେ ବର୍ଷ ତଳେ ଏମିତି ଏକାଠି ବସି କଥା କହୁ କହୁ ରାଜରାଣୀ ବିପ୍ରଚରଣଙ୍କୁ 'କଅଣ ଦବ ?' କହି ଉତାଲା କରୁଥିଲେ। ସେଇ ଅଭ୍ୟାସ ରହିଯାଇଛି। କେହି କାହାକୁ କିଛି ଦେବାର ଶକ୍ତି କାହା ପାଖରେ ନ ଥିଲେ ବି, ପ୍ରଣୟ ରହିଛି, ସ୍ମୃତି ରହିଛି।

"ଦେବି ? କଅଣ ଦେବି—ସବୁ ତ ନେଇଚ ! ଏଣିକି ଆହୁରି ଦେବା ପାଇଁ ଚେଷ୍ଟା କରିବି। ପାରୁଛି କି ନାଇଁ କହି ପାରିବି ନାଇଁ।" ଏତକ ରସିକତା କରି ରିଟାୟାର୍ଡ଼ ବିପ୍ରଚରଣ କହିଲେ।

ଖିଲେ ପାନ ମକଚି ମକଚି ରାଜରାଣୀ ପାଟି ଭିତରକୁ ପକେଇ ଦେଲେ। କହିଲେ– "ସାତ ଦିନ ଭିତରେ ସବୁ ଠିକ୍ ହୋଇଯିବ। ଯଦି କେଉଁଆଡୁ ବିରୋଧ ଆସେ, ତେବେ ଭ୍ରୂ ନଚେଇ, ନାକକାନ୍ଦଣା କାନ୍ଦି, ଆମର ଯାହା କିଛି ଅସ୍ତ୍ର ଅଛି ତାହା ଫୋପାଡ଼ି ଏ କାର୍ଯ୍ୟ ସିଦ୍ଧ କରିବି।"

ବିପ୍ରଚରଣ ଭାଗ୍ୟ ରେଖା ଗଣିଲେ। ରାଶିଫଳ ଦେଖିଲେ।

× × ×

ଦୁଇ ମାସ ପରେ...

ବିପ୍ରଚରଣଙ୍କର ଚାଳିଶ ଏକର ଧରିତ୍ରୀ ହସିଲା। ମ୍ୟୁନିସିପାଲିଟି ରାସ୍ତା ତିଆରି କରିଛି–ପିଚୁ ଢଳା ରାସ୍ତା। ଚାରିଆଡ଼େ କଳକୂଅ। ସ୍ଥାନଟା ନାମିତ ହେଲା 'ବିନୋବା ନଗର'। ହଜାର ହଜାର ଲୋକଙ୍କର ସମାଗମ। ହଜାର ହଜାର ନଡ଼ିଆ ଚାଞ୍ଚରେ ଛାମୁଣ୍ଡିଆ ବନ୍ଧାଯାଇଛି।

ପାଖରେ ପୋଖରୀଟିଏ ଖୋଳାଯାଉଛି। ଜଳର ଆଧାର। ପାଖଆଖ ଦୁଃଖୀ, ଶୋଷୀ ଜନ ବ୍ୟବହାର କରିବେ ଏଇ ପୋଖରୀରୁ। ନିଜେ ବିନୋବାଜୀ ପ୍ରଥମେ ଚଳୁଏ ପାଣି ଏଠାରେ ଗ୍ରହଣ କରି ଜଳାଶୟ ଉଦ୍‌ଘାଟନ କରିବେ।

ଚାରିଆଡ଼େ ଆନନ୍ଦ। ବିପ୍ରଚରଣଙ୍କର ଆନନ୍ଦ କ୍ରମେ ବଢୁଛି। ଏତେ ବଢୁଛି ଯେ ସେ ଥରେ ଥରେ ଝୋଲାମରା ହୋଇଯାଉଛନ୍ତି।

ଶ୍ରୀମତୀ ରାଜରାଣୀ ମତ୍ସ୍ୟ ବିଭାଗକୁ ଆବେଦନ କରିଛନ୍ତି ଯେ ନୂଆ ପୋଖରୀଟିରେ ଏତିକି ବେଳୁ ଯାଆଁଳ ଛାଡ଼ିଦିଅନ୍ତୁ। ମାଛଗୁଡ଼ିକ ଅହିଂସ ଲୋକଙ୍କ ସମାଗମରେ ଶେଷକୁ ଅହିଂସ ହୋଇଯିବେ।

ଘର ତୋଳା ଚାଲିଛି। ବିପ୍ରଚରଣ ଘରତୋଳା ପ୍ରସ୍ତାବକୁ ଟିକିଏ ମାଠିମୁଠି ଛାତଟାକୁ ଯେପରି ସିମେଣ୍ଟ ଚାଦର ଦେଇ ବନେଇବାକୁ ହେବ, ସେଇ ପ୍ରସ୍ତାବ ଦେଇଛନ୍ତି। ଫଳରେ କେତୋଟି ସୁନ୍ଦର ବୁଦବୁଦିକିଆ କ୍ୱାଟର ତିଆରି ସରିଲାଣି। ରାଜ୍ୟରୁ ବହୁ ସମ୍ଭ୍ରାନ୍ତ ଲୋକେ ଆସିବେ। ସେମାନଙ୍କର ଯୋଗ୍ୟ ଆବାସଗୁଡ଼ିଏ ନ ତୋଳିଲେ ହେବ କିପରି?

ଏଇ ଚାଳିଶି ଏକର ଜମି ପାଖେ ପାଖେ ଯେଉଁ ବାବୁମାନେ ଜମି କିଣି ଏ ଯାଏ ପକେଇ ରଖିଥିଲେ, ସେମାନେ ବିପ୍ରଚରଣଙ୍କ ବୁଦ୍ଧିକୁ କେଉଁ ଭାଷାରେ ତାରିଫ୍ କରିବେ ବୁଝିପାରିଲେ ନାହିଁ।

ତାଙ୍କ ଭିତରୁ ସଦାଶିବ ମିଶ୍ରେ କହିଲେ– "ହଇଏ ବିପ୍ରଚରଣ, କି ବୁଦ୍ଧିଟାଏ ନ ଖଟେଇଲ? ବେଳ ଉଣ୍ଡି ବାଲିଆ ଜମି ତାଡ଼ି ପୋଖରୀ ଖୋଳେଇଲ, ରାସ୍ତା ପକେଇଲ, ଘର ତିଆରି କଲ, ପାଇଖାନା ବସାଇଲ, ପୁଣି ପୋଖରୀ ଭିତରେ ମାଛ ଖେଳେଇଲ। ଅଥଚ ହାତରୁ ଗୋଟିଏ ପଇସା ଲାଗିଲା ନାହିଁ। କି ଦୂରଦୃଷ୍ଟି ସତେ!"

ନିଧି ପଟ୍ଟନାୟକ କଥାର ଖିଅଟାକୁ ଲମ୍ବେଇ କହିଲେ– "ଆମ ପଟକୁ ରାସ୍ତା ଛୁଉଁଛି। ପୋଖରୀଟା ତ କୋଠ କରିଦେବା। କଳକୂଅ ତ ସବୁଆଡ଼େ ବସିଗଲାଣି। ଆଉ କଅଣ ସତେ ଡିଷ୍ଟ୍ରିକ୍ଟ ବୋର୍ଡ଼ କୂଅଗୁଡ଼ାକୁ ଉଠାଇ ନେବ? ଯାହାହେଉ, ପାରିବାରପଣ ଦେଖେଇଲ ବିପ୍ରଚରଣ।"

ସମସ୍ତେ ଏହିପରି କଥା କହିଲେ। ଛାତ୍ରାବାସର ସାଙ୍ଗ ଭାଇ ଥାଳୀରୁ ମାଂସ ଖଣ୍ଡି ଉଠାଇ ଆଣିବାବେଳେ ଯେଉଁ ଦିଗ୍‌ବିଜୟ ଢଙ୍ଗ ବିପ୍ରଚରଣଙ୍କର ଆୟତ୍ତ ଥିଲା, ଆଜି ଶୃଙ୍ଖଳାରେ ବାଳିଆ ପିଟି ସେ ଦେଖେଇ ଦେଲେ ଯେ କେଉଁ ମୂର୍ଖ ସିନା ଜମି ଦାନ ଦେଉଛି, ସେ ଏବେ ମାଛତେଲରେ ମାଛ ଭାଜି ଦେଲେ। ଆଃ, ଖଣ୍ଡ ଖଣ୍ଡ ଭଜା ମାଛ– କି ଚିକ୍‌କଣ!

ବିନୋବାଜୀ ତାଙ୍କ ପ୍ରାର୍ଥନାନ୍ତିକ ଭାଷଣ ଶେଷ କରି ଅନ୍ୟ ଗାଁକୁ ଗଲେଣି। ମେଳା ମଉଳିଲା। ତପସ୍ୱୀ, ପରିବ୍ରାଜକ–ସେ କାହୁଁ ବୁଝିବେ ମଣିଷ ହିଁ ମଣିଷ? ତା'ର ହୃଦୟ ପରିବର୍ତ୍ତନ ଏତେ ସହଜ କଥା ନୁହେଁ।

ଏବେ ସେଇ ଜମି ଉପରେ ସୁନ୍ଦର ରାସ୍ତା, ଉଦ୍ୟାନ, ପୁଷ୍କରିଣୀ ଶୋଭୁଛି। ଘର ବି ଭଡ଼ାରେ ମିଳୁଛି। ମାଛ ବଡ଼ ବଡ଼ ହେଲେଣି। ଗୋଟାଏ ଗୋଟାଏ ପାଞ୍ଚସେରିଆ ମିଳିବେ।

ଏ ସବୁର ଅଧୀଶ୍ୱର ବିପ୍ରଚରଣ। ବିନୋବାଙ୍କର ପଦଧୂଳି ପଡ଼ି ଷ୍ଟେସନ ପାଖ ଜମି ପବିତ୍ରତର ହେଲା। ଗାଡ଼ି ଗାଡ଼ି ଗଙ୍ଗୋଦକ ଧାଡ଼ି ଧାଡ଼ି ତୁଳସୀ ବୃକ୍ଷ ରୋପଣ ଦରକାର ନାହିଁ।

ଦରକାର ଥିଲା ଚାଇଁଆ ବୁଦ୍ଧି। ସେଇ ବୁଦ୍ଧିତକ ଏବେ ପ୍ରୟୋଗ କଲେ ଓ କରୁଛନ୍ତି ବହୁ ବିପ୍ରଚରଣ।

ଶ୍ୟାମସୁନ୍ଦର ଥରେ ଦେଖାକରି କହିଲେ– "ହାରିଗଲି ଗୁରୁଦେବ, ନମସ୍ତେ! ସେଦିନ କାହିଁକି ଯେ ତତଲା ବାଲି ଉପରେ ଛିଡ଼ା ହୋଇ ମା' ଧରିତ୍ରୀକୁ ଦର୍ଶନ ଦେଉଥିଲ ଏବେ ବୁଝିଲି। ଆପଣଙ୍କ ଭଳି ଲୋକ ନ ଥିଲେ ପୃଥିବୀଟା ନିରସ ଜଣାପଡ଼ନ୍ତା।"

ରାଜରାଣୀ ଘରୁ ବାହାରିଆସି ଅଣ୍ଟାରେ ପଣତ ଖୋସୁ ଖୋସୁ କହିଲେ– "ମୋର କଅଣ ଭାଗ ନାଇଁ–ଖାଲି ତାଙ୍କରି? ନାରୀ ଆଦ୍ୟାଶକ୍ତି; ସେ ଶକ୍ତି ଦେଲା ବୋଲି ସିନା ତା ଶକ୍ତି ଆଗରେ କଲେକ୍‌ଟର, ମ୍ୟୁନିସିପାଲିଟି, ଡିଷ୍ଟ୍ରିକ୍‌ଟବୋର୍ଡ଼ ସବୁ କାବୁ ହୋଇଗଲେ।"

ତେଣେ ପରିବ୍ରାଜକ ଗାଁକୁ ଗାଁ ବୁଲୁଛନ୍ତି। ସତ୍ୟ ସମାଚାର ପ୍ରଚାର କରୁଛନ୍ତି। ତାଙ୍କର କଣ୍ଠଧ୍ୱନି ଭାସି ଆସୁଛି–ନିର୍ମଳ, ନିରହଙ୍କାର। ତାହା କିନ୍ତୁ ମଣିଷର ହୃଦୟକୁ ଛୁଉଁ ନାହିଁ। ମଣିଷ ମଣିଷ ଭାବରେ ରହିଗଲା – ଅତି ଦୁର୍ବଳ –ଅତି କଦାକାର – ଅତି ଅମଣିଷ। ତାହାହିଁ କଅଣ ତା'ର ପ୍ରକୃତ ଓ ସତ୍ୟ ପରିଚୟ ନୁହେଁ?



# ଏ ନିଶା କାହିଁକି ?

ଲୋକେ ଦୁଃଖ ଭୁଲିବାକୁ ମଦ ପିଅନ୍ତି। କ୍ଳବ ଘରେ ଦଶଜଣଙ୍କ ସଙ୍ଗେ ମିଶି ହଇ-ହିଲୋଡ଼ କରିବାକୁ ସନ୍ଧ୍ୟାଟା ସେଇଠି ବିତାନ୍ତି। ଘରଜଞ୍ଜାଳରୁ ମୁକ୍ତ ହେବା ପାଇଁ ନାନା ପ୍ରକାର ସ୍ୱାଦର ଆୟୋଜନ କରନ୍ତି। ସମସ୍ତେ ଏ କଥା ଜାଣନ୍ତି। ସୁରାପାୟୀକୁ ସେଥିପାଇଁ ସମସ୍ତେ ଘୃଣା କରନ୍ତି ନାହିଁ। କେଉଁଠି ହେଲେ ଅନ୍ତରର ଅନ୍ତର ଭିତରେ ତା ପାଇଁ ଟିକିଏ ସ୍ନେହ ଥାଏ।

ଯିଏ ନିଜକୁ ଭସାଇ ଦିଏ, ସେ ଭାବେନି ସେ କେତେ ଦୂର ଭାସିଯାଉଛି। କୂଳରେ ଛିଡ଼ା ହୋଇଥିବା ଦେଖଣାହାରୀ ବୁଝିପାରନ୍ତି ଲୋକଟା କେତେ ଦୂର ଭାସିଯାଇଛି ଓ କେବେ କେଉଁଠି ସେ ବୁଡ଼ିଯିବ।

ଏଥର ନିର୍ବାଚନରେ ପ୍ରିଜାଇଡ଼ିଂ ଅଫିସର ହୋଇ "ଓଡ଼ିଶାର ଗାଁଗହଳକୁ ଯାଇପାରି ନାହିଁ। ପୂର୍ବଥରମାନଙ୍କର ବଳଦ ଏବେ ବି ଜମି କର୍ଷଣ କରୁଛନ୍ତି, ଶଗଡ଼ ବୁହାଉଛନ୍ତି—ବଳଦ ବଳଦରେ ରହିଛି। ଆଗେ ବରଗଛ ଥିଲା—ଝଙ୍କାଳିଆ ବରଗଛ। ଗାଁ ଗାଁକେ ଗାଁମୁଣ୍ଡ ପାଖରେ ବରଗଛ ଏବେ ବି ରହିଛି। ମହା ଆଶ୍ୱସନାର ପ୍ରଚ୍ଛାୟମାନ ଏଇ ବନସ୍ପତି ତଳେ ଲୋକେ ଜାନିଯାତ୍ରାର ଆୟୋଜନ କରନ୍ତି। ସାଙ୍ଗମେଳରେ ବସନ୍ତି। ବରଗଛ ସେମାନଙ୍କୁ ଗୋବର୍ଦ୍ଧନ ଗିରି ଭଳି ଆଶ୍ରୟ ଦେଇଥାଏ।

ଏଥର ନିର୍ବାଚନରେ ଏଇ ଝଙ୍କାଳିଆ ବରଗଛକୁ ସମସ୍ତେ ଭୁଲିଗଲେ। ତା ଦେହର ସୁନ୍ଦରମୁଣ୍ଡୀ ବାଉତି ଠାକୁରାଣୀଙ୍କୁ ବି ଭୁଲିଗଲେ।

ତା ଜାଗାରେ ଏବେ ବସ୍ତିସାରା ଚାଳଘର। ଦରିଦ୍ର ଓଡ଼ିଆର ସୁରମ୍ୟ ପ୍ରସାଦ ଏଇ ଚାଳଘର। କେତେ ଜଣଙ୍କର ବା ଏଇ ଚାଳଘର ଅଛି ? ସୂର୍ଯ୍ୟ, ଚନ୍ଦ୍ର, ତାରାଙ୍କର କିରଣକୁ ନିଜ ଅନ୍ତରରେ ଧାରଣ କରୁଥିବା ଚାଳଘରଗୁଡ଼ିକ ଆଜି ଓଡ଼ିଶାର ଗାଁରେ ଗାଁରେ ରହିଛି। ଭିତରେ ଓଡ଼ିଆ ଘରଣୀ ସଂଧ୍ୟା ଦୀପ ଧରି ନଇଁଯାଏ ତୁଳସୀ ଲତା ପାଖକୁ। ଦୁଇ ସନ ଲାଗେ ଲାଗେ ଘର ଜଳିଥିଲା। ଏଥର ବି ଜଳିବ। ପୋଡ଼ା କାଠ, ପୋଡ଼ା ଅଙ୍ଗାରରୁ ଜନ୍ମ ନେବ ନୂଆ ଚାଳଘର। ସାମ୍ୟବାଦ, ନୂଆ ସାମ୍ୟବାଦ।

ସବୁ ଘର ଏମିତି ଜଳେ—ଜଳିବ। କାହାର ଭିତର ଜଳୁଛି—କାହାର ବା ବାହାର। ଯୋଜନା ଚାଲିଛି ତା ବାଟରେ, ଲୋକେ ଚାଲିଛନ୍ତି ତାଙ୍କ ବାଟରେ। ଚାଳଘର ରହିଛି। ଲୋକେ ବାହାରୁ ପଶିଗଲେ ଭିତରକୁ, ଆଗେ ତାଙ୍କୁ ଅଭ୍ୟର୍ଥନା କରିବ ଗୃହସ୍ଥର ଗୋରୁ ଗୋହାଳ—ତା ପାଖରେ ଛେଳି ମେଣ୍ଢା ଖୁଆଡ଼। ପୁରୀଷ, ମୂତ୍ର, ପଚାଖତ, କୁଟା; ଯେତେକ ଆବର୍ଜନାର ଦୁର୍ଗନ୍ଧ ଭାସିଆସିବ। ନାଗରେ ଲୁଗା ଦେଇ ବି ଜଠର ଭିତରୁ ଯାହା ବାହାରିବାର ଉପକ୍ରମ କରିବ, ତାହାକୁ ସହି ନେଇ ଆଗନ୍ତୁକ ଦଉଡ଼ି ପଳେଇବ ଯୋଜନ ଦୂରକୁ।

ଦୁଇ ଦୁଇଟା ନିର୍ବାଚନ ପରେ ମିଳିତ, ଅମିଳିତ, ସମ୍ମିଳିତ, ପ୍ରୀତ, ଅପ୍ରୀତ— ସବୁ ପ୍ରକାର ମନ୍ତ୍ରୀତ୍ୱ ପରେ ଚାଳଘର ରହିଛି—ରହିଥିବ। ସମସ୍ତଙ୍କୁ ସନ୍ତୁଷ୍ଟ କରିବାକୁ ଓଡ଼ିଆ ସମସ୍ତଙ୍କ ଥାଳରେ ଭୋଟ ଦେଉଥିବ।

ଏ ତ ଆମର ପରମ୍ପରା। ବେଦ, ଉପନିଷଦ୍, ପୁରାଣ ତ ଏଇସବୁ ବାଣୀ ଆମକୁ ଶୁଣାଉଛି—ସମସ୍ତଙ୍କୁ ସନ୍ତୁଷ୍ଟ କର—କାହା ମନରେ ଦୁଃଖ ଦିଅନାହିଁ। ଭାରତ ବନ୍ଦ୍ୟ ଓଡ଼ିଆର ଏଇ ସମସ୍ତଙ୍କୁ ସନ୍ତୋଷ ଦେବାର ଇଚ୍ଛା ନିର୍ବାଚନ-ଥାଳରେ ଆଚାଣ୍ଡାଳ ବ୍ରାହ୍ମଣଙ୍କୁ ମାଂସ ପଲାଉ ପରିବେଷଣ କରୁଛି।

ଆଉ ରହିଲା ମଶାଲ। ଏ ତ ସବୁବେଳେ ସମାନଭାବରେ ଜଳେ ନାହିଁ। କେତେବେଳେ ପ୍ରବଳ, କେତେବେଳେ ଦୁର୍ବଳ, କେତେବେଳେ ଧୂମେଇ ଧୂମେଇ ମଶାଲ ଜଳେ।

ମଶାଲ ଜଳେ ତୈଳାକ୍ତ ଦେହରେ। ଧୀର ପବନ ସ୍ରୋତ ତା'ର ଜ୍ୱଳନ ପାଇଁ ଦରକାର। ଗାଁବାଲା ମଶାଲକୁ ଚିହ୍ନନ୍ତି—ରାଣୀ ଆଉ ଦ୍ୱାରୀ ମୁହଁ ପାଖରେ ଯେତେବେଳେ ମଶାଲ ଖଣ୍ଡକ ଏପଟ ସେପଟ ହେଉଥାଏ ରାଣୀ ଗୀତ ବୋଲି ନାଚୁଥାନ୍ତି, ଦ୍ୱାରୀ ବି ରାଣୀଙ୍କ ପୃଷ୍ଠାଙ୍ଗକୁ ଛୁଇଁଦେଇ ନାଚିଯାନ୍ତି। ସେତେବେଳେ ମଶାଲବାହକଙ୍କର ଶକ୍ତି ଥିବା ଦରକାର କେଉଁଆଡ଼କୁ ମଶାଲ ଦେଖାଇ ରାଣୀଙ୍କ ନୃତ୍ୟ ଓ ସୌନ୍ଦର୍ଯ୍ୟକୁ ଉଜ୍ଜ୍ୱଳ କରିବ, ଆଉ ଠିକ କେତେବେଳେ ଦ୍ୱାରୀର ମୁହଁ ପାଖରେ ମଶାଲ ହଲେଇବ।

ଆଜି ରାଣୀ ଥାଇ ନଥିଲାପରି। ଦ୍ୱାରୀବହୁଳ ଏ ଓଡ଼ିଶାଟା କେବଳ ଦରବାରୀ କନାଡ଼ା ଗାଇବାରେ ବ୍ୟସ୍ତ। ମଶାଲ ଦେଖେଇ ଦେଖେଇ କେତେ ବାଟ ବା ଆମେ ଯିବା ? ଯେ ଧରିଥିବ ସେ କିଛିକାଳପରେ ତେଲେଇଯିବ, ଆଉଯାହା ମୁହଁ ପାଖେ ମଶାଲ ଏପଟ ସେପଟ ହେଉଥିବ, ତା ମୁହଁର ଚର୍ବି ତରଳି ଯିବ—ବୋହିଆସିବ ଗୋଟିଏ ଧାରାରେ।

ଧନୁଶରଧାରୀ ରାମଚନ୍ଦ୍ର, ଲକ୍ଷ୍ମଣ, ସୁର ଅସୁରଙ୍କ ଯୁଗ କାଳ ପ୍ରବାହରେ ଗଡ଼ିଯାଇଛି। ତଥାପି ଓଡ଼ିଶାର ବଣ ଜଙ୍ଗଲ ଉହାଡ଼ରେ ଧନୁ ଅଛି, ଶର ବି ଅଛି—ଶରାହତ ହେବା ଭଳି ମଣିଷ ବି ଅଛନ୍ତି। ବୀର ହୁଙ୍କାରରେ ଧନୁଶର ଧରି କ୍ଷେପି ଆସିବାର ଭଙ୍ଗୀ ଆଜି ଓଡ଼ିଶାରେ ଘରେ ଘରେ ନ ହେଲେ ବି କେଉଁଠି କେଉଁଠି ଦେଖିବାକୁ ମିଳେ। ଗୁଳା ବାରୁଦର ପୂର୍ବପୁରୁଷ ଏଇ ଧନୁଶର ଏବେ ବି ବ୍ୟବହୃତ ହେଉଛି। ପୁଷ୍ପ ଧନ୍ୱାଙ୍କର ଧନୁ ଦେହରୁ କେତେ ପୁଷ୍ପଶର ଖସି ଆସି ବାଜିଛି ରାଣୀ, ମହାରାଣୀ, ତିଳୋତ୍ତମା, ମେନକା, ଉର୍ବଶୀଙ୍କ ବକ୍ଷ ପଞ୍ଜରରେ।

ଓଟ ପିଠିରେ କୁଜାହୋଇ ବସିବା ଅପେକ୍ଷା ସିଧାସଳଖ ରାଜରାସ୍ତା ଉପରେ ଚାଲିବା ଭଲ। ମରୁଭୂମିର ଓଟ ଆଜି ନଦୀମାତୃକ ଓଡ଼ିଶାରେ ପଦ ରଖିଯାଇଛି। ବିଦେଶୀ ଓଟ ଏକା ଥରକେ ଶହେ ଗ୍ୟାଲନ୍ ପାଣି ରଖେ ତା'ର ପାକସ୍ଥଳୀରେ। ସେଥିରୁ ଟିକିଏ ଟିକିଏ ପିଇ ତୃଷା ନିବାରଣ କରେ। ସେ କେତେବେଳେ ପିଏ, କେବେ ମରୁଭୂମି ସହିତ ଯୋଗାଯୋଗ ରଖେ ଜାଣିବା ସହଜ ନୁହେଁ। ଏହି ଓଟ ଆଜି ଜମାଏତମାନଙ୍କ ସହ ଓଡ଼ିଶାରେ ଘୂରି ବୁଲୁଛି।

ନାରୀ ହିଁ ଏକମାତ୍ର ତାରକା। ଅଶାନ୍ତ ପ୍ରାଣରେ ଶାନ୍ତିର ପ୍ରଲେପ ଢାଳିବାପାଇଁ ଚନ୍ଦ୍ରର ଜ୍ୟୋତି ସେତେ ଉପାଦେୟ ନୁହେଁ। ଚନ୍ଦ୍ର ସବୁ ଧରାପକାଇ

ଦିଏ। ଦୀପ୍ତ କରିବା ତା'ର ସ୍ୱଭାବ। ଏତେ ଦୀପ୍ତି ଆମର ଦରକାର ନାହିଁ। ଅଭିସାରିକା ପାଇଁ କ୍ଷୀଣ ଜ୍ୟୋତିର ନକ୍ଷତ୍ରମଣ୍ଡଳୀ ଆମର ବାଞ୍ଛନୀୟ। ପ୍ରମତ୍ତ ଆନନ୍ଦ ବିଭୋର ପୁରୁଷ ପ୍ରତି ଜ୍ୟୋତ୍ସ୍ନା ହୁଏତ ଉତ୍ତେଜକ ହୋଇପାରେ; କିନ୍ତୁ ଯେ ନାରୀ ଦୟିତ ସହିତ ମିଳିତ ହେବା ପାଇଁ ଧୀର ପଦକ୍ଷେପରେ ସଙ୍କେତ ସ୍ଥଳକୁ ଯାଇଛି, ତା ପାଇଁ ନୀଳ ପ୍ରଶାନ୍ତ ଆକାଶର କେତୋଟି ମୁହଁଲୁଚା, ଆଖିଝିପା, ଝିପିଝିପି-ହସା ତାରକା ଦରକାର।

କେତନରେ ତାରକା ଚିହ୍ନ ଧରି ନାରୀ ଚାଲିଛି ଆଜି ଦେଶସେବା କରିବା ପାଇଁ। ଏହାର ପୂର୍ବପୁରୁଷ ଛାଞ୍ଚୁଣୀମୁଠା ଦୁଃଖରେ ପଡ଼ିରହିଛି ଓଡ଼ିଶାର ଅଗଣିତ ଗୃହାଙ୍ଗନରେ। ସେ ଅଙ୍ଗନରେ ହୁଏତ ମଳିନତା ଆଉ ନାହିଁ। ଚାଞ୍ଚୁଣୀ ଆଉ କାହାକୁ ସଫାକରିବ ? ଭିତରଟା ପରିଷ୍କାର ଥିବାରୁ ସିନା ବାହାରଟାକୁ ପରିଷ୍କୃତ କରିବା ପାଇଁ ଏତେ ଆୟୋଜନ ?

ଭାବୁଥିଲି, ସେମାନେ କେଉଁ ଦେଶରେ ଜନ୍ମ ନେଲେ, କନ୍ୟା ଥାଇ ବଧୂ ଭାବରେ କାହାର ଚିତ୍ତ ଶିଖରକୁ ଜ୍ୟୋତ୍ସ୍ନା ପ୍ଳାବିତ କଲେ; କିନ୍ତୁ ଦେହ ରଖିଗଲେ ଓଡ଼ିଶା ଭୂଇଁରେ...ସେ ଦେହ, ଦେହ ନ ଥିଲା, ଥିଲା ମନ୍ଦିର। ସେ ମନ୍ଦିର ଉପରେ କମ୍ୟୁନିଷ୍ଟ ଇଂଜିନ୍, କଂଗ୍ରେସୀ ଚକ୍ର ସୋସିଆଲିଷ୍ଟ ଟ୍ରକର ବଡ଼ି' ମାଡ଼ିଗଲା। ଶତଛିନ୍ନ ଶିରାପ୍ରଶିରାରୁ ଆଦିମ ରକ୍ତସ୍ରୋତ ପାଇକଭୂମିର ଗୈରିକ ରାଜପଥ ଉପରେ ଢଳିଗଲା। ଓହୋ, ଆହା, କହି କେତେ କ୍ଷଣ ମୁଣ୍ଡକୁ ନୁଆଇଁବାକୁ ପଡ଼ିଲା। ତା'ପରେ ଇଂଜିନ୍ ଚାଲିଲା, ଟ୍ରକ୍ ଛୁଟିଲା, ଜିପ୍ ଦୌଡ଼ିଲା...ସବୁ ଉଛନ୍ନ ଗତିରେ ଚାଲିଲା, ଯେପରି କିଛି ଘଟିନାହିଁ।

ସେମାନେ ଶହିଦ୍ ହେଲେ—ତାହା ସଙ୍ଗେ ଲଢ଼ିବାକୁ ଆସିଥିଲେ ସେମାନେ ଜାଣନ୍ତି ନାହିଁ। କିଏ ତାଙ୍କୁ ମାରିଲା ସେମାନେ ଜାଣିଲେ ନାହିଁ। ଅଥଚ ପ୍ରଭାତ ସୂର୍ଯ୍ୟ ତାଙ୍କୁ ଆଉ ଏକ ନୂଆ ଦିନର ଆସ୍ୱାଦ ଦେଇଥିଲା। ହସ ଖୁସିରେ ସେମାନେ ଅଧୀର ହୋଇ ଯାଇଥିଲେ ଓଡ଼ିଶାର ବଣ ପାହାଡ଼ର ପ୍ରକୃତି ଦେଖି।

ଲୋକକ୍ଷୟ, ଅର୍ଥବ୍ୟୟ। ଲୋକର ଉଭଟ ପାଗଳାମି ଦେଖୁ ଦେଖୁ ସ୍ଥିର କରିନେଲି ଏଥର ଯିବିନାହିଁ ଭୋଟ କେନ୍ଦ୍ରକୁ। ପୂର୍ବର ବିନୋଦିନୀ ଆସି ପୁଣି ଧିକ୍କାର ଦେବ; ପୂର୍ବର ଛାୟାମୂର୍ତ୍ତି ମୃଣାଳିନୀ ମୋ ଆଗରେ ଉଭା ହୋଇ ପଚାରିବ—ତୁମେ ତ ବେଶ୍ ସତେଜ ଅଛ, ବୁଢ଼ା ହୋଇନ ? ବୋଧହୁଏ ଜୀବନରେ କିଛି ପାଇଛ—ମାନେ କିଛି ଅନୁରାଗ, ସ୍ନେହ, ପ୍ରେମ, ଯାହା ତୁମକୁ ନୀଳିମ ରଖିଛି...ତୁମେ ବ୍ୟତିକ୍ରମ।

ମୁଁ ହୁଏତ ଚିତ୍କାର କରି କହିଥାନ୍ତି...ମୁଁ ବ୍ୟତିକ୍ରମ ନୁହେଁ... ଯେଉଁମାନେ ଭୋଟ ଦେଇ ମରିଗଲେ ସେମାନେ ବ୍ୟତିକ୍ରମ...କାହିଁକି ବଞ୍ଚିଲେ ନାହିଁ ? ଦାନ୍ତରେ ମାଟି ଖୋଳି, ସର୍ବାଙ୍ଗ ଯେତେବେଳେ ମରଣାନ୍ତକ ପୀଡ଼ାରେ ଛିଣ୍ଡିଯାଇଥିଲା, ଅଥଚ ପାଖରେ ଡାକ୍ତର ନାହିଁ, ଡାକ୍ତରଖାନା ନାହିଁ ଯେ ତୁମକୁ ମରଣ ମୁହଁରୁ ବଞ୍ଚେଇବ,—ପୀଡ଼ା, ଅତ୍ୟାଚାର ଓ ଦହନରେ ଯେତେବେଳେ ମାଟିକୁ ହିଁ ଗ୍ରାସ କରୁଥିଲ, ସେତେବେଳେ ଭାବି ନ ଥିଲ କି ସବୁ ଝୁଟା, ସବୁ ରଙ୍ଗ ବେରଙ୍ଗ ?

ମରିଯାଇଛ ଭଲ ହୋଇଛି, କାରଣ ତମେ ହଠାତ୍ ମରିନାହଁ। ମୃତ୍ୟୁ ସହିତ କଥାବାର୍ତ୍ତା କରି ଗୋଟାଏ ଆପୋଷ ମୀମାଂସା କରି ମରିଛ। ନୁହେଁ କି ବିନୋଦିନୀ ? ଆଉ ମୃଣାଳିନୀ ତ ମତେ ଆରଥରକେ

ବରଗଛତଳେ କହିଦେଇ ଯାଇଥିଲା–ସବୁ ଝୁଟା, ମିଥ୍ୟା !

ଆଜି ତୁମ ଝୁଟା ଓ ମିଥ୍ୟାର ସଞ୍ଚୟ ସାର୍ଟିଫିକେଟ ଧରି ଚକ୍ରହାର ସୁଧ ବୃଦ୍ଧିରେ ଏ ଦେଶଟାକୁ ଆମେ ଚଳାଇ ନେଉଛୁ। ତମେ ମରି ଭଲ କରିଛ ବିନୁ ଆଉ ମୃଣାଳିନୀ ! ତମ ପରେ ପରେ ଆଉ ଯେଉଁମାନେ ମଲେ ବା ମରୁଛନ୍ତି ସେମାନେ ଦେଶସେବକମାନଙ୍କୁ ବାଛିବା ପାଇଁ ଯାଉ ଯାଉ ଅବା ଫେରୁ ଫେରୁ ମରୁଛନ୍ତି। ତାଙ୍କୁ ଶହିଦ୍ କୁହାଯାଉଛି। ତମେ ତ ରୋଗରେ ମଲ, ନ ଖାଇ ନ ପିଇ ମଲ, ଔଷଧ ବୁନ୍ଦାଏ ପାଟିରେ ନ ଦେଇ ମଲ; କିନ୍ତୁ ଏମାନଙ୍କର ମରଣ ଅପୂର୍ବ।

ଏମାନଙ୍କ ଉପରେ ଚକ ମାଡ଼ିଯାଇଛି। ଛାତିଟା ଦିଖଣ୍ଡ ହେଇ ଫାଟିଯାଇଛି। ଓଡ଼ିଶାର କ୍ୟାପିଟାଲ ଏକାମ୍ର ରାଜଧାନୀର ମୋଟା ଲୁହା ପାଣି ପାଇପ୍ ଫାଟିଗଲେ ଯେମିତି ଜଳସ୍ତମ୍ଭର ଫୁଆରା ଉଠେ, ସେମିତି ସ୍ତ୍ରୀ ପୁରୁଷର ଛାତି ଉପରେ କଂଗ୍ରେସୀ ଜିପ୍, କମ୍ୟୁନିଷ୍ଟ ଟ୍ରକ, ସୋସାଲିଷ୍ଟ ବସ୍ ବା ଗଣତନ୍ତ୍ରୀ ଷ୍ଟେସନୱାଗନ ଯେତେବେଳେ ମାଡ଼ିଯାଇଛି, ସେତେବେଳେ ରକ୍ତସ୍ତମ୍ଭର ଫଆରା ଝରୁଛି। ମାଡ଼ିଯିବା ସେମାନଙ୍କର ଧର୍ମ–ଝରିପଡ଼ିବା ତୁମର ବିଳାସ !!

ଏ ଦୃଶ୍ୟ ବିନୋଦିନୀ ତମେ ଦେଖି ବି ଦେଖି ପାରିବନି। ମୁଁ ଜାଣେ ତୁମେ ଦୁହେଁ ମତେ ଭୋଟ କେନ୍ଦ୍ରରେ ଅପେକ୍ଷା କରିଥିବ ମୋଠୁ ଦି'ପଦ କଥା ଶୁଣିବ ବୋଲି। ମୁଁ ଭୟରେ ଗଲି ନାହିଁ। ମଣିଷକୁ ଜବାବ ଦେଇପାରେ, ମାତ୍ର ଛାୟା ମୂର୍ତ୍ତିକୁ, ପ୍ରେତାତ୍ମାକୁ ଜବାବ୍ ଦେବା ପାଇଁ ମୁଁ ଭୟ କଲି।

ଏକ ନିରୁପଦ୍ରୁତ ମଧ୍ୟାହ୍ନ। ଆକାଶରେ ମେଘର ସଞ୍ଚାର। ବୈଶାଖୀ ଉତ୍ତାପ ପରେ ଏ ଆସନ୍ନ ଧାରାପାତକୁ ମନେମନେ ମୁଁ ସ୍ୱାଗତ କରୁଥାଏ। ଅଦୂର ସହର ଉପକଣ୍ଠରେ କୋଳାହଳ। ବାଜା ବାଜଣା ମଧ୍ୟ ଦେଇ ନିର୍ବାଚନ ପ୍ରଚାରର ତୁମୂଳ ଗଣ୍ଡଗୋଳ।

କେତେବେଳେ ସୁବିଦ୍ୟା ଆସି ପାଖରେ ଛିଡ଼ା ହୋଇଛି ମୁଁ ଜାଣିପାରି ନାହିଁ। ସୁବିଦ୍ୟା କୁଳବଧୂ। ସ୍ୱାମୀ ତାର ବୁଦ୍ଧିଜୀବୀ। ସମୟେ ସମୟେ ସେ ଆସେ। ତାର ସୁଖ ଦୁଃଖ କହିଯାଏ।

ଆଜି ତାର ମଳିନ ମୁହଁକୁ ଚାହିଁ ମୁଁ ଚମକି ପଡ଼ିଲି। ରୂପ ତାର ଅଛି–ଅଥଚ ଆଜିର ମଧ୍ୟାହ୍ନରେ ସେ ରୂପ ଅରୂପ ନୁହେଁ। କ୍ଲାନ୍ତି, ଶ୍ଳଥଭାବ ଓ ହତାଶାର ଗୋଟାଏ ପ୍ରଲେପ ଯେପରି ତାର ସର୍ବାଙ୍ଗରେ ବୋଳିହୋଇଛି।

ମୁଁ କିଛି କଥା କହିବା ପୂର୍ବରୁ ସେ କହିଲା– "ଗୋଟାଏ ପ୍ରାର୍ଥନା ରଖିବେ ?"

"ପ୍ରାର୍ଥନା ?" - ମୁଁ ଉତ୍ତର ଦେଲି ବିସ୍ମୟରେ।

"ହଁ, ମତେ ପାଞ୍ଚହଜାର ଟଙ୍କା ଦେବେ ? ଯାହା ଆମ ପାଖରେ ଥିଲା–ପ୍ରାୟ ବାର ହଜାର ଟଙ୍କା ଖର୍ଚ୍ଚ କରି ଦେଇଛୁ। ଆଉ ଟଙ୍କା ନ ହେଲେ ଭୋଟରମାନଙ୍କୁ ବୁଝାଇ ହେବ ନାହିଁ। ଦୁଇମହଲା କୋଠା ବନ୍ଧକ ରଖନ୍ତୁ। ନିର୍ବାଚନ ପରେ ସାତଦିନ ଭିତରେ ଟଙ୍କା ଶୁଝିଦେବୁ।"

ଆଗରୁ ଶୁଣିଥିଲି ସନାତନ ବାବୁ ସ୍ୱାଧୀନ ପ୍ରାର୍ଥୀ ଭାବରେ ଛିଡ଼ା ହୋଇଛନ୍ତି। ସୁବିଦ୍ୟାର ସ୍ୱାମୀ ସବୁବେଳେ ସହରରେ ରହନ୍ତି। ଜନସମ୍ପର୍କ ମୋଟେ

ନାହିଁ—ସେବା, ତ୍ୟାଗ ଦୂରର କଥା। ନିଶା ଖାଇ ପାଗଳ ହେଲାଭଳି ନିର୍ବାଚନ-କ୍ଲବ ଘରେ ବୋତଲ ଧରିଛନ୍ତି। କୁଳବଧୂକୁ ନେଇ ଗାଁ ଗାଁରେ ବୁଲାଉଛନ୍ତି। ତାର ଖାଇବା ପିଇବା ଠିକ୍ ନାହିଁ। ଏକବସ୍ତ୍ରା ହୋଇ ସୁବିଦ୍ୟା ଘରେ ଘରେ ବୁଲୁଛି; ସ୍ୱାମୀ ପାଇଁ ଭୋଟ ପ୍ରାର୍ଥନା କରୁଛି। ସଂସାରରେ ତା'ର ବିଶୃଙ୍ଖଳା। ଯାହା ପାଣ୍ଠି ଗଚ୍ଛିତ ଥିଲା ଶେଷ ହେଲାଣି। ମୋ ପାଖକୁ ଆସିଛି ଟଙ୍କା ମାଗିବାକୁ। ମୁଁ କିଏ, ପାଞ୍ଚହଜାର ଟଙ୍କା କିଏ?

—ଦେଖନ୍ତୁ ମୋ ଦେହରେ ମୁଣ୍ଡରେ ଆଉ ଗହଣା ନାହିଁ। ଟ୍ରଙ୍କ୍ ବାକ୍‌ସ ଖାଲି। ଘର ଖଣ୍ଡିକ ଯାହା ଅଛି। ଆପଣଙ୍କ ପାଖେ ନ ଥିଲେ ଆଉ କେଉଁଠି କରେଇ ଦିଅନ୍ତୁ। ଆପଣଙ୍କ ଚିହ୍ନା ଶୁଣା ଲୋକ କିଏ ଥିବେ। ଇଏ (ସନାତନବାବୁ) ପାଗଳଭଳି ଗାଁ ଗାଁରେ ବୁଲୁଛନ୍ତି। ମୁହଁରେ ଏତେ ଦାଢ଼ି, ଛାତି ହାଡ଼ ଦିଶିଲାଣି। ଦେହରେ ଜର। ହେଲେ ଥରେ ଯେତେବେଳେ ଯୁଦ୍ଧକୁ ଓହ୍ଲାଇଆସିଚୁ ଫେରୁଛୁ କେତେକେ? କଅଣ କହୁଛନ୍ତି?

ମୁଁ ଆଉ କଅଣ କହିବି ମୁଁ ଜାଣିପାରୁ ନାହିଁ। ମଧ୍ୟାହ୍ନଟା ଫାଟି ପଡ଼ି ଜଳସ୍ନାତ ହୋଇଯାନ୍ତା କି ମୁଁ ଶୀତଳ ହୁଅନ୍ତି—ସୁବିଦ୍ୟା ବି ହୁଅନ୍ତା। ଆଉ ଯେତେ ଦୂରରେ ସନାତନବାବୁ ଥିଲେ ବି ତାଙ୍କ ଦେହରେ ପାଣି ଛିଟିକା ଲାଗନ୍ତା। ମୋର ଅବସନ୍ନ ମୁହଁକୁ ଚାହିଁ ସୁବିଦ୍ୟା ହତାଶ ହେଲା। ଆଜି ଭିତରେ ଟଙ୍କା ନ ପହଞ୍ଚିଲେ ଭୋଟର ଗୁଡ଼ାକୁ ଅନ୍ୟ ପାର୍ଟି ଆଡ଼କୁ ଆଉଜିବେ। କଥା ଦେଇଛନ୍ତି—ସଞ୍ଜବେଳକୁ ଟଙ୍କା ଦରକାର। ତାଙ୍କ ଓଠରେ ଏକମାତ୍ର ଅଛି...ଟଙ୍କା।

ସୁବିଦ୍ୟା କେବେ ରାଜନୀତି କରି ନାହିଁ। ସନାତନ ବି କେବେ ରାଜନୀତିର ଧାର ଧାରେ ନାହିଁ। ଆଜି ସେ ଦେଶସେବା କରିବାକୁ ଯାଇଛି। ଟଙ୍କା ପାଣିପରି ଖର୍ଚ୍ଚ କରୁଛି। ଏ ଜଳସ୍ରୋତ ସହିତ ତାର ମନର ପଦ୍ମ ପଚି ସଡ଼ି ଭାସି ଯାଉଛି ଦୂରକୁ। ସୁବିଦ୍ୟା ସ୍ୱାମୀପାଇଁ ଗାଁ ଟୋକାଙ୍କ ନଜର ଭିତରେ ପଡ଼ି ଛଟପଟ ହେଉଛି। ଓଢ଼ଣା ଟାଣି ବି ଟାଣି ପାରୁନି। ତାହାହେଲେ ଭୋଟ ଆସିବ ନାଇଁ ଯେ!

ଏ ନିଶା କାହିଁକି—ମନେହେଲା ପଚାରିବାକୁ। କିନ୍ତୁ କାହାକୁ ପଚାରିବି? ଗୋପବନ୍ଧୁ ଦେଶ ସେବା କରିଥିଲେ, ଆଚାର୍ଯ୍ୟ କରୁଛନ୍ତି... ଆଉ ସନାତନ ବାବୁ ବାହାରିଛନ୍ତି ଦେଶ ସେବକ ହେବେ। ଏକା ଓଡ଼ିଶା। ଭୂଇଁରେ ସମସ୍ତେ—ଆଗ ପଛ ଯାହା ଆସିଛନ୍ତି।

ସୁବିଦ୍ୟା ଧୀରେ ଗୋଡ଼ ଉଠେଇଲା। ତା'ର ପଥ ବହୁ ଦୂରକୁ ବିସ୍ତୃତ। ସେ କାନିଖଣ୍ଡିକ ଧରି ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିବ ଭୋଟ ଆଉ ଟଙ୍କା। ଏ ଦୁଇଟାଯାକ ସେ ଏକା ସାଙ୍ଗରେ କେବେ ମାଗି ନ ଥିଲା। ଅଭିନବ ଅନୁଭୂତି?

ଶେଷରେ ସେ କହିଲା— "ଯାଉଛି, କାବୁଲିବାଲା ପାଖକୁ। ସେ ନିଶ୍ଚୟ ଦେବ। ମାତ୍ର ଠିକ୍ ସମୟରେ ନ ଦେଲେ ସେ ଆମ ଇଜ୍ଜତ ରଖିବ ନାହିଁ।"

ଭାବୁଥିଲି, ଇଜ୍ଜତ କେତେଜଣଙ୍କର ଅଛି? ବଡ଼ ବଡ଼ ଆସନରେ ବସି ଯେଉଁମାନେ ଦେଶ ସେବା କରିବାକୁ ବ୍ରତ କରିଛନ୍ତି, ସେମାନଙ୍କର ଇଜ୍ଜତ କାହିଁ?

ଏ ସଂସାର ତ ବେଇଜ୍ଜତର ସଂସାର। ଏବେ ଯେ ସୁବିଦ୍ୟା ଚାଲିଗଲା କାବୁଲି ପାଖକୁ, କେଉଁ ଆକର୍ଷଣରେ, କେଉଁ ନିଶାରେ ତାର କୁଳବଧୂତ୍ୱକୁ ଅପରିଚ୍ଛନ୍ନ କରି ସେ ଚାଲିଗଲା? କାହିଁକି ଚନ୍ଦା,

ଛନ୍ଦା, ଏକ ମୁହୂର୍ତ୍ତ ଭିତରେ ଜୀବନ ହରାଇଲେ ? ଏ କଣ ସେଇ ଦେଶସେବାର ନମୁନା ? କାହିଁକି ଟ୍ରେନ୍ ଭିତରେ ହତ୍ୟା ? କାହିଁକି ଅସାମାଜିକ କାର୍ଯ୍ୟର ଏତେ ପ୍ରଚାର ? କାହିଁକି ଜିପ୍ ଟ୍ରକର ଚକ ତଳେ ସଜ ଫୁଟିଲା ଫୁଲଗୁଡ଼ିକ ରକ୍ତାକ୍ତ ହୋଇ ଝରିପଡୁଛନ୍ତି ? କିଏ ଏହାର ଉତ୍ତର ଦେବ ? କିଏ ମିଶିଲା ମାଟିରେ, ଆଉ କିଏ ଗୋଟେଇବ ହୀରା ଜହରତ୍ ! !

ମେଘ ବର୍ଷିଲା ନାହିଁ । ଅସହ୍ୟ ଉତ୍ତାପ । ବୋଧହୁଏ ତନ୍ଦ୍ରାଚ୍ଛନ୍ନ ହୋଇ ପଡ଼ିଥିଲି କିଛି ସମୟ ପାଇଁ ।

ବିନୋଦିନୀ ଆସିଥିଲା, ମୃଣାଳିନୀ ଆସିଥିଲା । ସେମାନେ ଖିଲି ଖିଲି ହସୁଥିଲେ । ମୁହଁରେ ପଣତ ଧରି ସେମାନେ ମୋ ଚାରିପଟେ ବୁଲୁଥିଲେ ।

ମୁଁ ନିର୍ଭୟରେ ପଚାରିଲି– "ତୁମେ ସବୁ ଏବେ ବି ପ୍ରେତ ରହିଛ ? ତୁମର ମୁକ୍ତି ହେଲା ନାହିଁ ?"

ସେମାନେ ପରସ୍ପରକୁ ଚାହିଁଲେ । ମୃଣାଳିନୀ କହିଲା, 'ଓଡ଼ିଶା ଗୋଟାକଯାକ ପ୍ରେତ ରାଜ୍ୟ । ଏଠି ଆମର ସୁଖ ଶାନ୍ତି ରହିବ ବୋଲି ଯମ ଦେବତା ଆଉ କିଛିଦିନ ଏଠାରେ ରହିବାକୁ ଆମକୁ ଆଜ୍ଞା କରିଛନ୍ତି– ନିର୍ବାଚନର ଫଳ ଘୋଷଣା ହେବାଯାଏ । ଯେତକ ବଡ଼ ବଡ଼ ଗଛ ଓଡ଼ିଶାରେ ରହିଛି ତା'ର ପତ୍ରଗହଳରେ କାନ ପତେଇ ଶୁଣୁଥିବୁ କିଏ ହାରିଲା କିଏ ଜିତିଲା । ତାଙ୍କ ମୁହଁକୁ ଚାହିଁବୁ, ତାଙ୍କ ଗୋଡ଼କୁ ଚାହିଁବୁ, ସେମାନେ କିମିତି ଗୋଡ଼ ପକେଇ ଚାଲୁଛନ୍ତି ତାଙ୍କ ନୂଆ କ୍ୱାଟରକୁ । କିମିତି ଏବଂ କେଉଁ କିସମର ମଟର ଗାଡ଼ି ଚଢ଼ି ବୁଲୁଛନ୍ତି । ହେଇଟି, ତମେ ଆମକୁ ଏତେ ଭଲ ପାଉଥିଲ । ଡରିଲ କାହିଁକି ମ ? ଏଥର ନିର୍ବାଚନ କେନ୍ଦ୍ରରେ ତୁମକୁ ନ ଦେଖି ତୁମ ପାଖକୁ ଆସିଥିଲୁ । ତମେ ଟିକିଏ ଏ ବିଷୟରେ ଚିନ୍ତା କର ବୋଲି ଆମକୁ ସୁଖ ଲାଗେ । ହଉ ଏବେ ଯାଉଛି । ଖରା ଆଉ ମେଘ ଭିତରେ ଚଳପ୍ରଚଳ କରିବାକୁ ଆମକୁ କଷ୍ଟ ଲଗେ ।"

ଅନେକ ବେଳଯାଏ ମୁଁ ଶୋଇପଡ଼ିଥିଲି ଚୌକି ଉପରେ ବସି ବସି । ନିର୍ବେଦ ମନ ଓ ସୁସ୍ଥିର ଶରୀର । ମୁଁ ଜାଣେ ବିନୋଦିନୀ ଆଉ ମୃଣାଳିନୀ ମତେ ଛାଡ଼ିବେ ନାହିଁ । ପ୍ରତି ପାଞ୍ଚ ବର୍ଷରେ ଥରେ ମୋ ପାଖକୁ ଆସିବେ । ମତେ ଜେରା କରିବେ–ଓଡ଼ିଶା କେତେ ପ୍ରଗତି କଲାଣି– ଏଠି ଅପମୃତ୍ୟୁ ହେଉଛି କି ନାହିଁ– ଧନବାନ୍ ଦରିଦ୍ରକୁ ଶୋଷଣ କରୁଛି କି ନାହିଁ– ବଡ଼ ବଡ଼ ଲୋକଙ୍କ ପାଇଁ ଔଷଧ ଗଚ୍ଛିତ ରହୁଛି କି ନାହିଁ–ଗରିବ ମଳିମୁଣ୍ଡିଆ ଔଷଧ ନାଁରେ ପାଣି ପିଉଛି କି ନାହିଁ–ସାମ୍ୟ ନୀତି କେତେ ଯାଏ ଖଟୁଛି–ଚାକିରିବାକିରୀରେ ନିରପେକ୍ଷ ବିଚାର ରହୁଛି କି ନାହିଁ...ଏମିତି କେତେ କଥା ।

ମାତ୍ର ମୁଁ କିଏ ଯେ ମତେ ଏମାନେ ପଚାରିବେ ? ମୁଁ ତ ନିଜେ ପାଣି ଔଷଧ ପିଏ, ପୀଡ଼ନ ମୋ ଶିରା ପ୍ରଶିରାରେ ସଞ୍ଚାରିତ ହେଉଛି । କଥା କଣ କି, ସେମାନେ ମତେ ଭଲପାଆନ୍ତି–ଏଇ ପ୍ରେତ ରମଣୀମାନେ । ଏମାନଙ୍କ ସାଙ୍ଗକୁ ସୁବିଦ୍ୟା ବି ପ୍ରେତ ହୋଇଯିବ । କାବୁଲି କ୍ଷେପି ଆସିବ । ଅନେକ କିଛି ମହତ୍ ପଦାର୍ଥ ସୁବିଦ୍ୟାଠାରୁ ମାଗିନେବ ସେ । ସୁବିଦ୍ୟା ବାରଣ କରିପାରିବ ନାହିଁ ।

କେବଳ ସନାତନ ରହିଯିବ ଦେଶ ସେବା କରିବାକୁ–ରହୁ । ନିଶା ଲାଗିଛି; କିନ୍ତୁ କାହିଁକି ଏ ନିଶା ? ମୃଣାଳିନୀଙ୍କ କହିଥିଲା ଭଳି ସବୁ ଝୁଟା, ସବୁ ରଙ୍ଗ ବେରଙ୍ଗ । ତଥାପି ଏମାନେ ଜାଣିଲେ ନାହିଁ ?

ସଞ୍ଜବେଳକୁ ଅସରାଏ ବର୍ଷା ହୋଇଗଲା। ଟିକିଏ ଶାନ୍ତି ସାନ୍ତ୍ୱନା ଆସିଲା ପ୍ରାଣକୁ। ବେଶ୍ କେତେଗୁଡ଼ାଏ ପାଗଳ ଲୋକ ଖରାରେ ଦଉଡ଼ାଦଉଡ଼ି କଲେ ବଡ଼ ନିଃସ୍ୱାର୍ଥପର ଭାବରେ। ନିଜ ପାଇଁ ଚିନ୍ତା ନାହିଁ, କେବଳ ପରାହିତାୟ ଦୁଃଖ ସହିଗଲେ। ଏମାନେ କ୍ଷଣଜନ୍ମା, ମାଟିର ପ୍ରକୃତ ସ୍ନିଗ୍ଧ ସତେଜ ଅଙ୍କୁର।

ସୁବିଦ୍ୟା କଅଣ ଏଇ ମୁହଁସଞ୍ଜବେଳଟାରେ କାବୁଲି ପଛରେ ଗୋଡ଼ାଉଛି ? ଆଫ୍‌ଗାନ୍‌ଟା କଅଣ ବୁଝିବ କେତେ ମହତ୍ ପ୍ରବୃତ୍ତି ଚାଳିତ ହୋଇ ସନାତନ ଘରର ପ୍ରଦୀପ ସୁବିଦ୍ୟାକୁ କାବୁଲି ପାଖରେ ଛାଡ଼ି ଦେଇଛି ? ହୁଏତ ତାକୁ ସେ ପ୍ରଦୀପ୍ତ କରୁ ଅବା କାବୁଲିର ଗୋଟାଏ ହିଂସ୍ର ଫୁତ୍କାରରେ ସେ ପ୍ରଦୀପଟି ଲିଭିଯାଉ।

ରାଜଧାନୀର ଶୂନ୍ୟ ସିଂହାସନଗୁଡ଼ାକ ଥରିଉଠୁଛନ୍ତି। ତୋରଣ ପୋତା ହେଉଛି, ପ୍ରତ୍ୟେକଟି ରାଜମାର୍ଗ ସମ୍ମୁଖରେ। ସୁସ୍ୱାଗତ ଅଭିନନ୍ଦିତ ବାଣୀରେ ଆକାଶ ଧରିତ୍ରୀ ପ୍ରକମ୍ପିତ।

—ଆରେ ତମେମାନେ ବି ଏଠି ? ଧନ୍ୟ ତମେ ପ୍ରେତ ନାରୀଗଣ! ଯାଆ ଭଲା ଟିକିଏ— ଦେଖ, ସୁବିଦ୍ୟା କୁଆଡ଼େ ଗଲା ? ସେ ଯେ ବାଟଘାଟ ଜାଣି ନାହିଁ—ପଡ଼ିଯିବ ଯେ! ଯାଅ ଭଲା!



# ସହଯାତ୍ରିଣୀ

ଗୋଟିଏ ମାତ୍ର ସେକେଣ୍ଡ କ୍ଲାସ କମ୍ପାର୍ଟମେଣ୍ଟ। ବାଧ ହୋଇ ସେଇ ଡବା ଭିତରକୁ ଉଠିଗଲି।

ଆକାଶରେ ଭରାବାଦଲ। ଦିଗନ୍ତରେ ଚପଳା ଚମକୁଛି। ଆଶ୍ୱିନମାସ ବୋଲି ଜଣାପଡୁନି। ଶରତର ସୁନା ସୋରିଷିଆ ଖରା ବଦଳରେ ଝୁହାଇ ଝୁହାଇ ବର୍ଷା ଚାଲିଛି।

ସେତିକିବେଳକୁ ଆହୁରି ବେଗରେ ବର୍ଷା ଆକାଶ ଫଟାଇ ଝରିଆସିଲା। ଖାଲି ବର୍ଷା...ବର୍ଷା।

ଆସନ ନେଲି। କିଏ କିଏ ଏ ଡବାରେ ଯାଉଛନ୍ତି ଜାଣିବାପାଇଁ କୌତୁହଳ ନଥିଲା। କଅଣ ବା ମତେ ମିଳିବ। ମୋ ସୁଖ ଦୁଃଖରେ କିଏ କଅଣ ଭାଗ ନେଇପାରିବେ କି ?

ଝରକା ପଥ ଦେଇ ଦିଗନ୍ତକୁ ଚାହିଁ ରହିଲି। କୃଷ୍ଣ ଦିଗନ୍ତରେ ଝଟକି ଯାଉଥିଲା ଦାମିନୀ-ଲୀଳା। ନୀଳ ଧାନ୍ୟ-ଶୀର୍ଷ ଉପରେ ଶ୍ୟାମ ପଣତ ଖଣ୍ଡିକ ଜଡ଼ି ହୋଇ ଯାଇଥାଏ। ପ୍ରକୃତି ଆଜି ବିଭ୍ରାଟ ସୃଷ୍ଟି କରିଛି। ନ ହେଲେ ଅପରାହ୍ଣର ସୂର୍ଯ୍ୟରୌଦ୍ର ଲହରୀ ମଥା ପିଟୁଥାନ୍ତା ନୀଳ ଶସ୍ୟ କେଦାର ଉପରେ।

ଷ୍ଟେସନଟା ଏକପ୍ରକାର ଶୋଇ ରହିଥିଲା। ପାଣି ଛାଟରେ ଷ୍ଟେସନର ବିକାଳି ସବୁ ଅସ୍ତବ୍ୟସ୍ତ। ଏ ଯେଉଁ ଧାରାପାତ ଏଥିରେ କିଏ ବା କାହିଁକି ବାହାରିବ ଘରୁ ବିଦେଶକୁ ? କିଏ ବା କାହିଁକି ଯାତ୍ରୀ ସାଜି ପଥ ଅନ୍ୱେଷଣରେ ବାହାରିପଡ଼ିବ ?

"ଆଜି ଆପଣଙ୍କର ଏ ବେଶ ଯେ ? ନିଶ୍ଚୟ କେଉଁଠି ସଭାସମିତି ଅଛି।"

ଚାହିଁ ଦେଖିଲି ଚିବୁକ ଉପରେ ଆଙ୍ଗୁଠି ରଖି ଟିପି ଟିପି ହସୁଛି ମାୟା।

ସପ୍ରତିଭ ହେଲି। ମୋର ଉଚିତ ଥିଲା ଡବା ଭିତରେ ମୋର ସହଯାତ୍ରୀ କିଏ ରହିଛନ୍ତି ସେମାନଙ୍କୁ ଜାଣିନେବା।

ପ୍ରକୃତିପ୍ରେମୀ ଲୋକ ମଝିରେ ମଝିରେ ଏମିତି ବିଡ଼ମ୍ବନା ଭୋଗିଥାଏ।

ମୋର ଚିତ୍ତଶିଖରରେ ପ୍ରୀତି-ପୁଷ୍ପ ଫୁଟିଯାଇଥିଲା। ମାୟାକୁ ଏମିତି ଅପ୍ରତ୍ୟାଶିତ ଭାବରେ ଦେଖିବି, ମୁଁ କଳ୍ପନା କରିନଥିଲି। ଯାତ୍ରା ପଥ ଉପରେ ଏମିତି କେତେ ହଜିଲା ରାଗିଣୀ ଧରାପଡ଼େ, ଖାଲି ହୋଇଯାଇଥିବା ତଟିନୀରେ ପ୍ରବାହ ଖେଳେ-ପୁଣି ସବୁ କେଉଁଆଡ଼େ ମିଳେଇଯାଏ।

ମାୟା ସୁନ୍ଦରୀ। ଯେଉଁଠି ଦେଖାପାଇଛି ତାର ମୁହଁଟିକୁ ଚିବୁକଯାଏ-ସେଇ ଯେ ତ୍ରିଭୁଜ ଭଙ୍ଗିମା-ତାକୁ ମୁଁ ବାରମ୍ବାର ଚାହିଁ ରହିଛି। ଦୁଇଟି କୃଷ୍ଣ ଭ୍ରୂକୁ ଲାଖି ସେ ଯେଉଁ ଚଷମାଟି ପିନ୍ଧିଥାଏ, ତାହା ତାକୁ ଆହୁରି ସୁଷମାମୟୀ କରିଥାଏ।

ଭାରି ଭଲଲାଗେ ଏଇ ତରୁଣୀଟିକୁ। ଜୀବନର ଛନ୍ନ ପତ୍ରରେ ତାକୁ ରଖି କଳନା କରିବାକୁ

ଭାରି ଭଲ ଲାଗେ। ଅନାଡ଼ମ୍ବର ବେଶ ପରିପାଟୀ ଭିତରେ ଗୋଟିଏ ସହଜ ସକରୁଣ ବ୍ୟକ୍ତିତ୍ୱ ଫୁଟିପଡୁଥାଏ ସବୁବେଳେ।

ମୁଁ ପ୍ରୀତିମୟ ଦୃଷ୍ଟିରେ ମାୟାକୁ ଚାହିଁ ରହିଲି। ସେ ଚାହାଣି କେବଳ ମାୟାର ରୂପ ଉପରେ ଢେଉ ଚୋଲୁ ନଥିଲା, ତାର ଅନ୍ତର ଭିତରକୁ ଯାଇ ଅନ୍ତରତମ ଦେବତାକୁ ସ୍ପର୍ଶ କରୁଥିଲା।

କହିଲି, "ମାୟା, ଅନେକ ଦିନ ପରେ ଦେଖା। ତାହାହେଲେ ଦେଖି ଚିହ୍ନିପାରିଲ, ନାଁ। ଭାବିଲି, ଜୀବନ ଯାହାର ଏତେ କର୍ମମୟ, ପୁଣି ଦୁଃଖୀ, ଆର୍ତ୍ତ ସେବାରେ ଯାହାର ପ୍ରାଣ ଉତ୍ସର୍ଗୀକୃତ, ସେ ପୁଣି ଲୋକ ଚିହ୍ନି ପାରିବ ? ହଁ ମାୟା ଏ ଯେଉଁ ବେଶ କଥା ପଚାରିଲ, ତା' ଠିକ୍। ଖୋରଧାରେ ଏହି ସନ୍ଧ୍ୟାରେ ରବୀନ୍ଦ୍ର ଜୟନ୍ତୀ ହେଉଛି। ଡାକିଛନ୍ତି, ଯାଉଛି। ରବୀନ୍ଦ୍ର ସଂସ୍କୃତିରେ ଧୋତି ପଞ୍ଜାବୀ ଚଳିବ–ସୁଟ୍ ପ୍ୟାଣ୍ଟ ଚଳିବନି। କିନ୍ତୁ ତୁମେ ?"

ମାୟା ସେ ବର୍ଥରେ, ମୁଁ ତା ପାଖ ବର୍ଥରେ। ଗାଡ଼ି କେତେବେଳୁ ଛାଡ଼ିଦେଇଛି।

ସହସା ମନେହେଲା ମୁଁ ବଡ଼ ରିକ୍ତ, ମୁଁ ବଡ଼ ନିଃସଙ୍ଗ। ପ୍ରକୃତି ବି ଏଇ ସ୍ନାତ ଅବସ୍ଥାରେ ମନେହେଲା ନିଃସଙ୍ଗ। ହୁଏତ ପ୍ରକୃତି ତାର ରିକ୍ତ ଭାବକୁ ସହି ନେଇଯାଉଛି, ମୁଁ ପାରିନି। ଗୁରୁ ଗମ୍ଭୀର ତାନରେ ବର୍ଷା ଝରିଯାଉଛି। ମାୟାର ତନିମାକୁ ଲକ୍ଷ୍ୟ କଲି। ଏ ରୂପର ଛନ୍ଦ ଅଛି, କିନ୍ତୁ ମୋହ ସୃଷ୍ଟି କରେନା ଏଭଳି ଛନ୍ଦ।

ମନେହେଉଥିଲା ଆଗ ଆସନରେ ଆସୀନା ଏଇ ନାରୀର ଶୂନ୍ୟତା ଓ କାମନାକୁ ନିଜ ଭିତରକୁ ନେଇଯାଇ ତାର ପରିବର୍ତ୍ତେ ଗୋଟିଏ ସୁନ୍ଦର ମନୋମୟ ବାଞ୍ଛିତ ରୂପ ଦେଇଦିଅନ୍ତି। ମାତ୍ର ମୁଁ ଯେ ନିଜେ ଶୂନ୍ୟ ! ଏଇ ଶୂନ୍ୟ ବୋଧ ନେଇ ଏଇ କ୍ଳାନ୍ତି ନେଇ, ମୁଁ କିପରି ରବୀନ୍ଦ୍ର ସଭାରେ ଗାନ କରିବି–

"ଆମି ଯାବ, ଆମି ଯାବ,
କୋଥାୟ ସେ କୋନଦେଶ ଜଗତେ ଢାଲିବି ପ୍ରାଣ,
ଗାହିବ କରୁଣାଗାନ ଉଦ୍‌ବେଗ ଅଧୀର ହିୟା,
ସୁଦୂର ସମୁଦ୍ରେ ଗିୟା ସେ ପ୍ରାଣ ମିଶାବ ଆର
ସେ ଗାନ କରିବ ଶେଷ।"

କିନ୍ତୁ ସେ ଗାନ ମତେ ଶେଷ କରିବାକୁ ହେବ। ମତେ କହିବାକୁ ହେବ। ବିଶ୍ୱାସଭରା କଣ୍ଠରେ ମତେ ଗାଇବାକୁ ହେବ–ଯଦିଓ ସନ୍ଧ୍ୟା ଆସିଛେ ମନ୍ଦ ମନ୍ଥରେ, ସବ ସଙ୍ଗୀତ ଗେଛେ ଇଙ୍ଗିତେ ଥମିଆ, ଯଦିଓ ନାଇ ଅନନ୍ତ ଅମ୍ବରେ, ଯଦିଓ କ୍ଳାନ୍ତି ଆସିଛେ ଅଙ୍ଗେ ନାମିଆ, ମହା ଆଶଙ୍କା ଜାଗିଛେ ମୌନ ମନ୍ତର ଦିଗ୍ ଦିଗନ୍ତ ଅବଗୁଣ୍ଠନେ ଢାକା, ତବୁ ବିହଙ୍ଗ, ଓରେ ବିହଙ୍ଗ ମୋର ଏଖନି ଅନ୍ଧ, ବନ୍ଧ କୋରୋନା ପାଖା।

– ସତକଥା, ଏ ପକ୍ଷ ଚାଳନା ବନ୍ଦ କରିବାକୁ ହେବନାହିଁ। ନିଃସଙ୍ଗ ହେଲେ ବି, ରିକ୍ତ ହେଲେ ବି, ବଳାକାର ପକ୍ଷପୁଟରେ ସମୀର ତରଙ୍ଗରେ ପହଁରିବାକୁ ପଡ଼ିବ। ତାହାହିଁ ଜୀବନ...ମାୟା।

–ଉଁ, କଅଣ କହୁଥିଲେ ?

ମୁଁ କହିଲି–ନାଁ, ସେମିତି କିଛି ନୁହେଁ।

ମାୟା ଅଭିଯୋଗ କରି କହିଲା–ଏଇ ଆପଣମାନେ, ମାନେ ଲେଖକ, ଏମିତି କଥା କହୁ କହୁ ଅନ୍ୟମନସ୍କ ହୋଇଯାଆନ୍ତି କାହିଁକି ? ଆଜିକାଲି

ଆପଣଙ୍କ ଲେଖାରେ ବୈଚିତ୍ର୍ୟ ରହୁନାହିଁ। ସତ ନୁହେଁ ?

ମୁଁ କହିଲି – ଖୁବ୍ ସତ। ମୁଁ ବି ତା ଅନୁଭବ କରେ। ତେବେ କଥା କଣ କି, ମୋ ଆଖିର ରେଖା ଭିତରେ ଚଳନ୍ତି ମଣିଷଗୁଡ଼ିକ ଆଉ ବିଚିତ୍ର ବୋଲି ଜଣାପଡୁନାହାନ୍ତି। ସବୁ ଯେମିତି ଏକଘରକିଆ ପ୍ୟାଟର୍ଣ୍ଣ, ମଡ଼େଲ! ସେଥିପାଇଁ ଏଇଭଳି ଯାନ୍ତ୍ରିକ ଜୀବଗୁଡ଼ିକୁ ପ୍ରକାଶ କରିବାରେ ବୈଚିତ୍ର୍ୟ ଆସୁନାହିଁ।

ମୁଁ ଜାଣେ ମୋର ଲେଖା ପ୍ରତି ମାୟାର ପ୍ରୀତି ଅଛି। ଯେଉଁଠି ସୁବିଧା ମିଳିଛି ମତେ ସେ ଅଭିନନ୍ଦନ ଜଣାଇଛି।

ଥରେ ବୁଲିଯାଇଥିଲି ତାର କର୍ମପରିସର ଭିତରକୁ। ଚାରିଆଡ଼େ ଆଖି ପକାଇ ସବୁ ଦେଖୁଥିଲି ଏବଂ କେତେଗୁଡ଼ିଏ ପ୍ରଶ୍ନ ତାକୁ ପଚାରିଥିଲି। ସବୁ ବୁଝି ଆଉ ଦେଖି ମତେ ମାୟା ସେତେବେଳେ ପଚାରିଥିଲା–

"କଅଣ ଏ ଡାକ୍ତରଖାନା ବିଷୟରେ କିଛି ଲେଖିବେ କି ?"

ମୁଁ ଉତ୍ତର ଦେଇଥିଲି–ସବୁ ବିଷୟରେ ଲେଖିହେବ, ଯଦି ଲେଖକ ସେଥିରେ ପ୍ରାଣ ଆବିଷ୍କାର କରିପାରେ। ଗୋଟାଏ କୁକୁରର ଶବ ଉପରେ ଚମତ୍କାର ଲେଖା ସମ୍ଭବ, ଯଦି ତାର ଚାରିପଟ ଦୃଶ୍ୟରେ ପ୍ରାଣର ସନ୍ଧାନ ମିଳେ।

ଏ କଥାରେ ସେଦିନ ମାୟା କଣ ବୁଝିଥିଲା ମୁଁ ଜାଣିନାହିଁ। ତେବେ ତାର ମନଗହନ ତଳେ ମୋ ପ୍ରତି କାକୁତି ଝରିପଡ଼ିଥିଲା। ସେ ବୋଧହୁଏ ମତେ କହୁଥିଲା– 'ମତେ ତମ ଲେଖାର କେନ୍ଦ୍ର କର। ମୁଁ ସହଜ ଏକ ତାରା ଭଳି ଫୁଟିପଡ଼େ ତମର ଦିଗନ୍ତ ରେଖା ତଳେ।'

ମୁଁ ପାରିନାହିଁ। ମାୟାକୁ ଘେନି କୌଣସି ରଚନା ମୁଁ ସୃଷ୍ଟି କରିପାରିନାହିଁ।

ଚିକିତ୍ସା ବ୍ୟବସାୟ କରି ବି ମାୟାର ସାହିତ୍ୟ ଓ କଳା ପ୍ରୀତି ପ୍ରଶଂସନୀୟ। ତାର ଶୋଇବା ଖଟ ଉପରେ ରାଶି ରାଶି ପତ୍ରିକା ପଡ଼ିଥାଏ। ସେ କେବଳ ଲେଖା ପଢ଼େ ନାହିଁ, ସେଇ ଲେଖା ଭିତରେ ଲେଖକକୁ କଳ୍ପନା କରେ। ତାର ରୂପକୁ ଦେଖେ। ଯେଉଁଠି ଦେଖେ ଲେଖକର ମନ ଓ ସୃଷ୍ଟି ଭିନ୍ନ, ସେଠି ସେ ସାଧୁବାଦ ଦିଏନି।

"ଆପଣଙ୍କୁ ଭୁଲ୍ ବୁଝିଥିଲି ବହୁ ଦିନ ତଳେ...ମାନେ ଯେତେବେଳେ ଆପଣ..."

ମୁଁ ବୁଝିନେଲି। ବହୁତ ଦିନ ତଳର କଥା। ମାୟା ବାପା ଏକ ବିଷମ ବ୍ୟାଧିରେ କ୍ୟାବିନ୍‌ରେ ରହି ଚିକିତ୍ସିତ ହେଉଥାନ୍ତି। ସେଇ କ୍ୟାବିନ୍ ପାଖ କ୍ୟାବିନ୍‌ରେ ଅସୁସ୍ଥ ସ୍ୱାମୀଙ୍କୁ ଘେନି ଆଉ ଜଣେ ତରୁଣୀ ରହିଥାନ୍ତି। ଏ ପରିବାର ସହିତ ମୋର ପରିଚୟ ଥିଲା। ସେମାନଙ୍କୁ ସାହାଯ୍ୟ କରିବା ପାଇଁ ମୁଁ ଏକ ସପ୍ତାହ ସେଠାକୁ ଯିବା ଆସିବା କରିଥିଲି। ମାୟା ସେତେବେଳେ ମେଡ଼ିକାଲ କଲେଜ ଛାତ୍ରୀ। ମଣିଷ ସହିତ ମଣିଷର ସମ୍ପର୍କ ଘେନି ସହଜରେ ଓ ଅବିଚାରରେ ଯେ କୋଳାହଳ ପ୍ରାୟ ଉଠିଥାଏ, ହୁଏତ ମାୟା ସେ କୋଳାହଳକୁ ସମର୍ଥନ କରିଥିଲା ଏବଂ ସେଇ ଦୃଷ୍ଟିରେ ମୁଁ ହୋଇଯାଇଥିଲି ତା ପାଖେ ଖର୍ବ। ଆଜି ହୁଏତ ସେ ଅନୁତପ୍ତ–ପ୍ରାୟଶ୍ଚିତ୍ତ ଖୋଜୁଛି।

ସମୟର ପ୍ରବାହରୁ ମୁଁ ଦୂରକୁ ଚାଲିଆସିଛି। ସେ ପରିବାର ବି ସମୟ ସ୍ରୋତରେ ଦୂରକୁ ଆଉଜି ଆସିଛନ୍ତି; କିନ୍ତୁ ଏ ହୃଦୟରେ ସେମାନଙ୍କର ମମତା ଓ ସେବାର ସ୍ମୃତି ଅମଳିନ ରହିଛି। ଆଉ ମାୟା ବି କୈଶୋରିକାର ତଟ ଦେଶରୁ ପୂର୍ଣ୍ଣବର୍ଗ ତଟିନୀକୁ ଝରିଆସିଛି।

ମୁଁ କହିଲି–ଏବେ ବି ଭୁଲ ବୁଝୁଛ ?

–ନାଁ।

–କାହିଁକି ?

ମାୟା ବାହାରର ଶୂନ୍ୟମଣ୍ଡଳକୁ ଚାହିଁ ଉତ୍ତର ଦେଲା–କେତେ ସହଜରେ ଲୋକ ଅନ୍ୟକୁ ଭୁଲ ବୁଝେ...ମାତ୍ର...ନାଃ, ଆତ୍ମଗ୍ଲାନିରେ ମୁଁ ନିଜେ ମରିଯାଇଛି ସେସବୁ ଭାବିଲାବେଳେ।

ମୁଁ କହିଲି–ଗ୍ଲାନିର ପ୍ରଶ୍ନ ନାହିଁ ମାୟା, ତୁମେ ଯେ ମୋର ଦୃଷ୍ଟି ସହିତ ଦୃଷ୍ଟି ବିନିମୟ କରିପାରୁଛ ସେଇ ଯଥେଷ୍ଟ। ମୋର ପ୍ରାଣର ସ୍ପର୍ଶକାତର ଭାବକୁ ଜାଣିପାରିଛି, ତାହାହିଁ ଯଥେଷ୍ଟ। ଏତିକିରେ ଏ ଅନ୍ତରର ସୀମା ଅସୀମ ହୋଇ ଉଠୁଛି। ଏ ଅସୀମତାର ସ୍ୱାଦ ଅପୂର୍ବ।

ମୋ କୋଳ ଉପରେ ଢଳି ରହିଥିଲା ପୂଜା ସଂଖ୍ୟା ପତ୍ରିକାଟିଏ, ଷ୍ଟେସନ ଷ୍ଟଲ୍‌ରୁ କିଣିଆଣିଥିଲି।

ମାୟା ପଚାରିଲା–ନିଶ୍ଚୟ କିଛି ଲେଖିଛନ୍ତି।

–ହଁ।

–ନାଁ କଅଣ ଦେଇଛନ୍ତି ?

–ପ୍ରାନ୍ତର।

ମାୟା ଉଚ୍ଛ୍ୱସିତ କଣ୍ଠରେ କହିଲା–ଚମତ୍କାର, ଆପଣ ଏମିତି ସୁନ୍ଦର ନାଁ କିମିତି ଦିଅନ୍ତି ?

ମୁଁ କହିଲି– 'ପ୍ରାନ୍ତର' କଅଣ ଗୋଟାଏ ସୁନ୍ଦର ନାଁ ? ହୁଏତ ତାହା ଶୁଷ୍କ ନୀରସ ଧୂଳିଧୂସରିତ ପ୍ରାନ୍ତର ହୋଇଥିବ। ମୁଁ ଜାଣେ ଏ ପ୍ରାନ୍ତର ଶୁଷ୍କ। କେତେ ଅଶ୍ରୁ, କେତେ ସମ୍ବେଦନା ଦେଇ ମୁଁ ଗଳ୍ପଟି ରଚନା କରିଛି।

ମାୟା ଦେଖିବ ବୋଲି ପତ୍ରିକାଟି ମୋ ପାଖରୁ ନେଇଗଲା।

ଚାରିଆଡ଼େ ବର୍ଷାର ନୃତ୍ୟ। ଚାହିଁ ଦେଖିଲି ଯାତ୍ରୀମାନେ କେଉଁ ପାଗଳ ବିଷୟରେ କଥାବାର୍ତ୍ତା ହେଉଛନ୍ତି। କିଏ କେଉଁଠି ଆତ୍ମହତ୍ୟା କଲା ସେ ବିଷୟରେ ଚର୍ଚ୍ଚା କରୁଛନ୍ତି।

ପାଗଳ ଆଉ ଆତ୍ମହତ୍ୟା !

କିଛି ସମୟ କଟିଯାଇଛି। ମାୟା 'ପ୍ରାନ୍ତର' ଗଳ୍ପଟି ପଢ଼ି ସାରିଛି। ଦେଖିଲି ସେ ଦୂରକୁ ଦୃଷ୍ଟି ପ୍ରସାରିତ କରି ଅନାଇଁ ରହିଛି। ସେଇ ତ୍ରିଭୁଜଭଙ୍ଗୀରେ ମୁଖଟି ମତେ କାହିଁକି ବେଶି ଆକର୍ଷଣୀୟ ମନେହେଲା ସେତେବେଳେ।

ଦିନେ ମାୟା ମତେ କହିଥିଲା ସେ ଏମିତି ରହିଯିବ। ଏମିତି ଅର୍ଥ, ନିଃସଙ୍ଗ ଜୀବନ ଧରି ସେ ପଥ ଚାଲିବ। ମୁଁ କାରଣ ପଚାରିଥିଲି। ସେ କହିଥିଲା–ସେ ଭବିଷ୍ୟତକୁ ଦେଖି ପାରୁନି। କେଜାଣି କାହିଁକି ଆତଙ୍କିତ ହୋଇପଡୁଛି। ଯାହାକୁ ନୀଡ଼ ଭିତରକୁ ଡାକିଆଣିବ, ତା ମନ ପାଇପାରିବ ତ ?

ମନ ପାଇବା ନ ପାଇବାରେ ଚିନ୍ତିତ ହୋଇ ମାୟା ଆଜି ଦିନ ଗଡ଼ାଇ ଦେଇଛି। କିଶଳୟ ବିବର୍ଣ୍ଣ ହେବ। ବୃକ୍ଷ ଶାଖା ସାର ଶୂନ୍ୟ ହୋଇଯିବ। ଭାବିଲି, ମାୟା ଆଜି ଯେଉଁ ଦ୍ୱନ୍ଦ୍ୱରେ ପଡ଼ିଛି ତାର ସମାଧାନ ନାହିଁ।

ରବୀନ୍ଦ୍ରଙ୍କର ବାଣୀ ମନେପଡ଼ିଲା–

"ଛୁଟେଛେ ଘୋଡ଼ା
ଉଡ଼େଛେ ବାଲି
ଜୀବନ-ସୋତ
ଆକାଶେ ଢାଲି
ହୃଦୟ ତଲେ ବହ୍ନି ଜାଲି
ଚଲେଛି ନିଶିଦିନ,
ବରଷା ହାତେ ଭରସା ପ୍ରାଣେ
ସଜାଇ ନିରୁଦ୍ଦେଶ
ମରୁର ଝଡ଼ ଯେମନ ବହେ
ସକଲ ବାଧାହୀନ।'

ମାୟାର ଦୃଷ୍ଟି ମୋ ଉପରେ। କହିଲା– ଆପଣଙ୍କର ଏ ପ୍ରାନ୍ତର ଗଳ୍ପଟି ବ୍ୟତିକ୍ରମ। ଅନେକ କଥା ଭାବିବାକୁ ଦିଏ। ସୁବିଦ୍ୟା ଆପଣଙ୍କର ମାନସୀ–ନାଁ ?

'ପ୍ରାନ୍ତର' ଗଳ୍ପର ନାୟିକା ସୁବିଦ୍ୟା ମୋର ମାନସୀ କି କଅଣ ଏକଥା ଉପଲବ୍ଧି କରିବାକୁ କେହି ଏ ସଂସାରରେ ନାହିଁ ବା କେହି ଜନ୍ମ ନେବେନି–ମୁଁ ଜାଣେ। ସେ ପ୍ରାନ୍ତର ଉପରେ ମୁଁ ବିଭତ୍ସ ପଶୁକୁ ଚଳେଇ ଦେଇଛି, ତାର ଦନ୍ତପଙ୍କ୍ତିକୁ ମୁଁ ଶୋଣିତାକ୍ତ କରିଛି, ଆଉ ସେ ପଶୁର କବଳରୁ ରକ୍ଷା କରି ସୁବିଦ୍ୟାକୁ ଦେଇଛି ମୋ ବକ୍ଷ ଉପରେ ସ୍ଥାନ...ନାଁ...ଏ ଗଳ୍ପ ମାତ୍ର।

ମୋର ପ୍ରଳାପର ଧ୍ୱନିକୁ ବୋଧହୁଏ ଶୁଣିପାରିଥିଲା ମାୟା।

ବିବର୍ଣ୍ଣ ଦୁଇଟି ଚକ୍ଷୁକୁ ମୋ ଉପରେ ଢାଳି ସେ କହିଲା – ଆପଣ ସତ ଲେଖନ୍ତି।

ମୁଁ ପ୍ରତିବାଦ କଲି ନାହିଁ। ଆଜି ମାୟାକୁ ପୂଜା ସଂଖ୍ୟାଟି ବଢ଼ାଇ ଦେଲି। ସେ ମୂକ ଓ ନିର୍ଜୀବ ଭାବରେ ପତ୍ରିକାଟି ଗ୍ରହଣ କରି ନମସ୍କାର କଲା।

ସେ ଜାଣିଥିଲା, ଏକ ନଗଣ୍ୟ ଶିଳ୍ପୀ ଭାବରେ ମୁଁ କେଉଁଠି କେଉଁ ସୂତ୍ରକୁ ଛିଣ୍ଡାଇ ଯାଇପାରେ ନାହିଁ। ପ୍ରଲମ୍ବିତ ରହିଥିବ ସେ ରଜ୍ଜୁ–ଆକର୍ଷଣ କରୁଥିବ। ମୁଁ ଜାଣେ, ମାୟା ଛୁରି ହାତରେ ଜୀଅନ୍ତା ମଣିଷର ଅଙ୍ଗ ବ୍ୟବଚ୍ଛେଦ କରୁଥିବାବେଳେ, ଅବା ପ୍ରସୂତିର ସହଜ ପ୍ରସବ ବିଧାନ କରୁଥିବାବେଳେ ତାର ମନେପଡ଼ିଯାଇଥିବ ମୋ ସହିତ ତାର ସହଯାତ୍ରିଣୀର ଭୂମିକା। ଏ କ୍ଷଣମାତ୍ର ଭୂମିକାର ଚିରନ୍ତନତ୍ୱ ମୁଁ ସ୍ୱୀକାର କରେ– ସେ ନ କରୁ।

ଏ କଅଣ କେବଳ ଭୂମିକା ? ରବୀନ୍ଦ୍ର ସଭାକୁ ଗଲାବେଳେ ପଥ ପାର୍ଶ୍ୱର ପ୍ରାନ୍ତର ଉପରେ ଦେଖୁଥିଲି କେତେ ସୁନ୍ଦର ଶ୍ୟାମ ଦୂର୍ବାର ବିସ୍ତୃତି, ତାହାହିଁ ମତେ ସାନ୍ତ୍ୱନା ଦେଇଥିଲା। ଏଇ ନୀଳିମାର ପ୍ରଶାନ୍ତ ଆମନ୍ତ୍ରଣ ମତେ ସବୁବେଳେ ଶାନ୍ତି ଦେଇଆସିଛି। ଘନ ଘନ ଏଇ ବିଶ୍ୱାସର ନିଃଶ୍ୱାସ ମୋ ବକ୍ଷ ଭିତରେ ସଂଚରି ଯାଇଥିଲା ଏବଂ ମୁଁ ଭାବୁଥିଲି – ମାୟା ମୋ ପାଖରେ ଆତ୍ମଗୋପନ କରି ନାହିଁ କି କରି ପାରିବ ନାହିଁ।

ପାଣିଛିଟା ପଡୁଥିଲା ଦେହ ଉପରେ। ଭିତରେ ସ୍ମୃତିର ଶୀତଳ ସ୍ନାନ। ଏଇ ବୋଧହୁଏ ବିଶ୍ୱ କବିର କଥା–

'ହୃଦୟେ ଆଜି ମୋର
କେମନ ଗେଲ ଖୁଲି
ଜଗତ୍ ଆସି ସେଥା
କରିଛେ କୋଲାକୁଲି।'

■ ■ ■

# ଚଷମା

ନୂଆବର୍ଷ ଦିନ ନୂଆକରି ସୁପ୍ରିୟ ଚଷମା ପିନ୍ଧିଲେ। ଜୀବନରେ ସମସ୍ତଙ୍କ ପାଇଁ ଚଷମା ପିନ୍ଧିବା ଗୋଟାଏ ଐତିହାସିକ ଘଟଣା ଭାବରେ ଉଲ୍ଲେଖଯୋଗ୍ୟ ନୁହେଁ; କିନ୍ତୁ ସୁପ୍ରିୟଙ୍କର ଜୀବନରେ ଏହା ଏକ ଅବିସ୍ମରଣୀୟ ବେଦନାଦାୟକ ଘଟଣା ବୋଲି ସେ ଜ୍ଞାନ କଲେ।

ଡାକ୍ତର ସାର୍ଟିଫିକେଟ ଧରି ସେ ପହଞ୍ଚିଲେ କରିମ ଖାଁଙ୍କର ଚଷମା ଦୋକାନରେ। ଚଷମା ପିନ୍ଧିବାର ପ୍ରଥମ ପର୍ବ ଶେଷ ହୋଇଗଲା ଯେତେବେଳେ ଡାକ୍ତର ଲେଖିଦେଲେ ଯେ ସୁପ୍ରିୟଙ୍କର ଆଖି ଖରାପ ଓ ସେ ଗୋଟିଏ ନିର୍ଦ୍ଦିଷ୍ଟ ଧରଣ ଚଷମା ବ୍ୟବହାର କରିବେ।

କରିମ୍ ଖାଁ ଚଷମା ଦୋକାନ ମେଲାଇ ବସିଛି। କେହି ଜଣେ ତାର ଦୋକାନ ଉପରକୁ ଉଠିଆସିଲେ ତାର ଦୁଇଚକ୍ଷୁ ସହସ୍ର ହୋଇଯାଏ।

ଧାଡ଼ି ଧାଡ଼ି ସଜା ହୋଇ ରହିଥିବା ପ୍ରଚକ୍ଷୁ କାଚଦିଆ କାଠ ବାକ୍ସ ଭିତରୁ ଅନାଇଁ ରହନ୍ତି ଗ୍ରାହକ ଆଡ଼େ। "ମତେ ନିଅ, ମତେ ପିନ୍ଧ, ମତେ ଲଗାଇଲେ ମୁହଁକୁ ସୁନ୍ଦର ଦିଶିବ" ଏଇଭଳି ନୀରବ ବାଣୀ ସତେ ଯେପରି ହଜାର ହଜାର ଚଷମା ହୃଦୟ ଭିତରୁ ଝରିପଡ଼େ।

କରିମ ଖାଁ ସୁପ୍ରିୟ ଆଡ଼କୁ ଅନାଇଁ ଅଭିବାଦନ ଜଣାଇଲା। ସୁପ୍ରିୟ ଦୋକାନ ଉପରକୁ ଉଠିଆସି ଦେଖିଲେ ଜଣେ ତରୁଣୀ ଗୋଟିକ ପରେ ଗୋଟିଏ ଚଷମା ନାକ ଉପରେ ଥୋଇ ପରୀକ୍ଷା କରୁଛନ୍ତି। ହାତରେ ଛୋଟ ଦର୍ପଣ ଖଣ୍ଡିଏ। ସେଥିରେ ତାଙ୍କର ସରସ ମୁଖଟି ପ୍ରତିଫଳିତ ହେଉଥିଲା।

ଚୂର୍ଣ୍ଣକୁନ୍ତଳ ଉପରେ ହାତ ମାରି ତରୁଣୀ ପରୀକ୍ଷା କଲେ ଚଷମା ପିନ୍ଧି ମଧ କୁନ୍ତଳଶ୍ରୀରେ କିଛି ଅଭାବ ରହିଯିବ କି ନାହିଁ। ନାସାର ଏକ ପାର୍ଶ୍ୱରେ ଯେ ତିଳ ପରିମାଣ ସୌନ୍ଦର୍ଯ୍ୟ ଚିହ୍ନ ଅଛି ତାହା ଚଷମା ପିନ୍ଧିଲେ ଲୋକଚକ୍ଷୁ ଆକର୍ଷଣ କରି ପାରିବ ତ? ପ୍ରତ୍ୟେକଟି ଭାବନା ମହିଳାଟିର ମୁଖରେ ଫୁଟି ଉଠୁଥାଏ ଏବଂ ଚଷମା ବଦଳା ପରେ ପରେ ତାହା ମଉଳି ଯାଉଥାଏ।

ଅନ୍ୟ ଚୌକିରେ ଜଣେ ପ୍ରୌଢ଼ ଭଙ୍ଗା ଚଷମା ନାଡ଼କୁ ହଲେଇ କଅଣ ପରୀକ୍ଷା କରୁଥାନ୍ତି। ସେ ନୂଆ ଚଷମା ପିନ୍ଧାଳୀ ନୁହଁନ୍ତି। ଭଙ୍ଗା ପରିବର୍ତ୍ତେ ସେ କୌଣସି ପ୍ରକାରେ ଖଣ୍ଡିଏ ହୋଇଗଲେ ସେ କାଲି ସକାଳେ କାମକୁ ବାହାରିବେ—ନଇଲେ ସେ ଅନ୍ଧ।

ଛାଣ୍ଟକାଟ୍ ଜଣେ କଲେଜ ଛାତ୍ର ଖୋଜୁଥାନ୍ତି ସବୁଜ ବର୍ଣ୍ଣର ଗୋଟିଏ ଚଷମା। ନାନା ପ୍ରକାର ଓ ନାନା ବିଚିତ୍ର ଆକୃତିର ଚଷମା ଖୋଜି ସେଗୁଡ଼ିକ ଗୋଟିକ ପରେ ଗୋଟିଏ ନାସା ଉପରେ ରଖି ତାଙ୍କର ଲକ୍ଷ୍ୟସ୍ଥଳ ଭାବରେ ଚଷମା-କ୍ଷୁଧାର୍ତ୍ତା ରମଣୀଙ୍କୁହିଁ ଦୃଷ୍ଟିଶକ୍ତି ପରୀକ୍ଷା କରିବା ସାମଗ୍ରୀ କରୁଥିଲେ। ବିଚାରୀ ସବୁଜ ବର୍ଣ୍ଣର ଦୃଷ୍ଟିବାଣକୁ ସହଜରେ ଗ୍ରହଣ କରି ନ ପାରି ମହିଳାଟି ଇତସ୍ତତଃ ହେଉଥିଲେ।

ଦୃଷ୍ଟିଶକ୍ତି ପରୀକ୍ଷକ ଚିକିତ୍ସକ ଚଷମା ପିନ୍ଧାଇବାରେ ବିଶେଷ କିଛି କର୍ତ୍ତବ୍ୟ କରନ୍ତି ନାହିଁ। ଚଷମା ନିର୍ବାଚନ ଗୋଟିଏ ବିରାଟ ବ୍ୟାପାର। ସେଇ ନିର୍ବାଚନ କାର୍ଯ୍ୟଟିକୁ କରେ ମଣିଷର ଶିଳ୍ପ-ଚେତନା। ସେଥିପାଇଁ ସୁପ୍ରିୟ ପ୍ରାୟ ଦୁଇଘଣ୍ଟା ହେଲା ଚଷମାମାଳାର ଚାରିପଟେ ଘୂରୁଛନ୍ତି। କେଉଁଟି ତାଙ୍କୁ ସନ୍ତୋଷ ଦେଇପାରୁ ନାହିଁ।

କରିମ ଖାଁ ବୁଢ଼ା ହେଲାଣି। ଚଷମା ପିନ୍ଧିବାକୁ ଆସିଥିବା ହଜାର ହଜାର ବୃଦ୍ଧ, ପ୍ରୌଢ଼, ଯୁବକ, କିଶୋରୀ, ତରୁଣ, ତରୁଣୀଙ୍କ ମନସ୍ତତ୍ତ୍ୱ ତା ପାଖେ ଅଛପା ନାହିଁ। ସେ ଚଷମା ବାକ୍ସ ପାଞ୍ଚ ଦଶ ଖୋଲି ଦେଇ ବିଡ଼ିଧରି ମୁରୁକି ହସେ, ମଝିରେ ମଝିରେ ବାଃ-ବାଃ କହେ, କିମ୍ବା 'ତୋଫା' କହି 'ଲିଜିଏ' ପଦରେ ଚଷମା କିଣା ପର୍ବ ଶେଷ କରେ।

କିନ୍ତୁ ଶେଷ ହେଉଛି କେଉଁଠି? ସୁପ୍ରିୟ ଅଢ଼େଇ ଘଣ୍ଟା ପରେ ବିରକ୍ତ ହୋଇ କହିଲେ—ତମ ଦୋକାନରେ ଭଲ ଚଷମା ନାହିଁ। ମତେ କେଉଁଟା ଭଲ ଲାଗୁନାହିଁ।

କରିମ୍ ଖାଁ କହିଲା—ବଡ଼ ଅବଶୋଷ୍ ବାତ୍। ଆପଣଙ୍କର ଲେନ୍ସ ପାଇଁ ମୁଁ ଦାୟୀ ରହିଲି। ଲେକିନ୍ ଚଷମାର ରଙ୍ଗ, ଡିଜାଇନ୍, ନାଡ଼ ସରୁ କି ମୋଟା ଏସବୁ ଅପଣଙ୍କର ବାଛିବା କଥା। ମୋ ଆଖି ଆପଣଙ୍କର ଆଖି ନୁହେଁ କି ଆପଣଙ୍କ ଆଖି ଏ ବିବିଜୀଙ୍କ ଆଖି ନୁହେଁ।

ସୁପ୍ରିୟ ନିଜ ଆଖି ଓ ଚଷମା ନେଇ ବ୍ୟସ୍ତ। ଆଜି ତାଙ୍କ ଆଖି ଉପରେ ଆଉ ଦୁଇଟା ଆଖି ବସିବ। ଯାହା ଅସ୍ପଷ୍ଟ ଓ ଅଦୃଶ୍ୟ ରହିଯାଇଥିଲା ତାହା ସ୍ପଷ୍ଟ ଓ ଦୃଶ୍ୟ ହେବ। ସେ ଜାଣି ନ ଥିଲେ ଯେ ତାଙ୍କରି ପାଖରେ ଚଷମା ନିର୍ବାଚନକାରିଣୀ ଜଣେ ମହିଳା ସେଇ ଏକା ବିରକ୍ତିରେ ଛଟପଟ ହେଉଛନ୍ତି।

ବୟସ ତାଙ୍କର ଚାଳିଶ ପାର ହୋଇ ଯାଇଛି। କେଶଗୁଚ୍ଛରେ ଲାବଣ୍ୟ ନାହିଁ। ଆଖି ଦୁଇଟି ନିଷ୍ପ୍ରଭ। ମୁହଁଟି ଶ୍ରୀ ହରାଇଛି। ଶରୀରରେ ମେଦ ବୃଦ୍ଧି ଦେଖଣାହାରୀର ଆଖିକୁ ପୀଡ଼ା ଦେଉଛି।

ଏହି ବିବିଜୀଙ୍କୁ ଦେଖି ସୁପ୍ରିୟ ଚମକି ପଡ଼ିଲେ। ମହିଳା ଗୋଟିଏ ଚଷମା ଫ୍ରେମ ଆଖି ଉପରେ ରଖି ଦୋକାନର ବିଦ୍ୟୁତ୍ ଆଲୋକକୁ ନିରୀକ୍ଷଣ କରୁଥିଲେ। କରିମ୍ ଖାଁର କଥାରେ ସେ ଚକ୍ଷୁଦୁଇଟି ନତକରି ଯାହା ଦେଖିଲେ ସେଥିରେ ସେ ଆଶ୍ଚର୍ଯ୍ୟ ହୋଇଗଲେ।

—କିଏ? ସୁପ୍ରିୟ!

—କିଏ? ରଜନୀ? ରଜନୀଗନ୍ଧା!

ଜୀବନର ବିସ୍ତୃତ ଭୂମି ଅତିକ୍ରମ କରି ଅସ୍ତାୟମାନ ସୂର୍ଯ୍ୟକୁ ମୁହଁ ରଖି ଏହି ଦୁଇଟି ପ୍ରାଣୀ ଚଷମା ଦୋକାନରେ ଆଖିର ପ୍ରଭାକୁ ଯାନ୍ତ୍ରିକ ପ୍ରୟୋଗରେ ଉଜ୍ଜ୍ୱଳ କରିବାକୁ ଆପ୍ରାଣ ଚେଷ୍ଟା କରିବା ଭିତରେ ପରସ୍ପରକୁ ଦେଖି ଶିହରି ଉଠିଛନ୍ତି।

କରିମ୍ ଖାଁ ବୁଝିପାରିଲା ଅବସ୍ଥାଟା ଭଲ ନୁହେଁ। ଏମାନଙ୍କ ଆଖି ସେତେ ଖରାପ ହୋଇନାହିଁ। ଚାହୁଁ ଚାହୁଁ ଚିହ୍ନି ପାରୁଛନ୍ତି।

ସୁପ୍ରିୟ ଓ ରଜନୀ ନିଜ ନିଜ ହାତରେ ଧରିଥିବା ଫ୍ରେମ୍‌କୁ ହଠାତ୍ ନିର୍ବାଚନ କରି କହିଲେ— 'ଏଇ ହେବ, କାଲି ସନ୍ଧ୍ୟାବେଳେ ଯେପରି ଲେନ୍ସ ଦିଆଯାଇଥିବ।'

'ବହୁତ ଆଚ୍ଛା' କହି କରିମ୍ ଖାଁ ସଲାମ ଦେଲା। ଆଖିରେ ତାର ତୃପ୍ତି, ମନରେ ଉଦାସ ରାଗିଣୀ।

ରାଜପଥ ଉପରେ ସୁପ୍ରିୟ ଓ ରଜନୀଗନ୍ଧା। ବଡ଼ ଆକସ୍ମିକ ଏ ଦେଖା। କେହି କାହାକୁ କିଛି କହିପାରୁ ନାହାନ୍ତି। ରାସ୍ତାର ଆଲୋକମାଳା ଓ ଯାନବାହନର ଶବ୍ଦ ଦୁଇଟି ହୃଦୟରେ ଉଦ୍ବେଳିତ ହେଉଥିବା ଭାବଧାରାରେ ବିଲୁପ୍ତ ହୋଇ ଯାଇଛି।

ସୁପ୍ରିୟ କହିଲେ– ନବବର୍ଷର ଅଭିବାଦନ ନିଅ; କିନ୍ତୁ ତୁମକୁ ଏପରି ଭାବରେ ଦେଖିବି ବୋଲି ମୁଁ କଳ୍ପନା କରି ନ ଥିଲି। ଜୀବନ ଏହିପରି। କେତେବେଳେ କିଏ କେଉଁଠି ଆସି ଦେଖାଦିଏ ଓ କିପରି ମିଳାଇଯାଏ, ଭାବି ହୁଏନା। କେମିତି ଅଛ ?

ରଜନୀର ଅନ୍ତର ଏକ୍ଷଣି ଏକ ମହାବର୍ତ୍ତ। କେତେ ସ୍ମୃତି, କେତେ ଭାବନା, କେତେ ମଧୁର କଥା ସେଥିରେ ରୂପ ପାଉଛି। ଏଇ ସୁପ୍ରିୟ, ଯାହାର ଉଚ୍ଛଳ ଯୌବନ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ରଜନୀଗନ୍ଧାକୁ ଉନ୍ମାଦ କରିଥିଲା, ବିଦ୍ୟାୟତନର ପ୍ରତ୍ୟେକ ପ୍ରକୋଷ୍ଠରେ ନେତ୍ର ମିଳନ ଭିତରେ ସୁପ୍ରିୟ ଓ ରଜନୀର ଶାଶ୍ୱତ ନୀଡ଼ ରଚନା କରିବାର ପରିକଳ୍ପନା ରୂପାୟିତ ହେଉଥିଲା। କିନ୍ତୁ ହେଲା କଣ ?

କାଳର ବିଚାର ଅନ୍ୟ ପ୍ରକାର ହେଲା। ଦୁହେଁ କୂଳ ଛାଡ଼ି ଭିନ୍ନ ପୋତାଶ୍ରୟ ପାଇଁ ଭାସିଗଲେ। ଆଜି ଦୃଷ୍ଟିଶକ୍ତିହୀନ ଦୁଇ ପ୍ରାଣୀ ଆଉ ଟିକିଏ ସ୍ପଷ୍ଟ କରି ଜୀବନକୁ ଦେଖିବା ଅଭିଳାଷରେ ଆସିଥିଲେ ଏଇ ଦୋକାନକୁ।

ରଜନୀର ଆତ୍ମବିସ୍ମୃତି ଫେରି ଆସିବା ପରେ ସେ ଦେଖିଲେ ସୁପ୍ରିୟ ନିଜ ଆଖିରୁ ଅଶ୍ରୁ ପୋଛୁଛନ୍ତି। ଆଜି ଦିନକ ପାଇଁ ଆଖି ଦୁଇଟି ଜନ୍ମ ବେଳର ପ୍ରାକୃତିକ ଚକ୍ଷୁ ହୋଇ ରହିଛ। କାଲିକି ତା ଉପରେ ବସିବ ଚଷମା ଫ୍ରେମ।

ସୁପ୍ରିୟ ପଚାରିଲେ– ମନେପଡ଼େ କିଛି ?

ସୁପ୍ରିୟ ଶିହରି ଉଠି କହିଲେ– ସୁଖୀ-ଅସୁଖୀ ହେବା କଥା ଆଉ କାହିଁକି ଉଠାଉଛ ? ଆମର ଦେଖା ଆକସ୍ମିକ। ଆସ ଆଜି ନବବର୍ଷ ରାତ୍ରିଟି ଉଦ୍‌ଯାପନ କରିବା ଗଭୀର ନିଶୀଥ ଯାଏ ପରସ୍ପରର ଗହଣରେ।

ରଜନୀଗନ୍ଧା ସ୍ନେହ ବିଜଡ଼ିତ କଣ୍ଠରେ କଣ୍ଠରେ କହିଲେ—ହଁ, ସବୁ ମନେପଡ଼େ। ଆଖିର ଦେଖା ମଳିନ ପଡ଼ିଯାଇଛି, ହୃଦୟ କିନ୍ତୁ ସତେଜ ଅଛି। ତୁମେ ସଂସାରରେ ସୁଖୀ ହୋଇଛ ତ ? ମତେ ଛାଡ଼ି ତୁମେ ଉଡ଼ିଗଲ। ଭାବିଲି, ଉଡ଼ିଯିବା ପୁରୁଷର ଧର୍ମ। କିନ୍ତୁ ପରେ ଯାହା ଶୁଣିଲି—ତୁମେ ସଂସାରରେ ସୁଖୀ ହୋଇପାରିନ।

ସୁପ୍ରିୟ ଶିହରି ଉଠି କହିଲେ—ଶୁଣ ସୁପ୍ରିୟ, ତୁମେ ଠିକ୍ ସେଇ ପୁରୁଣା ଦିନର ଅବୁଝା ସୁପ୍ରିୟ ଅଛ। ପଇଁଚାଳିଶ ବର୍ଷ ଅତିକ୍ରମ ପରେ ଆମେ ଆଖିରେ ଚଷମା ଦେବାକୁ ଆସି ଦେଖିଲୁ ପ୍ରଥମ ବିକଶିତ ଯୌବନର ହଜିଯାଇଥିବା ସାଥୀ ଆଜି ମିଳିଛି। କିନ୍ତୁ ହେଲେ କଅଣ ହେବ—ରାତ୍ରି ଉଦ୍‌ଯାପନ ? ତୁମେ କଣ ଭୁଲିଯାଇଛ ସୁପ୍ରିୟ ସମାଜ ଆଖିରେ ଏ ପର୍ଯ୍ୟନ୍ତ ଚଷମା ଉଠିନାହିଁ ! ସେଇଟା ଏବେ ବି ସହସ୍ର ଚକ୍ଷୁ ଧାରଣ କରେ—ଯାହାର ଦୀପ୍ତି ବଡ଼ ତେଜୀୟାନ୍। ଏ ଦେଶର ସମାଜ ଆମକୁ ଏଥିପାଇଁ କ୍ଷମା କରିବ ନାହିଁ।

× × ×

– "ଆପଣଙ୍କ ଦୋକାନରେ ଶକ୍ତି ବାଡ଼ି ମିଳିବ ? ବର୍ଷେ ହେଲା ହାତ ଥରା ଆରମ୍ଭ ହୋଇଛି। ବିନା ବାଡ଼ିରେ ଚାଲି ହେଉନାହିଁ—ମିଳିବ ?"

ଯେଉଁ ଗ୍ରାହକ ଏକଥା ଦୋକାନୀକୁ ପଚାରିଲେ ସେ ଜଣେ ସ୍ଥବିର। ଦୋକାନ ଉପରକୁ ବଡ଼ କଷ୍ଟରେ ଉଠିଆଁସି ବସି ପଡ଼ିଲେ ଚୌକି ଉପରେ। କେଶଗୁଚ୍ଛ ଶୁଭ୍ର। ହାତ ଥରୁଛି। ପ୍ୟାଣ୍ଟ ଖଣ୍ଡିକ ଅଣ୍ଟା ପାଖରୁ ଅନବରତ ଖସିଯାଉଛି। ବେଲ୍ଟ ଖଣ୍ଡିକ ଜୀର୍ଣ୍ଣ। ଚଷମାର ମୋଟା କାଚ ଚକ୍ ଚକ୍ କରୁଛି।

ହରିରାମ ଦୋକାନୀ ଆଠ ଦଶଟା ବିଭିନ୍ନ ପ୍ରକାର ବାଡ଼ି ଦେଖାଇ ପସନ୍ଦ ଅପେକ୍ଷାରେ ରହିଲା। ଆଗନ୍ତୁକ ଗ୍ରାହକ ଖଣ୍ଡିଏ ବାଡ଼ି ଥରା ହାତରେ ଉପରକୁ ଉଠାଇ ଶକ୍ତ ଚଟାଣ ଉପରେ ରଖି ଚୌକି ଛାଡ଼ି ଛିଡ଼ାହେଲେ। ହାତ ଆଉ ଥରିଲା ନାହିଁ। ବାଡ଼ିଟି ବଶମ୍ବଦ ସେବକ ଭାବରେ ବୃଦ୍ଧଙ୍କର ଜୀର୍ଣ୍ଣ ଶରୀରର ଭାରକୁ ଧାରଣ କଲା। ବୃଦ୍ଧ ଖୁସି ହୋଇ କହିଲେ—ହଁ, ଏଇଟା ହେବ। କେତେ ଦାମ?

—ଏ ରିକ୍ସା, ଏଇଠି ରଖ। ବାବୁଙ୍କୁ ପଚାର ଖଣ୍ଡିଏ ଛୋଟ ବାଡ଼ି ଦେଇ ପାରିବେ କି? ରିକ୍ସାରୁ ତଳକୁ ଓହ୍ଲାଇବାକୁ ବାଡ଼ି ଦରକାର। ମୁଁ ତ ରିକ୍ସା ଛଡ଼ା କୁଆଡ଼େ ଯାଇପାରୁ ନାହିଁ।

ଦୋକାନୀ ହରିରାମ ଦୋକାନ ତଳକୁ ଆସି କହିଲା—ଅଛି ମାଆ। ଆପଣ କଅଣ ଦୋକାନ ଉପରକୁ ଆସିପାରିବେନି?

ବୃଦ୍ଧା ଜୀର୍ଣ୍ଣ ହସ ହସି କହିଲେ—ନାଁ, ଆଉ ସମ୍ଭବ ନୁହେଁ। ତେବେ ଟିକିଏ ହାତ ଧରନ୍ତେ ଯଦି ମୁଁ ଯାଇପାରନ୍ତି।

ଆଗରୁ ଦୋକାନରେ ଛିଡ଼ାହୋଇଥିବା ବୃଦ୍ଧ ଚାହିଁଥିଲେ। ସେ ଚାହାଣୀ ଶତ ଗିରିଗାତ୍ରକୁ ଛିନ୍ନଭିନ୍ନ କରିବା ପାଇଁ ଯେପରି ଶକ୍ତି ଧରୁଛି। କିନ୍ତୁ ହାୟ ଭାଗ୍ୟ, ବୃଦ୍ଧ ସେତେ ସ୍ପଷ୍ଟ କିଛି ଦେଖି ପାରିଲେ ନାହିଁ।

ବୃଦ୍ଧ କହିଲେ—ଦେଖ ହରିରାମ, ମୁଁ ସେ ଭଦ୍ରମହିଳାଙ୍କୁ ରିକ୍ସାରୁ ହାତ ବଢ଼ାଇ ନେଇଆସେ। ସାଙ୍ଗେ ସାଙ୍ଗେ ପରୀକ୍ଷା ବି ହୋଇଯିବ, ତମ ବାଡ଼ିଟା କେତେ ଶକ୍ତ ଆଉ ମୋ ହାତର ଦମ୍ଭ ରହୁଛି କି ନାହିଁ।

ବୃଦ୍ଧ ନୂଆ ବାଡ଼ି ଉପରେ ଶରୀର ଭାର କରି ଅତି କଷ୍ଟରେ ରିକ୍ସାରୁ ମହିଳାଙ୍କୁ ହାତ ଧରି ଓହ୍ଲାଇ ଆଣିଲେ।

ଦୁଇ ହାତର ସ୍ପର୍ଶ! ଦୁଇ ସ୍ଥବିର ଓ କମ୍ପିତ ହସ୍ତର ସ୍ପର୍ଶ!! ସହସା ମନେ ହେଲା ଦୁଇଟି ଶରୀର ଓ ମନ ଯେପରି ଚମକିତ ଓ ଚକିତ ହୋଇଉଠିଲା।

—କିଏ, ସୁପ୍ରିୟ?

—କିଏ, ରଜନୀ...ରଜନୀଗନ୍ଧା?

ଆଜି ବି ନବବର୍ଷର ସନ୍ଧ୍ୟା। ପ୍ରାସାଦେ ପ୍ରାସାଦେ ନବ ତରୁଣ ଓ ତରୁଣୀଙ୍କର ଆନନ୍ଦମୁଖରିତ ସଙ୍ଗୀତର ଝଙ୍କାର। ରାଜପଥ ଉପରେ ଉତ୍ସବମତ୍ତ ଜନତା।

ଦୁଇ ଅନ୍ତର ଥରାଇ ଝରିଆସିଲା ଦୁଇଟି ଦୀର୍ଘଶ୍ୱାସ।

—ସୁପ୍ରିୟ, ତମେ କିପରି ଅଛ?

—ରଜନୀ, ମୋର ହାତ ଖୁବ୍ ଥରୁଛି। ଖଣ୍ଡିଏ ବାଡ଼ି କିଣିବା ପାଇଁ ଆସିଥିଲି। ତମେ ତ ଦେଖୁଛ ଖଣ୍ଡିଏ ବାଡ଼ି କିଣିବ। କି ଅପୂର୍ବ ଯୋଗାଯୋଗ କହ ତ? ତମେ କିପରି ଅଛ ରଜନୀ?

—ସୁପ୍ରିୟ, ମୁଁ ଆଉ ଚାଲିପାରୁ ନାହିଁ। ରିକ୍‌ସା ନ ହେଲେ ଯିବା ଆସିବା ଅସମ୍ଭବ। ତମେ ତ ଚାଲୁଛ ? ତେବେ ରିକ୍‌ସାରୁ ଓହ୍ଲାଇବା ବେଳେ ଗୋଟାଏ ସ୍ଥବିରା ନାରୀକୁ କିଏ କାହିଁକି ହାତ ଧରି ନେଇଯିବ ? ସେଥିପାଇଁ ଖଣ୍ଡିଏ ଛୋଟ ବାଡ଼ି ମୋର ଦରକାର—ରିକ୍‌ସା ଉପରେ ଠେସ ଦେଇ ଅନ୍ତତଃ ଓହ୍ଲେଇ ଆସିବି। ଆଜି ସିନା ମୋର ସୌଭାଗ୍ୟ ଯେ ସୁପ୍ରିୟ ତୁମର ହାତ ମୋ ଆଡ଼କୁ ପ୍ରସାରିତ ହୋଇ ଆସିଲା, ଏଇ ହାତଟି ଯଦି ଚାଳିଶ ବର୍ଷ ପୂର୍ବରୁ ମୋ ପାଖକୁ ଆସିଥାନ୍ତା...ଛାଡ଼ ସୁପ୍ରିୟ; ତମେ ବସ।

—ରଜନୀ, ଆଜି ବି ନବବର୍ଷ। ଚାଲ, ମୋର ଓ ତୁମର ଯଷ୍ଟି ଧାରଣ ଉତ୍ସବ ପାଳିବା। ଆମେ ପରସ୍ପର ଗହଣରେ ରହି ଗଭୀର ନିଶୀଥ ଯାଏ ଏକା ରିକ୍‌ସା ଭିତରେ ବସି ଚାଲିବା ଯେଉଁଆଡ଼େ ମନ ଚାହିଁବ।

ରଜନୀଗନ୍ଧାର ମୁହଁରେ ଆତଙ୍କ ଖେଳିଗଲା। ସେ କହିଲେ—ନାଇଁ ସୁପ୍ରିୟ, ଗୋଟିଏ ରିକ୍‌ସାରେ ଦୁଇଟା ବୁଢ଼ା ବୁଢ଼ୀର ଏକତ୍ର ସ୍ଥାନ ଦେଖି ତରୁଣ ତରୁଣୀଏ ହସିବେ, ହାତ ତାଳି ଦେବେ। ସମାଜ ବି ଭାବିବ ସ୍ତିମିତ ପ୍ରଦୀପରେ ଦୁଇଟା ଅହେତୁକି ବୃଦ୍ଧ ବୃଦ୍ଧା ତୈଳ ଦାନ କରୁଛନ୍ତି। ନାଁ ଏପରି କରିବା ନାହିଁ। ଏତିକି ଯେ ଦେଖା, ଏହାହିଁ ସଞ୍ଚିତ ରହୁ ଜୀବନର ଶେଷ ନିଶ୍ୱାସ ଯାଏ। ମୋର ନବବର୍ଷର ଅଭିବାଦନ ନିଅ।

× × ×

ଅକ୍‌ସିଜେନ ଚେମ୍ବରରେ ଡାକ୍ତର ବଡ଼ ଉତକ୍ଷିପ୍ତ। ତାଙ୍କର ରାଗ ବଡ଼ସାହେବ ଡାକ୍ତରଙ୍କ ଉପରେ। ଆଜି ନବବର୍ଷ ରାତ୍ରି। ମଣିଷ ଟିକିଏ ଆମୋଦ କରିବ ନା ଅକ୍‌ସିଜେନ୍ ଚେମ୍ବର ଭିତରେ ରହି ସଡୁଥିବ ? ଆଜିକାଲି ଲୋକଗୁଡ଼ାକ ମରଣକୁ ଏପରି ଡରନ୍ତି କାହିଁକି ? ରାଗରେ ତମ୍ ତମ୍ ହୋଇ ଡାକ୍ତର ସେନ୍ ଆଦେଶ ଦେଲେ – ନର୍ସ, ଲଗାଅ ଅକ୍‌ସିଜେନ କ୍ୟାପ। ବଞ୍ଚିବାର ଆଶା ନାହିଁ ଆଉ କାହିଁକି ବା ବଞ୍ଚିବ ? ବାଲ୍ୟ, ଯୌବନ, ପୌଗଣ୍ଡ, ପ୍ରୌଢ଼, ସବୁ ଅବସ୍ଥା ତ ଡେଇଁ ଭଦ୍ରବ୍ୟକ୍ତି ବୁଢ଼ା ହେଲେ, ତଥାପି ଶାନ୍ତିରେ ମରିବା ପାଇଁ ଇଚ୍ଛା ନୁହେଁ। ନର୍ସ ଦେଖ, ଚେଷ୍ଟାକର, ଏ ବୁଢ଼ାଜଣକ ଦେଶର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି। ମନ୍ତ୍ରୀଙ୍କ ଫୋନ୍‌ରୁ ଆବାଜ୍ ଆସିଛି ଯେପରି ଚିକିତ୍ସାରେ ତ୍ରୁଟି ନ ହୁଏ।

ବୃଦ୍ଧ ଶୋଇଛନ୍ତି। ଅନ୍ତିମ ନିଦ୍ରା ଆସି ନାହିଁ। କେବଳ ମାତ୍ର ସ୍ଫୁରିତ ଭ୍ରୂ; ତାହାହିଁ ଜଣାଉଛି ଜୀବନ-ପ୍ରଦୀପ ସ୍ତିମିତ ଶିଖାରେ ଜଳୁଛି।

ନର୍ସ ବ୍ୟସ୍ତ ଭାବରେ କହିଲେ—ଡାକ୍ତର, ସିନେମା ସେକେଣ୍ଡ ସୋ ଆଜି ନଷ୍ଟ। ଆଚ୍ଛା କହନ୍ତୁ ତ, ଉତ୍ସବ ଦିନମାନଙ୍କରେ ଏମାନେ କାହିଁକି ମରିବାକୁ ହସ୍‌ପିଟାଲକୁ ଆସନ୍ତି ?

ଜଣେ ପିଅନ୍ ଆସି ଖଣ୍ଡିଏ କାଗଜ ବଢ଼େଇ ଦେଲା, ଡକ୍‌ଟର ସେନ୍‌ଙ୍କୁ।

ସେନ୍ ସାହେବଙ୍କ ଆଖି ରକ୍ତାକ୍ତ। ସେ ଚିତ୍କାର କଲେ—ନର୍ସ ଆଉ ଜଣେ ରୋଗୀ ଆସୁଛନ୍ତି। ତାଙ୍କର ବି ଅକ୍‌ସିଜେନ୍ ଦରକାର। ଏଥରକ ମନ୍ତ୍ରୀ ନୁହନ୍ତି, ଜନସାଧାରଣ ଦାବି କରୁଛନ୍ତି – ଯାଙ୍କର ଜୀବନ ରକ୍ଷା ପାଇଁ ସବୁପ୍ରକାର ଚିକିତ୍ସା କରାଯାଉ। ଏ ମହିଳା

କେଉଁଠି ଜଣେ ମାନ୍ୟାସ୍ପଦା ସାମାଜସେବୀ ମହିଳା। ତେଣୁ ସେ ତମର ସେକେଣ୍ଡ ସୋ ସିନେମା ତ ନଷ୍ଟ ହେଲା, ମୋର କଅଣ ନଷ୍ଟ ହେଲା ଜାଣ– ଡାର୍ଲିଂ ଲିଲିର ନିମନ୍ତ୍ରଣ ରକ୍ଷା ଆଉ ସମ୍ଭବ ନୁହେଁ। ହଉ ଯାଅ, ରୋଗିଣୀଙ୍କୁ ଆଣ। ଆଉ ଗୋଟାଏ ଅକ୍‌ସିଜେନ ସେଟ୍ ପ୍ରସ୍ତୁତ କର।

ଜରାଜୀର୍ଣ୍ଣ ବ୍ୟାଧିଗ୍ରସ୍ତ ଦେହ। ମହିଳା ରୋଗିଣୀ ଅସ୍ତମିତ ହେବା ଉପରେ। ଯଥାବିଧି ଅକ୍‌ସିଜେନ ପ୍ରୟୋଗ କରାଗଲା।

ଡାକ୍ତର ସେନ୍ କାହିଁକି କେଜାଣି କରୁଣ କଣ୍ଠରେ କହିଲେ– ଆହା, ବିଚରା ବୁଢ଼ାବୁଢ଼ୀ ପରସ୍ପରର ଅପରିଚିତ ହେଲେ ବି ଦୁଇ ଖଟିଆକୁ ଏକାଠି ଲଗେଇଦିଅ। ବୁଢ଼ାବୁଢ଼ୀ ଆଜି ନୂଆବର୍ଷ ରାତ୍ରିରେ ସ୍ୱର୍ଗଗାମୀ ହେବେ। ଲକ୍ଷଣ ଭଲ ନୁହେଁ। ଆସ ନର୍ସ, ଆଉ ବୋଧହୁଏ ଅଳ୍ପକ୍ଷଣ। ଏମାନଙ୍କୁ ନବବର୍ଷର ଅଭିବାଦନ ଜଣାଅ।

ଡାକ୍ତର ଓ ନର୍ସ ଦୁହେଁ କ୍ଷଣକ ପାଇଁ ଚକ୍ଷୁ ମୁଦ୍ରିତ କଲେ। ଇତି ମଧ୍ୟରେ ଚାରୋଟି ଚକ୍ଷୁ ଅନନ୍ତକାଳଯାଏ ଲିଭିଗଲା।

ଡାକ୍ତର ସେନ୍ କହିଲେ – ଆପାରେଟସ ଖୋଲିଦିଅ ନର୍ସ। ହଁ, ରିପୋର୍ଟ ଲେଖିଦିଅ–ମୃତ–ନାଁ କଅଣ ?

ନର୍ସ ଚାର୍ଟରୁ ନାଁ ପଢ଼ିଲେ–

ସୁପ୍ରିୟ
ରଜନୀଗନ୍ଧା।



# ମୁହୂର୍ତ୍ତକର ଭାଷ୍ୟ

ଜୀବନର ଗୋଟିଏ ଗୋଟିଏ ମୁହୂର୍ତ୍ତ କେତେ ଭାଷ୍ୟ ରଚନା କରେ ଆମେ ଜାଣିପାରୁନା। ଆମ ଆଖି ସବୁବେଳେ ଥାଏ ବଡ଼ ଉପରେ–ଯେମିତିକା ଏ ସଂସାରରେ ବଡ଼ଟାହିଁ ସବୁ, ବଡ଼ହିଁ ବିରାଟ। କିନ୍ତୁ କ୍ଷୁଦ୍ର ମୁହୂର୍ତ୍ତଟିରେ କେତେ ଯେ ସୁନ୍ଦର ବିରାଟର ମହିମା ଝରିପଡ଼େ ତାହାର କଳନା ନାହିଁ।

ଏବେ କଲିକତା ଯାଇଥିଲି। ଆମେ ଅନେକ ଯାଇଥିଲୁ ଦଳବାନ୍ଧି–ସାଂସ୍କୃତିକ ଦଳ। ଗାଡ଼ିରେ ଚଢ଼ି ଆମେ ନିଜ ନିଜକୁ ଚାହିଁଲୁ, ପୁଣି ଦୃଷ୍ଟି ଢାଳିଲୁ ଅନ୍ୟ ସମସ୍ତଙ୍କଆଡ଼େ। ବିଶ୍ୱକବିଙ୍କର କଥା ମନକୁ ଆସିଲା। ଗୋଟିଏ ମହାମାନବର ସାଗର ତୀର ଯେମିତି ଢେଉ ପିଟି ଆମକୁ କହୁଥାଏ–ଏଠି ସମସ୍ତେ ସମାନ, ସମସ୍ତେ ବନ୍ଧୁ।

ଆମ ସାଙ୍ଗରେ ଆଧୁନିକ ଯୁବକ ଯୁବତୀ ଥାନ୍ତି, ଶିଳ୍ପୀ ଥାନ୍ତି, ମନ ମିଳେଇ କଥା କହିବାଭଳି ଲୋକ ଥାଆନ୍ତି। ସେବା ଗୁଣରେ ଉଦ୍‌ବୁଦ୍ଧ ହୋଇ ଆମେ ହରିଜନ ବାଳିକା ସୁମତିକୁ ନେଇଥାଉ ଆମ ସାଙ୍ଗରେ। ବିଚାରୀ ନିଜ ଗୋଡ଼ରେ ଠିଆ ହୋଇ କେବେ ମହାନଗରୀ ଦେଖି ପାରିବ ନାହିଁ। ସେଥିପାଇଁ ସେ ଆମ ପୁଞ୍ଜିରେ ଭାଗ ବସାଇ ଆମକୁ ଆଶ୍ରୟ କରି ଚାଲିଥାଏ ଆମ ସାଙ୍ଗରେ।

ବୟସ ତାର ବାର ତେର। ବାପା ମ୍ୟୁନିସିପାଲିଟିର ଝାଡ଼ୁଦାର। ସେବିକା କଲ୍ୟାଣୀ ପଟ୍ଟନାୟକଙ୍କର ତତ୍ତ୍ୱାବଧାନରେ ଏ ଦଳ ଗଢ଼ା ହୋଇଥାଏ। ସୁମତି ସେଥିରେ ସ୍ଥାନ ପାଇଥାଏ।

କଲିକତାର ଏକ ବରାଟ ସୌଧରେ ଆମେ ରହିଲୁ। ଆଧୁନିକାମାନେ ପ୍ରସାଧନ କରନ୍ତି। ତାଙ୍କର ଅଙ୍ଗ ସଜେଇବାର ସାମଗ୍ରୀ ରହିଥାଏ ଟେବୁଲ୍ ଉପରେ। ଯୁବକମାନେ ଜୀବନର ଛନ୍ଦ ପାଇବା ଭଳି ମନେକରୁଥାନ୍ତି। ସବୁଆଡ଼େ ଆନନ୍ଦ, ସବୁଆଡ଼େ ଚହଳ।

ଆମେ ଯାଇଥାଉ ଏକ ଉଦ୍ଦେଶ୍ୟ ନେଇ। ମହାନଗରୀର ଭଲ ଦୃଶ୍ୟ ଦେଖିବୁ। ପ୍ରତୁଳ ଜନତା ମଝିରେ ପୁଣି ନିଜକୁ ହଜାଇଦେବୁ। ସେତିକି ନୁହେଁ, ନାଟକ ଅଭିନୟ କରିବୁ। ଆମ ଦେଶର ସଂସ୍କୃତିକୁ ସେ ଦେଶରଭାଇ ଭଉଣୀଙ୍କ ଆଗରେ ବାଢ଼ି ବସିବୁ।

ମୋର ନଜର ଥାଏ ସୁମତି ଆଡ଼େ। ଯେ ସଂସ୍କାର ତାକୁ ଏତେଦିନ ସମାଜ ବିଚ୍ଛିନ୍ନ କରି ରଖିଛି, ଏଠି ଆମ ଏଇ ଦଳ ଭିତରେ ସେତକ ସେ ଫେରି ପାଉଛି କି ନାହିଁ ?

ମୁଁ ଦେଖେ– ସେ ଆଡ଼େଇ ଆଡ଼େଇ ଚାଲେ। ଛୁଆଁ ଅଛୁଆଁ ଭାବ ତାର ଥାଏ। ପଂକ୍ତି ଭୋଜନରେ ବସିଲେ ବି ସେ ନିଜକୁ ମହାଅପରାଧିନୀ ବୋଲି ଭାବୁଥାଏ।

ସୁମତିକୁ ଘେନି କାହାର କିଛି ଅଭିଯୋଗ ନ ଥାଏ। ସେ ନିଜ ଇଚ୍ଛାରେ ଅନ୍ୟମାନଙ୍କର ଅଇଁଠାପତ୍ର ଉଠାଇ ଆଣେ। ଛୋଟ ପିଲାମାନେ ଆବର୍ଜ୍ଜନା କଲେ, ସେ ପରିଷ୍କାର କରିଦିଏ।

ଝାଡ଼ୁଦାର ଭଜହରି ଝିଅକୁ ଗୋଟିଏ ଟଙ୍କା ଦେଇ କଲିକତା ପଠାଇଥାଏ। ବାପର ସୁଆଗ, ଝିଅକୁ ଯାହା ଭଲ ଲାଗିବ ସେ କିଣି ଆଣିବ। ମାତ୍ର ଟଙ୍କାଟିରେ ମହାନଗରୀର କି ବସ୍ତୁ ସେ କିଣିବ? ବୋଧହୁଏ କିଛି କିଣି ପାରିବନି।

ସୁମତି ଯାହା କିଣିଲା ତାହା ପଇସାରେ କିଣି ହେବ ନାହିଁ। ସେ କଥା ପରେ। ଷ୍ଟେସନର ବିରାଟ ଜନଗହଳି ଭିତରେ ସୁମତିର ସବୁ କିଛି ହଜିଗଲା। ସେ ବିଲୀନ ହୋଇ ଗଲା। ଆଉ ସବୁ ନିଜକୁ ଧରି ରଖିଲେ—ଏତେ ଆପଣାକୁ ହଜେଇ ପାରିଲେ ନାହିଁ। ମାତ୍ର ସୁମତି ନିଜକୁ ସମ୍ପୂର୍ଣ୍ଣ ହଜାଇ ଦେଇ ଯେ ଆନନ୍ଦ ପାଇଲାଆମର ତାହା ଦୁଷ୍ପ୍ରାପ୍ୟ। କଲିକତାର ରାସ୍ତା ପାର ହେବାବେଳେ ସୁମତିର ଭୟାର୍ତ୍ତ ଆଖି ଦୁଇଟାକୁ ମୁଁ ଦେଖେ। ଗୋଟାଏ ମୋଟର ସାଇକେଲ ଭାଙ୍ଗି ପଡ଼ିଥାଏ ରାସ୍ତା କଡ଼ରେ। ଆରୋହୀ ଜଖମ ହୋଇଥାଏ କି ନାହିଁ କହି ହେବ ନାହିଁ। ତେବେ ସେ ଭଙ୍ଗା ମଟରସାଇକେଲ୍‌ଟାକୁ ଦେଖି ସୁମତି ଥରିଯାଏ।

ଆକ୍‌ସିଡ଼େଣ୍ଟରେ ବହୁ ଲୋକ ମରନ୍ତି ବୋଲି ସୁମତି ଜାଣିଲା। ପକେଟ କାଟି, ତଣ୍ଟି କାଟି, ଧନଦୌଲତ କାଢ଼ିନେବାର କାହାଣୀ ସେ ଶୁଣିଲା।

ବଡ଼ ନଗରରେ ଏଇଆ ତ ନିତିଦିନିଆ କାରବାର। ଏମିତି ଚମକି ଉଠିଲେ କଅଣ ଚଳିବ? ଘରକୁ ନ ଫେରିବା ଯାଏ ବାପ ପୁଅ ପାଇଁ ଚିନ୍ତିତ, ଭାଇ ଭଉଣୀ ପାଇଁ ଚିନ୍ତିତ। ଆକସ୍ମିକ କଅଣ ସବୁ ଘଟିଯାଏ।

ସୁମତି ଜାଣେ ତା କୁଡ଼ିଆ ଭିତରେ ଆକ୍‌ସିଡେଣ୍ଟ ହୁଏନାହିଁ। ମାଆ ବାପର ଦୁଃଖ ଭିତରେ ସେ ବଢ଼ିଛି। ଅଳିଆ ଆବର୍ଜନା ଭିତରେ ସେ ବୟସ ଛାଡ଼ି ବଢ଼ି ଆସୁଛି।

ରିହର୍‌ସାଲ ଚାଲିଥାଏ। ଆଉ ଗୋଟାଏ ଦିନ ପରେ ଆମ ସାର୍ଥକ ନୃତ୍ୟାଭିନୟ 'ଅଜନ୍ତାର ସ୍ୱପ୍ନ'। ସମସ୍ତେ ବ୍ୟସ୍ତ। ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କର ଗହଣରେ କିପରି ଏ ନୃତ୍ୟ ନାଟିକାର ସଫଳ ପ୍ରକାଶ ହେବ ତାହାହିଁ ଚିନ୍ତାର ବିଷୟ ହୋଇଥାଏ।

ପ୍ରତି ସନ୍ଧ୍ୟାରେ ଆମର ନୂପୁର-ନିକ୍ୱଣ ଦୂରକୁ ଶୁଣାଯାଏ। ଆମେ ଯେଉଁଠି ଥାଉ ତାହା ଅପେକ୍ଷାକୃତ ସହର-ତଳି ଅଞ୍ଚଳ। ସେଠାର ଦୋକାନୀ, ଶ୍ରମିକ, ପାଠାଗାରର ପାଠକ, ପଡ଼ିଆ ଉପର କ୍ରୀଡ଼ାରତ ଖେଳାଳି ଆମକୁ ପ୍ରାୟ ପଚାରନ୍ତି—କେବେ ଅଭିନୟ ହେବ? କିଏ ଆସିବେ ସଭାପତି ହୋଇ? ଟିକେଟ ହେବ କି ନାହିଁ?

ଆମେ ମୁଗ୍‌ଧ ହୋଇଯାଉ ଏମାନଙ୍କ ବ୍ୟାକୁଳତା ଦେଖି। କଲିକତି ନାଚ ଗାଉଣା ଅଭିନୟ କେଡ଼େ ସୁନ୍ଦର, କେତେ ପ୍ରଗତିଶୀଳ, ଅଥଚ ଓଡ଼ିଶାର ଏଇ ସାଂସ୍କୃତିକ ଦଳର ମନୋରଞ୍ଜନ କାର୍ଯ୍ୟକ୍ରମ ଦେଖିବାକୁ କଲିକତାର ନାଗରିକମାନଙ୍କର ଏତେ ଆଗ୍ରହ?

ଅଭିନୟ ହେବା ଦିନର ସଞ୍ଜ ପ୍ରହର। ସାଜସଜ୍ଜା ଚାଲିଥାଏ। ବଙ୍ଗଳାର ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ସମାଗତ। ଉତ୍ସବମୁଖର ଏଇ ସନ୍ଧ୍ୟାଟିରେ ଉତ୍‌କଳୀୟ କୃଷ୍ଟିର ସାର୍ଥକ ପରିଚୟ 'ଅଜନ୍ତାର ସ୍ୱପ୍ନ' ପରିବେଷିତ ହେବ।

କଲ୍ୟାଣୀ ପଟ୍ଟନାୟକ ଉତ୍ତେଜିତ ଅବସ୍ଥାରେ ପଶିଆସି ସମସ୍ତଙ୍କୁ ଶୁଣାଇଲେ– 'ସର୍ବନାଶ'।

ସମସ୍ତଙ୍କ ମୁହଁ କଳା ପଡ଼ିଗଲା। କଅଣ ସର୍ବନାଶ? ଅଭିନୟ କଅଣ ବନ୍ଦ ହୋଇଯିବ? ସଭାପତି ଆସିଲେ ନାହିଁ? ଉଦ୍‌ଘାଟକ ଆସିଲେନାହିଁ? ବରେଣ୍ୟ ଅତିଥି ମନା କରିଦେଲେ? ସବୁ ସମ୍ଭବ। ବଡ଼ଲୋକଙ୍କର ବଡ଼ ବେଭାର – ତାଙ୍କୁ ବା'ବତା ନାହିଁ।

ମାତ୍ର ସେ କଥା ନୁହେଁ। କଲ୍ୟାଣୀ ପଟ୍ଟନାୟକ ଅସ୍ଥିର ହୋଇ ପଡ଼ିଲେ– କିଏ ବୁଦ୍ଧ ପାର୍ଟ ନେବ। ପ୍ରାୟ ଅଧଘଣ୍ଟା କାଳ କିଏ ଅର୍ଦ୍ଧ ସ୍ତମିତ ନୟନରେ କଲ୍ୟାଣ-କରୁଣାକର ମୁଦ୍ରା ଧରି ବସିରହିବ ନିଶ୍ଚଳ ହୋଇ ପଦ୍ମାସନରେ? ଦମୟନ୍ତୀ ପେଟ ଯନ୍ତ୍ରଣାରେ ଅସ୍ଥିର। ବୁଦ୍ଧ ଭୂମିକାରେ ଦମୟନ୍ତୀ ସାଜ ପୋଷାକରେ ଡାକ୍ତରଠାରୁ ଔଷଧ ଗ୍ରହଣ କରୁଛି। ସେ ପାରିବ ନାହିଁ।

ତେବେ ସେ ଧ୍ୟାନଗମ୍ଭୀର ବୁଦ୍ଧଦେବଙ୍କର ମୁଖମଣ୍ଡଳ କାହାରଅଛି–ଯେଉଁ ଆନନରୁ ଲାବଣ୍ୟ ଝରିପଡୁଥିବ–ଦୀର୍ଘ ନାସିକା, ଉନ୍ନତ କପାଳ ଓ ସ୍ଥିର ପଦ୍ମାସନ ଉପରେ ବସି ରହିଥିବା ସେଇ ବୁଦ୍ଧମୂର୍ତ୍ତି।

ଭାଳେଣି ପଡ଼ିଲା–କିଏ ସେ ନେବ ସେ ପାର୍ଟ। କଥା କହିବାକୁ ନାହିଁ, କେବଳ ବସି ରହିବାର ସ୍ଥିରାଭିନୟ। ଗୋଟିଏ ଗୋଟିଏ ଅଜନ୍ତାର ମୂର୍ତ୍ତି, ଲାସ୍ୟ ଦୋଳନରେ ଝୁଲି ଝୁଲି ନାଚି ଆସିବେ ଓ ତାହାରି ସହିତ ସଂହତି ରଖି ବୁଦ୍ଧଙ୍କର ଓଷ୍ଠାଗ୍ରରୁ ଝରି ଆସିବ କରୁଣାବୋଳା ସ୍ମିତ ହାସ୍ୟ ନିର୍ଝର।

ଡିରେକଟରଙ୍କୁ ଡାକପଡ଼ିଲା। ନୃତ୍ୟଶିକ୍ଷକ ଚିନ୍ତାଗ୍ରସ୍ତ। ବୁଦ୍ଧ ନହେଲେ ନଚଳେ।

ସୁମତି ଷ୍ଟେଜ୍‌ର ଗୋଟାଏ କଣରୁ ପହଁରାଧରି ଓଳେଇ ଆଣ୍ଠୁ ଆଣ୍ଠୁ ଟିକିଏ ଆଖି ବୁଜି ଥକା ମାରି ଆଣିଲା। ଗୋଡ଼ ଦୁଇଟା ଚକାମାଡ଼ି ପକାଇ ସେ ମୁହୂର୍ତ୍ତେ ବସିଯାଇଥାଏ। କାହାର ଗୋଚର ହେଲା ନାହିଁ ଏ ବସିବା ଢଙ୍ଗ।

ମାତ୍ର ଜଣକର ଆଖି ମୁଗ୍‌ଧତାରେ ଝଲସି ଉଠିଲା। ସେ ଆଖି କଲ୍ୟାଣୀଙ୍କର। ସେ ପାଟି କରି ଉଠିଲେ–ପାଇଛି, ପାଇଛି, ବୁଦ୍ଧଙ୍କୁ ପାଇଛି। ସୁମତିକୁ ସଜେଇ ଦିଅ।

ଝାଡୁଦାର ଝିଅ ଏକ ମୁହୂର୍ତ୍ତରେ ଭାଷ୍ୟ ରଚନା କରିଦେଲା–ବୁଦ୍ଧଂ ଶରଣଂ ଗଚ୍ଛାମି। ସଂଘଂ ଶରଣଂ ଗଚ୍ଛାମି।

ଆଃ! କି ସ୍ତିମିତ ଆୟତ ନୟନରେଖା। କି ସୁଠାମ ଗଣ୍ଡଦେଶର ଶ୍ରୀ! ମଥା ଉପର ଜଟା-ଜାଲର ବିଧୃତ ଗୁମ୍ଫନ ଭଙ୍ଗୀ!

ଏ ନବୀନ ଭିକ୍ଷୁବୃନ୍ଦଙ୍କ ସ୍ନିଗ୍‌ଧ ରୂପଶୋଭା ଦେଖି ବିଶିଷ୍ଟ ବରେଣ୍ୟ ଅତିଥି ଶୀତ୍କାର ଭୋଗିଲେ। ଦର୍ଶକ ଘନ ଘନ ହାତତାଳି ଦେଲେ। ଅଜନ୍ତାର ସ୍ୱପ୍ନ ସୁମତିର କର-କରୁଣା-ମୁଦ୍ରାରେ ସାର୍ଥକ ହୋଇଗଲା।

ଗୋଟିଏ ଟଙ୍କାର ପୁଞ୍ଜି ଯାହାର, ଯେଉଁ ହରିଜନ ବାଳିକାର, ତା ପାଖରେ ପୁରସ୍କାର ଆଜି ବହୁ ପ୍ରକାର। କାହିଁ ତଥାଗତ ବୁଦ୍ଧ, କାହିଁ ଚଣ୍ଡାଳିକା ସୁମତି।

× × ×

ଅଭିନୟ ଶେଷ ହେଲା।

– "ହେଃ–ଉଠନ୍ତୁ, କଅଣ ଏମିତି ବସିଥିବୁ କି ବୁଦ୍ଧ ହୋଇ?" ସୁମତିକୁ ହଲାଇ ଦେଇ କେହି ଜଣେ ଏମିତି କହିଲେ।

ବରେଣ୍ୟ ଅତିଥି ଆସିଲେ। ଜାଣିବାକୁ ପାଇଲେ ସେ ହରିଜନ ବାଳିକା। ଆନନ୍ଦରେ ତାଙ୍କର ଅନ୍ତର ଉଦ୍‌ବେଳିତ ହେଲା।

ଦଣ୍ଡକ ପରେ ସମସ୍ତେ ଖାଇ ବସିଲେ। ଯେ ଯାହା ଭୂମିକା ନେଇ ଆଲୋଚନା କଲେ–କେଉଁଠି କାହାର ଭୁଲ ତ୍ରୁଟି ଘଟିଲା, କିଏ କେଉଁଠି ନାଚୁ ନାଚୁ ଛନ୍ଦ ଲୟ ଭୁଲିଲା–ଏଇ ସବୁ କଥା।

ସମସ୍ତେ ଉଠି ଆସିଲେ। ନିଜ ନିଜ କୋଠରିକୁ ଚାଲିଲେ। ପ୍ରଶଂସିତ ଅଭିନୟରେ ଆତ୍ମହରା କଳାକାରମାନେ ବୁଡ଼ିଗଲେ ନିଜ ନିଜ କଳାକୃତିର ସ୍ମୃତିରେ।

ମାତ୍ର ଜଣେ ରହିଗଲା ବାସ୍ତବ ଜଗତରେ। ଯେ ମୁହୂର୍ତ୍ତକରେ ବୁଦ୍ଧ ସେ ଚିରକାଳକୁ ରହିଗଲା ହରିଜନ, ଅସ୍ପୃଶ୍ୟ, ଅପାଙ୍‌କ୍ତେୟ।

ସୁମତି ବାସନ ମାଜୁଥିଲା। କପାଳର ତାର ଚିତାଟା ଲିଭି ନ ଥିଲା। କରପଦ୍ମର ଈଷତ୍ ରକ୍ତିମା ବି ରହିଯାଇଥିଲା।

ଇସ୍, କଅଣ କଲା ମ? ଏତେ ଗୁଡ଼ାଏ ଗୋବର – ଏକା ଥରକେ ବାସନଟା ଚିକ୍ ଚିକ୍ କଲା; କିନ୍ତୁ ସୁମତିର ହାତ ଦୁଇଟା କାଦୁଅ ପାଉଁଶ ବାଲୁ ବାଲୁ।

ମଥାର ଖୋଷାଟା ତ୍ରିଶୂଳ ଭଳି ଗୋଟିଏ ବାଞ୍ଛିତ ଶ୍ରୀ ଧରି ଏବେ ବି ରହିଯାଇଛି। ସେଇଟାକୁ କେହି ଫିଟାଇ ଦେଇ ନାହାନ୍ତି।

ସୁମତି ବାସନ ଧୋଇ ଅଇଁଠାପତ୍ର ପକାଇ ସାରି ଦେଖିଲା କେହି କୁଆଡ଼େ ନାହାନ୍ତି। ଡାଇନିଂ ହଲ୍‌ଟା ଖାଲି।

ଦୂରରେ ଷ୍ଟେଜ୍‌ଟା ମୁକୁଳା ପଡ଼ିଛି–ତେବେ ବୁଦ୍ଧଙ୍କର ଗୁହାସ୍ଥିତ ଶିଳାଖଣ୍ଡ ଶୂନ୍ୟ ପଡ଼ିଛି। ସୁମତି ସେଇଆଡ଼କୁ ଅନେଇ ରହିଲା। ଧୀରେ ହଲ୍‌ଟାର କବାଟ ଆଉଜେଇ ଆଣି ପୁଣି ସେ ଥରେ ଫେରି ଚାହିଁଲା ତା ମୁହୂର୍ତ୍ତକର ଭାଷ୍ୟ ରଚନାର ସାର୍ଥକତାକୁ।



# ହେ ପଥ ହେ ପାନ୍ଥ !

ଯେଉଁ ସନ୍ଧ୍ୟାରେ ପାଥେରପୁରୀ ଛାତ୍ରାବାସ ପାଖରେ ନବନିର୍ମିତ "ପାନ୍ଥ-ନିବାସ"କୁ ମନ୍ତ୍ରୀ ମହୋଦୟ ସହରର ଗଣ୍ୟମାଣ୍ୟ ବ୍ୟକ୍ତିଙ୍କ ଗହଣରେ ଲାଲ୍ ରିବନ କାଟି ଉଦ୍‌ଘାଟନ କରିଥିଲେ, ସେ ସନ୍ଧ୍ୟାଟି ମୋର ମନେଅଛି।

ବହୁଦୀପ୍ତାଲୋକମାଳା ଭିତରେ ପାନ୍ଥ-ନିବାସ ଅମରାବତୀ ସାଜିଥିଲା। ଚାରିପଟେ ରାସ୍ତା ଉପରେ ଲୋକାରଣ୍ୟ। ନୂଆ ସୌଧ, ନୂଆ ଟେଲିଫୋନ୍, ନୂଆ ଆସବାବପତ୍ର।

ଚା' ଭୋଜି ଭିତରେ ପାନ୍ଥ-ନିବାସ ପ୍ରତିଷ୍ଠାର କାରଣସ୍ୱରୂପ ଅନେକ ଆଲୋଚନା ହେଇଥିଲା। କିଏ କିଏ କହିଥିଲେ - ଏହା ଦ୍ୱାରା ଟୁରିଜିମ୍ ବଢ଼ିଲା। ଲୋକେ ଦେଶବିଦେଶରୁ ଆସି ଆରାମରେ ଏଠି ରହିବେ। ଛବିଳଉତ୍କଳର ସୌମ୍ୟପ୍ରକୃତି ଦେଖି ଆତ୍ମବିଭୋର ହେବେ।

କିଏ ବା ମନ୍ତବ୍ୟ ଦେଲେ - ଆମେ, ଯେ କି ପୁରୀ ସହରର ଅଧିବାସୀ, ସ୍ତ୍ରୀଙ୍କ ସହିତ ଯେଉଁଦିନ ମନାମନି ହୋଇଯିବୁ, ସେଦିନ ଅଖିଆ ଅପିଆ ଏଇ ସୌଧକୁ ଚାଲିଆସି ଦିନଟାଏ ରହିଯିବା। ସ୍ତ୍ରୀ ଜାଣିବେ ଆମେ ଫେରାର। ଆମେ କିନ୍ତୁ ଦିବ୍ୟ ଭୋଜନ କରି ସନ୍ଧ୍ୟାବେଳକୁ ଘରକୁ ବାହୁଡ଼ିଯିବା। ଅଭିମାନବତୀର ଅଭିମାନ ଖସି ଯାଇଥିବ। ନରମି ଆସିଥିବ ତାର ମୁହଁର ଥନ ଥନ ଭାବ।

ଆଉ କିଏ କହିଲେ–ସଦାଦିନିଆ ଡାଲିଭାତ ଖାଇ ଅରୁଚି ହେଲେ ଏଠାକୁ ଆସି କିଛି ମୁଖରୋଚକ ମାଂସ, ଡିମ୍ବର ସଦ୍‌ବ୍ୟବହାର ହୋଇପାରିବ।

ଏମିତି କିଏ କେତେ କଥା କହିଲେ। ଯେ ଯାହା ଦୃଷ୍ଟିକୋଣରୁ ମନ୍ତବ୍ୟ ବାଢ଼ିଲେ ପାନ୍ଥ-ନିବାସର ଉପଯୋଗିତା ଘେନି। ମୁଁ ସବୁ ଶୁଣୁଥାଏ। ସ୍ୱଭାବରେ ମୁଁ ବାକ୍‌କୁଣ୍ଠ। କାହାର ଆଲୋଚନାରେ ରଙ୍ଗ ମିଶାଇ ଗୋଟାଏ କିଛି କଳ୍ପିତ ଇନ୍ଦ୍ରଧନୁ ସୃଷ୍ଟି କରିବା ମୋର ପ୍ରକୃତି ବାହାର କଥା।

ମୁଁ କେବଳ ଭାବୁଥାଏ, କିଏ ସେ ପଥିକ, ଯେ ଏ ନିବାସକୁ ଆପଣାର କରିନେବ ? କିଏ ସେ ଆତ୍ମଭୋଳା ପର୍ଯ୍ୟଟକ, ଯେ ଦିନେ ଦୁଇଦିନ ଏଠାରେ ରହି, ବିଶ୍ରାମ କରି, ସମ୍ମୁଖ ପାରାବାରର ଆଦିମ ତରଙ୍ଗଧ୍ୱନିକୁ କାନ ପତେଇ ଶୁଣିବ ? କିଏ ସେ ଛନ୍ନଛଡ଼ା ଜୀବନର ଲୋକ ଯେ ଏ ସଂସାରରେ ସବୁ ହରେଇ ଦେଇ ଆଉ କିଛି ରହିଗଲା ବୋଲି ହଜିଲା ନିଧିକୁ ଖୋଜି ଖୋଜି ଏଇ ପାନ୍ଥନିବାସକୁ ଚାଲିଆସିବ ?

ହୁଏତ ସେଇ ଯେ ପଥିକ କାହିଁ କେତେ ଦୂରରୁ ଆସୁଛି, ସୁଦୂରର ଆକର୍ଷଣକୁ ହୃଦୟରେ ରଞ୍ଜିତ କରି ଚାଲିଆସୁଛି, ସେ ଏଇଠାରେ ଆତ୍ମସମାହିତ ହୋଇ ବସିରହିବ ସୂର୍ଯ୍ୟାସ୍ତର ବର୍ଣ୍ଣାଳୀ ଆଭାକୁ ତନୁ-ମନରେ ପ୍ରଲେପିତ କରି।

କହି ହୁଏନା, କିଏ ଆସିବ କି ନ ଆସିବ। ଏ ତ ଗୃହାଙ୍ଗନ ନୁହେଁ ଯେ କାହାର ପାଦପାତପାଇଁ ଚାହିଁ ରହିଥିବ ସୁଲକ୍ଷଣୀ ଗୃହଲକ୍ଷ୍ମୀ ବଧୂ; ଅଞ୍ଜଳି-ବଦ୍ଧ ପ୍ରେମ-ସୋହାଗ ପୁଷ୍ପ ଧରି ଉଭା ହୋଇଥିବ ପ୍ରିୟତମର ବନ୍ଦାପନା ଉଦ୍ଦେଶ୍ୟରେ ?

ଏଠି ଦୁଇଜଣ ଯବନ ଖାନ୍‌ସାମା – ଶ୍ମଶ୍ରୁଳ – ମ୍ୟାନେଜର ବଳିଷ୍ଠ ଚେହେରା– ସଦା ବେଳେ ଖାତା ଧରି ବସିଥାନ୍ତି ଗୋଛାଏ ଚାବି ପାଖରେ ଥୋଇ। କେଉଁ କାମେରା ଖାଲି, କେଉଁଠି ଗୋଟାଏ ବେଡ୍‌ କାହାର ଦରକାର, ଡବଲ ବେଡ୍‌ରେ ଯେ ଶୋଇଛନ୍ତି ତାଙ୍କ ମଧ୍ୟରୁ ଜଣଙ୍କ ସୀମନ୍ତରେ ସିନ୍ଦୂର ଧାର ଅଛି କି ନାହିଁ – ନ ଥିଲେ ସଂଶୟ ମିଶା ଚାହାଣୀ, ତା ପରେ ସେ ଚାହାଣୀ ମିଳେଇ ଯାଏ; ଆସେ ପ୍ରତ୍ୟୟ...ବୋଧହୁଏ ବ୍ରଦର ଏବଂ ସିଷ୍ଟର...ପୁଣି ରାତିରେ ରୁଟି କି ଦିନରେ ପରଟା, ବ୍ରେକ ଫାଷ୍ଟରେ କଫି କି ଲେମ୍ବୁଦିଆ ଚା...ଏଇଭଳି କର୍ମବ୍ୟସ୍ତତାରେ ପାନ୍ଥନିବାସରେ କର୍ମଚାରୀ ସଜାଗ ପ୍ରହରୀ ଭଳି ଉଭା ହୋଇ ରହିଥାନ୍ତି।

ଏଇ ହେଲା ପାନ୍ଥ-ନିବାସ। ଏଠାରେ ନିବାସ ଅଛି ସତ, ମାତ୍ର କାହିଁ ପାନ୍ଥ, କେବେ ସେ ଆସିବେ ? ସତେ କଣ ସେ ଦେଖି ପାରିବେ ଆଗରେ ପ୍ରସାରିତ ଏଇ ଅନନ୍ତ ନୀଳ ସିନ୍ଧୁକୁ ? ତାର ବିକ୍ଷୁବ୍‌ଧ ଶିଶିରକଣା ଭିତରେ ସତେ କି ସେ ଦେଖିପାରବେ ଜୀବନ-ମୃତ୍ୟୁ-ଲୀଳା ଭିତରେ କେଉଁଟି କାହା ପଛରେ ରହିଛି, ଅବା ସେ କଅଁଣ ଅନୁଭବ କରିପାରିବେ ମହାନଟ ମହାକାଳ କେତେ ପ୍ରକାରେ କଅଣ ସଂଘଟନ କରିଯାଇଛି ?

ସଭା ଶେଷ ହେଲା, ଜଳପାନ ସରିଲା। ଚତୁର୍ଥୀ ଚନ୍ଦ୍ର ଉଠିଲା ଦିକ୍‌ଚକ୍ରତଳେ। କ୍ଷୀଣ ରଜତକାନ୍ତିରେ ଖଚିତ ହୋଇଗଲା ସାଗରବେଳା। ବିଧୁର ରାଗିଣୀରେ ସେତିକିବେଳେ କେଉଁ ଅଦୃଶ୍ୟ ବଇଁଶିଆଳର ବାଂଶରୀ ଗୁଞ୍ଜନ କଲା।

ମନ ମୋର ସରସତା ହଜାଇ ଦେଲା। ମତେ ଜଣାଇଲେ, ଏଇ ଲୋକଗୁଡ଼ାକ ଯେ ଏ ସବୁ ଆୟୋଜନ କରି ଗୋଟାଏ କିଛି ବଡ଼ କୀର୍ତ୍ତି କଲେ ବୋଲି ଆତ୍ମପ୍ରସାଦ ଲଭୁଛନ୍ତି। ବଡ଼ ଦୟନୀୟ, ସରକାରୀ କଳର ଅନାବଶ୍ୟକ କଳ-କବ୍‌ଜା-ଫିମ୍ପିମାରି ଆସୁଥିବା କଣ୍ଟା ବୋଲ୍‌ଟ–ପ୍ରାଣହୀନ, ରସହୀନ, ଅଥର୍ବ।

ଏହାପରେ ଅନେକ ଦିନ କଟିଯାଇଛି। କର୍ମକ୍ଳାନ୍ତ ଜୀବନରୁ ତ୍ରାହି ପାଇବାପାଇଁ ଥରେ ଥରେ ମୁଁ ପାଗଳ ଭଳି ଏଇ ପାନ୍ଥ-ନିବାସର ଗୋଟିଏ କକ୍ଷ ଭିତରକୁ ପଶିଯାଇ ଶୂନ୍ୟ ଥିବା ଖଟିଆ ଉପରେ ଗଡ଼ିଯାଏ। ତୁଣ୍ଡରୁ ବାହାରିଯାଏ–ଆଃ।

ଆରାମ, ଶାନ୍ତି ମୁହୂର୍ତ୍ତକ ପାଇଁ ହେଉ ପଛକେ ସାଗରର ଏଇ ଆଦିମ ନୃତ୍ୟ ମତେ ଦେଖାଇଦିଏ ମଣିଷ ଜୀବନର ଅବିନଶ୍ୱରତା। ସେ ରହିଛି, କେବେ ପ୍ରଶାନ୍ତ, କେବେ ଉଦ୍‌ବେଳ, କେବେ ଏକାନ୍ତ ଘନ ନୀଳିମା, କେବେ ଜ୍ୟୋସ୍ନାଙ୍କିତ ରଜତଶୁଭ୍ର।

ମ୍ୟାନେଜର ଦଉଡ଼ି ଆସନ୍ତି। ମୋର ଅତି ଆପଣାର ଶୁଭଚିନ୍ତକ ଭାବରେ କହନ୍ତି–କଅଣ ରାତିଟା ରହିବେ ? ବ୍ୟବସ୍ଥା କରିବି ?

ସେ ବ୍ୟବସ୍ଥା କଅଣ ମୁଁ ବୁଝେ। ପାଞ୍ଚ ଟଙ୍କାର ପାନୀୟ ଆହାର–ବଏ, ଚାକରମାନଙ୍କୁ ବକ୍‌ସିସ୍‌...ମନୋମତ ଡିସ୍‌ପାଇଁ ଏକ୍‌ଷ୍ଟ୍ରା।

ମୁଁ ଗୋଟାଏ କ୍ଳାନ୍ତର ହାଇମାରି କହେ, ଏ ବେଡ୍‌ଟା ବେଶ୍ ନରମ ଲାଗୁଛି–ଆଗ ଶୁଏ !

ତା'ପରେ ଯାହା ବ୍ୟବସ୍ଥା ପରେ ଦେଖାଯିବ। ଆପଣ ସେ ଝରକା ଖୋଲି ଦିଅନ୍ତୁ।

ଖୋଲା ଝରକା ଭିତରେ ଚାହିଁ ଦେଖେ– ଅପୂର୍ବ ! ! ଗୋଧୂଳି ଆକାଶର ରଙ୍ଗ ସାଗରକୁ ମତୁଆଲା କରୁଛି। ମାତାଲ ସାଗର ଉଛୁଳି ଉଠୁଛି ବକ୍ଷରେ ସମାପ୍ତ ସୂର୍ଯ୍ୟର କିରଣ ଧରି।

ଶାନ୍ତିରେ ଆଖି ବୁଜି ହୋଇ ଆସିଲା। ଧୀର ନମ୍ର ଚେତନା ଭିତରେ ଅନୁଭବ କଲି ମୁଁ ଆଉ ଏ ସଂସାରର ଜୀବ ହୋଇ ରହି ନାହିଁ। ମୁଁ ଭାସିଯାଉଛି ଉର୍ଦ୍ଧ୍ୱକୁ ଯେଉଁଠି ଜୀବନ ଓ ଅଜୀବନର ସୀମାନ୍ତ ସ୍ଥିର ନାହିଁ, ଉଷା ଓ ସନ୍ଧ୍ୟାର ସୀମାରେଖା ନାହିଁ।

ନିଶା ଗର୍ଜୁଛି। ପାରାବାରର ତରଙ୍ଗ ଘୋଷ ହିଁ ଏକମାତ୍ର ଶବ୍ଦ। ସର୍ବମୟ ସୁସୁପ୍ତିରେ ଧରା ସଂଜ୍ଞାହୀନ। ଏତିକିବେଳେ ନୈଶ ଆକାଶର ଏକମାତ୍ର ଅଭିଯାତ୍ରୀ ବିହଙ୍ଗଟିର ସ୍ୱନ ମୋର ସୁପ୍ତ ଚେତନାକୁ ବୋଧହୁଏ ଉଦ୍ଦୀପ୍ତ କରିଦେଲା। ମୁଁ ଚମକି ଉଠି ଶଯ୍ୟାଧାରରେ ଜାଗ୍ରତ ରହି ଯାହା ଶୁଣିଲି ତାହା ଏହି–

ନାଁ, ଆଉ ଡେରି କର ନାହିଁ; ଏଇ ଶୁଭମୁହୂର୍ତ୍ତ। ମହାବିଶ୍ୱର ଏଇ ମହାମୁହୂର୍ତ୍ତଟିକୁ ଛାଡ଼ିଦେଲେ ଆମେ ସହଜରେ ପରପାରକୁ ଯାଇପାରିବା ନାହିଁ। ଆସ ଶ୍ରୀଲତା, ଆଗରେ ସିନ୍ଧୁ ପ୍ରତୀକ୍ଷା କରୁଛି। ଭୟ କରୁଛ କି ? କହିଥିଲ ତୁମେ ଶକ୍ତ ହେବ, ଦୁଇ ହାତରେ ମୃତ୍ୟୁକୁ ଆଲିଙ୍ଗନ କରିବ, ମତେ ଅନ୍ତିମ ଚୁମ୍ବନରେ ଆତ୍ମହରା କରି ମରଣକୁ ଆଶ୍ଳେଷ ଦେବ, ଆସ !

ରମଣୀ କଣ୍ଠରୁ ଏଇ ଧ୍ୱନି ଆସିଲା–ମୁଁ ପ୍ରସ୍ତୁତ ପ୍ରିୟତମ। ତେବେ ମିଳାଇ ଯିବା ପୂର୍ବରୁ ମୁଁ ଥରେ ଦେଖିନିଏ ଏଇ ବିଶ୍ୱ-ପ୍ରକୃତିକୁ। ଆମର ଜନ୍ମ କେଉଁଠି, ପ୍ରତିପାଳିତ ହେଲୁ କେଉଁଠି, ପରସ୍ପରକୁ ହୃଦୟ ଦେଲୁ କେଉଁଠି, ଆଉ ଆଜି ଦୁହେଁ ହସି ହସି ମୃତ୍ୟୁକୁ ଆଲିଙ୍ଗନ କରିବାକୁ ଯାଉଛୁ କେଉଁଠି। ଦେଖ ବନ୍ଧୁ, ମୃତ୍ୟୁ ଆସୁଛି ଜାଣି ସୁଦ୍ଧା ମୁଁ ଗୋଟାଏ କିମିତି ପ୍ରମତ୍ତ ଆନନ୍ଦରେ ଅଧୀରା ହୋଇ ଉଠୁଛି। ମତେ ସ୍ପର୍ଶ କର। ମତେ ଚୁମ୍ବନ ଦିଅ।

କିଛି ସମୟ ନିସ୍ତବ୍ଧ। ପୁଣି ପୁରୁଷ କଣ୍ଠର ବାଣୀ–ଶ୍ରୀଲତା, ଭାବିଥିଲି ଯେଉଁ ଯୁଗରେ ମଣିଷ ମହାଜାଗତିକ ବଳୟ ଭିତରକୁ ଯିବା ପାଇଁ ଏତେ ସାଧ ସାଧନା କରୁଛି, ଯେଉଁ ଯୁଗରେ ବିଜ୍ଞାନର ଜ୍ୟୋତି ପୂର୍ବତନ ସମସ୍ତ ସଂସ୍କାରକୁ ନିଷ୍ପ୍ରଭ କରୁଛି, ସେଠି ଆମେ ଦୁଇଟା କଳାପ୍ରେମୀ ନରନାରୀ ଅମୃତମୟ ପ୍ରେମର ସ୍ନିଗ୍ଧ ଆବେଗକୁ ପ୍ରତି ଲୋମକୂପରେ ଅନୁଭବ କରି ସୁଦ୍ଧା ବଞ୍ଚିବାପାଇଁ ପଥ ପାଇଲୁ ନାହିଁ। କାରଣ ତମେ ମୋ ଜାତିର ନୁହଁ, ମୁଁ ତୁମ ଗୋତ୍ରର ନୁହେଁ। ଜାତି ଓ ଗୋତ୍ର–ଧଳା ଆଉ କଳା–ଏଇ ବୈଷମ୍ୟ ହିଁ ଆମ ଆଗରେ ଛିଡ଼ା ହେଲା ହିମାଳୟର ଦୁର୍ଗମତା ଘେନି।

–ମୃତ୍ୟୁ ଆନନ୍ଦମୟ। ଆସ ଶ୍ରୀ, ଯାହା ଦେଖୁଛି ଜୀବନର ଏ କୃଚ୍ଛତା ଘେନି ମଣିଷର ପଶୁ ରୂପକୁ ଅବଲୋକନ କରି ବଞ୍ଚିବା ଅପେକ୍ଷା ଏଇ ସର୍ବଦ୍ରଷ୍ଟା ବିରାଟ ମହୋଦଧିର ଜଳଧାରା ଭିତରେ ବିଲୀନ ହୋଇଯିବା।

–ତମେ ସାଜିଛ ନିଜକୁ ବଧୂବେଶରେ, ମୁଁ ସାଜିଛି ବରବେଶ। ମିଳନହେବ ଶୀତସ୍ନିଗ୍ଧ ସାଗରର ଶେଷ ବାରିସ୍ତରରେ, ଯେଉଁଠି ସହସ୍ର ମଣିମାଣିକ୍ୟ, ଅଜସ୍ର ରତ୍ନ ମୁକ୍ତା ଆମକୁ ସ୍ୱାଗତ

କରିବାପାଇଁ ରତ୍ନାକରଗର୍ଭରେ ବନ୍ଦନା-ଡାଲା ସଜାଉଥିବେ।

—ଶ୍ରୀ, ବୋଧହୁଏ ତୁମେ ମୃତ୍ୟୁ ପୂର୍ବରୁ କମ୍ପନ ଭୋଗୁଛ। ହଉ, ତୁମର ଅଳକ୍ତକ ଚରଣ-ଚାପରେ ଏ ଶିଶିରସ୍ନାତ ବେଳାଭୂମି ଅଙ୍କିତ ହେଉ। କାଲି ପ୍ରଭାତରେ ଏଥିରୁ କେତେକ ଲିଭିଯାଇଥିବ, କେତେକ ଅକ୍ଷତ ଥିବ। ଆମେ କିନ୍ତୁ ନ ଥିବା। ମହାକାଳ ଆମକୁ ସ୍ପର୍ଶ କରି ଯାଇଥିବ।

—ଆସ, ଜଗତ ନୀରବ, ଆକାଶ ସ୍ତବ୍ଧ। ଦୁଇଟା ନଗଣ୍ୟ ଜୀବପାଇଁ କାହାର ନେତ୍ରରୁ ଅଶ୍ରୁ ବହିବ ନାହିଁ। ଯାହାର ଅଶ୍ରୁ ବହିଥାଆନ୍ତା, ସେଇ ବାପା ମାଆ—ତମର ଓ ମୋର—ଏତେ କଠୋର, ଏତେ ହୃଦୟହୀନ!!

—ଲୋକେ କହିବେ ଆମେ ସଂଗ୍ରାମବିମୁଖ—ପରାଜିତ ହୋଇଗଲୁ। ମାତ୍ର ଶ୍ରୀଲତା, କାହିଁକି କେଜାଣି ଏ ମୃତ୍ୟୁ—ଏଇ ସିନ୍ଧୁ ଯେ ବକ୍ଷ-ଦୋଳାରେ ଶେଷ ନିଃଶ୍ୱାସ ତ୍ୟାଗର ମୋହ ମୋତେ ଆଜି ଜୀବନର ପରପାରକୁ ଯିବା ପାଇଁ ନିର୍ଦ୍ଦେଶ ଦେଇଛି। ସେ ନିର୍ଦ୍ଦେଶ ଅପ୍ରତିରୋଧୀ।

—ଏ ଜୀବନରେ ତୁମକୁ ଲୌକିକ ଅର୍ଥରେ ପାଇଲି ନାହିଁ। ମୃତ୍ୟୁ ପରେ ତୁମେ ଅଲୌକିକ ରୂପରେ ଧରା ଦେବ। ତୁମ ପ୍ରତି ମୋର ବିଶ୍ୱଜୟୀ ପ୍ରେମର ଏହାହିଁ ଉତ୍ସର୍ଗ। ଆସ, କ୍ରମେ ସିନ୍ଦୂରା ଫାଟି ଆସୁଛି। ଆସ। ଜୟ ମୃତ୍ୟୁ, ଜୟ ମହାସମାପ୍ତି!! ନମସ୍କାର ପାନ୍ଥ-ନିବାସ! ତୋରି କକ୍ଷ ଭିତରେ ଚାରୋଟି ଦିନ ଚାରୋଟି ରାତ୍ରି ଅଧିବାସ! ହଉ, ଶୁଣ—

× × ×

—ମୋର କଟୀ ବେଷ୍ଟନ କର ଶ୍ରୀଲତା। ପାଖାପାଖି ରହ। ମୃତ୍ୟୁ ସାମୟିକ ଯନ୍ତ୍ରଣା ଦେବ, ତେବେ ତାହା କିଛି ନୁହେଁ। ସେ ଯନ୍ତ୍ରଣାରେ ତୁମେ ଯେପରି ମତେ ଆଉ ମୋ ବାହୁ-ବନ୍ଧନକୁ ଛାଡ଼ି ନ ଦିଅ। ସୃଷ୍ଟିକର୍ତ୍ତାଙ୍କୁ ପ୍ରଣାମ କର। କହ – ଓଁ ସତ ତେ ଜଗତ୍‌କାରଣାୟ......

ମହୋଦଧିର ଆଜି ପୂର୍ଣ୍ଣତମ ଜଳଶୀତ୍କାର – ଅପୂର୍ବ ସେ ଲୀଳା!!

—କିଏ?

—ଆରେ ପାଗଳ ପାନ୍ଥ, ଏ କଅଣ ହେଉଛି? ଉଠି ଆସ। ଜୀବନକୁ ପୁଣି ଫେରିଆସ। ଭଉଣି, ଛି...ଛି... ଆରେ ଦୁର୍ବଳ ପାନ୍ଥ, ଦୁର୍ବଳ ତୁମର ପଥଚଲା। ଏ ବିଶ୍ୱ ତ ସୁମେରିରୁ କୁମେରୁଯାଏ ବିସ୍ତୃତ। କେଉଁଠି ଟିକିଏ ସ୍ଥାନ ପାଇଲ ନାହିଁ ଦୁଇଟି ହାତକୁ ଛନ୍ଦି ଦେଇ ପ୍ରଭାତୀ ବିହଗୀର କାକଳିରେ ଆଉ ଝରା ଶେଫାଳି ସ୍ପର୍ଶରେ ବିଶ୍ୱଦେବତାଙ୍କୁ ପ୍ରଣାମ କରି ବର ଆଉ ବଧୂ ହୋଇଯିବା ପାଇଁ?

—ଫେରିଆସ ପାନ୍ଥ। ତୁମ ପାଇଁ ମୃତ୍ୟୁ ଆସିବ ନାହିଁ। ଦୁର୍ଜୟ ବୀର ଆଗକୁ ଚାଲ। କହୁଥିଲ ତୁମେ ଦୁହେଁ କଳାପ୍ରେମୀ? କଳାର ମୃତ୍ୟୁ ଅଛି କି? ସମସ୍ତ ଜଞ୍ଜାଳ, ସମସ୍ତ ପୀଡ଼ନ, ସମସ୍ତ ଅବିଚାର ଭିତରେ ଶିଳ୍ପ ବଞ୍ଚିବ ଶିଳ୍ପୀକୁ ଘେନି। ଆସ ଶ୍ରୀଲତା, ଏହି ସୁନ୍ଦର ସୁକୁମାର ଦେହଟିକୁ ଭାବିଛ ସାଗର କଲ୍ଲୋଳରେ ଭସାଇ ଦେବ?

ଫେରିଆସ ପାନ୍ଥ, ଦୂରସୃତ ପଥ ଉପରେ ପୁଣି ଯାତ୍ରା ଅରମ୍ଭ କରିଦେବା। ମୋର କି ଆନନ୍ଦ ଯେ ମୁଁ ଶିଳ୍ପୀ-ଶିଳ୍ପକୁ ବଞ୍ଚାଇ ପାରିଛି। ଆରେ, ଚାରିଆଡ଼େ ଉଦ୍ୟତ-ଖଡ୍‌ଗ ଧରି ରାହୁ ଗ୍ରାସ

କରିବାକୁ ବସିଛି। ଏତିକିବେଳେ ସନା ସୁନ୍ଦର ଆଉ ଶିବର କଳ୍ପନାରେ ରାହୁର କଣ୍ଠ ଚିପି ଧରିବାକୁ ହେବ–ତା ନ କରି ଆତ୍ମବିଲୁପ୍ତି ଅଛି...

ମୁଖାମୁଖି ମୃତ୍ୟୁର କବଳରୁ ଫେରାଇ ଆଣିଲି ଶେଖର ଓ ଶ୍ରୀଲତାକୁ। ତା'ପରେ ଉତ୍କଣ୍ଠାଜନିତ ଅବଶଭାବ ମତେ ହିଁ ଗ୍ରାସ କଲା।

ଶ୍ରୀଲତାକୁ ଚାହିଁଲି, ଶେଖରକୁ ଦେଖିଲି। ପାନ୍ଥ-ନିବାସକୁ ନୂଆକରି ନିରୀକ୍ଷଣ କଲି। ଜୀବନ ଆଉ ମରଣ ଭିତରେ କେତେ ବା ବ୍ୟବଧାନ?

ମ୍ୟାନେଜର ବାବୁ ଅସ୍ତବ୍ୟସ୍ତରେ ଦଉଡ଼ି ଆସି ପଚାରିଲେ–କଅଣ ସକାଳୁ ସକାଳୁ ଗାଧୋଇ ଆସିଲେ ନାଁ କଅଣ?

ମୁଁ ଧୀରେ କହିଲି–ଶ୍ରୀଲତା, ତୁମେ ଯାଅ, ଲୁଗା ବଦଳେଇ ନିଅ। ଆଉ ଶେଖର, ତୁମେ କଅଣ ଖାଇବ–ମାନେ ଦୁହେଁ କଅଣ ଖାଇବ?

ମ୍ୟାନେଜର ବାବୁ ଜିଜ୍ଞାସୁ ଦୃଷ୍ଟିରେ ପଚାରିଲେ–ଆପଣଙ୍କ ସହିତ ଏମାନଙ୍କର ପରିଚୟ ଅଛି ନା କଅଣ?

ମୁଁ ହସି କହିଲି–ଏବେ ନୁହେଁ, ବହୁ କାଳରୁ, ଜନ୍ମାବଧି। ଏମାନେ ହିଁ ପ୍ରକୃତ ପାନ୍ଥ। ତୁମର ପାନ୍ଥ-ନିବାସ ନିର୍ମାଣ ସାର୍ଥକ ହୋଇଛି।

ଦେଖିଲି ପାନ୍ଥ-ନିବାସରେ ଏକ ସ୍ତମ୍ଭକୁ ଆଉଜି ବସିଛନ୍ତି ଶ୍ରୀଲତା ଓ ଶେଖର..ନିସ୍ତବ୍ଧ, ନିର୍ବାକ୍ ଏବଂ ଯାହା ଅତି ସୁନ୍ଦର ମହାନ୍ ଦ୍ରଷ୍ଟାଭାବରେ ସେମାନେ ଦେଖୁଛନ୍ତି ସମ୍ମୁଖ ପ୍ରସାରିତ କଲ୍ଲୋଳିତ ବାରିଧିକୁ, ଯାହାର ଗର୍ଭରେ ସେମାନେ ନିଃଶେଷ କରିଦେବାକୁ ଯାଉଥିଲେ ଏକ ମୁହୂର୍ତ୍ତକ ପୂର୍ବରୁ ନିଜ ନିଜର ସତ୍ତାକୁ।

ସେମାନଙ୍କ ଦୁଇଟି ଚପାଳ ଉପରେ ଦେଖୁଥିଲେ ଜୀବନ ଓ ମୃତ୍ୟୁର ଲୀଳା ଉତ୍ସବ। ଗୋଟିଏ ହାରିଗଲା–ସେଇଟି ମୃତ୍ୟୁ! ଅନ୍ୟଟିର ଜୟ ହେଲା-ସେଇଟି ଜୀବନ- ମହାଜୀବନ।



# ଯୁଗପୁରୁଷର କାହାଣୀ

—ଆସ ବାବା, ତମକୁ ଦେଖାଇଦିଏ ଶହେବର୍ଷଧରି ଆଲୁଅ ଅନ୍ଧାର ଭିତରେ ଗୁଡ଼ାଏ ଲୋକ ଏକା ମାଆ ପଣତ ତଳେ କେମିତି ନିଜକୁ ତିଆରି କରିଛନ୍ତି। ତମେ ତ ଏବର ଶୁକ୍ରତାରା; ଦେଖିନିଅ ତୁମ ପୂର୍ବେ ଏ ଗଗନ କେମିତି ଜ୍ୟୋତିର୍ମୟ ଥିଲା।

—ଆପଣ କିଏ ?

—ମୁଁ ଯୁଗ ପୁରୁଷ। ଭଙ୍ଗା ଗଢ଼ାର କେତେ ବିଚିତ୍ର ଦୃଶ୍ୟ, କେତେ ସଙ୍ଗୀତର କଳତାନ ତଳେ ମୁଁ ଦେଖିଛି ଶୁଣିଛି।

—ଏ କଣ କରୁଛନ୍ତି ?

—ଏ ପ୍ରଣାମ କରୁଛନ୍ତି ତାଙ୍କ ଗୁରୁଦେବଙ୍କୁ। ଏ ଗୋଟିଏ ଗୋଟିଏ ଗୁରୁ ଶହେ ବର୍ଷର ନୀଳ ଦିଗନ୍ତ ତଳେ ଗୋଟିଏ ଗୋଟିଏ ଉଦ୍‌ଭାସିତ ଆତ୍ମା।

ଯୁବକ ପଚାରିଲା—ଏ ଏମିତି କସରତ କରୁଛନ୍ତି କିଆଁ ? ଏ ଭଳି ଭଙ୍ଗୀର ପ୍ରଣାମ ଆଗେ ଥିଲା କି ?

—ଏ କସରତ ନୁହେଁ ବାବା, ଯାହାକୁ ତୁମେ ଏପରି କହୁଛ, ତାହା ସଭକ୍ତି ପ୍ରଣାମ—ପୂଜ୍ୟ ଗୁରୁଙ୍କ ପାଖେ ଅଷ୍ଟାଙ୍ଗି ଯୋଡ଼ହସ୍ତରେ ନମସ୍କାର। କଥା ନ କହିଲେ କି ଗୁରୁ ଆଶୀର୍ବାଦ କରନ୍ତି—ଶିଷ୍ୟ ଗ୍ରହଣ କରନ୍ତି।

—କିନ୍ତୁ ଏବେ ଆମେ ଯେଉଁ ନମସ୍କାର କରୁଛୁ, କେତେ ତଫାତ୍। ଆମ ହାତ ଖାଲି ନଥାଏ, ଯୋଡ଼ିବୁ କେମିତି ? ସିଗାରେଟ ଥାଏ, ପୁଣି କଳା ଚଷମାକୁ ହଲାଇ ହଲାଇ ଆମକୁ ବାଟ ଚାଲିବାକୁ ହୁଏ, ପ୍ରେମିକା ଉଦ୍ଦେଶ୍ୟରେ ଆଖି ଠାରି ଚାଲିଲାବେଳେ ଅନ୍ୟମନସ୍କ ରହିବାକୁ ପଡ଼େ। ପୁଣି ସାଇକେଲ୍‌ରେ ଗଲାବେଳେ—ନାଁ ନମସ୍କାର ନୁହେଁ, କେବଳ ବିଧିରକ୍ଷା କରିବାକୁ ହାତଟାକୁ କୁରାଢ଼ୀ ଉଞ୍ଚେଇବା ଭଳି ଉଞ୍ଚେଇ 'ହାଲୋ' କହି ଦେଉ। ଅଧୁନାତନ ନମସ୍କାର ପ୍ରଣାଳୀ ତ ଏଇଆ !

ଯୁଗପୁରୁଷ ହସିଲେ। କହିଲେ—ହଁ, ଯୁଗ ବଦଳିଛି। ଦେଖିବ ସେ ପ୍ରାଚୀନ ଗୁରୁମାନଙ୍କୁ ? ଦେଖ – ପୂଜ୍ୟ ଆର୍ତ୍ତବଲ୍ଲଭ ମହାନ୍ତି, ନିରଞ୍ଜନ ନିୟୋଗୀ, କେ: ପି. ସିହ୍ନା, ବାବା କର୍ତ୍ତାର ସିଂ, ନିର୍ମଳଚନ୍ଦ୍ର ବାନାର୍ଜୀ, ଲକ୍ଷ୍ମୀକାନ୍ତ, ନାରାୟଣ ମିଶ୍ର, ଘନଶ୍ୟାମ ଦାସ ଏମିତି କେତେ...ଦେଖୁଛ ?

—ବାବା, କି ଗମ୍ଭୀର ! କି ପୁରୁଷ ଏମାନେ ! ଭୟ ଲାଗୁଛି—ଯୁବକ ଶିହରି ଉଠିଲେ।

—ନାଁ, ଭୟର କଥା କିଛି ନାହିଁ। ଯାଙ୍କ ଆଗରେ ମଥା ନଇଁଯାଏ, କାରଣ ଏମାନେ ଜ୍ଞାନ-ଗର୍ଭ ଥିଲେ, ଛାତ୍ରବତ୍ସଳ ଥିଲେ, ଗମ୍ଭୀର ଥିଲେ, କୌଣସି ପ୍ରକାର ନୀଚତା ଏମାନଙ୍କୁ ସ୍ପର୍ଶ କରୁ ନ ଥିଲା। ଗୁରୁର ଯାହା ସତ୍ୟ, ଜ୍ଞାନ ତାହା ରହିଥିଲା ଏମାନଙ୍କ ପାଖରେ; ତେଣୁ ଏମାନଙ୍କ ଅଧ୍ୟାପନା ଶ୍ରେଣୀ ବଡ଼ ଆକର୍ଷଣୀୟ ହୋଇଯାଏ। ମୃତ

ବୈଜ୍ଞାନିକ, ଦାର୍ଶନିକ, କବି, ନାଟ୍ୟକାର ସମସ୍ତେ ସମାଧିରୁ ଫେରିଆସି ଜୀବନ୍ତ ହୋଇଯାନ୍ତି ଏମାନଙ୍କ ଅଧ୍ୟାପନା ଚାତୁରୀରେ।

ଯୁବକ ହସିଲେ। କହିଲେ–ଦୁଃଖ ଲାଗୁଛି କହିବାକୁ, ହେ ଯୁଗପୁରୁଷ, ଆଜି ଏମାନେ ଅଚଳ। ଆଚ୍ଛା, ପୂର୍ବର ଏହି ଗୁରୁମାନେ କେଉଁ କେଉଁ ହୋଟେଲରେ ଖାଉଥିଲେ, କେଉଁ ସିନେମା ଦେଖୁଥିଲେ ?

–ହୋଟେଲ ? ସିନେମା ? ଛି, ଛି, କେଉଁ ଦୁଃଖରେ ସେମାନେ ହୋଟେଲକୁ ଯିବେ ?

ଯୁବକ କହିଲେ–ପିଲାମାନଙ୍କୁ, ମାନେ ଛାତ୍ରମାନଙ୍କୁ ସାଙ୍ଗରେ ଧରି ସିନେମା ନ ଦେଖିଲେ କି ହୋଟେଲରେ ନ ଖୁଆଇଲେ କ୍ଲାସରେ ଡିସିପ୍ଲିନ୍ ରହିବ କେମିତି ? ପାଣ୍ଡିତ୍ୟ ଘରେ ତ ଶୂନ୍ୟ, ଅବଶ୍ୟ ସମସ୍ତେ ନୁହନ୍ତି ଯେ, ଅଧିକାଂଶ – ତେଣୁ କୌଣସି–ମତେ ନିରୁପଦ୍ରୁତ ଜୀବିକାର୍ଜନ ପାଇଁ ଛାତ୍ରମାନଙ୍କୁ ବଶ କରିବାକୁ ହେବ।

–ବାବା, ତମ କଥା ବେଶ୍ ଭଲ ଲାଗୁଛି। ଏବେ କଅଣ ଏଇଆସବୁ ଚାଲିଛି ?

–ହଁ, ଶୁଣନ୍ତୁ, ବଶ କରିବାକୁ ପଡ଼େ। ନାନା ଉପାୟ ଅଛି–ଅବଶ୍ୟ ସେମାନଙ୍କୁ ଦୋଷ ଦେଇ ହେବନି। ସମାଜର ଆବର୍ତ୍ତଟା ସେଇଆ ହୋଇଯାଇଛି। ଶିକ୍ଷାଦାନ ଜୀବିକା ହୋଇଯାଇଛି, ତେଣୁ ତଦୂର୍ଦ୍ଧ୍ୱ ଆଉ କିଛି ନାହିଁ। ଅନୁରୋଧ କଲେ ସେମାନେ ପାଶ୍ କରାଇ ଦିଅନ୍ତି।

–ସତେ ?

–ହଁ, ଏଇଟାତ ମାନବିକବୋଧ !

–ନିଶ୍ଚୟ ! ନିଶ୍ଚୟ !

–ପୁଣି ନିଜ ପ୍ରିୟ ଛାତ୍ରପାଇଁ ଅନ୍ୟ ପରୀକ୍ଷକକୁ କହିପାରନ୍ତି।

–ଏଇଟା କଅଣ ମୈତ୍ରୀ ?

–ନିଶ୍ଚୟ, ନିଶ୍ଚୟ !

–ଆଉ ଯଦି ଶିକ୍ଷକଙ୍କର ରାଜନୀତି ଦଳ ସହିତ ଛାତ୍ର ପଟୁଆରରେ ଯାଉଥାଏ, ତେବେ ତ ହୋଇଗଲା, ଚିନ୍ତା ନାହିଁ।

–ସତେ ? ବଡ଼ ଅଦ୍ଭୁତ ଲାଗୁଛି। ଶିକ୍ଷକମାନେ ରାଜନୀତି କରନ୍ତି ?

–କରିବେନି ? ମଣିଷ ଜୀବନ ସହିତ ରାଜନୀତି ଅଙ୍ଗାଙ୍ଗୀ ଜଡ଼ିତ, ଦୋଷ ତ ନାହିଁ ?

ଯୁଗପୁରୁଷ ଦୀର୍ଘ ଶ୍ୱାସ ପକାଇ କହିଲେ–ହୁଏତ ଦୋଷ ନାହିଁ।

"ଧା ତିନି୍, ତିନ୍‌ଧା, ତେରେକେଟେ ତାକ୍, ତାକ୍।"

–ଏ କଅଣ ଆଜ୍ଞା ?

ଯୁଗପୁରୁଷ କହିଲେ–ନାଚ, ପିଲାମାନେ ନାଚୁଛନ୍ତି। ନାଟକ ହେବ, ପ୍ରସ୍ତୁତି ଚାଲିଛି। ଆର୍ତ୍ତବଲ୍ଲଭ ବସିଛନ୍ତି, ନାରାୟଣ ମିଶ୍ର ଆନନ୍ଦରେ ଗଦ୍ ଗଦ୍, ଘନଶ୍ୟାମ ବିହ୍ୱଳ, ଲକ୍ଷ୍ମୀକାନ୍ତ ଚୌଧୁରୀ ଦିଗଦର୍ଶନ ଦେଉଛନ୍ତି। ନାଟକ କିନ୍ତୁ ଐତିହାସିକ ଆଉ ପୌରାଣିକ। ବଡ଼ ଧୁମ୍‌ଧାମ୍।

–କିନ୍ତୁ ପୁଅଗୁଡ଼ାକ ନାଚୁଛନ୍ତି ଯେ ?

–ଆଉ କିଏ ନାଚନ୍ତେ ?

—ଝିଅ କାହାନ୍ତି? ମେଳା ମେଳା ରାସ୍ତାରେ ବାଡ଼େଇ ହୋଇ ଯାଉଛନ୍ତି।

—ସେତେବେଳେ ଏମିତି ନଥିଲା। ଗୋଟିଏ କି ଦୁଇଟି ସୁରକ୍ଷିତ ବ୍ୟୂହ ଭିତରେ ଆବଦ୍ଧ, ବନ୍ଧନୀ। ତେଣୁ ପୁଅମାନେ ନାଚୁଥିଲେ, ସ୍ତ୍ରୀ ଭୂମିକାରେ ଅଭିନୟ କରୁଥିଲେ।

—ଏଁ, ଛିଃ, ଛିଃ – ଯୁବକ ନାକ ଟେକିଲେ।

—ଶୁଣ ବାବା, ଖୋଲି ଦେଉଛି ଯୁଗ ତୋରଣ। ଦେଖ ଆଲମ୍‌ଗିରିର ଅଭିନୟ, ଦେଖ ଦେବାସୁର ସଂଗ୍ରାମ, କେତେ କଅଣ। କଅଣ ଦେଖୁଛ?

ଯୁବକ କହିଲେ – ଦେଖୁଛି ରାଜକିଶୋର ରାୟ, ଦୀନବନ୍ଧୁ ସାହୁ, ବିବୁଧେନ୍ଦୁ ମିଶ୍ର, ଅସୀତ୍ ଦାସ ପ୍ରଭୃତି ନାରୀ ଭୂମିକାରେ। କିନ୍ତୁ କ୍ଷମା କରିବେ, ଏମାନେ ବାସ୍ତବରେ ପୁଅ ନାଁ ଝିଅ?

ଯୁଗପୁରୁଷ ହସିଲେ। କହିଲେ... ଏମାନେ ପୁଅ, ଏବେ ପ୍ରୌଢ଼। କିନ୍ତୁ କି ଚମତ୍କାର ଅଭିନୟ କରୁଛନ୍ତି ଏମାନେ!

– ବାସ୍ତବିକ ଅଦ୍ଭୁତ! ଏବେ କିନ୍ତୁ ଝିଅମାନେ ଅଭିନୟ କରୁଛନ୍ତି। ସେଥିପାଇଁ ମହା ଭିଡ଼। ବାପା ମାଆ ଆଗେଇ ଦେଉଛନ୍ତି ସେମାନଙ୍କୁ। ବିଭା ବଜାର ତ ପୁଣି ଗୋଟାଏ ଅଛି? ଏ କଅଣ? ଏମିତି ରୁଷି ବସିଛନ୍ତି କାହିଁକି? ଆଗରେ ଖାଲି ଥାଳି ଗିନା! ଖାଇବାକୁ ବସିଛନ୍ତି ବୋଧହୁଏ।

ଯୁଗପୁରୁଷ ଉତ୍ତର ଦେଲେ – ଠିକ୍ କହିଛ ଯୁବକ, ସେମାନେ ରୁଷି ବସିଛନ୍ତି। କାରଣ ରାନ୍ଧୁଣୀ ଭୁଲରେ ଅରୁଆ ଭାତ ଜାଗାରେ ଉଷୁନା ରାନ୍ଧି ଦେଇଛନ୍ତି। ଏମାନେ ସମ୍ବଲପୁରଆଡ଼ ପଶ୍ଚିମ ଓଡ଼ିଶାର ଛାତ୍ର। ଅରୁଆ ଖାଇବାରେ ଅଭ୍ୟସ୍ତ। ତେଣୁ କ୍ଷୋଭ ପ୍ରକାଶ କରୁଛନ୍ତି।

ଯୁବକ ହଠାତ୍ ଧ୍ୱନି ଦେଲେ–

—ତା'ହେଲେ ଉଷୁନା ଭାତ ମୁର୍ଦାବାଦ, ଅରୁଆ ଭାତ ଜିନ୍ଦାବାଦ! ସମ୍ବଲପୁର ହୁଏ ଏକଯୁଟ୍! ପଶ୍ଚିମ ଓଡ଼ିଶା ବିଚ୍ଛିନ୍ନ ହେଉ! ପଶ୍ଚିମ ଓଡ଼ିଶା ବିଚ୍ଛିନ୍ନ ହେଉ! ଆମେ ଚାହୁଁ ଅରୁଆ ଭାତ! ଇନ୍‌କିଲାବ୍ ଜିନ୍ଦାବଦ!

—ଆରେ, ଆରେ, ଏ କଅଣ?

—କ୍ଷମା କରିବେ, ଏଇଟା ଅଭ୍ୟାସ ହୋଇଯାଇଛି। ଟିକିଏ ବିପ୍ଳବର ସୁରାକ୍ ପାଇଲେ ସ୍ଲୋଗାନ୍ ଦେଇ ଆମେ ଏମିତି ଗର୍ଜିଉଠୁ। ଏମାନେ ଧର୍ମଘଟ କଲେନି–ବସ୍, ଟ୍ରାମ୍ ପୋଡ଼ିଲେନି?

—ଶୁଣ ବାବୁ, ଅଧୀର ହୁଅନି। ଧର୍ମଘଟ ବୋଲି ସେମାନେ କିଛି ଜାଣି ନଥିଲେ; କେବଳ ରୁଷି ବସିଲେ। ଅରୁଆ ଭାତ ରନ୍ଧା ହେଲା; ସେମାନେ ଆନନ୍ଦରେ ଖାଇଲେ। ସେତେବେଳେ କଟକ ସହର ଅରଣ୍ୟମୟ, ବସ୍ କାହିଁ? କେତୁଟା ଘୋଡ଼ାଗାଡ଼ି। ଅବଶ୍ୟ ମହାତ୍ମାଗାନ୍ଧୀଙ୍କ ଡାକରେ ୧୯୪୨ ଅଗଷ୍ଟ ଆନ୍ଦୋଳନ। ଡକ୍‌ଟର ପରିଜା ପ୍ରିନ୍‌ସପାଲ୍, ପର୍କିନ୍ ସାହେବ ଆଇ.ଜି. ପୁଲିସ। ରେଭେନ୍‌ସା କଲେଜ ଅଫିସରେ ନିଆଁ। ପର୍କିନ୍ ସାହେବ ମିଲିଟାରୀ ପୁଲିସ ଧରି କମ୍ପାଉଣ୍ଡରେ ଛିଡ଼ା ହୋଇଛନ୍ତି ଶ୍ରୀ ପରିଜାଙ୍କ ଇସାରା ଅପେକ୍ଷାରେ, ଗୁଳି ଚାଳିବ ଯଦି ପରିଜାସାହେବ...।

ପରିଜ୍ଞା ପାଗଳଭଳି ଚିତ୍କାର କରୁଛନ୍ତି–ନୋ, ପାର୍କିନ ନୋ। ସମସ୍ତ କଲେଜ ଜଳିଯାଉ ପଛକେ ନୋ ଫାଇରିଙ୍ଗ...

ସ୍ୱର୍ଗୀୟ କରୁଣାକର କରଙ୍କ ବେକରେ ଫୁଲମାଳ–ଚାକିରୀ ଛାଡ଼ନ୍ତୁ। ନାରାୟଣ ମିଶ୍ର ନସରପସର ଦଉଡ଼ୁଛନ୍ତି ଲାବୋରେଟରୀ ଆଡ଼େ "ଆରେ ଚଣ୍ଡାଳ, ସବୁ ପୋଡ଼ରେ–କିନ୍ତୁ ଲାବୋରେଟରୀକୁ ରକ୍ଷା କର!"...ଆର୍ତ୍ତବାବୁ ଦାରୁଭୂତୋ ବୈଷ୍ଣବ ମୂର୍ତ୍ତି। ସମାନ୍ତରାଳ ଶାସନ ଚାଲିଛି ଇଷ୍ଟ ଓ ଓଏଷ୍ଟ ଛାତ୍ରାବାସରେ। ...ଏଇ ବିକ୍ଷୋଭ, ମହାଭାରତୀୟ ବିକ୍ଷୋଭ। କିନ୍ତୁ ଛୋଟ ଛୋଟ କଥାରେ ସେତେବେଳେ ଯୁବଶକ୍ତି ଅପଚିତ ହେଉ ନଥିଲା।

ଯୁବକ ହଠାତ୍ ଦେଖିଲେ ଗୋଟିଏ ଦୃଶ୍ୟ। "ଶୁଣମ, କବିତା ଲେଖିଛି–ତୁମକୁ ଉତ୍ସର୍ଗ କରିବି।" ତରୁଣ କବି ଏକଥା କହିଲେ ଛାତ୍ରୀ ତରୁଣୀଙ୍କୁ।

–କର।

–ତୁମେ ହସ।

–ହସୁଛ ତ! ଦେଖ, ଆର୍ତ୍ତବାବୁ ସେବାଟେ ଆସୁଛନ୍ତି, ଦେଖିବେ।

–ସେ ଜାଣନ୍ତି। କେବେ ଟିକିଏ କଥାବାର୍ତ୍ତା?

–ଶେଷ ପିରିଅଡ଼ରେ। ସୁପ୍ରୀତି ସେତେବେଳେ ନ ଥିବେ।

ଯୁଗପୁରୁଷ ହସିଲେ –କଅଣ ଦେଖିଲ?

–ପ୍ରଣୟ।

–କିନ୍ତୁ ଏ ପ୍ରଣୟ ସେତେବେଳେ ଛାତ୍ରକୁ କରୁଥିଲା କବି, କାବ୍ୟକାର, ଉଚ୍ଚାକାଙ୍କ୍ଷୀ। ମୋଟେ ଦୁଇଜଣ ୧୯୩୩ରେ, ଆଜି କେତେ?

–ଅସଂଖ୍ୟ ଆଜ୍ଞା।

–ପ୍ରଣୟ?

–ଖୁବ୍ ଶସ୍ତା।

–ଦୁର୍ଘଟଣା?

–ଅନେକ!

–ଯାକୁ କହୁଛ ପ୍ରଗତି?

–ନିଶ୍ଚୟ, ନିଶ୍ଚୟ, କାରଣ ନଗ୍ନତାହିଁ ପ୍ରଗତି। ଯେତିକି ପ୍ରେମ ନଗ୍ନ ହେବ, ସେତିକି ଆମେ ବିଶ୍ୱ ସହିତ ପାଦ ମିଳାଇ ଚାଲିବୁ।

ଯୁଗପୁରୁଷ ଗମ୍ଭୀର ଭାବରେ କହିଲେ–ଶୁଣ ବନ୍ଧୁ, ରେଭେନ୍ସା କଲେଜ ଇତିହାସରେ ସେତେବେଳର ଦୁଇ ତିନୋଟି ପ୍ରଣୟ ଉଚ୍ଛ୍ୱାସ ଆଜି ଐତିହାସିକ ହୋଇ ରହିଯାଇଛି। ନାରୀ କୋମଳ ତରୁଣକୁ କରିଛି ତାର ସୁଖ ପାଇବା ଦାନରେ କବି; ମୂଳରେ ସେଇ ଅଚିନ୍ତ୍ୟ ଅନନ୍ତ ରସ ଥିଲା। ଆବରଣଯୁକ୍ତ ସଂସ୍କାରପିହିତ ସେଇ ପ୍ରାଣ ବିନିମୟରେ ଉଚ୍ଚ ସୃଜନୀ ଶକ୍ତିର ଉଦ୍‌ଭବ ଘଟିଥିଲା।

–କୁହନ୍ତୁ, କେହି ଈର୍ଷାତୁର ହେଉ ନ ଥିଲେ?

–ହେଉଥିଲେ, ମାତ୍ର ତାହା ଶାନ୍ତ ଈର୍ଷା। ସେଥିରେ କ୍ଷୟ କରିବାର କିଛି ନଥିଲା।

–ଏ କଅଣ ?

—କୁକୁର !

—ବାଃ, ଚମତ୍କାର ଲୋମଶ ପ୍ରାଣୀ !

—ହଁ, ପ୍ରିନ୍‌ସପାଲ ଡବ୍‌ଲିଉ, ଭି.ଡି. ଉଡ୍‌ଙ୍କର।

—ଏ ଦୃଶ୍ୟ ଦେଖାଇବାର ଅଭିପ୍ରାୟ ?

—ପ୍ରିନ୍‌ସପାଲ କ୍ଷମା ମାଗିଥିଲେ।

—କଥାଟା କୁହନ୍ତୁ ନାଁ !

—ଶୁଣ, ସାହେବ ପ୍ରିନ୍‌ସିପାଲ ସାଧାରଣଜ୍ଞାନ ପଢ଼ନ୍ତି। ପୁରୁଷ-ସିଂହ ସେ ଥିଲେ। ଥରେ ତାଙ୍କ ପୋଷାକୁକୁର ପଶି ଆସିଲା କ୍ଲାସକୁ। ପିଲାଏ ନାକ ବନ୍ଦ କଲେ। କୁକୁର ମଦ ପିଇଥିଲା—ତାର ସ୍ୱାସ୍ଥ୍ୟ ପାଇଁ। ପ୍ରିନ୍‌ସପାଲ ଜାଣିଲେ। କହିଲେ, "ଗୋ, ଗୋ, ତୋର ଆସିବାର ଯାଗା ଏହା ନହେଁ। ତୁ ଡ୍ରିଙ୍କ୍ କରିଛୁ ତୋର ସ୍ୱାସ୍ଥ୍ୟପାଇଁ। ପିଲାମାନେ, ମତେ କ୍ଷମା କରିବ—ତୁମକୁ ଅସୁବିଧାରେ ପକାଇଲି।"

ଯୁବକ କହିଲେ - ଖୁବ୍ ଉଦାର ତ ?

ଯୁଗପୁରୁଷ କହିଲେ - ସେତେବେଳର ଚଳଣୀ ତାହାହିଁ ଥିଲା। ସେ ଥିଲା ସ୍ୱର୍ଣ୍ଣଯୁଗ। ମାନବ ପ୍ରାଣରେ ସତ୍ୟ ଶିବ ସୁନ୍ଦରର ଆରାଧନାର ଘଣ୍ଟି ପ୍ରତିଧ୍ୱନିତ ହେଉଥିଲା। ହେବନି ? ଜାତିର ଜନକଙ୍କ ନେତୃତ୍ୱରେ ସଂଗ୍ରାମ ଚାଲିଥିଲା ଏ ଦେଶକୁ ବିଦେଶୀ ବନ୍ଧନରୁ ମୁକ୍ତ କରିବାପାଇଁ। ମୁକ୍ତ ହେଲା ଦେଶ। ଏବେ କଅଣ ଘଟୁଛି ?

ଯୁଗପୁରୁଷ ଦେଖିଲେ...ଯୁବକ ନାହାନ୍ତି। ଶତ ବର୍ଷର ଉଚ୍ଛ୍ୱାସମୟ ସଂସ୍କାର ଓ ଅତୀତ ସମୃଦ୍ଧି ଭିତରେ ସେ ଆତ୍ମଗୋପନ କରିଦେଲେ। ମହାକାଳର ଚକ୍ର ବିଘୂର୍ଣ୍ଣିତ। କିଏ କହିବ କେଉଁ ସମୟ, କେଉଁ ମୂଲ୍ୟବୋଧ, କେଉଁ ଜୀବନ, କେଉଁ କୀର୍ତ୍ତି ସତ୍ୟ ?



# କେରଳ-କାକଳି

ଡାକବଙ୍ଗଳା ବାରଣ୍ଡାରେ ବସିଥିଲି। ସୂର୍ଯ୍ୟ ବୁଡ଼ିଯାଇଥିଲେ। ଗୋଟି ଗୋଟି ହୋଇ ଚାଷୀମାନେ ସାତଜଣ ଆସିଲେ। ଆଗରୁ ମତେ ସହଧର୍ମିଣୀ କହିଥିଲେ, "ଦେଖ, ହୁଡ଼ିକରି କଥା କହିବ ନାହିଁ। ସେମାନଙ୍କୁ ବାପଲୋ ଧନଲୋ କହିବ। ଯେତେ ନରମ ହୋଇପାର ହେବ। ଦୁନିଆ ଯାହା ହେଲାଣି ନାଁ ଆମ ଗଣ୍ଡାକ ନ୍ୟାୟ ନୀତିରେ ନେଇଗଲେ ହେଲା। ପାଣିପଶା ଚାଉଳ କିଣି ଖାଇ ଖାଇ ନୟାନ୍ତ ହେଲଣି। ସେ ବି ସମୟରେ ମିଳୁନି। ତମେ ଯାହା କ୍ଷଣକୋପୀ ନାଁ, ମତେ ଡର ମାଡୁଛି।"

ଏଇ ମୋର ଗାଁ, ଜନ୍ମ ହୋଇଥିଲି ଛପନବର୍ଷ ପୂର୍ବରୁ। ଆମ୍ବଗଛ ତଳେ କେତେ ବୁଲିଛି, ମଶାଣି ପଦାରେ ଜୁଇ ଜଳିବାର ଦେଖିଛି। ସେ ଶିବ ମନ୍ଦିର ଏବେ ବି ଅଛି। କେତେ ମରିହଜି ଗଲେଣି। ସାଆନ୍ତ ବ୍ରାହ୍ମଣ ସାହିର ଏ ଯେଉଁ ଲୋକଗୁଡ଼ାକ ମୁଁ ଏବେ ଦେଖୁଛି, ତାଙ୍କୁ ଚିହ୍ନି ପାରୁନି। ଯାଙ୍କ ସହିତ ପୂର୍ବର ଧର୍ମବିଶ୍ୱାସୀ, ସରଳ, କଷ୍ଟସହିଷ୍ଣୁ ଓ ଅକପଟ ଲୋକଙ୍କର ନାଡ଼ି ନକ୍ଷତ୍ରର ସଂଯୋଗ ନାହିଁ।

ଡାକବଙ୍ଗଳାଟି ରାସ୍ତା ତଳକୁ। ଗାଁ ଆହୁରି ତଳକୁ। ମୋ ଜନ୍ମବେଳେ ଥିଲା ଦୀପରୁଖା, ସଳିତା ଆଉ ଜଡ଼ାତେଲ। ଜେଜେ ଶିବଭକ୍ତ। ଶିବଦର୍ଶନ ନ କଲେ ଜଳ ଛୁଅନ୍ତି ନାହିଁ। ଦେହ ଉଜ୍ଜ୍ୱଳ ବର୍ଣ୍ଣ। ସେ ଖୁବ୍ ବେଶୀ ବୟସରେ ମାଟିରେ ମିଶିଗଲେ। ଧୀରେ ଧୀରେ ଗାଁରେ କୁଷ୍ଠରୋଗ ବ୍ୟାପିଲା। ସେଥିରେ କେତେ କ୍ଷତକାୟ ହୋଇ ଚାଲଗଲେ। ନୂଆ ଟୋକାଏ ଗାଁକୁ ଛାଡ଼ି ବିଦେଶ ଗଲେ। ମଝିରେ ମଝିରେ ଆସନ୍ତି, କଥା ଓ ଚାହାଣୀରେ ନୂଆ ଇଙ୍ଗିତ ଦିଅନ୍ତି ସହର ଜୀବନର। ଏବେ ବିଜୁଳି ଆଲୁଅ ରାସ୍ତା ଉପରେ ଜଳୁଛି। ଚାଉଳ କଳ, କରତକଳ ବସିଛି। ଡାକବଙ୍ଗଳାଆଗରେ ଚାହା ଦୋକାନ। ସଞ୍ଜରେ ଜନଗହଳି ହୁଏ। ଗୋଟାଏ ବସ୍ ସେତିକିବେଳେ ଯାଏ।

ଗାଁ ମାଳୀ ଗୋଟିଏ ଭଙ୍ଗା ନାଗସାପର ତିନିଖଣ୍ଡ ମୂର୍ତ୍ତିକୁ ମୁଣ୍ଡ ଉପରେ ଥୋଇ ଆସି କହିଲା, "ସାଆନ୍ତେ ଜୁହାର। ଗାଁ ତ ଆଉ ମନେ ପଡୁନି। ଶୁଣିଲି ଆସିଛ ବୋଲି। ବାପା ଦାନ କରିଥିଲେ ଏହି ତମ୍ବା ସାପକୁ। ଲିଙ୍ଗ ଚାରିପଟେ ଠିକ୍ ଘେରି ରହିଥିଲା। ଥରେ ପୂରା କଳସୀଟିଏ ଜଳାଧାର 'ହର ହର ବଂ ବଂ' କହି ଢାଳିଦେଲାବେଳକୁ ଦେଖିଲି ସର୍ପ ତିନିଖଣ୍ଡ ହୋଇଗଲେ। ମାଟିରେ ଶୋଇପଡ଼ି ଡାକିଲି– 'ହେ ଦେବ ଦେବ ମହାଦେବ, ଏ କଅଣ ହେଲା, ଦୋଷ ଥିଲେ କ୍ଷମା କର।' ଏବେ ଆଣିଛି। ଏଇଠି କଂସାରୀ ଅଛନ୍ତି, ଯୋଡ଼ିଦେବେ ସର୍ପ ଦେବତାଙ୍କୁ। ଖାଲି ତମେ ବାପାଙ୍କ ନାଁ ରଖି କିଛି ଅର୍ଥ ଖରଚ କଲେ ହେଲା। ତମ ବାପା ତ ସ୍ୱର୍ଗପୁରରେ, ଜାଣିଲେ ଖୁସୀ ହେବେ।"

ଚାଲିଗଲି କୈଶୋରୀୟ ଅତୀତ ଅବସ୍ଥାକୁ। ସତରେ ସେ କି ଯାନିଯାତ୍ରା! ଶିବ ମନ୍ଦିର ଚାରିପଟେ କି ମେଳା ମଉସବ! ଆହା, ସେ ଧର୍ମଭାବ କୁଆଡ଼େ ଗଲା? ମନେପଡୁଛି ଗାଁରେ ଥିଏଟର କରାଇଥିଲି।

ମାସେ ହେବ ରିହର୍ସାଲ ହେଲା। ବଡ଼ବାବୁ ବୋଲି ସମସ୍ତେ ଡାକୁଥିଲେ। କହୁଥିଲେ ପେଟରେ ପେଟେ ପାଠ ମୁଁ ପୂରାଇଛି। କାର୍ତ୍ତବୀର୍ଯ୍ୟ ଡ୍ରାମା। ଗୋପାଳ, ମଥୁରା, ତନ୍ତୁବାୟ ମାଧବ, ହରିଜନ ସପନା, ବିପ୍ର ରାମଚନ୍ଦ୍ର, ଗୁଡ଼ିଆ ଉପେନ୍ଦ୍ର କେତେ ଯେ କିଏ ପାର୍ଟ ନେଇଥିଲେ। ସ୍ତ୍ରୀ ଭୂମିକାରେ ଗାଁର ଛନ ଛନ କିଶୋର ଟୋକାଏ ଯେଉଁ ଠାଣି ଆଉ ବାଣୀରେ ଡ୍ରାମା କଲେ ନାଁ ଦଶକୋଶ ଦୂରରୁ ଦେଖଣାହାରୀ ହାୟ ହାୟ କହିଲେ।

ମୁଁ ଥିଲି ହିରୋ ଓ ଡିରେକ୍‌ଟର। ମାସେ କାଳ ଗର୍ଜି ଗର୍ଜି ଠିକ୍ ଦିନେ ଅଛି ଡ୍ରାମା ମୋ ତଣ୍ଟି ପଡ଼ିଗଲା। ଗାଁ ଯାକ ଆବାଳବୃଦ୍ଧବନିତା ବିପଦ ମଣିଲେ। ତଣ୍ଟି ଫିଟୁନି, ସ୍ୱର ବାହାରୁନି, ମୁଁ କିପରି ଅମିତ୍ରାକ୍ଷର ଛନ୍ଦକୁ ରୌଦ୍ର ରସରେ ବ୍ୟକ୍ତ କରିବି ? ବ୍ରାହ୍ମଣଶାସନ ମୋର ତଣ୍ଟି ଭଲହୋଇ ଯାଉ ବୋଲି ଯନ୍ତାଳ ଯାଚିଲେ। ଅଣଜାତିପାଟକମାନେ ଛେଳି ବଳି ଦେବେ ବୋଲି ଶରଣ ପଶିଲେ ଆର ଗାଁ ବାସେଳୀ ପାଖରେ। ଯୁବତୀମାନେ ଲୁହ ଗଡ଼ାଇଲେ – କାରଣ ସେମାନେ କବାଟ ରନ୍ଧ୍ରରୁ ଓ ଅଳ୍ପ ଉଚ୍ଚା କାନ୍ଥ ଉପରେ ନିଶୁଣି ଥୋଇ ଓ ଚଢ଼ି ଦେଖିଥିଲେ ମୋର ରିହର୍ସାଲ ଆଉ ମୋର କମନୀୟ ରୂପ। କେତେକ ତହିଁରୁ ଶିବସାକ୍ଷୀ ରଖି ମନେ ମନେ ବରି ନେଇଥିଲେ ପରେ ଜାଣିଲି। ବୈଦ୍ୟକୁ ଗାଁବାଲା ଡାକିଲେ। ସେ କିଛି ଔଷଧ ଦେଇ ପାରିଲେନି। ଶେଷକୁ ଗୁଡ଼ିଆ ଉପେନ୍ଦ୍ର କହିଲା... ମୁଁ ଚେଷ୍ଟା କରିବି। ଘଣ୍ଟାଏ ପରେ ଫେରିଆସି ମତେ ଚିତ୍ କରି ଶୁଆଇଦେଲେ - ଅବଶ୍ୟ ମୋ ତଳେ ଆରାମପ୍ରଦ ବିଛଣା ଥାଏ। ମୋ ବେକ ଚାରିପଟେ ଗରମ ପରେଟା କେତୁଟା କନା ଭିତରେ ପୂରାଇ ବାନ୍ଧିଦେଲା ଆଉ ସମବେତ ଜନତାକୁ ସମ୍ବୋଧି କହିଲା - "ବୋଲ ଜୟ ବୁଦ୍ଧେଶ୍ୱରଙ୍କୁ ଜୟ, ବଡ଼ବାବୁଙ୍କ ତଣ୍ଟି ଫିଟିଯାଉ।"

ଏ ରାତିକଥା। ସକାଳ ଦି'ପ୍ରହର ହୋଇଗଲା। ମୁଁ ଶୋଇଥାଏ। ବୋଧହୁଏ ଖୁବ୍ କ୍ଳାନ୍ତ ଥିଲି। କାର୍ତ୍ତବୀର୍ଯ୍ୟ ଭୂମିକା ବଡ଼ ପ୍ରଚଣ୍ଡ। ଆଖି ଫିଟାଇ ଦେଖିଲି–ସାଧୁସନ୍ନ୍ୟାସୀମାନଙ୍କୁ ଯେମିତି ପ୍ରଣାମ ଜଣାଇ ଭକ୍ତମାନେ ଛିଡ଼ା ହୋଇଥାନ୍ତି, ସେମିତି ଗ୍ରାମର ବହୁ ଯୁବକ ଯୁବତୀ ଦଣ୍ଡାୟମାନ। ମୁଁ କଥା କହିଲି ସ୍ପଷ୍ଟ ଓ ସୁନ୍ଦର। ମୁଁ ସା, ରେ, ଗା, ମା, ପା, ଧା, ନି ସବୁ ସ୍ୱରକୁ ପରୀକ୍ଷା କଲି– ଶାନ୍ତଠାରୁ ରୌଦ୍ରରସ ପର୍ଯ୍ୟନ୍ତ ମିଶାଇ... ଠିକ୍ ହେଲା, ସ୍ୱାଭାବିକ ହେଲା। ଆଃ, ଆଜି ଏ ପ୍ରୌଢ଼ ବୟସରେ ମନେପଡୁଛି ସତେକି ମୁଁ ଇଲେକ୍‌ସନ୍‌ରେ ଜିଣିଯାଇ ମୋର ପ୍ରତିପକ୍ଷକୁ ଚିତ୍‌ପଟାଙ୍ଗ କରିଦେଇଛି। ମୋର ସମର୍ଥକ ଓ ସମର୍ଥିକାମାନେ ହରିବୋଲ ହୁଳହୁଳି ଦେଇ ମତେ କୋଳ କଲେ। ସେହି ରାତ୍ରରେ କାର୍ତ୍ତବୀର୍ଯ୍ୟ ଭୂମିକାରେ ମୁଁ ଅଗଣିତ ଜନତାକୁ ସ୍ପନ୍ଦିତ କରିଥିଲି।

ଫେରି ଆସିଲି ଚେତନା ସ୍ତରକୁ। କାରଣ ହଠାତ୍ ମଦ୍ୟପାନର ଦୁର୍ଗନ୍ଧ ମୋ ନାକ ଫଟାଇଦେଲା। କାହାର ମୁହଁରୁ ଏ କଡ଼ା ଦୁର୍ଗନ୍ଧ ? ନିରାକାରବାବୁ, ଥିଲେ କମ୍ୟୁନିଷ୍ଟ, ଅଛନ୍ତି ବି, ମାତ୍ର ମୋହରିରଗିରୀ କରନ୍ତି ରାଜଧାନୀରେ। ଗାଁର ନମସ୍ୟ ବୁଦ୍ଧିଜୀବୀ। ସେ କହିଲେ– "ଆଜ୍ଞା, ଆପଣ ଆସିଛନ୍ତି, ଦର୍ଶନ କରିବାକୁ ଆସିଲି। ଆପଣଙ୍କ ପିତା ପ୍ରପିତାଗଣ ଏ ଚାଷୀମାନଙ୍କ ତୁଣ୍ଡରେ ମହାପ୍ରସାଦ ଦେଇଥିଲେ ବୋଲି ଏମାନେ ଧର୍ମକୁ ମାନିଛନ୍ତି। ନ ହେଲେ ଆପଣ କାଣିଚାଏ ପାଇବେନି। ଆପଣ

ହାତରେ ଚାଷ କରୁନାହାନ୍ତି। ତେଣୁ ତାଙ୍କ ଦୟା ଉପରେ ରହିବାକୁ ହେବ।"

ମୁଁ ମନେ ମନେ ବିରକ୍ତ ହେଲି। କହିଲି, ଦେଖ ନିରାକାର, ମୋ ବିଷୟରେ ତୁମର ମଥା ବ୍ୟଥା ଦରକାର ନାହିଁ। ତା'ଛଡ଼ା ତୁମେ ଡ୍ରିଙ୍କ୍ କରିଛ– ଦୂରକୁ ଯାଅ।" ନିରାକାର କହିଲା – "ଏ ଯେଉଁ ନିନ୍ଦା କଲେ ଆପଣ ଯେ ମୁଁ ମଦ ପିଇଛି ତାହା ବଡ଼ ଅବାନ୍ତର କଥା। ସତ କହିବାକୁ ଗଲେ କିଏ ନ ପିଉଛି ? ଏଥିରୁ ମୁନ୍ଦିଏ ନ ହେଲେ ଗାଁର ହାନିଲାଭ ବୁଝିବାରେ ଯେ ପରିଶ୍ରମ ସହିବାକୁ ହେଉଛି ତାହା ସହି ହେବ କି ? ମଦ୍ୟ ସବୁ ସରଳ କରିଦିଏ।" ମୁଁ ଆଶ୍ଚର୍ଯ୍ୟ ହେଲି। ଏ ଲୋକଟା ଏମିତି ନିର୍ଭୟରେ ଏସବୁ କିମିତି କଅଣ କହୁଛି ? ମୋର ଚାଷୀ ଗୋବିନ୍ଦ କହିଲା– "ଛାଡ଼ନ୍ତୁ ବାବୁ, ଏ ଗାଁରେ ଏମିତି କେହି ନାହିଁ ଯେ ନିଶା ନ ଧରିଛି। କଅଣ କରିବୁ, ଟା' ଟିକିଏ ପେଟରେ ପଡ଼ିଲେ ଯେମିତି ଭୋକ ମରିଯାଏ, ନିଶାପାଣି ସେମିତି ସବୁ ଦୁଃଖ ହରି ନିଏ।"

ମୁଁ ମୂର୍ଖଭଳି କହିଲି – କି ଦୁଃଖ ?

ହଠାତ୍ ଗୋଟାଏ ଉଚ୍ଚ ଅଟ୍ଟହାସରେ ଗୁଡ଼ିଆ ଭୋବନି, ଯାହାର ବାପା ସହିତ ମୁଁ ପାର୍ଟି କରିଥିଲି, ସେ ଗୋଟାଏ ଲୁଙ୍ଗି ଫାଲ୍‌ଟାମାରି ମୋ ଆଗରେ ଛିଡ଼ା ହୋଇ କହିଲା– "ବାବୁ, ଦୁଃଖ ଆଉ କଅଣ ?" ଏତିକି କହିବାରୁ ଦମକାଏ ଗଞ୍ଜେଇ ଦୁର୍ଗନ୍ଧ ମୋ ନାକ ଫଟାଇ ଦେଲା। ମୁଁ କହିଲି, "ଭୋବନି, ତୁମେ ଗଞ୍ଜେଇ ଖାଇଛ ?" ସେ କହିଲା, ଗଞ୍ଜେଇଖିଆକୁ ନିୟମ ଆଉ ଧର୍ମରେ ପକାଇବାପାଇଁ ପ୍ରତି ରାତିରେ ତ୍ରିନାଥ ମେଳା କରୁଛି। ଡାକି ବଢେଇ ଖାଉଛୁ।"

ମୁଁ କେବଳ ଭାବୁଥାଏ – ମୁଁ କେଉଁ ଗାଁକୁ ଆସିଲି ? ମୋର ଜନ୍ମସ୍ଥାନ ସତେ କଅଣ ଏଇଟା ? ଅତୀତରେ ଧର୍ମ କର୍ମର ଯେ ଅପୂର୍ବ ଭାବରେ ହୁରୀ ଖେଳୁଥିଲା, ଏ କଣ ସେଇ ଗାଁ ? ଏଠି ସର୍ପଦେବତା କେବଳ ମାଠିଆଏ ପାଣିରେ ଭାଙ୍ଗିଯିବେନି ତ କଅଣ ରହିବେ ?

ମୋର ବୁଢ଼ା ପୁରୁଣା ଚାଷୀ ଚୈତନ୍ୟ କହିଲା– "ଏ ଦୁଇଜଣ ନିଶାଖୋର ଟାଉଟର ଏ ଗାଁକୁ ସାରିଦେଲେ। କାହା ନାଁରେ ଗୋଟାଏ ଦିଇଟା ମକଦ୍ଦମା ଏମାନେ ଚଳେଇ ନାହାନ୍ତି ? କହନ୍ତି ମନ୍ତ୍ରୀଙ୍କ ସାଙ୍ଗେ ବସି ଶାସନ ବିଷୟରେ କଥାବାର୍ତ୍ତା ହୁଅନ୍ତି; ହଉଥିବେ !"

"ଓଃ କିଆଁ ଗୁଡ଼ାଏ ଟାଉଟର ଟାଉଟର ହଉଚ ହେ ଚୈତନ୍ୟ–କିଏ ଟାଉଟର ନୁହେଁ ? କିଏ ଛୋଟ କିଏ ବଡ଼। ଚୁପ୍‌କର, ଆଉ ସେମିତି କହିବ ନାହିଁ।"

"ହେଃ.....ହେଃ.....ଆମ ବାବୁ ସାଆନ୍ତେ ଧାନ ଚାଉଳ ନେବାକୁ ଆସିଛନ୍ତି – ଦର୍ଶନ କରିବାକୁ ଆସିଲି। ଚାଷୀମାନେ କେତେ ଦେବେ ବୋଲି କହୁଛନ୍ତି ?" ଏ ହେଉଛି ପୂର୍ବତନ ମାଳୀବଂଶର ସୁଯୋଗ୍ୟ ବଂଶଧର ଶିବସେବକ ନୀଳାମ୍ବର। କିନ୍ତୁ ଏମିତି ଢଳୁଛି କିଆଁ ?

ଚୈତନ୍ୟ କହିଲା– " ଆଜ୍ଞା ଏଇ ଅଫିମା ନୀଳା ଆମକୁ ବରାବର ଶିଖାଉଛି ଆପଣଙ୍କ ଭାଗ ନ ଦେବାକୁ। କଳିଗୋଳ ହେଲେ ସେ ଫାଇଦା ଉଠାଇବ। କିନ୍ତୁ ଆପଣଙ୍କ ମାଆ ବଞ୍ଚିଥିବାବେଳେ ଆମକୁ–ଆମ ସାତଜଣଙ୍କୁ–ଜଗନ୍ନାଥଙ୍କୁ ଛୁଆଇଁ କହିଥିଲେ– "ତମେମାନେ ମୋ ପୁଅ ବୋହୂ ଆଉ ପିଲାମାନଙ୍କୁ ହଇରାଣ କରିବ ନାହିଁ। ବିଲ ଧରିଛ–

ନ୍ୟାୟ ନୀତିରେ ତାଙ୍କ ଗଣ୍ଡାକ ତାଙ୍କୁ ଦେଇଦେବ।” ଏବେ ଏ ସର୍ବନାଶିଆ ଟାଉଟର ଗାଁ ଗାଁରେ ମକଦ୍ଦମା କରି କାହା ଝିଅକୁ, କାହା ବୋହୂକୁ ଶିଖାଇ କଲିକତାରେ ବିକ୍ରିକରି ଦି’ପଇସା ରୋଜଗାର କରି ନିଶରେ ଘିଅ ବୋଲୁଛନ୍ତି। କହୁଛନ୍ତି କ’ଣ ନାଁ– ସେମାନେ ମନ୍ତ୍ରୀଙ୍କ ସାଙ୍ଗ। ଏଇ ଡାକବଙ୍ଗଳାରେ କଅଣ ନ ହୁଏ ? ପୁଲିସ ଆସନ୍ତି, ଫରେଷ୍ଟର ଆସନ୍ତି, ଭୋଜି ହୁଏ। ଚୋର ଧରାପଡୁ ନାହାନ୍ତି। ନିଜେ ଜୀବନ ନେଇଛି ବୋଲି ମିଛ କହି କେତେ ମାଇପିଙ୍କୁ ଗାଁରେ ମାରି ଆମ୍ବଗଛରେ ନଟକାଇ ଦେଉଛନ୍ତି। ଖୁବ୍ ଅନାଚାର ଆଜ୍ଞା। ଭଗବାନ ସହିବେନି !”

ବୁଢ଼ା ଚୈତନ୍ୟକୁ ଚାହିଁଲି। ତିନିଜଣ ଟାଉଟରଙ୍କୁ ଦେଖିଲି। ଆଶା ମୋର ରହିଲା ନାହିଁ ଭାଗଚାଷୀଙ୍କଠାରୁ ମୋ ଅଂଶ ଧାନ ଚାଉଳ ପାଇବି ବୋଲି। ତେବେ ଚୈତନ୍ୟ ଯେତେବେଳେ ମହାପ୍ରସାଦ, ଜଗନ୍ନାଥ ଆଉ ଧର୍ମ କଥା କହୁଛି, କେଜାଣି ବା କିଛି ପାଇବି !

ପୁରୁଣା ମଟର-ସାଇକେଲରେ ଆସିଗଲେ ଗ୍ରାମ ମାମଲତକାର ଏକ ରାଜନୈତିକ ଦଳର ଦଲାଲ। ମୁଁ ଯାଙ୍କୁ ଜାଣିଥିଲି। କହିଲି, “ଆସନ୍ତୁ ହରିବାବୁ, ଆଉ ଖବର କଅଣ ?”

ମଟର ସାଇକେଲ ଥୋଇ ଦେଇ ହରିବାବୁ କହିଲେ– “ଆପଣ ଆସିଛନ୍ତି ଶୁଣି ଆସିଲି। କାବିନେଟ ମିଟିଂ ଥିଲା ରାଜଧାନୀରେ। ମୁଁ ଆମ ଅଞ୍ଚଳ ମନ୍ତ୍ରୀଙ୍କ ପାଖେ ନ ରହିଲେ ସେ ଭାବନ୍ତି ଯିମିତି ସେ ଅଥଳ ସମୁଦ୍ରରେ ବୁଡ଼ିଯାଇଛନ୍ତି– ସାହା କେହି ନାହିଁ। ସେ ବୁଡ଼ିଗଲେ ମୁଁ ଧରିପକାଏ, ସେ ଭାସନ୍ତି।”

ମୁଁ କହିଲି– “କାହିଁକି, ମନ୍ତ୍ରୀଙ୍କର ସେକ୍ରେଟେରୀ ତ ଥିବେ ?”

ହରିବାବୁ ଆଖି ନଚାଇ କହିଲେ– “ହଇଏ, ସେକ୍ରେଟେରୀ କଅଣ କରିବେ ? ଭିଲେଜ ପଲିଟିକସ୍‌ରେ ଆମେ ଧୁରନ୍ଧର। ହଁ ବାବୁ, ଆସିଲେ ଯେ ଧାନ ଚାଉଳ ତ କିଛି ମିଳିବ ନାହିଁ। ଗରିବ ଚାଷୀ ଖାଇବାକୁ ପାଉନାହାନ୍ତି। ଜମି ଚଷୁଛନ୍ତି, ସେ ଆଉ କଅଣ ଦେବେ ? ନାଁ କଅଣ କହୁଛ ଚାଷୀଏ ?

ଚାଷୀମାନେ ନୀରବ।

ମୁଁ କହିଲି, “ଏମାନେ ମୋ ପୂର୍ବପୁରୁଷ ଅମଳରୁ ଚାଷୀ ଅଛନ୍ତି। ତାଙ୍କର ସତ୍ୟ ଆଉ ଧର୍ମ ଉପରେ ବିଶ୍ୱାସ ଅଛି ବୋଲି ମୋର ଧାରଣା ହୋଇଛି। ମୋର ପୈତୃକ ବିଲର ଅମଳରୁ ଯାହା ନ୍ୟାୟ ସେତିକି ଦିଅନ୍ତୁ।”

ହରିବାବୁ କହିଲେ– “ଆଜ୍ଞା, ଏ ଗାଁ ଖଣ୍ଡିକ ଆମ ଭାରତବର୍ଷରେ, ଆଉ କେରଳ ବି ଭାରତବର୍ଷରେ–ଅତଏବ...”

– “ଅତଏବ କେରଳ ଯାହା କରିଛି ଏଠି ବି ସେଇଆ ହେବ। ଆପଣ କିଛି ପାଇବେନି। ମୁଁ ହେଡ୍‌କ୍ୱାର୍ଟସକୁ ଚିଠି ଦେଇଛି। ମୁଁ ନେତୃତ୍ୱ ନେଇଛି।” ହରିର ମୁହଁରୁ ବି ମଦ ଗନ୍ଧ ବାହାରୁଥାଏ। ମତେ ବାନ୍ତି ଆସୁଥାଏ।

ମୁଁ ତାତି ଉଠିଲିଣି। ଏ ହରିଆକୁ ଧକ୍‌କାଟାଏ ଦେଇ ତାର ମଟରସାଇକେଲ ସମେତ ଯାକୁ କଚାଡ଼ି ଦେବି କି ଭାବି କ୍ରୋଧରେ କଅଣ କହି ଆସୁଥିଲି, ଏତିକି-ବେଳେ ସହଧର୍ମିଣୀ ସମସ୍ତଙ୍କ ଆଗକୁ ବାହାରି ଆସି କହିଲେ “ମୁଁ ବିଛଣାପତ ବାନ୍ଧି ସାରିଛି। ଚାଲ

ଟିକିଏ ଶିବଦର୍ଶନ କରି ଫେରିଯିବା। ପୂର୍ବପୁରୁଷଙ୍କୁ ଆଜି ଶେଷଥର ପାଇଁ ତର୍ପଣ କରିଦେବା। ଏ ମାଟି, ଏ ବିଲ ହରିବାବୁଙ୍କ ଭଳି ମହାନ୍ ପୁରୁଷମାନଙ୍କର ଭୋଗ୍ୟ ହେଉ। ବୁଦ୍ଧେଶ୍ୱର ଏମାନଙ୍କୁ ଆହୁରି ବଡ଼ କରନ୍ତୁ।"

ଘରର ବୋହୂଙ୍କୁ ସମସ୍ତେ ଏମିତି ହଠାତ୍ ଦେଖିବାମାତ୍ରେ ସେମାନଙ୍କ ଧମନୀରେ ସେଇ ଗ୍ରାମର ପୁରୁଷାନୁକ୍ରମିକ ସାମନ୍ତ ଘର ପ୍ରତି ଅତୀତ ଶ୍ରଦ୍ଧା ଓ ସଂଭ୍ରମ ଖେଳିଗଲା।

ସାତ ଜଣ ଚାଷୀ ଛିଡ଼ା ହେଲେ। ଚୈତନ୍ୟ କହିଲା– "ରଖ ହରିବାବୁ ତମ କେରଳ କଥା। ତମେ କିଏ ହେ ଆମକୁ କହିବ ବାବୁଙ୍କ ନାଯ୍ୟ ଫସଲ ନ ଦେବାପାଇଁ? ଟାଉଟରୀ କରି ସର୍ବନାଶ କଲ ଏ ଗାଁକୁ। ତମ କଥାରେ ଆମେ ଧର୍ମକୁ ମାନିବୁନି? ଆଜି ମଲେ କାଲିକି ବାସିମଡ଼ା। ହଉ ମାଆ, ଘଣ୍ଟାଏ ରହ, ଆମେ ଶଗଡ଼ରେ ଧାନ ଚାଉଳ ବୋଝେଇ କରି ନେଇ ଆସୁଛୁ। ଧର୍ମ ବଡ଼ ମାଆ, ପେଟ ଦେଖେଇ ମାଗିନେବୁ ପଛକେ ଆମ ଗରିବ ପିଲାପିଲିଙ୍କ ପାଇଁ, ହେଲେ ଅଧର୍ମ କରିବୁନି।"

ସେମାନେ ଚାଲିଗଲେ। ଟାଉଟରମାନେ କି କୌଶଳ ଖଞ୍ଜିବେ କେଜାଣି! ମୋର ଆଗରେ ପଡ଼ିରହିଥାଏ ଚନ୍ଦନ ପ୍ରଲେପ ଚିହ୍ନିତ ତିନିଖଣ୍ଡି ନାଗସର୍ପର କଳେବର। ସେଗୁଡ଼ିକୁ ହାତରେ ଧରି ନମସ୍କାର କରି ଯୋଡ଼ିଦେଲି। ସାପଟି ଯିମିତି ଫଣା ଟେକିଲା! ଚୈତନ୍ୟ ଯାଉ ଯାଉ କହୁଥିଲା– ଧର୍ମ ବଡ଼ ମାଆ, ଧର୍ମ ବଡ଼।





ବିଶ୍ୱମାତା ପରମର କରୁଣା ସ୍ୱରୂପା
ଶାଶ୍ୱତ ଜ୍ୟୋତିଃଶିଖା
"ସ୍ୱର୍ଣ୍ଣସେତୁ, ଅପୂର୍ବ ଅନଳ"
ଦିବ୍ୟଜନନୀ ଶ୍ରୀମାଙ୍କର
ପଦସରୋଜ ତଳେ ...

ରାଜକିଶୋର

ଶ୍ରୀକ୍ଷେତ୍ର,
୧ ୯ ୭ ୩ ନଭେମ୍ବର ୧ ୭ ତାରିଖ

# ଦୁର୍ବଳ ଦେବାଳୟ

ଘଟଣାଟି ଘଟିଯିବା ପରେ ଚିରସ୍ମରଣୀୟ ସ୍ତରକୁ ଆସିବାବେଳକୁ ଶ୍ରୀଯୁକ୍ତ ନରସିଂହ ଚୌଧୁରୀ ଭାବିଲେ, କାହାର ଦୁର୍ବଳତା ନାହିଁ ? ମଣିଷ–ଶରୀର ଧରି କାହାର ଏପରି ଆସ୍ପର୍ଦ୍ଧା ହେବ ଯେ ସେ କହିବ ତା'ର ଦୁର୍ବଳତା ନାହିଁ ?

ଦୁର୍ବଳତା ସମସ୍ତଙ୍କର ଅଛି ଏବଂ ଏହି ଦୁର୍ବଳତା ଯୋଗୁ ମଣିଷର ଅଧଃପତନ ଘଟିଥାଏ; କିନ୍ତୁ ଶ୍ରୀଯୁକ୍ତ ନରସିଂହ ଚୌଧୁରୀଙ୍କର ଯେଉଁ ଦୁର୍ବଳତାଜନିତ ଘଟଣା ଜୀବନରେ ଘଟିଗଲା, ଯାହା କି ତାଙ୍କର ଜୀବନୀ–ଲେଖକଙ୍କ ମତରେ ସାହିତ୍ୟରେ ସ୍ଥାନ ପାଇବା ଆବଶ୍ୟକ, ସେ ଦୁର୍ବଳତାର ରୂପରେଖ ଏପରି କିଛି ନୁହେଁ ଯାହା ପାଇଁ ସେ ଲଜ୍ଜିତ ହେବେ ଅବା ଜୀବନସାରା ଆତ୍ମଗ୍ଲାନିରେ ଭାବିହେଉଥିବେ।

ବିଚିତ୍ର ଜୀବନର ବିଚିତ୍ରତର ଧାରା କେତେ କୁଆଡ଼େ ଭାସିଯାଇଛି। ଛୋଟ ହେଉ ବଡ଼ ହେଉ, ମଣିଷର ଜୀବନ ଗୋଟିଏ ପ୍ରଶସ୍ତ ଗନ୍ତାଘର। ମଣିମାଣିକ୍ୟଠାରୁ ଆରମ୍ଭ କରି ଅତି ତୁଚ୍ଛ ପଦାର୍ଥର ସଂସାରରେ ଏହା ପରିପୂର୍ଣ୍ଣ ହୁଏ ବୋଲି ଜୀବନ ଏତେ ସୁନ୍ଦର, ପୁଣି ଏତେ କୁତ୍ସିତ।

ଝିଅ ରମା ଆସି କେତେବେଳୁ ତାଗିଦା କରି ଗଲାଣି– "ବାପା, ଠିକ୍ ଛଅଟା ତିରିଶ ମିନିଟ୍‌ରେ ସଭା, ମନେ ଅଛି ତ ? ଏଇନେ ତ ଛଅଟା ପଚିଶ ମିନିଟ୍। ଗାଡ଼ି ପ୍ରାୟ ଆସିଗଲା ବୋଲି ଭାବ; ତମେ ବରଂ ବୈଠକଖାନା ଛାଡ଼ି ବାହାର ବାରଣ୍ଡାରେ ବସ। କାର୍ ଆସିବାମାତ୍ରେ ତୁମେ ଉଠିପଡ଼ିବ, ତୁମଆଡୁ ଯିମିତି ଅଡୁଆ କିଛି ନ ଥାଏ।"

ଶ୍ରୀ ମୃଦୁଳା ଦେବୀ ଦୁଇଥର ଆସି ଚେତେଇ ଦେଇଛନ୍ତି, "ଶୁଣ, ଗଳାବନ୍ଧାକୋଟର ଗଳା ପାଖ ବୋତାମ ବକ୍ତୃତା ଦେଲାବେଳେ ଖୋଲିଦେବ। ତମର ଅନେକ ସମୟରେ ମନେ ରହେନି। କୋଟ୍‌ଟା ପୁରୁଣା ହେଲାଣି ବା ବୋତାମଟା ଆଣ୍ଟ ହେଉଛି। ମୁଁ ସାଙ୍ଗରେ ଯାଇଥିଲେ ଏତେ କଥା ଭାବିବାକୁ ପଡ଼ନ୍ତା ନାହିଁ; ପେଣ୍ଡାଲ ଉପରେ ନ ବସିଲେ ବି ତଳେ ବସି ଚେୟାର ଉପରୁ ସଙ୍କେତ ଦେଇଦିଅନ୍ତି ବୋତାମଟା ଖୋଲିଦେବାକୁ। ମୁଁ ତ ଯାଉନାହିଁ। ତୁମେ ମନେକରି ସବୁ ଚଳେଇନେବ।

"ହଁ, ମଝିରେ ମଝିରେ ପାଣି ପିଇବ। ଏବେ ସେମାନେ ଭୁଲି ଯାଉଛନ୍ତି ପାଣିଗ୍ଲାସ୍ ଟେବୁଲ ଉପରେ ରଖିବାକୁ। ସଭା ପରେ ଫାଣ୍ଟା ଆଣିଦେଉଛନ୍ତି, କିଏ ବା ଦେଉନାହାନ୍ତି। ଆଉ କଅଣ ବୟସ ଅଛି ଯେ ଅନର୍ଗଳ କହିଯିବ ବସିନା ଶୋଷରେ ?"

ଝିଅ ରମା ଫାଟକ ପାଖରୁ ଫେରିଆସି କହିଲା – "ବାପା, କେହି ତ ଆସିଲେ ନାହିଁ, ମଟରଗାଡ଼ି ଦେଖାନାହିଁ। ଠିକ୍ ସମୟରେ ସଭା ଆରମ୍ଭ ନ ହେଲେ ତୁମେ ବିରକ୍ତ ହୁଅ ବୋଲି ସମସ୍ତେ ଜାଣନ୍ତି। ପୁଣି ଏଡ଼େ ବିଖ୍ୟାତ ଲୋକଙ୍କର ସ୍ମୃତି ଉଦ୍ଦେଶ୍ୟରେ ସଭା !"

ଗଳାବନ୍ଧା କୋଟ୍‌ର ନିର୍ମମ ଉତ୍ତାପରେ ଯେତେ ନୁହେଁ, ସଭାର ଉଦ୍ୟୋକ୍ତାମାନଙ୍କର ତାଙ୍କ ପ୍ରତି ଏ ଅପମାନର ଉତ୍ତାପ ବହୁଗୁଣରେ ନରସିଂହ

ଚୌଧୁରୀଙ୍କୁ ଉତ୍ତପ୍ତ କରିଦେଇଛି। ତଥାପି ସେ ବିମୂଢ଼ ହୋଇ ଅପେକ୍ଷମାଣ ଅବସ୍ଥାରେ ଚେୟାରଟି ଉପରେ ବସି ରହି ପ୍ରସ୍ଥାୟମାନ ସନ୍ଧ୍ୟାର ରୂପକୁ ଦେଖୁଥାନ୍ତି।

ଯୁବକ ଅବସ୍ଥାରୁ ଶିକ୍ଷା ବିଭାଗରେ କାର୍ଯ୍ୟ କରିବା ପ୍ରାରମ୍ଭରୁ ଆଜି ଜୀବନର ସନ୍ଧ୍ୟା ପର୍ଯ୍ୟନ୍ତ ସାଂସ୍କୃତିକ ସଭା-ସମିତିରେ ତାଙ୍କୁ ଖୋଜି ଲୋଡ଼ି ନେଇଛନ୍ତି ଦେଶବାସୀ। ପ୍ରତ୍ୟେକଟିରେ ଯେ ଉପଯୁକ୍ତଭାବରେ ସେ ସମ୍ମାନିତ ହୋଇଛନ୍ତି, ତାହା ନୁହେଁ; ତେବେ ଉଦ୍ୟୋକ୍ତାମାନଙ୍କର ଆଗ୍ରହ ତାଙ୍କୁ ଆକର୍ଷଣ କରିନିଏ ବିଭିନ୍ନ ସ୍ଥାନକୁ। ତାହାହିଁ ତାଙ୍କର ଆନନ୍ଦ; ତରୁଣ, ଯୁବକ, ପ୍ରୌଢ଼ ସମସ୍ତଙ୍କ ସହିତ ମିଶିବେ, ଭାବଧାରା ଗ୍ରହଣ କରିବେ, ଦେବେ ନେବେ,ଏଇଆ।

ଲାଇବ୍ରେରୀରୁ ବହି ଆଣି ଚୌଧୁରୀ ଟିପି ରଖିଛନ୍ତି ଉତ୍କଳଗୌରବ କୁଳବୃଦ୍ଧ ମଧୁସୂଦନଙ୍କର ବାଣୀଗୁଡ଼ିଏ–ସଭାରେ ବ୍ୟାଖ୍ୟାନ ଦେବେ। ମହାତ୍ମା ଗାନ୍ଧି ଯାହା ଚିନ୍ତା କରିପାରି ନଥିଲେ, ଗୋଟାଏ ଓଡ଼ିଆ ତାହା ବହୁ ଆଗରୁ ଚିନ୍ତା କରିଥିଲା–ଏହାର ପ୍ରମାଣ ଦେଲାବେଳେ ଶ୍ରୋତୃମଣ୍ଡଳୀ କିପରି ଉଚ୍ଛ୍ୱସିତ କରତାଳି ଦେବେ, ସେ କିପରି ବିନମ୍ରଭାବରେ ମଥା ପୋତି ତାହା ଗ୍ରହଣ କରିବେ, ଏହା ଭାବୁ ଭାବୁ ନରସିଂହ ଚୌଧୁରୀ ହାତଘଣ୍ଟା ଦେଖିବାରେ ଜାଣିଲେ ଯେ ସନ୍ଧ୍ୟା ସାତଘଣ୍ଟା ଅତିକ୍ରାନ୍ତ ହୋଇଯାଇଛି।

ଯଦି କାର୍‌ଟା ବାଟରେ ଖରାପ ହୋଇଯାଇଥାଏ, ଟାଉନ୍ ଜାଗାରେ କଅଣ ଟାକ୍ସିର ଅଭାବ ଅଛି ଯେ ଏ ପରିସ୍ଥିତିର ସମାଧାନ ହେବ ନାହିଁ? ଅବା ଫୁଲମାଳ ଆସିବାରେ ଡେରି ହୋଇଥିବ; ତାହା ହେଉ। ଅବଶ୍ୟ ନିଜ ପାଇଁ ନ ହେଲେ ଚଳିଯିବ; କିନ୍ତୁ ପୋଗ୍ରାମ୍‌ରେ ଅଛି ଗୁଡ଼ିଏ ପ୍ରଦୀପ ଜଳାଇ ମଧୁସୂଦନଙ୍କର ଆବକ୍ଷ ମୂର୍ତ୍ତି ଉପରେ ବକ୍ତା ପୁଷ୍ପମାଲ୍ୟ ଅର୍ପଣ କରିବେ।

ମୃଦୁଳାଦେବୀ ବିରକ୍ତି ଭାବ ଦେଖାଇ ଘରଭିତରୁ ଆସି କହିଲେ– କାହିଁକି ଯେ ତୁମେ ଏ ସଭା-ସମିତିର ଡାକରାରେ ଭୁଲିଯାଇ ସମସ୍ତଙ୍କୁ 'ହଁ' କରିଦିଅ, ମୁଁ ବୁଝିପାରେନି। ଆଉ କ'ଣ ସୁନାମ ନା ଯଶର ବାକି ଅଛି? ବରଂ ସେତିକି ସମୟ ଘରେ ସୁସ୍ଥଭାବରେ ବସି ରହିଲେ ଭଲ ହୁଅନ୍ତା, ଏବେ ଏ ଯେଉଁ ଅପେକ୍ଷା, ତାହା ତ କଷ୍ଟକର ହୁଅନ୍ତା ନାହିଁ!

ଶ୍ରୀ ଚୌଧୁରୀ ଅନ୍ତର୍ଲୀନ ଅବସ୍ଥାରେ ବସି ରହିଛନ୍ତି। କ୍ଳାନ୍ତି ଧୀରେ ଧୀରେ ଚକ୍ଷୁପତା ଉପରେ ଆଛନ୍ନ ହୋଇ ଆସୁଛି। ସେହି ସମ୍ୟକ୍ ତନ୍ଦ୍ରା ଭିତରେ ସେ ଅବଲୋକନ କରୁଛନ୍ତି ମଧୁସୂଦନ କିପରି ପ୍ରଚଣ୍ଡ କ୍ରୋଧରେ ତାଙ୍କ କାରଖାନା ତିଆରି ଜୋତାଗୁଡ଼ାକ କାଟିପକାଉଛନ୍ତି ଆଉ କହୁଛନ୍ତି, 'ବିଦେଶକୁ ଏଇ ଜୋତାଗୁଡ଼ାକ ପଠାଇବି? ଓଡ଼ିଆ କାରିଗର କଅଣ ମରିଗଲେଣି? ମୋର ସବୁ ସ୍ୱପ୍ନ କଅଣ ବୃଥା ହୋଇଯିବ?'

ପୁଣି ଯେତେବେଳେ କେହି ଜଣେ ତାରକସି କାମର ଗୋଲାପ ଅତରଦାନିକୁ ବୁଢ଼ାଙ୍କ ଆଖିଆଗକୁ ନେଇଆସୁଛନ୍ତି, ତାକୁ ଦେଖି ସେ ଚିତ୍କାର କରୁଛନ୍ତି– 'ସାବାସ୍ ଓଡ଼ିଆପୁଅ! ଆରେ, ମୁଁ ମରିଗଲେ ବି ଏ ଶିଳ୍ପୀ ବଞ୍ଚିବ... କାଳ-କାଳକୁ ବଞ୍ଚିବ... ଉଠିବେ ସହସ୍ରଭୁଜା...'

ରମା ପୁଣି ଆସି ସମ୍ବାଦ ଦେଲା– "ବାପା, ଘର ଭିତରକୁ ଚାଲ, ସେମାନେ ଆସିବେ ନାହିଁ; ସାଢ଼େ ସାତଘଣ୍ଟା ହୋଇଗଲା। ଆସିଲେ ବି ତମର ଯିବା ଉଚିତ ହେବ ନାହିଁ, କାରଣ ତୁମେ ଜୀବନଯାକ ସମୟାନୁବର୍ତ୍ତିତା ଶିଖେଇ ଆସିଛ

ଛାତ୍ରମାନଙ୍କୁ। ସେମାନେ କେତେ ମାତ୍ରାରେ ଗ୍ରହଣ କଲେ କି ନକଲେ, ତାହା ଭିନ୍ନ କଥା। ତୁମର ପ୍ରିନ୍‌ସପ୍‌ଲ ଉପରେ ତୁମେ ଦୃଢ଼ ରହ।"

ମୃଦୁଳା ଦେବୀ ପାଖରେ ଛିଡ଼ା ହୋଇଥିଲେ। ଟିପ୍‌ପଣୀ ଦେଲେ– "ବାପାଙ୍କର ଏଇ ଗୋଟାଏ ଦୁର୍ବଳତା ... ପାନ ନାହିଁ, ସିଗାରେଟ୍ ନାହିଁ, କୌଣସି ନିଶା ନାହିଁ... ଏଇ ଗୋଟାଏ ନିଶା...ଯିଏ ଡାକିଦେଲା ସଭା-ସମିତି ନାଁରେ, ନାହିଁ କରିବାର ଉପାୟ ନାହିଁ... କଅଣ ନା ସାଂସ୍କୃତିକ ଚେତନା ପ୍ରସାର କରିବେ ବାପା! ତୁ ତ ଜାଣୁ, କେତେଥର ସଭା ପରେ ବାପା ଚାଲି ଚାଲି ଆସିଛନ୍ତି, କେତେଥର ଅଖିଆ-ଅପିଆ ଫେରିଛନ୍ତି। ମୁଁ କାଳେ ବିରକ୍ତ ହେବି ଭାବି ଚୁପ୍‌ଚାପ୍ ଶୋଇଯାଇଛନ୍ତି କିଛି ନ ଖାଇ। ସଭାର ଉଦ୍ୟୋକ୍ତାମାନେ ସଭା ପରେ ଆଉ ଷ୍ଟେସନ୍‌କୁ ଆସିନାହାନ୍ତି। ବାପା ନିଜେ ଟିକେଟ କରି ଗାଡ଼ିରେ ବସି ଫେରିଛନ୍ତି; ଅଥଚ ଏ ଅପମାନ ଅସମ୍ମାନର ଛାୟା ବି ତାଙ୍କୁ ସ୍ପର୍ଶ କରିନାହିଁ। ଉଠ, ଘରକୁ ଆସ। ମଧୁବାବୁଙ୍କ ଜୟନ୍ତୀ ଅବା ଜନ୍ମ-ମୃତ୍ୟୁ ଏ ଦେଶରେ ସବୁ ସମାନ। ଜନ୍ମକୁ ମୃତ୍ୟୁ ବା ମୃତ୍ୟୁକୁ ଜନ୍ମ କହିଲେ ବି ଚଳିଯିବ।"

ନରସିଂହ ଚୌଧୁରୀ ତଥାପି ସ୍ଥାଣୁ ନିଷ୍ପନ୍ଦଭାବରେ ବସି ରହିଲେ ଆକାଶର ଏକ ପ୍ରାନ୍ତ ଉପରେ ଦୃଷ୍ଟି ରଖି। ମନେ ପଡ଼ିଗଲା ଖରାବେଳର ସେ ଦୃଶ୍ୟ। ସଭାକୁ ନିମନ୍ତ୍ରଣ କରିବାକୁ ଯେ ବ୍ୟକ୍ତି ଆସିଲେ ତାଙ୍କର ଆଗ୍ରହ, ତାଙ୍କର ନମ୍ରତା, ତାଙ୍କର ମିଷ୍ଟବାଣୀ, ତାଙ୍କର ବିଗଳିତ ହେବାର ଭଙ୍ଗୀ। ନରସିଂହ ଚୌଧୁରୀଙ୍କୁ ବକ୍ତାଭାବରେ ନ ହେଲେ ମଧୁସୂଦନ ଦାସଙ୍କର ଆତ୍ମା ଯେ ଅବଶୋଷ କରିବ, ତାହାରି ଚେତନା ଦେଇ ନିମନ୍ତ୍ରଣକାରୀ ବ୍ୟକ୍ତି ଯେ ଭାଷ୍ୟ ରଚନା କଲେ ରବିବାସରୀୟ ମଧ୍ୟାହ୍ନରେ, ସେସବୁ ଦୃଶ୍ୟ ଓ କଥା ନରସିଂହ ଚୌଧୁରୀଙ୍କର ସ୍ମରଣରେ ଆସିଗଲା।

ଆଜି ରବିବାର, କଲେଜ ନାହିଁ; କିନ୍ତୁ ଶାନ୍ତି କାହିଁ? ଏ ଯେ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରିଚାଳନା, ପୁଲିସ ଫୌଜ, ପିଲାଙ୍କର 'କପି କରିବା ଜନ୍ମଗତ ଅଧିକାର'ସ୍ଲୋଗାନ୍... ଏ ସବୁ ଭିତରେ ଶାନ୍ତି କାହିଁ?

"ଆସିପାରେ କି?"

"କିଏ?"

ମୁଣ୍ଡ ଉପରେ ଗାମୁଛା, ପାଦରେ ଚପଲ, କାଖ ଭିତରେ ଛତା, ହାତରେ ମୁଣି...ଅପୂର୍ବ...

"ଆପଣ ଏ ସମୟରେ? ଏତେ ଖରାଟାରେ? ଆସନ୍ତୁ, ଆସନ୍ତୁ! କେବେ ତ ଆସନ୍ତିନି, ହଠାତ୍! ସଞ୍ଜବେଳେ ଆସିଥିଲେ ଭଲ ହୋଇଥାନ୍ତା... ଏଡ଼େ ଖରାଟାରେ?" ନରସିଂହ ଚୌଧୁରୀ ଉଠିଯାଇ ସଂଭ୍ରମରେ ଆଗନ୍ତୁକଙ୍କ ବୈଠକଖାନାକୁ ଘେନିଆସିଲେ।

ଡାକିଲେ– "ରମା, ଲୋକପ୍ରତିନିଧି ଆସିଛନ୍ତି! ମାଆଙ୍କୁ କହ ଖରାବେଳଟାରେ ଆସିଛନ୍ତି... ସର୍ବତ୍ କି ଦହି-ଲୁଣ ଯାହା ଅଛି ଶୀଘ୍ର ଆଣିବେ।"

ଲୋକପ୍ରତିନିଧିଙ୍କ ଆଡ଼କୁ ଚାହିଁ କହିଲେ– ଖାଇକରି ଆସିଛନ୍ତି ତ...ସେ କଥା କହନ୍ତୁ– ନ ଖାଇଥିଲେ ସବୁ ବ୍ୟବସ୍ଥା ହୋଇଯିବ। ଏଡ଼େ ସମ୍ମାନନୀୟ ବ୍ୟକ୍ତି, ଏପରିଭାବରେ ଆସିଲେ...

ଚୌଧୁରୀ ସତରେ ସଙ୍କୁଚିତ ହୋଇଗଲେ।

ଲୋକପ୍ରତିନିଧି ଟିକିଏ ସୁସ୍ଥ ହେବା ପରେ କହିଲେ– ଆଗ ଶପଥ କରନ୍ତୁ, ଆପଣ 'ନାହିଁ' କରିବେ ନାହିଁ ମୁଁ ଯାହା କହିବି। ଆପଣଙ୍କ ବ୍ୟତୀତ ସେ କାର୍ଯ୍ୟ ସୁସମାହିତ ହୋଇପାରିବ ନାହିଁ। ପିଲାଏ

ଲଗାଇଛନ୍ତି...ଟାଉନର ବାସିନ୍ଦା...ସେଇ ଏକ କଥା–ମାନେ କହିବାକୁ ଗଲେ ଆବାଳବୃଦ୍ଧବନିତା।

ଚୌଧୁରୀ ଆନନ୍ଦିତ ହେଲେ। ତେବେ ଆଶଙ୍କା ହେଲା, ଯଦି ଲୋକପ୍ରତିନିଧି ଅସମ୍ଭବକୁ ସମ୍ଭବ କରିବା ପାଇଁ କହୁଥିବେ, ଯାହା ଏଇ ଶ୍ରେଣୀୟ ବ୍ୟକ୍ତିଙ୍କର ଖୁବ୍ ଅଭ୍ୟାସ, ତେବେ ଆନନ୍ଦ ପରିବର୍ତ୍ତେ ପରିଶେଷରେ ଦୁଃଖିତ ହେବାକୁ ପଡ଼ିବ।

ସ୍ତ୍ରୀ ମୃଦୁଳା ଦେବୀ ଉପସ୍ଥିତ ହେଲେ ଦହି,ଲୁଣ ଓ ଲେମ୍ବୁ ରସରେ ଗ୍ଲାସ୍ ଭର୍ତ୍ତିକରି। ଲୋକପ୍ରତିନିଧିଙ୍କୁ ପରିଚୟ କରାଇ ଦେବାରେ ମନୋମୟୀ ଆଶ୍ଚର୍ଯ୍ୟ ହେଲେ; କାରଣ ତାଙ୍କୁ କେବେ ସେ ଦେଖିନାହାଁନ୍ତି, କେବଳ ପତ୍ରପତ୍ରିକାରୁ ଓ ଲୋକମୁଖରୁ ତାଙ୍କର ନାଁ ଶୁଣିଛନ୍ତି। ତେଣୁ ଏଭଳି ଅପୂର୍ବ ବ୍ୟକ୍ତିପୁରୁଷଙ୍କୁ ଦେଖିବାମାତ୍ରେ ସେ ଯଥୋଚିତ ସମ୍ମାନ ଦେଇ ଉପବେଶନ କଲେ।

ପାନୀୟ ଶେଷ ହେବା ପରେ ମୃଦୁଳା ଦେବୀ ପାତ୍ରଟିକୁ ଧରି ପ୍ରସ୍ଥାନ କରିବାରୁ ଲୋକପ୍ରତିନିଧି କହିଲେ– "କଅଣ ରାଜି ?"

ଚୌଧୁରୀ କହିଲେ–ବିଷୟଟା ଜାଣିନାହିଁ; କି ଉତ୍ତର ଦେବି ?

ଲୋକପ୍ରତିନିଧି ହସିଲେ। କହିଲେ– 'ଆଜି ସନ୍ଧ୍ୟା ସାଢ଼େ ଛଅଟାରେ ମଧୁବାବୁଙ୍କ ଜ଼ଂ ନ୍ତୀ ଉତ୍ସବ ପାଳିତ ହେବ କ୍ଲବ୍ ଘରେ। ସବୁ ଆୟୋଜନ ଶେଷ, କେବଳ ଆପଣଙ୍କର ସ୍ୱୀକୃତି। ମୁଁ ଜାଣେ, ଅନ୍ୟ କେହି ଆସିଲେ ଆପଣ ମନା କରିଦେଇଥାନ୍ତେ ଏବଂ କହିଥାନ୍ତେ ପରୀକ୍ଷା ପରିଚାଳନା ଦାୟିତ୍ୱ ଘେନି ଆପଣଙ୍କର ମାନସିକ ଶାନ୍ତି ବିନଷ୍ଟ; ତେଣୁ ଆପଣ ସଭା-ସମିତିରେ ଯୋଗ ଦେଇପାରିବେ ନାହିଁ। ମୁଁ ସେଇଥିପାଇଁ ନିଜେ ଆସିଲି। ଆପଣଙ୍କୁ ଯିବାକୁ ହେବ। ଠିକ୍ ସମୟରେ କାର୍ ଆସିଯିବ...ସବୁ ବ୍ୟବସ୍ଥା ହୋଇଛି।'

ନରସିଂହ ଚୌଧୁରୀ ଅନୁଗୃହୀତ ହେଲେ। ଦୁର୍ବଳତାର ବିଜୟ ହେଲା। ସେ ହଁ ଭରିଲେ।

ଲୋକପ୍ରତିନିଧି ଯିବା ପାଇଁ ପ୍ରସ୍ତୁତ ହେଲେ; କିନ୍ତୁ ଯାଉ ନଥାନ୍ତି। ଶେଷରେ କହିଲେ–

'ପରୀକ୍ଷା କେମିତି ଚାଲିଛି ?'

'ଅଶାନ୍ତିକର ପରିସ୍ଥିତି।'– ଚୌଧୁରୀ ଉତ୍ତର ଦେଲେ।

'ପିଲାଏ ଏକ୍‌ସପେଲ୍ ହେଉଛନ୍ତି ?'

'ହେଉଛନ୍ତି।'

'ଯାହାହେଉ,ଅଧ୍ୟକ୍ଷ ଭାବରେ ଆପଣ କାମ ଚଳାଇ ନେଉଛନ୍ତି।'

'ମୋଟେ ନୁହେଁ; ବରଂ ମୁଁ ମର୍ମାହତ।'

ଲୋକପ୍ରତିନିଧି ହଠାତ୍ ଚମକି ପଡ଼ିଲେ। କଅଣ ତାଙ୍କର ମନେପଡ଼ିଗଲା। ଆଖି ଦୁଇଟାକୁ ବଡ଼ ବଡ଼ କରି କହିଲେ– ଶୁଣନ୍ତୁ, ଆସିବାବେଳେ ପୁତୁରା କହିଲା ସେ କଅଣ କପି କରୁଥିବାରୁ ଧରାପଡ଼ିଛି। ସେ ତ କହୁଛି ସେ କପି କରୁ ନଥିଲା। ଛୋଟ ଚିରକୁଟି କାଗଜ ତା' ପାଖରୁ ମିଳିଲା...ସେଇଟା ବା କି ଅପରାଧ...ମୁଁ ତାକୁ ବୁଝାଇଦେଲି। ଆପଣ କଅଣ କାର୍ଯ୍ୟାନୁଷ୍ଠାନ କରିଛନ୍ତି ତା' ବିଷୟରେ ?

ଚୌଧୁରୀ ଉତ୍ତର ଦେଲେ– ଅଗତ୍ୟା...ଯେଉଁମାନେ ଧରାପଡ଼ିଛନ୍ତି ରିପୋର୍ଟ ହୋଇଥିବ।

'ଘୋଡ଼େଇ ହୋଇପାରିବନି ?'

'କ୍ଷମା କରିବେ, ହଲ୍ ଭିତରେ ସମସ୍ତେ ଜାଣିଥିବେ। ଦୁଇଦିନ ତଳର କଥା; ରିପୋର୍ଟ ତ ବାକି ପଡ଼େନାହିଁ...ସେଦିନ ଚାଲିଯାଏ।'

ଲୋକପ୍ରତିନିଧିଙ୍କର ମୁଖମଣ୍ଡଳରୁ ଜଣାପଡ଼ିଲା ସେ ଆଶାହୀନ ହୋଇପଡ଼ିଲେ। ପୁତୁରାର ଦୌତ୍ୟ ସାଜି ଆସିବାରେ ସୁଫଳ ନାହିଁ ବୋଲି ସେ ବୁଝିପାରିଲେ।

ସେ ଉଠିଲେ...

ଚୌଧୁରୀ ବି ଉଠିଲେ...ନମସ୍କାର ନିବେଦନ କରି କହିଲେ, 'କ୍ଷମା କରିବେ, ଆପଣଙ୍କ ଅନୁରୋଧ ରକ୍ଷା କରି ପାରିଲି ନାହିଁ।'

'କଅଣ ମିଟିଂକୁ ଯିବେ ନାହିଁ?'

'ନା, ନା, ସେ କିମିତି କଥା, ସେ ତ ମୋର ଆନନ୍ଦ! ଆପଣ ଯେତେବେଳେ ଏତେ ଖରାରେ ମତେ ନିମନ୍ତ୍ରଣ କରିବାକୁ ଆସିଲେ, ମୁଁ ଏତିକି ସୌଜନ୍ୟ ଦେଖେଇ ପାରିବି ନାହିଁ? ମୁଁ କହୁଥିଲି, ପୁତୁରା କଥା...'

ଲୋକପ୍ରତିନିଧି ସେତେବେଳକୁ ଫାଟକ ପାଖରେ ଉଭା। ପଛକୁ ଆଉ ଚାହିଁନାହାଁନ୍ତି। ନରସିଂହ ଚୌଧୁରୀ ଦୁଇ ଦୁର୍ବଳତାକୁ... ଅର୍ଥାତ୍ ଲୋକପ୍ରତିନିଧିଙ୍କର ଦୁର୍ବଳତା ଓ ନିଜ ଦୁର୍ବଳତାକୁ ତୁଳନା କରି ଭାବୁଥିଲେ—ସମାନ ତ ହେଲାନାହିଁ।

× ×
×

ଦେବାଳୟର ବାହାରେ ଜୋତା ରଖି ଭକ୍ତମାନେ ଦେବ-ଦର୍ଶନ କରିବାକୁ ଯାଆନ୍ତି। ସାଙ୍ଗରେ ଘେନିଯାଆନ୍ତି ଗୋଲାପଗୁଚ୍ଛ—ପ୍ରତିମା ପାଖରେ ସମର୍ପଣ କରିବାକୁ। ମଧୁବାବୁ ଜୋତା କାରଖାନାରେ ଜୋତା ତିଆରି କରୁଥିଲେ; ତାରକସି ଗୋଲାପ ପୁଷ୍ପ ଭିତରେ ଅତର ରଖିଥିଲେ।

ନରସିଂହ ଚୌଧୁରୀ... ଅଧ୍ୟକ୍ଷ ଓ ଶିକ୍ଷାବିତ୍... ଜୋତାର ସ୍ୱରୂପ ଦେଖିଲେ, ଗୋଲାପକୁ ଆଘ୍ରାଣ କଲେ।

ତେଣେ ମଧୁ-ଜୟନ୍ତୀ ପର୍ବ ଅନୁଷ୍ଠିତ ହୋଇଗଲା।

"ବାପା, ଆସ ଘରଭିତରକୁ... ରାତି ନଅଟା ବାଜିଲା ଯେ! ମାମା କହୁଛନ୍ତି ଯେ ବାପାଙ୍କୁ ଖୁବ୍ ଶିକ୍ଷାଟାଏ ହେଲା"— ରମାର ମନ୍ତବ୍ୟ।

ଚୌଧୁରୀ ଉଠିଲେ। ଟପ୍ ଟପ୍ କରି ଗଳାବନ୍ଧା କୋଟ୍‌ର ପ୍ରତ୍ୟେକଟି ବୋତାମ ଖୋଲିଲେ। ନିଶ୍ୱାସରେ ସେ କଥା କହିଲେ— ଓଃ ବଡ଼ ଉଶ୍ୱାସ ଲାଗିଲା...ଅହଂଟା ଏତେବେଳଯାଏ ବଡ଼ କଷ୍ଟ ଦେଉଥିଲା; ଏବେ ସେ ଅହଂ ନଷ୍ଟ ହୋଇଯାଇଛି। ଖୁବ୍ ଶାନ୍ତି।

× ×
×

ସମ୍ବାଦପତ୍ରରେ ଦିନକ ପରେ ସମ୍ବାଦ ପରିବେଷଣ—ମଧୁଜୟନ୍ତୀ ଉପଲକ୍ଷେ ସଭାରେ ଲୋକପ୍ରତିନିଧିଙ୍କର ଅନବଦ୍ୟ ଭାଷଣ...

ସମ୍ବାଦପତ୍ର ହାତରେ ଧରି ନରସିଂହ ଚୌଧୁରୀ କ୍ଷୀଣ ହସ ହସି ମନକୁ ମନ କହିଲେ—

'ଦେବାଳୟଟି ସୁନ୍ଦର...କିନ୍ତୁ ପ୍ରତିମାଟି ଦୁର୍ବଳ।'



# ପାପିନୀ ସତ୍ୟଭାମା

ନହେବ କାହିଁକି...ସତ୍ୟଭାମା ନିଶ୍ଚୟ ପାପିନୀ। ଲୋକେ କହୁଛନ୍ତି ସତ୍ୟଭାମା ପାପିନୀ; ତେଣୁ ପାପିନୀ ହେବା ଛଡ଼ା ସେ ପୁଣ୍ୟବତୀ ହୋଇନପାରେ।

ପାପ ଆଉ ପୁଣ୍ୟ ବିଚାର କରନ୍ତି ପୁଣ୍ୟବାନ୍‌ମାନେ। ବିଚାର ଶୁଣି ଅପରାଧି ରହିଯାନ୍ତି ପାପୀ ପାପିନୀମାନେ।

ବିଧିବଦ୍ଧ ଦରବାର ଏଥିପାଇଁ ଦରକାର ହୁଏ ନାହିଁ। ଧର୍ମାଧିକରଣର ଆବଶ୍ୟକତା ନଥାଏ। ଗୋଟାଏ ନିର୍ଦ୍ଦିଷ୍ଟ ସ୍ଥାନରେ ନିୟମଗତ ବିଚାର ହୁଏନାହିଁ। କେହି ବସନ୍ତି ନାହିଁ, କେହି ଉଭା ହୁଅନ୍ତି ନାହିଁ। ପାପୀ ପାପିନୀମାନେ ବିଚାରପତିଙ୍କୁ ପ୍ରତ୍ୟକ୍ଷ କରନ୍ତି ନାହିଁ କି ଧର୍ମନିଷ୍ଠ ବିଚାରପତି ଅଭିଯୁକ୍ତ ଆସାମୀମାନଙ୍କୁ ପ୍ରତ୍ୟକ୍ଷ କରନ୍ତି ନାହିଁ।

ସବୁ ଅପ୍ରତ୍ୟକ୍ଷ ଅଦୃଶ୍ୟରେ ସମାହିତ ହୁଏ। ବିଚାର ମିଳେ। ଏଥିରେ କେହି ଖଲାସ ହୁଅନ୍ତି ନାହିଁ। ସମସ୍ତେ ଦଣ୍ଡ ଭୋଗନ୍ତି। ଭୋଗିବାକୁ ବାଧ୍ୟ।

ରାୟ ନକଲ କାହାକୁ ମିଳେନାହିଁ। ସାକ୍ଷୀ ନଥାନ୍ତି। ପ୍ରମାଣର ଭାବ ବା ଅଭାବରେ କିଛି ଯାଏ-ଆସେ ନାହିଁ; ଅଥଚ ବିଚାର ଚାଲେ। ସମୟେ ସମୟେ ଆସାମୀଙ୍କ ସଂଖ୍ୟା ଅପେକ୍ଷା ବିଚାରପତିଙ୍କର ସଂଖ୍ୟା ବେଶି ହୋଇଯାଏ...ସମୟେ ସମୟେ କାହିଁକି ପ୍ରାୟ ଏମିତି ହୋଇଥାଏ।

ରାଜପଥ ଉପରେ ଚାଲୁ ଚାଲୁ ବିଚାର ଆରମ୍ଭ ହୁଏ। ଚାହା ଦୋକାନରେ ଲିପ୍‌ଟନମିଶା ଗରମ ଜଳ ପାନ କରୁ କରୁ ସତ୍ୟଭାମାକୁ ଅଭିଯୁକ୍ତ କରାଯାଏ। ହୋମିଓପାଥିକ ଔଷଧ ଦୋକାନର ଛୋଟ ଛୋଟ ଶିଶିକୁ ଚାହୁଁ ଚାହୁଁ ବିଚାରକ ମନ୍ତବ୍ୟ କରନ୍ତି– ସତ୍ୟଭାମା ପାପିନୀ। ସେଠାରୁ ଉଠିଆସି ବଡ଼ଦାଣ୍ଡ ଉପରେ ଷଣ୍ଢ-ଲଢ଼େଇ ଦେଖୁଥିବା ବିଚାରକ ଓ ଦେଖିସାରି ଫୁର୍ତ୍ତିମନରେ ମିଶ୍ର ଦୋକାନରୁ ଖଣ୍ଡେ ଚଉଦମସଲାଦିଆ ପାନ ଚୋବାଉଥିବା ସେଇ ଏକ ବିଚାରକ ରାୟ ଦେଇଦିଏ– ସତ୍ୟଭାମା ପାପିନୀ।

ଅଫିସରେ ପଙ୍ଖାତଳେ ବସି ଦୁନିଆଟାକୁ ତୁଚ୍ଛ ମନେ କରୁଥିବା ଓ ଜନପ୍ରାଣୀଗୁଡ଼ାକ ପୋକମାଛି ଭାବୁଥିବା ବିଚାରକ କହେ– ସତ୍ୟଭାମାର କଣ୍ଡକ୍ଟ ଭଲ ନୁହେଁ। ତାଙ୍କ ଦେଖାଦେଖି ଆଉ ସବୁ ତୈଳାକ୍ତ ଓ ତୈଳଲେପନକାରୀ... ସେଇ ଏକା ଲମ୍ବ ପଣତରେ ଓହଳା ସୂତାଗୁଡ଼ାକ ପାଟିକରନ୍ତି– ହଁ, ସାର୍, ଆମେପରା ଜାଣୁ ସତ୍ୟଭାମା ଆଦୌ ପୁଣ୍ୟବତୀ ନୁହେଁ, ଘୋର ପାପିନୀ। ଆପଣ କାଳେ କ'ଣ କହିବେ ଏଥିପାଇଁ କହୁନଥିଲୁ ନା, ଏଣିକି ସାହସ ହୋଇଗଲା, ଖୁବ୍ କହିବୁ... ସତ୍ୟଭାମା ପାପିନୀ...

ଏ ଢେଉ ବାଜେ ସତୀ ସାଧ୍ୱୀ ସୀତା ଦମୟନ୍ତୀ କୁନ୍ତୀ ମନ୍ଦୋଦରୀ -ତଥାଙ୍କ ପୁଣ୍ୟପୀଠରେ... ସେମାନଙ୍କର ସିଂହାସନ ଥରେ... ତାଙ୍କର ରୋମାଞ୍ଚ ହୁଏ...ସ୍ୱାମୀମାନଙ୍କର ଫଟୋ ଉପରେ ହାତ ବୁଲାଇ ଆଣି କହନ୍ତି...ହାୟରେ, ଏକପତ୍ନୀବ୍ରତ ଧବମାନଙ୍କର ଚିତ୍ରପଟ ଉପରେ ଏତେ ଦାଣ୍ଡଧୂଳି ଲାଗିଯାଇଛ... କେହି ବି ଟିକିଏ ଦେଖି ସଫା କରୁନାହାଁନ୍ତି ?

ଏଥିରେ ଅଛନ୍ତି ଲଣ୍ଡନ ଆମେରିକାରୁ ପ୍ରତ୍ୟାବର୍ତ୍ତିତ ସ୍ୱାମୀଙ୍କଠାରୁ ଭାରତୀୟ, ନଗରୀୟ, ପଲ୍ଲୀୟ ଏବଂ ଟାଇପ୍ ଥ୍ରିୟ, ଫାଇଭ୍‌ଇୟ ପର୍ଯ୍ୟନ୍ତ ସ୍ୱାମୀମାନେ। ସେମାନଙ୍କ ଛବି ଉପରେ ଧୂଳି ଜମା ହୋଇଥାଏ; ସେଗୁଡ଼ାକ ବାସ୍ତବରେ ଧୂଳି ନୁହେଁ। ସେଗୁଡ଼ାକ ଯାହା, ସେତକ ନଥିଲେ ସୌଧର ସ୍କାଇଲାଇଟ ଭିତର ରବିରଶ୍ମି ଫଟୋଗୁଡ଼ିକୁ ଏତେ ଉଜ୍ଜ୍ୱଳ କରିପାରନ୍ତା ନାହିଁ।

ନାରୀମାନେ ସତ୍ୟଭାମାକୁ ଯେତେ ପାପିନୀ ନକୁହନ୍ତି, ସତ୍ୟସୁନ୍ଦରମାନଙ୍କୁ ସତ୍ୟଭାମାର ପାପ ପାଇଁ ଭର୍ତ୍ସନା କରନ୍ତି। ଏମାନଙ୍କର ବିଚାର ପ୍ରସଙ୍ଗ ଅଦ୍‌ଭୁତ। ଯାଙ୍କ ଭିତରେ ପୂର୍ଣ୍ଣ-ଯୌବନାରୁ ଆରମ୍ଭ କରି ଆସନ୍ନ ପ୍ରୌଢ଼ା ରହିଛନ୍ତି। ନାନାପ୍ରକାର ଅବଦମିତ ଭୋଗେଚ୍ଛାର ଅପରିଚ୍ଛନ୍ନ କୁଟିଳମାର୍ଗଗାମିନୀ ଏଇମାନେ ସତ୍ୟଭାମାର ବିଚାର କରିବସନ୍ତି। ଗୋଟାଏ ଗୋଟାଏ ତାଳି ବଜେଇ ଦେଇ ରାୟ ଦିଅନ୍ତି– ଇହିଲୋ, ତା'କଥା କହନେଇ...କହ ମ ତାକୁ କି ଶାସ୍ତି ଦେବା?

ସମସ୍ତେ ଭାବିବସନ୍ତି ସତ୍ୟଭାମାକୁ କି ଶାସ୍ତି ଦିଆଯିବ। ଏତିକିବେଳେ କାହାର ପିଲାଦିନ କଥା ମନେ ପଡ଼ିଯାଏ, କିଶୋରୀ ଅବସ୍ଥାର କଥା ମନେ ପଡ଼ିଯାଏ, ଅନୂଢ଼ା ଥିବାବେଳର କଥା ମନେ ପଡ଼ିଯାଏ। କାହାର କାହାର ବି ନାସାପୁଟରୁ ଉତ୍ତପ୍ତ ନିଶ୍ୱାସ ବାହାରିଆସେ...ବିବାହ ପରେ ବି ସେ କଥା କଅଣ ଭୁଲିହୋଇପାରେ?

ଏଥିରେ ସେମାନଙ୍କର ପାପବୋଧ ନାହିଁ, ନ ରହିବାର କଥା। ସେମାନେ ଗୃହସ୍ଥଳୀର ତୁଳସୀ ବୃକ୍ଷ ତଳେ ଯେତେବେଳେ ସାୟଂ ପ୍ରଦୀପ ଥୋଇ ମୁଣ୍ଡ ନୁଆଁଇ ଦିଅନ୍ତି, ସେତେବେଳେ ବିଶ୍ୱଦେବତା ତାଙ୍କୁ ଓ ତାଙ୍କ ଅର୍ଜିତ ପାପପୁଣ୍ୟକୁ ଗ୍ରହଣ କରିନିଅନ୍ତି। ଦେବତା ଏତକ କରିଛନ୍ତି ବୋଲି ଆଜି ଏଇ ପୁଣ୍ୟବତୀମାନେ ସତ୍ୟଭାମାକୁ ପାପିନୀ ବୋଲି କହିବାକୁ ଦମ୍ଭ ପାଉଛନ୍ତି।

ପର୍ବତ ଗମ୍ଭୀର। ଆକାଶ ଉଦାର। ନଦୀ ତରଳ। ପୁଷ୍ପବାଟୀ ସୁଗନ୍ଧ ଅରଣ୍ୟ ଐଶ୍ୱର୍ଯ୍ୟମୟ। ଏମାନଙ୍କୁ ଯେ ଦେଖିବ ସେ ଆତ୍ମବିସ୍ମୃତ ହୋଇପଡ଼ିବ, ଆକୃଷ୍ଟ ହେବ, ଅତର୍କିତ ଭାବରେ ନିଜକୁ ସେମାନଙ୍କ ପାଖରେ ଥୋଇଦେବ। ପ୍ରକୃତିର ଏ ଲୀଳାରଙ୍ଗ। ଏହାର ସମାପ୍ତି ନାହିଁ। ଏହି ଲୀଳା ହିଁ ମଣିଷ ଜୀବନକୁ ବର୍ଣ୍ଣବୈଭବ ଦେଇଛି ଏବଂ ଦେଉଥିବ।

ଛୋଟ ଦୁର୍ବାଟିଏ ମହାନ୍ ଆଟୋପରେ ନଇଁପଡ଼େ ସଂଚ୍ରରଣଶୀଳ ବାୟୁବକ୍ଷକୁ। ପତ୍ରଟିଏ ଖସିଯାଏ ନଦୀକୁ, ସିନ୍ଧୁ ଘେନିଯାଏ ତୀରବାଲୁକା। ମେଘ ଡାକିନିଏ ବକ୍ରବିଦ୍ୟୁତ୍। ଏମାନେ କଅଣ ପାପୀ? ସମର୍ପିତ ଆନନ୍ଦରେ ବିମୁଗ୍ଧ ପ୍ରାଣୀ କଅଣ ସେହି ପ୍ରାଣିତ୍ୱରେ ରହିଥାଏ! କିଏ କାହାକୁ କାହିଁକି ଘେନିଯାଏ, କିଏ କେଉଁଠାରେ କାହିଁକି ଆତ୍ମଲୁପ୍ତି ଘଟାଏ– ଏକଥା କ'ଣ ଲିପ୍‌ଟନସେବୀ, ଷଣ୍ଢ-ଲଢ଼େଇ-ଦର୍ଶକ, କଳାକୁ ଧଳା ଧଳାକୁ କଳାକରିତ୍‌କର୍ମୀ, କଣ୍ଟ୍ରାକ୍ଟ ବିତରଣକାରୀ ମହାମନୁଷ୍ୟମାନଙ୍କୁ ବୁଝାଇବାକୁ ପଡ଼ିବ?

ତଥାପି ସତ୍ୟଭାମା ପାପିନୀ; କାରଣ ସେ ସ୍ୱାଧୀନ ଭାବରେ ହସେ, ସ୍ୱାଭାବିକ ଭାବରେ ଚିନ୍ତା କରେ, ସିଧା ଓ ଶାଣିତ କଥା କହେ, ପ୍ରବୃତ୍ତିକୁ ସଂଭ୍ରମ ଦିଏ,ପ୍ରତିଭାକୁ ଆଦର କରେ, ତ୍ରୁଟି ପାଇଁ ନିଜକୁ ଭର୍ତ୍ସନା କରେ, ଅନ୍ୟକୁ ବି କ୍ଷମା କରେ ନାହିଁ– ଗୋଟିଏ କଥାରେ ସେ ନିଜ ଭିତରେ ମଣିଷକୁ ଦେଖେ; ଦିଜକୁ ଦେବତା କରିବା ପାଇଁ

ଅନ୍ୟମାନଙ୍କ ଭଳି ପଣ୍ଡ ଶ୍ରମ କରେ ନାହିଁ, ଶଠତାର ଆଶ୍ରୟ ନିଏ ନାହିଁ।

ତେଣୁ ତା'ର ବିଚାର ହୁଏ। ତା'ର ମୁଣ୍ଡକାଟ ଆଦେଶ ହୁଏ; କିନ୍ତୁ କେହି କାଟି ପାରନ୍ତି ନାହିଁ ଅକାଟ୍ୟ ତା'ର ଆଦର୍ଶକୁ।

ଏ ସତ୍ୟଭାମା କିଏ? ହୁଏତ ଏପରି କେହି ନାହିଁ। କୌଣସି କ୍ୱାଟରର ମଣିମାଣିକ୍ୟଖଚିତ ବୈଠକଖାନାରେ ସେ ବିଭୂଷିତା ହୋଇ ରହିନାହିଁ, ଅବା ତାକୁ ଖେଳେଇ ଧରିବାର ଜାଙ୍ଗଲୀ ଏପର୍ଯ୍ୟନ୍ତ ଜନ୍ମ ପାଇନାହିଁ। ଅଥଚ ସେ ଅଛି ବହୁ ପୁଣ୍ୟବାନ୍ ବିଚାରଙ୍କର ପାପପୁଣ୍ୟ ତଉଲ ନିକିତିକଣ୍ଟା ପାଖେ।

ତା'ର ଜୀବନଦର୍ଶନକୁ ଥରେ ଥରେ ସେ ଶୁଣାଏ ଶୁଭକାନ୍ତକୁ। ତା'ର ଅବଶ୍ୟ ଜୀବନ ନାହିଁ; କିନ୍ତୁ ଦର୍ଶନ ଅଛି। ସେ କହେ ମଣିଷ ସ୍ୱାର୍ଥପର। ନୂଆ କଥା ସେ କିଛି କହେ ନାହିଁ; କିନ୍ତୁ ତା'ର କହିବା ଭଙ୍ଗୀରେ ସେ ସତ୍ୟକୁ ବି ସ୍ତବ୍ଧ କରିଦିଏ। ସେ କହେ ମଣିଷ ପ୍ରଚଣ୍ଡ। ନେବାପାଇଁ ସେ ବହ୍ନିମୟ ହୋଇଯାଏ। ପ୍ରଶାନ୍ତି ଭିତରେ, ଧୀର ଗୁଞ୍ଜନ ଭିତରେ ଯେ ମଣିଷ ଆସିପାରେ, ନିକଟତର ହୋଇପାରେ, ଏ କଥା ମଣିଷ ବିଶ୍ୱାସ କରେ ନାହିଁ।

ସ୍ୱାର୍ଥରେ ରକ୍ତର ମାଆ ବାପ ବି ବନ୍ଧା। ସ୍ୱାର୍ଥରେ ସମସ୍ତେ ଆବଦ୍ଧ। ସଂସାର ହଳାହଳ। ମିଥ୍ୟା ମଧୁର ବାଣୀ ପ୍ରୟୋଗ କରି ଜାଣେ ପୁରୁଷ। ଅଥଚ ମୃତ୍ୟୁଶଯ୍ୟାରେ ଯଦି ତାକୁ ଖୋଜେ ତା'ର ପରିଚିତା, ପୁରୁଷ କର୍ମବାହାନା ଦେଖାଏ, ସେ ଆସେ ନାହିଁ।

ଶୁଭକାନ୍ତ ସତ୍ୟଭାମାର ଅନ୍ତର୍ମୁଖୀ ଆତ୍ମା। ଏ ସଂସାରରେ ଶୁଭକାନ୍ତର ସ୍ଥିତି ଦୁଃଖପିହିତ, କାରଣ ସେ ଅତି ମୃଦୁ, କୋମଳ ଓ ନମ୍ର। ସେଥିପାଇଁ ସତ୍ୟଭାମା ଏଇ ଏକକ ଅନୁଭୂତିକୁ ପ୍ରାଣ ଦେଇ ଘୋଡ଼ାଇ ରଖିଛି ତା'ର ଆତ୍ମା ପରିମଣ୍ଡଳ ଭିତରେ...ଅଥଚ ସେ ପାପିନୀ...

ବୋଉ କହନ୍ତି–

'ଆଜି ଭଲ କରି ମୁଣ୍ଡ କୁଣ୍ଡା...'

'କାହିଁକି କିଏ ଆସିବ କି?'– ସତ୍ୟଭାମା ପଚାରେ।

'ହଁ।'

'ଯାକୁ ମିଶାଇ କେତେ ଥର ହେଲା?'

'ଯେତେ ଥର ହେଉ, ଭଲ ବସନ ପିନ୍ଧି ଆ।'

'ମୋ ଦେହ ମନରେ ତ ଲାବଣ୍ୟ ନାହିଁ, ଏ ବସନଭୂଷଣ କଅଣ ମତେ ଶ୍ରୀମତୀ କରିପାରିବ?'

'ବେଶି କଥା କହ ନାହିଁ, ନିଜକୁ ଚାହାଁ।'

'କାହିଁକି ବୋଉ? ଅନ୍ୟ କିଏ ସିନା ଚାହିଁଲେ ମୋର ଦାମ୍‌ଟା ବୁଝିବ...ମୁଁ ନିଜେ ନିଜକୁ ଚାହିଁ କେବଳ ଆତ୍ମରତିରେ ସିନା ବୁଡ଼ିଯିବି?'

ବୋଉ ଆତ୍ମରତି କଥା କିଛି ବୁଝିଲା ନାହିଁ। ସତ୍ୟଭାମା ଉଭାହେଲା ତା'ର ଜୀବନକୁ ସାର୍ଥକ କରିବାକୁ ସ୍ୱର୍ଣ୍ଣରଥରେ ଆସିଥିବା ଯୁବକ ନିକଟରେ...

ଯୁବକ ପ୍ରଶ୍ନ କଲେ–

'ତମେ ସୁଗୃହିଣୀ ହୋଇପାରିବ ତ?'

'ଦେଖି କ'ଣ ଅନୁମାନ କରୁଛନ୍ତି?'

'ଦୂରରୁ ଅନୁମାନ କରିପାରୁଥିଲେ ମୁଁ ଏତେ ଜଣଙ୍କ ପାଖକୁ ଏମିତି ଆଡ଼ମ୍ବରରେ କାହିଁକି ଆସୁଥାନ୍ତି?'

'ଏ ଗୋଟାଏ ପେଷା ହୋଇଗଲାଣି ନା?'

'ପ୍ରାୟ ସେଇଆ ହୋଇଯାଇଛି।'

ଆପଣ ସତେ ଜଣେ ସହଧର୍ମିଣୀ ଚାହାଁନ୍ତି ନା ଜୁଆ ଖେଳିବାକୁ ଇଚ୍ଛା କରନ୍ତି ?'

'ଜୁଆ ?'

'ଏ ଜୁଆଡ଼ୀଙ୍କ କାମ। କେବଳ ସେତିକି ନୁହେଁ, ମଦର ଦୁର୍ଗନ୍ଧ ଆପଣଙ୍କ ନିଶ୍ୱାସରୁ ପାଉଛି। ଏ ଅଭ୍ୟାସ ଅଛି ତାହାହେଲେ ?'

'...ଏଁ,ନା, ନା, ତମେ ଏ କଅଣ କହୁଛ ?'

'...ଆପଣ ବୋଲି କହନ୍ତୁ; ଭାବନ୍ତୁ ନାହିଁ ମୁଁ ଆପଣଙ୍କ ପରିଣୀତା, ଏପର୍ଯ୍ୟନ୍ତ ସେ ଦୁର୍ଭାଗ୍ୟ ହୋଇନାହିଁ, ହେବ ବି ନାହିଁ। ଭଦ୍ରମହିଳାଙ୍କୁ କିପରି ସମ୍ବୋଧନ କରିବାକୁ ହୁଏ ଆଗ ଶିଖି ଅନ୍ୟ ପାତ୍ରୀର ସଂଧାନରେ ଯିବେ। ଭଉଣୀର ଏ ଛୋଟ କଥାଟି ମାନିବେ। ଆଚ୍ଛା, ନମସ୍କାର...ବୋଉ, ଇଣ୍ଟରଭିଉ ସରିଗଲା। ଦେଲୁ, ଆଗ ବେଣୀଟା ଖୋଲି ଦେଲୁ, କେଡ଼େ ଜୋର୍‌ରେ ବାନ୍ଧି ଦେଇଛୁ। ଚଞ୍ଚଳ ମୁକୁଳେଇ ଦେ– ମୁଁ ମୁକ୍ତ ହୁଏ।'

ସତ୍ୟଭାମାର ଏ ଏକ ରୂପ...ବିରୂପ ମନେହେଲା କି ! ତେବେ କିଛି ଦିନ ପରେ ରଟନା ହୋଇଗଲା ସତ୍ୟଭାମା ଦୁଷ୍ଟା, ଭ୍ରଷ୍ଟା। ପାଣିପ୍ରାର୍ଥୀ ଯୁବକ ଏଇତକ ଉପଢ଼ୌକନ ଦେଇ ଅନ୍ୟ ପାତ୍ରୀ ଖୋଜିବାରେ ବ୍ୟସ୍ତ ରହିଲେ।

ସତ୍ୟଭାମା କହେ–

'ଦେଖ ଶୁଭକାନ୍ତ, ମୋର ହତଭାଗ୍ୟ ଜୀବନରେ କେତେଗୁଡ଼ିଏ ହତଭାଗ୍ୟ ପ୍ରାଣୀ ରହିଛନ୍ତି। ସେମାନେ ମତେ ଭାରି ଭଲ ପାଆନ୍ତି। ପ୍ରଭାତରେ ତୋରଣ ଖୋଲିଯିବା ସଙ୍ଗେ ସଙ୍ଗେ ଏମାନେ ଭାସିଯାଆନ୍ତି ପ୍ରଭାତୀ ଅରୁଣିମାର ବାୟୁ ହିଲ୍ଲୋଳ ସଙ୍ଗେ ସଙ୍ଗେ। କେତେଗୁଡ଼ିଏ ନିରୀହ ପକ୍ଷୀ...ଆସନ୍ତି, କିଚିରି-ମିଚିରି କରି ମତେ ଉଠେଇଦିଅନ୍ତ...ମୁଁ ଯେପରି ତାଙ୍କର ସର୍ବସ୍ୱ। ହାତ ଉପରେ ବସିବେ, ମଥା ଉପରେ ଉଡ଼ି ଉଡ଼ି ବିଶ୍ୱଦେବତାର ଶୁଭାଶିଷ ଦେଇଯିବେ। ମାତ୍ର ଏତେ ଆଶିଷ ମୋର କଅଣ ହେବ ? ଇଚ୍ଛା ହୁଏ ପକ୍ଷୀର ପକ୍ଷପୁଟ ଭିତରେ ଯେ ବିଶ୍ୱାସ ଓ ସରଳତା ମୋ ପାଖକୁ ଚାଲିଆସେ ସେତକ ମୁଁ କିପରି ବାଣ୍ଟିଦିଅନ୍ତି ଏଇ ଅଗଣିତ ଜନସମୁଦ୍ରକୁ।

ଆଉ ଦେଖ, ଏଇ ଶିଶିରଭିଜା ଗୋଲାପ କଳିଗୁଡ଼ିକ। ସ୍ନାତସୌନ୍ଦର୍ଯ୍ୟରେ ବିଭୋର ଏଇ ଫୁଲଗୁଡ଼ିକୁ ଦେଖି ମଣିଷ କଅଣ କିଛି ଶିଖିପାରିବ ନାହିଁ ? ସେ କଅଣ କେବଳ ଆଘାତ ପରେ ଆଘାତ ଦେଇ ଚାଲିଥିବ ? ଅକାରଣେ ଏ ଯେଉଁ ଆଘାତ, ଏ ଚଣ୍ଡତା, ଏହାର କଅଣ ଶେଷ ନାହିଁ ?

ଗୋଟାଏ ସାମାନ୍ୟ ନାରୀ ଏଇ କ୍ଷୁଦ୍ର ପ୍ରକୋଷ୍ଠ ଭିତରେ ବସି...ଶୁଭକାନ୍ତ...ତୁମ ପାଖରେ ଯେ କଥା ବାଢ଼ୁଛି, ସେ କଥା ଭିତରେ ଏ ନାରୀର ପାପଭାବ କେଉଁଠି ଦେଖିପାରୁଛ ? ଏହାର ଚେତନାରେ ବିଶ୍ୱବୋଧ କଅଣ କିଛି ନାହିଁ ? ଯେ ପ୍ରାଣପଣ ନିଜକୁ ବଞ୍ଚାଇ ରଖୁଛି, ତାକୁଇ ତୁମ ସଂସାର କହୁଛି ପାପମୟୀ ?

ନା, ଏ ଅହମିକା ମଣିଷର ରହିବ ନାହିଁ। ଦେବତା ତାହା ରଖାଇ ଦେବେ ନାହିଁ।

ଶୁଭକାନ୍ତ ବୋଲି କେହି ନାହାନ୍ତି ସତ୍ୟଭାମାର ପାର୍ଥିବ ରୂପ ପାଖରେ...ଏ ନାରୀର ସମସ୍ତ ବାଣୀ ରହିଯାଏ ଅନୁତ୍ତରିତ ହୋଇ। ସେଥିପାଇଁ ସେ ବିକଳ ହୋଇପଡ଼େ। ସାଙ୍ଗ କାହିଁ ? କେବେ ସେ ଜନ୍ମ ନେବ ଅବା ସେ ଉଦ୍ଭବ ହୋଇଛି ତା'ର ପ୍ରାଣର ପ୍ରତି କଂପନ ଭିତରେ କେତେ କାଳୁ ? ସେ କେବଳ ତାକୁ ଦେଖିପାରୁନାହିଁ, ଜାଣିପାରୁନାହିଁ।

କୃଷ୍ଣଚୂଡ଼ାରେ ଫୁଲ ଫୁଟେ। ମଧ୍ୟାହ୍ନ ଉତ୍ତୁରିଯାଏ, ଆସେ ସଂଧ୍ୟା। ପୁଣି ରାକା ନିଶୀଥ ସଜେଇଯାଏ କେତେ ଅଭିସାର। ଅପ୍ରାପ୍ତିର କାମନା ଶତ ଶିଖାରେ ଜଳିଉଠେ।

ସତ୍ୟଭାମା ଖୋଜିବୁଲେ ତା'ର ହଜିଲା ଦିନର ସ୍ମୃତିଗୁଡ଼ିକ। ଦୁନିଆରେ ସେ ଅତି ଛୋଟ ପ୍ରାଣୀ ହେଉ ପଛକେ; ଥିଲା ସେ ଛବିଳ। ସ୍ୱର୍ଣ୍ଣରାଗ ତା'ର ଉଡ଼ନ୍ତା ଡେଣାରେ...ମନରେ ବିପୁଳ କୁହୁକ। ସଂସାରକୁ ଦେଖିବ, ସତ୍ୟ ନ୍ୟାୟରେ ପ୍ରତିଷ୍ଠିତ କରିବ ତା'ର ପ୍ରାଣସତ୍ତାକୁ– ଏଇ ହେଲା ତା'ର ମହାନ୍ ଆଶା।

କିନ୍ତୁ ହେଲା କଅଣ? ଯୌବନର ଆଦ୍ୟ ଆଲିଙ୍ଗନ ତଳେ ରକ୍ତକରବୀର ସମସ୍ତ ସମ୍ଭାର ପାଖରେ ବହିଗଲା ଅପ୍ରତ୍ୟାଶିତ ଏକ ପ୍ରମତ୍ତ ଝଟିକା। ଏ ଝଟିକା ଆସିଥିଲା ତାକୁ ଗ୍ରାସ କରିବାକୁ, ତାକୁ କବଳିତ କରି ତା'ର ସୁକୁମାର ମନ ଉପରେ ପୁରୁଷର ନିଷ୍ଠୁର ଆତତାୟିତାକୁ ସ୍ୱାକ୍ଷରିତ କରିବାକୁ। ତାହା ହିଁ ହେଲା।

ସେହିଦିନୁ ସତ୍ୟଭାମା ବୁଝିଲା ସବୁ ମିଥ୍ୟା...ଉପରେ ଶୋଭନର ସ୍ତର, ଭିତରେ ସ୍ୱାର୍ଥ ସରିସୃପ କୁଣ୍ଡଳୀ ପକାଇ ପଡ଼ିରହିଛି। ତା'ର ଉଦ୍ଧାରକର୍ତ୍ତା କେହି ନାହାନ୍ତି, ସେ ଜାଣେ। ତଥାପି ଏକ ଅଚିନ୍ତନୀୟ ଶକ୍ତି ଉପରେ ତା'ର ବିଶ୍ୱାସ ରହିଛି। ଭରସା ତୁଟିଛି ମଣିଷ ଉପରୁ, ରହିଛି କେବଳ ନୀଳ ଦିଗନ୍ତ ଉପରେ– ଯେଉଁଠି ଦିଗହୀନ ଅସୀମତା ହିଁ ତାକୁ ବିଶ୍ୱପ୍ରାଣତାର ଆସ୍ୱାଦ ଦିଏ।

ସେ ଜାଣେ ନାରୀର ମୁକ୍ତି ବିବାହରେ। ସମାଜ ତାହାହିଁ ବିଧାନ କରିଛି। ଅଥଚ ଏ ମୁକ୍ତି ଶତବନ୍ଧନର କଠିନ ରଜ୍ଜୁରେ ପ୍ରାଣଭିକ୍ଷା କରେ। ନିଜକୁ ଧ୍ୱଂସ କରିବାକୁ ଟିକିଏ ମାତ୍ର ଆୟୋଜନର ଦରକାର ନାହିଁ। ସେ ଆପେ ଧ୍ୱସ୍ତ ବିଧ୍ୱସ୍ତ...ଅଥଚ ଏ ଧ୍ୱଂସ ଆସିବା ପୂର୍ବରୁ ସତ୍ୟଭାମା ଚିହ୍ନିଛି ସେଇମାନଙ୍କୁ ଯେଉଁମାନେ ତାକୁ ଶେଷ କରିଦେବା ପୂର୍ବରୁ ନିଜେ ନିଃଶେଷ ହୋଇଯାଉଛନ୍ତି।

ଶୁଭକାନ୍ତ ଖୋଜେ ସତ୍ୟଭାମାକୁ, ତା'ର ସତ୍ୟ ରୂପକୁ। ଏମିତି ସ୍ୱତନ୍ତ୍ର ଅଥଚ ଅନୁପମ ବ୍ୟକ୍ତିତ୍ୱ ଶୁଭକାନ୍ତ ଦେଖିନାହିଁ ଅନ୍ୟତ୍ର। ଜୀବନ ବହିଚାଲେ...ଘଟଣା ଘଟେ...ବିନ୍ଦୁ ବିନ୍ଦୁ ସ୍ମୃତି ସଂଚିତ ରହିଯାଏ ଦୀର୍ଘଶ୍ୱାସର ଧାରା ଭିତରେ...।

× × ×

ସେ ଦିନ ଧର୍ମାର୍ଥୀମାନେ...ନାରୀ ଆଉ ପୁରୁଷ...ଚାଲିଛନ୍ତି ସିନ୍ଧୁର ବେଳା ଉପରକୁ ମହାଯୋଗରେ ଦେହ ବୁଡ଼ାଇ ସମୁଦ୍ର-ତରଙ୍ଗ ଉଚ୍ଛ୍ୱାସରେ ପାଇଯିବେ ମୁକ୍ତି।

ଇତିହାସର ଗୋଟାଏ କାଳଜୟୀ ତାରିଖ– ଗୋବିନ୍ଦ ଦ୍ୱାଦଶୀ– ଲେଖା ହୋଇଯିବ କବିର କାବ୍ୟରେ, କଥକର କଥାରେ।

ମୁକ୍ତିର ବାସନାରେ ଆନ୍ଦୋଳିତ ପାପଶରୀର ଚାଲିଛି ମହାସିନ୍ଧୁର ତଟଆଡ଼େ–ଅଗଣିତ ନରନାରୀ– ସଂସାର ଜଞ୍ଜାଳରେ କୁବ୍ଜ ହୋଇଯାଇଥିବା ସେମାନଙ୍କ ଶରୀର। ପରଶ୍ରୀକାତରତା ଆଉ ଅସୂୟାରେ ଜଳିଯାଇଥିବା ତାଙ୍କ ମନ ଆଜି ମୁକ୍ତ ହୋଇଯିବ। ପୁଣି ପରିଷ୍କାର ଧଳା କାଗଜ ଉପରେ ମସୀ ବୋଳି ହୋଇ ଦେଖାଦେବ ଆତ୍ମକୃତ ପାପ– ଗଚ୍ଛିତ ରହିବ ପେକ୍ଷମାଣ ଆଉ ଏକ ଦ୍ୱାଦଶୀ ପାଇଁ।

ଦିଗନ୍ତକୁ ଦୃଷ୍ଟି ଦେଇ ଚାହିଁଲା ସତ୍ୟଭାମା। ହାୟରେ ବିକଳ ମଣିଷ, କେତେ ସହଜରେ ତୁ ମୁକ୍ତ ହେବାକୁ ବିଶ୍ୱାସ ରଖୁ!

ଘରୁ ଭିତରୁ ଡାକଦେଲେ ବୋଉ– 'କଅଣ ଏତେବେଳ ଯାଏ ସେଆଡ଼େ ଚାହିଁ ଛିଡ଼ା ହୋଇଛୁ। ରାତି ଦୁଇଟା ବେଳେ ପୂର୍ଣ୍ଣଯୋଗ। ରାତିରୁ ଗାଧୋଇ ଆସିଲେ ଆଉ ଭିଡ଼ରେ ପଡ଼ିବା ନାହିଁ। ଚାଲ୍...ଜଲ୍‌ଦି ଚାଲ୍...'

ଉତ୍ତର ଦେଲା ସତ୍ୟଭାମା– 'ମୁଁ ତ ପାପ କିଛି କରିନି ଯେ ବୁଡ଼ପକେଇବି, ତମେ ଯାଅ, ତମର ଯଦି କଅଣ ଥାଏ...'

ବୋଉ ଗର୍ଜି ଉଠିଲେ–

'ବୟସ ଗଡ଼ିଚାଲିଛି, କେଉଁଠି କିଛି ଠିକ୍ ହେଲା ନାହିଁ। ବୁଡ଼ଟାଏ ପକେଇ ଦେଇଥିଲେ...ଗୋଟାଏ ବିଶ୍ୱାସ ତ...କିଛି ଯଦି ଘଟଣ ହୋଇଯାଏ...ପାପ କଥା କିଏ କହିଲା? ତା' ଛଡ଼ା ସମସ୍ତେ ଯାଇଛନ୍ତି, ତୁଇ ଏକା ଗୋଠଖଣ୍ଡିଆ– ଚାଲ୍ ବୁଡ଼ି ଆସିବୁ।'

ସତ୍ୟଭାମା ସେତେବେଳେ ଭାବୁଥିଲା:– 'ଶୁଭକାନ୍ତ, ତୁମେ ବୋଧହୁଏ ଏ ସବୁ ଶୁଣିପାରୁନ। ମୁଁ ତ ଜୀବନଭରି ବୁଡ଼ିଛି, ଆଉ ଏ ବୁଡ଼ରେ– ନା, ଥାଉ, ତୁମେ କେଉଁଠି ଅଛ ଶୁଭକାନ୍ତ? ଏଇ ବୁଡ଼ ଭିତରେ ଅଲୋଡ଼ା ଜୀବନଟା ବିସର୍ଜନ ଦେବି କି? ତୁମର ଅନୁମତି ପାଇବି କି?'

ଆଃ ଜଳରାଶିର କି ସୁନ୍ଦର ବିସ୍ତାର! ଶର୍ବରୀର ଏଇ ସର୍ବ-ଶୋଭାମୟ ରୂପତଳେ ମହାନ୍ ଜଳୋଚ୍ଛ୍ୱାସର ସାର୍ଥକ ବାର୍ତ୍ତା କେତେଜଣ ବା ଶୁଣନ୍ତି, କେତେ ଜଣ ବା ବୁଝନ୍ତି?

ଏକାନ୍ତ ଏକକଭାବରେ ଛିଡ଼ା ହେଲା ସତ୍ୟଭାମା ତରଙ୍ଗାୟିତ ସାଗରକୁ ଧ୍ୟାନ କରି। କେଉଁ ନିର୍ଦ୍ଦିଷ୍ଟ ଜଳବିନ୍ଦୁର ପରିଧିକୁ ସେ ସ୍ପର୍ଶ କରିବ? ଏ ତ ସବୁଆଡ଼େ ପ୍ଳାବନ! ଶୁଷ୍କ ନୀରସ ବୋଲି ଏ ମହାସିନ୍ଧୁ କ'ଣ କିଛ ରଖିଛି? ଯେଉଁଠି ବହୁଛି ତାହା ପ୍ଳାବିତ, ଯେଉଁଠି ନ ବହୁଚି ସେ ବି ପ୍ଳାବିତ ବିଶ୍ୱପିତାର କରୁଣା ଧାରାରେ।

ନୈଶ ଆକାଶ ତଳେ ନୀଳ ଜଳବେଣୀ। ଏ ଦେହଟାକୁ ସେଇଠି ବୁଡ଼େଇ ଦେଇ ଆତ୍ମତୃପ୍ତିରେ ଫେରିଯିବ ମଣିଷ ନୂତନ ପାପରେ ଲିପ୍ତ ହେବାପାଇଁ।

ତା'ର ଜୀବନ– ଏଇ ସତ୍ୟଭାମାର ଜୀବନ– ସମସ୍ତଙ୍କ ଭଳି ସେ ବି ବିକଶି ଆସିଲା ପ୍ରକୃତିର ସୁଚାରୁ ପ୍ରେମମୟ ସ୍ପର୍ଶରେ। ସତ୍ୟ ମିଥ୍ୟା କିଛି ବୁଝି ନଥିଲା। ପ୍ରକୃତିର ସୁଷମାୟିତ ଭୂମା ଉପରେ ସତ୍ୟ ଛଡ଼ା ଆଉ କିଛିର ଅସ୍ତିତ୍ୱ ଅଛି ବୋଲି ସେ ଜାଣି ନଥିଲା।

କିନ୍ତୁ ମିଥ୍ୟା ଆସିଲା ତା' ଜୀବନକୁ। ପରମ ସନ୍ତୋଷରେ ସେ ଏଇ ଅନୃତକୁ ହାତ ବଢ଼ାଇଦେଲା। ଭାବିଲା ଏଇ ବୃନ୍ତରେ ଏଇ ମନୋରମ ପୁଷ୍ପଟି ଫୁଟି ପଡ଼ିବ।

ହେଲା ନାହିଁ। ଫୁଟିଲା ସତ; ମାତ୍ର ତାହା ମନୋମୟ ବା ମନାତୀତ ହେଲା ନାହିଁ। କିଏ ଜାଣେ ଏ ଜୀବନ ଦେଉଛି କଅଣ, ନେଉଛି କଅଣ? ମଣିଷ ଆସେ ସାଗରର ଏଇ ତୀରଭୂମିକୁ। ଅବଲୋକନ କରେ ଏଇ ବିପୁଳ ଜଳାଧାରକୁ– ଆଦିଅନ୍ତହୀନ ଏଇ ବିସ୍ତାରକୁ–ସ୍ନିଗ୍‌ଧ ଆଉ ଶୀତଳତାର ଏଇ ପ୍ରବାହକୁ।

କିନ୍ତୁ ଫେରିଗଲେ ସେ ଧନବାନ୍ ହୋଇପାରେ ନାହିଁ– ଯେଉଁ ଦରିଦ୍ରକୁ ସେଇ ଦରିଦ୍ର। ସମୁଦ୍ର-ହୃଦୟ ତା' ହୃଦୟକୁ ସମୁଦ୍ରାକାର କରେ ନାହିଁ। ସ୍ନିଗ୍‌ଧ ସାଗର ତା' ଅନ୍ତରକୁ ସ୍ନେହସିକ୍ତ କରେ

ନାହିଁ। ତରଙ୍ଗୋଚ୍ଛ୍ୱାସ ତା'ର ଜୀବନକୁ ଭାବମୟ କରେ ନାହିଁ।

ତେବେ ସେ ଆସିଥିଲା କାହିଁକି– ବାଲୁକା ଉପରେ ହାତ ଦେଇ ଗାର କାଟିବାକୁ? ଦୁଇଦଣ୍ଡ ଖେଳି ବୁଲି ଗୋଟାଏ ନିଶ୍ଚିତ ଭାଙ୍ଗି ଚାଲିଯିବାରେ ଆନନ୍ଦ ପାଇବା ପାଇଁ?

ମଣିଷ ଏହାହିଁ କରି ଆସିଛି ସୃଷ୍ଟିର ଆଦ୍ୟ ମୁହୂର୍ତ୍ତରୁ। ମନର ଭାବ ନେଇ ସେ ଖେଳେ, ଭାବାନ୍ତରକୁ ଆସିଗଲେ ସେ ଭାଙ୍ଗିଦିଏ।

ସବୁ ମଣିଷ ଏମିତି ନୁହଁନ୍ତି। ଯେଉଁମାନେ ନୁହଁନ୍ତି ସେଇମାନେ ଏ ସଂସାରରେ ବେଶୀ ଦୁଃଖୀ। ସତ୍ୟଭାମା ଜାଣେନା ଏସବୁ ସେ କାହିଁକି ଭାବୁଛି? ବ୍ୟର୍ଥ ତା'ର ଜୀବନ ଓ ଆଦର୍ଶ; କିନ୍ତୁ ଏଇ ବ୍ୟର୍ଥତାରୁ, ଏଇ କଳ୍ପିତ ଧ୍ୱଂସମୁଖରୁ କେହି କଅଣ ନାହିଁ ତାକୁ ଉଦ୍ଧାର କରିବ? ଶୁଭକାନ୍ତ କଥା ମନେପଡ଼ିଲା; କିନ୍ତୁ ସେ ତ ଅଦୃଶ୍ୟ ଏକ ସ୍ଥିତି। ସତ୍ୟଭାମାର ମନ ଯାହା ଅନ୍ୱେଷଣ କରେ, ତା'ରି ପ୍ରତିରୂପ ସେ।

ନିଃଶବ୍ଦ ପଦକ୍ଷେପରେ ଶୁଭକାନ୍ତ ଆସେ ତା'ର ମନର ଅଙ୍ଗନକୁ। ସେ ଅଙ୍ଗନ ତମିସ୍ରାଭରା, ସେଠି ଶୁଭକାନ୍ତ ଜାଳିଦିଏ ଗୋଟିଏ ଦୁଇଟି ପ୍ରଦୀପ। ଆଭା ଫୁଟିଯାଏ ସେଇ ସ୍ୱଚ୍ଛ ସ୍ଥାନ ଭିତରେ। ଦୁହେଁ ଦୁହିଁକୁ ଚାହାଁନ୍ତି...ଉଜ୍ଜ୍ୱଳ...

ବୋଉ...ବୋଉ କୁଆଡ଼େ ଗଲା? ଆଉ ତା'ର ସାଥୀମାନେ? ଯିଏ ଯୁଆଡ଼େ ଯାଆନ୍ତୁ। ଆଜି ଏଇ ଦଣ୍ଡରେ ସତ୍ୟଭାମାର କାହାକୁ ଲୋଡ଼ା ନାହିଁ। ଯେଉଁଠି ବିଶ୍ୱବ୍ରହ୍ମାଣ୍ଡ ଏଇ ସାଗର ଭିତରେ ନିମଜ୍ଜିତ ହୋଇଛି, ଯେଉଁଠି ନିଜେ ଧାତା ଏଇ କୃଷ୍ଣ ଜଳ ପ୍ରସାରକୁ ନୌକା କରି ନିଜେ କର୍ଣ୍ଣଧାର ହୋଇ ବାହିଚାଲିଛନ୍ତି ବିଶ୍ୱଚେତନାକୁ, ସେଠି ସତ୍ୟଭାମାର ପାର୍ଥିବ କାହାର ସହଯୋଗ ଆଉ ଦରକାର ନାହିଁ।

ମଣ୍ଡଣି ମରିଛି ଅୟୁତ ତାରାଲୋକ, ଉର୍ଦ୍ଧ୍ୱରେ– ନୀଳ ଆକାଶ ପଟରେ...କି ଅଦ୍ଭୁତ ଏ ଦୃଶ୍ୟ! ବୋଉ, ତତେ ଶତ ଧନ୍ୟବାଦ; ଆଣିଲୁ ବୋଲି ସିନା ଦେଖିଲି ଏ ମହାର୍ଘ ରୂପ! କିନ୍ତୁ ବୋଉ କାହିଁ ? ଯାଉ ସେ ଯୁଆଡ଼େ – ଆଣିବା ତା' ର କାମ ଥିଲା, ନେଇଯିବା ତା'ର ନୁହେଁ କି ଆଉ କାହାର ନୁହେଁ।

ଶୁଭକାନ୍ତ ଏମିତି କେତେ ସୁନ୍ଦର କଥା କହେ– ପ୍ରଥମେ କିଛି ବୁଝି ହୁଏନା, ପରେ ପ୍ରତ୍ୟେକଟି କଥା ଅର୍ଥସମୃଦ୍ଧ ହୋଇ ଉଠେ।

ଶୁଭ ତମେ କେଉଁଠି ଅଛ? ତମକୁ ଏଇ ସାଗର ଉପରେ ଭସେଇ ଦେଲେ ତମେ କଅଣ ତଳକୁ ଚାଲିଯିବ...ଏକାବେଳକେ ତଳକୁ...କିନ୍ତୁ ତଳେ ଯାହା ଅଛି ଉପରେ ତା' ନାହିଁ। ଉପରଟା ସବୁବେଳେ ଠକିଦିଏ; ତଳ ତା' ନୁହେଁ, ତଳେ ରହିଚି ମଣିମୁକ୍ତା। ଶାନ୍ତ ସ୍ଥିର ଭାବରେ ରହିଛି ସେଇଠି ବିଶ୍ୱର ଆଦିମାତା। ସେଇଠିକୁ ମୁଁ ତମକୁ ପଠେଇ ଦେଇଛି। ବୃଥା ଏ ଉପର ସ୍ତରରେ ରହି ତୁମର ଶୁଦ୍ଧ ମୂର୍ତ୍ତିକୁ ତୁମେ ଅଶୁଦ୍ଧ କର ନାହିଁ। ଲୋକେ ତୁମକୁ ରଖିଦେବେ ନାହିଁ, ତୁମେ ଉପରେ ଥିବାଯାଏ...

ଧୀରେ ସେ ଅଗ୍ରସର କଲା ବିଜନବେଳା ଆଡ଼େ। ଗଭୀର ରାତ୍ରି। ସ୍ନାନାର୍ଥୀ ଅତି ଅଳ୍ପ ଆସୁଛନ୍ତି। ଶୀଘ୍ର ସମାଗମ ବଢ଼ିଯିବ।

କେଉଁ ଅଦୃଶ୍ୟ ଶକ୍ତି ସତ୍ୟଭାମାକୁ ଟାଣିନେଲା ଦୂର...ଦୂରକୁ...ନିବିଡ଼ ମସୀ ତଳେ ବେଳାର ନୈଶରୂପ। ସିକ୍ତ ବାଲୁକା ଉପରେ ସତ୍ୟଭାମାର

ପଦପ୍ରାନ୍ତ ରଖି ଯାଇଥାଏ ଗୋଟାଏ ଅଭିମାନିନୀ ନାରୀର ରେଖାବଳୀ।

କେତେ ଦୂରକୁ ସେ ଚାଲିଯାଇଛି ସେ ଜାଣେନା– ଯିବାଟା ହିଁ ତାକୁ ଭୂତଗ୍ରସ୍ତ କରିଛି।

ସହସା ସ୍ତବ୍‌ଧ ହୋଇ ସେ ଛିଡ଼ା ହୋଇଗଲା ଗୋଟାଏ କଅଣ ଶ୍ୱେତବସ୍ତୁ ଦେଖି... ହେଇଟି, ତା'ରି ଗୋଟିଏ ମାତ୍ର ପାଦର ଦୂରତ୍ୱ ଆଗରେ ଥୁଆହୋଇଛି ଏ କି ଶୁଭ୍ର ପଦାର୍ଥ ?

ବେଳା ନିକଟରେ ସାଇଁ ସାଇଁ ଧ୍ୱନି ଭାସିଆସୁଛି ଏବଂ ତାଆରି ସହିତ କ୍ଷୀଣ କ୍ଷୀଣତର ଆଉ ଗୋଟିଏ ଶବ୍ଦଧାରା...ମନେ ହେଉଛି ସେଇ ଧବଳ ପଦାର୍ଥ ଭିତରୁ ସଞ୍ଚରି ଆସୁଛି ପରମବାଣୀ... "ମତେ ମାଆ ବଞ୍ଚାଅ"।

ସେଇ ମୁହୂର୍ତ୍ତରେ ସତ୍ୟଭାମା ହୋଇଗଲା ବିଶ୍ୱମାତା। ତା'ର ନାରୀତ୍ୱରେ ଜୁଆର ଉଠିଲା ଏ ନିଷ୍ପାପ ହୀରକଖଣ୍ଡକୁ– କେଉଁ ଜନନୀର ରକ୍ତପଦ୍ମକୁ– ଅଖ୍ୟାତ ଅଜ୍ଞାତ କେଉଁ ପ୍ରସବିନୀର ଏଇ ଶୋଣିତ ଧାରାକୁ ବକ୍ଷ ଭିତରେ ଧରିବା ପାଇଁ।

ଶିଶୁଟିର କାନ୍ଦଣା ବନ୍ଦ ହୋଇଗଲା। ନୈଶଚାରୀ ବିହଙ୍ଗୀ ସେତିକିବେଳେ କାକଳି ଦେଇ ଶୁଭବାର୍ତ୍ତା କହିଗଲା।

ସତ୍ୟଭାମା ଅନୁଭବ କଲା ଶିଶୁର ଜୀବନ ଅଛି। ଶିଶୁଟିର ସର୍ବାଙ୍ଗରେ ଖଣ୍ଡିଏ ଧଳା ବସ୍ତ୍ର। ବକ୍ଷ ଭିତରେ ଏଇ କଳିଟିକୁ ଉଷ୍ମା ଦେଇ ସତ୍ୟଭାମା ଏକପ୍ରକାର ଦଉଡ଼ିଲା...କେଉଁଆଡ଼େ ସେ ଜାଣେନା।

ପାପିନୀ ସତ୍ୟଭାମା ଏଇ ମୁହୂର୍ତ୍ତରୁ ବୋଧହୁଏ ଆହୁରି ପାପିନୀ ହୋଇଗଲା; କିନ୍ତୁ ମହୋଦଧି ସବୁ ଦେଖିଛି, କେହି ଚାହିଁଲେ ସେ ସାକ୍ଷ୍ୟଦେବ; କିନ୍ତୁ ହାୟ, ମଣିଷର ବିଚାରରେ ଏଭଳି ସତ୍ୟ ସାକ୍ଷ୍ୟର ପ୍ରୟୋଜନ ଥାଏ କି ?

× × ×

ସିନ୍ଦୂରା ଫାଟିବାକୁ ଆଉ କେତେ ବା ଡେରି ? ଦ୍ୱାଦଶୀର ଉଦୟ– ସତ୍ୟଭାମାର ଭାଗ୍ୟରେ କାହାର ଉଦୟ ସେ ବୁଝିଛି।

ହାସପାତାଳର ଗୋଟିଏ କୋଠରିରେ ବସିରହିଥିଲା ସତ୍ୟଭାମା। ତା'ର ଆଖି ଦୁଇଟିରୁ ଝରି ଆସୁଥିଲା ପବିତ୍ର ଦୁଇଟି ମୁକ୍ତାବିନ୍ଦୁ। ଶିଶୁର ଗଳାରେ ଗୋଟିଏ ସୂତାରେ ବନ୍ଧା ହୋଇଥିବା ଖଣ୍ଡିଏ ଚିଠିକୁ ସତ୍ୟଭାମା ଅଶ୍ରୁସିକ୍ତ ନେତ୍ରରେ ପଢୁଥିଲା–

ଭାଇ ବା ଭଉଣୀ,

'ଦୟାମୟ ଈଶ୍ୱର ଯାହାକୁ ଯା ପାଖରେ ପହଞ୍ଚାଇଦେବେ, ଯଦି ସେତେବେଳକୁ ତା'ର ପ୍ରାଣ ଥାଏ, ତେବେ ଏ ଦୁଃଖିନୀର ପ୍ରାର୍ଥନା ରହିଲା ସେ ତାକୁ ଗ୍ରହଣ କରିବେ। ମୁଁ ତାକୁ ଛାଡ଼ି ଆସିଛି ସେ ବଞ୍ଚିବ ବୋଲି। ମୋ ଅବସ୍ଥାରେ ତାକୁ ମୋ ପାଖରେ ରଖିପାରିଲି ନାହିଁ। ଯେ ଗ୍ରହଣ କରିବେ, ତାଙ୍କୁ ଆଉ କଅଣ କହିବି, ତାଙ୍କର କୋଟି କୋଟି କଲ୍ୟାଣ ହେଉ।

– 'ଦୁଃଖିନୀ'

ଖୋଲା ଆକାଶ ତଳେ ଏ ଯେଉଁ ରତ୍ନକୁ ସତ୍ୟଭାମା ସାଉଁଟି ଆଣି ପାପିନୀ ସ୍ତରରୁ ମହାପାପିନୀ ଆଡ଼କୁ ଗତି କରିଯାଉଛି, ସେ ରତ୍ନ କଅଣ ଭବିଷ୍ୟତରେ ଏ ଦୁନିଆର ନ୍ୟାୟବାନ୍ ବିଚାର ଦଳ ଭିତରୁ ଜଣେ ହୋଇଯିବ ? ସେ କଅଣ ରାୟ ଦେବ ଯେ ତା'ର ମାଆ...

ମାଆ ? ବିସ୍ମୟାଭିଭୂତ ହୋଇ ବିଶୁଷ୍କା ବ୍ରତତୀ ଭଳି ଝାଉଁଳି ପଡ଼ିଲା ସତ୍ୟଭାମା। ତା'ର ଏ ନିଜ କଣ୍ଠସ୍ୱର ତ ? ଏଇ ମାଂସପିଣ୍ଡ ଅବୋଧ ଶିଶୁ ତାକୁ ଡାକିବ ମାଆ ବୋଲି ? ହଁ, ସେ ତା'ର ମା', ତାକୁ ପଛକେ କିନ୍ତୁ ସେ ଯେପରି ବିଚାର ମଧ୍ୟରେ– ଭବିଷ୍ୟତର ଏଇ ଜ୍ୟୋତିକୁ ସେ ମିଶାଇବ ନାହିଁ କାହାକୁ ବିଚାର କରିବାକୁ। ସବୁର ଏକମାତ୍ର ବିଚାରକ– 'ଉପରେ'

ପ୍ରୀତିର ଆଶାଦଣ୍ଡ ଭଳି ଅତି କୋମଳ ହାତଟିକୁ ଉଠାଇ ଯେ ପରମନିୟନ୍ତା ଈଶ୍ୱରଙ୍କ ଆଡ଼କୁ ଊର୍ଦ୍ଧ୍ୱକୁ ଦେଖାଇଦେଲା– ସେ ଶୁଭକାନ୍ତ।

ସତ୍ୟଭାମା ହତବାକ୍ ହୋଇ କେବଳ ଚାହିଁରହିଲା। ପରେ ପ୍ରକୃତିସ୍ଥା ହୋଇ କହିଲା– 'ତୁମେ କିମିତି ମୋ ମନକଥା ଜାଣିଲ ?'

ଶୁଭକାନ୍ତ ହସି ହସି ଉତ୍ତର ଦେଲା– 'ଶୁଭ ସତ୍ୟକୁ ଜାଣିପାରେ ଯିମିତି ସତ୍ୟ ଶୁଭକୁ ବୁଝିପାରେ,...ଆଉ ମଝିରେ ସୌନ୍ଦର୍ଯ୍ୟ– ଏଇ ନବଜାତ ଶିଶୁ, ସେ ଯାହାର ହେଉନା କାହିଁକି, କେଡ଼େ ନିଷ୍ପାପ, ଶାନ୍ତ ଓ ସରଳ ଦେଖିଲ ! ଜାଣ ସତ୍ୟ, ତୁମେ ଦୁଃଖ କରନାହିଁ। ଯେ ଦୁନିଆ ସହସ୍ର ଶଠତା, ଅସତ୍ୟ, ଅସୂୟା ଓ ହିଂସାରେ ଏଯାଏ ପ୍ରତିପାଳିତ ଥିଲା, ସେ ଦୁନିଆ ଧୀରେ ଅପସୃତ ହୋଇଯାଇଛି। ଆସୁଛି ଆଉ ଏକ ଜଗତ୍ ଯାହା କାହାକୁ ବିଚାର କରିବ ନାହିଁ; ଅବିଚାର ବି ଦେବ ନାହିଁ। ସେ କେବଳ ମଣିଷକୁ ମଣିଷ ଭାବରେ ସହି ନେବାକୁ ଶିଖାଇବ। ସହନ ଓ କରୁଣା ଆଗାମୀ ଦୁନିଆର ବୀଜମନ୍ତ୍ର ହେବ, ଆଉ ମଣିଷ ବିଶ୍ୱବୋଧରେ ଅନୁରଞ୍ଜିତ ଥିବ। ଏଇ ନର୍ସ ଆସୁଛନ୍ତି।

ସେବିକା କହିଲେ– 'ପିଲାଟି ସୁସ୍ଥ ଅଛି। ଭୟର କାରଣ କିଛି ନାହିଁ। ନିୟମ ଅନୁସାରେ ବାପାର ନାମ ଲେଖିବାକୁ ପଡ଼ିବ। କିନ୍ତୁ...ଏ ଅବସ୍ଥାରେ...'

ଶୁଭକାନ୍ତ ଉଚ୍ଛ୍ୱସିତ ହର୍ଷରେ କହିଲା– 'ସିଷ୍ଟର, ତା' ବେଶ୍... ମୁଁ... ମାନେ ମୋ ନାଁ ଲେଖିଦିଅ... ମୁଁ ଶୁଭକାନ୍ତ।'

ନର୍ସ ଫେରିଗଲା।

ପ୍ରୀତିଚକିତ ତୋଳାରେ ସତ୍ୟଭାମା ଜିଜ୍ଞାସୁ ହୋଇଉଠିଲା। ସେ ଚାହାଣିକୁ ନିରସ୍ତ କରି ଶୁଭକାନ୍ତ ସତ୍ୟଭାମାର ବିଷଣ୍ଣ ମୁଖ ଉପରେ ହାତ ବୁଲାଇ ଆଣି କହିଲା–

'ନା, ବିଚାର କର ନାହିଁ, ସହିନିଅ, ଭବିତବ୍ୟତାକୁ ସହିନିଅ। ଈଶ୍ୱର ତାହାହେଲେ ସନ୍ତୁଷ୍ଟ ହେବେ।'

ଉଜ୍ଜ୍ୱଳ ଆଲୋକ ଓ ପରମ ଆନନ୍ଦ ଭିତରେ ସତ୍ୟଭାମା ମୁଦି ଆଣିଲା ତା'ର ତନ୍ଦ୍ରାଚ୍ଛନ୍ନ ଚକ୍ଷୁପଲ୍ଲବକୁ।

ବିମୁଗ୍‌ଧ ଭାବରେ ଚାହିଁ ରହିଥାଏ ଶୁଭକାନ୍ତ ସେହିଆଡ଼େ– ବାହାରେ ଜନାକୀର୍ଣ୍ଣ ରାସ୍ତା ଉପରେ ଦୃଢ଼କ୍ଷେପରେ ଚାଲୁଥାନ୍ତି ମଣିଷକୁ ବିଚାର କରୁଥିବା ବିଚାରକଦଳ, ନ୍ୟାୟ-ନୀତିବଣ୍ଟନକାରୀ ଅସହିଷ୍ଣୁ ମଣିଷଦଳ...ମଣିଷ ଆଉ ମଣିଷ !



# ଶୋଭାମଞ୍ଜୁଳା

ପ୍ରାୟ ଦିନ ଦୁଇଟାବେଳକୁ ମୁଁ ଡାକ ପାଏ। ଚିଠିପତ୍ରର ଗଦା। ଅଫିସ୍‌ରେ ସେଗୁଡ଼ିକ ବଛାଯାଏ। ମୋ ଟେବୁଲ ପାଖକୁ ତାହା ସବୁ ଆସିବାବେଳକୁ ସମୟ ହୋଇଥାଏ ତିନିଟା ପାଖାପାଖି।

ସାଢ଼େ ଦଶରୁ ତିନିଟା ଯାଏ ଏକଟଣା ବୈଚିତ୍ର୍ୟହୀନ କାଳକ୍ଷେପଣ। ସେଥିରେ ଥାଏ ସ୍ତୂପୀକୃତ ଫାଇଲ୍‌ର ଆହ୍ୱାନ।

ମୋର ଅବଚେତନ ମନରେ ଗୋଟିଏ ପ୍ରତୀକ୍ଷମାଣା ରମଣୀର ଦାୟିତ୍ୱ ସହିତ ମିଳିତ ହେବାର ଆକାଂକ୍ଷା ଜନ୍ମନିଏ ଯେତିକି ଘଣ୍ଟାକଣ୍ଟା ତିନିଟା ଆଡ଼କୁ ଚାଲିଆସୁଥାଏ। ମୋ ବିଶ୍ୱରେ ଏତିକି ତ ଆନନ୍ଦ? ଏଇ ଯେ ଚିଠିଗଦା !

କେତେ ପ୍ରକାର ଚିଠି ଆସିଥିବ, କେତେ ପ୍ରକାର ଦଲିଲ, କେତେ କିସମର ବିଲ୍, କେତେ ନିର୍ଦ୍ଦେଶ, କେତେ ଆଦେଶ, ଅନୁଶୋଚନା, ନାଁ ଠିକଣାରେ କେତେ ଚିଠି, ପଦବୀ ଧରି କେତେ ପତ୍ର, ଟାଇପ୍... ଅଟାଇପ୍... ହାତଲେଖା, ଅପାଠ୍ୟ ସୁପାଠ୍ୟ ଦସ୍ତଖତ ସହିତ ଅବା ଟିପଚିହ୍ନ ସହିତ... ଏମିତି କେତେ ଚିଠିପତ୍ର।

ଖଣ୍ଡିଏ ଚିଠି ପଢ଼ିଲେ ଯେଉଁ ଅନୁଭବ ଆସେ, ଆରଖଣ୍ଡକ ପଢ଼ିଲେ ତାହା ନଥାଏ। ଚଳଚିତ୍ରରେ ରୂପ ବଦଳେ, ଚାହୁଁ ଚାହୁଁ ବଦଳିଯାଏ; ମାତ୍ର ଏ ଚିଠିପଢ଼ାରେ ଭାବ ବଦଳେ। ଲଲାଟପଟରେ ରେଖାର କୁଞ୍ଚନ ଜନ୍ମେ, ପୁଣି ଅପସରିଯାଏ।

ମୁଁ ତ ଭାବେ କେଉଁଠି ଯଦି ନବରସର ଝଲକ ଏକତ୍ର ଉପଭୋଗ କରିବାକୁ ମନ ବଳେ, ତେବେ ସେଗୁଡ଼ିକ ଏଇଠି ରହିଛି।

ବୀରରସର ଚିଠି ଆସେ; କିଏ ଲେଖିଛି ଆମ ଗାଁ ସ୍କୁଲ ପୋଡ଼ିଗଲା, ସରକାର ଟଙ୍କା ଦେବାକୁ ବାଧ୍ୟ। ଭାଷା ଭାଷ୍ୟରେ ଚିଠି ଗୋଟାକଯାକ ବୀରରସମୟ। ଲେଖକଙ୍କର ବୀରତ୍ୱ ବି ଜଣାଯାଏ, କାରଣ ସେ ଶିକ୍ଷାମନ୍ତ୍ରୀଙ୍କୁ ବି ଏକକିତା ନକଲ ଦେଇଛି ଚିଠିରେ।

ମୁଖ୍ୟ ବା ଶିକ୍ଷା ମନ୍ତ୍ରୀଙ୍କୁ ନକଲ ଦେବା ଅତି ସାଧାରଣ କଥା। ମୋ ପାଖକୁ ଚିଠି ଦେଇ ତୃପ୍ତ ହେବାର ଲୋକ ଏଇମାନେ ନୁହଁନ୍ତି। ସେମାନେ ହୁଏତ ଜାଣନ୍ତି ନାହିଁ ଯେ ଉପରୁ ପୁଣି ସେଇ ଚିଠିଗୁଡ଼ିକ ନଈସୁଅ ଭଳି ଭାସିଆସି ମୋ ପାଖରେ ସାଗର ସଙ୍ଗମ ଦେଖନ୍ତି।

ଚନ୍ଦନର ତ୍ରିରେଖା ଲଲାଟରେ ଟାଣି ଜଣେ ବ୍ୟକ୍ତି ଆସିଲେ ମତେ ସାକ୍ଷାତ କରିବା ପାଇଁ। ସକାଳ। ଝିପି ଝିପି ବର୍ଷା ହେଉଥାଏ। 'ପାଣିଓହଳା' ପର୍ବତ ମଥାନରେ ମେଘମାଳାର ଦୋଳନ। ସେଇଆଡ଼କୁ ଚାହିଁ ବସିଥାଏ ମୁଁ। ମୋର ଆଦୌ ଇଚ୍ଛା ନଥିଲା କେହି ଏଇ ଅତୀନ୍ଦ୍ରିୟ ଭାବାନୁଭୂତିକୁ ମୋର ନଷ୍ଟ କରିଦେଇ ମୋ ସହିତ ସାକ୍ଷାତ ପ୍ରାର୍ଥନା କରି...

କିନ୍ତୁ ହେଲା ନାହିଁ। ପଣ୍ଡିତେ ଆସିଲେ; ମୁଁ ନମସ୍କାର କରିବା ପୂର୍ବରୁ ସେ ହାତ ଉଠାଇ ଧନ-ଜନ-ଗୋପଲକ୍ଷ୍ମୀଙ୍କୁ ଡାକିଲେ ମୋ ଉଦ୍ଦେଶ୍ୟରେ।

ସ୍କୁଲରୁ ସଂସ୍କୃତ ପଣ୍ଡିତ, ଅଥଚ ଗ୍ରାଜୁଏଟ୍। ତେଣୁ ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ବୋଧହୁଏ ସେ ସାଧୁ ସଂସ୍କୃତ ଓଡ଼ିଆ ଭାଷା ସହିତ ଇଂରେଜୀ ଶବ୍ଦ ପଦ ଯୋଡ଼ି ଏକପ୍ରକାର "ଜଗା ଖେଚଡ଼ି"ରଚନା କରି କରି ଚାଲିଥାନ୍ତି ଅନର୍ଗଳ। କାହା ଉପରେ ପ୍ରତିଶୋଧ? ବୋଧହୁଏ ଦୁଇଟିଯାକ ଭାଷା ଉପରେ!

ସେ କହିଲେ ମତେ ଆଶୀର୍ବାଦ କରି... "ମୁଁ ପଣ୍ଡିତ, ସଂସ୍କୃତ ପଢ଼ାଏ; ଇଂରାଜୀ ସାହିତ୍ୟରେ ମୁଁ ଧୂରନ୍ଧର। ମୁଁ ବି.ଏ.ପାସ୍; ମାତ୍ର ଦୁଇଟା ମାର୍କ ସର୍ଟ ପଡ଼ିଗଲା ଫାଷ୍ଟ କ୍ଳାସ ହେବା କ୍ଳାସ ହେବା ପାଇଁ। ମୋର ନନା ବିଗ୍ (big) ପଣ୍ଡିତ, ବିଗର୍ (bigger) ପଣ୍ଡିତ ଦ୍ୟାନ୍ (than) ମୁଁ। କିନ୍ତୁ ଲକ୍ ବ୍ୟାଡ୍ (luck bad), ତାଙ୍କୁ ରାଷ୍ଟ୍ରପତି ମେଡଲ ଦିଆଯିବାକୁ ସୁଯୋଗ ଦିଆଗଲାନି। ମୋର ଫିବ୍‌ଟିନ୍ ମେମ୍ବରସ୍ ଫାମିଲିରେ ଅଛନ୍ତି ଫ୍ରମ୍ ସ୍ମଲ୍ ଟୁ ବିଗ୍ (from small to big)। ମୁଁ ଉଭୟ ସଂସ୍କୃତ ଓ ଇଂରାଜୀରେ ପାଟକତା ପାଇଛି। ଏଇ ପାଟକତାର ସୁପର ଏକ୍‌ସଲେନ୍‌ସ (super execellence) ଯୋଗୁ କରଣ ହେଡ୍ ମାଷ୍ଟର ଚକ୍ରାନ୍ତ କରି ମତେ ବଦଳି କରିଦେଲା ଦୂରକୁ। ମାତ୍ର ମୋର ହୋମ୍ ଷ୍ଟେଡ୍ (Home stead) ଏହି ସହରରେ ଅଛି। ମୁଁ ଇଂରାଜୀରେ ପୋଏଟ୍ରି ଲେଖେ। ଏଥିରେ ଋତୁବର୍ଣ୍ଣନା ଥାଏ। କାଳିଦାସଙ୍କର ବର୍ଣ୍ଣନା କି ଛାର? କାଳିଦାସ ତ ଇଂରାଜୀରେ ଲେଖିନାହାଁନ୍ତି! ପାରିଥାନ୍ତେ କି? ସ୍ୱର୍ଗୀୟ ଅଧ୍ୟାପକ ନାରାୟଣ ମୋହନ ଦେ ମୋ ଇଂରାଜୀ ପୋଏଟ୍ରି କମ୍ପୋଜିସନ୍ ପଢ଼ି ମହା ଖୁସି ହୋଇଯାଇଥିଲେ– କହିଲେ, ଭାଗବତ, ତୁମେ ଏ ଶକ୍ତି କେଉଁଠୁ ପାଇଲ? ସେତେବେଳେ ମୁଁ ନନାଙ୍କୁ ସ୍ମରଣ କରିଥିଲି। ଆଜ୍ଞା, ଆମ ବଂଶର ଏ ରନିଂ (running) ଧାରା। ଆପଣ ବିଦ୍ୱାନ ଏବଂ ସର୍ବଗୁଣାଗ୍ରହୀ– ଅଲ୍ ଭର୍‌ଚ୍ୟୁ ଆକ୍‌ସେପ୍‌ଟ କରନ୍ତି ଅନ୍ୟର। ମତେ ଟ୍ରାନ୍‌ସଫର୍ କରି ଆଣନ୍ତୁ, ଆଉ ମତେ ଗୃହଶିକ୍ଷକ କରି ରଖନ୍ତୁ; ଦେଖିବେ ଆପଣଙ୍କ ପୁଅଝିଅଙ୍କର ଇଂରାଜୀ ଓ ସଂସ୍କୃତ ଶିକ୍ଷା କେମିତି ହେବ! ସେତେବେଳେ ଆପଣ ରିଅଲାଇଜ୍ କରିବେ ମୋ ବିଦ୍ୟାଗରିମା, ମୋ କ୍ୱାଲିଟି..."

ଆକାଶରୁ ବାରିଧାରା ଖସିପଡୁଥାଏ। ମୋ କାନରେ ବାଜୁଥାଏ, ପଣ୍ଡିତଙ୍କର କଥା; କିନ୍ତୁ ଅନ୍ତର ଭିତରକୁ ଛୁଉଁନଥାଏ; କାରଣ ମଣିଷର ପ୍ରୌଢ଼ିର ବାଜଣା ପ୍ରାୟ ମତେ ବଡ଼ ଅସ୍ଥିର କରେ। ଏ ପଣ୍ଡିତ ଟ୍ରାନ୍‌ସ ଫର୍ ପ୍ରାର୍ଥୀ। ଏମିତି ବହୁ ପ୍ରାର୍ଥୀ ଆସନ୍ତି ବିଭିନ୍ନ ବେଶଭୂଷାରେ କେବଳ ପ୍ରାର୍ଥନା ବଦଳି ସ୍ଥଗିତ, କି ତାଙ୍କ ସୁବିଧା ସ୍ଥାନକୁ ବଦଳି।

ମାତ୍ର କେହି ଆସନ୍ତି ନାହିଁ ଇନ୍‌ସପେକ୍ଟରଙ୍କ ସହିତ ନିଜ ନିଜ ଅଭିମତ ବିଷୟ ଚର୍ଚ୍ଚା କରିବାକୁ। ସାହିତ୍ୟ, ସଂସ୍କୃତି, ଆମ ଦୁନିଆର ଭାବ ପର୍ଯ୍ୟାୟ କରି ଦେଶ-ବିଦେଶର ଘଟଣା ଓ ତାହାର ସମୀକ୍ଷା ନେଇ କେହି ଆସନ୍ତି ନାହିଁ ବିଚାର ଆଲୋଚନା କରିବାକୁ। କାହାରି ମୁଖମଣ୍ଡଳରେ ଶିକ୍ଷକର ବ୍ୟକ୍ତିତ୍ୱ ଜ୍ୟୋତି ଦେଖୁନାହିଁ। ସବୁବେଳେ ଯିମିତି ଗୋଟାଏ ପ୍ରାର୍ଥନାର ହାତ ଯୋଡ଼ି ନମ୍ର ନତି ଦେଖେ ମୁଁ ସେମାନଙ୍କଠାରେ। ମନ ବିଷଣ୍ଣ ହୋଇଯାଏ। ତେବେ ବ୍ୟତିକ୍ରମ ଯେ ନାହାନ୍ତି, ଏପରି ନୁହେଁ।

ପଣ୍ଡିତଙ୍କୁ ବିଦାୟ ଦେଲି ଗୋଟିଏ ମାତ୍ର ପ୍ରଶ୍ନ ପଚାରି– ଆପଣ ଏଇ ବର୍ଷଣମୁଖର ଦୃଶ୍ୟ ଦେଖି ମତେ ସ୍ମରଣ କରାଇ ଦିଅନ୍ତୁ କୌଣସି ସଂସ୍କୃତ କବିଙ୍କୁ ଯେ ଏଭଳି ଦୃଶ୍ୟକୁ ଅନବଦ୍ୟ ଭାଷା ଓ ଭାବରେ ପ୍ରକାଶ କରିଛନ୍ତି। ଗୋଟିଏ ଦୃଷ୍ଟାନ୍ତ ଶୁଣନ୍ତୁ।

ହେଲା ନାହିଁ।

ଶୃଙ୍ଗାରରସର ଚିଠି ଅବଶ୍ୟ ମୁଁ ଏଯାଏ ପାଇନାହିଁ। ପଣ୍ଡିତଙ୍କର ବେଦନା ଥିଲା ପ୍ରୌଢ଼ିଯୁକ୍ତ କରୁଣ କାକୁତିପୂର୍ଣ୍ଣ। ମାତ୍ର ମୁଁ ଚାହୁଁଥିଲି ଟିକିଏ ଆଦିରସର ଝରଣା, ଝରଣା ନ ହେଉ ପଛକେ, ବିନ୍ଦୁଏ ହେଉ...

ଆଜି ଏ ରଚନା ଲେଖିଲାବେଳେ ହଠାତ୍ ଶୋଭାମଂଜୁଳାର କଥା ମନେପଡ଼ିଲା। ମୋ ଡାଏରୀର ଗୋଟିଏ ପୃଷ୍ଠାରେ ତା'ର ଜୀବନର ଟିକିଏ ବଉଦ-ଖୋଲା ରଶ୍ମିର ଦୀପ୍ତି ଅଛି ନିଶ୍ଚୟ। ତା'ର କଥା, ତା'ର ମୋ ପାଖକୁ ଚିଠି ଆଦି ରସମୟ କରିପାରିବ କି ?

ସେଇ ଅପରାହ୍ଣ ତିନିଟାବେଳେ। ସୂର୍ଯ୍ୟର ଅସ୍ତଆଭା ଏଯାଏ ଗବାକ୍ଷଧାରେ ରଞ୍ଜିତ ହୋଇନାହିଁ। ତେବେ ଆଷାଢ଼ର ଅପରାହ୍ଣରେ ଯେତିକି ଅସ୍ତଭାବ ରହିବାର କଥା, ସେତିକି ରହିଛି। ଶୋଭାମଞ୍ଜୁଳା ମୋ ପାଖକୁ ଲେଖିଛି ଖଣ୍ଡିଏ ଚିଠି। ଟେବୁଲ ଉପରେ ଗଦାହୋଇଥିବା ପାତ୍ରମାଳା ଭିତରୁ ମୁଁ ତାହା ଟାଣି ଆଣିଥିଲି।

ସେ ଲେଖିଛନ୍ତି:

"ଆପଣଙ୍କୁ ସେଦିନ ସାକ୍ଷାତ କରି କହିଥିଲି ମୁଁ ହିନ୍ଦୀରେ କୋବିଦ, ଆଉ ମୁଁ ଅବିବାହିତା, ମୋ ଘରେ ବାପା-ମାଆ ଆଉ ଛୋଟ ଛୋଟ ଭାଇଭଉଣୀ ହୋଇ ପନ୍ଦର ଜଣଙ୍କ ସଂସାର।

ବାପା ରୋଗାକ୍ରାନ୍ତ। ବୁଝୁଥିବେ, ମୁଁ ଏକମାତ୍ର ପ୍ରାଣୀ ଯେ କି ଏମାନଙ୍କ ମୁହଁରେ ଆହାର ଦେବ। ତେଣୁ ମତେ ଚାକିରି କରିବାକୁ ହିଁ ହେବ। ଆପଣ କହିଥିଲେ ସୁବିଚାର କରିବେ। ମାତ୍ର ବିଚାର କରୁ କରୁ ଆପଣ ଛ'ମାସ ବିତାଇଦେଲେ।

"ମୁଁ ପ୍ରତିଜ୍ଞା କରିଛି ଆପଣଙ୍କ ସର୍କଲରେ ଚାକିରି ନ ପାଇଲେ ବିବାହ କରିବି ନାହିଁ, ବିବାହ ନ କଲେ ବ୍ରାହ୍ମଣକୁଳ, ବଂଶରକ୍ଷା ହେବ ନାହିଁ। ବଂଶରକ୍ଷା ନହେଲେ ପିତୃପୁରୁଷ ଜଳ ଗ୍ରହଣ କରିବେ ନାହିଁ। ଶେଷରେ ସବୁ ଦୋଷର ଦୋଷୀ ଭାବରେ ଆପଣ ରହିଯିବେ ଚିରକାଳକୁ ଶୋଭାମଞ୍ଜୁଳା ପାଖରେ......ମହା ଅପରାଧୀ..."

ମୁଁ ଚିଠିଟି ଧରି ନିର୍ବାକ୍ ବିସ୍ମୟରେ ରହିଗଲି କେତେ ମୁହୂର୍ତ୍ତ। ହଠାତ୍ ଟେଲିଫୋନ୍ ବାଜିଲା। ମୋର ମୋହ ଭଙ୍ଗ ହେଲା। ମୁଁ ଜାଣେ ଶତକଡ଼ା ଅନେଶୋତ ଟେଲିଫୋନ୍ କାହିଁକି ବାଜେ। ଶୁଣିଲି, ପୁଣି ରିସିଭର୍ ରଖିଦେଲି। କେବଳ କହିଲି... ମୁଁ ଚେଷ୍ଟା କରିବି। ମୁଁ ଜାଣେ, ଆରପଟର ମହାମାନ୍ୟ ବ୍ୟକ୍ତିଙ୍କର ଧମକ ବା ଆଦେଶକୁ ମୁଁ, କଦାପି କାର୍ଯ୍ୟକାରୀ କରିବି ନାହିଁ। କାରଣ ତାହା ଠିକ୍ ବାଟରେ ଆସୁନାହିଁ; ତେଣୁ ମାଭୈଃ......

ମନେପଡ଼ିଲା ଏଇ ଶୋଭାମଞ୍ଜୁଳାର କଥା। ହଁ, ଥରେ ସେ ଆସିଥିଲା ମୋ ପାଖକୁ। ଦେଖିବାକୁ ସୁନ୍ଦରୀ; ମାନେ ଉଜ୍ଜ୍ୱଳବତୀ ଉଭୟ କଥାରେ ଓ ରୂପରେ। ଗୋଟାଏ ପ୍ରଖର ଆତ୍ମବିଶ୍ୱାସ ତା'ର ଦେହ ମନରେ କ୍ରୀଡ଼ା କରୁଥିବାର ମୁଁ ଦେଖୁଥିଲି। ଏ ଝିଅ ଯେ ନମ୍ର ନରମ ନୁହେଁ ତାହା ବି ଜାଣିପାରିଥିଲି।

ହିନ୍ଦୀର କୋବିଦ। ଶୋଭାମଞ୍ଜୁଳାକୁ ପଚାରିଥିଲି– "ତୁମେ ଜାଣ କି କେଉଁ ସ୍କୁଲରେ ହିନ୍ଦୀ ଶିକ୍ଷକ ଚାକିରି ଖାଲି ଅଛି ?

ସେ ଖବର ସଂଗ୍ରହ କରି ଆସିଛି। ତେଣୁ ଦୃପ୍ତ ଠାଣିରେ କହିଲା– "କାହିଁକି, ମଧୁପୁରରେ ! ପାଖାପାଖି ତ ଆମ ଗାଁ।"

ମୁଁ ଉତ୍ତର ଦେଲି– "ସେ ତ ପୁରୁଷ ପିଲାଙ୍କ ସ୍କୁଲ !"

ଶୋଭାର ସେଇ ଶାଣିତ ବଚନ "ସେଇଠୁ କ'ଣ ହେଲା ? ଆପଣ ଭାବୁଛନ୍ତି ମୁଁ ସେଠି ଅଚଳନ୍ତି ଦୋଅଣୀ ଭଳି ଅଚଳ ହୋଇଯିବି ?"

ଅନ୍ନଦାତା ପାଖରେ ପ୍ରାର୍ଥୀ ରମଣୀର ଏ କଟୁ ଓ ଶ୍ଳେଷ ବଚନ କଅଣ ଉପଭୋଗ୍ୟ ବୋଲି ଆପଣ ଭାବୁଛନ୍ତି ? ମୁଁ କିନ୍ତୁ ଉପଭୋଗ କରିଥିଲି। କାରଣ ଏହା ଔଦ୍ଧତ୍ୟ ନୁହେଁ, ଏଥିରେ ନାହିଁ ଅଭଦ୍ରତା; ଯାହା ଏଥିରେ ଅଛି ତାହା ହେଉଛି ଆତ୍ମ ପ୍ରତିଷ୍ଠାର ଦୃଢ଼ ଆବେଦନ।

ମୁଁ କହିଲି "ନା, ତାହା ନୁହେଁ। ଜଣେ ଷୋଳ ସତର ବର୍ଷର ଝିଅ ଏକୁଟିଆ ବିଚରଣ କରିବ ପୁରୁଷ ଶିକ୍ଷକ ଓ ପୁଅପିଲାଙ୍କ ମେଳରେ। ଅନେକ ଅସୁବିଧା ଅଛି। ତା'ଛଡ଼ା ଡିପାର୍ଟମେଣ୍ଟର ତ ପୁଣି ଗୋଟାଏ ଦାୟିତ୍ୱ ଅଛି ? ଭବିଷ୍ୟତରେ କିଛି ହାନିଲାଭ ଘଟିଲେ ମୋର ଉପର ହାକିମମାନେ ମତେ ତ ପୁଣି ଦାୟୀ କରିବେ ତୁମକୁ ପୁଅପିଲାଙ୍କ ସ୍କୁଲରେ ନିଯୁକ୍ତି ଦେଇଥିବାରୁ। ବରଂ ତୁମେ ଇନ୍‌ସପେକ୍‌ଟରଙ୍କୁ ଦେଖା କରି ଆବେଦନ କର। ସେ ତୁମକୁ ବାଳିକା ସ୍କୁଲରେ ରଖିଦେବେ।"

ଭାବିଥିଲି ଏ ପ୍ରସଙ୍ଗ ଏତିକିରେ ତୁଟିଯିବ, ଶୋଭାମଞ୍ଜୁଳା ଭବିଷ୍ୟତର 'ହାନିଲାଭ' କଥା ଚିନ୍ତା କରି ମୋ ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିବ ଓ ମୋ ଠାରୁ ବିଦାୟ ନେବ।

କିନ୍ତୁ ମୋର ଭାବିବା ଭୁଲ, କାରଣ ଶୋଭାଠାରୁ ଗୁଡ଼ାଏ ଦର୍ଶନ ଓ ସେ ଦର୍ଶନ ବ୍ୟାଖ୍ୟାନ ଭିତରେ ପୁରୁଷଜାତିକୁ ଧିକ୍‌କାର ଦେବାର ଗୋଟାଏ ବିପୁଳ ଉଲ୍ଲାସ ତାହାଠାରୁ ନ ଦେଖି ମୁଁ ବା କିପରି ଏ ଇଣ୍ଟରଭିଉରୁ ନିଷ୍କୃତି ପାଆନ୍ତି ?

ଶୋଭା ନଦୀ ବେଳା ଉପର ଗୁଡ଼କଙ୍କ ଭଳି କଣ୍ଟକିତ ହୋଇ ଉଠିଲା ଏବଂ କର୍କଶ ସ୍ୱରରେ କହିଲା–

"ଆପଣ କଅଣ ଭାବୁଛନ୍ତି ମୁଁ ଅଳ୍ପ ବୟସର ଝିଅ ବୋଲି ମୋର ସଂଯମ ନାହିଁ। ଆପଣମାନଙ୍କର ଚିନ୍ତାଧାରା ସବୁବେଳେ ଏମିତି ଗଡ଼ିଆସିଛି। ନାରୀକୁ ଦେଖିବାମାତ୍ରେ ସେ ଯେ ଅବଳା, ଦୁର୍ବଳା, ଶକ୍ତିହୀନା; ପୁରୁଷ ମେଳରେ ରହିବାମାତ୍ରେ ତା'ର ଯେ ନିଶ୍ଚିତ ଦୁର୍ଘଟଣା ଘଟିବ ଜୀବନରେ– ଏଇଆ ଧରିନେଇ ସେ ନାରୀର ଯୋଗ୍ୟତା ଥିଲେ ବି, ତା'ର ସାହସ ଥିଲେ ବି, ଆପଣମାନେ ନିଜ ଆଡୁ ନିଜେ ଭୟଙ୍କର ସଙ୍କୁଚିତ ହୋଇଯାଇ ସୁବିଚାର କରନ୍ତି ନାହିଁ। ମୁଁ କହୁଛି ଯେ ମୋ ଘର ପାଖ, ପଖାଳ ଖାଇ ମୁଁ ସ୍କୁଲକୁ ଆଦରିନେବି। ମୋ ଗାଁ ସ୍କୁଲ, କହିଲେ ବି ଦିଓଳି ପଢ଼େଇ ଆସିବି। ମୋର ଦରିଦ୍ର ପରିବାର। ମୁଁ ଚାହେଁ ସାହାଯ୍ୟ-ସହାନୁଭୂତି, ଏସବୁ ଆପଣ ନ ବୁଝି କେବଳ ପୁରୁଷ ମେଳରେ ଦୁର୍ଘଟଣା ଘଟିବ ଏଇ ଆଶଙ୍କାରେ ମତେ ଚାକିରି ଦେବାକୁ ଅନିଚ୍ଛୁକ। ହଉ, ଆଉ କଅଣ କରିବି, ସବୁ ମୋର ଭାଗ୍ୟ। ନମସ୍କାର।"

ଝିଅଟି ଉଠି ଚାଲିଗଲା...

ସେଇ ଝିଅଟିର ଏଇ ଚିଠି, ଯଦିଓ ମୁଁ ସେ ଗଲାବେଳକୁ ତା' ପଛଆଡ଼େ ଟିକିଏ ଦ୍ୱିଧା ଜଡ଼ିତ ଦୁର୍ବଳ କଣ୍ଠସ୍ୱରରେ କହିଦେଇଥିଲି 'ମୁଁ ସୁବିଚାର କରି ଜଣାଇଦେବି।'

ମନରେ ଦୁଃଖ ଆସିଥିଲା। ବିଚାରି ସ୍ପଷ୍ଟବାଦିନୀ। ଜୀବନର ଜବା କୁସୁମ ଫୁଟିଆସୁଥିବା ବେଳେ ସେ ହୁଏତ ଅନଶନ କରିପାରିଛି, ଏଇଭଳି କଥା ଯଦି ଆଉ କେଉଁ ପରିଦର୍ଶକଙ୍କୁ ସେ କହିଥାନ୍ତା, ତେବେ ସେ ଖୁବ୍ ବିରକ୍ତ ହୋଇଥାନ୍ତେ।

ଶୋଭାମଞ୍ଜୁଳାକୁ ମଧୁପୁର ହାଇସ୍କୁଲରେ ହିନ୍ଦୀ ଶିକ୍ଷୟିତ୍ରୀ ଭାବରେ ନିଯୁକ୍ତି ନେଇ ଅର୍ଡର ଦେଇଦେଲି।

କିନ୍ତୁ ଭବିତବ୍ୟ ତା' ଅନ୍ୟ ବାଟରେ ଗଲା। ଦପ୍ତରର ଅଭିଜ୍ଞ କିରାଣି ମୋ ହାତଲେଖା ଆଦେଶକୁ

ଟାଇପ୍ କରବା ପୂର୍ବରୁ ସଂସ୍କାର-ଜନିତ ଭାବରାଜିରେ ଆନ୍ଦୋଳିତ ହୋଇ ଗୋଟିଏ ସୁନ୍ଦରୀ ଷୋଡ଼ଶବର୍ଷୀୟା ଝିଅକୁ ପୁରୁଷ ମେଳରେ ନ ରଖିବାକୁ ସିଦ୍ଧାନ୍ତ କରି ମୋ ପାଖକୁ ଫାଇଲ୍ ଧରି ଫେରିଆସିଲେ।

ଏହାକୁ କହନ୍ତି ଭବିତବ୍ୟତା...

ଗୋଟାଏ କଲମ ଲେଖିଲା ନିଯୁକ୍ତି, ସେ କଲମ ଅବଶ୍ୟ ଅକାଟ୍ୟ; କିନ୍ତୁ ଯେତେ ଅକାଟ୍ୟ ହେଉ ପଛକେ ତାହାଠାରୁ ଆହୁରି ବଳଶାଳୀ ଶକ୍ତି ଅଛି ବହୁ ଊର୍ଦ୍ଧ୍ୱରେ...ଯାହା ମଙ୍ଗଳ-ବିଧାୟକ। ହୁଏତ ଶୋଭାମଞ୍ଜୁଳା ପାଇଁ ତାହାହିଁ ଅଦୃଷ୍ଟ ଆଗରୁ ସ୍ଥିର କରିଦେଇଥିଲା।

ଶୋଭାର ନିଯୁକ୍ତି ଅର୍ଡରକୁ ମୁଁ ନିଜେ ନାଲି କାଳିରେ କାଟିଦେଇ ଲେଖିଲି–

ରାଜଧାନୀର ହିନ୍ଦୀ ଟ୍ରେନିଂ କଲେଜର ଅଧ୍ୟକ୍ଷ ପ୍ରସାଦ୍‌ଜୀଙ୍କ ପାଖେ ଦଶମାସିଆ ଟ୍ରେନିଂ ନେବା ପରେ ଶୋଭାମଞ୍ଜୁଳାଙ୍କ ଦରଖାସ୍ତ ବିଚାର କରାଯିବ। ତାଙ୍କୁ ଜଣାଇ ଦିଆଯାଇଛି ଯେ ତାଙ୍କର କୋବିଦ ଯୋଗ୍ୟତା ଥିଲେ ସୁଦ୍ଧା ତାଙ୍କୁ ହିନ୍ଦୀରେ ଆହୁରି ଟ୍ରେନିଂ ନେବାକୁ ହେବ।

ଅଭିଜ୍ଞ କିରାଣି ପ୍ରଚକ୍ଷୁ ତଳେ ଏ ନୂତନ ଆଦେଶକୁ ଦେଖି ସ୍ମିତହାସ୍ୟ କଲେ। ତାଙ୍କର ଜିତାପଟ ହେଲା ଏବଂ ଜଣେ ବ୍ରାହ୍ମଣ-କୁଳାଙ୍ଗନାକୁ ସେ ଯେ ସାମୟିକ ରକ୍ଷା କରିପାରିଛନ୍ତି, ଏଥିପାଇଁ ସେ ସ୍ୱସ୍ତି ଭାବରେ ପ୍ରଚକ୍ଷୁକୁ ସଫା କଲେ ନିଜ କୁଞ୍ଚ କାନିରେ; ବୋଧହୁଏ ଭାବିଲେ ଚକ ଗଡ଼ିଗଲେ ବାରହାତ, କେତେ ଦୂର ପୁଣି କିଏ କହିବ?



# ଦୁଷ୍ମନ୍ତ ଓ ଦୁର୍ବାସା

'ନା, ମୁଁ ଯିବିନି।'

'ଦେଖ, ତୁମେ ରାଗନି। କାହା ଭାଗ୍ୟରେ ଥାଏ ? ରାଜ୍ୟପାଳ ଡାକିଛନ୍ତି– ଯାଅ, ମୋ କଥା ଶୁଣ।'

'ରାଜ୍ୟପାଳ ତାହାହେଲେ ଲୁଗା ପଞ୍ଜାବୀ ପଠାଇଦେଲେନି ? ମୁଁ ଅଭେକା, ମୋର ଭେକ କାହିଁ ଯେ ମୁଁ ରାଜଦରବାରରେ ଛିଡ଼ାହେବି ? ମାଳିନୀ, ତୁମେ ଏସବୁ କୁହ ନାହିଁ। ମୋ ପ୍ରାଣ କାନ୍ଦିଉଠୁଛି। ଏଇ ଭଲ, ଏଇ ଚିରାଲୁଗା, ଏଇ କାନ୍ଧକଟା କାମିଜି ଆଉ ଘସରା ପାତିଆ ଚପଲ। ଏଇମାନଙ୍କୁ ପିନ୍ଧି ମୁଁ ଭଙ୍ଗା ସାଇକେଲରେ ଦଉଡ଼ିଯାଏ କଳାଶ୍ରୀ ଥିଏଟର ଆଡ଼େ। ସାଇକେଲଟାକୁ ଗଡ଼େଇଦିଏ ଥିଏଟର ପାଖ ବାଲି ଉପରେ। ଥିଏଟର ପୋଷାକ ଚଢ଼େଇନିଏ। ମୋ ଧୋତି କାମିଜ୍‌କୁ ମକଚାମକଚି କରି ଗ୍ରିନ୍‌ରୁମ୍‌ର ଗୋଟାଏ କଣକୁ ଫୋପାଡ଼ି ଦିଏ। ମୁହଁରେ ରଙ୍ଗ ମାରି ବିଦୂଷକ ସାଜି ଆଇନା ପାଖରୁ ଉଠିଆସି ଦେଖାଦିଏ ଦର୍ଶକଙ୍କୁ। ସେମାନେ ତାଳି ମାରନ୍ତି, ମାତ୍ର ଭାବନ୍ତି ନାହିଁ ଯେ ବସନ୍ତ ମାହାନ୍ତି ଘରେ ଗୋଟାଏ ଓଳି ଚୁଲି ଜଳେନି, ତା'ର ଦୁଇଖଣ୍ଡ ଲୁଗାରୁ ତିନି ଖଣ୍ଡ ନାହିଁ, ତା' ପିଲାଏ ପଢୁନାହାଁନ୍ତି, ସେଁତେରା ମଇଳା ହୋଇ ପିଣ୍ଡାରେ ଗଡ଼ି ଗଡ଼ି ବାପାର ବିଦୂଷକ ପୋଷାକକୁ ଚାହିଁଥାନ୍ତି। ଥାଉ ମାଳିନୀ! ମୁଁ କଳାକାର ନୁହେଁ, ମୁଁ କଳା ଖଣ୍ଡେ କାଠ। ସେ କାଠଟା ଉପରେ ତମେ ଆଉ କୁରାଢ଼ି ଚୋଟ ମାରନି।'

ଓଡ଼ିଶାର ବିଶିଷ୍ଟ ହାସ୍ୟରସ-ପରିବେଷଣକାରୀ ମଞ୍ଚର ମଥା ମଣି ବସନ୍ତ ମାହାନ୍ତି ଏସବୁ କହୁ କହୁ କାନ୍ଦିପକାଇଲେ। ମାଳିନୀ ତାଙ୍କ ସ୍ତ୍ରୀ; ତାଙ୍କ ଆଖିରୁ ଧାର ଧାର ଲୁହ ଗଡ଼ିଲା। ପିଲା ଦୁଇଟି ଚାହିଁ ରହିଲେ। ଭାବିଲେ ବାପା ମାଆ ବାଡ଼ିଆବାଡ଼ି ହୋଇ ଶେଷରେ କାନ୍ଦୁଛନ୍ତି। କିନ୍ତୁ ଏଥର ତ କେହି କଂସା ତାଟିଆ ଝଣ୍ ଝଣ୍ କରି କାନ୍ଥ ଉପରକୁ ପକାଇନାହାନ୍ତି। ଶିଳୁପୁଆଟାକୁ ହାତ ଦୁଇଟାରେ ଟେକି ବାପା ତ ବୋଉ ମୁଣ୍ଡକୁ ଦେଖାଇ, 'ତତେ ମାରିଦେବି, ତୋ ମୁଣ୍ଡକୁ ଛିନଛତ୍ର କରିଦେବି, ତୋ ରକ୍ତ ପିଇବି'କହି ଚିତ୍କାର କରୁନାହାଁନ୍ତି, କି ବୋଉ ନିଜ ମୁଣ୍ଡବାଳକୁ ଦାନ୍ତରେ ଟାଣି ଓଟାରି ଛିଣ୍ଡେଇ ଘରଯାକ ନାଚି ଯାଇନାହାନ୍ତି। ତେବେ ଏ କାନ୍ଦଣା କାହିଁକି ?

ବଡ଼ପୁଅ ମୋହନର ବୟସ ହୋଇଛି। ସେ ଏଇସବୁ କଥା ଭାବୁଚି। ଏଇ ନୀରବ କାନ୍ଦଣାର ଅର୍ଥ ସେ ବୁଝିପାରୁନି। ଝଡ଼ ପରେ ଆକାଶ ଫାଟି ବର୍ଷା ହୁଏ। ଏଠି ଝଡ଼ ନାହିଁ, ଉତ୍ତାଳ ବାୟୁ ବହିନି, ଅଥଚ ବର୍ଷା ବର୍ଷୁଛି ଝର ଝର। ମାଳିନୀ ବୁଝାଇଲେ– "ତମେ ବସ, ମୁଁ କାନ୍ଧଫଟା କାମିଜଟାକୁ ସିଲେଇ କରିଦଉଛି। ଦିଥର ଟାକ୍ ମାରିଦେଲେ ଛପିଯିବ। ତମେ ତ ଯିବ ପାଞ୍ଚଟା ବେଳକୁ। ଅନ୍ଧାର ହୋଇ ଆସୁଥିବ। ଆସ, ଶୁଣ, ଗୋଟାଏ କଣପଟିଆ ବସିବ। ଯେଉଁମାନେ ଭଲ ପୋଷାକ ପିନ୍ଧି ଯାଇଥିବେ ତାଙ୍କ ଉପରେ ନଜର ରହିବ ରାଜ୍ୟପାଳଙ୍କର। ତମେ ଏମିତି ବସିବ ଯେ କେହି ତୁମକୁ ସହଜେ ଠଉରେଇ

ପାରିବେନି। ମୋର କଅଣ ମନ କି, ତମ ଜୀବନରେ ତମେ ରାଜଭବନ ଦେଖିପାରି ନଥାନ୍ତ। ତୁମେ କିଏ, ଏ ରାଜଦରବାର କିଏ? ଗୋଟାଏ ସୁଯୋଗ। ତମେ ଥିଏଟରରେ ବହୁତ ଦରବାର ସଜାଉଛ, ହେଲେ ସେ ଗୁଡ଼ାକ ସବୁ ନକଲି। ଅସଲ ରାଜଭବନରେ ଟିକିଏ ପାଦ ଦେଇ ଆସ। ମୋ ରାଣ ରହିଲା, ମନ ଖରାପ କରନି। ଲୁଗାଟାକୁ ମୁଁ ଆଉଥରେ ପଖାଳି ଦେଉଛି। ନିଆଁ ଲଗା ବରଷା କଅଣ ଛାଡୁଛି? ନ ହଲେ ଚୁଲିମୁଣ୍ଡ ଗରମ ଥାନରେ ଟିକିଏ ସେକି ଦେବି।"

ବସନ୍ତ ମାହାନ୍ତି ମାଳିନୀର କଥାରେ ଏତେ ଦୁଃଖରେ ବି ଟିକିଏ ହସିଦେଲେ। କହିଲେ– "ମାଳିନୀ, ଛେଳିକୁ ବଳିପକାଇବା ଭଳି ମତେ ଲାଗୁଛି। କଅଣ ଦରକାର କହିଲ? ମୋ ସାଙ୍ଗେ ରାଜ୍ୟପାଳ କଥା କହିବେ ନାହିଁ, ମୁଁ ଜାଣେ। କାରଣ ବହୁ ବି.ଏ, ଏମ୍.ଏ. କଳାକାର ନିମନ୍ତ୍ରିତ ହୋଇଥିବେ। ତା' ଛଡ଼ା ମହିଳା ଅଭିନେତ୍ରୀ ଥିବେ। ସେମାନେ ଆଗସାରିରେ ବସିଥିବେ। ତାଙ୍କ ସହିତ କଥାବାର୍ତ୍ତା କରିବା ପାଇଁ କାହାର ଆନନ୍ଦ ନ ହେବ? ମୁଁ ସେକଥା ଭାବୁନି ମାଳିନୀ, କଅଣ ଦରକାର ଆମର? ପୁଣି ଖର୍ଚ୍ଚ କଥା ଭାବ। ବସ୍ ଖର୍ଚ୍ଚ ଅଛି। ହେଲା, ଏବେ କାହା ପଛରେ ସାଇକେଲ୍‌ରେ ବସି ଚାଲିଯିବି। ଅବଶ୍ୟ ଥିଏଟର୍‌ରେ ରାଜା ଦୁଷ୍ମନ୍ତ ବଣକୁ ଶିକାର କରିବାକୁ ଗଲାବେଳେ ମୁଁ ରଥ ଉପର ପଛ କାଠ ଉପରେ ଛିଡ଼ାହୋଇ ଯାଏ। ସେ ଅଭ୍ୟାସ ମୋର ଅଛି। ତାଙ୍କ ସାଙ୍ଗେ ଯିବାକୁ ପଡ଼େ; କାରଣ ନୃପତିଙ୍କର ଚାକିରି କରେ, ସେ ମୋର ଅନ୍ନଦାତା। ତା' ଛଡ଼ା ଏଣେ ଶିକାର ହେଉଥିବ ବା ମୃଗ ଉପରକୁ ରାଜା ଶର ପକାଇବାକୁ ଧନୁ ଉଞ୍ଚେଇ ଥିବେ, ମୁଁ ପଛ ଆଡୁ କଅଣ ଗୋଟାଏ ରସରସିଆ କଥା କହିଦେବି ଯେ ଦୁଷ୍ମନ୍ତ ହୋ ହୋ ହୋଇ ହସି ଉଠିବାରେ ତାଙ୍କ ବାଣ ଖସିଯାଏ ଧନୁରୁ; ଲକ୍ଷ୍ୟ ଭେଦେ ନାହିଁ, ମୃଗଟା ପଳାଇଯାଏ। ସେ ହସି ହସି ବେଦମ୍ ହୋଇଯାଆନ୍ତି। ଏଇ ଭଲ, ଏଇ ନକଲି ହସ, ନକଲି ରାଜା, ନକଲି ଦରବାର ଆଉ ନକଲି ବସନ୍ତ ମାହାନ୍ତି।

ଅସଲି ବସନ୍ତ ମାହାନ୍ତି ମରି ମରି ଦଣ୍ଡେ କ୍ଷଣେ ବଞ୍ଚୁଛି। ତାକୁ ଆଉ ରାଜଭବନକୁ ତଡ଼ନି ମାଳିନୀ। ଏଣେ ଯଦି ରାଜଭବନରୁ ଫେରୁ ଫେରୁ ଡେରି ହୋଇଯିବ, କିଏ ଜାଣେ କେତେବେଳଯାଏ ଅଟକ ପଡ଼ିଯିବି, ତେବେ କଳାଶ୍ରୀ ଥିଏଟର୍‌ର ମ୍ୟାନେଜର୍ ଭାବିନେବେ ଯେ ଓଡ଼ିଶାର ବିଶିଷ୍ଟ ହାସ୍ୟରସିକ ବସନ୍ତ ମାହାନ୍ତି ଯାଇଥିଲେ ରାଜଭବନକୁ, ତାଙ୍କର ଫେରିବାକୁ ଡେରିହେଲା, ଅତଏବ ନାଟକଟାକୁ ଘଣ୍ଟାଏ ପଛେଇଦିଅ। ନା, ତା' ହେବ ନାହିଁ ମାଳିନୀ, କଣ୍ଟାଏ କଣ୍ଟାଏ ଦୁଷ୍ମନ୍ତ ଷ୍ଟେଜ୍ ଉପରକୁ ଆସିବେ, କଣ୍ଟାଏ କଣ୍ଟାଏ ବସନ୍ତ ମାହାନ୍ତି ଚଢ଼ିବେ ରଥର ଶେଷ କାଠ ଉପରେ। ଏତକ ନ ହେଲେ ସେ ଦିନକର ମଜୁରି ଯାହା ତ କଟିବ କଟିବ, ଚାକିରିଟା ରହିବ କି ନାହିଁ ସନ୍ଦେହ। ତେଣୁ ମୋ ମନା ମାନ, ବସନ୍ତ ମାହାନ୍ତି ଯେମିତି ଅଛନ୍ତି ସେମିତି ଥାନ୍ତୁ। ମାଳିନୀ ବ୍ଲାଉଜ୍ ଖଣ୍ଡେ ବିନା ଅଧା ଲଙ୍ଗଳା ହୋଇ ଘର ଭିତରେ ବୁଲୁଥାନ୍ତୁ, ପିଲାଗୁଡ଼ାକ ଏଇ ବୟସରୁ ମନମରା ହୋଇଯାଆନ୍ତୁ, ଏଇ ଏମିତି ଥାଉ, ରାଜଭବନ ଦୂରରେ ରହୁ– ମୁଁ ଯିବିନି ମାଳିନୀ, ମୁଁ ଯିବିନି। ଆମର ଜୀବନ ପୋକମାଛିର ଜୀବନ।

ପୁଣି ଧାରେ ଲୁହ। ପୁଣି ରେଖାଏ ହସ ଧରି ମାଳିନୀ ସ୍ୱାମୀଙ୍କ ଆଖିଲୁହ ପୋଛି ଦେଲେ– "ହଉ

ନ ଯିବ ତ ଏତେ ଚନ୍ତା କାହିଁକି ? ତୁମେ ଖଣ୍ଡେ ପଖାଳ ଖାଇ ଶୋଇପଡ଼; ଉଠିଲେ ପୁଣି କଥାବାର୍ତ୍ତା। ଲୋକେ କହନ୍ତି, ଯଦି ମନ ଖରାପ ଥାଏ ତେବେ ଶୋଇପଡ଼ିବା ଭଲ; ନିଦରୁ ଉଠିଲେ ସବୁ ଠିକ୍ ହୋଇଯାଏ। ଚାଲ ଖାଇବ...”

( ଦୁଇ )

ରାଜଭବନଟି ଗୋଟିଏ ପୁରାଣପ୍ରସିଦ୍ଧ ଐତିହାସିକ ଶୈଳ ଉପରେ ନିର୍ମିତ ହୋଇଛି। ଭବନଟି ଆଗରେ ‘ରାଜ’ ଶବ୍ଦ ଥିବାରୁ ତାହାର ଅବସ୍ଥିତିଟା ଖୁବ୍ ଉଚ୍ଚରେ ରହିଛି। ମନେହୁଏ ଯିମିତି ଏ ଭବନଟିର ସଂଯୋଗ ଆକାଶ ସଙ୍ଗେ ଯେତେ, ମାଟିର ଧରଣୀ ସହିତ ସେତେ ନୁହେଁ।

ଅତି ଉତ୍ତୁଙ୍ଗରେ ଥିବାରୁ ରାଜଭବନର ଶ୍ରୀ ସ୍ୱର୍ଗଶ୍ରୀରୁ କିଛି କମ୍ ନୁହେଁ। ଖରାପଡ଼ିଲେ ଆଗ ଆଭା ଝଲସି ଦିଏ ରାଜଭବନର ମସ୍ତକକୁ, ବର୍ଷା ଝରିଲେ ସେ ଶିର ଆଗ ପ୍ଲାବିତ ହୁଏ ବର୍ଷାଧାରରେ। ଶୀତ ଆସିଲେ କରୁଣ ମୂର୍ତ୍ତି ଧରେ ରାଜଭବନ। ବସନ୍ତ ଆଗମନରେ ତା’ର ଚାରିପାଖରେ ବନାନୀ ଧରେ ଅପୂର୍ବ ଆଭା।

ଯେଉଁଠି ପ୍ରଥମ ସିପାହି ଛିଡ଼ା ହୋଇଥାଏ ସେଇଠୁ ଯେଉଁ ରମ୍ୟ ରାସ୍ତାଟି ରାଜଭବନର ଦ୍ୱାର ଯାଏ ଲମ୍ବିଯାଇଛି, ସେଥିରେ ଚାଲିଲେ ମନେ ହୁଏ ହିମଗିରି ଆଡ଼କୁ ସେ କି ମହାଯାତ୍ରାର ପଥ ! ଗୋଟିଏ ଗୋଟିଏ ପଦକ୍ଷେପରେ ନିଶ୍ୱାସ ନେଇ ଚଢ଼ିବାକୁ ହୁଏ, ମୋକ୍ଷ ପାଇଁ ଯିମିତି ଚଢ଼ନ୍ତି ବଦ୍ରିନାଥର ଯାତ୍ରୀଦଳ।

ବଦ୍ରିନାଥ ବା ଅମରନାଥରେ ଥାଆନ୍ତି ଶିବ ବିଗ୍ରହ। ଏଠାରେ ସେସବୁ ବିଗ୍ରହ ନଥିବାର କଥା। ରାସ୍ତାର ଦୁଇପାର୍ଶ୍ୱରେ ଶ୍ୟାମଦୁର୍ବାଦଳର ବିସ୍ତୃତ ଆସ୍ତରଣ। ଆଖି ପୁରିଯାଏ ଏଇ ନୀଳ ଶାଢ଼ିର ବହର ଦେଖି। ଉପରେ ଶରତ୍‌ର ଆକାଶ। ନିର୍ମଳ, ସ୍ୱଚ୍ଛ।

ଏଇ ପଥ ଉପରେ ଚାଲୁଥାନ୍ତି ଓଡ଼ିଶାର ବିଶିଷ୍ଟ ହାସ୍ୟରସ ଅଭିନେତା ବସନ୍ତ ମାହାନ୍ତି ଓ କରୁଣକାରୁଣ୍ୟ ଗାମ୍ଭୀର୍ଯ୍ୟ ଭାବର ଅଭିନେତା ପୂର୍ଣ୍ଣ ମିଶ୍ର। ଜଣେ ଡେଙ୍ଗା, ଆଉ ଜଣେ ଗେଡ଼ା। ଦୁହେଁ ଧୋତିଧାରୀ, ଦୁହେଁ କାମିଜଧାରୀ। ଦୁହେଁ ଚପଲଚାଳିତ ପଦରେ ଉଠୁଥାନ୍ତି ଉପରକୁ।

ଯୁଧିଷ୍ଠିର, ଅର୍ଜୁନ ଯାଉଛନ୍ତି ପାଖାପାଖି। ହିମପର୍ବତ ଶିଖରରେ ଏମାନଙ୍କର ଯାତ୍ରାର ଅବସାନ। ସେଠି କଅଣ ଅଛି କେହି ଜାଣନ୍ତି ନାହିଁ– ସ୍ୱର୍ଗଭୂମି ନିଶ୍ଚୟ।

ବସନ୍ତ ମାହାନ୍ତି କହିଲେ– “ପାଦ ସିନା ଉଠୁଛି, ଭାଇ ପୂର୍ଣ୍ଣ, ମନଟା ଉଠୁନି।”

ପୂର୍ଣ୍ଣ କହିଲେ– ପାର୍ଟିଟା ଯେତେବେଳେ ଗଢ଼ାଯାଇଛି ଆଶା ତ ଅଛି, କଥାରେ କଥାରେ ଯଦି ମ୍ୟାନେଜର ପକ୍ଷରୁ କହିଦିଏ ଯେ ସାର୍ କିଛି ଟଙ୍କା ଦରକାର, ଥିଏଟର ଆଉ ଭଲ ଚଳୁନି, ଅଭିନେତାମାନଙ୍କୁ ଦରମା ଦେଇ ହେଉନି, ସେମାନେ ଭୋକ ଉପାସରେ...

“ଛିଃ ଛିଃ ପୂର୍ଣ୍ଣଭାଇ, ଏ କି ପାଗଳାମି। ହଇଏ, ରାଜଭବନ କେଉଁଠୁ ଟଙ୍କା ଦେବ ? ପ୍ରଥମେ ମୋ ମନକୁ ସେଇ କଥା ଆସିଥିଲା, କିନ୍ତୁ ମାଳିନୀ ନାପସନ୍ଦ କଲା। କହିଲା, ଟଙ୍କାଫଙ୍କା ମାଗିବ ନାଇଁ ଲୋକେ ହସିବେ, କହିବେ ମାଗନ୍ତାଗୁଡ଼ାକ।”

"ବୁଝଲ ପୂର୍ଣ୍ଣ ଭାଇ, ଏ ଗୋଟାଏ ସମ୍ମାନ, ରାଜ୍ୟପାଳଙ୍କ ସହିତ ବସିବା ହେଉଛି ସମ୍ମାନ। ସେଇ ସମ୍ମାନ ପାଇଁ ଆମେ ଆଜି ଅଣନିଶ୍ୱାସୀ ହୋଇ ଚଢୁଛୁ ଏ ପାହାଡ଼କୁ। ନ ହେଲେ ଆମର ଯାହା ଅଭ୍ୟାସ କେବଳ ଗ୍ରୀନରୁମ୍‌ରୁ ଷ୍ଟେଜ୍, ଷ୍ଟେଜ୍‌ରୁ ଗ୍ରୀନ୍ ରୁମ୍, ଅଧିକା ହେଲେ ଅଡିଟୋରିଅମ୍‌ଟା। ଆମର ଏତିକି ଚରାଭୂଇଁ, ଅଥଚ ଏଇ ଚରାଭୂଇଁ ଭିତରେ ଆମେ କେତେ ଯେ ଲୁହ ଗଡ଼ାଉ, କେତେ ଯେ ପ୍ରସୂ..."

—ଆପଣଙ୍କ ନାଁ ବସନ୍ତ ମାହାନ୍ତି ?

—ଆପଣଙ୍କ ନା ପୂର୍ଣ୍ଣ ମିଶ୍ର ?

—ଆସନ୍ତୁ...

ପାଛୋଟି ନେଲେ ଏ ଡି କମ୍। ବିରାଟ ହଲ୍, ରକ୍ତବର୍ଣ୍ଣର ଗାଲିଚା, ଅଶ୍ୱକ୍ଷୁରାସମ ଆକାରରେ ଗଦିପକା ଚେୟାର, ଉପରେ ଆଲୋକ ଝାଡ଼ର ଝଲରା ବୈଦ୍ୟୁତିକ ପଂଖାମାନ। ଗବାକ୍ଷଗୁଡ଼ିକ ଉପରକୁ ବାହାରୁ ମାଡ଼ିଆସିଛି ଲତା ପୁଷ୍ପର ଶାଖା ଓ ପତ୍ର। ଆକାଶଟା ହାତଛୁଆଁ ଭଳି ଝରକା ନିକଟରେ ଉଙ୍କିମାରି କ'ଣ ଦେଖୁଛି। ଉର୍ଦ୍ଦିପରା ଖାନସମା ଓ ଚପରାଶୀ କଇଁଚ ବେକ କାଢ଼ିଲାଭଳି ଦ୍ୱାରବନ୍ଧ ପାଖେ ମୁହଁ ଦେଖାଇଛନ୍ତି।

ଯେ ଯାହା ଆସନରେ ବସିଲେ। କେଉଁଟା ରାଜ୍ୟପାଳଙ୍କ ଆସନ ବୁଝିବା ମୁସ୍କିଲ୍, ତେବେ ଅନୁମାନ କରି ଦୁଇ ତିନିଜଣ କଳାକାର ସ୍ଥାନ ନେଲେ ସେଇଠି, ଯେଉଁଠି ଶତକରା ଅନେଶୋତ ଭାଗ ଚାନ୍‌ସ ଅଛି ରାଜ୍ୟପାଳଙ୍କ ସହିତ ସେମାନେ ବସିଯିବେ।

ବସନ୍ତ ମାହାନ୍ତି ଓ ପୂର୍ଣ୍ଣ ମିଶ୍ର ବଡ଼ ସଂକୁଚିତ ଭାବରେ ବସିଲେ ଗୋଟିଏ କଣରେ। ଚିରା ଲୁଗା ଓ କାନ୍ଧଫଟା କାମିଜକୁ ଲୁଚାଇବାର ଉପାୟ ନାହିଁ। ମୂର୍ଖ ମାଳିନୀ, ମାଇପିବୁଦ୍ଧିରେ କହିଥିଲା, ଅନ୍ଧାର ହୋଇଥିବ, ସବୁ ଚିରା ଲୁଚିଯିବ, ସବୁ ବିକୃତି ଯୋଡ଼ି ହୋଇଯିବ। ଏବେ ହେଲା କଅଣ ? ଏତେ ତୋଫା ଆଲୁଅରେ ଛୁଞ୍ଚିଟାଏ ଯେଉଁଠି ଦେଖାପଡ଼ିବ, ଏ ଚିରା ମଇଳା ପଖଳା ଲୁଗା ଆଉ କଅଣ କାହାର ନଜରରେ ପଡ଼ିବନି– ପଡ଼ିବ, ପଡୁଛି।

( ତିନି )

ସସମ୍ମାନେ ରାଜ୍ୟପାଳଙ୍କୁ ଘେନି ଆସିଲେ ଏ ଡି କମ୍। ଦରବାର ହଲ୍‌ରେ ସମବେତ ହୋଇଥିବା କଳାକାରମାନେ ସ୍ୱାଗତମ ଜଣାଇଲେ। ସେମାନଙ୍କ ମଧ୍ୟରୁ ପ୍ରବୀଣ ସଂଗୀତଜ୍ଞ ପାର୍ଥ ଦାସ ରାଜ୍ୟପାଳଙ୍କ ସହିତ ପ୍ରତ୍ୟେକଙ୍କର ପରିଚୟ କରାଇଦେଲେ।

ତୁମେ କଜ୍ଜ୍ୱଳ ଦାସ ? ମୁଁ ଖୁବ୍ ନାଁ ଶୁଣିଛି। ତା' ଛଡ଼ା ଆନ୍ତର୍ଜାତିକ ପତ୍ରିକାରେ ତୁମର ଛବି ଓ ନୃତ୍ୟ ବିବରଣୀ ପଢ଼ିଛି। ଆଚ୍ଛା, କୋଣାର୍କ ଦେହରେ ଯେ ନୃତ୍ୟଭଙ୍ଗୀ ଫୁଟିଉଠିଛି ନର୍ତ୍ତକୀମାନଙ୍କର, ତାହା କ'ଣ ପ୍ରକୃତରେ ଉତ୍କଳୀୟ ?

କଜ୍ଜ୍ୱଳ ଦାସ ଦୃଢ଼ତା ସହକାରେ କହିଲେ, ହଁ, ତାହାର ପ୍ରମାଣ ଅଛି। ଓଡ଼ିଶୀ ନୃତ୍ୟ ଯେ ଶାସ୍ତ୍ରୀୟ ତାକୁ ବୁଝାଇବା ପାଇଁ ମୁଁ ଜୀବନର ବ୍ରତ କରିଛି।

ସୁନ୍ଦରୀ କଜ୍ଜ୍ୱଳ ଦାସଙ୍କର ଏ ଜାତିପ୍ରୀତି ଦେଖି ରାଜ୍ୟପାଳ ଖୁସି ହେଲେ। ପଚାରିଲେ, କଅଣ ପଢ଼ିଛ ?

ଉତ୍ତର ପାଇଲେ ଏମ୍.ଏ. ପଢୁଛି।

ଓଃ, ବାଃ, ବେଶ୍, ଶିକ୍ଷା ଓ ନୃତ୍ୟ ଉଭୟ ରହିଛି ! ମିସ୍ ଦାସ, ମୁଁ ଖୁବ୍ ଖୁସି। ରାଜ୍ୟପାଳ

ଘୁଞ୍ଚିଗଲେ ଆଉ ଜଣେ କଳକାରଙ୍କ ପାଖକୁ। କରମର୍ଦ୍ଦନ କଲେ ତାଙ୍କ ସଙ୍ଗେ।

ଓଡ଼ିଶାର ବିଶିଷ୍ଟ ହାସ୍ୟରସ ରସିକ ଅଭିନେତା ବସନ୍ତ ମାହାନ୍ତି କରପଟିଆ ହୋଇ ପ୍ରମାଦ ଗଣିଲେ–

ଭାଇ ପୂର୍ଣ୍ଣ, ଶିକ୍ଷାଗତ ଯୋଗ୍ୟତା ପଚାରୁଛନ୍ତି ରାଜ୍ୟପାଳ– ଉପାୟ ?

ଭାଇ ପୂର୍ଣ୍ଣ କହିଲେ, ଆମ ପାଖକୁ ଆସିବା ବେଳକୁ ସେ ସବୁ ଶୁଣିଯାଇଥିବେ। ଆଉ ପାର୍ଥ ଦାସ କ୍ଳାନ୍ତ ହୋଇପଡ଼ିଥିବେ ପରିଚୟ ଦେଇ ...ଅତଏବ ଏତେ ବ୍ୟସ୍ତ କାହିଁକି ?

ଆକାଶ-ବାଣୀର ଶିଳ୍ପୀ ସୁବ୍ରତ ନାୟକ, ଚଳଚିତ୍ରର ପ୍ରଯୋଜକ, ପ୍ରଣାମ କଲେ ଓ ରାଜ୍ୟପାଳଙ୍କ ସହ କରମର୍ଦ୍ଦନ କଲେ।

'ସତେ ?' ରାଜ୍ୟପାଳ ଖୁସି ହେଲେ। କହିଲେ, "ତୁମର ବୟସ ଖୁବ୍ କମ୍, ନା ? ଖୁବ୍ ତରୁଣ ଦେଖାଯାଉଛ। ଶିଳ୍ପ ଓ କଳାଚର୍ଚ୍ଚା କଲେ ଓ ମନ ପ୍ରଶାନ୍ତ ରହିଲେ ବୟସ ବଢ଼ିବ ନାହିଁ। କି ଚଳଚିତ୍ର ? ଓଡ଼ିଆ ନିଶ୍ଚୟ !"

"ହଁ, ଓଡ଼ିଆ।"

"ସେ କ୍ଷେତ୍ରରେ ଅସୁବିଧା କିଛି ଅଛି ?"

"ଅଛି– ଷ୍ଟୁଡିଓର ଅଭାବ, ନିଜସ୍ୱ ଷ୍ଟୁଡିଓ ନାହିଁ। ଆମକୁ ଯିବାକୁ ହୁଏ କଲିକତା ବା ମାନ୍ଦ୍ରାଜକୁ। ଅନେକ ଅସୁବିଧା। ଆପଣ ସଦାଶୟ,ଏ ବିଷୟରେ ଯଦି ଗୋଟାଏ ଯୋଜନା..."

ରାଜ୍ୟପାଳ ହାତ ଟେକିଲେ। କହିଲେ, "ଯୋଜନା ଓ ତା'ର ଅନୁଷ୍ଠାନ ମନ୍ତ୍ରିମଣ୍ଡଳର କାର୍ଯ୍ୟ। ମୁଁ ସେ ବିଷୟରେ ପ୍ରତିଶ୍ରୁତି ଦେଇପାରିବି ନାହିଁ। ତେବେ ତୁମେ କହୁଛ ୧୯୩୧ ରୁ ଓଡ଼ିଆ ଚଳଚିତ୍ର ନିର୍ମାଣ ଆରମ୍ଭ ହେଲାଣି। ଏଯାଏ ସେ ବିଷୟରେ କିଛି ପଦକ୍ଷେପ ନିଆଯାଇନାହିଁ। ଆଶ୍ଚର୍ଯ୍ୟ ! ମୁଁ ଅବଶ୍ୟ ଦେଖିବି କ'ଣ କରାଯାଇପାରେ।"

ରାଜ୍ୟପାଳ ହସିଲେ ଓ ଘୁଞ୍ଚିଗଲେ।

ସମକ୍ଷରେ ମଞ୍ଚ ଅଭିନେତା ଗୋବର୍ଦ୍ଧନ ନାୟକ। ହାତ ମିଳାଇଲେ ରାଜ୍ୟପାଳଙ୍କ ସଙ୍ଗେ।

ରାଜ୍ୟପାଳ ପଚାରିଲେ– ଆପଣ କେଉଁ ପ୍ରକାର ଅଭିନୟ ଭଲ ପାଆନ୍ତି ? କରୁଣ ନା ରୌଦ୍ର ନା ହାସ୍ୟ ?

ଗୋବର୍ଦ୍ଧନ କହିଲେ– କରୁଣ। ଏ ସଭାଗୃହରେ ଆମର ହାସ୍ୟ ଅଭିନୟର ମୁକୁଟମଣି ଅଛନ୍ତି। ବସନ୍ତ...

ବସନ୍ତ ମାହାନ୍ତି ହାତେ ଜିଭ କାଢ଼ିବା ଉପରେ। ପୂର୍ଣ୍ଣଭାଇଙ୍କୁ ଚିମୁଟି ଦେଇ କହିଲେ– ମାରିଦେଲେ ମୋତେ ଗୋବର୍ଦ୍ଧନ ଦାଦା ! ମୋ ହାତ ଧରିବେ ରାଜ୍ୟପାଳ ? ସେ କାହୁଁ ଜାଣିବେ ଏ ହାତ ପ୍ରତିଦିନ ପୂରା ପ୍ରେକ୍ଷାଳୟଟାକୁ ଗୋବରପାଣିରେ ଧୋଉଥିଲା ଆଉ ମଞ୍ଚଟାକୁ ବି। ଦରମା ଥିଲା ମାସକୁ ପାଞ୍ଚଟଙ୍କା। ଏବେ ଅବଶ୍ୟ ଦରମା ବଢ଼ିଛି, ଲିପାପୋଛା କାମ ନାହିଁ– ହେଲେ ଏ ହାତ ଧରିବେ ରାଜ୍ୟପାଳ ?

ଚୁପଚୁପ୍ କରି ଏତକ କହି ବସନ୍ତ ମାହାନ୍ତି ଖସିବାକୁ ବସିଲେ। ମାତ୍ର ଦୁର୍ଭାଗ୍ୟ, ରାଜ୍ୟପାଳ ବସନ୍ତ ମାହାନ୍ତିଙ୍କ ଆଡ଼କୁ ଅଗ୍ରସର ହେଲେ; କାରଣ ଗୋବର୍ଦ୍ଧନ ଦାଦାଙ୍କ ହାତଟା ସେଇ ଆଡ଼କୁ ପ୍ରସାରିତ ଥିଲା।

ରାଜ୍ୟପାଳ ଦେଖିଲେ, ଜଣେ ଲୋକ, ଆଖିରେ ତା'ର ସଶଙ୍କ ଚାହାଣି, ହାତ ଥରୁଛି। ପିନ୍ଧା ବସନ ରାଜ୍ୟପାଳଙ୍କ ଦରବାରକୁ ଆସିବା ଭଳି ବସନ ନୁହେଁ; ମାତ୍ର ଆଖି ଦୁଇଟିର ତାରକା ଉଜ୍ଜ୍ୱଳ, ଯଦିଓ ଏକ୍ଷଣି ଭୀତିମୟ।

ରାଜ୍ୟପାଳ ବୁଝିପାରିଲେ, ଏଇ ଦୁଃସ୍ଥ କଳାକାର ଭଳି ବହୁ କଳାକାର ଓଡ଼ିଶାର ମଞ୍ଚ, ନୃତ୍ୟ, ସଂଗୀତ ଓ ଚଳଚିତ୍ରରେ ରହିଛନ୍ତି। ପଣ୍ଡିତ ଲୋକ ସେ। ଭାବିଲେ ଏମାନଙ୍କୁ ଡକାଇ ଆଣି ସେ ଏମାନଙ୍କ ପ୍ରତିଭାକୁ ଅପମାନିତ କରୁନାହାଁନ୍ତି ତ?

"ଆପଣ ହାସ୍ୟରସର ଅଭିନେତା?"

ବସନ୍ତ ମାହାନ୍ତି ଢୋକ ଗିଳି କହିଲେ, "ମୁଁ ଜାଣେନା, ମାତ୍ର ଅଭିନୟ ମୋ ରକ୍ତରେ ଅଛି। ମୁଁ ସମସ୍ତଙ୍କୁ ହସାଏ, ହେଲେ ମୁଁ ନିଜେ କାନ୍ଦେ, ମୋ ପରିବାର କାନ୍ଦେ।"

ପୂର୍ଣ୍ଣ ଭାଇ ଦୁଇଥର ଆସ୍ତେ ହେ-ହେ କହିସାରିଛନ୍ତି। ତଥାପି ବସନ୍ତ ମାହାନ୍ତି ରାଜ୍ୟପାଳଙ୍କ ହାତକୁ ମୁଠାଇ ଧରି କଅଣ କହିଯାଉଛନ୍ତି ଓ କାନ୍ଦୁଛନ୍ତି।

ସମସ୍ତେ ନିର୍ବାକ୍। ନିସ୍ତବ୍ଧ ପ୍ରହରୀ।

"ରାଜ୍ୟପାଳ ମହୋଦୟ, ମୋର ପିନ୍ଧାଲୁଗା ନାହିଁ ଭଦ୍ରଭାବରେ ଆପଣଙ୍କ ପାଖକୁ ଆସିବା ପାଇଁ। ତଥାପି ଆସିଲି, କାରଣ ଆପଣଙ୍କ ମହାମାନ୍ୟ ନିମନ୍ତ୍ରଣକୁ ଉପେକ୍ଷା କରିବାକୁ ମୋର ସ୍ପର୍ଦ୍ଧା ନାହିଁ।"

ରାଜ୍ୟପାଳ ଏ ଆବେଗ ଉଚ୍ଛ୍ୱସିତ ଭାଷଣ ଶୁଣି ଚିନ୍ତିତ ହୋଇ ପଡ଼ିଲେ। ତାଙ୍କର ଲଲାଟପଟରେ ଭାବନାକୁ ସଂକୁଚିତ ରେଖାବଳୀ। ସଭାଗୃହ କେମିତି ନିଥର ଛନ୍ଦହୀନ ସ୍ୱରରେ ବିଳାପ କରିବା ଭଳି ମନେହେଲା।

ସେହି ଦରବାରରେ ପ୍ରକୋଷ୍ଠର କାନ୍ଥ ଉପରେ ଗୌତମ ଶିଷ୍ୟ ଆନନ୍ଦ କର ଯୋଡ଼ି ପ୍ରାର୍ଥନା କରୁଛି ଅସ୍ପୃଶ୍ୟ ଇତର ରମଣୀଠାରୁ କୂପଜଳ। କେଉଁଠି ପ୍ରାଚୀର ଗାତ୍ରରେ ଉତ୍କୀର୍ଣ୍ଣ ଅଛି କୋଣାର୍କ ଗଜର ଉତ୍ତୋଳିତ ଶୁଣ୍ଢ। କେଉଁଠି ଅବା କାନ୍ଥ ଉପରେ ରହିଛି ନବଜାଗ୍ରତ ଭାରତର ରୂପ-ସମୃଦ୍ଧ ଯୋଜନାର ପରିସଂଖ୍ୟାନ ମନ୍ତବ୍ୟସବୁ।

ଅଦୂର ପଥ ଉପରେ ଖଣ୍ଡଗିରି ଉଦୟଗିରି ମୁଖଶାଳା ତଳେ ସଂଧ୍ୟାର ନୀରାଜନରେ ଅରଣ୍ୟ ଧରିଛି ପ୍ରଶାନ୍ତ କୃଷ୍ଣ ରୂପ। ଶ୍ରୀକ୍ଷେତ୍ର ପାରାବାରର ଶୀତଳ ଉର୍ମିର କଣବାହୀ ସମୀର ସଂଚରି ଆସୁଛି ଏଇଆଡ଼େ।

ରାଜ୍ୟପାଳ ଉପବେଶନ କଲେ। ଜଳଯୋଗର ବ୍ୟବସ୍ଥା। ପୂର୍ଣ୍ଣ ମିଶ୍ର ଓ ବସନ୍ତ ମାହାନ୍ତି ହଠାତ୍ ଚାହିଁଦେଲେ କାନ୍ଥଘଣ୍ଟାକୁ।

ସଞ୍ଜ ସାଢ଼େ ଛଅ।

ଚମକି ପଡ଼ିଲେ ସେମାନେ। ରସଗୋଲାଟା ଉଠଉ ଉଠଉ କେତେକ ରସବିନ୍ଦୁ ପଡ଼ିଗଲା ଦୁହିଁଙ୍କ ବସନ ଉପରେ। ହାତ ଥରିଗଲା ବୋଧହୁଏ।

ଏଣେ ରାଜ୍ୟପାଳ ଖଣ୍ଡିଏ ବିସ୍କୁଟ ଟୁଣ୍ଡକୁ ନେଉ ନେଉ ଓଡ଼ିଶାର ଗରିମାମୟ ସଂସ୍କୃତି ପ୍ରସଙ୍ଗରେ ଆଲୋଚନା କରୁଥିଲେ। କହୁଥିଲେ— ଆଶାହୀନ ହୁଅ ନାହିଁ କଳାକାରମାନେ। ଯେଉଁ ଜାତି କଳାର ଅର୍ଚ୍ଚନା ନ କରେ, କଳାର ଐଶ୍ୱର୍ଯ୍ୟକୁ ଧରି ନ ରଖେ, ସେ ଜାତି ଯାନ୍ତ୍ରିକ ହୋଇଯାଏ, ତାହା ପାଏ ନାହିଁ ଆତ୍ମାର ବିସ୍ତୃତ, ଅସୀମତାର ସ୍ୱାକ୍ଷର।

ଠନ୍...ଠନ୍...ସାତଟା...

ବସନ୍ତ ମାହାନ୍ତି ମିଶ୍ରଙ୍କ କାନ ପାଖରେ କହିଲେ– ପୂର୍ଣ୍ଣ ଭାଇ, ଆଉ ଅଧଘଣ୍ଟାଏ ବାକି।

ପୂର୍ଣ୍ଣ ମିଶ୍ର ତଦନୁରୂପ କଣ୍ଠ ଭାଷାରେ କହିଲେ– ବସନ୍ତ, ଅଠର ମାଇଲ ବାଟ ଆଗରେ..

କାତର ଆକୁଳ ଦୁଇଟି ଆର୍ଟିଷ୍ଟ ରାଜଭବନ ଉପରେ ନଇଁ ଆସୁଥିବା ତମିସ୍ରାତଳେ ଦେଖିଲେ କଳାଶ୍ରୀ ଥିଏଟରର ମ୍ୟାନେଜରଙ୍କ ବ୍ୟସ୍ତ ବିରକ୍ତ ରକ୍ତଝଲକ ମୁଖ।

ସେ ମୁଖ କହୁଛି...ସୟତାନ ଏମାନେ, ବସନ୍ତ ଆଉ ପୂର୍ଣ୍ଣ। ଲାଟ ସାହେବଙ୍କ ଘରେ ଚା'ପାନ କରିବାକୁ ଯାଇଛନ୍ତି। ମୁହଁରେ ରଙ୍ଗ କେତେବେଳକୁ ଚଢ଼ିବ? ତମେ ଯେ ଆଜି ଶିଳ୍ପୀ ହେଲ, କାହା ଅନୁଗ୍ରହରେ? ନ ହେଲେ ପାନ ଦୋକାନ କରି ଗୁଜୁରାଣ ମେଣ୍ଟାଉଥାନ୍ତ। ଅଧଘଣ୍ଟା ବାକି– ସୋ' ହେବ କେମିତି? ମତେ କ'ଣ ଆଜି ଟିକଟ ଦାମ୍ ଫେରାଇବାକୁ ହେବ? ମୋ ଜୀବନରେ ମୁଁ ଏ କଥା କରିନି। ମୁଁ ସୋ' ଚଳେଇବି, ହେଲେ ପୂର୍ଣ୍ଣ ରୋଲ୍‌ଟା ଆଉ କାହା ହାତରେ ଚଳେଇ ନେବି ସିନା– ବସନ୍ତ?

ସାତଟା ଦଶ ମିନିଟ୍...

ଦୁହିଁଙ୍କ ଭୟାର୍ତ୍ତ ଚକ୍ଷୁ ତାରକା ନେତ୍ରକରକୁ ଯାଉଛି, ଆସୁଛି। ଏ ଗତିର ବିରାମ ନାହିଁ। ପୂର୍ଣ୍ଣ ଆଉ ବସନ୍ତ...ଯିମିତି ଫାଶୀଖୁଣ୍ଟକୁ ଯାଉଥିବା ଆସାମୀ ଦୁଇଜଣ।

ପାର୍ଥ ଦାସ ଅନେକବେଳୁ ଏ ଦୁହିଁଙ୍କର ଅସ୍ଥିରତାକୁ ଦେଖୁଥିଲେ। ସଙ୍ଗୀତର ଯେ ସାଧକ, ସେ ଜାଣନ୍ତି କାହା ଅନ୍ତରରେ କେତେବେଳେ ବେସୁରା ରାଗିଣୀ ଛନ୍ଦ ପତନ କରେ।

ଛିଡ଼ାହୋଇ ମଥା ଅବନତ କରି ଦାସ କହିଲେ– "ମହାଶୟ ରାଜ୍ୟପାଳ, ପୂର୍ଣ୍ଣ ଓ ବସନ୍ତ ଦୁଇଜଣ ମଞ୍ଚ ଅଭିନେତା। ଏକ୍ଷଣି ଏ ଭବନରୁ ଯାତ୍ରା ନ କଲେ ତାଙ୍କର ଥିଏଟର ଆଜି ବନ୍ଦ ହୋଇଯିବ। ସେମାନେ ଅଭିନୟ ନକଲେ ବହୁ ବିଭ୍ରାଟ ଘଟିଯିବ। କାଲିକି ହୁଏତ ସେମାନଙ୍କର ଚାକିରି ନଥିବ। ନାଟକ ଆରମ୍ଭ ହେବ ସାଢ଼େ ସାତଟାରେ...।"

"ଆପଣଙ୍କର ଆଜିର ପ୍ରଦତ୍ତ ଚା'ପାନରେ ସେମାନଙ୍କର ହୁଏତ ରାତିଟି ଚଳିଯିବ। କାଲି– ହୁଏତ ତାଙ୍କ ଭାଗ୍ୟରେ ଅନଶନ ରହିଛି। ଆଦେଶ ଦେଲେ ଏ ସଭା ମଉଳିବ ଓ ସେମାନେ ତୁରନ୍ତ ଯାତ୍ରା କରିବେ।"

ରାଜ୍ୟପାଳ ଆସନରୁ ଉଠିପଡ଼ିଲେ। ତାଙ୍କର ଚାହାଣିରେ ଥିଲା ଦୁଃଖ ଓ ସ୍ନେହସ୍ପର୍ଶର ଛାୟା।

କହିଲେ–

"ବନ୍ଧୁ କଳାକାରଗଣ, ମୁଁ ଦୁଃଖିତ। ଆପଣମାନଙ୍କ ସଙ୍ଗେ ଆଳାପ କରି ପ୍ରୀତ ହୋଇଛି। ଓଡ଼ିଶାର କଳାକାରମାନେ ଏତେ ଦୁଃସ୍ଥ ଓ ଅଭାବଗ୍ରସ୍ତ, ମୁଁ ଜାଣିନଥିଲି; କିନ୍ତୁ ତାଙ୍କର କର୍ତ୍ତବ୍ୟ-ନିଷ୍ଠା ଦେଖି ମୁଁ ଚମତ୍କୃତ ହୋଇଛି। ଉଚ୍ଚ ଆସନରେ ବସି ମୋ ପକ୍ଷରେ ସବୁକଥା ଜାଣିହୁଏ ନାହିଁ। ସେଥିପାଇଁ ସବୁ ଶ୍ରେଣୀର ଲୋକଙ୍କ ସଙ୍ଗେ ମିଳିତ ହେବାର ମୋ ଇଚ୍ଛାରୁ ଆଜି ଆପଣଙ୍କ ସହିତ ଏ ଆଳାପର ସୁଯୋଗ ମିଳିଲା।"

ଏ ଡି କମ୍...ଡାକିଲେ ରାଜ୍ୟପାଳ। ସ୍ୟାଲୁଟ କଲେ ମିଲିଟାରୀ ପୋଷାକରେ ଜଣେ ସୁଶ୍ରୀ ଯୁବକ।

ରାଜ୍ୟପାଳ ଆଦେଶ ଦେଲେ–

"ରାଜଭବନର ଗାଡ଼ି ଯୋଗାଇଦେଲେ ଏ ଦୁଇଜଣ କଳାକାରଙ୍କୁ ତୁରନ୍ତ ତାଙ୍କ ଥିଏଟର ଦ୍ୱାରପାଖରେ ପହଞ୍ଚାଇ ଦିଅ। ଆଉ ଡ୍ରାଇଭର୍‌କୁ ଆଦେଶ ଦିଅ, ସେ ଯେପରି ପନ୍ଦର ମିନିଟ୍‌ରେ ପହଞ୍ଚାଇ ଦିଅନ୍ତି। ସେମାନେ ପହଞ୍ଚିବାର ଖବର ମୁଁ ଯେଉଁ ଅବସ୍ଥାରେ ଥାଏ ନା କାହିଁକି ମୋତେ ଜଣାଇଦିଅ।"

ଏତିକି କହି ରାଜ୍ୟପାଳ ହସି ହସି ବିଦାୟ ନେଲେ।

ବସନ୍ତ ଓ ପୂର୍ଣ୍ଣର ଆଖିଦୁଇଟି ସେତେବେଳକୁ ବାଷ୍ପାଚ୍ଛନ୍ନ ହୋଇଯାଇଥିଲା। ମନେହେଉଥିଲା ସେମାନଙ୍କର ଅନ୍ତର ଭିତରୁ ଏତିକି ବାହାରି ଆସୁଛି– ସେତିକି, ସେତିକି ଯଥେଷ୍ଟ ରାଜ୍ୟପାଳ! ଆମ ପାଇଁ ଏ କମ୍ ସମ୍ମାନ ନୁହେଁ! ଆପଣଙ୍କ ଭଳି ଯଦି ଏ ଦେଶବାସୀ ଏତିକି କରୁଣ ଓ ମହାନୁଭବ ଭାବନାରେ ଆମକୁ ଶ୍ରଦ୍ଧା କରନ୍ତେ, ଆପ୍ୟାୟନ ଦିଅନ୍ତେ, ତେବେ ଆମେ ଶକ୍ତି ପାଆନ୍ତୁ; ଅର୍ଦ୍ଧଭୁକ୍ତ ରହି ବି କଳାର ସେବାରେ ଜୀବନ ଦିଅନ୍ତୁ। ସାଧୁ ରାଜ୍ୟପାଳ... ସାଧୁ...

ଠିକ୍ ସାତଟା ତିରିଶ ମିନିଟ୍‌ରେ ବସନ୍ତ ମାହାନ୍ତି ରାଜା ଦୁଷ୍ମନ୍ତ ରଥର ପଛ କାଠ ଉପରେ ଛିଡ଼ାହୋଇ କଅଣ କହିଲେ ଯେ ରାଜା ହସି ହସି ବେଦମ୍ ହୋଇ ଥରେ ନୁହେଁ ବହୁବାର କୃଷ୍ଣସାରକୁ ବଧ କରିବାରେ ଲକ୍ଷ୍ୟଭ୍ରଷ୍ଟ ହେଲେ। ସମଗ୍ର ପ୍ରେକ୍ଷାଳୟ ହସର ତରଙ୍ଗରେ ତରଙ୍ଗାୟିତ...

ପୂର୍ଣ୍ଣ ମିଶ୍ର ଦୁର୍ବାସା ମେକ୍‌ଅପ୍‌ରେ ତାଙ୍କ ଆଖି ଦୁଇଟା ପିଙ୍ଗଳବର୍ଣ୍ଣ ଧରୁଛି କି ନାହିଁ ଦେଖୁଥିଲେ ଦର୍ପଣ କାଚରେ।

ମନକୁମନ ଭାବିଲେ ପୂର୍ଣ୍ଣ ମିଶ୍ର– ନାଃ, ଆଜି କାହିଁକି ମୋ ଆଖି ଦୁଇଟା ଅଭ୍ୟାସଗତ କଠୋର ନିର୍ମମ ହେଉନାହିଁ। ତାରକା ଦୁଇଟିରେ ଯେପରି କରୁଣ ଓ ଶାନ୍ତଭାବର ପ୍ରଲେପ ଲାଗିଛି।

ତେବେ କଅଣ ପୂର୍ଣ୍ଣ ମିଶ୍ରଙ୍କର ଆଖି ଦୁଇଟି ଦେଖୁଛି ଏ ରାଜ୍ୟର ରାଜ୍ୟପାଳଙ୍କର ପ୍ରତିମୂର୍ତ୍ତିକୁ? ସେ କହୁଛନ୍ତି– ଡ୍ରାଇଭର୍‌କୁ– ଆଦେଶ ଦିଅ ଏ ଦୁଇଜଣ କଳାକାରଙ୍କୁ ଯେପରି ପନ୍ଦରମିନିଟ୍ ଭିତରେ କଳାଶ୍ରୀ ଥିଏଟର ଦ୍ୱାରଦେଶରେ ସେ ଉପସ୍ଥିତ କରାଏ...

କିନ୍ତୁ ଅନ୍ୟମନସ୍କା ଶକୁନ୍ତଳାକୁ ଚାହିଁ ପୂର୍ଣ୍ଣ ମିଶ୍ରଙ୍କୁ କଠୋର ହେବାକୁ ପଡ଼ିବ ଯେ!

ଅଭିନୟ!



# କାଲିଫର୍ଣ୍ଣିଆର ପ୍ରାଣୀ*

କେତେ ଦିନରୁ ମତେ ନବୀନଚନ୍ଦ୍ର କହୁଥିଲେ ଯେ ଦରିଆ ପାରି ହୋଇ ସେ ଉଚ୍ଚ ଶିକ୍ଷା ପାଇଁ ପାଶ୍ଚାତ୍ୟ ଦେଶକୁ ଯିବେ। ଠିକ୍ ଦରିଆପାରି ନୁହେଁ, ସେ ଉଡ଼ିଯିବେ ବୋଲି କହୁଥିଲେ।

ନବୀନଚନ୍ଦ୍ରଙ୍କୁ ମୁଁ ଜାଣେ। ସ୍ୱଚ୍ଛଳ ପରିବାରର ସନ୍ତାନ ସେ ନୁହଁନ୍ତି। ପିତା ତାଙ୍କର ସାମାନ୍ୟ କିରାଣି। ସଂସାରରେ ଆହୁରି ପୁଅଝିଅ ହୋଇ ତାଙ୍କର ରକ୍ତଜ କେତେ ଜଣ ଅଛନ୍ତି। ନବୀନଚନ୍ଦ୍ର ବଡ଼ପୁଅ। ଦୁଃଖ ସହିତ ଲଢ଼ି ନବୀନର ପିତା ମାଧବଚନ୍ଦ୍ର ପୁଅକୁ ଦରିଆ ପାରିହେବା ଭଳି ସୁଯୋଗ ଦେଇଛନ୍ତି। ଏ ସୁଯୋଗ କେତେଟା ଅଦୃଷ୍ଟର କରଣୀ ଆଉ ବା କେତେଟା ଧରାଧରି ବ୍ୟାପାର। ଯାହାହେଉ ନବୀନଙ୍କର ଉଡ଼ିବାଟା ଗୋଟାଏ ସିଦ୍ଧିର ଚିହ୍ନ ବୋଲି ଜଣାପଡ଼ିଲା ଯେତେବେଳେ ସେ ମତେ ଥରେ ଦେଖାକରି କହିଲେ ଯେ ସେ ଉଡ଼ିଯାଉଛନ୍ତି।

ସାହୁବଂଶର ପୁଅ ହୋଇଥିବାରୁ କୌଳିନ୍ୟ ରକ୍ଷା କରି ସେ ବହୁଆଗରୁ ବିବାହ ପର୍ବ ଶେଷ କରିଛନ୍ତି। ସେ କହନ୍ତି, ବାପା ତାଙ୍କର ଅଡ଼ିବସିଲେ ଯେଉଁଦିନ ତାଙ୍କର ମାଟ୍ରିକ୍ୟୁଲେସନ୍ ପାସ୍ ଖବର ପ୍ରକାଶ ପାଇଲା। କୁଳବଧୂ ନିର୍ବାଚିତ ହୋଇସାରିଥିଲେ। ଆଉ ନବୀନ ମାତ୍ର ଆଣ୍ଠୁଲୁଚା ତନ୍ତବୁଣା ଲୁଗା ପିନ୍ଧି, କଣ୍ଠରେ ବୈଷ୍ଣବ ରୁଦ୍ରାକ୍ଷ ଧରି, କର୍ଣ୍ଣରନ୍ଧ୍ରରେ ରୁପା ଫାସିଆ ରଖି ଯେ ଅଭିନବ ରୂପ ଧରିଥିଲେ ଛାତ୍ରାବସ୍ଥାରେ, ସେ ରୂପ ଭିତରୁ ଏମିତି କିଛି ସ୍ୱତନ୍ତ୍ରତା ଫୁଟୁ ନଥିଲା ଯାହା ପ୍ରୟୋଗରେ ସେ ବଧୂ ନିର୍ବାଚନ ଉପରେ ମହାମତ ପ୍ରକାଶ କରିବେ।

ଅତଏବ ସେ ବିବାହ କଲେ।

କିଏ କେଉଁ ସାହୁପୁଅ କେଉଁଠି ବିବାହ କଲା, ତା'ର ଇତିହାସ ଅଜଣା ରହିଲେ ବି ଦୁଃଖ ନାହିଁ। ମାତ୍ର ନବୀନର ମୋ ସହିତ ଯୋଗାଯୋଗରୁ ତାଙ୍କ ଜୀବନର କେତେଟା କଥା ମୋର ଗୋଚରକୁ ଆସିପାରିଛି।

ବୋହୂଟି ନିପଟ ମଫସଲୀ ବୋଲି ସେ କହୁଥିଲେ। ହେବା କଥା। ନବୀନ ପ୍ରାଣାନ୍ତକ ଚେଷ୍ଟା ଅବଶ୍ୟ କଲେ ଏଇ ମଫସଲୀ ତରୁଣୀକୁ ଆଧୁନିକା ତରୁଣୀବେଶରେ ସଜାଇବା ପାଇଁ। କିନ୍ତୁ ପାତଳା ନାଇଲନ୍ କନାର ଶାଢ଼ି ଓ ବ୍ଲାଉଜ୍ ତାଙ୍କ ତନୁରେ ଅମାନିଆ ହୋଇ ଖସିଆସେ, ଉଚ୍ଚନୀଚ ସ୍ଥାନରେ

---

* ହିମାଳୟ ଆଡ଼େ ଯାଉଥିବା ଯାତ୍ରୀ କଟକ ଷ୍ଟେସନରୁ କମ୍ବଳ ଘୋଡ଼ି ହୋଇ ଗାଡ଼ି ଭିତରେ ବସିଯାଏ ନାହିଁ। କମ୍ବଳ ଓ ମୋଟା ବିଛଣା ଅବଶ୍ୟ ତା'ର ସାଥିରେ ଥାଏ ଆବଶ୍ୟକ ସ୍ଥଳରେ ବ୍ୟବହାର ପାଇଁ। କିନ୍ତୁ କାଲିଫର୍ଣ୍ଣିଆ ଯାତ୍ରୀ ନବୀନଚନ୍ଦ୍ର ଗାଁ ପାଖରୁ ବଦଳିବାରେ ଅଭ୍ୟସ୍ତ ହୋଇ କେଜାଣି କେମିତି ଭଦ୍ରକ ଷ୍ଟେସନରେ ତାଙ୍କର ହୋସ୍ ଫେରିଚି। ତାପରେ ସତକୁ ସତ ସେ କାଲିଫର୍ଣ୍ଣିଆ ଯାତ୍ରା କରିବେ ନା ରାଞ୍ଚି ପାଗଳା ଗାରଦରେ ପଶିବେ ?

କେଉଁଠି ରହେନାହିଁ। ସେଇ ମୋଟା ତନ୍ତବୁଣା ଶାଢ଼ି ବସିଥାଏ ଦେହ ଉପରେ...ଏମିତି କେତେ ବିଭ୍ରାଟର କଥା ମତେ ନବୀନଚନ୍ଦ୍ର କହନ୍ତି।

ତାଙ୍କ ବାପାଙ୍କ ଆକାର-ପ୍ରକାର ଓ ଜନନୀଙ୍କ ଇଚ୍ଛା-ଅନିଚ୍ଛା କଥା ବି ସେ କହନ୍ତି। ସମସ୍ତେ ବୈଷ୍ଣବ। ଅତଏବ ଧନ ଦାନ, ପୂଜା, ଅହୋରାତ୍ର ଉତ୍ସବରେ ଏମାନଙ୍କର ମତି ଥିବାରୁ ନବୀନଚନ୍ଦ୍ରଙ୍କର ଆଧୁନିକ ମନ ସେ ଗୃହସ୍ଥଳୀରେ ବାନ୍ଧି ହୋଇ ପାରୁନଥିଲା।

କିନ୍ତୁ ହଠାତ୍ ତ କିଛି କହିହେବ ନାହିଁ।

ଆଶ୍ଚର୍ଯ୍ୟ,ଏଇ ହଠାତ୍ ଜିନିଷଟା ଘଟିଗଲା।

ନବୀନଙ୍କ ସହପାଠିନୀ ବାନ୍ଧବୀ ରତିଲେଖା ନବୀନଙ୍କର ଅଲେଖିତ ଲଲାଟ ଉପରେ ଦୁଇଟା ଗାର ଲେଖିଦେଲେ। ଏମିତି ହୁଏ। ରତିଲେଖାଙ୍କର ବାପା ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ। ସେ ବି ସାହୁବଂଶ। ମାତ୍ର ସଂଜ୍ଞାଟା ସାହୁ ରହିଥିଲେ ବି ତାଙ୍କ ସଂସାରରେ ସବୁ ପ୍ରାଣୀ କ୍ଲବ୍ ଲାଇଫ୍, ଡିନର୍ ଓ ଆନୁଷଙ୍ଗିକ ସମ୍ଭୋଗରେ ଜୀବନକୁ କଟାନ୍ତି।

ବବ୍‌କେଶିନୀ ରତିଲେଖା ନବୀନଚନ୍ଦ୍ରଙ୍କୁ ସ୍ୱାମୀରୂପେ ବରଣ କରିବାକୁ ଇଚ୍ଛା କଲେ। ଏ ଇଚ୍ଛାର ପୂର୍ତ୍ତି ପାଇଁ ନବୀନଚନ୍ଦ୍ର ଗୋଟିଏ ମାତ୍ର ସର୍ତ୍ତ ଦେଲେ। ସେ ସର୍ତ୍ତଟି ହେଉଛି, ମତେ ବିଲାତ ପଠାଅ। ଦୁହେଁ ଯିବା, ଏକା କୁପେରେ, ଏକା ଟ୍ରେନ୍‌ରେ, ଏକା ମଟରରେ ଓ ଏକା ଉଡ଼ାଜାହାଜରେ।

ନବୀନଚନ୍ଦ୍ର ଭାବିଥିଲେ ଏ ସଂସାର ଅନିତ୍ୟ। ଅନିତ୍ୟ ତେଣୁ ତାଙ୍କର ପ୍ରଥମା ସ୍ତ୍ରୀ, ଯାହା ଗାଲରେ ହଳଦୀ ଛଡ଼ା ରୁଜ୍ ଚଢ଼ପାରିଲାନି କି ଅଧରରେ କୃତ୍ରିମ ରକ୍ତିମା ଝଲସିଲାନି। ତେବେ ଏଭଳି ଏକ ଅନିତ୍ୟ ପଦାର୍ଥକୁ ଧରି ସେ କେତେ କାଳ ନିତ୍ୟ ବୃନ୍ଦାବନର ବଂଶୀଧ୍ୱନିକୁ ଶୁଣିବେ ?

କହୁଥିଲି, ରତିଲେଖା ଦୁଇଟା ଗାର ଥରେ ନବୀନଙ୍କର ଲଲାଟ ଉପରେ ଲେଖିଦେଲେ– ଚମ୍ପକ ଆଙ୍ଗୁଠିରେ କି ଅଧର ରେଖାରେ କହିହେବନାହିଁ।

ରେଖା ଦୁଇଟିର ଅର୍ଥ–

ରତିଲେଖା କହିଲେ– ଶୁଣ, ତୁମ ହାତରେ ଗୋଟାଏ ପେଗ୍, ଆଉ ମୋ ହାତରେ ଗୋଟାଏ ପେଗ୍। ଡ୍ୟାମ୍ ୟୋର୍ ୱାଇଫ୍! ଫର୍ଗେଟ୍ ହର୍!

ନବୀନଚନ୍ଦ୍ର ସେତେବେଳକୁ ଅଧା ଉନ୍ମତ୍ତ। କ୍ଲବ୍‌ର ଝାପ୍‌ସା ନୀଳ ଆଲୋକର ଥୋପତଳେ ଯେଉଁଠି ବହୁ ମିଳନ ପର୍ବର ମହୁଆ ଝରିଯାଏ, ସେଇଠି ସେ କୋଳେଇନେଲେ ରତିଲେଖାକୁ।

ୟେସ୍, କୁହ...

ରତିଲେଖା ଆଖିରୁ ଜ୍ୟୋତି ଝରାଇ କହିଲେ–

ଏକ ରେଖା– ତାକୁ ଡାଇଭୋର୍ସ କର;

ଦୁଇ ରେଖା– ତା' ପରିବର୍ତ୍ତେ ଟେକ୍ ମି...ମତେ ନିଅ।

ସମସ୍ୟା କିଛି ନଥିଲା। ନବୀନଚନ୍ଦ୍ରଙ୍କ ସ୍ତ୍ରୀ କୋଳରେ ଏଯାଏ ସନ୍ତାନ ସମ୍ଭବି ନାହିଁ। ଅତଏବ ସେ ଦିଗରୁ ବିବେକର ଦଂଶନ ନାହିଁ। ଥିଲେ ବି ହଲେ ଆଧୁନିକ ତରୁଣ ତରୁଣୀ, ଉଜାଣି ସ୍ରୋତରେ ପହଁରିଯିବାର ଆନନ୍ଦ। କିଏ କାହିଁକି ବାରଣ କରିବ ?

'ମତେ ନିଅ' କହି ଆଶ୍ଲେଷ ଦେବା ବେଳକୁ ରତିଲେଖା କଅଣ ଭାବି ପଛକୁ ଫେରି ଚାହିଁଲେ। ଦେଖିଲେ, କେତେଗୁଡ଼ାଏ ନେତ୍ର ତାଙ୍କୁ ଚାହିଁରହିଛି। ସମସ୍ତେ ହୁଏତ ପ୍ରାର୍ଥୀ। ମାତ୍ର, ନା। ନବୀନର ରୂପ ଅଛି, ଖୁବ୍ ଡେଙ୍ଗା ପୁରୁଷ, ଛାତିଟା ବି ଅସାଧାରଣ ଓସାରିଆ। ତା' ଛଡ଼ା ସେ ମେଷ ହୋଇ ରହିଯିବ ଚିରଦିନ ଏଇ ତରୁଣୀ ପାଖରେ। ବାପା କହିଛନ୍ତି– "ରତି, ଆଣ ତୁ ଯାହାକୁ ମୋର ଆପତ୍ତି ନାହିଁ, ସେ କିନ୍ତୁ ମେଣ୍ଢା ହୋଇ ରହିବ ଆମପାଖେ। ଟଙ୍କା ଖର୍ଚ୍ଚ କରିବି, ବିଲାତ ପଠାଇବି, ସବୁ କରିବି– ହେଲେ ଟୋକାର ମେଣ୍ଢାତ୍ୱ ଯିମିତି ଚିରଦିନ ରହେ। ତୁ ତ ଜାଣୁ ସେ ଟେକ୍‌ନିକ!"

ମାଧବଚନ୍ଦ୍ର ଏସବୁ କ୍ରମେ ଅବଗତ ହେଲେ। ଯେତେ ଜାଣିଲେ ସେତେ ନାଚିଲେ। ସେ ନାଚୁଥିଲେ ଗୌରହରି ଛବି ନିକଟରେ। ମୟୂରପୁଚ୍ଛବନ୍ଧା ଚୂଳ ବେଦୀମୂଳେ ସଂକୀର୍ତ୍ତନମଣ୍ଡଳୀଙ୍କ ସଙ୍ଗେ ମୃଦଙ୍ଗର ତାଳେ ତାଳେ। ଏବେ ଟିକିଏ ବେଶି ନାଚିଲେ; କାରଣ ଆଉ ତାଙ୍କୁ ସଂସାର ଭଲ ଲାଗିଲା ନାହିଁ।

ଏ ନାଚ ଭିତରେ ଯେତେବେଳେ ନବୀନଚନ୍ଦ୍ରଙ୍କ ପିତା ଘରମୁହାଁ ହୁଅନ୍ତି, ସେତେବେଳେ ଦେଖନ୍ତି ବୋହୂ ତାଙ୍କର ଅବିରଳ ନୀର ଢାଳୁଛି। ଆଖିଫଟା ସେ କାନ୍ଦଣା। ସନ୍ନ୍ୟାସ ନେଇଥିବାରୁ ମାଧବଚନ୍ଦ୍ର ଏହାକୁ ପ୍ରପଞ୍ଚ ମାୟାର ଖେଳା ଭାବି ଗୋଟାଏ ଗୌରହରୀୟ ହାସ ଅଧରରେ ଫୁଟାଇ କଠଉ ଦୁଇଟା ଠକ୍ ଠକ୍ କରି ପାଖ ବଖରାକୁ ପଶିଯାଆନ୍ତି।

ଆକାଶଟା ସେଦିନ ଅସ୍ୱାଭାବିକ ଭାବରେ ତମିସ୍ରାଜଡ଼ିତ ଥିଲା। ଘଣ୍ଟାକ ପୂର୍ବରୁ ଝଙ୍କାର ଦେଇ ଅସରାଏ ବର୍ଷା। ବର୍ଷ ଯାଇଛ। ଇଲେକ୍‌ଟ୍ରିକ୍ ତାରଗୁଡ଼ାକ ଉପରେ ଚକ୍ ଚକ୍ କରୁଛି ମାଣିକ୍ୟ ବିନ୍ଦୁଗୁଡ଼ାଏ।

ଏକ୍‌ସପ୍ରେସ୍ ଟ୍ରେନ୍ ସହିତ ଯେଉଁ କୋଠରିଗୁଡ଼ାକ ଯୋଡ଼ାଯାଏ, ସେଇଥିରୁ ଗୋଟାଏ କୋଠରି ଭିତରକୁ ଗଲି। ହଠାତ୍ ଦେଖିଲି ସେ ପ୍ରକୋଷ୍ଠରେ କେତୋଟି ବବ୍‌କେଶିନୀ ତରୁଣୀ କିଚିରି-ମିଚିରି ହେଉଛନ୍ତି। ମୋର ହଠାତ୍ ମନେହେଲା ମୁଁ ଗୋଟାଏ ଭୁଲ ଡବା ଭିତରକୁ ଚାଲିଆସିଛି। କାହିଁ? ନା, ତ, ଠିକ୍ ଅଛି। ଡି-କଂପାର୍ଟମେଣ୍ଟ; ଲୋୟର୍ ବର୍ଥ।

ସେଇ ତରୁଣୀମାନଙ୍କୁ ଦେଖିଲି। ତାଙ୍କ ରୂପରାଗ କି କଟୁ ସ୍ତରର! ଆଖିକୁ ପୀଡ଼ା ଦେଲା। ଆଉ ଅଙ୍ଗାବରଣ ଯାହା, ସେଥିରେ...

ଆସିଲେ ଜଣେ ଯୁବକ। ମୁଣ୍ଡରେ ଫେଲଟ ହ୍ୟାଟ୍। ଚାର୍ଲି ଚାପ୍‌ଲିନ୍‌ଙ୍କ ଭଳି ହାତଯଷ୍ଟି ଖଣ୍ଡେ ଧରି ବୁଲାଉଛନ୍ତି। ଗଳାରେ 'ବୋ' ଟାଇ...ରକ୍ତାକ୍ତ। କୋଟ୍‌ର ରଙ୍ଗଟି ବି ରକ୍ତ-ପଳାଶ। ଚିପା ପ୍ୟାଣ୍ଟ ଏତେ ଚିପା ଯେ ଆଉ ତେଣିକି ଚିପିହୋଇ ପାରିବନି– ଚିପାର ଶେଷ ସହିଷ୍ଣୁ ସୀମା ଶେଷ ହେବା ଉପରେ। ରାତି ହୋଇଥିଲେ ବି ଆଖିରେ ଚଢ଼ିଛି ଗାଢ଼ କଳାରଙ୍ଗର ଗଗ୍‌ଲସ୍...ଥଣ୍ଡା ପ୍ରଚକ୍ଷୁ। ଯଥାରୀତି ଅଧରରେ ସିଗାରେଟ୍।

ଭଦ୍ରଲୋକଙ୍କର ସିଗାରେଟ୍‌ଟା ଖସିପଡ଼ିଲା ମତେ ଦେଖି– ଅବାକ୍ ହେବା ଭଳି ଢଙ୍ଗ।

କହିଲେ, 'ଆପଣ?'

ମୁଁ କହିଲି, "କିଏ ନବୀନଚନ୍ଦ୍ର? ଚିହ୍ନିବାର ତ ଉପାୟ ନାହିଁ? କୁଆଡ଼େ ଯାତ୍ରା?"

ଯୁବକ ନବୀନ ହାତ ଦୁଇଟିକୁ ତରଙ୍ଗ-ଭଙ୍ଗ-ଭଙ୍ଗୀରେ ହଲେଇ କହିଲେ—

"ମୁଁ ଯାଉଛି କାଲିଫର୍ଣ୍ଣିଆ। ଆଉ ଏମାନେ ହେଉଛନ୍ତି ଲିଲି, ଡଲି, ଡାଏନା ଓ ପିଗ୍... ଆଉ ତ ଆପଣଙ୍କ ସଙ୍ଗେ ଦେଖା ହୋଇନି। ଅନେକ କଥା ଘଟିଯାଇଛି ଯା ଭିତରେ। ମୁଁ ଚାଲିଲି କାଲିଫର୍ଣ୍ଣିଆ। ରତି ଅବଶ୍ୟ ମୋ ସାଙ୍ଗେ ଗଲାନି। ତେବେ ସେ ଆଗରୁ ଯାଇଛି ଦମ୍‌ଦମ୍ ଏଆର ପୋର୍ଟରେ ମତେ ବିଦାୟ ଦେବାପାଇଁ। ମାଇପିଗୁଡ଼ାଙ୍କର ନେଚର୍ (ପ୍ରକୃତି) ଏମିତି—ସବୁବେଳେ ଅମୀମାଂସା। କିଛି ଠିକ୍ କରି କହିବେନି। ଏମାନେ ତା'ର ଭଉଣୀ—'ସି-ଅଫ୍' କରିବାକୁ ଆସିଛନ୍ତି।"

ପ୍ରଗଲ୍‌ଭ ଏଇ ଯୁବକକୁ ଦେଖୁଥିଲି। ତା'ର ରତି ସଂକ୍ରାନ୍ତୀୟ ବିଷୟ କିଛି କିଛି ଜାଣିଥିଲି ଆଗରୁ। ତାକୁ କିଛି କହିବା ଆଗରୁ ଦେଖିଲି—

ଦୁଇଜଣ ବୁଢ଼ା-ବୁଢ଼ୀ। ବୁଢ଼ୀ ପ୍ରାୟ ଥରୁଛନ୍ତି। ଧରାଧରି ହୋଇ ଆସିଲେ ସେମାନେ ଏଇ କାମେରାକୁ। ବୁଢ଼ାଙ୍କ କାନ୍ଧରେ ଚଉତା ଚାଦର ଝୁଲୁଛି। ବୁଢ଼ୀଙ୍କ ନାସିକାଗ୍ରରେ ଚନ୍ଦନ ଚିତା। ଏମାନଙ୍କ ସାଙ୍ଗେ ଯେ ଯୁବତୀ ଜଣଙ୍କ ଆସିଲେ ସେ କେବଳ କୋହ ଫଟାଇ କାନ୍ଦୁଛନ୍ତି। ମଥାରେ ସିନ୍ଦୂରଧାରେ ଦୂର ଯାଏ ସୀମନ୍ତ ଉପରେ ଲମ୍ବି ଯାଇଥାଏ। ସମସ୍ତଙ୍କ ଚକ୍ଷୁ ଅଶ୍ରୁ ସଜଳ।

ସେତେବେଳକୁ ଲିଲି, ଡଲି, ଡାଏନା ଓ ପିଗ୍ ନାକ ଟେକିଲେଣି। ସାଂପୁକରା ତାଙ୍କ ବାଳଗୁଡ଼ାକ ଉପର ଫ୍ୟାନ୍ ପବନରେ ମୁହଁଯାକ ଖସ ଖସ ହେଉଥାଏ। ସେ କେଶ ଥରକୁ ଥର ଟେକି ଆଣି ଯଥାସ୍ଥାନରେ ରଖିଲେ ବି ତାହା ଆହୁରି ଅସଂଜତ ହୋଇ ଏଣେତେଣେ ଲୋଟୁଥାଏ। ସେ ମେଳ ଭିତରୁ କିଏ ଜଣେ ଫିସ୍‌କରି କହିଲା—'ପେରେଣ୍ଟସ୍'— ଅନ୍ୟଜଣେ— 'ୱାଇଫ୍'...ପୁଣି ସମସ୍ତେ ରୁମାଲ ଧରିଲେ ଏକା ସାଙ୍ଗରେ ନାକ ପାଖରେ। ଶବ୍ଦ ହେଲା— ନ୍ୟାଷ୍ଟି !

ବୁଢ଼ୀ କାନ୍ଦି କାନ୍ଦି କହୁଥାନ୍ତି— "ଘରୁ ଅନୁକୂଳ କରି ଆସିଲୁ ନାହିଁ। ବୋହୂ ଦି'ଟା ଲେଉଟ ଚକୁଳି କରି ଆଣିଛି। ତୁ ବସ, ମୁଁ ଖୁଆଇଦିଏ। କିମିତି ତୋ ମନହେଲା। ସାତଦିନ ହେଲା ଘରୁ ଯାଇଛୁ ଯେ ଦେଖାନାଇଁ। ଏମିତି କିଏ ଘରୁ ବିଦେଶକୁ ଯାଏ ?"

ବାପା କହିଲେ, "ସାବଧାନରେ ଯିବୁ। ବୋହୂଟା କଥା ଭାବିବୁ। ସେ ଖାଲି କାନ୍ଦୁଛି। ଯିବାବେଳେ ସମସ୍ତଙ୍କୁ କହି ବୋଲି ଆସିବା ତୋର ଉଚିତ ଥିଲା। ଆମେ ଦି'ଜଣ ସେକାଳର ଲୋକ, ମୂର୍ଖ— ହେଲେ ତୁଣ୍ଡରୁ ସଞ୍ଜ ତତେ ମଣିଷ କଲି। ଏଇଲାଗେ ସେ କଥା ମନେପଡ଼ିଲେ..." ବୃଦ୍ଧ ଆଉ କୋହ ସମ୍ଭାଳି ପାରିଲେନି... କଇଁକଇଁ କାନ୍ଦିଲେ।

ଏ ଦୃଶ୍ୟ ବି ମର୍ମାନ୍ତିକ ହେଲା। ମୁଁ ଏବେ ଯେ କଅଣ କରିବି ଓ ମୋର କଅଣ କରିବା ସେ କ୍ଷେତ୍ରରେ ଉଚିତ ମୁଁ ବୁଝିପାରିଲି ନାହିଁ। ଓଡ଼ିଆ ବାପ ମାଆର ସାଦାସିଧା ବେଶ ଓ ହୃଦୟଭରା ବାତ୍ସଲ୍ୟ ଗୋଟାଏ ଆଡ଼େ, ଅନ୍ୟ ଆଡ଼େ ପର ଅର୍ଥରେ ସୌଭାଗ୍ୟବାନ୍ ପରମୁଖାପେକ୍ଷୀ ବିଦେଶଯାତ୍ରୀ ଉତ୍‌କଟ ବିଦେଶୀ ବେଶ ବ୍ୟବହାରରେ ଉଦ୍ଧତ ଏଇ ଓଡ଼ିଆ ଯୁବକ। ପୁଣି ଏ ଦୁଇଦଳଙ୍କ ମଝିରେ ଚିତ୍ରିତ ପ୍ରଜାପତି ଭଳି ଅସ୍ଥିରା, କୃତ୍ରିମ ରୂପସଜ୍ଜାରେ ନେତ୍ରପୀଡ଼ାଦାୟିନୀ ଏଇ ପିଗ୍‌ଠୁ ଆରମ୍ଭ କରି ଡାଏନା ଯାଏ ବନିତା-କୁଳକୁ ଦେଖି ମୁଁ ସ୍ତବ୍ଧ ନୀରବ ହୋଇଗଲି।

ବିଦାୟ ପର୍ବ ଆସିଲା। ବୁଢ଼ାବୁଢ଼ୀ ପୁଅକୁ କୋଳ କଲେ। କିନ୍ତୁ ପୁଅ ନବୀନଚନ୍ଦ୍ର କାହାର ପଦଧୂଳି ନେଲେନି। ସ୍ତ୍ରୀ ଦୁଇହାତ ଲମ୍ୱାଇ ଏ ଯୁବକର ଚରଣ ଛୁଇଁ ମୁଣ୍ଡରେ ମାରିଲେ କଂପାର୍ଟମେଣ୍ଟ ଧୂଳିକୁ। ନବୀନ ସେତେବେଳେ କେବଳ ଚାହିଁ ଦେଖିଲେ ଛାତ ତଳେ ଇଲେକ୍‌ଟ୍ରିକ୍ ବଲ୍‌ବକୁ।

ଚାରୋଟି ଭଉଣୀ ଝଣ୍ ଝଣ୍ କରି କଣ୍ଠ ଥରାଇ କେବଳ ଛୋଟ ପକ୍ଷୀଛୁଆର ତୁଣ୍ଡବାଦ୍ୟ ବଜାଇ ବଜାଇ କହିଲେ– ଗୁଡ୍ ବାଇ, ବାଇ ବାଇ, ବାଇଁ...ବାଇଁ...

ବୁଢ଼ାବୁଢ଼ୀ ଓ ନବୀନର ସ୍ତ୍ରୀ ଓହ୍ଲାଇଗଲେ। ଟ୍ରେନ୍ ଚାଲିଲା।

ମୋର ତନ୍ଦ୍ରା ଆସିଯାଇଥିଲା। ଭେଣ୍ଡରମାନଙ୍କର ଚିତ୍କାରରେ ମୁଁ ଉଠିବସିଲି। ଭଦ୍ରକ ଷ୍ଟେସନ ଆସିଯାଇଛି।

ଦରଜା ପାଖକୁ ଯାଇ ଦେଖିଲି ନବୀନଚନ୍ଦ୍ର ଖଣ୍ଡେ ସାଧାରଣ କନାର ଲୁଙ୍ଗି ପିନ୍ଧି ଓ ଦେହରେ ଗେଞ୍ଜି ମାତ୍ର ଧାରଣ କରି ବିକାଳିଠାରୁ ଚା'କପେ ନେଇ ପିଉଛନ୍ତି।

ମୁଁ ବିଶ୍ୱାସ କରିପାରିଲି ନାହିଁ। ଉତ୍‌କଟ୍ ବିଦେଶୀ ଆଭରଣରେ ଯେଉଁ ଲୋକ ବେଶଭୂଷା ହୋଇ ବାପ ମାଆଙ୍କ ପାଦଧୂଳି ନେଇ ପାରିଲା ନାହିଁ କାଳେ ପୋଷାକର ଭାଙ୍ଗ ଭାଙ୍ଗିଯିବ ବୋଲି, ସେହି ଲୋକ ନବୀନଚନ୍ଦ୍ର ଏମିତି ସର୍ବହରା ବେଶରେ ଯେ ଚା'କପେ ପିଉଥିବ, ସତରେ ଏ ବିଶ୍ୱାସ ମୋର ହେଲାନାହିଁ।

କିନ୍ତୁ ନବୀନ ମତେ ଦେଖି ସଂଭ୍ରମଯୁକ୍ତ ହୋଇ କହିଲେ– 'ମନ ଭଲଲାଗୁନି।'

–କାହିଁକି ?

–ବାପା-ମାଆଙ୍କୁ ଛାଡ଼ି ଆସିଲି।

–ଆଉ ସ୍ତ୍ରୀ ?

–ହଁ, ସେ ବି ?

–ଆଉ ?

–ନା, କ୍ଷମା କରିବେ...ବୋଧହୁଏ ପାଗଳ ହୋଇଯିବି। ଚକୁଳି ଦି'ଟା ମୋର ଖାଇବା ଉଚିତ ଥିଲା। ଖାଇ ପାରିଲି ନାହିଁ। ସେମାନଙ୍କ ପାଇଁ– ଝିଅମାନଙ୍କ ଆଗରେ। ମୁଁ ବୋଧହୁଏ ଶୀଘ୍ର ପାଗଳ ହୋଇଯିବି। ଯାତ୍ରା ଭିତରେ ହୁଏତ ପାଗଳ ହୋଇଯିବି।



# ମୈଥିଳୀର ମନ

ଯୁବକଟି ବିମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥାଏ। ଅପଲକ ନେତ୍ର। ମନେ ହେଉଥାଏ ବିଶ୍ୱର ରସଭଣ୍ଡାର ଯେପରି ସେ ଲୁଟ୍ କରୁଛି। ଯେଉଁଆଡ଼େ ସେ ଚାହିଁଛି, ଶହ ଶହ ଲୋକ– ତରୁଣ, କିଶୋର, ଯୁବକ, ପ୍ରୌଢ଼, ସ୍ଥବିର–ସମସ୍ତେ ସେଇଆଡ଼େ ଚାହିଁ ରହିଛନ୍ତି। ସମସ୍ତେ ଅମୃତ ଭାଣ୍ଡ ନିଃଶେଷ କରିବାରେ ବ୍ୟସ୍ତ। ସମସ୍ତେ କ୍ଷୁଧାର୍ତ୍ତ। ମାଂସଲୋଭୀ ଶାର୍ଦ୍ଦୁଳ ପାଖରେ ଖଣ୍ଡେ ରକ୍ତଲଗା ମାଂସ ପଡ଼ିଛି; ତାକୁଇ ଚାଟିଚାଲିଛନ୍ତି ସହରର ଜମିଦାର, ଗ୍ରାମ୍ୟ ନବାବ୍, ପଲ୍ଲୀର ଟାଉଟର୍, ଆଉ ଅନେକ ଅନେକ ତରୁଣ, କିଶୋର, ଯୁବକ।

ଗୋଟାଏ ପବନର ଢେଉରେ ସମସ୍ତେ ଭାସୁଛନ୍ତି...ପୁଣି ବୁଡୁଛନ୍ତି, ପୁଣି ଭାସୁଛନ୍ତି। ଆଃ, ଗୋଟାଏ ଅପୂର୍ବ ଅନୁଭୂତି ! ରୋମାଞ୍ଚକର ଖାଦ୍ୟତୃପ୍ତି !

ନାରୀ ଦେହରେ ଏତେ ଆକର୍ଷଣ ? ସେ ଦେହ ଯଦି କଟୀଠାରୁ ବକ୍ଷ ଦେଇ ଗଣ୍ଡ ଯାଏ ଦୋଳନ ଖେଳୁଥାଏ, ଆଉ ସେଇ ଦୋଳନ ଭିତରେ ଆଖିର କଜ୍ଜ୍ୱଳ, ଓଠର ରକ୍ତିମା, ଭ୍ରୂର ତିକ୍‌କଣଶ୍ରୀ ଲହରୀ ପିଟୁଥାଏ। ସେତେବେଳେ ଦର୍ଶକଙ୍କର ତାଲୁ ତଳ ଜିହ୍ୱାର ପ୍ରତ୍ୟେକ ଗ୍ରନ୍ଥିର ଶ୍ରାବ ଝରୁଥାଏ।

ଆଃ...ଓଃ...ଓହୋଃ ଶବ୍ଦରେ ଶବ୍ଦାୟିତ ପ୍ରେକ୍ଷାଳୟରେ ବସିଥାଏ ସେଇ ବିମୂଢ଼ ଯୁବକ। ଧନୀ ପରିବାରର ପୁଅ। ହାତରେ ସାର ସାର ମୁଦି। ପଞ୍ଜାବିରେ ସୁନାର ବୋତାମ। ଆଖିରେ ସୁବର୍ଣ୍ଣ ଚଷମା। ଗିଲ୍ କରା ପଞ୍ଜାବି ଓ ଧୋତି। ଏଇ ବେହରଣରେ ବସିଛି ସେଇ ଯୁବକଟି ଧ୍ୟାନସ୍ଥ ଋଷିମୂର୍ତ୍ତି ଭଳି।

ଅଶ୍ଳୀଳ ଇଙ୍ଗିତ, ବୀଭତ୍ସ କଥାବାର୍ତ୍ତା ଭିତରେ ସମସ୍ତେ ଜୀବନ୍ତ ଅଛନ୍ତି। ଆଗରେ ଦୋହଲୁଥିବା ମାଂସପିଣ୍ଡଟାକୁ ଟାଣି ଆଣି ନିଦାରୁଣ ଭାବରେ ଦଂଶନ କରି ସେଇଟାକୁ ଟୁକୁରା ଟୁକୁରା କରି ଗର୍ଭ ଭିତରକୁ ଠେଲିଦେବେ– ଏଇ ଭାବ, ଏହି କ୍ଷୁଧା ଘେନି ବସିଛନ୍ତି ସହରର ଅଗ୍ରଗଣ୍ୟ ବିକୃତ ବାସନାଧାରୀ ଭଦ୍ରଲୋକ।

ସେଇ ଆକର୍ଷଣର ଜୀବ ଆଉ କେହି ନୁହେଁ– ରଙ୍ଗମଞ୍ଚର ପ୍ରସିଦ୍ଧ ଅଭିନେତ୍ରୀ, ସହସ୍ର ଦର୍ଶକ–ହୃଦୟର ମାନସୀ ମୈଥିଳୀ ଦେବୀ–ରଙ୍ଗାଳୟର ଏକମାତ୍ର ଭୂଷଣ ମୈଥିଳୀ ଦେବୀ।

ପାଦପ୍ରଦୀପ ପାଖରେ ଏଇ ନାରୀ ଉଚ୍ଛ୍ୱସିତ ଦେହତରଙ୍ଗକୁ ଖେଳାଇ ଯେତେବେଳେ ନୃତ୍ୟ କରେ, ଅଭିନୟ-ଚାତୁର୍ଯ୍ୟରେ ଯେତେବେଳେ ସମସ୍ତଙ୍କର ମନୋହରଣ କରେ, ତଥାକଥିତ ସୁନାର ସଂସାରର ସଂସାରୀ, ପ୍ରତିଷ୍ଠିତ ଦାମ୍ପତ୍ୟ ଜୀବନର ମହାନାୟକମାନେ ଅବଚେତନ ମନରେ ମୈଥିଳୀକୁ ହିଁ କାମନା କରନ୍ତି। ତା'ର ବକ୍ଷ, ତା'ର ଭୁଜ, ତା'ର ଅଧରକୁ କାମନା କରି ତୀବ୍ର ବାସନାଜ୍ୱାଳାରେ ନିଜକୁ ଦଗ୍ଧ କରନ୍ତି।

ରାତ୍ରି ରାତ୍ରି ଧରି ମୈଥିଳୀ ଆତ୍ମବିସ୍ମୃତ ହୋଇ ଅଭିନୟ କରେ। ସେ ଜାଣେ, ତା'ର ସୁଖ୍ୟାତି ଅଛି।

ସେ ଜାଣେ, ତା'ର ରୂପରେ ମାଦକତା ଅଛି। ସେ ଜାଣେ, ତା'ର କଣ୍ଠର ସାଧନା ଅଛି।

ଏତେ ଜଣା-ଅଜଣା ଭିତରେ ସେ ଶେଷରେ କ୍ଲାନ୍ତ ହୁଏ। ସାଜଘରକୁ ଫେରି ଆସି ସେ ଦେଖେ ଗୁଚ୍ଛ ପରେ ଗୁଚ୍ଛ ରକ୍ତ ଗୋଲାପ, ଆଉ ପ୍ରତ୍ୟେକଟି ସେଇ ପୁଷ୍ପମଞ୍ଜରୀରେ ଖଣ୍ଡିଏ ଖଣ୍ଡିଏ କାଗଜ-ରସିକ ଦାତାର ନାମ, ପରିଚୟ ଓ ଧାମର ଠିକଣା ସେଥିରେ ଅଙ୍କିତ ରହିଛି। 'ମନେରଖିବେ', 'ଆଜୀବନ ସେବକ', 'ଅତି ଅନୁଗୃହୀତ ଦାସାନୁଦାସ'– ଏଇଭଳି ନାମାବଳୀରେ କାଗଜର ନିମ୍ନ ଅଂଶଟି ପରିପୂର୍ଣ୍ଣ। କେହି କେହି ବା ନିମନ୍ତ୍ରଣ କରିଥାନ୍ତି ପ୍ରସିଦ୍ଧ ହୋଟେଲକୁ। ନିଷ୍କଳଙ୍କ ନିଷ୍ପାପ ଏଇ ସ୍ୱନାମଧନ୍ୟ ଗୃହୀଗଣ ଭୁଲ୍‌ରେ ଡାକନ୍ତି ନାହିଁ ମୈଥିଳୀକୁ ନିଜର ସୁନାର ସଂସାରଆଡ଼େ। ଡାକନ୍ତି ଅନ୍ୟଆଡ଼େ, ଯେଉଁଠି କେତୋଟି ମୁହୂର୍ତ୍ତ ସେମାନେ ମୈଥିଳୀକୁ ଘେନି ସୁନାର ସଂସାର ପରିବର୍ତ୍ତେ ହୀରାର ଜଗତ ସୃଷ୍ଟି କରିବେ।

ମୈଥିଳୀ ଖୋଜିନିଏ ତା'ର ହଜିଲା ଦିନଗୁଡ଼ିକୁ, ତା'ର ପିଲାବେଳର ସେଇ ସ୍ମୃତି। ସାଧାରଣ ଝିଅ ଅପେକ୍ଷା ଫ୍ରକ୍ ପିନ୍ଧୁଥିବା ବେଳୁ ବି ତା' ଚାହାଣି ଓ ରୂପରେ ଗୋଟାଏ କିଛି ଅନନ୍ୟତମ ଥିଲା।

ବାପା ତା'ର ହାରମୋନିୟମ୍ ଟିଉସନ୍ ମାଷ୍ଟର। ସଂସାରରେ ବହୁ କୁଟୁମ୍ବ। ସେତିକି ଯାହା ପେଷା। ସେତେବେଳେ ସଂଗୀତ ଶିଖିବା ପାଇଁ ଲୋକଙ୍କର ରୁଚି ଅନୁକୂଳ ହୋଇଆସୁଛି। ପୁଅ-ଝିଅଙ୍କୁ ଦୁଇପଦ ଗୀତ ଶିଖାଇବା ପାଇଁ ଓଜର ଆପତ୍ତି ନାହିଁ। ସେତିକିବେଳେ ମୈଥିଳୀର ବାପା କିଛି ରୋଜଗାର କରୁଥିଲେ ଟିଉସନ୍ କରି।

ମୈଥିଳୀର କଣ୍ଠ ଶ୍ରୀଯୁକ୍ତ ଥିଲା। ବାପା ତାକୁ ଶିଖାଇଲେ। ଗୀତ ଶିଖୁ ଶିଖୁ କିଶୋରୀର ପାଦରେ କ୍ରମେ କ୍ୱଣିତ ହେଲା ନୂପୁର। ସେଇ ଅବସ୍ଥାରେ ସେ ସଚେତନ ହୋଇଉଠିଲା ଏକ ପୂର୍ଣ୍ଣ-ନାରୀର ସମ୍ଭାର ଭିତରେ...

ତାପରେ ସେ ଝରିଆସିଲା ଗୋଟିଏ କ୍ଷୁଦ୍ର ତଟିନୀ ଭଳି। ସେ ଜାଣେନା କେବେ କିପରି ସେ ଠାବ କଲା ସହରର ବିଖ୍ୟାତ ରଙ୍ଗାଳୟକୁ। ଆଜି ମୈଥିଳୀ ଯୋଗୁ ଥିଏଟର ସଂସ୍ଥାଟିର ଏତେ ପ୍ରଶସ୍ତି। ମୈଥିଳୀ ତାହାର ପ୍ରାଣସର୍ବସ୍ୱ।

ସାଜଘର ଦରଜାରେ ଶବ୍ଦ ହେଲା–

–ମୁଁ ଆସିପାରେ କି ?

ଶିଥିଳ କବରୀ ଓ କେଶବାସକୁ ସଜାଡ଼ି ନେଇ ମୈଥିଳୀ ଡାକିଲା– ଆସନ୍ତୁ।

ସେଇ ଯୁବକ...ଯେ ଅତି ଶାନ୍ତଭାବରେ ଅଭିନୟ ଦେଖେ। ମୈଥିଳୀ ଦେଖିଛି ଏ ଯୁବକଟିକୁ...ସୁନ୍ଦର ସୁଦର୍ଶନ ଯୁବକ। ଭାସିଯିବାକୁ ଚାହୁଁଛି ସେ ମୈଥିଳୀର ମନସ୍ରୋତ ଅଭିମୁଖେ।

ବହୁବାର ପ୍ରେକ୍ଷାଳୟରୁ ଦୁହିଁଙ୍କ ଭିତରେ ଦୃଷ୍ଟି ବିନିମୟ ହୋଇଛି। ମାତ୍ର କାମନାଦୀପ୍ତ କୌଣସି ଯୁବକର ଦୃଷ୍ଟି ରେଖା ସହିତ ମୈଥିଳୀ ଏତେ ପରିଚିତା ଯେ ଏ ଯୁବକର ଶାନ୍ତ ଚାହାଣିକୁ ବି ସେ ଅଶ୍ଳୀଳ ବୋଲି ଭାବିଥିଲା। ମାତ୍ର କ୍ରମେ ସେ ବୁଝିପାରିଲା, ଯୁବକ କଳାଭକ୍ତ; ସେ ମୈଥିଳୀର ଆତ୍ମାକୁ ସ୍ପର୍ଶ କରିବାକୁ ଚେଷ୍ଟା କରୁଛି। ସେଥିପାଇଁ ତା'ର ଭାବ ବିମୂଢ଼ ଓ ସ୍ତବ୍ଧ।

ଯୁବକଟି ଧୀରେ କହିଲା– ମୁଁ କିଛି ଉପହାର ଆଣିପାରିନି। ମାତ୍ର ମୁଁ କେବଳ ଆସିଛି ଆପଣଙ୍କର

ଚମତ୍‌କାର କଳା ପରିବେଷଣକୁ ଅଭିନନ୍ଦନ ଜଣାଇବା ପାଇଁ। ସେତିକି ଗ୍ରହଣ କରନ୍ତୁ।

ଅଭିନେତ୍ରୀ ପ୍ରତି 'ଆପଣ' ସମ୍ବୋଧନ ଏଇ ପ୍ରଥମ ଥର ଜୀବନରେ ଶୁଣିଲା ମୈଥିଳୀ। ଅନେକେ ଚାଟୁବାକ୍ୟ ତଳେ ବିଷଦୀପ୍ତ ଜ୍ୱାଳା ଘେନି ଆସନ୍ତି। ଏମିତି ହୁଏ ଆରମ୍ଭ...ପରେ ପରେ ଦଂଶନ। ନା, କିନ୍ତୁ ଏ ଯୁବକର କଥାରେ ସେଭଳି ଦହନ ନାହିଁ। ତେବେ କିଏ ଜାଣେ? ପୁରୁଷ ତ?

ଯୁବକଟି ଅଳି କଲା– ଆପଣ ଆସିବେ ମୋ ସାଙ୍ଗେ? ଖୋଲା ପବନରେ ଟିକିଏ ବସିବା।

ମୈଥିଳୀ ହସିଲା। ଖୋଲା ପବନ? କଅଣ ଚାହେଁ ଏ ତରୁଣ? ଅଭିନେତ୍ରୀ ସହିତ ରୋମାନ୍‌ସ? କିନ୍ତୁ ତା'ର ଦାମ୍ ଯେ ଖୁବ୍ ବେଶୀ ତାକୁ ଦେବାକୁ ହେବ। ନା, ଏତେ ସୁନ୍ଦର ସରଳ ମୁହଁ ଉପରେ ଇତର ଭାବ ସେ ତ ଦେଖୁନାହିଁ! ତେବେ ଏ ଆକର୍ଷଣର ଅର୍ଥ କଅଣ?

ମୈଥିଳୀ ରାଜିହେଲା। ରଙ୍ଗମଞ୍ଚ ନିଶୂନ। କୋଳାହାଳ କରି ଦର୍ଶକମାନେ ଫେରିଗଲେ। ମୈଥିଳୀର ଅଭିନୟରେ ଦର୍ଶକ ମୁଗ୍ଧ। ଅଯାଚିତ ଭାବରେ ଆସିଛି ଫୁଲଗୁଚ୍ଛ। କିଏ କେତେ ଦେଇ ଯାଇଛନ୍ତି।

ଦୁହେଁ ଗଲେ ନଦୀ କୂଳକୁ। ସେଇଠି ଖୋଲା ପବନ ଅପର୍ଯ୍ୟାପ୍ତ। ଯଦି ଯୁବକର ମନ ଖୋଲାଥାଏ, ତେବେ ସେଇ ଖୋଲା ପବନର ସ୍ପର୍ଶ ଆଣିବ ଦୁହିଁଙ୍କ ମନରେ ଆନନ୍ଦ। ସେ ଆନନ୍ଦର ରୂପ କଅଣ ହେବ କେହି ଜାଣନ୍ତି ନାହିଁ।

ମନେପଡ଼େ ମୈଥିଳୀର ଅଭିନେତ୍ରୀ-ଜୀବନ। ପ୍ରଚଣ୍ଡ ନାଭିଶ୍ୱାସ ଭିତରେ ସେ ବଞ୍ଚି ରହିଛି। ପ୍ରସ୍ତାବ କରିଥିଲେ ମ୍ୟାନେଜର, ଜଣେ କାହାକୁ ଧରିନେଇ ସେ ଘର ସଂସାର କରୁ। ରଙ୍ଗାଳୟ ଉଭୟ ଦିଗକୁ ପ୍ରସାରିତ ହୋଇ ରହିଛି। ମୈଥିଳୀ ଅଭିନୟ କରିବ କାହାର ପ୍ରଣୟିନୀ, କାହାର ସଖୀ କାହାର ଜାୟା ହୋଇ; ମାତ୍ର ଏ ଅଭିନୟ କେବଳ। ଅସଲରେ ସେ ହୋଇଯାଉ କାହାର ଘରଣୀ...ତା'ପରେ ମାଆ। ତାହାହେଲେ ଯୌବନ ଖସିବାଯାଏ, ଅଧର କଳାପଡ଼ିବାଯାଏ, ଆଖିର ଚାହାଣି କୁଟିଳ ହେବାଯାଏ, ରଙ୍ଗମଞ୍ଚ ଯୌଥ-ଜୀବନ ଧରି ରହିଥିବ। ମ୍ୟାନେଜରଙ୍କର ଏ କର୍ମାନୁଷ୍ଠାନ ଭିତରେ ରଙ୍ଗାଳୟର ସଂସାର ସାର ହୋଇ ଉଠିବ।

ମୈଥିଳୀ ରାଜି ହୋଇନାହିଁ। ସେ ରହିବ ଅବିବାହିତା। କଳା ଓ ମୈଥିଳୀ ଏ ଦୁଇଟି ଅଭିନ୍ନ ରହିବେ।

ପ୍ରଲୋଭନ ଆସିଛି। ବହୁ ଆୟାସରେ ମୈଥିଳୀ ଧୃତି ଧରି ଛିଡ଼ା ହୋଇଛି। ମାତ୍ର ଏ ଯୁବକ ତାକୁ ଚଞ୍ଚଳ କରୁଛି। କିଏ ସେ ଯୁବକ? ତା'ର ପରିଚୟ କିଛି ସେ ଜାଣେନା। ଅଥଚ ମୈଥିଳୀ ଅଭିନେତ୍ରୀ-ଜୀବନରେ ପ୍ରଥମ ଥର ପାଇଁ ଏଇ ଅପରିଚିତ ଯୁବକ ସହିତ ଚାଲିଆସିଛି ନଈକୂଳକୁ।

ଶିହରି ଉଠିଲା ମୈଥିଳୀ। ଆଉ ସେ ନିଜକୁ ସମ୍ଭାଳି ପାରିବ ନାହିଁ କି? ମାତୃତ୍ୱ ଡାକ ଦେଇଛି କି?

ନଈକୂଳର ସ୍ୱପ୍ନମୟ ପରିବେଶ ଆଗରେ ଖରସ୍ରୋତା ତଟନୀ। ରାତ୍ରି ବଢ଼ିଛି।

ଯୁବକଟି ସଂକୁଚିତ ଭାବରେ କହିଲା– ଆପଣ ମୋର ପ୍ରାର୍ଥନା ଶୁଣି ଏମିତି ଯେ ରାଜି ହୋଇଯିବେ, ମୁଁ ବିଶ୍ୱାସ କରିପାରୁନି। ମୁଁ ବାସ୍ତବରେ ଆପଣଙ୍କ ଅଭିନୟ ଦେଖି ମୁଗ୍ଧ ହୋଇଛି। ଏତେ ଅଶ୍ରୁ, ଏତେ

ହସ ଛୁଟାଇ ଆପଣ କିପରି ଏତେ କଥା କହିପାରନ୍ତି ? ଏ କଳାର କି ପ୍ରତିଦାନ ଅଛି, କିଏ ବା ଦେବ ?

ମୈଥିଳୀ ଟିକିଏ ହସି ରସିକତା କରିବା ଉଦ୍ଦେଶ୍ୟରେ କହିଲା– କାହିଁକି ଆପଣ ?

ଯୁବକର ହୃଦୟରେ ପ୍ରଚଣ୍ଡ ଘୂର୍ଣ୍ଣୀ ଘୂରିଲା– ମୁଁ ଦେବି ? କଅଣ ବା ମୋ ପାଖରେ ଅଛି ଆପଣଙ୍କୁ ଦେବାକୁ ? ତେବେ ଥରେ ଥରେ ମନେହୁଏ, ଏ ଲୋକଗୁଡ଼ାଙ୍କର ବିଷଦୃଷ୍ଟିରୁ ମୁଁ ଆପଣଙ୍କୁ ରକ୍ଷା କରିପାରନ୍ତି କି ? ଆପଣ ଜାଣିବେ ନାହିଁ, ଆପଣ ଅଭିନୟ କଲାବେଳେ ଶିକ୍ଷିତ ଦର୍ଶକ ସମାଜ କିମିତି ଅଶ୍ଳୀଳ ଇଙ୍ଗିତ କରନ୍ତି ? ସେମାନେ କଅଣ ଦେଖିବାକୁ ଅବା କଅଣ ଶୁଣିବାକୁ ଆସିଥାନ୍ତି, ସେମାନେ ଜାଣନ୍ତି। ମୁଁ ଭାରି କଷ୍ଟ ପାଏ।

ମୈଥିଳୀ ଅନୁଭବ କଲା ଆଉ ଦଶଜଣ ଦର୍ଶକ ଭଳି ଏ ଯୁବକର ରୁଚି କଦର୍ଯ୍ୟ ନୁହେଁ। ମାତ୍ର ଏ ଦେଖାଦେଖିକୁ ମୂଳରୁ ମାରି ନ ଦେଲେ ଯୁବକ ଜୀବନରେ ବିଭ୍ରାଟ ଆସିବ। ମୈଥିଳୀ ଜାଣେ ରଙ୍ଗାଳୟର ଜଣେ ପ୍ରତିରାତ୍ରିର ନର୍ତ୍ତକୀ ଅଭିନେତ୍ରୀକୁ କୁଳବଧୂ କରି ନେବାପାଇଁ ସମାଜର ସହସ୍ର ଗ୍ରନ୍ଥି ଛିଣ୍ଡିଯିବ। ଏ ଭାବନା ଦୁର୍ଭାବନା ମାତ୍ର। ତେବେ କାହିଁକି ବିଚରା ତରୁଣର ଜୀବନଭରା ଦୁଃଖର ସେ କାରଣ ହେବ ?

ରାତ୍ରି କ୍ରମେ ଗଭୀର ହେଉଥିଲା। ଯୁବକଟି ମୈଥିଳୀକୁ ଥରେ ମାତ୍ର ସ୍ପର୍ଶ କରି ଆଦର କରିନାହିଁ। ନା, ସେ ପଥ ସେ ଜାଣେନାହିଁ। ସେ ମଧୁର ବାକ୍‌ଭଙ୍ଗୀ ବି ତାକୁ ଅଜ୍ଞାତ। ଅର୍ଥଦାନ କରି ମନ ଆକର୍ଷଣ– ଏ ପନ୍ଥା ବି ତାକୁ ଅଜଣା।

ଦୁହେଁ ଫେରିଆସିଲେ।

ରାତ୍ରି ପରେ ରାତ୍ରି ରଙ୍ଗାଳୟରେ ସେ ଯୁବକ ବସିରହିଲା। ମାସ ମାସ ଏହିପରି ଚାଲିଗଲା। ଆଉ ଥରେ ଅଧେ ଦେଖା ଅବଶ୍ୟ ସମ୍ଭବ ହୋଇଛି।

ହଠାତ୍ ମୈଥିଳୀ ଦେଖିଲା ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ଯୁବକଟି ବସେ ସେ ସ୍ଥାନଟି ଶୂନ୍ୟ। ଅଗ୍ରିମ ଅର୍ଥ ଦେଇ ସେ ମାସକ ପାଇଁ ଆଗତୁରା ସ୍ଥାନ ରଖିଥାଏ। କ୍ୱଚିତ୍ ଏଭଳି କଳାପ୍ରେମୀ ପୃଷ୍ଠପୋଷକ ରଙ୍ଗମଞ୍ଚର ଅଦୃଷ୍ଟକୁ ମିଳିଥାଏ।

ମୈଥିଳୀ ଛନ୍ଦହୀନ ହୋଇ ପଡ଼ିଲା। ଅଭିନୟରେ ତ୍ରୁଟି ଦେଖାଗଲା। ନୃତ୍ୟରେ ପ୍ରମାଦ ଘଟିଲା। ମ୍ୟାନେଜର ସାବଧାନ କରିଦେଲେ। ମନର ଏକମାତ୍ର ଆକର୍ଷଣ ଯାହା ପୂର୍ଣ୍ଣ ବିକଶିତ ହୋଇ ପାରି ନଥିଲା, ସେତକ ବି ମୈଥିଳୀର ହୃଦୟରୁ ଛିନ୍ନ ହୋଇଗଲା।

ପ୍ରତି ସନ୍ଧ୍ୟାରେ ଅଭିନୟ ପୂର୍ବରୁ ସେ ଦେଖିନିଏ ଯୁବକଟି ଆସିଛି କି ନାହିଁ। ସେ ଦେଖେ ଏ ପ୍ରସଙ୍ଗର ଗତିପଥ ବେଶୀ ଦୂର ପ୍ରସାରିତ ନୁହେଁ। ତେବେ ବି ମୈଥିଳୀ ଚାହିଁ ରହେ ସେଇ ତରୁଣର ସରଳ ଶାନ୍ତ ବୁଦ୍ଧି ଦୀପ୍ତ ମୁହଁଟିକୁ।

ବାରଂବାର ତ୍ରୁଟି ଘଟିବାରୁ ମ୍ୟାନେଜର ମାର୍ଜନା କରିବାରେ କୁଣ୍ଠା ପ୍ରକାଶ କଲେ। ମୈଥିଳୀ ସଚକିତ; ମାତ୍ର ସେ ସ୍ଥିର ରହିପାରିଲା ନାହିଁ।

ସେଦିନ ନୂଆ ନାଟକର ଉଦ୍‌ବୋଧନ। ମୈଥିଳୀର ଅନିଚ୍ଛା ସତ୍ତ୍ୱେ ସେ ସାଜିଛି କୁଳବଧୂର ରୂପସଜ୍ଜା। ନବବିବାହିତା ବଧୂ ଭୂମିକାରେ ମୈଥିଳୀ ଅଭିନୟ କରିବ। ମନରେ ଯାହା ସ୍ୱପ୍ନ ରହିଯିବ, ଅଭିନୟରେ ସେ ହେବ ଜୀବନ୍ତ।

ସେଇ ତରୁଣଟି ବାରମ୍ବାର ଦେଖାଦେଲା ତା'ର ମାନସ ପଟରେ। ସେ ଯଦି ଏମିତି ନିଜକୁ ନ

ଲୁଚାଇ ତା'ର ହାତ ଧରି ଡାକିଥାନ୍ତା–'ଆସ ମୈଥିଳୀ, ମୁଁ ତୁମ ସୀମନ୍ତରେ ସିନ୍ଦୂରରେଖା ଆଙ୍କିଦେବି। ଅଭିନେତ୍ରୀର ଜୀବନ ଏତିକିରେ ଶେଷ ହେଉ; ମୋ ସଂସାରର ନେତ୍ରୀରୂପରେ ତୁମେ ଏଣିକି ଶୋଭାପାଅ'– ତେବେ ମୈଥିଳୀ ତା'ର ସ୍ୱାମୀ ଭୂମିକାରେ ଅଭିନୟ କରୁଥିବା ରାଜୀବାବୁ ଉପରେ ଥୁ'-ଥୁ' ଛେପ ପକାଇ ଦଉଡ଼ିଯାଆନ୍ତା ନବୀନ ନୀଡ଼ ଅଭିମୁଖରେ...ଆଃ, କି ଆନନ୍ଦ ସେ...କି ଶିହରଣ!!

–ଚିଠି!

– ଚିଠି? ମୋ ନାଁରେ?

ମୈଥିଳୀ ଭୟକାତର ଚକ୍ଷୁରେ ପଢ଼ିଲା ଚିଠିଟିକୁ–

ପ୍ରିୟତମା,

ଏ ଡାକରେ ଚମକି ପଡ଼ିବ ନାହିଁ। ଅଭିନେତ୍ରୀକୁ ପ୍ରିୟତମା କହିବାକୁ ଏ ଦେଶରେ ବହୁ ପୁରୁଷ ଅଛନ୍ତି, କିନ୍ତୁ ମୁଁ ସେ ପୁରୁଷ ନୁହେଁ। ଦୁଇ ତିନିଥର ଦେଖାସାକ୍ଷାତ ବେଳେ ମୋ ହୃଦୟର କାମନାକୁ ମୁଁ ତମ ପାଖେ ପ୍ରକାଶ କରିପାରିନାହିଁ। ମାତ୍ର ତୁମ ପାଖେ ଯାହା ପ୍ରକାଶ କରିପାରି ନଥିଲି, ମୁଁ ବାପାଙ୍କ ପାଖେ ପ୍ରକାଶ କରିଛି। ମାଆଙ୍କୁ ଜଣାଇଛି। ମୁଁ ଜାଣିଥିଲି, ମୋ କଥା ତୁମେ ଏଡ଼ିଦେବ ନାହିଁ।

ମୋ ସଂସାରରେ ତୁମକୁ କୁଳବଧୂ କରି ଆଣିବା କଥା ଜାଣି ବାପା ମତେ ଶତ ଧିକ୍କାର ଦେଲେ। କହିଲେ 'ଅଭିନେତ୍ରୀ ମାତ୍ରକେ ଶତଶଯ୍ୟାର ନାୟିକା'। ମୁଁ ବାପାଙ୍କର ଏ ଅସଙ୍ଗତ ପ୍ରଳାପକୁ ମାର୍ଜନା ନକରି ତାଙ୍କୁ କହିଥିଲି, 'ମୈଥିଳୀ ବିଷୟରେ ତାଙ୍କର ଏ ଧାରଣା ଭୁଲ। କେବଳ ମୈଥିଳୀ କାହିଁକି, ଯେ କୌଣସି ଅଭିନେତ୍ରୀ ପକ୍ଷରେ ଏ କଟୁକ୍ତି ଅମାର୍ଜନୀୟ। କାରଣ ଯଦି ସ୍ଖଳନ ଥାଏ, ତେବେ ତା' ମୂଳରେ ଆମରି ଭଳି ନରପିଶାଚର କରଣୀ ବେଶୀ।' ବାପା ରାଗରେ ଧୈର୍ଯ୍ୟ ହରାଇ ମତେ ଆଘାତ କଲେ। ମୁଁ କ୍ଷୋଭ, ଅପମାନ ଆଉ ଦୁଃଖରେ ଘର ଛାଡ଼ି ଚାଲିଯାଉଛି। ନିଜ ଗୋଡ଼ରେ ନିଜେ ଛିଡ଼ା ନ ହେବା ପର୍ଯ୍ୟନ୍ତ ମୁଁ ଫେରିଆସୁନି ଏବଂ ଯେଉଁ ଦିନ ଫେରିଆସିବି, ସେଦିନ ଦେଖିବ ମୈଥିଳୀ, ମୁଁ ନିଜେ ତମ ଭଳି ଜଣେ କଳାବିତ୍ ହୋଇପାରିଛି। କଳା ସହିତ କଳାର ପରିଣୟ ବିରୁଦ୍ଧରେ ସେତେବେଳେ ବାପା, ସମାଜ, ସମାଜପତିମାନେ ପଦେ କଥା କହିପାରିବେ ନାହିଁ।

ତେଣୁ ତୁମେ ଅପେକ୍ଷା କରିବ...ମୃତ୍ୟୁ ପର୍ଯ୍ୟନ୍ତ ଅପେକ୍ଷା କରିବ...ମୁଁ ଆସିବି...କଳାବିତ୍ ହୋଇ ଆସିବି। ସେତେଦିନଯାଏ ତୁମେ ରହିଥିବ ସୀମନ୍ତରେ ମୋର ଜୀବନଚିହ୍ନ ଧରି...ଲାଜ କରିବ ନାହିଁ। ମୁଁ ଚାଲିଲି। ବିଶ୍ୱାସ ରଖିବ। ଭାଙ୍ଗିପଡ଼ିବ ନାହିଁ।

ତୁମର

ହତଭାଗ୍ୟ

ପ୍ରଦୀପ

× × ×

ଚିକିତ୍ସାଳୟର ୱାର୍ଡ ଭିତରେ ପଶୁ ପଶୁ ଡାକ୍ତର କହିଲେ–ଆଚ୍ଛା ନର୍ସ, ସେଇ ଯେ ରୋଗିଣୀ ସବୁବେଳେ ପ୍ରଳାପ କରୁଥାଏ 'ସେ ଆସିବ, ସେ ଆସିବ' ତା'ର ଅବସ୍ଥା କିମିତି ଅଛି?

ନର୍ସ ମୃଦୁକଣ୍ଠରେ କହିଲେ– ସାର୍, ତା'ର ସମୟ ହୋଇ ଆସିଲା। ବିଚାରୀର ପାଖଆଖ ଲୋକ

କେହି ନାହାଁନ୍ତି। ଲାସ୍ ଯେ କିମିତି ଉଠବ, ଚିନ୍ତାର କଥା ହେଲାଣି।

ଡାକ୍ତର ଗମ୍ଭୀର ଭାବରେ ଚଉକି ଉପରେ ବସିପଡ଼ି କହିଲେ– ଦେଖ ନର୍ସ, ତୁମେ ସେଇ ଗୋଟିକ କଥା ନକହି ଆଉ ସବୁ କହିବ। କହିବ, ରୋଗ ମାରାତ୍ମକ, ଚିକିତ୍ସାର ଫଳ ହେଉନାହିଁ, ଅବା ମତେ କହିବ ଚିକିତ୍ସାର ଧାରା ବଦଳାଇବାକୁ – ଏସବୁ କହିବ। କିନ୍ତୁ କେଉଁ ରୋଗୀ ବା ରୋଗିଣୀର କେହି ପାଖଆଖ ଲୋକ ନାହାନ୍ତି ଏ କଥା ଶୁଣିଲେ କିମିତି ଗୋଟାଏ ବେଦନା ମୁଁ ଅନୁଭବ କରେ, ଯାହା ମୁଁ ପ୍ରକାଶ କରିପାରିବି ନାହିଁ। ଗୋଟାଏ ପଶୁର ରକ୍ଷକ ଅଛି, ଅନାଥ ଶିଶୁ ପାଇଁ ଅନାଥାଶ୍ରମ ଅଛି। ଯାତ୍ରୀ ଆସେ ଧର୍ମଶାଳାକୁ। ଅଥଚ ଗୋଟିଏ ରୋଗିଣୀର କହୁଛ କେହି ନାହିଁ ? ଆଶ୍ଚର୍ଯ୍ୟ !

–ଆଶ୍ଚର୍ଯ୍ୟ କିଛି ନୁହେଁ ସାର୍– ଅଥଚ ଏଇ ରୋଗିଣୀକୁ ଦେଖିବା ପାଇଁ, ଯେତେବେଳେ ତାକୁ ରୋଗ ଧରିନଥିଲା, ହଜାର ହଜାର ଦର୍ଶକଙ୍କର ମନ ଅସ୍ଥିର ହୋଇ ଉଠୁଥିଲା। ରାତି ପରେ ରାତି ତା'ର ଅଭିନୟ ଦେଖିବା ପାଇଁ ସହରର ଜନତା ପାଗଳ ହୋଇଯାଉଥିଲା। ଆଉ ଆଜି ଏତେ ବନ୍ଧୁ ତା'ର ଥାଉ ଥାଉ ତାକୁ ବୋଧହୁଏ କାଢ଼ିବା ପାଇଁ ମେହେନ୍ତର ଡାକିବାକୁ ପଡ଼ିବ। ଆପଣ ନୂଆ ଆସିଛନ୍ତି। ମୈଥିଳୀର ଖ୍ୟାତି ଶୁଣିନାହାନ୍ତି। ମୁଁ ସବୁ ଦେଖିଛି, ଶୁଣିଛି। ଆଜି ତେଣୁ ମୁଁ ନିକିତିରେ ତଉଲ କରୁଛି। ଭାରି ମଜା ଏ ତଉଲିବା କାମ। ବିଚାରୀ ଥିଲା କଅଣ, ହେଲା କଅଣ ? ଭାଗ୍ୟ...

ସେବିକା ଖସିଆସୁଥିବା ଦୁଇବିନ୍ଦୁ ଅଶ୍ରୁକୁ ପୋଛିଆଣିଲେ ଆପ୍ରନ୍‌ରେ...

ଡାକ୍ତର ଗମ୍ଭୀର ଭାବରେ ରହି ଅନାଇଲେ ଦିଗନ୍ତକୁ...

ଏଡ଼େ ବଡ଼ ସହରଟା ସେ ପାହାନ୍ତି ପହରଟାରେ ଖୁବ୍ ଶୋଇପଡ଼ିଥିଲା ବୋଧ ହୁଏ; କିଛି ଜାଣିପାରିଲା ନାହିଁ।

ବିଖ୍ୟାତ ଚନ୍ଦ୍ରକାନ୍ତି ଥିଏଟର୍ସର ଗେଟ୍ ପାଖଦେଇ ଗୋଟାଏ ନିବୁଜ ମ୍ୟୁନିସିପାଲଟି ମୁର୍ଦାର ଗାଡ଼ିର ଚକ ଗଡ଼ିଯାଉଥିଲା। ଦୁଇଟା କୁକୁର ଗାଡ଼ିଟାର ପଛେ ପଛେ ଭୋ-ଭୋ ଡାକ ଛାଡ଼ି, କିଛି ବାଟ ଚାଲିଯାଇ ପୁଣି ଫେରିଆସି ଦିହକୁ ଦିହ ଲଗାଇ ତାଙ୍କ ଉଷୁମ ଗାତ ଭିତରେ ଶୋଇପଡ଼ିଲେ।

ମେହେନ୍ତର ଭାରି ଖୁସି। ମଡ଼ାର ବେକରେ ଗୋଟିଏ ଛୋଟ ସୁନାଚେନ୍ ଥିଲା। ସେ ହାତସଫେଇ କରିପାରିଛି। ଯଥା ଲାଭ... ନହେଲେ ଏ କନକନିଆ ଶୀତୁଆ ପାହାନ୍ତାରେ ଏ ଯେଉଁ ମୁର୍ଦାରବୁହା କାମ !!

ମେହେନ୍ତର ଜାଣି ନଥିଲା– ସେ ଏକା କାହିଁକି, ଏ ଦୁନିଆ ବି ଜାଣି ନଥିଲା– ସୁନାହାର ତଳକୁ ଗୋଟିଏ ଲକେଟ୍ ଝୁଲୁଛି, ଆଉ ତା'ରି ଭିତରେ ହାତ ଲେଖା କାଗଜ ଉପରେ ତିନୋଟି ଅକ୍ଷର...

ପ୍ର-ଦୀ-ପ

ଯେଉଁ ହାତ ସେ ଅକ୍ଷରଗୁଡ଼ିକ ଲେଖିଥିଲା, ସେ ହାତର ଅଭିନୟ-ମୁଦ୍ରା ଆଜି ମୁଠାଏ ମାଟିକୁ ଧରି ଅନ୍ତିମ ମୁଦ୍ରା ଆଙ୍କିଦେବ। ଅଭିନୟ ଶେଷ କରି ସେ ଆଜି ବାହୁଡୁଛି ସୁନ୍ଦର ନବୀନ ପଥ ଉପରେ– ଯେଉଁ ପଥ ସ୍ନେହହୀନ, ମମତା-ହୀନ, ଧୂସର ମରୁପଥ ନୁହେଁ।

■■■

# ଚକାଡୋଳାଙ୍କ ଡୋଳା ଆଗରେ

ଚକାଡୋଳାଙ୍କ ଡୋଳା ଆଗରେ ସବୁ ଘଟିଗଲା।

ମହତ୍ ପୁରୁଷ...ପୁଣି ସେ ଦେବତା...ତାଙ୍କ ଆଗରେ ତାଙ୍କୁ ସାକ୍ଷୀ ରଖି ଯେତେବେଳେ ଏସବୁ ଘଟଣା ଘଟିଗଲା, ମନେହେଲା ଆଉ ପାପକର୍ମ କରିବାକୁ ସଙ୍କୋଚ କାହାରି ରହିବ ନାହିଁ।

କାନ୍ତି ଥାଳିଭରା ନଡ଼ିଆକୁ ଦେଖିଲା। ପ୍ରତ୍ୟେକଟି ଶ୍ରୀଫଳ ଉପରେ ଫୁଲ ରହିଛି। ଆଗରୁ ତା'ର କୋଡ଼ିଏଟି ବସନ୍ତବାହୀ ଜୀବନ ଭିତରେ ଏମିତି ଫଳଭରା ଥାଳି ସେ ଅବଶ୍ୟ ଦେଖିଛି; ମାତ୍ର ଏ ଯେ ତା'ର ସ୍ୱାଗତ ଜୀବନର ଅତି ଅଭ୍ୟର୍ଥିତ ଫଳ ଗ୍ରହଣ।

ସୂର୍ଯ୍ୟମନ୍ଦିର...ନା, ଏ ସେ କଳାଲାସ୍ୟମୟୀ କୋଣାର୍କ ସୂର୍ଯ୍ୟମନ୍ଦିର ନୁହେଁ। ସେଠାରେ ନଟୀମାନଙ୍କର ଅନ୍ତିମ ନୃତ୍ୟଛନ୍ଦର ଶେଷ ନିକ୍ୱଣଧ୍ୱନି ସଂଚରିଯାଇଛି ବେଳାନୀଳର ସ୍ପର୍ଶରେ...କେଉଁ ଅଜଣା ଜଗତକୁ ତାହା ପ୍ରସରିଯାଇ ବିଶ୍ୱଚେତନାରେ ହୁଏତ ଭୂଷିତ ହୋଇଯାଇଛି।

ଏ ଯେଉଁ ସୂର୍ଯ୍ୟମନ୍ଦିର, ଏଠି ନଟୀ ଚରଣରେ ଆଦ୍ୟ ଅଲକ୍ତକ ରଞ୍ଜନୀର ପ୍ରଥମ ରେଖା ଟଣାହୁଏ। କେତେ ପୁଲକ, କେତେ ରୋମାଞ୍ଚ, କେତେ ଶିହରଣ...

ଏଠାରେ ସୂର୍ଯ୍ୟ ତଥା ଜଗନ୍ନାଥଙ୍କୁ ସାକ୍ଷୀ ରଖି କେଉଁ କାଳରୁ ଅଜସ୍ର ଯୁବକଯୁବତୀ ଛନ୍ଦି ହୋଇ ଯାଆନ୍ତି...ପ୍ରଥମ ସଂକଳ୍ପ...ତାପରେ ବାଣ, ରୋଷଣି, ଅଳତା, ହୁଳହୁଳି, ଅବଗୁଣ୍ଠନ, ସଲଜ୍ଜ ଚାହାଣୀ, ଏକାନ୍ତ ହୋଇଯିବାର ପୁଲକିତ ପରିପାଟୀ।

ଜଗନ୍ନାଥଙ୍କ ମନ୍ଦିର ଭିତରେ... ଠିକ୍ କମଳାଙ୍କ ଆଖିଆଗରେ ପତିତପାବନଙ୍କ ଚାହାଣି ତଳେ ଏ ଶୋଭା ଫୁଟୁଛି। ଏଇଠୁ ସଂକଳ୍ପ ନାରୀକେଳ ଚାଲିଯାଏ ଅନୂଢ଼ା କନ୍ୟା ମଥା ଉପରକୁ, ସ୍ପର୍ଶରେ ସେ ହୁଏ ଶିହରିତ। ସଂସାରର ଆଉ ଗୋଟିଏ ଶିକୁଳି ଚାରିଟା ପାଦକୁ ଝନତ୍କାରରେ ବାନ୍ଧିଦିଏ।

ତେଣିକି ଚାଲେ ଜୀବନର ଜଞ୍ଜାଳଭରା ସିନ୍ଧୁ ଉପରେ ନୌକାଭସାର କେତେ ଉତ୍ସବ। ସତୀ ଅସତୀ, ଧର୍ମ ପାପ, ଲୋଭ ଓ ମୃତ୍ୟୁର କେତେ କାହାଣୀ ରଚିତ ହୋଇଯାଏ।

—ଦୟାକରି ଆସିବ।

—କେଉଁଠିକି ?

—କାନ୍ତିର ନିର୍ବନ୍ଧ; ସୂର୍ଯ୍ୟମନ୍ଦିର ବେଢ଼ାରେ।

—ଅଭିନନ୍ଦନ ଜଣାଉଛି, ସମୁଦୀଙ୍କ ପରିଚୟ ?

—ଖୁବ୍ ବଡ଼ଲୋକ, ଚାହିଁଲେ ଆଖି ଝୋସିହୋଇଯିବ।

ଗୋଟାଏ ସିନେମା ଚାଲୁଛି, ଆଉ ଗୋଟାଏ ନିର୍ମିତ ଅବସ୍ଥାରେ। 'ଏ' ଶ୍ରେଣୀର କଣ୍ଟ୍ରାକ୍ଟର, ତିନିଟା କାର, ଆଉ ଟ୍ରକ୍ ତ ମାଳମାଳ। ସବୁବେଳେ

ଅଦ୍‌ଦି କନାରେ ପଂଜାବି ପିନ୍ଧନ୍ତି। ପିଲାଛୁଆ କିଏ ମାନ୍ଦ୍ରାଜରେ ତ କିଏ ବମ୍ବେରେ ପାଠ ପଢୁଛନ୍ତି– ପବ୍ଲିକ୍ ସ୍କୁଲରେ। ପାତ୍ର ଖୋଜି ଖୋଜି ହଇରାଣ ହୋଇଯାଇଥିଲି। ଏବେ ଭାଗ୍ୟ ଖୋଲିଲା। ତେମେ ଯିବ, ନଗଲେ ମନ ଖରାପ ହେବ। ଦେଖିବ କିମିତି ସମୁଦୀ। ପିଲାଦିନେ ପାଠ-ସାଥୀ ଆମେ। ତମେ ଟିକିଏ ମନ୍ତ୍ରପଢ଼ା ପାଖରେ ନ ବସିଲେ ଦୁଃଖ ପାଇବି।

ମୋର ବାଲ୍ୟସାଥୀ କୁମାର, ହୋମିଓପାଥି କରେ। ମୋ ଘର ପାଖେ ତା'ର ଆବାସ। ଧଳା କାଗଜରେ ଧଳା ଗୁଣ୍ଡ ବାଢ଼ି ଓ ବାନ୍ଧି କୁମାରର ଗ୍ରୀବା ନଇଁଆସିଲାଣି। ସକାଳ କାଉ କା' କହିବା ମାତ୍ରେ ସେ କାଗଜ ପୁଡ଼ିଆ ତିଆରି କରେ...ରାତି ବାରଟାଯାଏ...ଏଇ ଏକାସନରେ ବସିଥାଏ...ମଝିରେ ଆହାର କରିନିଏ, ତା'ପୁଣି ଅଧଘଣ୍ଟାରେ ସମାପ୍ତ।

ମଥାର କେଶ ଶୁକ୍ଳ। ତୁଷାର ଶୁଭ୍ର ମୌଳୀ। ଅମାୟିକ ଲୋକ। ମୁଁ ଯାଏ ତା' ପାଖକୁ...ଔଷଧ ବଣ୍ଟନ ପ୍ରଣାଳୀର ତଦାରଖ କରିବାକୁ ନୁହେଁ...ଯାଏ ଶୁଣିବାକୁ ବହୁ ରୋଗୀଙ୍କ ମାନସିକତାର ସେ ଯେ ଗୋଟିଏ ଦର୍ପଣ, ତାହାରି ବ୍ୟାଖ୍ୟାନ।

କଥା କହୁଥାଏ, ଆଙ୍ଗୁଠି ବଳିଚାଲିଥାଏ କାଗଜ ପୁଡ଼ିଆ... ଦିନକେ ତିନିଥର...ପିଆଜ ରସୁଣ ଖାଇବ ନାହିଁ– ଭଲ ହୋଇଯିବ। ରୋଗିଣୀ ଅଣ୍ଟାରୁ ଟଙ୍କାଟିଏ ବାହାର କରେ। କୁମାର ଆଠଣା ଫେରାଇଦିଏ, କହେ ଆରଥରକୁ ରେଜା ଆଣିବ।

କୋଡ଼ିଏ ବର୍ଷ ମୋ ଦେଖଣାରେ ସେଇ ଅର୍ଦ୍ଧ-ମଳିନ ଟେବ୍‌ଲ ପଡ଼ିଛି। କାଗଜ ପୁଡ଼ିଆ ଗୁଡ଼େଇବା ରୀତି ବଦଳି ନାହିଁ। କାନ୍ଥରେ ହାନିମାନ୍‌ଙ୍କ ଛବି। ଧୂଳିଜମା ମସିଆ ମଲାଟର ଛୋଟ ଲାଇବ୍ରେରି–ସବୁ ହୋମିଓପାଥି ବହି।

ଜଟିଳ ରୋଗ ପାଇଁ ସେ ଫୁଙ୍କି ଦେଇ ଗୋଟାଏ ବଡ଼ ବହି ଟାଣିଆଣେ। ଗୋଟାଏ ଦୁଇଟା ଅସରପା ଅତର୍କରେ ଖସିପଡ଼ନ୍ତି। ପୃଷ୍ଠା କଣା ହୋଇଗଲାଣି।

କୁମାରର ଝିଅ କାନ୍ତି। ସୁନ୍ଦରୀ ରୂପବତୀ। ମୁଁ ଦେଖିଛି ତାକୁ। ଘରକାମନିପୁଣା। ସହଜରେ ବର ମିଳିଲେ ନାହିଁ– କାରଣ କୋଡ଼ିଏ ହଜାର ଟଙ୍କା ବାଟଖର୍ଚ୍ଚ ସମ୍ବନ୍ଧରେ ଚୁକ୍ତି ହୋଇଗଲେ ତେଣିକି ପ୍ରସଙ୍ଗ ପଡ଼ିବ। ଏହିଭଳି ଅର୍ଥଗୃଧ୍ନମାନଙ୍କର ଅଭିଭାଷଣ ସେ ଶୁଣିଆସିଛି। ସାମାନ୍ୟ ହୋମିଓପାଥି ଡାକ୍ତର। ଅବଶ୍ୟ କର୍ପୂର ଥିଲା, ଏବେ ଉଡ଼ିଯାଇଛି। ଛୋଟକାଟ ଜମିଦାରୀ ସାମନ୍ତତାନ୍ତ୍ରିକ ଶୋଭାରେ ଥିଲା। ଏବେ ଗାଁରେ ଗୋବମରା ବିରାଟ ଲୁହା ସିନ୍ଦୁକ ଓ ପିତଳ ହଣ୍ଡା ଦି'ପୁଞ୍ଜା ବିଳାପ କରୁଛନ୍ତି ପୂର୍ବ ପରମ୍ପରା ତଥା କୌଳିନ୍ୟକୁ ସ୍ମରଣ କରି।

ମୁଁ ଏ ଯାଏ ନୀରବ ରହିଥିଲି। ଝିଅଥିବା ପିତାର ସମସ୍ତ ମନସ୍ତତ୍ତ୍ୱ ମତେ ଅଜ୍ଞାତ ନାହିଁ। ସମୁଦୀ ନାମକ ଜୀବଗୁଡ଼ାକ ସହିତ ମୋର ପରିଚୟ ଅଛି ଦୃଶ୍ୟ ଅଦୃଶ୍ୟ ଭାବରେ; ଆଉ ବରପାତ୍ରଙ୍କ ସୌଜନ୍ୟ, ତ୍ୟାଗ ଓ ନାରୀଜାତି ପ୍ରତି ସମ୍ମାନ-ଜ୍ଞାନର ଯେଉଁ ଆଲେଖ୍ୟ ସଚରାଚର ଦେଖିବାକୁ ମିଳେ, ସେ ବିଷୟରେ ବି ଜ୍ଞାନ ଅଛି।

ହତଭାଗ୍ୟ କୁମାର ଆଡ଼କୁ ଚାହିଁଲି। ତା'ର ହସ ହସ କଥା, ଅତି ସାଫଲ୍ୟର ବିଶ୍ୱସ୍ତ ନୈଶ୍ଚିନ୍ତ୍ୟ ଓ କନ୍ୟା ପ୍ରଦାନ କରିବାର ଭାବାଳୁତାକୁ ଲକ୍ଷ୍ୟ କରି

ଭାବିଲି, କୁମାର ଯଦି ଶେଷ ପର୍ଯ୍ୟନ୍ତ ଏମିତି ହସ ହସ ପୁଲକରେ କାନ୍ତିକୁ ପାତ୍ରସ୍ଥ କରିପାରିବ, ତେବେ ଜାଣିବି ଗୋଟିଏ ଉତ୍ତମ ମାନବିକ ଦୃଶ୍ୟ ଏତେବେଳକୁ ଏ ସଂସାରରେ ଆଖି ଦେଖିଲା।

ଜୀବନ ଯିମିତି ବାହିତ ହେଉଛି, ଯିମିତି ଲୋକଚରିତ୍ର ଫୁଟି ବାହାରିଛି, ଏତେ ନିଶ୍ଚିନ୍ତ ଭାବ ଓ ବିଶ୍ୱାସ ଶେଷଯାଏଁ ରହିବଟି ? ଅଲକ୍ଷଣା କଥା...କିନ୍ତୁ...

ଯେଉଁ ବିଷୟ ମୋ ଛାତିକି ବିନ୍ଧ କରୁଥିଲା ତାହା କୁମାରକୁ ପଚାରିଦେଲି। ମୋ ବକ୍ଷ ଭିତରେ ପରମଯୋଗୀଙ୍କ ଶାନ୍ତ ସମାହିତ ବଦନପ୍ରଭା...ସତେ କଅଣ ମାନବ ନିମ୍ନ ଚେତନାରୁ ଧୀର ଉତ୍ତରଣ କରୁଛି ? ସବୁ କଅଣ ଶୁଭ୍ର, ସୁନ୍ଦର ଓ ସତ୍ୟମୟ ହୋଇ ଉଠିବ ପରିଶେଷରେ ?

–ଆଚ୍ଛା କୁମାର...ଡିମାଣ୍ଡ...ମାନେ ଯୌତୁକ ବିଷୟ...

ମୋ କହିବାଟାକୁ, ଖାଳୋଇରେ ଯିମିତି କେଉଟ ଖପ୍ କରି କଉମାଛକୁ ଧରିନିଏ ଓ ତା'ର ତଣ୍ଟି ଚିପି ପିନ୍ଧା ଗାମୁଛା ଖୋଳରେ ନିର୍ବିବାଦରେ ରଖିନିଏ, ସେମିତି କୁମାର ଖପ୍ କରି ମୋ କଥା ଉପରେ କଥା କାଟିଲା–

ତୁ, ରାଜୀବ, କଅଣ ପାଗଳ ହେଲୁ ? ହଇରେ, ସୂର୍ଯ୍ୟ ଭଳିଆ ସମୁଦୀ ଉଜ୍ଜ୍ୱଳ। ତା' ନିଜ କିରଣରେ ସେ ନିଜେ ଚକିତ। ମୁଁ ତା' ଆଗରେ ଖଦ୍ୟୋତ। ଡିମାଣ୍ଡ ? ସମୁଦୀ କହିଲା– କଅଣ ମତେ ତମେ ଦେବ ମ... ଦେଇପାରିବନି... ତେଣୁ ଖାଲି ଝିଅକୁ ଶଙ୍ଖା ସିନ୍ଦୂର କରି ପଠାଇଦିଅ... ଗୋଟାଏ ଆଦର୍ଶ ରହୁ।

ସେଇ ଆଦର୍ଶର ସୁନ୍ଦର ଏକ ନାଟକ ସୂର୍ଯ୍ୟମନ୍ଦିର ବେଢ଼ାରେ ସେଦିନ ସନ୍ଧ୍ୟାରେ ଅଭିନୀତ ହେଲା। ମୋ ସହିତ ଦଶ କୋଡ଼ିଏ ଜଣ ନିମନ୍ତ୍ରିତ ଅତିଥି ଚାହିଁଥିଲୁ ଚନ୍ଦ୍ରସ୍ନାତ ଶ୍ରୀମନ୍ଦିରର କଳେବରକୁ...କେଉଁ କାଳର ଏ ଅଚଳାୟତନ ଦେବମନ୍ଦିର। ଆଉ ଶୁଣୁଥିଲୁ ଖଞ୍ଜଣି ମୃଦଙ୍ଗର ତାଳେ ତାଳେ ସାଲବେଗଙ୍କ ଭଜନ।

ଯାଉଥାନ୍ତି ଆସୁଥାନ୍ତି ଦର୍ଶନପ୍ରାର୍ଥୀ ଲୋକ... ବୃଦ୍ଧା, ପ୍ରୌଢ଼ା, ଯୁବକ, ଯୁବତୀ...ସୂର୍ଯ୍ୟମନ୍ଦିରକୁ ସମସ୍ତେ ଚିହ୍ନନ୍ତି...ତାଙ୍କ ମନସ୍ମୃତି ପ୍ରଖର ହୋଇଯାଏ...ଏଇଠି...ଦିନେ ତାଙ୍କର ଜୀବନ ଛନ୍ଦାଛନ୍ଦି ରସରେ ରସାଣିତ ହୋଇଥିଲା...

ଜମିଯାଇଛି ହାଟ। ସମୁଦୀ କଣ୍ଟ୍ରାକ୍‌ଟର। ଦଶ ଆଙ୍ଗୁଠିରେ ତାଙ୍କର ଦଶଟି ସୁବର୍ଣ୍ଣ ଅଙ୍ଗୁରୀୟ। ଗିଲ୍ କରା ପଞ୍ଜାବି। ସିଂହଦ୍ୱାରରେ ତିନିଟା ମଟର ଯାନ ରହିଥାଏ। ବକ୍ତା ସେହି, ସଭାପତି ସେହି...ଅବଶ୍ୟ ତାଙ୍କର ବଡ଼ଭାଇ ଆସିଥାନ୍ତି। ସବୁ ନୈବେଦ୍ୟ ଓ ପୂଜୋପକରଣର ଗ୍ରହୀତା ଯେ ସେ, ଏକଥା ଆମେ ପରେ ଜାଣିଲୁ।

ବିଭାଘରର ତାରିଖ ସ୍ଥିର ହେବା କଥା। କନ୍ୟାପକ୍ଷ ସମୟ ମାଗିଲେ...ଏବେ ଶୀଘ୍ର କାମ ଉଠାଇବା ସମ୍ଭବ ନୁହେଁ। ବରପକ୍ଷ ଅଡ଼ିବସିଲେ, ବମ୍ବେରୁ ପୁଅ ଆସିଛି, ମାନ୍ଦ୍ରାଜରୁ ଝିଅ ଆସିଛି...ଛୁଟି ଭିତରେ, ଗ୍ରୀଷ୍ମାବକାଶରେ ହିଁ ଶୁଭ ସୁନ୍ଦର କାମ ବଢ଼ିଯିବା ଉଚିତ। ସେମାନେ ଯଦି ଆନନ୍ଦ ନ ପାଇବେ, ତେବେ କିଏ ଦେଖିବ ଏ ଉତ୍ସବକୁ...

ଝିଅ ଜନ୍ମ ଦେଇଥିବା କୁମାର ଓ ତାଙ୍କର ଜ୍ଞାତିବର୍ଗ ଅଧୋବଦନ ହେଲେ। ସେ କହିଲେ–

ଏତେ ଚଞ୍ଚଳ ସବୁ ବ୍ୟବସ୍ଥା କରିବା ସହଜସାଧ୍ୟ ନୁହେଁ।

କିନ୍ତୁ କିଏ ଶୁଣୁଛି ?

ଅଗତ୍ୟା ବରପକ୍ଷର ନିଷ୍ପତ୍ତି ଧାର୍ଯ୍ୟ ହେଲା।

ଦ୍ୱିତୀୟ କାର୍ଯ୍ୟ-ନିର୍ଘଣ୍ଟ ଥାଇ କିଛି ନ ଥିଲା; କେବଳ ଅବଶିଷ୍ଟ ଥିଲା ମହାପ୍ରସାଦ ସେବନ କୋଇଲି ବୈକୁଣ୍ଠରେ...ସେ ଆଡୁ ସୁଗନ୍ଧି ବି ଭାସିଆସୁଥିଲା।

ମୋ ମନ ଅସ୍ୱସ୍ତି ଭୋଗୁଥିଲା; କାରଣ କୁମାରର ଦୟନୀୟ ଅବସ୍ଥା ମୁଁ ଦେଖିସାରିଥିଲି। ଏତିକିବେଳେ ସମୁଦୀ ନାମକ ଜୀବ ନିଶ ଓ ପୁଚ୍ଛ ଫୁଲେଇବାର ଭଙ୍ଗୀ ପ୍ରକାଶ କଲେ। ଖଙ୍କାର ମାରି ଆରମ୍ଭ କଲେ–

ସମୁଦୀ, ନିମନ୍ତ୍ରିତ ଅତିଥି ଆସିଛନ୍ତି... ବିଦ୍ୱାନ୍ ଗୁଣୀ ଲୋକ ସେମାନେ– କଥାଟା ଏଇଠି ପଡ଼ିଯାଉ। ପୁଅକୁ କହିଲି ଯଦି ତା'ର ମନରେ କିଛି ସନ୍ଦେହ ସଂଶୟ ଥାଏ, ସେ ମତେ କହିଦେଉ...ପଢ଼ିଲା ପୁଅ, ଆଜିକାଲିକାର ଯୁବକ, ତାଙ୍କ କଥାକୁ ବେଖାତିର କରିହେବ ନି... କଥା କଅଣ କି...

ମୁଁ ସେତିକିବେଳୁ ଜାଣିଥିଲି ସୂର୍ଯ୍ୟମନ୍ଦିରର ସୂର୍ଯ୍ୟ ଟିକିଏ ମୁରୁକି ମୁରୁକି ହସିବାକୁ ଆରମ୍ଭ କଲେଣି। କେତେ ତ ଲୀଳା...ଏମିତି ବାପ-ପୁଅର ପ୍ରସଙ୍ଗ ସେ ଦେଖିଛନ୍ତି...ଆଉ ଦାରୁଭୂତୋ ମୁରାରି ତ ସବୁ ଜାଣନ୍ତି। ଭାବିଲି ଏଠାରୁ ପଳାଇଲେ ମନ ଉପରୁ ବିଷ ଚହଟିଯିବାର ପ୍ରଲେପ ଖସିଯିବ...ଯାଉଛି କିମିତି ?

କୁମାର କିଛି ବୁଝିପାରୁନି। ସମୁଦୀଙ୍କର ବଡ଼ଭାଇ ପରିଷ୍କାର କହିଦେଲେ... କୋଡ଼ିଏ ହଜାର ଟଙ୍କା ଏହିଠାରେ ସମୁଦୀ ହାତକୁ ବଢ଼ାଇଦିଅନ୍ତୁ। ତା' ଉପରେ ତୁଳସୀପତ୍ର ଦୁଇଟା ବ୍ରାହ୍ମଣେ ଥୋଇଦେବେ... ସଫା ସଫା କଥା।

ନ ହେଲେ...

କାନ୍ତି ଇଲେକ୍‌ଟ୍ରିକ୍ କିରଣ ଲିଭାଇ ଦେଇ ଖଣ୍ଡିତ ଚନ୍ଦ୍ରର ସୁଷମା ଦେଖୁଥିଲା ତା'ର ନିଭୃତ କକ୍ଷର ନିଭୃତ ଗବାକ୍ଷ ଦେଇ। ବି.ଏ.ପାସ୍ କରିଛି, ଅଙ୍ଗ ଧରିଛି ନିଟୋଳ ଯୌବନ...ପଢ଼ିଛି ଦର୍ଶନ ଓ ସାହିତ୍ୟ...ଯେ ଆସିବ ଆଜି ତିଥିରେ ଅରୂପରେ, ଆଉ କେତେଟା ଦିନ ପରେ ସେ ଆସିବ ରୂପ ନେଇ, ବିଗ୍ରହ ଧରି...ଦୁଇ ରୂପର ଏକ ଅଭିନ୍ନ ଅଞ୍ଜନ ଦୁହେଁ ବୋଲିହେବେ ମନ ଓ ଆତ୍ମାରେ...

ତା'ର ବାପା କାଗଜପୁଡ଼ିଆ ଗଡ଼ି ଗଡ଼ି କୂର୍ମ ହୋଇଗଲେ। ଆଠଣା, ଟଙ୍କାଏ କରି କରି କେତେ ବା ସଞ୍ଚୟ ? ସେଥିପାଇଁ ପାଠ ପଢ଼େଇଛନ୍ତି, ଆଧୁନିକତାକୁ ସାକ୍ଷୀ ରଖି... କେଜାଣି ବା ବରପକ୍ଷର ହୃଦୟ ତରଳିବ...ଦୂର୍ବା ଅକ୍ଷତ ଦେଇ ନେଇଯିବେ ବଧୂବରଣ କରି...ତାହାହେଲେ ଧରାପୃଷ୍ଠରେ ମାନବିକ ପ୍ରୀତି ଅଛି ବୋଲି ହୃଦ୍‌ବୋଧ ହେବ। ତାହାହେଲେ ଜଣାଯିବ ଭାରତଭୂମିରେ ସଂସ୍କାରକମାନଙ୍କର ସଂଗ୍ରାମ... ସତୀଦାହ ଲୋପ, ବିଧବା ବିବାହ, ଯୌତୁକ ନିରୋଧ... ରାଜା ରାମମୋହନ, ବିଦ୍ୟାସାଗର... କେତେ କିଏ...

ମୋର ମନେପଡ଼ିଲା କାନଫଟା ତାଳିମାଡ଼ର ସ୍ରୋତ...ରେଭେନ୍‌ସା ବାଳିକା ବିଦ୍ୟାଳୟର ଶତବାର୍ଷିକୀ ଉତ୍ସବ...ଶ୍ରୋତା କହିଲେ–

"ଯୁବତୀଗଣ, ଯୌତୁକ ପ୍ରଥା ବିରୋଧରେ ବୀରାଙ୍ଗନା ସାଜି ସମାଜର ଏ କଳଙ୍କକୁ ନିର୍ବାପିତ କରିବାପାଇଁ ଜାଗିଉଠ...ସତ୍ୟାଗ୍ରହ ସେନା ରଚନା କର...ପଣ କର, ଯେଉଁଠି ବରପକ୍ଷ ଯୌତୁକ ଦାବି କରିବ, ସେଠାରେ ସେ ପ୍ରସ୍ତାବକୁ ପଦାଘାତ କରି ଜୀବନଯାଏଁ ଅବିବାହିତା ରହିଯାଅ ପଛକେ, ମାନି ନିଅନି ସେ କଳଙ୍କର ଜ୍ୱାଳାକୁ; ଉଠ, ଜାଗ୍ରତ ହୁଅ!

ଓଃ, କି ହାତତାଳି! କେତେକ... ତରୁଣୀ ସଭାସ୍ଥଳରେ ନାଚିଗଲେ। ପରେ ଶୁଣିଲି, ସେମାନେ କହୁଥିଲେ– ଶ୍ରୋତା କି ବଢ଼ିଆ କଥା ଶୁଣେଇଲେ!

ନ ହେଲେ? ଏ ବିଭାଘର ସ୍ଥଗିତ ରହିବ...

କୁମାରର ମୁହଁ କଳା ପୋଡ଼ାକାଠ ପାଉଁଶରେ ଆଚ୍ଛନ୍ନ।

–ଦୟାକରି ଟିକିଏ ମଟରଗାଡ଼ି ଦେବେ?– କୁମାର ତା'ର ଭାବୀ ସମୁଦୀକୁ ଅନୁରୋଧ କଲା ବାଷ୍ପାଚ୍ଛନ୍ନ ନେତ୍ରରେ...

ଚିତ୍ରପଟ ଘୂରିଗଲା।

–ବାପା, ତମେ, ଏମିତି ପାଗଳ ପରି ହେଉଛ କାହିଁକି? କଅଣ ଖୋଜୁଛ?–କାନ୍ତିର ଧୃତିଭଙ୍ଗା କାତରୋକ୍ତି।

–ତମେ ଏମିତି କଅଣ ହେଉଛ?–ସ୍ତ୍ରୀଙ୍କର ଆର୍ତ୍ତନାଦ...କଅଣ ନିର୍ବନ୍ଧ କାମ ସରିଗଲା? ବ୍ରାହ୍ମଣେ କାହାନ୍ତି?

–ମୋ ପାଖରୁ ସମସ୍ତେ ଚାଲିଯାଅ। ଝିଅ ମାଗଣାରେ ବିକ୍ରି ହେବନି! ହଁ, ଝିଅ ସହିତ ଅନେକଗୁଡ଼ାଏ ଟଙ୍କା ଦେବାକୁ ହେବ। ତମେ ସବୁ ତଫାତ୍ ହୁଅ। –କୁମାରର ମର୍ମଫଟା ଚିତ୍କାର।

ସୂର୍ଯ୍ୟମନ୍ଦିର...ଦୀପ ଥୋଡ଼ାଏ ଜଳୁଛି...ଜଳୁଛି ବିଶ୍ୱ...ଜଳୁଛି ମଣିଷ...ଜଳୁଛି ଲୋଭ, ଜଳୁଛି ମଣିଷର ଅହଂ ଓ ଭୋଗଲିପ୍ସା। ଲେଲିହାନ ତା'ର ଶିଖା।

–ନିଅ ସମୁଦୀ, ଚଉଦ ହଜାର ଟଙ୍କାର ମନିବ୍ୟାଗ...ଆଉ ଦେଇପାରିବିନି। ଏ ମନ୍ଦିରରେ ଏମିତି ବିକା କିଣା ବୋଧହୁଏ ଏଇ ପ୍ରଥମ ଘଟିଗଲା। ନିଅ, ମତେ ପାର କର ଝିଅ ଜନ୍ମର ମହା ଦୁଃଖରୁ!

ସମୁଦୀଙ୍କ ଦିହଲଗା ବସିଥିବା ବୁଢ଼ାଟିଏ ପାନ ଚୋବେଇ ପଛରୁ କହିଲା– ଘଣ୍ଟା...?

ଆଉ ଜଣେ–ଫର୍ଣ୍ଣିଚର...?

ସମୁଦୀ କହିଲେ–ହଉ, ଏ ତ ଗଲା କାର୍ କିଣିବାର ଟଙ୍କା...ମୁଁ ଅବଶ୍ୟ ମୋ ଆଡୁ କିଛି ମିଶାଇଦେବି। ନୂଆ ବନ୍ଧୁ ତ, ଏତିକିରେ ମୁଁ ରାଜି ହୋଇଗଲି। ହେଲେ...ଗହଣା, ଫ୍ରିଜ୍, ଅନ୍ୟାନ୍ୟ ଆସବାବ...ଯାହା ମୋ ଭଳି ଲୋକଙ୍କ ପାଇଁ ଦାଣ୍ଡସୁନ୍ଦର କଥା ହେବ?

ମୁଁ ସେତେବେଳକୁ ପଡି ଦୋକାନୀ ତଳ ସନ୍ତସନ୍ତିଆ ଭୂଇଁକୁ ଦରାଣ୍ଡୁଛି...ମୋ ଜୋତା ସେଇଠି ଛାଡ଼ିଦେଇଥିଲି...



# କୋଟିଂକରୁ ଗୋଟିଏ ଚିଠି

ଅରୁଣିମାର ଗୋଟିଏ ଚିଠି...

ପ୍ରାଣତୋଷ ପଢୁଥିଲେ। ଆକାଶରେ ନବୀନ ଚନ୍ଦ୍ର। ଯାହା ଯିମିତି ରହିଥିଲା ଦଶବର୍ଷ ତଳେ ଆଜି ବି ସେମିତି ଅଛି– ରୂପାନ୍ତରିତ ହୋଇଛି ଜନ୍ମ-ମୃତ୍ୟୁର ଛନ୍ଦରେ ଯାହା କିଛି ଅତୀତ ଓ ଅନାଗତର ସୃଷ୍ଟି ସମୃଦ୍ଧ ପ୍ରାଣୀକୋଷ ମାତ୍ର।

ପ୍ରାଣତୋଷଙ୍କର ଜୀବନରେ ଓଲଟ-ପାଲଟ ହୋଇଗଲା କେତେ କଅଣ। ସବୁ ବିଶ୍ୱାସ ତାଙ୍କର ଯାଇଥିଲା। ସମାଧିର ଶିଉଳି ତଳେ ଜାଣି ଜାଣି ସବୁ ବିଶ୍ୱାସକୁ, ସବୁ ଭରସାକୁ ସେ ବିଲୀନ କରିଦେଇଥିଲେ; ମାତ୍ର ଗୋଟିଏ ଆବେଗ...

ସେହି ଆବେଗର ନାୟିକା ଥିଲା ଅରୁଣିମା। ସେହି ନାରୀର ହୃଦୟ ତଳେ ସେ ସତ୍ୟକୁ ନୂତନ ସାଜରେ ଦେଖିଥିଲେ, ବିଶ୍ୱାସକୁ ଅଭ୍ରାନ୍ତ ରଖିଥିଲେ, ସଂକଳ୍ପକୁ ପବିତ୍ର ଧୂପରେ ବନ୍ଦନୀୟ ଭାବିଥିଲେ– ସବୁଥିରେ ଦେଖିଥିଲେ ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତର ସତ୍ୟସ୍ୱାକ୍ଷର ଭଳି ଅରୁଣିମା ପ୍ରାଣତୋଷ ଜୀବନରେ ଏକ ଅନବଦମିତ ସତ୍ୟ...ମହାନ୍ ସତ୍ୟ।

କିନ୍ତୁ ହେଲା କଅଣ? ଆଜି ପ୍ରୌଢ଼ତ୍ୱର ଅପସୃୟମାନ ଜ୍ୟୋତିକୁ ପରାସ୍ତ କରି ଉଭାହୋଇଛି ଜଣେ ଯୁବକ, ଟେବୁଲ ଉପରେ ରଖିଛି ସିଗାରେଟ୍, ହାତରେ ଧରିଛି ସୁରାର ଗ୍ଲାସ। ପିଉଛି, ପିଆଉଛି ଅରୁଣିମାକୁ। ହସଲେ ପ୍ରାଣତୋଷ। ସେ ଅତି ବଡ଼ ନିରାମିଷାଶୀ ହୋଇଗଲେ। ମାତ୍ର ଅରୁଣିମାର ଗୁଂଜନ ଏବେ ବି କାନରେ ଖେଳିବୁଲୁଛି।

ପ୍ରାଣତୋଷ ପଚାରିଥିଲେ–

'ମୁଁ ଯଦି ଅତି ବେଶୀ ବୁଢ଼ା ହୋଇଯାଏ?...'

'ତୁମେ ହେବନି, ତୁମେ ଏକ ଶାଶ୍ୱତ ତରୁଣ–ଅନ୍ତତଃ ମୋ ପାଇଁ'–କହିଥିଲା ଅରୁଣିମା ଏମିତି ଏକ ଶାରଦୀୟ ନବୀନ ଚନ୍ଦ୍ରର ଜ୍ୟୋତ୍ସ୍ନା ତଳେ।

'ମୁଁ ଯଦି ପଙ୍ଗୁ ହୋଇଯାଏ, ତୁମେ...'

ଅରୁଣିମା କହିଥିଲା– 'ମୁଁ ସେବାପରାୟଣା ଧାତ୍ରୀ ହୋଇ ସେ ପଙ୍ଗୁତ୍ୱରେ ପ୍ରଲେପ ଦେଇ ତୁମକୁ ସୁସ୍ଥ କରିବି।'

ଶେଷ ପ୍ରଶ୍ନ ଥିଲା–ଅନ୍ତତଃ ସେ ରଜନୀର ନିଃସଙ୍ଗତାକୁ ଶବ୍ଦାୟିତ କରି ଅରୁଣିମାର...

'ଏତେ କଥା କାହିଁକି କହୁଛ? ଭାବିଛ ମୁଁ ମୋର ଏ ବୟସ ଓ ସ୍ଥିତିରେ ତୁମକୁ ଉପେକ୍ଷା କରି ଆଉ କେଉଁ ତରୁଣକୁ ବରଣମାଳା ଦେବି?'

ଆଜି ସତକୁ ସତ ଅରୁଣିମା ବରଣମାଳା ଦେଇଛି ଅନ୍ୟ ଜଣକୁ–ଯେ ସିଗାରେଟ୍ ଓ ସୁରା ଘେନି ଅରୁଣିମାର ମନକୁ ଚଞ୍ଚଳ କରିଛି ଆଉ ଦେଖାଇଦେଇଛି ପ୍ରାଣତୋଷର ପୌରୁଷ ଅପେକ୍ଷା ନିଜର ସମୃଦ୍ଧତର ପୌରୁଷ... କେତେ ବଡ଼ ତା'ର ଆସ୍ଫାଳନ!

ପ୍ରାଣତୋଷଙ୍କର ଆଖିରେ ଦୁଇବିନ୍ଦୁ ଅଶ୍ରୁ। ଚିଠିଟି ସେ ପଢୁଥିଲେ ସେଇ ଅଶ୍ରୁର ପ୍ରବାହତଳେ—

"କେମିତି ପହଞ୍ଚିଲେ ଜାଣିବାକୁ ଅପେକ୍ଷା କରିଛି। ଭଲ ମନ ନେଇ ଫେରିନ, ଏତିକି ଅନୁଭବ କରିଛି। କେବଳ ଭାବୁଛି କେଉଁଠି କଅଣ ବୋଧ ହୁଏ ବେସୁରା ହୋଇଯାଇଛି, ଯେଉଁଥିପାଇଁ ତୁମେ ବିରୂପ। ଆମ ହିସାବ, ଆମ ଚିନ୍ତା ଓ ଅନୁଭୂତି ଭିତରେ କେବେ କେଉଁଠି ଏଇ ମୁକ୍ତି ଦେବା—ନେବା କଥା ତ ନଥିଲା। ଏବେ ଏ କଥା ଆସିଛି ହୁଏତ ମୁଁ ସେଥିପାଇଁ ଦାୟୀ। ଆତ୍ମନିରୀକ୍ଷଣ କରୁଛି ଶିଳ୍ପୀ—ନିଜର ଅସଂଖ୍ୟ ଦୋଷ-ତ୍ରୁଟି ଆଖିରେ ପଡୁଛି; କିନ୍ତୁ କେଉଁଠି ଏହି ମୁକ୍ତିର ସ୍ୱପ୍ନ, କାହିଁ ନାହିଁ ତ? ତୁମର କୌଣସି ସୁଖ-ସୁବିଧା ଦେଖିପାରିନି, ଯତ୍ନ ନେଇପାରିନି ବା ସାହାଯ୍ୟ କରିପାରିନି; କିନ୍ତୁ ସେତକ କ'ଣ ମୁଁ ଅବହେଳା କରି କରିଛି? ତମ ପାଖରେ ନୀରବ ଭିକ୍ଷା ଗୋଟାଏ ମୋର ରହିଛି; ସେ କଅଣ ମୋର ଅତିରିକ୍ତ ଓ ଅସ୍ୱାଭାବିକ କାମନା? ତୁମକୁ ଦୋଷ ଦେଉନି, ନିଜ ଭାଗ୍ୟକୁ ଆଦରି ରହୁଛି। ବିରକ୍ତ ହେବାର କଅଣ ଅଛି! ଦରକାର ମନେକଲେ ଡାକିବ; ନ ହେଲେ ମୁଁ କେବେ ଅଭିଯୋଗ କରିବିନି। ମୋ ମୁକ୍ତିର କଥା ଉଠାଇ ଆଉ ଅପମାନ ଦିଅନି। ମୋର କୌଣସି ଦାବି ଅଧିକାର ନାହିଁ ବୋଲି ଏତେ ସହଜରେ ହୁଏତ ଏ କଥା ଉଠିପାରିଲା। ସବୁ ମନେ ରହିବ। ଯାହାର କିଛି ଗୋଟାଏ ନଥାଏ, ତା'ର ଏଇ ଅଭିମାନଟା ହିଁ ବେଶି ଥାଏ। ସେତିକି ନେଇ ମୁଁ ରହୁଛି। ତୁମର କୌଣସି କାମରେ ମୁଁ ଅନ୍ତରାୟ ନୁହେଁ ତ? ମତେ ମୁକ୍ତି ଦେଲେ ବି ମୁଁ ଯିବିନି; ଏଇ ଚିନ୍ତା ତମକୁ ବୋଧହୁଏ ବିବ୍ରତ କରୁଛି। ମୁଁ କେଉଁଠି ଛିଡ଼ା ହୋଇଛି—ଈଶ୍ୱରଙ୍କୁ ସେତିକି ପଚାରିବାକୁ ଇଚ୍ଛା ହେଉଛି। କୁଆଡ଼େ ଯିବି ବୋଲି ଭାବୁଛି—ମତେ ସେତିକି କହିଦିଅ; ବାଟ ବତାଇ ଦିଅ।

କାହିଁକି ତୁମକୁ ଡାକିବି—ମୁଁ ସବୁ ପାଉଛି। ମୋ ଅତୀତଟା ତ ଜାଣିଛ; ବର୍ତ୍ତମାନ ବି ଜାଣିଛ। ମୋର ଅଭାବ କିଛି ନାହିଁ। ତୁମେ ଲେଖକ, ଲେଖିଯାଅ। 'କିଛି ଆଉ ଲେଖିବିନି'—ଏ କଥା ମୁଁ ଶୁଣିବିନି। ତମର ସବୁ ଅଶାନ୍ତି ପାଇଁ ମତେ ତ ଦାୟୀ କରିସାରିଛ। ଏ ଅପମାନ ମୁଁ ନେବିନି ଯେ ମୋ ପାଇଁ ଗୋଟାଏ ଏତେ ବଡ଼ ପ୍ରତିଭା ନିଷ୍କ୍ରିୟ ହୋଇଯାଇଛି! ତମକୁ ଏ ସବୁ କରିବାକୁ ହେବ।"

—ଏଇ ହେଲା ପତ୍ର—କୋଟିକରୁ ଗୋଟିଏ। ଏ ପୃଥିବୀ ବୋଧହୁଏ ଏଇଥିପାଇଁ ଚିରଶ୍ୟାମଳ ଯେ ଏହା ଉପରେ ନୃତ୍ୟକାରିଣୀ ନାରୀ ଏମିତି ବିଶ୍ୱାସ କରି କରି ଲହରିମେଳାରେ ପୁରୁଷର ମନର ମନାନ୍ତରକୁ ଭାସିଚାଲିଛି।

ପ୍ରାଣତୋଷ ଦେଖିଲେ ଏତେ ସ୍ୱଷ୍ଟ ରଜତ ଧାରା ଭିତରେ ତାଙ୍କର ପ୍ରୀତିଧନ୍ୟା ଅରୁଣିମାର ଛାୟାମୂର୍ତ୍ତି ସେଇ ଭାଗ୍ୟବାନ୍ ତରୁଣର ଅଧରକୁ ସୁରାର ପାତ୍ର ଟେକିଧରୁଛି। ହଁ, ସେଇ ଭଙ୍ଗୀ, ଆତ୍ମସମର୍ପଣ, ସେଇ ସ୍ୱାଭାବିକ ଋଜୁତା କେଉଁଥିରେ ତା'ର ଅତୀତ, ବର୍ତ୍ତମାନ, ଭବିଷ୍ୟତ୍ ଚମତ୍କୃତି ପାଇଛି।

ଆଜି ମୁକ୍ତି କିଏ କାହାକୁ ଦେଉଛି?

ଆଜି ଏତେବଡ଼ ପ୍ରତିଭାକୁ ହତ୍ୟା କରିଛି କିଏ? ଆଜି ମିଥ୍ୟା ଟେଲିଗ୍ରାମ୍ ଦେଇ ଡକାଇ ନେଇ ସେଇ ଭାଗ୍ୟବାନ୍ ତରୁଣ ସହିତ ନବନାଟ୍ୟଶୀଳାକୁ ସଂଗୋପନେ ଦର୍ଶାଇ ପ୍ରାଣତୋଷ ମନରେ ଘୃଣା ସୃଷ୍ଟି କରିବାକୁ ପ୍ରୟାସ କରିଛି କିଏ?

କି ଦରକାର ଥିଲା ଏତେ ଆୟୋଜନ ଓ ପ୍ରୟୋଜନ ? କେବଳ ଆଉ ଗୋଟିଏ ଚିଠି–ଖୁବ୍ ସଂକ୍ଷିପ୍ତ– ଅରୁଣିମାର କର୍‌କମଳରୁ ଜନ୍ମ ନେଇଥାନ୍ତା । ତାହାହେଲେ ପ୍ରାଣତୋଷର ଜୀବନଗ୍ରନ୍ଥର ଶେଷ ପୃଷ୍ଠା ଓଲଟିଯାଇଥାନ୍ତା ଚିରତର ଭାବରେ ।

"ବନ୍ଧୁ ବିଦାୟ, ତୁମେ ବୋକା। ରାଜଧାନୀ ଗୋଟାକଯାକ ଯେଉଁଠି ହିପ୍‌ପୀମାର୍କା ତରୁଣର ମାରିଜୋନା ଗନ୍ଧରେ ସୁଗନ୍ଧଯୁକ୍ତ, ସେଠି ଗୋଟାଏ ବିଚିତ୍ର ଅତୀତ, ବିଚିତ୍ର ବର୍ତ୍ତମାନ ଅନୁଶୀଳନକାରିଣୀ ନାରୀ ଜଣେ ସଂସାରବିଦ୍ଧ ପ୍ରୌଢ଼ର ପ୍ରେମାନୁଭୂତିରେ ଜଡ଼ସଡ଼ ହୋଇ କେବଳ ଆକାଶରୁ କାବ୍ୟିକ ଅମୃତକୁ ପାନାଶା କରିବ ? ତୁମେ ବୋକା। ଅତି ବୋକା; କାରଣ ତୁମେ ନାରୀକୁ ବିଶ୍ୱାସ କରିଥିଲ। ଏତେ ବଡ଼ ସାଂଘାତିକ ଭୁଲ କଲ କାହିଁକି ? ବିଦାୟ ବନ୍ଧୁ !"

ପ୍ରାଣତୋଷଙ୍କର ମନେହେଲା ଅରୁଣିମାର ଶତ ସହସ୍ର ପତ୍ରାବଳୀକୁ ସେ ଦଗ୍‌ଧ କରିଦେବେ। ସଂସାରର ପ୍ରେମାନୁକମ୍ପିତ ହୃଦୟାବେଗରେ ଏଇ ପତ୍ରଗୁଡ଼ିକ ମଣି-ମାଣିକ୍ୟ ଭଳି ଉଜ୍ଜ୍ୱଳ ରହିଥାଏ। ଏଥିର ଅକ୍ଷର, ଅକ୍ଷର ନୁହେଁ। ଗୋଷ୍ପଦ ପରିମିତ ଜଳ ଉପରେ ସିନ୍ଧୁର ବିମ୍ବନ ଭଳି ଗୋଟିଏ ଗୋଟିଏ ଶବ୍ଦ ଭିତରେ କେତେ ଯେ ଶଠତା, କେତେ ଯେ ପାଗଳ କରିବାର ଉପାଦାନ ନିହିତ ଅଛି ତାହା କିଏ କହିବ ?

"ବଡ଼ କଷ୍ଟ, ବଡ଼ କଷ୍ଟ ଏ ହୃଦୟ ଭିତରେ ଅରୁଣିମା, ତୁମେ ବୁଝିପାରିବ ନାହିଁ; ଅଥଚ ସେଇ ହୃଦୟକୁ ତୁମେ କଲ୍ୟାଣମୟୀ ନାରୀର ପ୍ରେମ ଦେଇ ଆଜିଯାଏ ସ୍ନିଗ୍‌ଧ କରି ରଖିଥିଲ ? କି ଅପରାଧ ଦେଖି ତୁମେ ଏ ପଥ ବାଛିନେଲ ? ଉତ୍ତର ଦିଅ। ମାନୁଛି ତାରୁଣ୍ୟର ଜୟକାର ହେଲା; କିନ୍ତୁ ସେ ତରୁଣ ପୁଣି ଦଶବର୍ଷ ପରେ ପକ୍ଷ ପିଟି ଉଡ଼ିଯିବ ନାହିଁ ତ ? ଅନ୍ତତଃ ତୁମର ସ୍ୱାଭାବିକ ପ୍ରବୃତ୍ତିରେ ତାକୁ ଉଡ଼ାଇଦେବ ନାହିଁ କି ? ତାକୁ ଘେନି ନୀଡ଼ ବାନ୍ଧିବ କି ?

"ଆଜି ଯେମିତି ମୁଁ ପ୍ରୌଢ଼ତ୍ୱର ସୀମାରେଖାରେ ତୁମ ପାଇଁ ବ୍ୟାକୁଳ ହେଉଛି, ତୁମେ ଠିକ୍ ସେଇ ଅବସ୍ଥାକୁ ଆସିଯାଇଥିବ, କାଳର ଅସଂଖ୍ୟ ଗତିରେ ସେତେବେଳେ ଲମ୍ପଟଣା ଗୋଟାଏ ବିରାଟ ଅତୀତର ଇତିହାସ ତୁମର କ୍ଷତାକ୍ତ ହୋଇ ରହିଯିବ, ଆଉ ମୁଁ ବି ସେଇ କ୍ଷତକୁ ସ୍ମରଣ କରି ନିଜେ ହୋଇଯିବି ବହୁକ୍ଷତ ଚିହ୍ନିତ।"

ପ୍ରାଣତୋଷ ଦୀର୍ଘଶ୍ୱାସରେ କହିଉଠିଲେ–'ଏ ଜୀବନରେ ଆଉ ଅରୁଣିମାର ସଞ୍ଚାର ନାହିଁ।'



# ତାଳିମାଡ

ପ୍ରତି ସଂଧ୍ୟାରେ ଲୋକଟିକୁ ଘେରିବସନ୍ତି କେତେ ଜଣ। ମହୁମାଛି ଭଣଭଣ କଲା ଭଳି ଏ ଗୁଞ୍ଜନ ଓ ମନ୍ତ୍ରଣା ଚାଲୁଥିଲେ ସେଥିରୁ ମଧୁକ୍ଷରଣ ସମ୍ଭବ ହେଇଥାନ୍ତା; ମାତ୍ର ମାଛିପଲ, ବ୍ରଣ ଓ କ୍ଷତର ସ୍ୱାଦ ପାଇଁ ଏ ବୈଠକ, ସାନ୍ଧ୍ୟ ଆସର।

ଭଦ୍ରଲୋକ ବୟସ୍କ ଓ ପ୍ରୌଢ଼ତ୍ୱର ସୀମା ପାରିହେବା ଉପରେ। ଘର ପ୍ରାଚୀନ ସଂସ୍କାର ଯୁକ୍ତ ସାମନ୍ତସୁଲଭ। ବଡ଼ ବଡ଼ କବାଟ ଓ ସେ କବାଟ ଉପରେ ବିଚିତ୍ର କାରୁକାର୍ଯ୍ୟ। ଝରକାଗୁଡ଼ାକ ବି ସେମିତି ଶିଳ୍ପଚିହ୍ନ ଧରି ଏବେ ପାଉଁଶିଆ ଦେଖାଗଲାଣି; କାଠ ମାତ୍ର ରହିଛି, ରଙ୍ଗ ନାହିଁ। ଘର ଆଗରେ ଗଡ଼ିଆଟିଏ। କେବେ ପଦ୍ମଭରା ଏଇ ପୁଷ୍କରିଣୀକୁ ଅନାଇ ସେ କବିତା ଲେଖୁଥିଲେ ବୋଲି କହୁଥିଲେ।

ଯେତେକ ଆସନ୍ତି ମଣିଧରବାବୁଙ୍କ ପାଖକୁ, ସମସ୍ତଙ୍କର ସ୍ୱାର୍ଥ ଥାଏ ତାଙ୍କ ମନ୍ତ୍ରଣା ଅନୁଯାୟୀ କାମ କରିବାକୁ। କାରଣ ସେ ବୁଦ୍ଧି ବତାଇଦିଅନ୍ତି, ଅର୍ଜି ଡାକିଦିଅନ୍ତି। କହନ୍ତି, ଯାଅ କୋର୍ଟ-କଚିରିକୁ, ନିଶ୍ଚୟ ସଫଳ ହେବ।

କାମ କରନ୍ତି କମ୍, ବହୁତ ଗପ କରନ୍ତି ମଣିଧର ବାବୁ। ଅପେକ୍ଷାକୃତ ତରୁଣମାନେ ତାଙ୍କ ମୁହଁକୁ ଚାହିଁ ଆବାକାବା ହୋଇଯାଆନ୍ତି। ମଣିଧରବାବୁ ଆଉ କାହାକୁ କଥା କୁହାଇ ଦିଅନ୍ତି ନାହିଁ, କି କାହାର ସନ୍ଦେହାତ୍ମକ ଟିପ୍ପଣୀକୁ ସହିପାରନ୍ତି ନାହିଁ। ତାଙ୍କ କଥା ସବୁ ସତ ବୋଲି ଯାହାର ହୃଦ୍‌ବୋଧ ନ ହେବ, ସେ ସେଭଳି ସାନ୍ଧ୍ୟ ବୈଠକରେ ଅପାଂକ୍ତେୟ ବୋଲି ବିବେଚିତ ହେବ।

ତେଣୁ କେବଳ ସତ୍ୟବାଦୀ ଓ ସତ୍ୟରେ ବିଶ୍ୱାସୀ ଲୋକମାନେ ସେଠାରେ ଗୁଣ୍ଡ ହୁଅନ୍ତି। ସମାଜର ବିଭିନ୍ନ ସ୍ତରର ଲୋକେ ଯାହାଙ୍କର ନିଜ ନିଜ ଶତ୍ରୁମାନଙ୍କୁ ନିପାତ କରିବାକୁ ମନସ୍ଥ କରିଥାନ୍ତି, ସେହିମାନେ ଗୁଞ୍ଜନ ତୋଳନ୍ତି ମଣିଧରବାବୁଙ୍କର ଦାଣ୍ଡ ବଖରାରେ।

ମଣିଧର କହନ୍ତି, ସେ ଅନ୍ତର୍ଜାତୀୟ ମଣିଷ; କାରଣ ସେ ପୃଥିବୀର ବହୁ ଦେଶକୁ ଯାଇ ମୃତ ଓ ଜୀବିତ ବହୁ ରାଷ୍ଟ୍ରପତି ଓ ଜନନାୟକଙ୍କର ଆତିଥ୍ୟ ଗ୍ରହଣ କରିଛନ୍ତି। ସେମାନେ ହେଲେ ଇଉଥୋପିଆର ସମ୍ରାଟ୍, ଜର୍ମାନୀର ହିଟ୍‌ଲର, ଆରବର ନାସେର, ବିଲାତର ରାଣୀ, ଇଟାଲୀର ମୁସୋଲିନି ଓ ସହଜରେ ତ ଭାରତବର୍ଷର ଗାନ୍ଧି, ନେହେରୁ ଓ ସୁଭାଷ।

ତରୁଣମାନେ ଏସବୁ ତଥ୍ୟ ଓ ଉଦନ୍ତକୁ ଗିଳିପକାନ୍ତି; କେହି ଟିପ୍‌ପଣୀ ଦେବାକୁ ସାହସ କରନ୍ତି ନାହିଁ। ତେବେ ଜଣେ ଅଧେ ଯେ ଅବିଶ୍ୱାସୀ ନଥାନ୍ତି, ଏପରି ନୁହେଁ। ତନ୍ମଧ୍ୟରୁ ନିଶାକର ବାବୁ ଜଣେ।

ସେ କେବଳ ଥରେ ଥରେ ଏତିକି ପଚାରନ୍ତି– 'ଆପଣ ଏତେ ଦେଶ ବୁଲିଲେ, ଏତେ ବିଚିତ୍ର ଲୋକଙ୍କ ସହିତ ବନ୍ଧୁ ହେଲେ, ଭାଗ୍ୟ ଓ ଭଗବାନ ଆପଣଙ୍କୁ ଏ ଐଶ୍ୱର୍ଯ୍ୟ ଦେଲେ ଜୀବନରେ;

ଅଥଚ ଆପଣ ବର୍ତ୍ତମାନ ଏହି ପୋକ-ମଶା-କୀଟ-ପତଙ୍ଗାଶ୍ରୟୀ ପୁଷ୍କରିଣୀ ପାଖେ, ରଙ୍ଗହରା ଭଙ୍ଗା ଜୀର୍ଣ୍ଣ କୋଠରି ଭିତରେ ସ୍ୱାସ୍ଥ୍ୟହୀନ, ବିମର୍ଷ ମନ ଓ ଶରୀର ଧରି ପ୍ରତ୍ୟକ୍ଷ ଜୀବନ ଧାରଣର ବୃତ୍ତିଶୂନ୍ୟ ଭାବରେ ପଡ଼ିରହିଛନ୍ତି କାହିଁକି ?'

ଏ ପ୍ରଶ୍ନ ଯେ ଗୋଟାଏ ଅଦିନ ମେଘରେ କୁଳିଶବର୍ଷଣ ସଦୃଶ ହୋଇଯାଏ, ତାହା ସମସ୍ତେ ଅନୁଭବ କରି କମ୍ପିଯାଆନ୍ତି । କାରଣ କ୍ଷଣକୋପୀ ମଣିଧର ବାବୁ ଏପରି ଗୋଟାଏ କିଛି ଦୃଶ୍ୟ ହୁଏତ ଘଟଣ କରିବେ, ଯାହାକି ସମସ୍ତଙ୍କ ପାଇଁ ବିସ୍ଫୋରକ ହୋଇଯିବ ।

କିନ୍ତୁ ତା' ହୁଏ ନାହିଁ । କାରଣ ପ୍ରଶ୍ନକର୍ତ୍ତା ନିଶାକରର ବି ଦରଖାସ୍ତଟା ଅଧା ଟାଇପ ହୋଇ ମେସିନରେ ଝୁଲୁଛି ଓ ଏ କାର୍ଯ୍ୟ ପାଇଁ ମଣିଧର ବାବୁଙ୍କ ଆଗରେ ପାଞ୍ଚଟଙ୍କା ଓ ଗୋଟିଏ କାନ୍ଦି ଅମୃତମଣୋହୀ କଦଳୀ ଥୁଆହୋଇଛି । ନିଶାକର କାହା ନାଁରେ ମକଦ୍ଦମା କରୁଛି, ସେଇ ଦରଖାସ୍ତ ଛାପାଯାଉଛି । ମଣିଧରବାବୁଙ୍କର ଫି ଟିକିଏ ଶସ୍ତା; କିନ୍ତୁ ପ୍ରତି ସନ୍ଧ୍ୟାର ପାଉଣା ମିଶାଇଦେଲେ ସର୍ବଶେଷ ଅଙ୍କଟା ପ୍ରାୟ ମନ୍ଦ ହୁଏ ନାହିଁ ।

ବିଲାତ ରାଣୀଙ୍କ ସହିତ ତାଙ୍କର ଦେଖା-ସାକ୍ଷାତର ଗଳ୍ପଟା ବଡ଼ ଆମୋଦଦାୟକ ହୋଇଥାଏ । ଏ କାହାଣୀର ପୁନରାବୃତ୍ତି ଅସଂଖ୍ୟ ଥର ହେଲେ ବି ବିଲାତ ରାଣୀଙ୍କ ମୁହଁର ସୌନ୍ଦର୍ଯ୍ୟ ଯେପରି କେବେ ନଷ୍ଟ ହୁଏନି କି କେବେ ହେବନି, ଏ ଗଳ୍ପର ବି ଚିତ୍ତ-ଚମତ୍କାରିତା ସେହିପରି ନଷ୍ଟ ହେବନି ।

ରାଣୀ କହିଲେ, ହାତ ଉପରେ ହାତ ରଖି, ହେ ମଣିଧର ବାବୁ, ଆପଣ ଭାରତୀୟ ହୋଇ ଏତେ ସୁନ୍ଦର ହେଲେ କିପରି ? ଆମର ବିଶ୍ୱାସ ଭାରତୀୟମାନେ ସର୍ବାଙ୍ଗରେ କାଳିମା-ପ୍ରଲେପିତ । ଆପଣ ଏ ଅଙ୍ଗାରଗଦା ଭିତରୁ ମହାଜ୍ୟୋତି ହୀରକ ଜନ୍ମ ନେଲେ କିପରି ?

ମଣିଧର ବାବୁ ପ୍ରୀତି, ବିନୟ ଓ ରାଜୋଚିତ ଭଙ୍ଗୀରେ ରାଣୀଙ୍କର ଦକ୍ଷିଣ ହସ୍ତର ଅନାମିକାକୁ ସ୍ପର୍ଶ କରି ତଥା ଚୁମ୍ବନ କରି କହିଥିଲେ– 'ରାଣୀ, ଯଥାର୍ଥରେ ଆପଣ କହିଲେ ଯେ ମୁଁ ଅଙ୍ଗାରଗଦାରୁ ହୀରକ ଭଳି ଉତ୍ପନ୍ନ ହୋଇଛି । ଏଥିପାଇଁ ଏ ଜୀବନରେ କମ୍ ହଇରାଣ ମୁଁ ହୋଇନାହିଁ । ଗୋଟିକ ପରେ ଗୋଟିଏ ତରୁଣୀ ଜାତିବର୍ଣ୍ଣ-ଦେଶକାଳ-ପାତ୍ର-ନିର୍ବିଶେଷରେ ଆଗେଇ ଆସିଛନ୍ତି ମତେ ପ୍ରେମଦାନ କରିବା ପାଇଁ । ସେ ରମଣୀ ହୁଏତ ପର୍ତ୍ତୁଗାଲର ବା ବେଦୁଇନ୍ ଦେଶର ବା ବୋର୍ଣ୍ଣିଓ ସୁନ୍ଦରୀ ବା ଫରାସୀକୁମାରୀ ଅଥବା ନିଘଞ୍ଚ ଆଫ୍ରିକାର କଳାବତୀ । ମୁଁ କେତେକଙ୍କୁ ପ୍ରତ୍ୟାଖ୍ୟାନ କରିଛି । କହିବାକୁ 'ମୋର, ରାଣୀ, ସଙ୍କୋଚ ନାହିଁ ଯେ ମୁଁ କେତେକଙ୍କୁ ଗ୍ରହଣ ବି କରିଛି । ଏହା ଜଣେ ଭାରତୀୟ ପକ୍ଷରେ ଗୌରବର କଥା ନୁହେଁ କି ସାମ୍ରାଜ୍ଞୀ ?'

'ନିଶ୍ଚୟ, ନିଶ୍ଚୟ'–କହି ବିଲାତ ରାଣୀ ତାଙ୍କର ମଣିଧର-ଚୁମ୍ବିତ ଅନାମିକା ଅଙ୍ଗୁଷ୍ଠିକୁ ଟାଣିଆଣିଲେ ଓ ଏଇ ଆଣିବା ପ୍ରକ୍ରିୟା ଭିତରେ ସେ କିପରି ଗୋଟାଏ ଅବ୍ୟକ୍ତ ବେଦନା ଅନୁଭବ କଲେ ଓ ତାଙ୍କର ନେତ୍ରପ୍ରାନ୍ତରେ ଅଶ୍ରୁ ବିନ୍ଦୁ ଜକ୍ ଜକ୍ କଲା ।

ନିଶାକର, ଜଗମୋହନ, ବିରଞ୍ଚି, କେଳୁ, ଗଗନ ଓ ପ୍ରଫୁଲ୍ଲଙ୍କର ଏ ଯାଏ ନିଶ୍ୱାସ ବନ୍ଦ ରହିଥିଲା; ତାହା ସ୍ୱାଭାବିକ କ୍ରମେ ଏକ୍ଷଣି ଆତଯାତ ହେଲା । ସମସ୍ତେ ନିର୍ବାକ୍; ମାତ୍ର ସେଇ ଦୁଷ୍ଟ

ଲୋକଟା, ଅର୍ଥାତ୍ ନିଶାକର, ପୁଣି କହିପକାଇଲା– 'ବିଲାତ ରାଣୀ କଅଣ ଆପଣଙ୍କୁ ପ୍ରେମ ନିବେଦନ କଲେ ତତ୍‌କ୍ଷଣାତ୍ ?'

ମଣିଧର ବାବୁ ଏତିକି ସଂକ୍ଷେପରେ ସୂଚନାତ୍ମକ ଭାଷାରେ କହିଲେ– 'ଆମେ ତା'ପରେ, ଅର୍ଥାତ୍ ବିଲାତର ରାଣୀ ଓ ମୁଁ, ରାଣୀଙ୍କର ନିଭୃତ ଶୟନାଗାରକୁ ଚାଲିଗଲୁ ।'

ଏହା ପରେ ସେ ସନ୍ଧ୍ୟାର ବୈଠକ ଆଉ ଜମିବାର କଥା ନୁହେଁ । କାରଣ ନିଭୃତ ଶୟନାଗାର, ସେ ପୁଣି ବିଲାତ ରାଣୀଙ୍କର ଶୟନାଗାରର ତାତ୍‌କାଳିକ ରହସ୍ୟ; ତାଳ ଲୟ, ମାନ ଓ ଛନ୍ଦ କ୍ରମେ ସମସ୍ତଙ୍କର ଅବଚେତନ ମନରେ ଏତେ ପ୍ରବଳ ପ୍ରକମ୍ପ ଦେଲା ଯେ ସମସ୍ତେ ଆସନ ଛାଡ଼ି ଗୋଟିଏ ଗୋଟିଏ ବିନୀତ ନମସ୍କାର ମଣିଧରବାବୁଙ୍କୁ ଜଣାଇ ବାହୁଡ଼ିଗଲେ ।

କାହାର କ୍ଷତି କରିବାକୁ ହେଲେ, କାହାକୁ ବିପଦଗ୍ରସ୍ତ କରିବାକୁ ହେଲେ, କାହାକୁ ଅପନିନ୍ଦିତ କରିବାକୁ ହେଲେ, ମଣିଧରଙ୍କର ବୈଠକଖାନା ହିଁ ଉପଯୁକ୍ତ ରଙ୍ଗସ୍ଥଳୀ ବୋଲି ବିବେଚିତ ହୋଇଆସିଛି । ଏହି ହେଲା ଜୀବିକା ବିଲାତ ରାଣୀଙ୍କର ପ୍ରେମିକ, ଗାନ୍ଧିଙ୍କର ବନ୍ଧୁ ଓ ଇଥିଓପିଆ ସମ୍ରାଟଙ୍କର ଦେହରକ୍ଷୀ ମଣିଧରବାବୁଙ୍କର । ଏହି ବୈଠକରେ ଚରିତ୍ର ସଂହାର ହୁଏ, ଚରିତ୍ର ଗଢ଼ାଯାଏ, କାଦୁଅ ଫୋପଡ଼ାଯାଏ ଓ କାଦୁଅ ଧୁଆଯାଏ କେତୋଟି ମାତ୍ର ମୁଦ୍ରା ଓ ବାଇଗଣ, କଖାରୁ, କଦଳୀ କାନ୍ଦିର ଉପଢ଼ୌକନ ସୂତ୍ରରେ ।

'ଛିଃ, ମନ୍ତ୍ରୀଗୁଡ଼ାକୁ କିଏ ପଚାରେ ? ସେଗୁଡ଼ାକ ମୋ ପଛରେ କୁକୁର ଭଳି ଗୋଡ଼ାଉଛନ୍ତି ମୋ ଠାରୁ ବୁଦ୍ଧି ଶିଖିବାକୁ । ଅବଶ୍ୟ ମୁଁ ବୁଦ୍ଧି ଦେଇ ଆସିଛି, ହେଲେ ସେଗୁଡ଼ାକ ନିର୍ବୁଦ୍ଧିଆ'–ଏହା ଏକ ସାନ୍ଧ୍ୟ ବୈଠକର ଥିଲା ଆଲୋଚିତ ବିଷୟ । ସେହି ନିଶାକର ପୁଣି ପଚାରିଦେଲା– 'ଆପଣ ଏତେ ବୁଦ୍ଧି ବିକ୍ରୟ କରୁଛନ୍ତି, ଅଥଚ ନିଜ ବୁଦ୍ଧିରେ ଗୋଟାଏ ସୁସ୍ଥ ଶୁଭଙ୍କର ଜୀବିକା ତ ଆପଣଙ୍କର ନାହିଁ ? ଆମେ ଯାହା ଦେଉଛୁ ତାହା ଆପଣଙ୍କର ବହୁ କୁଅଭ୍ୟାସକୁ ତ ଅଣ୍ଟୁ ନଥିବ ?'

ମଣିଧର ବାବୁ ହସିଲେ । କହିଲେ– 'ଠିକ୍ ଏମିତିକା ଗୋଟାଏ ପ୍ରଶ୍ନ ମତେ ସୁଭାଷ–ଆମ ସୁଭାଷ ବୋଷ ମ–ପଚାରିଥିଲା ଗୋଟାଏ କଂଗ୍ରେସ ସେସନ୍‌ରେ । ସେ କହିଲା– ଆପଣ ମଣିଧର ବାବୁ ଏତେ ପ୍ରତିଭାର ଅଧିକାରୀ ହୋଇଛନ୍ତି, ଅଥଚ କଂଗ୍ରେସ ସଙ୍ଗଠନରେ ସକ୍ରିୟ ଅଂଶ ନେଉନାହାଁନ୍ତି କାହିଁକି ? ଗୋଟାଏ ଜୀବିକା ତ ମିଳିଯାଆନ୍ତା ?

ମୁଁ ଉତ୍ତର ଦେଇଥିଲି–ମୁଁ ଆନ୍ତର୍ଜାତିକ ହେବାକୁ ଚାହେଁ, ମୁଁ ବିଶ୍ୱବ୍ୟାପୀ ହେବାକୁ ଚାହେଁ, ମୁଁ ତୁମର ଏହି କ୍ଷୁଦ୍ର କଂଗ୍ରେସ ଅନୁଷ୍ଠାନରେ ରହିପାରିବି ? ତାହା ହେବନି । ସୁଭାଷ ତତ୍‌କ୍ଷଣାତ୍ କଥାଟାର ଗୁରୁତ୍ୱ ବୁଝି ମତେ ନମସ୍କାର କରିଥିଲା ।'

ନିଶାକର ପୁଣି ଥରେ ପଚାରିଦେଲା–ଆପଣ ଯେ ତିନିଥର ପରିଣୟ କରିଛନ୍ତି, ଯଦିଓ କେଉଁଟିର ଅବଶେଷ କିଛି ନାହିଁ, ଏହା କଅଣ ସେହି ବିଶ୍ୱବ୍ୟାପୀତ୍ୱର ଚିହ୍ନ ?

ସମସ୍ତେ ନିର୍ବାକ୍ ହୋଇଗଲେ ।

ଏ ପ୍ରଶ୍ନ ଅତୀତର ସବୁ ପ୍ରଶ୍ନଠାରୁ ବଳିଗଲା । ନିଶାକରଟା କଅଣ ପାଗଳ ହୋଇଗଲା ? ସମସ୍ତେ ଆତଙ୍କ ମଣିଲେ ।

ସବୁ ସାନ୍ଧ୍ୟ ବୈଠକରେ ମଣିଧରବାବୁ ସମସ୍ତଙ୍କଠାରୁ କିଛି କିଛି ଦେୟ ଗ୍ରହଣ କରନ୍ତି, ମାତ୍ର ଚା' କପେ ବି କାହାକୁ ଦିଅନ୍ତି ନାହିଁ। ଆଜି ଏଇ ବୈଠକ ଭିତରେ ଗୋଟିଏ କପ୍ ଚା' ଆସିଲା; ଯଦିଓ ବୈଠକରେ ଶ୍ରୋତୃବର୍ଗଙ୍କ ସଂଖ୍ୟା ଦଶଜଣ।

ଏ ଅଭିନବ ବ୍ୟାପାରରେ ସମସ୍ତେ ଚକିତ ହୋଇଗଲେ। କିନ୍ତୁ ମଣିଧର ବାବୁ ନିଜେ ସେ ମଳିନ ହାତଭଙ୍ଗା ଚା'ପାତ୍ରଟି ନିଜ ମୁଖକୁ ନେଇ ଢୋକେ ପିଇ ଚିତ୍କାର କଲେ– 'ମଧୁଆ, ଆବେ ମିଠା କାହିଁ? ଚିନି? ଚିନି? ଏଗୁଡ଼ାକ ଖାଲି ପାଣି...'

ମଧୁଆ ଘର ଭିତରୁ କହିଲା– ଚିନି ନାହିଁ ଘରେ।

–ଗୁଡ଼?

–ନାହିଁ।

–ଆରେ ବାବୁମାନେ ଚା' ପିଇବେ ନାହିଁ?

–ଏଇ ଗୋଟିଏ କପ୍।

–ହଉ।

ସମସ୍ତେ ଏକ ସ୍ୱରରେ କହିଲେ– 'ନାଇଁ ଆଜ୍ଞା, ଆମର ଚାହା ଖାଇବାର ଅଭ୍ୟାସ ନାହିଁ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ–ଆମେ ଏବେ ଉଠୁଛୁ। କିନ୍ତୁ ଏ ପୋଖରୀ କୂଳରେ ବହୁତ ସାପ ଥିବାରୁ ଜାଣୁ, ଟିକିଏ ମଧୁଆ ଯଦି ଟର୍ଚ୍ଚ ଦେଖାଇଦିଅନ୍ତା...'

ପାଟିକଲେ ମଣିଧରବାବୁ– ମଧୁଆ, ଟର୍ଚ୍ଚ ଆଣ।

ମଧୁଆ ଜଣେ ବୌଦ୍ଧ ଶ୍ରମଣର ଚିରାଚରିତ ନିଷ୍ପନ୍ଦ ଧ୍ୱନି 'ବୁଦ୍ଧଂ ଶରଣଂ ଗଚ୍ଛାମି' ଶୁଣାଇ କହିଲା–

–ଟର୍ଚ୍ଚ ନାହିଁ।

–ତେବେ ଲଣ୍ଠନ୍ ଆଣ୍।

–ଲଣ୍ଠନ୍‌ଟା ଖାଲି ପଡ଼ିଛି, କାଚ ନାହିଁ।

–କାଚ ଗଲା କୁଆଡ଼େ?

–କୋଉ ଦିନରୁ ଭାଙ୍ଗି ଯାଇଛି।

ନିଶାକର ପ୍ରଥମେ ଛିଡ଼ାହୋଇପଡ଼ି କହିଲା– 'ଥାଉ–ସମସ୍ତେ ଆମେ ତାଳି ମାରି ମାରି ଚାଲିଯିବୁ। ଓଃ କି ଅନ୍ଧାର! ଆପଣ ବ୍ୟସ୍ତ ହେବେ ନାହିଁ।'

ମଣିଧରବାବୁ କେବଳ ଅନ୍ଧାରକୁ ଚାହିଁ ରହିଲେ।...



# ପତ୍ରଉପର ପତଙ୍ଗ

ଟେଲିଗ୍ରାମର ଭାଷା...

"ତୁମେ ସଂଧ୍ୟାରେ ଆସ, ମୁଁ ଅପେକ୍ଷା କରିଥିବି।"

ଏ ଟେଲିଗ୍ରାମ୍‌ର ଲେଖିକା ମଧୁମତୀ। ପ୍ରଶାନ୍ତ ଉଚ୍ଛ୍ୱସିତ ହେଲେ। ମଧୁମତୀ ପତ୍ର ନ ଦେଇ ଟେଲିଗ୍ରାମ୍ କରିବାର କାରଣ? ବୋଧହୁଏ ସେ ବିପଦରେ ପଡ଼ିଛି ଅବା ଅନେକ ଦିନରୁ ଦେଖା ହୋଇ ନ ଥିବାରୁ ସାକ୍ଷାତର ଆୟୋଜନ।

ପ୍ରଶାନ୍ତଙ୍କର ଜୀବନଧାରା ଏହି ରମଣୀକୁ କେନ୍ଦ୍ର କରି ପ୍ରବାହିତ। ଏବେ ଏକବର୍ଷ ହେଲା ସ୍ୱାଭାବିକ ନିବିଡ଼ତା ପରିବର୍ତ୍ତେ କେତୁଟା ଅଭିମାନ-ପର୍ବର ମନ କଷାକଷି ବିଚ୍ଛିନ୍ନ ଭାବ। ପ୍ରଶାନ୍ତ ଜାଣନ୍ତି, ତାହା ଗୁରୁତର ନୁହେଁ। ଚିବୁକ ଥରେ ସ୍ପର୍ଶ କଲେ ତାହା ମିଳାଇଯିବ।

ମଧୁମତୀର ଜୀବନରେ କିଏ କିଏ ଆସିଛନ୍ତି, କିଏ କିଏ ଯାଇଛନ୍ତି, ଏହାର ଇତିବୃତ୍ତ ସଂଗ୍ରହର ଅଧ୍ୟାୟ କେଉଁ ଦିନରୁ ମସୀହୀନ। କି ମିଳିବ ଅତୀତର ପ୍ରେତନୃତ୍ୟ ଦେଖି? ସାମାନ୍ୟ ହୃଦୟ ଘେନାଘେନି ଏ ସମ୍ବନ୍ଧ ନୁହେଁ। ଜଣେ ବିକାଶଶୀଳା ହୋଇଛି। ଅନ୍ୟର ସାହାଚର୍ଯ୍ୟରତା; ଆଉ ଅନ୍ୟ ଜଣକ ପାଇଛି ଜୀବନରେ ପ୍ରଶାନ୍ତି, ବାଟ ଚାଲିବାର ମୋହ।

ପଥ ଚାଲିଲେ ଯେତେ ଆତ୍ମବିଶ୍ୱାସ ଘେନି ବି କଣ୍ଟା ବିନ୍ଧେ। ମଧୁମତୀ ପଚାରେ, "ମତେ ଚିରନ୍ତନ କିଛି ଦିଅ, ମୋ ପ୍ରାଣ ଆକୁଳିତ। ମୁଁ ଚାହେଁ ନୀଡ଼ ରଚନା କରିବି।" ପ୍ରଶାନ୍ତ ନିରୁପାୟ ବୋଧକରେ। କାରଣ ନୀଡ଼ ରଚନା ନ କରି ସେ ପ୍ରସାରିତ କରିଛି ତା'ର ଆତ୍ମାର ସ୍ପନ୍ଦନକୁ। କିନ୍ତୁ ଜଣେ ରୋମାଞ୍ଚିକା ନାରୀପକ୍ଷରେ ନୂତନ ନୂତନ ରୋମାଞ୍ଚର ଆୟୋଜନ ଅହେତୁକ ନୁହେଁ। ସେଠାରେ ଆତ୍ମାର ବିମଳ ଅନୁଭୂତି ନିଃଶେଷପ୍ରାୟ। ତଥାପି ପ୍ରଶାନ୍ତ ସାନ୍ତ୍ୱନା ଦେଇଛି; କହିଛି, "ସାମାଜିକ ସ୍ୱୀକୃତି ଦେବା ମୋ ପକ୍ଷରେ ସମ୍ଭବ ନୁହେଁ; ମାତ୍ର ମଧୁମତୀ, ତୁମେ କାବ୍ୟର ଉପେକ୍ଷିତା ନାୟିକା ନୁହଁ; ମୋ ଅନ୍ତରର ବିଳସିତ ନାୟିକା। ବିଶ୍ୱର ପ୍ରଣୟ-ଇତିହାସରେ କେବଳ ନୀଡ଼ ରଚନା ହିଁ ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ ହୋଇ ରହିନାହିଁ। ନୀଡ଼ହୀନ ଅନନ୍ତ ନୀଳିମ ଆକାଶରେ ଶୂନ୍ୟ ଚାରଣର ବି ଗୋଟାଏ ଉତ୍ତେଜନା ଅଛି। ଆସ, ତାହାହିଁ ହେଉ ଆମର ଧ୍ୟାନ।"

ମଧୁମତୀ କ୍ରମେ ଅନାସକ୍ତ ହେଲା ପ୍ରଶାନ୍ତ ପ୍ରତି। ସେ ଭାବିଲା ଏ ନିଷ୍ଫଳପ୍ରତୀକ୍ଷାରେ ଅନ୍ତ ନାହିଁ। ଅଥଚ ଏଣେ ବୟସ ବଢୁଛି, ମନ ବି ବର୍ଣ୍ଣିଳ ପ୍ରଜାପତିର ପକ୍ଷ ଛାଡ଼ି ବାସ୍ତବର କୁଜ୍‌ଝଟିକାରେ ଅସ୍ପଷ୍ଟ ହୋଇ ଆସୁଛି। ସେ ଅନ୍ୱେଷଣ କରିବ ଏପରି ଏକ ପୁରୁଷକୁ ଯେ ଥିବ ଅବିବାହିତ ଓ ଯାହାର ବକ୍ଷତଳେ ପ୍ରସରୁଥିବ ତାକୁ ସବୁ ବିପଦରୁ ତ୍ରାଣ କରିବାର ନିର୍ଭୀକ ତେଜ।

ଟେଲିଗ୍ରାମ୍ ପାଇ ପ୍ରଶାନ୍ତ ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିଗଲେ। ଚିରାଚରିତ ପ୍ରତୀକ୍ଷା ନେଇ ମଧୁମତୀ·

ଛିଡ଼ା ହୋଇଥିବ– ଏଇ ଭାବନା ଥିଲା ପ୍ରଶାନ୍ତର ହୃଦୟରେ। କେତେଥର ଏହିପରି ଆବାହନ ଓ ପ୍ରତ୍ୟର୍ପଣର ଦୃଶ୍ୟରେ ସେ ହୋଇଛନ୍ତି ନାୟକ।

କିନ୍ତୁ ଏ କଅଣ ?

ବସିବା ଘର ଅନ୍ଧାର। କେହି ଜଣେ ଯୁବକ ସେହି ଅନ୍ଧକାର କକ୍ଷରୁ ଚାଲିଗଲେ ଭିତରକୁ। ମଧୁମତୀ ପ୍ରଶାନ୍ତର ପାଦଧ୍ୱନି ଶୁଣି ନିର୍ବାକ୍ ବିସ୍ମୟରେ ଚାହିଁରହିଲା ତାଙ୍କୁ।

"ତୁମେ, ଏତେବେଳେ, ନା–ନା...ଘରେ ଲୋକ ଭର୍ତ୍ତି, ତୁମେ କାହିଁକି ଆସିଲ ?"

ସ୍ତବ୍ଧ ବିସ୍ମିତ ପ୍ରଶାନ୍ତ କ୍ଷଣମାତ୍ର ଚାହିଁରହନ୍ତି ମଧୁମତୀର ଶୀର୍ଣ୍ଣ ସ୍ୱଚ୍ଛାଲୋକିତ ମୁଖକୁ। ଏ ମୁଖ ତ ତାଙ୍କର ଚିହ୍ନା–ମୁଖ ନୁହେଁ! ଏ ତେବେ କିଏ ?

ଫେରିଆସନ୍ତି ପ୍ରଶାନ୍ତ। ଘୂରିବୁଲନ୍ତି ଚାରିଆଡ଼େ। ମନର ଗ୍ଲାନି ଦାଉ ଦାଉ ଜଳିଉଠେ। ଟେଲିଗ୍ରାମ୍ କରି ମଧୁମତୀ ଏତେ ଇତସ୍ତତଃ ହେଲା କାହିଁକି ? ଆଉ ସେ ଯୁବକ କିଏ ?

ଦୀର୍ଘ ଦୁଇଘଣ୍ଟା ପରେ ପୁଣି ଥରେ ମଧୁମତୀର ଆବାସକୁ ଆସନ୍ତି ପ୍ରଶାନ୍ତ। ସେ କକ୍ଷ ଘନ ଅନ୍ଧକାରରେ ସିମିତି ଜମାଟ ବାନ୍ଧିଛି।

ପ୍ରଶାନ୍ତ ଶୁଣିଲେ ଜଣେ ଯୁବକ ଓ ଜଣେ ଯୁବତୀର ମୃଦୁ କଥୋପକଥନ। ପ୍ରଶାନ୍ତକୁ ଦେଖି ମଧୁମତୀ ଅନ୍ତରାଳକୁ ଚାଲିଯାଏ। ନୀରବ ନିସ୍ତବ୍ଧ କେତୋଟି ମୁହୂର୍ତ୍ତ। ତା'ପରେ ଆଲୋକର ଝରଣା।

'ଆସନ୍ତୁ।'

ଯୁବକଟି ନବ୍ୟ ଉତ୍କଟ ଆଧୁନିକ ବେଶରେ ପରିପାଟୀ–ମଣ୍ଡିତ। କକ୍ଷ ଭିତରେ ସୁରାଗନ୍ଧର ବାୟୁପ୍ରବାହ, ସିଗ୍ରେଟ୍ ପ୍ୟାକେଟ। ଅର୍ଦ୍ଧଦଗ୍ଧ ଖଣ୍ଡେ ସିଗ୍ରେଟ୍‌ର ଶବ ପଡ଼ିଛି ଟେବୁଲ ଉପରେ।

ମଧୁମତୀ ଫେରିଆସିଲା ଅନ୍ତରାଳରୁ ବୋତଲଟିକୁ ଲୁଚାଇ ଦେଇ। ବସିଲା ନିର୍ଲିପ୍ତଭାବରେ...ଯେ ରୂପର ଅଙ୍ଗେ ଅଙ୍ଗେ ରଙ୍ଗର ଦୋଳନ ଥିଲା, ସେ ରଙ୍ଗକୁ କିଏ ଯେମିତି ପୋଛିଦେଇଛି ଏକ କଳା–କଳଙ୍କ ବସନ ଦେଇ... ଏ କ'ଣ ସେଇ ମଧୁମତୀ, ଯେ ଶ୍ରୀମା'ଙ୍କ ଛବି ଉପରେ ପ୍ରଣିପାତ ନ କଲେ ଜଳ ସ୍ପର୍ଶ କରେନି ? ଏ କଅଣ ସେଇ ମଧୁମତୀ, ଯେ ପ୍ରଶାନ୍ତକୁ କହିଆସିଛି ଜୀବନସାରା ସେ ଓ ପ୍ରଶାନ୍ତ ଏକ ଓ ଅଭିନ୍ନ ?

ଅଭିନୟ ଆରମ୍ଭ ହେଲା ଅଭିସାରିକାର। ପଚାରିଲା ମଧୁ– "ଏଇ କେତେ ସମୟ ହେଲା ପଟ୍ଟନାୟକ ସହିତ କଥାବାର୍ତ୍ତା ହେଉଥିଲା; ମୁଁ କେଉଁଠି ତୁମକୁ ଡାକେ ପ୍ରତି ଶନିବାରେ, ତୁମେ ଆସ ଆଉ ମୋ ପାଖରେ ରହିଯାଅ କିଛି ଦିନ। ମୋର ତୁମ ପାଖକୁ ସବୁ ଚିଠିର ନକଲ ବଣ୍ଟାଯାଇଛି। ତା'ଛଡ଼ା ମୁଁ ଦିଏ ତୁମକୁ ଧନ, ଅର୍ଥ, ଯାହାବଳରେ ତୁମେ ମଣିଷଭଳି ମଣିଷ ହୋଇ ସମାଜରେ ଚଳିଯାଉଛ। ଏହା କଅଣ ସତ ?"

ପୁଣି ଆରମ୍ଭ କଲା– "ତୁମେ ହୁଏତ କଅଣ ଭାବୁଥିବ; କିନ୍ତୁ ପଟ୍ଟନାୟକ ଭଳି ଆତ୍ମୀୟ ମୋର ଦରକାର। ମୁଁ ଗୋଟାଏ ଝିଅ, ସଂସାର ସହିତ ସଂଗ୍ରାମ କରୁଛି, ଅଥଚ ପୁରୁଷର ସହାୟତା ନେବିନି, ଏ କଅଣ ସମ୍ଭବ ?"

ପଟ୍ଟନାୟକ ନାମକ ଯୁବକ ବାଚାଳ ଢଙ୍ଗରେ କଥା ଆରମ୍ଭ କଲା–

"ଡିନର୍, ଡିନର୍ ଖାଇବେ ?"

ମଧୁ ବାରଣ କଲା– "ନା, ପଟ୍ଟନାୟକ, ଆମେ କେହି ଭଲ ମୁଡ୍‌ରେ ନାହୁଁ। ତେଣୁ ଡିନର୍ ପ୍ରସଙ୍ଗ ଅବାନ୍ତର। ହଁ, ଫାମିଲି ଆଣି ଆସିଛ ବୋଧହୁଏ ? କେଉଁଠି ଅଛନ୍ତି ସେମାନେ ?"

ପ୍ରଶାନ୍ତ ଜାଣିଲେ ମଧୁମତୀ ଜୀବନ– ଗ୍ରନ୍ଥର ଆଉ ଏକ ପୃଷ୍ଠା ଓଲଟିଯାଇଛି। ଦୁଃଖ, ଲଜ୍ଜା ଓ ଅପମାନରେ ସେ ଥରିବାକୁ ଲାଗିଲେ। କହିଲେ– "ହଁ, ଫାମିଲି ଆସିଛନ୍ତି।"

ପଟ୍ଟନାୟକ କହିଲା– "ନେଇ ଆସନ୍ତୁ ଆଜ୍ଞା, ଆମେ ସମସ୍ତେ ଏକା ସାଙ୍ଗରେ ଡିନର୍ ଖାଇବା। ଦେଖ ମଧୁ, ଗ୍ଲାସେ ପାଣି ଦିଅ।"

ପ୍ରଶାନ୍ତ ବୁଝିଲେ ଏ ପାଣି -ଗ୍ଲାସକ ମାଗିବା ପଛରେ ଲୋକଟାର ମଧୁ ଉପରେ କର୍ତ୍ତୃତ୍ୱ କେତେ ତା'ର ପରିଚୟ ଦେଉଛି। ମଧୁର ଅଦୃଷ୍ଟରେ ଏ ହେଲା କଅଣ ?

ପଟ୍ଟନାୟକ ଛିଡ଼ା ହୋଇ ପାଣି ପିଇଲା– ଅଥଚ ଗୋଡ଼ ଠିକ୍ ପଡୁନଥାଏ। ବାତାବରଣ ଅସହ୍ୟ ହେଲା ପ୍ରଶାନ୍ତଙ୍କର। ସେ ଆସନ ଛାଡ଼ି ଛିଡ଼ାହେଲେ।

ଏ କକ୍ଷକୁ ପ୍ରଶାନ୍ତ ଆସିଛନ୍ତି ବହୁବାର। ମଧୁମତୀକୁ ପଥ ଦେଖାଇଛନ୍ତି ଜୀବନକୁ ଉନ୍ନତ କରିବାକୁ। ଦୁହିଙ୍କର ସମ୍ବନ୍ଧରେ ପୁଷ୍ପ ଯେତିକି ଫୁଟିଛି ଭସ୍ମ ବି ସେତିକି ପଡ଼ିଛି। ତଥାପି ଆଜିଯାଏ ବିଶ୍ୱସ୍ତ ଓ ଏକାତ୍ମ ହୋଇ ରହିଥିଲେ ସେମାନେ।

କିନ୍ତୁ ଆସନ୍ନ ଏଇ ଶରତ୍‌ର ସର୍ବମୟ ମାଦକତା ମଧୁମତୀକୁ ନୂତନ ଅତିଥି ନିର୍ବାଚନରେ ଦେଇଥିଲା ସ୍ୱର୍ଣ୍ଣପକ୍ଷ ପ୍ରଜାପତିର ଆକାଶ-ଉତ୍ତରଣ।

ବାଟ ଓଗାଳି ଛିଡ଼ାହେଲା ପଟ୍ଟନାୟକ। ଦୃପ୍ତଭଙ୍ଗୀରେ କହିଲା– "ପ୍ରଶାନ୍ତବାବୁ, ଦୁଇଜଣଙ୍କର ଦଶବର୍ଷର ଇତିହାସ ମୁଁ ଜାଣେ। ଆପଣ ଯଦି ମଧୁକୁ ସୁଖ ପାଆନ୍ତି ତେବେ ଏତିକିରେ ଶେଷ ହେଉ କାରଣ ମୁଁ ଆସିଛି ଆପଣଙ୍କଠାରୁ ମହତ୍ତର ପୌରୁଷ ଘେନି, ବନ୍ଧନହୀନ ମୁଁ...ହୀପିମାର୍କା ଯୁବକ, ଯେ କି ତା'ର ପ୍ରଣୟିନୀକୁ ଖୋଜିନିଏ, ପଥପ୍ରାନ୍ତରେ ଓ ଖୁଆଏ ତାକୁ ଏଲ.ଏସ୍.ଡି.ବଟିକା ଓ ନିଜେ ଖାଏ।"

"ଆଉ ଏକ ମଧୁମତୀ ଦଶବର୍ଷଯାକ କେବଳ ଆପଣଙ୍କ ପାଖରୁ ଶୁଣିଆସିଲା ନିରାମିଷ ଆଦର୍ଶବାଦର କଥା। କେବେହେଲେ ତା' ଅଧର ଛୁଆଁଇ ଥରେ ମାତ୍ର ସୁରା ତାକୁ ପିଆଇ ନାହାନ୍ତି ଆପଣ। ତେଣୁ ଆଜି ତା'ର ଜୀବନରେ ନୂତନ ଦିଗନ୍ତ ଖୋଲିଗଲା, ଆଉ ମୁଁ ହେଲି ପୁଣି ଦଶବର୍ଷଯାଏ ଅପ୍ରତିଦ୍ୱନ୍ଦୀ ସମ୍ରାଟ୍ ତା'ର ଅଦୃଷ୍ଟ ଅଙ୍ଗ ଓ ଆବରଣ ଉପରେ। ଯାଆନ୍ତୁ, ଆଉ ଫେରିବେ ନାହିଁ।"

ପ୍ରଶାନ୍ତ ବଜ୍ରାହତ। ତେବେ ସେ ଟେଲିଗ୍ରାମ୍ ?

ମନକଥା ଛଡ଼େଇନେଇ ସେହି ଉଦ୍ଧତ ଯୁବକ ପଟ୍ଟନାୟକ କହିଲା– "ମୋର ଆନନ୍ଦ ଯେ ଆପଣ ଟେଲିଗ୍ରାମ୍ ପାଇ ଆସିପାରିଲେ। ମୋର ଉଦ୍ଦେଶ୍ୟ ସଫଳ ହୋଇଛି। ଆପଣ ସ୍ୱଚକ୍ଷୁରେ ଦେଖିଲେ। ଯଦି ଦେଖି ନ ପାରିଥାନ୍ତି, ଜାଣିପାରିଥିବେ। ଆପଣ ଆସିବାବେଳକୁ ଆମେ ଦୁହେଁ ପିଉଥିଲୁ। ଏହା ପରେ ମଧୁମତୀ ଯେ ଆପଣଙ୍କୁ ଠକିଛି, ସେଥିରେ କିଛି ସନ୍ଦେହ ଅଛି କି ? ମୁଁ ଟେଲିଗ୍ରାମ୍ କରିଥିଲି। ମଧୁ ଜାଣେନି।"

ହଠାତ୍ ପ୍ରଶାନ୍ତ ଚିତ୍କାର କଲେ– "ଟେଲିଗ୍ରାମ୍‌ର କୋର୍ଡ ଶବ୍ଦ ?"

ପଟ୍ଟନାୟକ 'ଗୁଡ୍ ବାଇ' କହି ସମସ୍ୱରରେ ଚିତ୍କାର କଲା– "ମଧୁ ମତେ ଆଗରୁ ଶିଖାଇଦେଇଥିଲା; ଅବଶ୍ୟ ଏ ନିର୍ଦ୍ଦିଷ୍ଟ ଟେଲିଗ୍ରାମ୍ କଥା ସେ ଜାଣେନି। ଆହା ବିଚାରୀ, କଅଣ କହୁଛ ଡାର୍ଲିଂ ?"

ପ୍ରଶାନ୍ତ ମଧୁମତୀକୁ ଦେଖିଲେ। ସେ ଯେପରି ଜଳି ଜଳି ଶିଖାମୟ ହୋଇ ଆକାଶରେ ଲୀନ ହୋଇଯାଇଛି। ତା'ର ଯେପରି ଆଉ ଶରୀର ନାହିଁ– ସେ ଅଶରୀରୀ। ଶରୀରରେ ଯେ ଏତେ ମାରାତ୍ମିକା ଥିଲା, ଅଦେହରେ ସେ ଯେ କି ମାରାତ୍ମିକା ନହେବ ? ପ୍ରଶାନ୍ତ ଚମକି ଉଠିଲେ–ନା, ନା...ତା'ସମ୍ଭବ ନୁହେଁ।

ସମ୍ଭବ ଓ ଅସମ୍ଭବ ଊର୍ଦ୍ଧ୍ୱରେ ଛିଡ଼ାହୋଇଥିଲା ଏକ ନାରୀମୂର୍ତ୍ତି, ବିଶୀର୍ଣ୍ଣା; ଏକ ପତ୍ରରୁ ଅନ୍ୟ ପତ୍ରକୁ ଡେଇଁ ଉଡ଼ିବୁଲିବା ଗୋଟିଏ ପତଙ୍ଗ।



# ମ୍ଲେଚ୍ଛ-ନିଧନ

ବାଘ ହେଣ୍ଟାଳ ଦେଉଛି...

ହାତୀ ବନସ୍ତ ଥରାଉଛି...

ଆଉ ଯେତେକ ନିଶାଚର ପଶୁପକ୍ଷୀ, ଆରଣ୍ୟକ ଓ ହିଂସ୍ର, ସମସ୍ତେ ଜାଗ୍ରତ ଏଇ ନିଶାର୍ଦ୍ଧରେ...

କୋରାପୁଟ, ଗୁଣୁପୁର ଓ ରାୟଗଡ଼ାର ଜଙ୍ଗଲ...ଅସୂର୍ଯ୍ୟଂପଶ୍ୟ, ବିରାଟ, ନିସ୍ତବ୍‌ଧ।

ଅରଣ୍ୟର ଏକ ଶକ୍ତି ଅଛି, ଅଛି ଆତ୍ମା। ବନସ୍ପତି ଉଠିଯାଇଛି ଆକାଶଚୁମ୍ବୀ। ନିର୍ଝର ଝରିଯାଉଛି ଶୈଳ-ଶିଖରରୁ...ଶାଳବନର ଶୋଭା... ସବୁ ଯିମିତି ଆଜି ନିରୀକ୍ଷଣ କରୁଛନ୍ତି ରାମାରାଓକୁ...

ଏ ରାମାରାଓ କିଏ? ସେ ଜନ୍ମ ନେଇଛି କେଉଁଠି? କଅଣ ତା'ର ବ୍ୟବସାୟ, କିଏ ତା'ର ଜନକ-ଜନନୀ? ଅଥଚ ଏହାର ଉତ୍ତର କିଛି ନାହିଁ।

ସେ ଏହି ନିଶାର୍ଦ୍ଧରେ ଚାଲିଛି କୋରାପୁଟର ନିଘଞ୍ଚ ଜଙ୍ଗଲରେ। ନିଜର ପ୍ରାଣଟାକୁ ହାତମୁଠାରେ ରଖି ସେ ଦେଖୁଛି ତା'ର କାଳ ଶେଷ ହୋଇ ଆସୁଛି। ଆସିବା ପୂର୍ବରୁ ସେ କିଛି କରିଯିବ ଏ ସଂସାର୍ରରେ, ଯାହା ପାଇଁ ସେ ସୌଖୀନ ମଣିଷ ପାଖରେ ହେବ ଘୃଣିତ, ଆଉ କୋଟି କୋଟି ଶୋଷିତ ମଥିତ ଦଳିତ ପ୍ରାଣୀ ନିକଟରେ ସେ ହେବ ତ୍ରାଣକର୍ତ୍ତା।

ସେଇ ନିରନ୍ନ ଆଦିବାସୀ ଗାଁର ମୁଣ୍ଡିଆ ପାଖ ମହୁଲ ଗଛ ତଳେ ରାମାରାଓ ଶୋଇପଡ଼ି ସ୍ୱପ୍ନ ଦେଖୁଛି...

– 'ମାଆ ଖାଇବାକୁ ଦେ।'

– 'ନାହିଁ ବାପ।'

– 'ପିନ୍ଧିବାକୁ ଦେ।'

– 'କିଛି ନାହିଁ।'

– 'ମୁଁ ମେହନତ କରିବି, କିଏ କାମ ଯୋଗାଇଦିଅ।'

'ତା ବି ନୁହେଁ, କାରଣ ଗୋଟିଏ କାମକୁ ହଜାରେ ଟଙ୍କା ଲାଞ୍ଚ।'

'ମୋର ଜମିବାଡ଼ି କାହିଁ?'

'ସାହୁକାର ନେଇଯାଇଛି।'

'ମୁଁ ବଞ୍ଚିବି କେମିତି?'

'ଅଦରକାରୀ ଜୀବଗଣ ମରିଗଲେ ଭଲ। କେହି ଲୁହ ଗଡ଼ାଇବେନି, କି ଆହା କରିବେନି; କାରଣ ରାମାରାଓ ଭଳି ମଣିଷ ଜନ୍ମନିଏ ଦରିଦ୍ରତାର ପଚା ସଢ଼ା ପୂତି ଭିତରରୁ...ମରେ, ଯିମିତି ମରିଯାଏ କୁକୁରଟା ଲାଠିମାଡ଼ ଖାଇ ଅହେତୁକ ଭାବରେ। ଏ ଜଘନ୍ୟ ଜନ୍ମ ଓ ମୃତ୍ୟୁକୁ ଯିଏ ବିଧାନ କରୁଛି ସେ ଈଶ୍ୱର ନୁହନ୍ତି। ସେ ଏଇ ମଣିଷ, ଯାହାର ମଥା ଉପରେ ସୂର୍ଯ୍ୟ ଶଶୀ ତାରା କିରଣ ଢାଳନ୍ତି; ଯାହାର ପାଦତଳେ ଲିପିହୋଇଥାଏ ଚନ୍ଦନ ଅଗୁରୁ; ଯିଏ ବଞ୍ଚିଛି ଅନ୍ୟର ମରଣ ଉପରେ।'

ରାମାରାଓ ସ୍ୱପ୍ନ ଦେଖୁଛି– ଅଶରୀରୀ ତା'ର ପିତାର ପ୍ରେତାତ୍ମା ଚାହୁଁଛି ରକ୍ତ ସେଇ ଗୌନ୍ତିଆ ସାହୁକାରର, ଯିଏ ତାକୁ ଶାଳବନର ଗୋଟାଏ

ପ୍ରାନ୍ତରେ ହତ୍ୟା କରିଥିଲା। କାରଣ ହତ୍ୟା କରିବାକୁ ସେ ସୁଖ ପାଇଥିଲା। ଯନ୍ତ୍ରଣାରେ ଛଟପଟ ହେଉଥିବା ମଣିଷ ତାହାର ଭାରି ପ୍ରିୟ।

ପାଠ ପଢ଼ି ବି ସେ ପାଇ ନଥିଲା ସମାଜରେ ସ୍ୱୀକୃତି। ଅତ୍ୟାଚାର, ଶୋଷଣ, ନିଦାରୁଣ ଲାଞ୍ଛନା ଭିତରେ ଏକା ରାମାରାଓ ନୁହେଁ, ଅଗଣିତ ରାମା, ଶ୍ୟାମା ରାଓ, ପଟ୍ଟନାୟକ, ମିଶ୍ର, ନାୟକ, ସାହୁ ମଣିଷ-ଜୀବନରେ ଅଭିଶାପ ବହନ କରି ପଥ ଚାଲୁଛନ୍ତି...କିଏ ହତାଶାରେ ଭାଙ୍ଗିପଡ଼ି ଅଦୃଷ୍ଟ -ଲିପି ଭାବି କର୍ମଭଳି ଅବୟବ ସହିତ ବିଚାର ବୁଦ୍ଧି ଓ ପ୍ରଜ୍ଞାକୁ ସଂକୁଚିତ କରିନେଉଛି, କିଏ ବା ଏସବୁ ଅକଥନୀୟ ସାମାଜିକ ଅନ୍ୟାୟ ବିରୋଧରେ ସଂଗ୍ରାମ କରି ଅବଶେଷରେ ଶକ୍ତିଶାଳୀ ପୁଞ୍ଜିପତିର ଆଘାତରେ ଶେଷ ହୋଇଯାଉଛି।

ରାମାରାଓ ଚିତ୍କାର କଲା–

'ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବି।'

'ନା, ତା' ହେବ ନାହିଁ। ତା' ଆଗରୁ ଶିବ-ଶିଷ୍ୟ ନନ୍ଦୀ, ଭୃକୁଟୀଙ୍କୁ ତୋଷ କରିବାକୁ ହେବ।'

– 'ମୁଁ ବିଶେଷଜ୍ଞ ଡାକ୍ତରଙ୍କ ପାଖକୁ ଯିବି...ମତେ ଦେଖାଇ ଦିଅ ସେ କେଉଁଠି ଅଛନ୍ତି।'

'ନା, ତା' ହେବନି; ବିଶେଷଜ୍ଞ ଅଜ୍ଞ ନୁହନ୍ତି। ବିଶେଷ ଜ୍ଞାନ ଥିବାରୁ ସେ ବିଶେଷଜ୍ଞ, ଆଉ ଏହି ଜ୍ଞାନ ଆହରଣ କରିବାକୁ ତାଙ୍କୁ ଅନେକ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଛି। ସେ ଟଙ୍କାର ମୂଳ ଓ ସୁଧ କ୍ରମେ ବେଶି ହେଉଛି। ତୁମେ କିଛି ଟଙ୍କା ଦିଅ। ତେବେ ତାଙ୍କୁ ପାଇବ।'

– 'ମୁଁ ପୁଲିସ ସାହାଯ୍ୟ ମାଗୁଛି, ମତେ ମୋ ସାହିବାଲା ଏକଘରିକିଆ କରି ରଖିଛନ୍ତି; କାରଣ ମୁଁ ଜଣେ ବାଳିକାକୁ ଆଶ୍ରୟ ଦେଇଛି ଯାହାକୁ ମୋ ପଡ଼ାର ଦୁର୍ବୃତ୍ତମାନେ ଆଶା ରଖିଥିଲେ।'

'ପୁଲିସ ସାହାଯ୍ୟ ଏମିତି ମିଳେନି...ଯେଉଁମାନେ ଏ ବିଷୟରେ ଅଭିଜ୍ଞ ତାଙ୍କୁ ପଚାର।'

– 'ତେବେ ମୁଁ ସମ୍ବାଦପତ୍ରରେ ଏ କଳଙ୍କିତ ସମାଜର ଜଘନ୍ୟ ବ୍ୟାପାର ଛପେଇବି।'

'ହାଃ ହାଃ, କେହି ଛପାଇବେନି; କାରଣ ତୁମେ ବ୍ରାହ୍ମଣ ନୁହଁ, ତୁମେ ମାତ୍ର ରାମାରାଓ, ବର୍ଣ୍ଣହୀନ ଅବର୍ଣ୍ଣ। ବ୍ରାହ୍ମଣ ହୋଇଥିଲେ ତୁମକୁ ଅନୁରୋଧ କରିବାକୁ ପଡ଼ନ୍ତା ନାହିଁ। ଛାପା ହୁଅନ୍ତା– "ବିରାଟ ସଭାରେ ରାମଚନ୍ଦ୍ର ମିଶ୍ର ତାଙ୍କର ଓଜସ୍ୱିନୀ ଭାଷଣରେ ସମସ୍ତଙ୍କୁ ଚମତ୍କୃତ ଓ ସ୍ତବ୍ଧ କରିଦେଲେ"–ଏଥି ସହିତ ଆବକ୍ଷ ତୁମର ଆଲୋକଚିତ୍ର ମୁଦ୍ରିତ ହୋଇଥାନ୍ତା। ଏହାକୁ ଜାତିଆଣଭାବ କହ ନାହିଁ ବନ୍ଧୁ!ଏହା ଏ ଜାତିର ଐଶ୍ୱର୍ଯ୍ୟ।'

ରାମାରାଓ ପ୍ରଥମେ ଥିଲା ଓଡ଼ିଆ, ପରେ ହେଲା ତେଲେଙ୍ଗା। ପୂର୍ବପୁରୁଷଗଣ ପରପୁରୁଷରେ, ଏଣ୍ଡୁଅ ବର୍ଣ୍ଣ ବଦଳାଇବା ଭଳି, ରୂପାନ୍ତରିତ ହେଲେ। ତଥାପି କୈବଲ୍ୟ ମିଳିଲା ନାହିଁ; ରାଓ ପଟ୍ଟନାୟକ ବଂଶୀରେ ବି ବାଜଣା ବାଜିଲା ନାହିଁ।

ଗୋଡ଼ର ଚଟି ଛିଣ୍ଡିଲା...ଦର୍ଶନର ଛାତ୍ର ରାମାରାଓ କାଣ୍ଟ୍, ବର୍ଗସଁ, ରାଧାକୃଷ୍ଣନ୍, ଶଙ୍କରାଚାର୍ଯ୍ୟ ବାଟ ଦେଇ ମହାତ୍ମା ଗାନ୍ଧି ପର୍ଯ୍ୟନ୍ତ ଚାଲିଆସିବାରେ ବୈଷମ୍ୟ ଭିତରେ ଭାରତୀୟ ଐକ୍ୟ ସନ୍ଧାନ କରୁ କରୁ ପ୍ରଥମେ ପ୍ରଥମେ ଦୁଇଦିନ ଦୁଇ ରାତି ଉପାସ ରହିଗଲା।

–ତୁମେ ଜାତିରେ କଅଣ?

—ଆଗେ ଆମେ କରଣ ଥିଲୁ।

—ଏବେ ?

—ତେଲୁଗୁ।

—କାହିଁକି ତେଲୁଗୁ ହେଲ ?

—ବାପା ଜାଣିଥିବେ।

ସାକ୍ଷାତ୍‌କାରର ନମୁନା ଏହା। ଚାକିରି ମିଳିଲା ନାହିଁ। ରାମାରାଓର ଘର ନାହିଁ, ବନ୍ଧନ ନାହିଁ, ପେଟ ଅଛି, ଦାନା ନାହିଁ। ଅଛନ୍ତି କିଏ ? ମୁଖ୍ୟମନ୍ତ୍ରୀ, ଶ୍ରମମନ୍ତ୍ରୀ, ସଂସ୍କୃତିର ମନ୍ତ୍ରୀ...କେହି ସେରେ ଚାଉଳ ଦେଇପାରିଲେ ନାହିଁ ରାମାରାଓକୁ ତା'ର ଉଦର ପୂର୍ଣ୍ଣ କରିବା ପାଇଁ।

ତିନିଦିନ ଉପାସ ପରେ ଗୋଟାଏ ଦିବସର ମଧ୍ୟଭାଗରେ ରାମାରାଓ ଶପଥ ନେଲା—

ମୁଁ ମଣିଷ ହେବିନି, ମୁଁ ହେବି ପଶୁ। ମୋର ବାସସ୍ଥଳ ଏଣିକି ହେବ ଅରଣ୍ୟ, ମୋର ବନ୍ଧୁ ହେବେ ବନଜୀବୀ ଆଦିବାସୀ; ମୋର ମିତ୍ର ଆଜିଠାରୁ ଏଇମାନେ...

ବିଦେଶର ଗୁପ୍ତଚର ହେଇଗଲା ରାମାରାଓ। ହାତରେ ଦୁଇଟା ପିସ୍ତଲ, ଗୁଡ଼ାଏ ଗୁଳି, ଗୋଟାଏ ବର୍ଛା, ଆଉ ଗୁଡ଼ାଏ ଟଙ୍କା। ସବୁ ଜିନିଷ ଉପରେ ଲେଖାଥାଏ ରକ୍ତ ସଙ୍କେତ। ଏଇ ନିଶାଣ-ସାହାଯ୍ୟରେ ମଣିଷ ଯଦି ଶପଥ ନେଇ କାର୍ଯ୍ୟ କରେ ତେବେ ସେ ହେବ ସୁଖୀ। ତାକୁ କେହି ଶୋଷଣ କରିବେ ନାହିଁ କି ଅପମାନ ଦେବେ ନାହିଁ। ସେ ହେବ ଜ୍ୱଳନ୍ତ ଅଗ୍ନି ପିଣ୍ଡ...ସେଠାରେ ସାଲିସ୍ ନାହିଁ, ଧର୍ମଗ୍ରନ୍ଥ ଛୁଆଇଁ 'ଭଲ ପିଲା' ହୁଅ ବୋଲି କହି ନିଦଶୁଆ ଗୀତ ଗାଇବେ ନାହିଁ।

ରାମାରାଓ ହତ୍ୟା କଲା ଧନପତି ସାହୁକାରକୁ, ଖୁନ୍ କଲା ପୁଲିସ୍‌କୁ, ଗାଁ ପୋଡ଼ିଲା, ସହର ଜାଳିଲା। ନିର୍ବିଚାରରେ ସେ ହିଂସାକୁ ଗ୍ରହଣ କରିନେଲା ଶାଶ୍ୱତ ସତ୍ୟଭାବରେ...

ସେ ଏକା ନୁହେଁ, ଶହ ଶହ ରାମାରାଓ ଆଖିପିଛୁଳାକେ ପ୍ରଳୟଙ୍କର ଝଡ଼ ସୃଷ୍ଟି କଲେ। ସମାଜର ଆତଙ୍କ ହେଲେ ସେମାନେ।

ସେଇମାନେ ସ୍କୁଲରେ ହେଲେ ଶିକ୍ଷକ, କଲେଜରେ ଅଧ୍ୟାପକ, ସେକ୍ରେଟେରୀଏଟ୍‌ରେ ସେମାନେ ଗୋପନରେ ରହିଲେ। ସବୁ ସଂସ୍ଥାରେ ସେମାନେ ଅସନ୍ତୋଷର ବୀଜ ବପନ କଲେ। ଯୋଗାଯୋଗ ରଖୁଛନ୍ତି ଏମାନେ ସବୁଆଡ଼େ—ସ୍ୱଦେଶରେ ଓ ବିଦେଶରେ।

କୋରାପୁଟ ଜଙ୍ଗଲରେ ରାମାରାଓ ଓ ତା'ର ସାଥୀଙ୍କର କୃଷ୍ଣବର୍ଣ୍ଣ ତମ୍ବୁ ଉପରେ ଯେତେବେଳେ ପୁଲିସ୍ ପକ୍ଷରୁ ରାଇଫଲ୍‌ରୁ ଗୁଳି ଚାଲେ, ସେତେବେଳେ ରାମାରାଓ ହାତରେ ଥିଲା ବାପୁଜୀଙ୍କର ଛୋଟ ଏକ ଚିତ୍ର। ସେ ସେଇଟିକୁ ନିଜ ନେତ୍ରବାରିରେ ଥରକୁଥର ପୋଛି କହୁଥିଲା—

'ବାପୁ, ମୁଁ ଶେଷରେ ପାରିଲି ନାହିଁ; ତୁମର ନୀତି-ନିୟମ ମାନି ମୁଁ ବହୁବର୍ଷ ଅକଥନୀୟ ଅତ୍ୟାଚାର ସହିଗଲି ସେହିମାନଙ୍କଠାରୁ—ଯେଉଁମାନଙ୍କୁ ତୁମେ କରିଥିଲ ଶିଷ୍ୟ ଓ ଭାବିଥିଲ ସେଇମାନେ ମଣିଷର ଦୁଃଖ ଅପହରଣ କରି ରାମରାଜ୍ୟ ପ୍ରତିଷ୍ଠା କରିବେ; ମାତ୍ର ସେଇ କଳଙ୍କିତ ଚରିତ୍ରର ମଣିଷଗୁଡ଼ାକ ନିଜ ସ୍ୱାର୍ଥକୁ ଆଗରେ ରଖି ଦେଶର ସ୍ୱାର୍ଥକୁ ମାଡ଼ିମକଚି ଦେଲେ। ତାଙ୍କରି ସ୍ତ୍ରୀ ହାଟକବରଣୀ ହୋଇ ନାଟ କଲେ ଓ ପରମପୂଜ୍ୟା ହେଲେ। ତାଙ୍କରି ପୁଅ ଝିଅ ମହାର୍ଘ ବ୍ୟୟବହୁଳ ଶିକ୍ଷା ପାଇ ମଣିଷ ହେଲେ। ତାଙ୍କରି କୋଠାଘର ରାଜଧାନୀର ସବୁଠାରୁ ଉତ୍କୃଷ୍ଟ ସୌଧ।

ଦୁଇପୁରୁଷଯାଏ, ବ୍ୟାଙ୍କରେ ଯାହା ରଖିଗଲେ, ତାହା ଶେଷ ହେବନି। ଆଉ ମୋ ଭଳି ସଚ୍ଚା ଅହିଂସ ସତ୍ୟାଗ୍ରହୀ, ତା'ର ପିଲାଏ ଔଷଧ ପାଇଲେନି, ଶିକ୍ଷା ପାଇଲେନି, ସବୁଆଡ଼େ ସେମାନେ ହେଲେ ଲାଞ୍ଛିତ। ତୁମେ କିନ୍ତୁ ବାପୁ, ଏଭଳି ସମାଜ ଗଠନ କରିବାକୁ ଏ ଦେଶକୁ ସ୍ୱାଧୀନ କରି ନଥିଲା।

'ମୁଁ ଜାଣେ ଆଉ ଦୁଇ ମୁହୂର୍ତ୍ତ ଭିତରେ ପୁଲିସବାହିନୀ ମୋ ଉପରେ ଝାମ୍ପ ଦେବେ। ମୁଁ ଯେଉଁ ବିପ୍ଳବର ଆଦ୍ୟ ଝଡ଼ ଉଡ଼େଇଛି, ତାହା ବନ୍ଦ ହେବନି। ମୋର ସାଥୀମାନେ ରକ୍ତ-ବାହୁର ଦଳ। ସେମାନେ ସମସ୍ତେ ପ୍ରଥମ ଜୀବନରେ ଥିଲେ ସତ୍ୟ ଓ ଅହିଂସାର ଉପାସକ। ଆଜି କିନ୍ତୁ ସେ ପଥରେ ସେମାନେ ବିଶ୍ୱାସୀ ନୁହଁନ୍ତି। ଗୋଟିଏ କଥା କହିଦେଇ ଯାଏଁ, ଏସବୁ ଅଭିଶାପର ମୂଳ ଆପଣଙ୍କ ହାତତିଆରି ତଥାକଥିତ ଜନକଲ୍ୟାଣକାମୀ ଗୋଷ୍ଠୀ, ଯିଏ ବାହାରେ ସୁଚତୁର ତିଳକମାର୍କା ବୈଷ୍ଣବ ସାଜିଲେ ବି ଭିତରେ ସେମାନେ ଧର୍ମଦ୍ରୋହୀ ଓ ଜନଦ୍ରୋହୀ।

'ମୁଁ ଜାଣେ ତୁମର ବହୁ ପୂଜା ଅର୍ଘ୍ୟର ମୂର୍ତ୍ତି ଏବେ ଖଣ୍ଡ-ବିଖଣ୍ଡିତ ହୋଇଛି। ମୁଁ ଦୁଃଖିତ; ମାତ୍ର ମହାକାଳର ଚକ୍ର ଘୂରୁଛି ଶାଶ୍ୱତ ବିବର୍ତ୍ତନ ପଥରେ...ଯଦି ପାର ତୁମର ବିଖଣ୍ଡିତ ଅବୟବଗୁଡ଼ାକ ଏକତ୍ର କରି ପୁଣି ଥରେ ମାଟିର ଧରଣୀ-ପୀଠରୁ ଉଠିଆସ; ସେତେବେଳେ ପୁଣି କି ଦର୍ଶନ ଦେବ, ତାହା ତୁମର ଧ୍ୟେୟ ହେଉ...'

ଏହି ପ୍ରାର୍ଥନା ପରେ ଗୋଟିଏ ମାତ୍ର ପିସ୍ତଲ ଗୁଳିରେ ରାମାରାଓର ବକ୍ଷବିଦୀର୍ଣ୍ଣ ହୋଇ ଯାଇଥିଲା। ତାଆରି ପାଖରେ ପଡ଼ିଥିଲା ଚୂର୍ଣ୍ଣବିଚୂର୍ଣ୍ଣ ଗାନ୍ଧି ଫଟୋ...

ପୁଲିସ୍ ଅବାକ୍ ହେଲେ– ରାମାରାଓ ବିପ୍ଳବୀ, ହିଂସାରେ ବିଶ୍ୱାସୀ—ଅଥଚ ତା' ପାଖରେ ବାପୁଜୀଙ୍କର ଚିତ୍ର... ?

ସେତେବେଳେ ଅରଣ୍ୟ ରୋଦନ କରିଥିଲା– ସେଇ ନିଘଞ୍ଚ କୋରାପୁଟର ଶୈଳମଥାନଶୋଭିତ ଅରଣ୍ୟ—ସେ ବୋଧହୁଏ ସତ୍ୟକୁ ଅନ୍ୱେଷଣ କରୁଥିଲା।



# ଅନିର୍ବାଣ

ଶ୍ରୀ ଅରବିନ୍ଦଙ୍କ ଯୋଗ ସାଧନାର ଏକ ମର୍ମସ୍ପର୍ଶୀ ଭାଷଣ ଶୁଣି ଫେରୁଥିଲେ ଅଚିନ୍ତ୍ୟ ମହାନ୍ତି। ସହରର ଏକ ନିର୍ଜନ ଉପାନ୍ତରେ ମାତୃମନ୍ଦିରର ପ୍ରତିଷ୍ଠାତା ଧନିକ ବ୍ୟବସାୟୀ ମାର୍ତ୍ତଣ୍ଡ ଦଳବେହେରା ସଭାଟିର ଆୟୋଜନ କରିଥିଲେ।

ମାର୍ତ୍ତଣ୍ଡ ଦଳବେହେରାଙ୍କର ପ୍ରତ୍ୟେକ ଉତ୍ପାଦିତ ସାମଗ୍ରୀର ଲେବଲ୍ ଉପରେ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କର ପ୍ରତିଛବି ମୁଦ୍ରିତ ହୋଇ ବଜାରକୁ ବିକ୍ରୀ ହେବାକୁ ଆସେ। ତାଙ୍କର ପଞ୍ଚତଳ ପ୍ରାସାଦର ମୁଖଶାଳା ଓ ତୋରଣ ଶୀର୍ଷରେ ମାତୃମୂର୍ତ୍ତିର ଅଙ୍କନ। ଯେଉଁମାନେ ସେଠାକୁ ବ୍ୟବସାୟ ସଂକ୍ରାନ୍ତରେ ବା ଅନ୍ୟ କୌଣସି ସ୍ୱାର୍ଥସିଦ୍ଧି ପାଇଁ ଆଗମନ ଓ ପ୍ରତ୍ୟାଗମନ କରନ୍ତି, ସେମାନେ ସହସା ଢଳିପଡ଼ନ୍ତି ସେଇ ଅଙ୍କନମଣ୍ଡପ ନିକଟରେ। ଯେ ଯାହା ବାଟରେ କାମନା ପୂରଣ କରିବା ପାଇଁ କ୍ଷଣେମାତ୍ର ଆଖି ମୁଦିଦେଇ ପ୍ରାର୍ଥନା କରନ୍ତି।

ଈଶ୍ୱରଙ୍କ ତଥା ସେ ଈଶ୍ୱରଙ୍କର ସର୍ବାଧିକାରୀ ସନ୍ତାନମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଏହିପରି ଦେବା-ଦେବୀ ଓ ଅବତାରମାନଙ୍କର ଆଲୋକଚିତ୍ର ଓ ପ୍ରସ୍ତରଖୋଦିତ ରୂପକୁ ବିତ୍ତଶାଳୀ ଲୋକମାନେ ଆଜିକାଲି ଘର, ବ୍ୟବସାୟ ପ୍ରତିଷ୍ଠାନ, ମଦଦୋକାନ, ଚାଉଳଗୋଦାମ ଓ କଳାବଜାରର ପଛପଟ ଯାତାୟାତ ମାର୍ଗରେ 'ଶୁଭ ଓ ଲାଭ'ର ରକ୍ତରଙ୍ଗ ଲେଖା ତଳେ ସ୍ଥାପନ କରୁଛନ୍ତି।

କବି, ସାହିତ୍ୟିକ ଓ ବୁଦ୍ଧିଜୀବୀ ଅଚିନ୍ତ୍ୟ ମହାନ୍ତି ଏହିସବୁ କଥା ଭାବି ଭାବି ଟିକିଏ ବିମର୍ଷ ହେବାଭଳି ଅଧୋବଦନରେ ବାଟ ଚାଲୁଥାନ୍ତି। ତାଙ୍କୁ ଗୋଟାଏ ଦୃଶ୍ୟ ବାଧିଥିଲା ସଭା ଗୃହରେ। ଅବଶ୍ୟ ଏହିଭଳି ଦୃଶ୍ୟ ଓ ଘଟଣା ସଚରାଚର ଉଦ୍ୟୋକ୍ତାମାନଙ୍କର କାର୍ଯ୍ୟକ୍ରମ ଭିତରେ ସ୍ଥାନ ପାଇଥାଏ।

ତେବେ ଶ୍ରୀ ଅରବିନ୍ଦଙ୍କର ଆରାଧନା-ଉତ୍ସବରେ ଅହଂର ଏପରି ଅବାଧ ପ୍ରବାହ, ଯାହାକୁ ନାଶ କରିବା ହିଁ ଯୋଗର ପ୍ରଥମ ନିର୍ଦ୍ଦେଶ, ସେହି ଅହଂ ଭାବର ସମ୍ୟକ୍ ସଂପ୍ରସାରଣ ଅଚିନ୍ତ୍ୟ ମହାନ୍ତିଙ୍କୁ କଷ୍ଟ ଦେଇଥିଲା।

ସଭା ପରେ କାର୍ଯ୍ୟକ୍ରମ ନ ଥାଇ ଆଲୋକଚିତ୍ର ଉଠାଗଲା। ଦେଖାଗଲା ବକ୍ତାଙ୍କ ଅପେକ୍ଷା ଫଟୋ ଚିତ୍ରରେ ଅଙ୍ଗପ୍ରତ୍ୟଙ୍ଗକୁ ଦେଖାଇବା ସ୍ଥାନୀୟ ମାଜିଷ୍ଟ୍ରେଟ, ବି.ଡି.ଓ., ସରପଞ୍ଚ ଓ ସେମାନଙ୍କର ଅନ୍ତଃପୁରବାସିନୀମାନେ ଧାଡ଼ିବାନ୍ଧି ଛିଡ଼ା ହୋଇଗଲେ।

ଏ ଯେ ଆଲୋକଚିତ୍ର ଉଠାଗଲା ତାହା ଆଶ୍ରମ ପାନ୍ଥନିବାସରେ ହେଉ ବା ପଣ୍ଡିଚେରୀର କୌଣସି କ୍ଷେତ୍ର, ଯେଉଁଠି ସମସ୍ତଙ୍କର ତାହା ଦୃଷ୍ଟି ଆକର୍ଷଣ କରିବ, ସେଠାରେ ଯେ ନିଶ୍ଚୟ ସ୍ଥାପିତ ହେବ, ଏଥିରେ ସନ୍ଦେହ ନଥିଲା। ତେଣୁ ମାଜିଷ୍ଟ୍ରେଟ୍ ସଂପ୍ରଦାୟଙ୍କର ପ୍ରତିକୃତି ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କର ପୁଷ୍ପମାଲ୍ୟ ଭୂଷିତ ଚିତ୍ର ସହିତ ସଂଯୋଜିତ ହୋଇ

ଆଶ୍ରମରେ ସ୍ଥାନ ପାଇବାର ଯେଉଁ ଏକ ଆକର୍ଷଣ ତାହାହିଁ ଏ କାର୍ଯ୍ୟକ୍ରମ ମୂଳରେ ଥିଲା।

ମଣିଷ, ମଣିଷ। କେତେ ସହଜରେ ବା ସେ ଉପରକୁ ଉଠିଯିବ? ତଥାପି ଉପରକୁ ଉଠିବା ପାଇଁ ଏ ଯେଉଁ ପ୍ରତିଯୋଗିତା ଆରମ୍ଭ ହେଉଛି, ତାହା ଦେଶ ପକ୍ଷରେ ଶୁଭ ଲକ୍ଷଣ ବୋଲି ଭାବିଲେ ଅଚିନ୍ତ୍ୟ ମହାନ୍ତି।

ଏହିଭଳି ମାନସିକ ଉତ୍‌କ୍ଷେପ ଓ ବିକ୍ଷେପ ଭିତରେ ଅଚିନ୍ତ୍ୟ ମହାନ୍ତି କିଛି ବାଟ ଆସି ଦେଖିଲେ ଜଣେ କେହି ତାଙ୍କୁ ଡାକୁଛନ୍ତି।

ସେ ଛିଡ଼ାହେଲେ।

ଭଦ୍ରବ୍ୟକ୍ତି କହିଲେ– ଆପଣଙ୍କୁ ଅରବିନ୍ଦ ସଭାରେ ଦେଖିଲି। ସେହିଠାରୁ ଆସୁଛି।

ଅଚିନ୍ତ୍ୟ ବାବୁ ପ୍ରସନ୍ନ ହେଲେ, କହିଲେ–

–କଅଣ କହନ୍ତୁ।

ଭଦ୍ରବ୍ୟକ୍ତି ତାଙ୍କ ନାଁ କହିଲେ– ସୁବ୍ରତ।

ସୁବ୍ରତ କିଏ? ପରିଚୟର ସୂତ୍ର ପାଇପାରିଲେ ନାହିଁ ଅଚିନ୍ତ୍ୟ ବାବୁ।

–ସାର୍, ମୁଁ ବେକାର। ଯେତେବେଳେ ଦୁଇ ବର୍ଷ ତଳେ ଚିକାଗୋ ସହରରେ ପାଦଦେଲି, ମୁଁ ଭାବିଲି ମୋ ଜୀବନ ଧନ୍ୟ ହେଲା। କାରଣ ମୁଁ ଥିଲି ଅତି ନିମ୍ନମଧ୍ୟବିତ୍ତ ଶ୍ରେଣୀର ଲୋକ। ଅଦୃଷ୍ଟର ନିର୍ଦ୍ଦେଶରୁ ବୋଧହୁଏ ଭାରତ ସରକାରଙ୍କଠାରୁ ବୃତ୍ତି ଓ ଉତ୍ସାହ ପାଇ ମୁଁ ଚାଲିଗଲି ଚିକାଗୋ। ସେ ବିଶ୍ୱବିଦ୍ୟାଳୟରେ ମୁଁ ଦୁଇବର୍ଷ ଭାଷା-ବିଜ୍ଞାନ ପଢ଼ିଲି, ଡିପ୍ଲୋମା ପାଇଲି, ପୁରସ୍କୃତ ହେଲି।

ଗଲାବେଳେ ଯେଉଁ ବାପ-ମାଆଙ୍କ ପାଦଧୂଳି ନେଇଥିଲି, ଫେରିବା ସମୟରେ ସେହି ପାଦଧୂଳିର କୈବଲ୍ୟ ପାଇବି ବୋଲି ଆଶାୟୀ ହୋଇ ମୁଁ ଆସି ଛିଡ଼ା ହେଲି ମଫସଲର ଗୋଟାଏ କୁଟୀର ଆଗରେ।

ମୁଁ ଆଖିରେ ଅନ୍ଧକାର ଦେଖିଲି। ବାପା ମା' ସ୍ୱର୍ଗରେ...ଏ କଥା କେହି ବନ୍ଧୁବାନ୍ଧବ ବା ଗ୍ରାମବାସୀ ମତେ ଜଣାଇଲେ ନାହିଁ। ମୁଁ ଗୋଟିଏ ମାତ୍ର ପୁଅ ଥିଲି।

ବୁଝନ୍ତୁ ମୋ ମନର ଅବସ୍ଥା। ଶ୍ରାଦ୍ଧ ବି କଲି। ଈଶ୍ୱର ବିଶ୍ୱାସ ମୋ ମନରେ ଅତୁଟ ଥିଲା। ଭାବିଲି, ସ୍ୱର୍ଗଗତ ବାପା ମାଆ ମତେ ନିଶ୍ଚୟ ଆଶୀର୍ବାଦ କରିବେ। ଓଡ଼ିଶାର ଭାଷା-ବିଜ୍ଞାନୀ ଖୁବ୍ କମ୍ ଲୋକ ଅଛନ୍ତି। ମୁଁ ତିନିତିନିଟା ବିଶ୍ୱବିଦ୍ୟାଳୟରେ କେଉଁଠି ହେଲେ ନିଯୁକ୍ତି ପାଇଯିବି।

ଅଚିନ୍ତ୍ୟ ଚିନ୍ତାସମୁଦ୍ରରେ ବୁଡ଼ିଗଲେ। ସତେ ତ, ଏ ଯୁବକ–ଯାହାର ବେଶଭୂଷାରେ ଦାରିଦ୍ର୍ୟର ରୋଷ-ଚିହ୍ନ ଅତି ସୁସ୍ପଷ୍ଟ– ତାଙ୍କ ସହିତ ତୁଳନୀୟ ନୁହେଁ କି?

ସେ ନିଜେ କି ଅବସ୍ଥାରେ ଅଛନ୍ତି?

ଆଜୀବନ ସାହିତ୍ୟ-ସାଧନା ସେ କରିଛନ୍ତି। ବହି ଛାପା ହୋଇଛି, ବିକ୍ରି ହୋଇଛି, କିନ୍ତୁ ପଇସା ପାଇନାହାନ୍ତି। ସଭା-ସମିତିରେ ଅପ୍ରିୟ ସତ୍ୟ କହିବାରୁ ବହୁବାର ଯିବାବେଳର ରିକ୍‌ସା ପଇସା ମିଳିଥିଲେ ସୁଦ୍ଧା ଫେରନ୍ତା ବାଟଖର୍ଚ୍ଚ ମିଳେ ନାହିଁ।

ପଞ୍ଚାବନ ବର୍ଷରେ ସେ ଚାକିରିରୁ ଆସିଲେ, ଅନେକେ ବି ଆସିଲେ, ତେବେ ଏତିକି ମର୍ମଶୂଳ ଭାବରେ ଏବେ ବି କଷ୍ଟ ଦେଉଛି ଯେ ଯେଉଁ ଜଣକ ଅଠାବନରୁ ପଞ୍ଚାବନକୁ ଜୀବନକୁ ଖସାଇଆଣିଲେ ସେ ପତ୍ନୀହୀନ, ପୁତ୍ରହୀନ, ବନ୍ଧୁ ବାନ୍ଧବହୀନ ଥିବାରୁ

ସଂସାର କଅଣ, ସଂସାରର ଜଞ୍ଜାଳ କଅଣ, ଏ ସବୁରେ ଅନଭିଜ୍ଞ ରହିଥିଲେ।

ତାଙ୍କରି ଜିଦ୍‌ରୁ ଅଠାବନର ଆୟୁ ପଞ୍ଚାବନରେ ନିରୁଦ୍ଧ ହୋଇଯିବାରୁ ଆଜି ଅଚିନ୍ତ୍ୟ ବି ଏ ଯୁବକ ଭଳି ସଂସ୍ଥାନଶୂନ୍ୟ ସଂଚିତ ଅର୍ଥ ଯାହା କିଛି ଥିଲା, ତାହା ଧୀରେ ଧୀରେ ପ୍ରବଳ ସିନ୍ଧୁସ୍ରୋତ ବାୟୁକଣାକୁ ଗ୍ରାସ କରିବା ଭଳି ଗ୍ରାସ କରିଚାଲିଛି।

—ଶୁଣୁନାହାନ୍ତି କି? —ଯୁବକଟି ଈଷତ୍ ଉଚ୍ଚ ସ୍ୱରରେ ଜିଜ୍ଞାସା କଲେ।

—ହଁ ହଁ, କୁହନ୍ତୁ।

—ଆପଣ ଟିକିଏ ସାହାଯ୍ୟ କରିବେ? ଆପଣଙ୍କର ଜଣାଶୁଣା ବହୁତ ଲୋକ ଅଛନ୍ତି। ଯେଉଁଆଡ଼େ ଗଲି ଶୁଣିଲି, ଭାଷା-ବିଜ୍ଞାନୀର ସ୍ଥାନ ନାହିଁ। ଆଉ ଯେଉଁମାନେ ତଥାକଥିତ ଏ ବିଷୟରେ ବିଜ୍ଞାନୀ ଅଛନ୍ତି, ସେମାନଙ୍କ ଦୁର୍ଗ ଭିତରକୁ ମୋର ପ୍ରବେଶ ସମ୍ଭବ କି?

—ମତେ ପ୍ରାଇମେରୀ ସ୍କୁଲର ଶିକ୍ଷକ କରିଦେଇପାରିବେ—ମୁଁ ବଞ୍ଚିଯାଆନ୍ତି। —ସୁବ୍ରତର କଣ୍ଠରେ କମ୍ପନ।

ଅଚିନ୍ତ୍ୟ ମହାନ୍ତିଙ୍କର ସ୍ୱଭାବ ସଂଯତ। ସତ୍ୟ, ଶିବ, ସୁନ୍ଦରର ଆବାହନ ନିମିଷକେ ମଉଳିଗଲା। ଏ ଯୁବକ ପ୍ରାର୍ଥନା କରୁଛି କଅଣ? ଚିକାଗୋ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର, ଭାଷା-ବିଜ୍ଞାନୀ, ପ୍ରାଇମେରୀ ଶିକ୍ଷକ ହେବ? କିଏ ଚାକିରି ଦେବ? ସେଠି ତ ଏତେ ପାଠ ଦରକାର ନାହିଁ।

—ଆପଣଙ୍କ ଗୋଡ଼ ଧରୁଛି, ମତେ ସାହାଯ୍ୟ କରନ୍ତୁ...ସୁବ୍ରତ ନଇଁପଡ଼ିବା ପୂର୍ବରୁ ଅଚିନ୍ତ୍ୟ ତାକୁ ଉଠାଇନେଲେ। ସେ କାହୁଁ ଜାଣିବ ଯେ ଅଚିନ୍ତ୍ୟଙ୍କ ଜୀବନର ସେତୁ ଆଜି ଭଗ୍ନ ଓ ବିଦୀର୍ଣ୍ଣ। ସେ ବି ଅଶାନ୍ତ।

—'କୋଳଥ'...

—କୋଳଥ?

ଅଚିନ୍ତ୍ୟ ମହାନ୍ତି ଦେଶର ଜଣେ ଜଣାଶୁଣା ଚିନ୍ତନ-ଗୋଷ୍ଠୀର ସଦସ୍ୟ କୋଳଥ ଶବ୍ଦ ଶୁଣି ଚମକିପଡ଼ିଲେ।

ଗୃହ ବାରଣ୍ଡାରେ ପ୍ରାୟାନ୍ଧକାରରେ ସେ ବସିଥିଲେ। ଷାଠିଏ ବର୍ଷର ଜୀବନସ୍ରୋତର କ୍ଷଣ କ୍ଷଣ ଛବି ତାଙ୍କ ମନ-ପ୍ରାଙ୍ଗଣରେ ଭାସି ଯାଉଥିଲା।

ସାହିର ଏକ ପ୍ରାନ୍ତରେ ଅଟାକଳ ବସେଇଥିବା ବାଲ୍ୟସଖା ମୁରାରି ଆସି କେତେବେଳେ ବସିଯାଇଛି ବେଞ୍ଚ ଉପରେ, ସେ ଜାଣିନାହାନ୍ତି। କେବଳ କୋଳଥ ଶବ୍ଦ 'ଶୁଣି' ଅଚିନ୍ତ୍ୟ ଆବାକାବା ହୋଇ ଚାହିଁଲେ।

ହଁ, କୋଳଥ। ଏହିକ୍ଷଣି ଅମଳ ସମୟ—ଶହେବସ୍ତା କୋଳଥ କିଣିବା ପାଇଁ ଇନ୍‌ଭେଷ୍ଟମେଣ୍ଟ କର, ଦୁଇମାସ ପରେ ବଜାରକୁ ଛାଡ଼ିବ, ମୁଁ ସାହାଯ୍ୟ କରିବି। ତମକୁ କିଛି କରିବାକୁ ପଡ଼ିବନାହିଁ — ମୁଁ ସବୁ କରିବି। ଘରେ ବସି ଦୁଇଗୁଣା ଟଙ୍କା ପାଇବ। ତମେ କଅଣ ଜାଣିନ ମୁଁ ଲେକ୍‌ଚରର ହୋଇଥିଲି— ଛାଡ଼ିଲି କିଆଁ? ପିଲାମାନେ ମୋ ଆଖି ଫୁଟାଇବା ଯାଏଁ କିଆଁ ଯିବେ? ମୁଁ ଏ ଝୁଟା ସମାଜ, ଆସନ୍, ବଡ଼ବଡ଼ିଆ ଲୋକଙ୍କ ଆଖି ଫୁଟାଇ ଦେଉଛି... ଗୋଟାଏ ଅଟାକଳ, ଗୋଟାଏ ଚୁଡ଼ାକଳ, ଆଉ କୁଷ୍ଠରୋଗୀଙ୍କ ଜରଆରେ ଅଫିମ

ଚୋରାକାରବାର...ଦେଖୁନ କିମିତି ଅଛି? କୋଠା ଉପରେ କୋଠା ଗଢ଼ି ହୋଇ ଯାଉଛି।

ତମକୁ ବହୁବାର ମୁଁ ଏମିତି ସଞ୍ଜବେଳେ ଏକୁଟିଆ ବସିବାର ଦେଖିଛି–ଦୁଃଖ ବି ପାଇଛି। ସେଥିପାଇଁ ଆଜି କହିବାକୁ ଆସିଲି ଏ କଥା। ଚାକିରିରୁ ଆସି ତୁମେ ସବୁ ଅନ୍ଧାର ଦେଖୁଛ। ମୁଁ ଜାଣେ, ତୁମ ପାଖରେ ପଇସା ନାହିଁ। ପଇସା କଲାବାଲା ଲୋକ ତୁମେ ନୁହଁ। ମୁଁ ଟଙ୍କା ଆଡ୍‌ଭାନ୍‌ସ ଦେବି। ପିଲାଦିନର ସାଥୀ, ବାଧିଲା ବୋଲି କହିବାକୁ ଆସିଲି। କଅଣ କହୁଛ?

ଅଚିନ୍ତ୍ୟ ମହାନ୍ତି ଆଖିରେ ଝାପ୍‌ସା ଦେଖିଲେ। ଦେଖିଲେ, ତାଙ୍କ କୋଳଥମୟଟ୍ରକ୍‌କୁ କିପରି ପୁଲିସ ଅଟକାଇ ପଇସା ମାଗୁଛି। ଦେଖିଲେ, ତାଙ୍କ ଜିପ୍ ଭିତରେ କୁଷ୍ଠରୋଗୀଗୁଡ଼ାକ ଅଫିମ୍ ଗଣ୍ଡିଲି ଧରି ନିଜ ନିଜ କ୍ଷତ ପୂଜ ସହିତ ଅଫିମ୍ ଅଠାକୁ ମିଶାଇ ଦେଉଛନ୍ତି। ଦେଖିଲେ, ସେ ଜେଲ୍ ଭିତରକୁ ହାତକଡ଼ାରେ ଯାଇଛନ୍ତି ମୁହଁକୁ ତଳକୁ କରି; ଅପରାଧ, ସେ ଜଣେ ସଂଭ୍ରାନ୍ତ ବ୍ୟକ୍ତି ହୋଇ ଶେଷ ଜୀବନରେ କଳାବଜାରକୁ ପେଷା କରି ସମସ୍ତଙ୍କୁ ଠକୁଛନ୍ତି।

ଜେଲ୍ ଫାଟକ ଫିଟିଗଲା। ଦେଶର ସୁସାହିତ୍ୟିକ, କବି, ସଂସ୍କୃତି-ପ୍ରବକ୍ତା ଓ ଧର୍ମଭୀରୁ ଅଚିନ୍ତ୍ୟ ମହାନ୍ତି ଫେରି ଚାହିଁ ଦେଖିଲେ ତାଙ୍କର ବାଲ୍ୟସାଥୀ ମୁରାରି ମୁରୁକି ମୁରୁକି ହସୁଛି ଓ କହୁଛି– ତମେ ପାରିଲ ନାହିଁ। ଭଲ ମଣିଷ ହୋଇ ଶେଷ ପର୍ଯ୍ୟନ୍ତ ରହିଗଲ। ନେଇ ଆଣି ଥୋଇ ଜାଣିଲ ନାହିଁ। ଭାଗ୍ୟ!!

ସମାଜ ଅଚିନ୍ତ୍ୟଙ୍କର ପ୍ରତିଭାକୁ ସ୍ୱାଗତ କଲା ନାହିଁ। ରାଷ୍ଟ୍ର ତାଙ୍କୁ ସନ୍ଦେହ ଚକ୍ଷୁରେ ଦେଖିଲା। ଆଉ ଜନଗୋଷ୍ଠୀ! ସେମାନେ ତ ଅରବିନ୍ଦଙ୍କୁ ବି ବିକାକିଣା କରିବାରେ ଲାଗିପଡ଼ିଛନ୍ତି...କଥାରେ କଥାରେ ସତ୍ୟ, ଆଲୋକ, ଅତିମାନସ ଶବ୍ଦଗୁଡ଼ାଏ ପ୍ରକଟ କଲେ ବି ମଣିଷ ପ୍ରକୃତି ଯେଉଁ ତିମିରେ... ସେହି ତିମିରେ...

–ସୁବ୍ରତ।

–ମୁରାରି।

–କୋଳଥ।

ଶ୍ରୀ ଅରବିନ୍ଦ କହିଥିଲେ–ଘନାନ୍ଧକାର ପରେ ପ୍ରଭାରେ ଅରୁଣିମା ସତ୍ୟ, ତାହା ନିଶ୍ଚିତ।

ଅଚିନ୍ତ୍ୟ ସେହି ବିଶ୍ୱାସରେ ଆଜି ଦଣ୍ଡାୟମାନ...ଅନିର୍ବାଣ।...



# ପରିତ୍ରାଣାୟ ସାଧୂନାମ୍

ଶୀତଦିନର ସକାଳ।

ଓଡ଼ିଶାର କେଉଁ ଅଖ୍ୟାତ ପଲ୍ଲୀର ଦିଗ୍‌ବଳୟରେ ସୂର୍ଯ୍ୟ ଉଠିଛି। ଠାଏ ଠାଏ ଲୋକଗହଳି। ଖରାକୁ ପିଠିକରି ବସିଛନ୍ତି, ପୁରୁଷଙ୍କ ଜାଗାରେ ପୁରୁଷ, ମହିଳାଙ୍କ ଜାଗାରେ ମହିଳା।

ଛପର ଛଣ ଉପରୁ ଶିରାରେ ଧୂଆଁ ଉପରକୁ କୁଣ୍ଡଳିଘେରା ବାଷ୍ପରେ ଲମ୍ବିଯାଉଛି।

ପିଲାଏ ଗୋଳକରି ବିଚରା ଏଣ୍ଡୁଅ କେତେଟାକୁ ଦରମରା କରିସାରିଲେଣି ଟେକାମାଡ଼ରେ।

ଅସନା ଆବର୍ଜନାର ପାହାଡ଼ ରହିଛି ଗାଁମଝିରେ। ପାଖ ପୋଖରୀରୁ ଭୁରୁଭୁରୁ ପୂତିଗନ୍ଧ ସକାଳୁଆ ଧୀର ପବନ ସହିତ ଭାସିଆସୁଛି।

ନିସ୍ତରଙ୍ଗ ଏହି ଗ୍ରାମ-ସିନ୍ଧୁ। ଜୀବନ ଏଠି ବିଧିନିର୍ଦ୍ଧାରିତ। କେଉଁଟା ମନ୍ତ୍ରିମଣ୍ଡଳର ପତନ କି ଉତ୍‌ଥାନ, କିଛି ଖବର ଏଠାରେ ନାହିଁ। ଜନ୍ମ ଓ ମୃତ୍ୟୁହାର ଏଠି ସମାନ – ସମାନ ଯିମିତି ସମସ୍ତଙ୍କର ମୁହଁ ଓ ପରିଚୟ।

କେହି ଆସୁନାହାନ୍ତି ବିଦେଶୀ ଏ ଗାଁକୁ। କେହି ଯାଉନାହାନ୍ତି ଏଠା ମାଟି ଛାଡ଼ି। ଯଦିଓ ଯାଆନ୍ତି, ଆସନ୍ତି, ସେ'ଟା ସାମୟିକ। ଘୁଷୁରି ପଙ୍କକୁ ଆକର୍ଷିତ ହୋଇ ଆସିବାଭଳି ଫେରିଆସନ୍ତି। ଅନ୍ୟତ୍ର ଅସହଜ ଲାଗେ।

ଗାଁ ମୁଣ୍ଡରେ ଦେବତା ଅଛନ୍ତି। ଓଡ଼ିଶାରେ ପ୍ରତି ଗାଁରେ ଗ୍ରାମଦେବତୀ, ଜଣେ ନୁହନ୍ତି, ବହୁ ପ୍ରକାରର ଓ ବହୁ ଉଚ୍ଚତାର। ଏ ଗାଁରେ କେଉଁଠି କିଛି ନ ଥିଲା, ସନ୍ତସନ୍ତିଆ ଭୂଇଁ, ହଠାତ୍ ସେଠାରେ ଦିନେ ପାତାଳଫୁଟା ଶିବଲିଙ୍ଗ ହଲଚଲ ହେଲେ, ମାଗିଲେ ଭୋଗ ଓ ତୃଷା ମେଣ୍ଟାଇବା ପାଇଁ ଛେନା-କଦଳୀର ପ୍ରଲେପ।

ଏ ଗ୍ରାମଟିର ଭୂଗୋଳ, ଇତିହାସ ବା ଜୀବନଧାରା ବର୍ଣ୍ଣିବାର କିଛି ଉଦ୍ଦେଶ୍ୟ ନାହିଁ। ତେବେ ସହସା ସେହି ନିର୍ଦ୍ଦିଷ୍ଟ ସକାଳେ ଗୋଟାଏ ଅତି ରୋମାଞ୍ଚକର ଓ ଅତୀନ୍ଦ୍ରିୟ ଦୃଶ୍ୟ ଦେଖାଗଲା ଗାଁର ବଟବୃକ୍ଷମୂଳେ।

ଖଣ୍ଡିଏ ଚିଠି...

ଚିଠିଟିକୁ ଧରିଛନ୍ତି ବୃଦ୍ଧ ହଟକେଶ୍ୱର ପରିଡ଼ା। ତାଙ୍କ ଧରା ରୀତିରୁ ଜଣାପଡୁଥିଲା ସେ ମହାଶୟ ତାଙ୍କର ଷାଠିଏବର୍ଷ ଜୀବନକାଳ ଭିତରେ କେଉଁ ପଦାର୍ଥକୁ ଏମିତି ସପ୍ରଣାମ ସଂଭ୍ରମସହକାରେ ଧରି ନ ଥିଲେ।

ତାଙ୍କ ଜୀବନରେ ସେ ଧରାଧରି କାମ ବହୁତ କରିଛନ୍ତି। ନାତି-ନାତୁଣୀଙ୍କୁ ଧରିଛନ୍ତି, କୋଳେଇଛନ୍ତି। ପୁଣି ଛୁରୀ, କଟୁରୀ, ବର୍ଚ୍ଛାଧାରକୁ ଧରେଇଛନ୍ତି।

ହିଂସାରୁ ଅହିଂସା ପର୍ଯ୍ୟନ୍ତ ସବୁ କାର୍ଯ୍ୟରେ ସେ ଧୁରନ୍ଧର ଥିଲେ। ଆଜି ହଟକେଶ୍ୱର ପରିଡ଼ା ହତଚକିତ ହୋଇ ବସିଯାଇଛନ୍ତି ଖଣ୍ଡିଏ ଚିଠି ଧରି।

ତାଙ୍କ ପାଖକୁ କେହି କେବେ ଚିଠି ଦେବାର ଶୁଣା ନଥିଲା। ଦୁଇ କ୍ରୋଶ ଦୂରରେ ଥିବା

ଡାକଘରକୁ କେତେ ବାବୁ ଆସିଲେଣି, ଗଲେଣି। ଡାକ ବିଟ୍‌କରିବା କେତେ ଡାକବାଲା ବି ଉଦିତ ଅସ୍ତ ହେଲେଣି। ମାତ୍ର ହଟକେଶ୍ୱରଙ୍କର ମନେପଡୁନି ତାଙ୍କୁ କିଏ କେବେ ଚିଠି ଲେଖିଛନ୍ତି କି ସେ କାହାଠାରୁ ଚିଠି ପାଇଛନ୍ତି।

ଗତକାଲି ସଞ୍ଜପହରକୁ ଗୋଟାଏ ନୂଆ ଦୃଶ୍ୟ ଦେଖାଗଲା। ଡାକବାଲା ରଡ଼ି ଛାଡ଼ି ଡାକୁଥାଏ–ଏ ଗାଁରେ କିଏ ହଟିଆ...ହଟକେଶ୍ୱର ଅଛି କି ହେ......

ପିଲାଏ ବାଟ ବତେଇଦେଲେ।

ଡାକବାଲା ପିଣ୍ଡା ଉପରେ ବସିଯାଇ କହିଲା– ଓହୋ, ସରକାରୀ ଚିଠି, ସରକାରୀ ମୋହର; ଆହେ ତମେ ବୁଢ଼ା, ପଢ଼ି ପାରିବଟିକି? ଡାକ ମୋହରରୁ ଜାଣିଲୁ ତମ ନାଁରେ ଭୋବନିଶରରୁ ଆସିଛି... ରାଜଧାନୀ...ରାଜଧାନୀ...ହଉ ନିଅ...ଜଳଖିଆ ଗଣ୍ଡେ...ରାତି ତ ହେଲା!

ହଟକେଶ୍ୱର ଆଚମ୍ବିତ ହେଲେ। ତାଙ୍କ ପାଖରୁ ଚିଠି! ଯେତେକ ପୁଅ ଝିଅ ସେ ପୃଥିବୀକୁ ଆଣିଥିଲେ, ସେଇ ଏକା ପୃଥିବୀର ଗୋଟାଏ ଅଂଶ...ଶ୍ମଶାନକୁ ଅଧାଅଧି ଚାଲିଗଲେଣି। ସବା ସାନଝିଅ କେତକୀ କେଉଁ ଟୋକା ସାଙ୍ଗେ ଚାଲିଗଲା। ଖବର ମିଳିଲା କଟକଚଣ୍ଡୀଙ୍କୁ ଚାହିଁ ସେମାନେ ବାହାହେଲେ। ଜ୍ୱାଇଁ କିଏ, ତା'ର ନାଁ କଅଣ, ଘର କେଉଁଠି, କିଛି ଜାଣିଲେ ନାହିଁ ହଟକେଶ୍ୱର।

ଏ ତ କିଛି ବିଚିତ୍ର କଥା ନୁହେଁ। ସବୁ ରୋଗ-ଭୋଗ, ଶାନ୍ତି-ଅଶାନ୍ତି ଯିମିତି ଅଦୃଷ୍ଟ ଦେଖାଇ ହଟକେଶ୍ୱର ଜୀବନକାଳ ଭିତରେ ସହିନେଇଗଲେ, ସିମିତି ଏ ଅଜ୍ଞାତ ଜାମାତାର ଲୁଣ୍ଠନ ପ୍ରକ୍ରିୟାକୁ ବି ସହିଗଲେ।

ରାତି ତ ହୋଇଯାଇଥିଲା। ଚିଠିଟି ସେ ପଢ଼ି ପାରିଲେ ନାହିଁ। ତା' ପୁଣି ମାତୃଭାଷାରେ ଲିଖିତ ପତ୍ର ନୁହେଁ–ଇଂରାଜୀ ଭାଷା।

ବଡ଼ କଥା ହେଲା, ଚିଠିର କାଗଜ ଏତେ ମସୃଣ, ସାଉଁଳିଲେ ଖାସା ଲାଗୁଛି। ବାସ୍ନା ବି ବାହାରୁଛି। ଅଳିକୁଳ ମୋଦିତ ହୋଇପଡ଼ିବେ ସେ ଗନ୍ଧରେ।

ବଡ଼ ଛଟପଟ ହେଲେ ହଟକେଶ୍ୱର ପରିଡ଼ା। ଜୀବନର ଏକ ନୂଆ ଅନୁଭୂତି...ଚିଠି ଆସିଲା, ହେଲେ ସେ ପଢ଼ି ପାରିଲେ ନାହିଁ। ଓଡ଼ିଆ ହୋଇଥିଲେ କ, ବ, ଚ କରି ଠଉରେଇ ପାରିଥାନ୍ତେ। ଏ ତ ଇଂରାଜୀ!

ଚିନ୍ତା ହେଲା ତାଙ୍କର, ଡାକବାଲା କହିଗଲା ସରକାରୀ ଚିଠି। ତେବେ କଅଣ ଘର କୋରଖି କରିବାର ପରୁଆନା ଖୋଦ୍ ରାଜଧାନୀରୁ ଆସିଛି! ଅବା ତାଙ୍କୁ କିଏ ମିଛ ମକଦ୍ଦମାରେ ପକାଇ ଦେଇଛି–ତଲବ ଆସିଛି କୋର୍ଟରେ ହାଜିର ହେବା ପାଇଁ!

ସକାଳେ ସେଥିପାଇଁ ଏତେ ଗୁଞ୍ଜନ...ଏକପ୍ରକାର ଛୋଟିଆ ସଭା। ଗୁପ୍ତରତ୍ନ ବାହାରକୁ ଆସିବ; ବଟବୃକ୍ଷ ତଳେ ପତ୍ରପାଠର ପ୍ରାଥମିକ ପ୍ରସ୍ତୁତି।

ସୂର୍ଯ୍ୟ ବେଶ୍ ତେଜୀୟାନ୍। କୁଆଡ଼େ ଗଲା ସେ ମାଟ୍ରିକ୍ ଫେଲ୍ ଟୋକା ନାରଣ? ସେଇ ଜାଣେ ଦି'ପଦ ଇଂରାଜୀ ପାଠ।

ହେଇ ନାରଣ ଆସୁଛି। ନାରଣ ଆଜି ଗାଁ-ଦାଣ୍ଡର ବଡ଼ ସମ୍ମାନନୀୟ ଅତିଥି; ଖାଲି ଗେଣ୍ଡୁ ଫୁଲମାଳେ ବେକରେ ପଡ଼ିଥିଲେ ରାଜା ମନ୍ତ୍ରୀଙ୍କ ଭଳି ଶୋଭାପାଆନ୍ତା।

ନାରଣ ଜୀବନରେ ବି ଏ ଏକ ଅପ୍ରତ୍ୟାଶିତ ପ୍ରଭାତ। ଆଜି ବୁଝୁ ସେ ହାରାମଜାଦା ପରୀକ୍ଷକ, ଯେ ତାକୁ ପରୀକ୍ଷାରେ ଫେଲ କରିଦେଇଛି, ସବୁ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ତା'ର ଗୋଡ଼ ତଳେ।

ନାରଣ ଆଜି କେବଳ ବିଡ଼ିଟଣା ନାରଣ ନୁହେଁ...ଏ ପର୍ବ ପରେ ସେ ସିଗାରେଟ୍ ଟାଣିବ; ମନଇଚ୍ଛା ଯାହା କରିବ, ତାକୁ କେହି କିଛି କହିବାକୁ ନ ଥିବେ, କାରଣ ସେ ସରକାରୀ ଚିଠି ପଢ଼ି ସରକାରୀ ଆଦେଶକୁ ଗାଁ-ଦାଣ୍ଡରେ ବିତରଣ କରିପାରିଛି।

ସମସ୍ତେ ଉଦ୍‌ବିଗ୍ନ। ପଚାଶ ଷାଠିଏ ଲୋକଙ୍କର ସମାହାର। ଚିଠିଟି ଲଫାପା ଶରୀରରୁ ଅଲଗା ହେଲା, ଯେମିତି ପ୍ରାଣ ପିଣ୍ଡରୁ ବାହାରି ଯାଇ ଗାଁଦାଣ୍ଡରୂପକ ବ୍ରହ୍ମରେ ଲୀନ ହୋଇଗଲା।

କି ସୁନ୍ଦର କାଗଜ...ନୀଳ...ତା'ଉପରେ କି ସୁନ୍ଦର ଲେଖା! କେହି କେହି 'ଦେଖେ ଦେଖେ' କହି ଆଉଁସିବାକୁ ଆସିଲେ। ମାତ୍ର ଏ ପତ୍ରର ଯେ ଅଧିକାରୀ ସେ ଏମିତି ଗମ୍ଭୀର ଓ ଦେବଭାବରେ ସଂଯୋଜିତ ହୋଇ ବସିଥିଲେ ଯେ କେହି ସାହସ କରି ଆଉଁସି ପାରିଲେ ନାହିଁ ପତ୍ରବକ୍ଷକୁ।

ନାରଣ ସାକ୍ଷାତ୍ ନାରାୟଣ...ବାହନ ଅବଶ୍ୟ ଗରୁଡ଼ ନ ଥିଲେ। କିନ୍ତୁ ମିଟିମିଟି ଚାହିଁ ସଲଜ୍ଜ-ଭଙ୍ଗୀରେ ଛିଡ଼ା ହୋଇଥିବା ଗ୍ରାମ୍ୟବଧୂ ଓ ଅବଧୂମାନଙ୍କ ହୃଦୟରେ ନାରଣ ନିର୍ଘାତ୍ ଯେ ପ୍ରବେଶ କରିପାରିଛି, ଏଥିରେ ସନ୍ଦେହ ନଥିଲା।

ଚିଠି ପଢ଼ା ହେଲା—ପ୍ରଥମ ପ୍ରଣବରୁ ଆରମ୍ଭ। ସତେ କି ବେଦଧ୍ୱନି!!

Wish you a happy and prosperous New Year.

Rama Tripathi
Minister,
Rumour Prevention
Department
Bhubaneswar

ଅର୍ଥାତ୍— ନାରଣ ଅନୁବାଦ କଲା— ହେ ହଟକେଶ୍ୱର ପରିଡ଼ା, ତୁମକୁ ନୂଆ ବର୍ଷର ଶୁଭେଚ୍ଛା ଜଣାଉଛି ମୁଁ, ଭୁବନେଶ୍ୱରର ମନ୍ତ୍ରୀ, ଯାହାଙ୍କ ବିଭାଗ ହେଉଛି ଗୁଜବ ନିବାରଣ ବିଭାଗ। ନାରଣ ଅଙ୍କରେ ଫେଲ୍ ହୋଇଥିଲା—ଇଂରାଜୀ ତା'ର ଭଲ...ଭଲ...ପଢୁଥିଲା।

ମନ୍ତ୍ରୀ ଚିଠି ଦେଇଛନ୍ତି! ପ୍ରବଳ ତୋଫାନ୍ ଗାଁ ମୁଣ୍ଡରେ ବହିଗଲା। ଉର୍ଦ୍ଧ୍ୱରେତାମାନେ ନମ୍ର ହୋଇଗଲେ। ଦେବକୁଳ ସ୍ୱର୍ଗରୁ ପୁଷ୍ପ ବୃଷ୍ଟି କଲେ। ଏ ତ ରାମରାଜ୍ୟ! ରାମଚନ୍ଦ୍ରଙ୍କର ଶାସନ! ରାମ ତ୍ରିପାଠୀଙ୍କର ଅପୂର୍ବ ପ୍ରେମ!

ରାମଚନ୍ଦ୍ର ତ୍ରିପାଠୀଙ୍କର ଆମ୍ବାସାଡାର ଗାଡ଼ିର ହେଲ୍‌ପର, ଅର୍ଥାତ୍ ପୋଛାପୋଛି କାର୍ଯ୍ୟରେ ନିଯୁକ୍ତ ଥିବା କୃତ୍ତିବାସ ଜଣେ ସମାନ୍ୟ ବ୍ୟକ୍ତି ନୁହେଁ। ମନ୍ତ୍ରୀଙ୍କର ଦର୍ଶନ ପାଇବା ପୂର୍ବରୁ କୃତ୍ତିବାସର ଦର୍ଶନ ଯେ ନିତାନ୍ତ ଆବଶ୍ୟକ, ଏ କଥା ପୁଞ୍ଜିବାଦୀ ଖଣିମାଲିକଙ୍କଠାରୁ ଆରମ୍ଭ କରି ବିଧବା ଗ୍ରାମସେବିକା ପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି।

ପାହାଚ ପାହାଚ ହୋଇ ଶୈଳ-ତନୁ ଗଢ଼ାହୋଇଛି ପର୍ବତ ଶିଖରକୁ କଅଣ ମିଛରେ? ପ୍ରକୃତି ଯେତେବେଳେ ଏପରି ବିଧି ରଚନା କରି ନିମ୍ନସ୍ଥ ପାହାଚକୁ ବି ଗୁରୁତ୍ୱ ଦେଉଛି, ସେତେବେଳେ ନିମ୍ନଜୀବୀ ପୋଛାପୋଛି କାମରେ ବ୍ୟାପୃତ ଥିବା

କୃତ୍ତିବାସ ଯେ ଅବହେଳିତ ପ୍ରାଣୀ ନୁହେଁ, ଏ କଥା ପ୍ରତ୍ୟେକ ଗୁଣୀ ମାନୀ ବ୍ୟକ୍ତି ସ୍ୱୀକାର କରିବେ।

—ହଇରେ ହେ, ସେଗୁଡ଼ା ନେଇ କଅଣ କରିବୁ? ଗାଡ଼ି ପୋଛାହେଲା? ମନ୍ତ୍ରୀ ଠିକ୍ ସାଢ଼େ ଗୋଟାଏ ବେଳେ ଗସ୍ତରେ ଯିବେ, ମନେଅଛି ତ? ଡ୍ରାଇଭର କାହିଁ? ପରମାଣିକ ଡ୍ରାଇଭର ଯିବ; ଦୂର ବାଟ ନା? ତା' ଉପରେ ମନ୍ତ୍ରୀଙ୍କର ଖୁବ୍ ବିଶ୍ୱାସ।

ମନ୍ତ୍ରୀ ତ୍ରିପାଠୀଙ୍କର ପି.ଏ. ସରୋଜ ବାବୁ ଦନ୍ତା ହସ୍ତୀ ଭଳି କାମ କରନ୍ତି। କେତେବେଳେ ହସିବାକୁ ହେବ, କେତେବେଳେ ଝିଙ୍କାରି କଥାକୁ ଚୋବାଇ ଚୋବାଇ କହି ସମସ୍ତଙ୍କୁ ତଟସ୍ଥ କରିଦେବାକୁ ହେବ, ଏ ସବୁଥିରେ ସେ ଧୂରୀଣ ବ୍ୟକ୍ତି।

କୃତ୍ତିବାସ ପି.ଏ.ଙ୍କ ଟେବୁଲ ଉପରେ ସ୍ତୂପାକାରରେ ସଜ୍ଜୀକୃତ କାଗଜଗୁଡ଼ାକୁ ଚାହିଁ କହିଲା—ବାବୁ, ଏଗୁଡ଼ାକ ଏତେ ଛାପା ହୋଇ ପଡ଼ିଛି, ଟିକେଟ ବି ଲାଗଛି— ଖଣ୍ଡେ ଶଶୁର ଶାଶୂଙ୍କ ପାଖକୁ ପଠାଇଦିଏଁ। ଚଣ୍ଡୀ ମନ୍ଦିରରେ କେତକୀକୁ ବାହାହେବା ପରେ ଶଶୁରଙ୍କୁ ଦେଖିନି। ଏ ଖଣ୍ଡକ ପଠାଇ ଦେଉଛି, ତା'ପରେ ଚିଠି ଦେବି, ଭାରି ମଜା ହେବ।

ପି.ଏ. ଭାବିଲେ ମନ୍ତ୍ରୀ ସମ୍ବନ୍ଧୀୟ ସବୁ ଜିନିଷ ଏମିତି ଖଇରାତିରେ ଯାଏ; ଆଉ ଦି'ଟା ଦିନ ପରେ ଏ ଗ୍ରିଟିଂ କାର୍ଡଗୁଡ଼ାକ ଅଦରକାରୀ ହୋଇଯିବ। ମନ୍ତ୍ରୀ ଅର୍ଡର ଦେଲେ, ଆମେ ଛାପିଦେଲୁ...ଶୁଭେଚ୍ଛା-ବିତରଣ ଯାନ୍ତ୍ରିକ ପ୍ରକ୍ରିୟାରେ ହେଲା...ମନ୍ତ୍ରୀ କିଏ, ଯିଏ ପାଇଲେ ସେ ବା କିଏ? ତେବେ ଗୋଟାଏ ଆଧୁନିକ ଫେସନ, ଚଳଣି...ଆମର କଅଣ ଅଛି? ଦରିଆମେଁ ଡାଲ୍ ଦୋ...ମୂର୍ଖଗୁଡ଼ାକ ବୁଝନ୍ତି ମନ୍ତ୍ରୀ ଶୁଭେଚ୍ଛା ପଠାଇଲେ—ମନ୍ତ୍ରୀଙ୍କର ଜୀବନ୍ତ ଦସ୍ତଖତ ଅଛି କି? ସବୁ ଛାପାରେ ବାପା...ଛିପିଛିପିକିଆ ଛାପ!

ପି.ଏ. ଙ୍କର ଚିନ୍ତାରାଜ୍ୟ କି ସୁନ୍ଦର ସତେ...ହଠାତ୍ ଟେଲିଫୋନ୍ କ୍ରିଂ କ୍ରିଂ କଲା।

—ଏସ୍ ଏସ୍, କୁହନ୍ତୁ।

ଆଉ କିଛି କହିବାର ନଥିଲା କାହାର। ପରେ ଜଣାଗଲା ହଟକେଶ୍ୱର ସେ ଦିନ ମଧ୍ୟାହ୍ନରେ ମାଟ୍ରିକ୍ ଫେଲ୍ ଅଥଚ ମନ୍ତ୍ରୀପତ୍ର ଅନୁବାଦକାରୀ ନାରଣକୁ ଖାଇବାକୁ ଦେଇଥିଲେ ତାଙ୍କର ସ୍ନେହପାଳିତ ପାଞ୍ଚଗୋଟି କୁକୁଡ଼ାରୁ ଗୋଟିକର ମସ୍ତକ ଛେଦନ କରି।

କେହି କେହି ସେଦିନ ସଞ୍ଜରେ ହଠାତ୍ ସମ୍ମାନିତ ହୋଇ ଯାଇଥିବା ହଟକେଶ୍ୱର ପରିଡ଼ାଙ୍କ ଗୃହାଙ୍ଗନକୁ ଆସି ପରାମର୍ଶ ଦେଲେ—ବାଟ ତ ଫିଟିଗଲା, ଏବେ ମନ୍ତ୍ରୀଙ୍କୁ ଦେଖାକରି ଦୁଃଖଗୁହାରି ଜଣାଅ!

ସାଧୁମାନଙ୍କର ପରିତ୍ରାଣ ପାଇଁ ଯୁଗେ ଯୁଗେ ଭଗବାନ ଜନ୍ମ ନେଉଛନ୍ତି...

ମନ୍ତ୍ରୀ-ଜନ୍ମ ବୃଥା ନୁହେଁ...

ପରିତ୍ରାଣାୟ ସାଧୂନାମ୍...ଓ ପରିତ୍ରାଣାୟ ସାଧୂନାମ୍...



# ବିଗଳିତ ମହମ

ପୁରୀ ଗାନ୍ଧିଘାଟ...

ଇଚ୍ଛା କରି ବିଳମ୍ବରେ ଗଲି ସେ ପୁଣ୍ୟ ସ୍ମୃତିମଣ୍ଡପକୁ। ଜୟନ୍ତୀର ପ୍ରଭାତ।

ଭାଷଣ, ମାଲ୍ୟଦାନ ଓ ପତାକା ଉତ୍ତୋଳନ ଯାନ୍ତ୍ରିକ ପ୍ରକ୍ରିୟାରେ ସମାହିତ ହୋଇଥିବ। ସେଥିରେ ନୂତନତା କିଛି ନାହିଁ; ଉଦ୍ଦୀପନା ନାହିଁ, ଆତ୍ମ-ନିରୀକ୍ଷଣ ନାହିଁ।

ପୁରୀ ମୋର ଖୁବ୍ ପରିଚିତ ସହର; ଶୈଶବ, ବାଲ୍ୟ, କୈଶୋର ଓ ଯୌବନର ସ୍ମୃତି ତାହାର ପଥ ଘାଟ, ଦେବଦେଉଳ ଓ ପାଠଶାଳାରେ ଏବେ ବି ଉତ୍କୀର୍ଣ୍ଣ ରହିଛି।

ଦୀର୍ଘକାଳ ପରେ ଏ ସହରର ପରିକ୍ରମା କଲି ଏହି ପୁଣ୍ୟ-ପ୍ରଭାତରେ। ରାସ୍ତାଘାଟ କୋଠାବାଡ଼ି ପରିଚିତ ହେଲେ ବି ଜନସ୍ରୋତରେ ପରିବର୍ତ୍ତନ ଲକ୍ଷ୍ୟ କଲି।

ମଣ୍ଡପ ପାଖେ ଦେଖିଲି ଲୋକେ ବାହୁଡ଼ିଯାଉଛନ୍ତି। ଅଦୂରରେ ନୀଳ ମହୋଦଧିର ଜଳୋଚ୍ଛ୍ୱାସ। ଆଶ୍ୱିନ ସୂର୍ଯ୍ୟର କନକ ଦୀପ୍ତି ଉର୍ମିମାଳାକୁ କନକାୟିତ କରୁଛି।

ଗାନ୍ଧିମୂର୍ତ୍ତି ଗଳଦେଶରେ ଫାଶି ଦେବା ଭଳି ଦୁଇଟି କ୍ଷୀଣ ସୂତ୍ରରେ ବନ୍ଧା ପୁଷ୍ପହାର...ଉପବେଶିତ ମୂର୍ତ୍ତିର ବକ୍ଷ ପର୍ଯ୍ୟନ୍ତ ବି ତାହା ଲମ୍ବି ଆସି ନଥାଏ। ମାର୍ବଲ ପଥର ଉପରେ 'ପୁଣ୍ୟସ୍ମୃତି' ଖୋଦନସ୍ଥଳରେ ଶୁଭ୍ରତା ଅପସରି ଯାଇଛି...ଅକ୍ଷର କେତୋଟି ପୂର୍ଣ୍ଣାବୟବ ଧରି ରହିପାରିବ ନାହିଁ। କାଳର କଟାକ୍ଷ!

ତୈଳାକ୍ତ କଜ୍ଜ୍ୱଳ-କଳା ଶିଳାରେ ଗାନ୍ଧି ସାଗରର ବିଭୂଷିତ ରୂପକୁ ସନ୍ଦର୍ଶନ କରିବା ଭଙ୍ଗୀରେ ବିରାଜିତ। ଆଖି ଦୁଇଟି ସମ୍ୟକ୍ ଊର୍ଦ୍ଧ୍ୱାୟିତ।

ପ୍ରାଇମେରୀ ସ୍କୁଲ ପିଲାଏ ବାଲି ଉପରେ ବସିଯାଇ କଟା ଲେମ୍ବୁର ଲୁଣ ଦେଇ ଜିଭରେ ଚାଟୁଛନ୍ତି, ଶିକ୍ଷକମାନେ ନିସ୍ତେଜ ପ୍ରହରୀ ଭାବରେ ପରସ୍ପର ଭିତରେ ସମସ୍ୟା ସମାଧାନ ପାଇଁ ଆଲୋଚନା କରୁଛନ୍ତି।

ସମସ୍ୟା ହେଲା ସରକାରୀ ସର୍କୁଲାର ଅନୁଯାୟୀ ପିଲାମାନେ ବେଶଭୂଷା ହୋଇ ଗାନ୍ଧିଘାଟକୁ ଆସିଲେ। ବଡ଼ଲୋକର ପିଲାଙ୍କୁ ଚାକର ବେଶ କରାଇଲା, ଗରିବ ପିଲାକୁ ଗର୍ଭଧାରିଣୀ ମାଆ ପାହାନ୍ତାରୁ ଉଠାଇ ଦେଇଥିଲେ– ବେଶ କରିବାର ଆବଶ୍ୟକତା ନଥିଲା– ସଦା ସୁନ୍ଦର ବେଶରେ ନିତି ସ୍କୁଲକୁ ଆସିଲା ଭଳି ସେ ଆସିଚି। ଫେରିବା କଥା, ଧାଡ଼ି ମୂଳିଆ ହୋଇ ନା ବିକ୍ଷିପ୍ତ ହୋଇ–ଶିକ୍ଷକମାନଙ୍କର ଭାଳେଣି। ଏ ବିଷୟରେ ଇନ୍‌ସପେକ୍ଟରଙ୍କ ସର୍କୁଲାର ନୀରବ।

ଚାଇଁ ଚାଇଁ ଖରା ମାରିଲାଣି, ପିଲାଏ ଝାଉଁଳିଗଲେଣି। ଲେମ୍ବୁ କେତୁଟା କିଏ କିଏ ଆଣିଥିଲେ; ଚେନାଚୁରବାଲା ପିଲାଙ୍କ ଅଳି ଯୋଗୁ ଦାନ କଲା କିଛି ଲବଣ–ଛଡ଼ାଛଡ଼ି ହୋଇ ଖାଉଛନ୍ତି।

ମଣ୍ଡପ ପାଖରେ ବହୁପ୍ରକାର ଫେରିବାଲା। ମେଳା ଯେଉଁଠି, ବିପଣୀ ସେଇଠି।

ପଛୁଆ ଠେଲିହୋଇ ଆସିଲା ମୂର୍ତ୍ତିପାଖକୁ ଲୋକସମ୍ପର୍କ ବିଭାଗର ଜିପ୍– ବାବୁମାନେ ଯିବେ। ମାଇକ୍ ଦଣ୍ଡା ସେଥିରେ ଥୁଆହେଲା। ସତରଞ୍ଜି ଖଣ୍ଡେ ଜିପ୍ ଭିତରେ ପଶିଲା। ଫେରିବାଲା ଚିହ୍ନିଛି ଲୋକସମ୍ପର୍କ-ରକ୍ଷାକାରୀ ବାବୁଙ୍କୁ ବହୁ ମେଳା ମିଳନ ଭିତରେ।

ବଢ଼ାଇଦେଲା ଲୁଣ ଛିଞ୍ଚ ଗରମ୍ ଚିନାବାଦାମର ଠୋଲା। ଗାନ୍ଧିଙ୍କ ଆଗରେ ଲୋକସମ୍ପର୍କ ରକ୍ଷା କରାଗଲା।

ପ୍ରାଇମେରୀ ଝୋଲାମରା ପିଲାଏ ଜିପ୍‌ର ସବୁପଟେ ଘେରିଯାଇ ଚିତ୍କାର କଲେ– 'ଆମକୁ ନିଅ, ବଡ଼ଦାଣ୍ଡ ପାଖେ ଛାଡ଼ିଦିଅ; ଆମକୁ ଭୋକକଲାଣି।'

ବାବୁମାନେ ଏକ୍ଷଣି ଏ ଛୁଆଗୁଡ଼ାକ ପୃଥିବୀ ପୃଷ୍ଠରେ ଅନାବଶ୍ୟକ ବୋଲି ମନେକଲେ। ଆଉ ଭୋକ! ଛିଃ, କେଡ଼େ ଭଲ୍‌ଗାର! ଗାଡ଼ି ଗତି କଲା। ଆହତ-ଆତ୍ମ ଗାନ୍ଧି! ରାମରାଜ୍ୟର ସ୍ୱପ୍ନାଶ୍ରୟୀ ଶିଶୁ ଶିକ୍ଷକଙ୍କୁ ଚାହିଁଲେ।

ଗୋଟାଏ ଶିକ୍ଷିତ ପାଗଳ ମୋ ଆଡ଼କୁ ମାଡ଼ି ଆସି କହିଲା– "ରଥଗୀତ ଶୁଣିଛୁ? କାଳୀ...ଗୋରୀ..."

ମୁଁ ଅବାକ୍। ପୁରୀର ଜଣେ କେହି ଆଡ୍‌ଭୋକେଟ ବିକୃତ ମସ୍ତିଷ୍କ ହୋଇ କିଛିଦିନ ଆୟତ୍ତର ବାହାରକୁ ଯିବାର ଖବର ପାଇଥିଲି। ଏ କଅଣ ସେହି?

– "ଆରେ, ପୁରୀକୁ ଆସିଲୁ ତ ଆସିଲୁ, ଖବରକାଗଜରେ କାହିଁକି ଲେଖିଲୁ ଯେ ଇଚ୍ଛୁକ ବ୍ୟକ୍ତି ସଂଯୋଗ ରଖନ୍ତୁ?"

ତା'ପରେ ଆଡ୍‌ଭୋକେଟ ହସିଲେ ଓ ରଥଗୀତ ଗାଇ ଚିତ୍କାର କଲେ–"ଆରେ ଏଇଟା (ମତେ ଦେଖାଇ) ଗାନ୍ଧି ହୋଇଗଲାରେ...କିମିତି ଗାନ୍ଧିକୁ ଚାହିଁଛି କଟମଟ କରି!"

ଘୋର ବିଷାଦ ଆସିଗଲା ମନରେ...ଏ କି ପୃଥିବୀ? ଏ କି ଗାନ୍ଧିପୂଜା? ଏ କି ପ୍ରତାରଣା? ଏ କି ଦୁଃସହ ଦୃଶ୍ୟ!

ଦୁଇଟା ପ୍ରାଇମେରୀ ପିଲା ପ୍ରତିଯୋଗିତା କଲେ, ଯିମିତି ମନ୍ତ୍ରୀଙ୍କ ସଭାରେ କାଗଜ ଫୁଲ ଓ ପତାକାକୁ ଚିରି ନାଚିଯାଆନ୍ତି, କିଏ ସେମିତି ଗାନ୍ଧି ବେକରୁ ଫୁଲମାଳ ଛିଣ୍ଡାଇ ପକାଇବ।

କଂଗ୍ରେସ ସଭାପତି ସ୍ୱ-ହସ୍ତରେ ପିନ୍ଧାଇ ଦେଇଥିବା ମାଳା ଭୂତଳେ ଲୋଟିଲା– ଯିମିତି ବାପୁର ଭସ୍ମ ଟିକିଏ ଆଗକୁ ମହାସଲିଳର ପ୍ରବାହରେ ନିମଜ୍ଜିତ ହୋଇଥିଲା ଦିନେ, କ୍ଷଣେ ଓ ତିହ୍ନରେ...କିଏ ଜାଣିଥିଲା ସେହି ନିମଜ୍ଜମାନ ଭସ୍ମ ହିଁ ରାମରାଜ୍ୟର ସ୍ୱପ୍ନକୁ ଭସ୍ମୀଭୂତ କରିଦେବ!

ମୁଁ ଆଗକୁ ପାଦ ଦେଲି। ଦେଖିଲି, ଆଡଭୋକେଟ ମୋ ପିଛା ଧରିଲେ–ଅଶ୍ଳୀଳ ସଙ୍ଗୀତ ଗାନ କଲେ। ମୋ ଉପରେ ତାଙ୍କର କ୍ରୋଧ କାହିଁକି, ମୁଁ ବୁଝିପାରିଲି ନାହିଁ। ତେବେ ଏତିକି ଜାଣିଲି– ସେ ମତେ ଚିହ୍ନନ୍ତି।

ବୁଝିଲି ଏ ପ୍ରକଟିତ ପାଗଳ; ମାତ୍ର ଆମେ ସମସ୍ତେ ଅପ୍ରକଟ ଉନ୍ମତ୍ତ। ଆଡ୍‌ଭୋକେଟଙ୍କ ସ୍ୱରକୁ

ଆସିବାକୁ ସମୟ ଲାଗିବ ନାହିଁ, ଯଦି ଦୁନିଆଟା ଏହିପରି ଗତି ଧରେ।

ପ୍ରାଇମେରୀ ପିଲାଏ ମୋ ଆଗରେ। କେତେ ନାଲି ନେଳି ଫ୍ରକ୍ ଓ ଜାମା। ଗାନ୍ଧି-ରାଜ୍ୟର ଭାବୀ ବଂଶଧର, ଚହଲି ଚହଲି ଠରାଠରି ହୋଇ ଯାଉଛନ୍ତି।

ଠରାଠରି କାହିଁକି? ଝିଅ ଗୋଟିଏ 'ଏଇ ଚୁପ୍' କହି କେତୋଟି ସାଙ୍ଗକୁ ଆକଟ କରୁଛି। କହୁଛି, 'ସିଆଡ଼େ ଚାହାଁନା'– ଲାଜରଙ୍ଗା ମୁହଁ ତାର...ମୋ ଆଖିର ଦୃଷ୍ଟି ସେହି ନିଷିଦ୍ଧ ଦିଗକୁ ପ୍ରସାରିତ ହେଲା।

ପଛରେ ପଡ଼ିରହିଲା ଅଶାନ୍ତ ସିନ୍ଧୁ। ମଝିରେ ଶାନ୍ତ ସମାହିତ ମହାତ୍ମାଙ୍କ ପ୍ରତିମୂର୍ତ୍ତି ଆଗରେ ପ୍ରାଇମେରୀ ପିଲାଙ୍କ ଶୋଭାଯାତ୍ରା।

ଓଡ଼ିଆମାନେ ଏବେ ଖୁବ୍ ମୌଳିକ ଚିନ୍ତାର ଅଧିକାରୀ ହୋଇଛନ୍ତି ବୋଲି କ୍ରମେ ଧାରଣା ହେଉଛି। ଯାହାଙ୍କର ପୂର୍ବ-ପୁରୁଷେ ସିନ୍ଧୁ ପାର ହୋଇ ବଣିଜ କରୁଥିଲେ, କୋଣାର୍କ ଗଢ଼ିଥିଲେ, କେଡ଼େ ସୁନ୍ଦର କାରୁକାର୍ଯ୍ୟ ମନ୍ଦିରଗାତ୍ରରେ ରଚିଥିଲେ, ତାଙ୍କ ବଂଶଧର ଏବର ଓଡ଼ିଆ ତାଙ୍କର ମୌଳିକ ଜ୍ଞାନକୁ ଆଧୁନିକୀକରଣ କରୁଛନ୍ତି।

ଜିଲ୍ଲାପାଳଙ୍କ ଦପ୍ତରରେ ମୌଳିକ ଜ୍ଞାନର ଚର୍ଚ୍ଚା ଚାଲିଛି–କଅଣ କଲେ, କିମିତି ପ୍ରଚାର କଲେ ଭୀଷଣ ଭାବରେ ଜନ୍ମହାର କମିଯିବ। ଜିଲାରେ ଜିଲାରେ ସେଥିପାଇଁ ପ୍ରତିଯୋଗିତା। ଟଙ୍କା ଅଛି, ଖର୍ଚ୍ଚ ହୋଇପାରୁନି; ଯଦି ଖର୍ଚ୍ଚ ହେବ, ତେବେ ଏମିତି ହେଉ– "ତୁମ ଜୀବନ ଆମର ପ୍ରିୟ; ତୁମର ବେଗ ନୁହେଁ।"

ଏହି ବେଗଟା ହିଁ ବଡ଼ ବିଭ୍ରାଟ ଓ ଅସୁବିଧାର କାରଣ। ଜିଲାପାଳ ବେଗରେ ରାଗିଗଲେ। ସ୍ୱାସ୍ଥ୍ୟ ବିଭାଗ କର୍ମଚାରୀ ବେଗରେ ଆତଙ୍କ ମଣିଲେ। ଶେଷକୁ ଅତି ବେଗରେ ଜଣେ ଧନାଢ଼୍ୟ କଣ୍ଟ୍ରାକ୍‌ଟର ପ୍ରସ୍ତାବ ଦେଲେ ଏବଂ ଅତୀତର ଦୃଷ୍ଟାନ୍ତ ଦେଇ କହିଲେ– "ମୁଁ ଦ୍ୱିତୀୟ ମହାଯୁଦ୍ଧରେ କେବଳ ଲକ୍ଷ ଲକ୍ଷ ଛାଞ୍ଚୁଣି ବିକି ଯୁଦ୍ଧ ପ୍ରତି କର୍ତ୍ତବ୍ୟ କରିଥିଲି– ଜନ୍ମହାର କମାଇ ପାରିବିନି?"

ସଭାସ୍ଥ ବ୍ୟକ୍ତିମାନେ ମୂକ ହୋଇଗଲେ। ଏ କଅଣ ପାଗଳ? ଗୋଟାଏ ଲୋକ କହୁଛି ସେ ଜନ୍ମହାର କମାଇ ପାରିବ; ଅଥଚ ସେ ଡାକ୍ତର ନୁହେଁ କି ଯୁବତୀ ନୁହେଁ!

ଟେଣ୍ଡର ଦରକାର ହେଲା ନାହିଁ। ପ୍ରାୟ ଲକ୍ଷେ ଲୋକ, ସ୍ଥାୟୀ ଓ ଅସ୍ଥାୟୀ, ଦିବସର ପ୍ରତି ମୁହୂର୍ତ୍ତରେ ଦେଖିଲେ ଆକାଶଛୁଆଁ ପ୍ରତ୍ୟେକ ଲ୍ୟାମ୍ପ୍ ପୋଷ୍ଟରେ ଦୋଳାୟମାନ ଭଙ୍ଗୀରେ ଜନ୍ମହାର କମୁଛି।

ପ୍ରାଇମେରୀ ପିଲା, ଝିଅ, କିଶୋର-କିଶୋରୀ, ଯୁବକ-ଯୁବତୀ, ପ୍ରୌଢ଼, ବୃଦ୍ଧ, ସ୍ଥବିର ସମସ୍ତେ ଦେଖିଲେ ଗୋଟିଏ ପଦାର୍ଥକୁ–ଯାହାକୁ ଜୟନ୍ତୀର ପ୍ରଭାତରେ ପିଲାଏ ଲୁଚେଇ ଲୁଚେଇ ଦେଖିବାକୁ ଠରାଠରି ହେଉଛନ୍ତି।

ଧନ୍ୟ ସେ ବିନ୍ଧାଣୀ, ସେ କୌଶଳୀ, ଯିଏ ଧନ ଅର୍ଜନ କରିବା ସଙ୍ଗେ ସଙ୍ଗେ ମଣିଷର ଗୋଟିଏ ଗୋପନ ଓ ସୃଷ୍ଟିଛନ୍ଦ୍ୟ କ୍ରିୟାକୁ ଅସାର୍ଥକ କରିବା ପାଇଁ ଆଲୁଅ ଖୁଣ୍ଟ ତଳେ ଝୁଲେଇ ଆଲୋକିତ କରିଦେଇଛି।

ସବା ସାନ ପ୍ରାଇମେରୀ ପିଲାଟି ଦରୋଟି ତୁଣ୍ଡରେ ପଢୁଥିଲା ନି...ରୋ...ଧ।

ସହରଯାକ ଦେଖିଲି ଅବାଧ ଅବରୋଧ। ଗୋମାତା ରାସ୍ତା ଉପରେ ବିଭିନ୍ନ ଠାଣିରେ ସୁପ୍ତ ବା ଅବସ୍ଥିତ। ବୃଷଭ ଜାଗ୍ରତ ଓ ସମାଧିସ୍ଥ। ଯାନ ଅଟକିଯାଉଛି।

ଉନ୍ନତି ହୋଇଛି ସହରର ନିଶ୍ଚୟ। ସେ ପାଗଳର ଅଶ୍ଳୀଳ ସଙ୍ଗୀତ ଛୋଟ ଛାତ୍ରଛାତ୍ରୀମାନଙ୍କର କାନରେ ପଡୁଥାଏ...ଦୃଶ୍ୟରେ ନିରୋଧ...ଚେତନାରେ ଅଶ୍ଳୀଳତା...

'ସାବାସ୍!'

'ସାବାସ୍!'

ମାନେ–ସାହୁକାର ଧରାପଡ଼ିଛନ୍ତି। ଗୋଦାମରୁ ବାହାରିଲା ତିରିଶ ବସ୍ତା ତେନ୍ତୁଳି ମଞ୍ଜିର ଚୂନା। ଯୁବକମାନେ ଧରିଛନ୍ତି। ଆହା, ନାକନିଶ ପଡ଼ିଗଲା ହେ...ସେ ପୁଣି ମନ୍ତ୍ରୀଙ୍କର ପଲିଟିକାଲ ଆସିଷ୍ଟାଣ୍ଟ ସେକ୍ରେଟାରୀ!!

ଚହଳ ପଡ଼ିଲା। ମାତ୍ର ଜଗନ୍ନାଥଙ୍କର ବଡ଼ ବଡ଼ ଆଖି ଆଗରେ ଏ ଦୃଶ୍ୟ ଅତି ସାମାନ୍ୟ। ସେ ଖୋଜୁଛନ୍ତି ଅପରାପର ବଡ଼ କାହିଁ? ଯେତେ ବଡ଼ ଘଟଣା, ବଡ଼ ଦୃଶ୍ୟ, ବଡ଼ କଥା ତାଙ୍କ ଆଖି ଆଗକୁ ନେଲେ ବି ସେ କହୁଛନ୍ତି ଲକ୍ଷ୍ମୀଙ୍କୁ– ଏ କି ବଡ଼ ମ, ବଡ଼ଭାଇଙ୍କୁ ପଚାର।

ବଡ଼ଠାକୁର ଚିନ୍ତାନ୍ୱିତ ହେଲେ। ଏ କି ପ୍ରଶ୍ନ? ସର୍ବୋତ୍ତମ ବିରାଟ କାହିଁ। ସର୍ବୋତ୍ତମ ପୁରୁଷ ହୁଏତ ପୁରୁଷୋତ୍ତମ–କିନ୍ତୁ...

କାଚ ପିନ୍ଧି ସେ ଥରେ ଥରେ କଲେଜକୁ ଆସୁଥିଲା। ବାଁ ଡାହାଣରେ ନୀଳ ନାଲି କାଚ। ସାରି ସାରି...ଆଖିରେ ହଁ କଜ୍ଜ୍ୱଳଗାର...ମନେପଡୁଛି ଅତୀତର ସେ ଦୃଶ୍ୟ।

ସାହିତ୍ୟ କ୍ଲାସରେ ତାକୁ ପଚାରିଥିଲି– ମୁଁ ଶୁଣୁଛି ତୁ ଅନ୍ୟ କ୍ଲାସକୁ କାଚଗହଣା ପିନ୍ଧି ଆସୁଛୁ, ତୁ ଅସଲରେ କଅଣ? ମୋ କ୍ଲାସକୁ ଥରେ ସିମିତି ଆସିଲେ,ମୁଁ କଅଣ କରନ୍ତି ତୁ ଦେଖନ୍ତୁ। କାହିଁକି ତୋର ଏ ପ୍ରବୃତ୍ତି? ନାରୀ ହୋଇଯିବାକୁ ତୋର ଏ ପ୍ରୟାସ କାହିଁକି? ଜବାବ୍ ଦେ।

କ୍ଲାସଟା ଥରହର। କିନ୍ତୁ ପରମାନନ୍ଦ ପରମାନନ୍ଦରେ କେବଳ ଅଧୋବଦନ ହୋଇ ବସିରହିଛି, ଅବଶ୍ୟ ପଛ ଆସନରେ। ହାତରେ କାଚ ନାହିଁ, ଆଖିରେ କଜ୍ଜ୍ୱଳ ନାହିଁ, ଥିଲା କେତୁଟା କୌତୁକର କଲ୍ଲୋଳ ସେ ନେତ୍ର ଦୁଇଟାରେ।

ଶକୁନ୍ତଳାଙ୍କୁ କଣ୍ୱ ବୁଝାଇଥିଲେ କିମିତି ଯଥାର୍ଥରେ ଗୃହିଣୀ ହେବାକୁ ପଡ଼େ। ସେତିକିରେ ପାଠ ଶେଷ। ମୋର ଆଗ୍ରହ ରହିଲା ନାହିଁ। କିଛି ଉତ୍ତର ଶୁଣିବାକୁ ଜିଦ୍ କଲି ପରମାନନ୍ଦଠାରୁ।

ଅଗତ୍ୟା ସେ ଛିଡ଼ା ହେଲା, କହିଲା– ଗୋଟାଏ ନୂଆ କରିବାର ଆବେଗ ମତେ ଏମିତି କରୁଛି। ଯେତେବେଳେ କାଚ ଓ କଜ୍ଜ୍ୱଳ ପିନ୍ଧି କଲେଜକୁ ମୁଁ ଆସେ, ଯେଉଁମାନଙ୍କର ଭୂଷଣ ଏଗୁଡ଼ାକ ସେହିମାନଙ୍କୁ ଚାହିଁ ଦିଏ, ସେତେବେଳେ ତାଙ୍କ ମୁହଁ ଉପର ଭାବ ମତେ ଅପାର ଆନନ୍ଦ ଦିଏ, ଅତି ସରଳ ନିରପରାଧ ଆନନ୍ଦ, ସାର୍! କିଛି ତ କ୍ଷତି କରେନି କାହାର...

ପରମାନନ୍ଦ ଆଜି ଯୌବନ ଅତିକ୍ରମ କରିଛି। ଦେଖିଲେ ପଦରଜ ନିଏ; ଅଥଚ ସବୁ ଅଧ୍ୟାପକଙ୍କ ଭିତରେ ମୁଁ ଥିଲି ତା'ପ୍ରତି ଅତି ନିର୍ମମ।

'ସାର୍!'

'କିରେ ପରମାନନ୍ଦ?'

—ଆଶୀର୍ବାଦ କରନ୍ତୁ। ମତେ ଦୁଇଶ ଟଙ୍କା ନିଷ୍ପା ଯାଚୁଥିଲା ଚୋରାବେପାରୀ ମହଜୁଦକାରୀ ଦୋକାନୀ। କହିଲା—ପରମା, ଛାଡ଼ିଦେ ଏଥର, ପାଞ୍ଚଶ ଟଙ୍କା ଦେବି। ତୋର ସମାଜବାଦୀ ଦଳକୁ ନେଇ ତୁ ଚାଲିଯା; ତେନ୍ତୁଳି ବସ୍ତା ସବୁ ମୁଁ ଏକ୍ଷଣି ଟ୍ରକ୍‌ରେ ନେଇ ସମୁଦ୍ରରେ ବୁଡ଼େଇଦେବି—ତୁ ହଟିଯା।

—ମୁଁ ହଟିଆସିନି ସାର୍, ବିଚ୍ ବଜାରରେ ଏ ମଣିଷ-ହତ୍ୟାକାରୀ ଜାନୁଆରକୁ ଖୋଲା ଆକାଶ ତଳେ ଛିଡ଼ା କରେଇ ଦେଇଛି...ତେଣିକି ପୁଲିସ ଓ ମାଜିଷ୍ଟ୍ରେଟ୍‌ଙ୍କର କର୍ତ୍ତବ୍ୟ; ମୋର ନୁହେଁ।

ମୁଁ ଆଶୀର୍ବାଦ କଲି। ସାମୟିକ କାଚ ପିନ୍ଧୁଥିବା, ନାରୀ-ସୁଲଭ ଢଙ୍ଗରେ ଯିବା ଆସିବା କରୁଥିବା ପରମାନନ୍ଦର ପୌରୁଷର ବିକାଶକୁ ଲକ୍ଷ୍ୟ କଲି। ଭାବିଲି—ନାଃ, ସବୁ ଶେଷ ହୋଇଯାଇନାହିଁ...ଅବଶିଷ୍ଟ କିଛି ଅଛି...ଯେଉଁ ଅବଶେଷତକ ପାଥେୟ କରି ମୁଁ ପାଗଳ ଆଡ୍‌ଭୋକେଟଙ୍କ ଅଶ୍ଳୀଳ ଅକାରଣ ଆକ୍ରୋଶକୁ ସହିଗଲି, ମହାତ୍ମାଜୀଙ୍କ ଗଳାଚ୍ୟୁତ ପୁଷ୍ପହାରକୁ ଦେଖି ବି ସମ୍ମୁଖର ବିଶାଳ ବାରିଧିରେ ଭ୍ରମଜ୍ଞାନରେ ମଜ୍ଜିଯାଇ ଦୁଃଖ ପାଇ ନ ଥିଲି।

—କିନ୍ତୁ ସାର୍, ସେ ଯେ ଛାଡ଼ ପାଇଯିବ। ଦୁଃଖ ଏତିକି। ପରମାନନ୍ଦ ବିଷଣ୍ଣ ସ୍ୱରରେ ଉପରକୁ ଆଖି ଟେକି କେଉଁ ସର୍ବଦୁଃଖହର ଶକ୍ତି ପାଖରେ ନଇଁଗଲା।

ମୁଁ କହିଲି— 'ଦୁଃଖ ନାହିଁରେ ପରମାନନ୍ଦ, ଯେତିକି କାମ କଲୁ ସେତିକିରେ ଆତ୍ମଶୁଦ୍ଧି ଆସିଲା ତ? ଯଥେଷ୍ଟ।'

ରାସ୍ତାଘାଟରେ ପ୍ରତିମା ସଜାଯାଇଛନ୍ତି। ପ୍ରକଟିତ ହେବେ ଶ୍ରୀ ଦୁର୍ଗା।

ଅବଶିଷ୍ଟ ଜୀବନରେ ବହୁ ଲୋକ-ନାଟ୍ୟ ଦେଖିବାକୁ ବାକି ଅଛି। ମୁଁ ବଞ୍ଚିଛି।

ସବୁ ଯେପରି ଲାଗୁଛି ବିଗଳିତ ମହମବତି। ତାହା ଯେତିକି ଦଗ୍‌ଧ ହେଉଛି, ସେତିକି ଜଳୁଛି...

"ନ ଜାତୁ କାମଃ କାମାନା ମୁପଭୋଗେନ ଶାମ୍ୟତି।

ହବିଷା କୃଷ୍ଣବର୍ତ୍ମେବ ଭୂୟୋଏବାଭିବର୍ଦ୍ଧତେ।"

ଶେଷରେ ବତି ଶୂନ୍ୟ, ଅଗ୍ନିବିହୀନ କେବଳ ବିଗଳିତ ମହମ! ଏହା ହିଁ କଅଣ ସାର ହେବ ଏ ଜୀବନରେ?



# ବ୍ୟାକ୍ ସିଟ୍

ଓଡ଼ିଶାର ଏକ ପ୍ରାଇଭେଟ୍ କଲେଜ।

ସେଠାର ଛାତ୍ର ସଂଘ।

ସେ ସଂଘ ନିଷ୍ପତ୍ତି ନେଲା ଏହି ପ୍ରକାରେ...

ପ୍ରିନ୍‌ସପାଲ ମହୋଦୟ, ଆମର କପି କରିବା ଅଧିକାରକୁ ଆପଣ ଥରେ ନୁହେଁ, ବାରମ୍ବାର କ୍ଷୁଣ୍ଣ କଲେ ସିପାହିମାନଙ୍କୁ କଲେଜ ହତା ଭିତରକୁ ଆଣି ଓ ଆମକୁ ଭୟ ଦେଖାଇ। ଏ ଚାଲାଖି ଆଉ ଚଳିବ ନାହିଁ।

ଆମେ ମାନୁଛୁ ବି.ଏ. ଶ୍ରେଣୀର ଛାତ୍ର ହେଲେ ବି ଆମର ଜ୍ଞାନ ସପ୍ତମ ଶ୍ରେଣୀ ଯାଏ। ଆମର ଶିକ୍ଷକ ଆମକୁ ମୂଳରୁ ପରାମର୍ଶ ଦେଇଆସିଛନ୍ତି, ଆମେ ପଢ଼ିବୁନି, ସେମାନେ ପଢ଼ାଇବେ ନାହିଁ। ତେବେ ସବୁ ପ୍ରକାରେ କପି କରିବାକୁ ସୁବିଧା ସେମାନେ ଦେବେ।

ଆପଣ ଆସିଲା ପରେ ଏ କଲେଜର ଅନୁସୃତ ପରମ୍ପରା ନଷ୍ଟ ହୋଇଗଲା। ଆମ ପରିଚାଳନା ସମିତିର ଯେ ଟାଣୁଆ ମେମ୍ବର, ଯାହାଙ୍କର ଶିକ୍ଷା-ଯୋଗ୍ୟତା ମାଇନର ଫେଲ୍, ସେ ବିଶ୍ୱବିଦ୍ୟାଳୟର ପ୍ରତିନିଧି ପରିଚାଳନା ସମିତିରେ– ସେ ଆମକୁ କହିପଠାଇଛନ୍ତି, ଆପଣ ତୁରନ୍ତ ଏ ଜାଗା ଛାଡ଼ନ୍ତୁ, ନହେଲେ ଜୀବନ ବିପଦସଙ୍କୁଳ ହୋଇଉଠିବ। ଏଣୁ ଆମର ଏହା ଚରମ ପତ୍ର ଓ ପରମ ପରାମର୍ଶ।

ମୁକ୍ତେଶ୍ୱର ପଟ୍ଟନାୟକ ଏ ଚରମପତ୍ର ପାଇବା ପରେ କଲେଜ ଛାଡ଼ିଲେ। ସେହିଦିନଠାରୁ ସେ ସଂକଳ୍ପ ନେଲେ ଯେ ସେ ଆଉ କୌଣସି ଶିକ୍ଷା ସଂସ୍ଥା ସହିତ ସଂପୃକ୍ତ ରହିବେ ନାହିଁ।

ମୁକ୍ତେଶ୍ୱରଙ୍କର ଜୀବନୀଶକ୍ତି ଏବେ ବି ଉଚ୍ଛଳ ଓ ବିପୁଳ। ରାଷ୍ଟ୍ର ଚାହେ ନାହିଁ ଏଭଳି କର୍ମଯୋଗୀମାନଙ୍କର ପ୍ରବଣତାକୁ ବିନିଯୋଗ କରିବା ପାଇଁ। ତେଣୁ ମୁକ୍ତେଶ୍ୱର ରହିଗଲେ ନିଃସଙ୍ଗ ଓ ନିଷ୍କ୍ରିୟ।

ନା, ଠିକ୍ ନିଷ୍କ୍ରିୟ ନୁହେଁ। ଜନ୍ମ ଥିଲେ ଦର୍ଶନ ଅଛି, ଦର୍ଶନ ଥିଲେ ଅଭିରୁଚି ଅଛି। ସେ ସେହିଦିନଠାରୁ ଲେଖୁଛନ୍ତି, ତାହା ସାହିତ୍ୟ କି ଅସାହିତ୍ୟ ଯାହାହେଉ, ସେ ଲେଖୁଛନ୍ତି। ବହୁ ଦୃଶ୍ୟ ତାଙ୍କ ଆଖିରେ ପଡୁଛି, ସବୁ ଦୃଶ୍ୟ ଲେଖନୀରେ ପ୍ରକଟିତ ହୋଇପାରିବ ନାହିଁ; ତଥାପି ଯେତିକି ହେବ, ସେତିକିରେ ସେ ପାଇବ ଆତ୍ମାର ବିମୁକ୍ତି।

ନିଜର ଏକାନ୍ତ କକ୍ଷ। ଆଭରଣହୀନ ଏହି କକ୍ଷ ଭିତରେ କେବଳ ଶ୍ରୀମା ଓ ଶ୍ରୀଅରବିନ୍ଦ; ଚିତ୍ରରେ ଥିଲେ ବି ସେମାନେ ମୁକ୍ତେଶ୍ୱରଙ୍କ ପାଇଁ ଜୀବନ୍ତ ଆଶୀର୍ବାଦକ।

କନ୍ୟା ଆସେ; ରକ୍ତଗୋଲାପ ଖୋସିଦିଏ ଚିତ୍ରପଟ ଉପରେ। ସ୍ତ୍ରୀ ଆସନ୍ତି– ଧୂପ ନୈବେଦ୍ୟ ଦେଇ ବାହୁଡ଼ି ଯାଆନ୍ତି। ଚାକର ଆସେ; ଘର ଲିପାପୋଛା କରି ପରିଷ୍କାର କରେ। ପଶୁ ଚାରୋଟି ନିଜ ନିଜ ସମୟରେ ଆସି ବୁଲିଯାଆନ୍ତି ଧୂପର ସୁରଭି ଓ ପୁଷ୍ପର ସୁବାସକୁ ଆଘ୍ରାଣ କରି। କୁକୁର ହେଲେ ବି ମଣିଷର ପ୍ରଜ୍ଞା ନେଇ ସେମାନେ ଆସିଛନ୍ତି ସଂସାରକୁ। ଦେଖି ଜାଣିଲେ, ଚିହ୍ନି ଜାଣିଲେ, ଏମାନଙ୍କ ଭିତର ବ୍ୟକ୍ତିତ୍ୱ ବି ମନକୁ ସ୍ପର୍ଶ କରେ।

ଦୀର୍ଘ ସମୟଧରି ମୁକ୍ତେଶ୍ୱର ଦୁଇ ପ୍ରତିମାକୁ ଅବଲୋକନ କରନ୍ତି। ଅରବିନ୍ଦଙ୍କର କି ପ୍ରଶାନ୍ତ ଦୃଷ୍ଟି!! ଜନନୀଙ୍କର କି ସସ୍ମିତ ମୁଖମଣ୍ଡଳ! ଏମାନେ ଦେହଧାରୀ ଜୀବୀ; ଅଥଚ ଆଜି ସାଧନାର ଶୀର୍ଷରେ ଅବସ୍ଥିତ ଦୁଇ ମହାନ୍ ଆତ୍ମା।

ମୁକ୍ତେଶ୍ୱରଙ୍କର ଧ୍ୟାନ ଭାଙ୍ଗିଲା। ଉଭୟ କନ୍ୟା ଓ ସ୍ତ୍ରୀ କଅଣ କହିବେ ବୋଲି ଛିଡ଼ା ହୋଇଛନ୍ତି। ମୁକ୍ତେଶ୍ୱର ଘଣ୍ଟାଏ ଦୁଇଘଣ୍ଟା ଧ୍ୟାନସ୍ଥ ହୋଇଗଲେ ଲତାଙ୍କର ମୁହଁ ଶୁଖିଯାଏ। ତେଲ-ଲୁଣ ସଂସାର ପାଇଁ ଚିନ୍ତା କରୁନାହାନ୍ତି ତ? ଅକ୍ଷମ ହୋଇ ବସି ରହିଯିବା କେତେ ବଡ଼ ଦୁର୍ଯୋଗ ପୁରୁଷ ପକ୍ଷରେ–ଏ କଥା ବେଶି ଭାବୁନାହାନ୍ତି ତ? ତେବେ ସ୍ୱାସ୍ଥ୍ୟ ରହିବ ନାହିଁ ଯେ! ମନ ଯେ ମରିଯିବ!

ପୃଥିବୀରେ କେତେ ଚଳଚଞ୍ଚଳ ଶକ୍ତି କ୍ରିୟାଶୀଳ। ଚୁମ୍ବକର ଶକ୍ତି ଭଳି ମଣିଷ ଲାଗିଯିବ ଏଇ ମହାଶକ୍ତିର ଆବେଗ ଭିତରେ; କିନ୍ତୁ ହାୟ!

ଯାଦୁଶାଳା ପଡ଼ିଛି।

ସେଠି ରହିଛି ଅପ୍ରକଟିତ କେତେ ମୂର୍ତ୍ତିର ଆହ୍ୱାନ, କେତେ ପୋଥିର ବନ୍ଧା ଡୋର ତଳେ ଅନେକ ଗୁପ୍ତ ରତ୍ନ।

ପୁଣି ସଂସ୍କୃତି...ସଙ୍ଗୀତ...କେତେ ଭାବଧାରା...ଅଥଚ ମୁକ୍ତେଶ୍ୱରଙ୍କୁ କେହି ଖୋଜିଲେ ନାହିଁ। ପିଲାଏ ଯିମିତି ଅବାଞ୍ଛିତ ମନେକଲେ, ଦେଶ ସିମିତି ମନେକଲା ତାଙ୍କୁ ଅପାଂକ୍ତେୟ।

–ଆସିପାରେ କି?

ମୁକ୍ତେଶ୍ୱରଙ୍କର ଧ୍ୟାନ ଭାଙ୍ଗିଲା।

–ଆସନ୍ତୁ।

–ମୁଁ ବେଶି ସମୟ ନଷ୍ଟ କରିବି ନାହିଁ। କେତେ ଦିନରୁ ଲକ୍ଷ୍ୟ କରିଛି ଆପଣ ନୀରବ। ଏହିଠାରେ ବସିରହୁଛନ୍ତି ଘଣ୍ଟା ଘଣ୍ଟା ଧରି। କର୍ମବହୁଳ ଜୀବନରୁ ହଠାତ୍ ଚାଲିଆସି ଆପଣ ସଂସାରକୁ ଅନାତିଥେୟ ବୋଲି ନିଶ୍ଚୟ ଭାବୁଥିବେ। ତେବେ ସାହସ ଥିଲେ ଧନ୍ଦା ମିଳିଯିବ ସହଜରେ; ସେଥିରୁ କିଛି ଅର୍ଥ ବି ଉପାର୍ଜନ ହେବ।

–ଏଇ ଫାଇଲ୍‌ଟି ଦେଇଗଲି–ଏଥିରେ ଗୋଟିଏ ବହି ଅଛି, ପାଞ୍ଚଟି ପ୍ରଚାରପତ୍ର ଅଛି। ଖଣ୍ଡିଏ ଫର୍ମ ଅଛି। ଆଜି ନୁହେଁ, ସେ ଫର୍ମରେ ଆପଣ ପରେ ଦସ୍ତଖତ୍ କରିବେ। ମୁଁ ପରେ ଆସିବି। ଏଥିପାଇଁ ପନ୍ଦର ଟଙ୍କା ଆଡ୍‌ଭାନ୍‌ସ ଦେବାକୁ ହେବ–ମୁଁ ଦେଇଚି, ପରେ ଆପଣ ବୁଝି ଦେବେ। କ୍ରମେ ଦେଖିବେ ଆପଣ ଚଞ୍ଚଳ ହୋଇ ଉଠିଛନ୍ତି। ସମଗ୍ର ସଂସାର ଘୂରିବ ଓ ଆପଣ ସେଥିର କେନ୍ଦ୍ରଭୂମି ହୋଇ ସବୁ ଆୟତ୍ତରେ ରଖି ନିଜେ ଘୂରିବେ। ଅର୍ଥ ଆପେ ଆପେ ଆସିଯିବ। ହଁ ନାହିଁ କିଛି କରନ୍ତୁ ନାହିଁ। ନମସ୍କାର!

ଭଦ୍ରଲୋକ ଚାଲିଗଲେ। ଫାଇଲ୍‌ଟି ଧରି ମୁକ୍ତେଶ୍ୱର ଅବାକ୍ ରହିଗଲେ।

–ତମ ବୟସ?

–ତିରିଶ୍।

–ସ୍ତ୍ରୀଙ୍କ ବୟସ?

–ମୁଁ ଜାଣେନି। ତା' ଛଡ଼ା ଏଇଟା ଏତେ ବ୍ୟକ୍ତିଗତ ଯେ ମୁଁ ନବବିବାହିତ ହେଲେ ବି ତାଙ୍କୁ ପଚାରିବାକୁ ସାହସ କରିନି। କି ମିଳିବ? ବାହାଘର ମୋଟେ ଦୁଇମାସ...କିନ୍ତୁ ଯା ଭିତରେ ଆମ ଭିତରେ ଛୋଟ ଛୋଟ ପାଟେରିଟାଏ ଛିଡ଼ା ହେଲାଣି। ଏ

ବିଂଶ ଶତାବ୍ଦୀରେ ମେଳ ଅପେକ୍ଷା ଅମେଳ ତ ବେଶି! ଯାହା ଦେଖୁଛି, ବାହା ହେଇ ଭୁଲ କରିଛି।

ମୁକ୍ତେଶ୍ୱର 'ଆହା' କହିଲେ। ଯାହାସବୁ ଫର୍ମରେ ଟିପିବା ପାଇଁ ସେ କଲମ ବାହାର କରିଥିଲେ, ତାହାସବୁ ଅଟିପା ରହିଗଲା।

—ଶୁଣନ୍ତୁ, ମୁଁ ଅଧ୍ୟାପକ। ହୁଏତ କିଛି ସଂଚୟ କରିପାରିବି; କିନ୍ତୁ ଏକ୍ଷଣି ନୁହେଁ। ମାଆଙ୍କର ଆଖିରେ ମୋତିଆବିନ୍ଦୁ; ଅପରେସନ୍ କରିବାକୁ ହେବ। ବାପା ବାତରୋଗୀ, ବିଛଣା ଛାଡୁନାହାନ୍ତି। ସ୍ତ୍ରୀ ନୂଆ ହୋଇ ଆସୁ ଆସୁ ମୁଣ୍ଡବିନ୍ଧା ରୋଗରେ ଜଡ଼ସଡ଼। ଏ ରୋଗଟା କେଉଁଠି ତାଙ୍କର ଫ୍ରକ୍‌ପିନ୍ଧା ଛାଡ଼ିବା ପରେ ଜନ୍ମ ନେଇଛି। କହନ୍ତୁ ଦେଖି, ଏ ପରିସ୍ଥିତିରେ କାହାର କ'ଣ ମୁଣ୍ଡ ଠିକ୍ ରୁହେ ଗୋଟାଏ କିଛି ଭବିଷ୍ୟତର ରଙ୍ଗୀନ୍ ସ୍ୱପ୍ନ ଦେଖିବା ପାଇଁ?

ମୁକ୍ତେଶ୍ୱର ପୁଣି 'ଆହା' କଲେ।

ଏଥର ଗୋଟାଏ ଦୀର୍ଘଶ୍ୱାସ। ମୁକ୍ତେଶ୍ୱର କଲମଟାକୁ ପକେଟରେ ଯଥାସ୍ଥାନରେ ଖୋସିଦେଲେ।

ମୁକ୍ତେଶ୍ୱର ଟିକିଏ ହସି କହିଲେ— ଆଚ୍ଛା, ତମର ଘର ସାମନାରେ ଯେଉଁ ନାମଫଳକ ଟାଙ୍ଗିଛ, ସେଥିରେ କେବଳ 'ସୃଷ୍ଟି' ଲେଖିଛ କାହିଁକି?

ଇତିହାସର ତରୁଣ ଅଧ୍ୟାପକ ଯଶୋବନ୍ତ ଆବେଗଦୀପ୍ତ ହୋଇ କହିଲେ— ସାର୍, ଠିକ୍ କରିଛି, ମୁଁ କେବଳ ଜୀବନଯାକ ସୃଷ୍ଟିର ସ୍ୱପ୍ନ ଦେଖିବି। ମୁଁ ଜାଣେ, ବାପା ମରିବେ, ମାଆ ଅନ୍ଧୁଣୀ ହୋଇ ବି ମରିବେ; ସ୍ତ୍ରୀ ମୁଣ୍ଡଧରା ରୋଗରେ କ୍ରମେ ବେଶି ଚିତ୍‌କାର କରି ମୋ ମୁଣ୍ଡକୁ ଶେଷ ପର୍ଯ୍ୟନ୍ତ ଖାଇବେ...ଅଥଚ ଏ ଗେଟ୍ ଉପର କୃଷ୍ଣଚୂଡ଼ା ଲତା ଫୁଲଭରାହୋଇ ସୃଷ୍ଟିର ରାଗିଣୀ ଗାଇଚାଲିଥିବ ଅନନ୍ତକାଳକୁ। ମୁଁ ସେହି ସୃଷ୍ଟିର ସ୍ୱପ୍ନ ଦେଖିବି ବୋଲି ଘର ନାଁ ଦେଇଛି 'ସୃଷ୍ଟି'...ଅବଶ୍ୟ ଭଡ଼ାଘର।

—ଦେଖ ଯଶୋବନ୍ତ, ତୁମେ ଏ ମରିବା ଅଲକ୍ଷଣା କଥା କୁହ ନାହିଁ...ଆହା, ତୁମର କି ଦୁଃଖ? ଏ ଅବସ୍ଥାରେ ମୁଁ ଫର୍ମ ପୂରଣ କରିବି କେମିତି? ତୁମର ଆୟ ଟଙ୍କା ତ ଅଣ୍ଟୁ ନଥିବ...ଅନ୍ତତଃ ଔଷଧପତ୍ର ବ୍ୟବସ୍ଥା କରିବାରେ?

କୃଷ୍ଣଚୂଡ଼ା ଗଛ ଉପରେ ସେତିକିବେଳେ କଳା କୋଇଲିଟିଏ 'କୁହୁ' ଡାକିଲା...

ମୁକ୍ତେଶ୍ୱର ଫାଇଲ୍ ବାନ୍ଧିଲେ। କାନରେ ତାଙ୍କର ପଡୁଥାଏ କୂଜନ-ବାଣୀ...ବସନ୍ତ ଆସିଛି...ରଙ୍ଗମୟ ଏ ସଂସାର...ଯଶୋବନ୍ତ ଦେଖୁଛି ସୃଷ୍ଟିର ସ୍ୱପ୍ନ। ହାଃ-ହାଃ!

ରିକ୍‌ସାବାଲା ଏ ହସରେ ଚମକି ପଡ଼ିଲା— ବାବୁ, ଆଉ କୁଆଡ଼େ? ଏଇ ଆଗ ଘର...ଲିଷ୍ଟିରେ ତ ଅଛି ତାଙ୍କ ନାଁ...ଚାଲେ..

—ତୁମର ବୟସ?

—କଅଣ ଦରକାର?

—କିଛି ରୋଗ ଅଛି କି ଶରୀରରେ?

—ଆଶ୍ଚର୍ଯ୍ୟ, ଆପଣ କଅଣ ପାଗଳ?

—ତୁମ ନାଁ ତ ରାଜୀବବାବୁ?

—ହଁ।

—ତେବେ ଠିକ୍ ଅଛି। ବସିବ ଟିକିଏ?

—ସମୟ ନାହିଁ; ତା'ଛଡ଼ା କେଉଁ ମୁହୂର୍ତ୍ତରେ ପୋଲିସ ଆସି ପହଞ୍ଚିଯିବ...ମୁଁ ବଡ଼ ବ୍ୟସ୍ତ ସାର୍...

—ପୋଲିସ କାହିଁକି ?

—ପାହାନ୍ତା ପହରରେ ମୋ ଘରୁ ଚୋରି ହୋଇଯାଇଛି— ସ୍ତ୍ରୀଙ୍କର ସୁନାହାର, ମୋ ବୈଠକଖାନାର ଫ୍ୟାନ୍ ଓ ମୋ ପୁଅର ଟେରେଲିନ୍ ସାର୍ଟ ଓ ପ୍ୟାଣ୍ଟ...

ମୁକ୍ତେଶ୍ୱର 'ଆହା' କଲେ। ଭାବିଲେ— ସେ ଘରେ ବ୍ୟାଧି, ଏ ଘରେ ଚୋରି, ଆଉ ସେ ଆସିଛନ୍ତି ଭବିଷ୍ୟତର ନିରାପତ୍ତା ପାଇଁ ସେମାନଙ୍କୁ ପରାମର୍ଶ ଦେବାକୁ! ସମସ୍ତେ ତ ଦୁଃଖୀ, ଅତି କାତର, କଅଣ କାହାକୁ କହିବେ ? ନା, ଥାଉ, ଫର୍ମଟା ସିମିତି ଥାଉ।

ମୁକ୍ତେଶ୍ୱର ଆଉ ଗୋଟାଏ ପ୍ରଚାରପତ୍ର ଖୋଲି ଅନୁଶୀଳନ କଲେ। ସେଥିରେ ଲେଖାଥିଲା—

(କ) ସବୁବେଳେ ହସୁଥିବ, (ଖ) ଖୁବ୍ ଭଦ୍ର ବ୍ୟବହାର ଦେଖାଇବ, (ଗ) ଆଗ ପିଲାପିଲିଙ୍କ କଥା ପଚାରି ସେମାନଙ୍କର ସୁଖରେ ଆନନ୍ଦ ଓ ଦୁଃଖରେ ନିରାନନ୍ଦ ଭାବ ଦେଖାଇବ, (ଘ) କିଏ କଅଣ ଖାଇବାକୁ ଦେଲେ ମନାକରିବ, ନିହାତି ବାଧ କଲେ ଖାଦ୍ୟରୁ ଟିକିଏ ଅଂଶ ବିଚ୍ଛିନ୍ନ କରି ଜିଭରେ ଥୋଇବ, (ଙ) ହଠାତ୍ ଛୋଟ ପିଲା ଘରଭିତରକୁ ଦଉଡ଼ି ଆସିଲେ ତାକୁ ବି ହଠାତ୍ କୋଳ କରି ଚୁମା ଖାଇବ, (ଚ) ନାରୀମାନେ କଥା କହୁଥିଲେ ତାଙ୍କୁ ଆଗରୁ କେଉଁଠି ଦେଖିଥିବା ଭଳି ଭାବ ଦେଖାଇବ।

ମୁକ୍ତେଶ୍ୱର ଭାବିଲେ—ଯେଉଁ ଘରେ ପ୍ରତ୍ୟୁଷରେ ଚୋରି ହୋଇଛି, ସେଠାରେ ଏସବୁ ଅନୁପାନ ନିରର୍ଥକ।

ଦୀର୍ଘଶ୍ୱାସ ପକାଇ ମୁକ୍ତେଶ୍ୱର ରିକ୍ସା ଚଢ଼ିଲେ। ହିସାବ କରି ସେ ଦେଖିଲେ ଅହେତୁକ ଏ ରିକ୍ସାଚଢ଼ା ଖର୍ଚ୍ଚ ଖୁବ୍ ବଢ଼ିଯାଇଛି, କ୍ରମେ ଅସମ୍ଭାଳ ହେବ।

ଆଉ ଦିନକର କଥା—ଯିଏ ଫାଇଲ୍ ଦେଇଯାଇଥିଲେ, ସେହି ନରହରିବାବୁ ଶୁଣି କହିଲେ—

"ଗୋଟାଏ ପନ୍ଥା ଅଛି—ଲୋକମାନଙ୍କ ସହିତ କଣ୍ଟାକ୍ଟ କରିବାକୁ ହେଲେ କ୍ଷିପ୍ର ମୁଭ୍‌ମେଣ୍ଟ ଦରକାର। ଆଚ୍ଛା, ରିକ୍ସା ଛାଡ଼ିଦିଅନ୍ତୁ। ମୁଁ ତ ହରଦମ୍ ବୁଲୁଛି, ଆପଣ ବ୍ୟାକ୍ ସିଟ୍‌ରେ ବସିପାରିବେ ? ଥରେ ଅଧେ ଚେଷ୍ଟା କଲେ ତେଣିକି ଅଭ୍ୟାସ ହୋଇଯିବ। ମୁଁ ଡ୍ରାଇଭ୍ କରି ନେଇଯିବି, ଆମେ ଦୁହେଁ ଆନୁଷଙ୍ଗିକ ସବୁ କାମ ମିଶି କରିଦେବା।"

ମୁକ୍ତେଶ୍ୱର ଆତଙ୍କିତ ହେଲେ। ବ୍ୟାକ୍ ସିଟ୍‌ରେ ସେ ଜୀବନରେ କେବେ ବସିନାହାନ୍ତି...ଆଗ ଛଡ଼ା ପଛ ନାହିଁ; ଅଥଚ ଆଜି ଭାଗ୍ୟ-ବିପର୍ଯ୍ୟୟରୁ ନରହରିବାବୁଙ୍କର ବ୍ୟାକ୍ ସିଟ୍‌ରେ ସହରଯାକ ପଇଁତରା ମାରିବାକୁ ହେବ। ଅଦୃଷ୍ଟ !

ମ୍ୟୁନିସିପାଲିଟି ଗାର୍ଲସ୍କୁଲ—ବ୍ୟାକ୍ ସିଟ୍‌ରୁ ଓହ୍ଲାଇ ମୁକ୍ତେଶ୍ୱର ବଡ଼ ଲଜ୍ଜିତଭାବ ଦେଖାଇ ଗେଟ୍ ପାରହେଲେ। ଦିନଥିଲା, ସେ ବୀରଦର୍ପରେ କାର୍‌ରୁ ଅବତରଣ କରି ଏହିଭଳି ବହୁ ନାରୀ-ଶିକ୍ଷାଶ୍ରମର ପୁରସ୍କାର ବିତରଣୀ ଉତ୍ସବରେ ଅତିଥି ହୋଇ, ଖୋଳ ସଂକୀର୍ତ୍ତନ ମଧ୍ୟଦେଇ ନାଲିଆ କାରପେଟ୍ ଉପରେ ଚଢ଼ି ଚାଲିଆସୁଥିଲେ। ସେ ଦିନ ଥିଲା କଅଣ ?

ଆଜି ଜଣକର ବ୍ୟାକ୍ ସିଟ୍‌ରେ ବସି ସେ ଆସିଛନ୍ତି ଭିକ୍ଷା କରିବେ ଦୁଇ ପଇସା, ତେଲ-ଲୁଣ ସଂସାରର ଅଚଳ ଅବସ୍ଥାକୁ ସୁଧାରିବା ପାଇଁ ? ନା,

ଏମିତି କିଛି ଅଚଳ ହୋଇଯାଇନାହିଁ ତ? ସ୍ତ୍ରୀ ଆଉ କନ୍ୟା ଏ ଅବାଞ୍ଛିତ ଅଭିସାର କଥା ଜାଣିଲେ କଅଣ କହିବେ? ଜାଣିବେ ତ ନିଶ୍ଚୟ ଦିନେ!

ନରହରି କହିଲେ, "ସହରରେ ଆସିବାବେଳେ କେତେ ଲୋକ ଆପଣଙ୍କୁ ଅନାଉଥିଲେ; କାରଣ ଆପଣଙ୍କ ଭଳି ଲୋକ ବ୍ୟାକ୍ ସିଟ୍‌ରେ ମୋ ପଛପଟେ ଆସିବା ନିଶ୍ଚୟ ଏକ ବିରଳ ଦୃଶ୍ୟ! ଚାଲନ୍ତୁ।"

—ତମର ସ୍ୱାମୀଙ୍କ ନାମ?

—ମୁଁ ବିଧବା...

—ଓଃ, ମୁଁ ଦୁଃଖିତ! ବ୍ୟବସାୟ ତ ଶିକ୍ଷୟିତ୍ରୀ!

—ହଁ, ତେବେ ଟେମ୍ପୋରାରି...

—ହଁ ଯେ, ତମେ ଏତେ ଉତ୍ତ୍ୟକ୍ତ ହୋଇ କଥା କହୁଚ ଯେ...

—ହେବିନି? ଗଣ୍ଡାଏ ଛୁଆ ଛାଡ଼ିଦେଇ ଯାଇଛି, ମଣିଷ କରିବି ତ ପୁଣି! ଏଥିରେ ସଞ୍ଚୟ କରିବି କଅଣ?

—ଓଃ କି ଦୁଃଖ, କିଏ କହୁଛି ସଞ୍ଚୟ କରିବାକୁ?

ନରହରିଙ୍କ ମୁହଁ ଅନ୍ଧାର। ସେ ବୋଧହୁଏ ସେଇଠି ନିଷ୍ପତ୍ତି କରିଦେଲେ ମୁକ୍ତେଶ୍ୱର ଏକ ଅଥର୍ବ ଜୀବ। କେବଳ ବ୍ୟାକ୍ ସିଟ୍‌ରେ ବୁଲାଇବା ଛଡ଼ା ଏହାଙ୍କଦ୍ୱାରା ଆଉ କିଛି ହେବନି।

—ତମ ଶରୀରରେ କିଛି ବ୍ୟାଧି ଅଛି?

—ପଇଁଚାଳିଶ ବର୍ଷ ପୂରିଗଲା, ହେବନି?

—କି ବ୍ୟାଧି?

—ଆପଣ କଅଣ ପାଇଁ ଆସିଛନ୍ତି କହିଲେ?

—ନରହରି, ଆମେ କାହିଁକି ଆସିଛେ?

—କାହା ଘରେ ଚୋରି, କାହାର ବ୍ୟାଧି, କାହା ଘରେ ମୃତ୍ୟୁ ନୃତ୍ୟ କରୁଛି। ଏସବୁ ପରିସ୍ଥିତିରେ ଆମର କର୍ତ୍ତବ୍ୟ କଅଣ ନରହରି?...ପଚାରିଲେ ମୁକ୍ତେଶ୍ୱର।

ନରହରିବାବୁ ବଡ଼ ଦୁଃଖରେ କହିଲେ—ଏଗୁଡ଼ାକ ବଡ଼ ସିଓର ଅର୍ଥାତ୍ ନିଶ୍ଚିତ କେଶ୍ ଥିଲା; ଅଥଚ ଦେଖୁଛି ସମସ୍ତେ ଅମାନିଆ ହୋଇଯାଇଛନ୍ତି। ବରଂ ପ୍ରଧାନ ଶିକ୍ଷୟିତ୍ରୀଙ୍କୁ ଇନ୍‌ଫ୍ଲୁଏନ୍‌ସ କରି କିଛି କହିହେବ, ଚାଲନ୍ତୁ।

ପ୍ରଧାନ ଶିକ୍ଷୟିତ୍ରୀ ରୁବି ସାନ୍ୟାଲ କେରାବଙ୍ଗାଳୀ—ପୂର୍ବ-ପୁରୁଷାନୁକ୍ରମେ ଏ ସହରର ବାସିନ୍ଦା, ବୟସ ପଞ୍ଚତିରିଶ ପ୍ରାୟ, ଗଠନ ସୁଷମିତ, ଚାହାଣି ଭାବଭୋର, ଆଳାପ ଗୁଞ୍ଜନ ସ୍ୱରର। ମୁକ୍ତେଶ୍ୱର ପ୍ରଥମେ କଥା ଆରମ୍ଭ କଲେ—

—ଆପଣଙ୍କୁ ଦେଖିବାକୁ ବହୁଦିନରୁ ଆକାଂକ୍ଷା ଥିଲା, ଆଜି ତାହା ଚରିତାର୍ଥ ହେଲା।

(ମୁକ୍ତେଶ୍ୱର ଜାଣିଶୁଣି ପ୍ରଶ୍ନର ଢଙ୍ଗ ବ୍ୟାଧିଆଡୁ ଆରମ୍ଭ ନ କରି ବଦଳାଇଦେଲେ ଟିକିଏ ରୋମାଞ୍ଚ ଓ ଶିହରଣ ଆଶାରେ।)

—ଆଃ ବେଶ୍ ଭଲ—ବୋଲୁନ୍-କଅଣ କହିବେ।

—ସ୍ୱାମୀଙ୍କ ନାମ?

—ହି ଇଜ୍ ଡେଡ୍ ଟୁ ମି (He is dead to me) ସେ ମୋ ପାଇଁ ମରିଛି।

—ମୁଁ ଖୁବ୍ ଦୁଃଖିତ, ଶ୍ରୀମତି ସାନ୍ୟାଲ! ଆପଣଙ୍କର ଦୁଃଖ ମୁଁ ବୁଝୁଛି। ବୁଝିଲେ, ନରହରିବାବୁ! ଯାହାର ସ୍ୱାମୀ ନାହିଁ, ପୁତ୍ର-କନ୍ୟା ନାହାନ୍ତି, ତାଙ୍କ ଆଗେ ଭବିଷ୍ୟତ ବି ନାହିଁ। କିନ୍ତୁ ଆମେ ଆସିଛୁ ଏମାନଙ୍କ ଆଗରେ ଭବିଷ୍ୟତର ନିରାପତ୍ତାର ସ୍ୱପ୍ନ ମେଖଳା ଖୋଲିଦେବାକୁ। ତା' କଅଣ ସମ୍ଭବ?—ଏତିକି କହି ମୁକ୍ତେଶ୍ୱର ନୀରବ ହେଲେ।

ନରହରିବାବୁ ଇତିମଧ୍ୟରେ ଶୁଖିଲା ଜିଭକୁ ବାହାର କରି ଥରେ ଥରେ ଅଧର ଉପରେ ବୁଲାଇ ନେଉଛନ୍ତି। ଏଠାରେ ବି ଅସଫଳତାର ସ୍ପଷ୍ଟ ସଂକେତ।

ନରହରିବାବୁ କହିଲେ—ମିସେସ୍ ସାନ୍ୟାଲ, ତଥାପି ଆପନି ମତେ କହିଥିଲେ ଫର୍ମ ପୂରଣ କରିଦେବେ ଆଉ ଥରେ ଆସିଲେ। ମୁଁ ଆସିଛି ଓ ଓଡ଼ିଶାର ଜଣେ ବିଖ୍ୟାତ ବ୍ୟକ୍ତି ଆସିଛନ୍ତି ମୋ ସାଙ୍ଗରେ। ଏଣୁ ଆପଣଙ୍କ ପ୍ରତିଶ୍ରୁତି ଆପଣ ପାଳନ କରନ୍ତୁ। ଆମେ କଅଣ ଏମିତି ଫେରିଯିବୁ?

ମୁକ୍ତେଶ୍ୱର ଟିକିଏ ସାହସ ପାଇ କହିଲେ—

—ସ୍ୱାମୀ ଯଦି ମରିଯାଇଛନ୍ତି, ତେବେ ଆପଣଙ୍କ ଭରଣ-ପୋଷଣ ପାଇଁ ଏଇ ବ୍ୟବସ୍ଥା।

ସାନ୍ୟାଲ୍ ଝଙ୍କାର ଦେଇ କହିଲେ—

—କିଏ, କୋନ୍ ମରିଛି? ଆଉ ଗୋଟାଏ ମହିଳା ନେଇ ସେ କଲିକତାରେ ଫୂର୍ତ୍ତି କରୁଛି। ଗୋଟାଏ ରିପ୍ୟୁଜି...ଡାଇଭୋର୍ସ ମକଦ୍ଦମା କୋର୍ଟରେ ପେଣ୍ଡିଂ ଅଛି, ସେଇଟା ଫାଇନାଲ୍ ହୋଇଗଲେ ମୁଁ ବି ଆଉ ଗୋଟାଏ ବାହା ହେବି। ତେଣୁ ମୋର ଟଙ୍କା ପ୍ରଚୁର ଦରକାର, ମକଦ୍ଦମା ଲଢ଼ିବା ପାଇଁ ଓ ବାହା ହବା ପାଇଁ। ଆଉ ସଞ୍ଚୟ କରିବି କଅଣ? ନମସ୍କାର!

ସ୍କୁଲର ଛାତ୍ରୀମାନେ ମେଳ ବାନ୍ଧିଥିଲେ ଦେଖିବା ପାଇଁ ଗେଟ୍ ପାଖରେ, ମୁକ୍ତେଶ୍ୱର କିପରି ବ୍ୟାକ୍ ସିଟ୍‌ରେ ଚଢୁଛନ୍ତି। ପ୍ରଥମ ଥରରେ ତାଙ୍କର ଗୋଡ଼ ଖସିଗଲା, ପଡୁପଡୁ ରହିଗଲେ। ଦ୍ୱିତୀୟ ଥରରେ ସେ ଅବଶ୍ୟ ନରହରିବାବୁଙ୍କର କାନ୍ଧକୁ ଧରି ମୁହଁ ନୁଆଁଇ ବ୍ୟାକ୍ ସିଟ୍‌ରେ ବସିଲେ।

ବାଟଯାକ କେବଳ ଗ୍ଲାନି ଓ ଅନୁଶୋଚନା, ତାଙ୍କ ଅନ୍ତର ଚିତ୍କାର କରୁଥାଏ— ଏ ପନ୍ଥା ନୁହେଁ। ଈଶ୍ୱରଙ୍କ ଅଭିପ୍ରେତ ମାର୍ଗ ନୁହେଁ ତାଙ୍କ ପାଇଁ।

ଶେଷରେ ଘର ପାଖରେ ବ୍ୟାକ୍ ସିଟ୍‌ରୁ ଅବତରଣ କରି ମୁକ୍ତେଶ୍ୱର ଅଙ୍କଶାୟୀ ସମଗ୍ର ଫାଇଲ୍‌ଟିକୁ ନରହରିବାବୁଙ୍କ ହାତକୁ ବଢ଼ାଇଦେଇ କହିଲେ—

—କ୍ଷମା କରିବେ ନରହରିବାବୁ, ଆପଣ ମତେ ସାହାଯ୍ୟ କରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ମୁଁ ପାରିଲି ନାହିଁ। କାହାର ଚୋରି, କାହାର ବ୍ୟାଧି, କେଉଁ ନାରୀ ସ୍ୱାମୀ ପରିତ୍ୟକ୍ତା; କେତେ ଦୁଃଖୀ ଏ ସଂସାରରେ ଅଛନ୍ତି, ତାଙ୍କ କଥା ଶୁଣୁ ଶୁଣୁ ମୋ ଆଖିରୁ ଲୁହ ଝରୁଛି; ଆଉ ମୁଁ ତାଙ୍କଠାରୁ ଟଙ୍କା ଆଣି ସେଥିରୁ କମିଶନ ଉପାର୍ଜନ କରି ମୋ ସଂସାର ଚଳେଇ ପାରିବି କି?

—ମନେ ରହିବ ଆପଣଙ୍କର ଏ ସ୍ନେହ-ସୌଜନ୍ୟର ହସ୍ତ ପ୍ରସାରଣ; କିନ୍ତୁ ଆଉ ମୁଁ ଆପଣଙ୍କ ମଟରସାଇକେଲ୍‌ର ବ୍ୟାକ୍ ସିଟ୍‌ରେ ବସି ସହର ବୁଲିପାରିବିନି କି ମୁଁ ଇନ୍‌ସୁରେନ୍‌ସ ଏଜେଣ୍ଟ ହୋଇପାରିବିନି। ଯେତିକି ଦିନ ହେଲି, ହେଲି।

ଅନୁଭବ ହେଲା, ଆଉ ନୁହେଁ। ଜୀବନବୀମାର ଡେଭେଲପ୍‌ମେଣ୍ଟ ଅଫିସର ଭାବରେ ଆପଣଙ୍କୁ ମୋର ସଶ୍ରଦ୍ଧ ନମସ୍କାର ଜଣାଉଛି। ହେଇଟି, ସେ ଫାଇଲ୍‌ରେ ଏଜେଣ୍ଟର ମାନୁଏଲ, ମୋର ଏଜେଣ୍ଟ ନମ୍ବରର ଏଗ୍ରିମେଣ୍ଟ ଇତ୍ୟାଦି ସବୁ କାଗଜପତ୍ର ରଖିଛି, ଫେରାଇ ନିଅନ୍ତୁ। ଅଜସ୍ର ଧନ୍ୟବାଦ।

କେତେ ଦିନ ପରେ ଗମ୍ଭୀର ମୁଖରେ ସ୍ତ୍ରୀ ଶ୍ରୀଲତା ସମ୍ଭାଷଣ କଲେ–

–ଯାହା ଶୁଣୁଛି ସତ? ଜବାବ୍ ଦିଅ। ଲାଜ ଲାଗୁନି, ଏ ସମୟରେ ଗାର୍ଲସ୍କୁଲକୁ ବୁଲିଯାଇ ଶ୍ରୀମତୀ ସାନ୍ୟାଲ ସହିତ କଥାବାର୍ତ୍ତା କରୁଛ? ଜାଣ, ସେ ଡାଇଭୋର୍ସିର୍ଡ ଲେଡି? ବ୍ୟାପାରଟା କଅଣ?

ମୁକ୍ତେଶ୍ୱର ଆତ୍ମମୁକ୍ତ ପୁରୁଷ ଭାବରେ କହିଲେ– ଲତା, ଜୀବନ ଯେ କେତେ ବିସ୍ତୃତ, କେତେ ରହସ୍ୟବ୍ୟଞ୍ଜକ, ତାହା ତମେ ଜାଣିବ କୁଆଡୁ? ମୁଁ ଲୁଚାଇଥିଲି, ଜମା ମାସକଯାଏ ମୁଁ ହୋଇଥିଲି ଜୀବନବୀମାର ଏଜେଣ୍ଟ। ସେଇ ପରିପ୍ରେକ୍ଷିରେ ଶ୍ରୀମତୀ ସାନ୍ୟାଲ୍‌ଙ୍କ ସହିତ ଯୋଗାଯୋଗ। ମାତ୍ର ଯବନିକା ପଡ଼ିଯାଇଛି। ଆଉ ଉଠିବ ନାହିଁ।

ଶ୍ରୀଲତା ଚିତ୍‌କାର କଲେ–ତୁମେ ହୋଇଛ ଇନ୍‌ସୁରାନ୍‌ସ ଏଜେଣ୍ଟ? ଭୂତପୂର୍ବ ପ୍ରିନ୍‌ସପାଲ? ଭୂତପୂର୍ବ ପରିଦର୍ଶକ? ଆଉ...

–ଥାଉ ଶ୍ରୀଲତା, ଈଶ୍ୱରଙ୍କର ଯାହା ଇଚ୍ଛା ନଥିଲା ତାହା ପ୍ରତି ମୋହଗ୍ରସ୍ତ ହୋଇଥିଲି। ଜୀବନରେ ଏମିତି ଘଟିଥାଏ। ଆଉ ବ୍ୟାକ୍ ସିଟ୍‌ର ଯନ୍ତ୍ରଣା ବି ବୁଝିଲି।

ଦୁଇଜଣଯାକ ହସିଲୁ।



# ସୁନ୍ଦରର ଆବାହନ

ଭାରତବର୍ଷର ଗୋଟିଏ ବଡ଼ ସହର । ନାଁ ଜାଣିବାର ଦରକାର ନାହିଁ । ସେ ସହରରେ ବହୁ ବିତ୍ତଶାଳୀ ବଡ଼ଲୋକ ବାସ କରନ୍ତି । ସେମାନଙ୍କର ଅପର୍ଯ୍ୟାପ୍ତ ସମ୍ପତ୍ତି । ଭୋଗବିଳାସରେ ତାଙ୍କର ଜୀବନ ଭରପୂର ।

ଆଜ୍ଞାରାମ ଏହି ଶ୍ରେଣୀର ଜଣେ କୋଟିପତି ଭଦ୍ରଲୋକ । କୋଟିପତି କହିଲେ ଆମ ଆଖି ପାଉନାହିଁ, ସେ କିଭଳି ଲୋକ ହୋଇଥିବେ ! ତାଙ୍କର ସବୁ ରାଜ୍ୟରେ ଅଫିସ ଅଛି । ଅଫିସର୍ ମ୍ୟାନେଜର ମାସକୁ ପାଞ୍ଚହଜାର ଟଙ୍କା ଦରମା ନିଅନ୍ତି । ତାଙ୍କର କୌଣସି ପିଅନ ମାସକୁ ପାଞ୍ଚଶହରୁ କମ୍ ନିଅନ୍ତି ନାହିଁ ।

ଓଡ଼ିଶା, ବଙ୍ଗଳା, ମଧ୍ୟପ୍ରଦେଶ ଆଉ ଅନ୍ୟାନ୍ୟ ରାଜ୍ୟରେ ଯେଉଁଠି ବଣ ପାହାଡ଼ ପର୍ବତ ରହିଛି, ସେ ସବୁକୁ ସେ ତାଙ୍କର ସମ୍ପତ୍ତି କରିନେଇଛନ୍ତି । ଧାତୁଦ୍ରବ୍ୟର ଖଣିର ସେ ମାଲିକ । ଟ୍ରକ୍ ସଂଖ୍ୟା ଶହଶହ, ମଟରଗାଡ଼ି ସେହି ସଂଖ୍ୟାର ହେବ । କର୍ମଚାରୀ ହେବେ ହଜାର ହଜାର ।

ଆଧୁନିକ ବିଜ୍ଞାନ ଯେତେ ପ୍ରକାର ସୁଖସ୍ୱାଚ୍ଛନ୍ଦ୍ୟ ଦେଇପାରେ, ସେ ସବୁ ଆଜ୍ଞାରାମଙ୍କ ପାଖରେ ରହିଛି । ଯନ୍ତ୍ରକୁ ସେ ଦାସ କରିଛନ୍ତି । ସେ ଓ ତାଙ୍କ ପରିବାର ଭୂଇଁ ଉପରେ ଚାଲନ୍ତି ନାହିଁ । କେତେବେଳେ ଚାଲିବେ— ସୁବିଧା ସୁଯୋଗ କାହିଁ ?

ପାଇଖାନା ଘରେ ଚଟାଣ ଉପରେ ଦାମିକା କାର୍ପେଟ । ଶୋଇବା ଘରଠାରୁ ଆରମ୍ଭ କରି ଲିଫ୍ଟ ଦେଇ ଅବତରଣ କରିବା ପାଇଁ ଯେଉଁ ଯେଉଁ ରାସ୍ତା ଅଛି ଓ ଯେଉଁ ଯେଉଁ ଘର ଦେଇ ଯିବାକୁ ହେବ, ସବୁଆଡ଼େ ବିଛାଯାଇଛି କାର୍ପେଟ । ଦୈବାତ୍ ମାଟି ସହିତ ଗୋଡ଼ର ସଂଯୋଗ ହୋଇଯିବ, ଏ ସୁଯୋଗ ନାହିଁ ।

ପ୍ରାସାଦ ଛାଡ଼ିଲେ ଗୋଡ଼ ଉଠିଯାଏ କାର୍ ଭିତରକୁ । ସେଠି ବି କାର୍ପେଟ ଓ ଗଦି । ଯାହା ଘରକୁ ଆଜ୍ଞାରାମ ଓ ତାଙ୍କ ପରିବାର ଭ୍ରମଣ ତଥା ସାମାଜିକତା ରକ୍ଷା କରିବାକୁ ଯାଆନ୍ତି, ସେମାନେ ଆଗରୁ ଟେଲିଫୋନ୍‌ରେ ପଚାରି ବୁଝନ୍ତି ଗୋଡ଼ ତଳେ ମାଟି ଅଛି କି – ସେ ମାଟି ଉପରେ ଆବୃତ ରହିଛି ନା ନାହିଁ ଗଦି ବା କାର୍ପେଟ୍ ।

ଅଧିକାଂଶ ସମୟ ସେମାନେ ବ୍ୟବସାୟ ଧନ୍ଦା ନେଇ ଆକାଶଚାରୀ ହୋଇଥାଆନ୍ତି । ତେଣୁ ଆକାଶରେ ଉଡ଼ିବୁଲିଲାବେଳେ ମାଟି ବା କେଉଁଠୁ ଆସିବ ?

ଶରୀର ସେମାନଙ୍କର ମାଟି, ପାଣି ଓ ପ୍ରକୃତିର ସୁଷମାରୁ ଆବାଲ୍ୟରୁ ଦୂରରେ ରହିଲା । ଶୀତଳ ପାଣିରେ ଜୀବାଣୁ ଥିବବୋଲି ସେମାନେ ପିଲାବେଳୁ ଗରମ ଜଳ ପିଅନ୍ତି ଓ ସ୍ନାନ କରନ୍ତି । ତେଣୁ ହଠାତ୍ ଥଣ୍ଡାପାଣି ବାଜିଗଲେ ଶରୀରରେ କିଭଳି ଶୀତଳ ରୋମାଞ୍ଚ ଆସେ, ସେମାନେ ଜାଣି ନାହାନ୍ତି । ଗରମ ପାଣି ନ ମିଳିଲେ, ସେମାନେ ତୃଷାର୍ତ୍ତ ହୋଇ ପଛକେ ଦିନ ଦିନ ରହିଯିବେ, ଥଣ୍ଡାପାଣି ପିଇବେ ନାହିଁ । ବଡ଼ଲୋକ ଯେତେବେଳେ ଗରମ ପାଣି ବା ମିଳିବ ନାହିଁ କାହିଁକି ?

ଭାରତବର୍ଷ ସାରା ତାଙ୍କର ହୋଟେଲମାଳା ରହିଛି । ପ୍ରତି ଜାତିର, ପ୍ରତି ଦେଶର ଖାଦ୍ୟ ସେଠାରେ ଚାହିଦା ମୁତାବକ ପରଷାଯାଏ । ଆଜ୍ଞାରାମ ଥରେ ଥରେ ସାଙ୍ଗସାଥୀଙ୍କୁ ନେଇ ଉଡ଼ିଯାଆନ୍ତି କେବଳ କାଶ୍ମୀରୀ ଖାଦ୍ୟ ଖାଇବାକୁ କାଶ୍ମୀରକୁ । କେବେ ବା ପ୍ରାଚ୍ୟ ଦ୍ୱୀପପୁଞ୍ଜରେ କେଉଁଠି ସୁସ୍ୱାଦୁ ଖାଦ୍ୟ କଅଣ ତିଆରି ହେଉଥିବ ଭାବି ଉଡ଼ାଜାହାଜରେ ବୁଲିଆସନ୍ତି । ହାତରେ ଛୁଇଁଲା ଭଳି ଏ ଦ୍ୱୀପଗୁଡ଼ିକ ତାଙ୍କୁ ଜଣାପଡ଼େ ।

ବ୍ୟୋମଯାନରେ ସେମାନଙ୍କର ଯିବାଆସିବା ଆମ ପକ୍ଷରେ ରିକ୍‌ସା ଭ୍ରମଣ ସହିତ ସମାନ । ଅନାୟାସେ ଆମେ ରିକ୍‌ସାକୁ ଡାକିବା ଭଳି, ଅନାୟାସେ ସେମାନେ ଉଡ଼ାଜାହାଜରେ ବସିଯାଆନ୍ତି, ଉଡ଼ିଯାଆନ୍ତି ।

ଆଜ୍ଞାରାମଙ୍କ ଶରୀର ଯଦି କୌଣସି ଆକ୍‌ସିଡେଣ୍ଟରେ କ୍ଷତବିକ୍ଷତ ହୋଇଯାଏ, ହାତୀ ଜୀଇବା ବା ମରିବା ବିଚାର ଭଳି ତାଙ୍କ କଳେବରରୁ ଅତି କମ୍‌ରେ ଲକ୍ଷେ ଟଙ୍କାର ଜିନିଷ ବାହାରିବ । ମଥାଠାରୁ ତଳିପାଯାଏ ଭର୍ତ୍ତି ରହିଛି ଦାମିକା ପୋଷାକ ଆଭରଣ ଓ ସୁନା ତଥା ହୀରାର ଟାଇପିନ୍‌ଠାରୁ ଆରମ୍ଭ କରି ଗୋଡ଼ର ଯୋତା ଯାଏ । ମାଇପିମାନଙ୍କର ଚଟି ଓ ସ୍ୟାଣ୍ଡଲର ଚାରିପଟେ ଖୁବ୍ କମ୍ ଚମଡ଼ା ଦେଖିବାକୁ ମିଳେ, ସୁନାର ଜରୀ ଥାଏ ବେଶି ।

ବାସ୍, ଏଇ ଯେଉଁ ଚିତ୍ର ଦିଆଗଲା, ତାହା ଯେତିକି ମାନମହତ ଓ ଧନର ଆଟୋପ ବିବୃତ କଲୁ, ତଦପେକ୍ଷା ହଜାର ଗୁଣ ହେବ ଆଜ୍ଞାରାମଙ୍କ ବିଳାସର ଚିତ୍ର ରହିଛି । ସାର୍ଥକ ସେମାନଙ୍କର ଜନ୍ମାଏ ଧରା ଉପରେ । କି ସୁକୃତ, ସୌଭାଗ୍ୟ ସେମାନେ ଅର୍ଜିଥିଲେ, ଈଶ୍ୱରଙ୍କର କିଭଳି ପ୍ରିୟ ସନ୍ତାନ ହୋଇଥିଲେ ଯେ ଯେଉଁ ଦେଶରେ ଲକ୍ଷ ଲକ୍ଷ ଲୋକ ତୁଣ୍ଡରେ ଆହାର ଦିଅନ୍ତି ଦିନରେ ଥରେ ମାତ୍ର, ପିନ୍ଧନ୍ତି ଆଣ୍ଠୁଲୁଚା ଲୁଗାଖଣ୍ଡେ, ରହନ୍ତି ଟୋପର ତଳେ, ସେଠାରେ ଆଜ୍ଞାରାମଙ୍କର ଆରାମର ଅନ୍ତ ନାହିଁ । ବିଚିତ୍ର ଏ ବେଭାର !

କିନ୍ତୁ...

ଆଜ୍ଞାରାମଙ୍କର ପ୍ରିୟତମା ପତ୍ନୀ ଶୁକଦେବୀଙ୍କର ଦଶଥର ପେଟ ଚିରାଗଲାଣି, ଅଚିହ୍ନା ବେମାରୀକୁ କେହି ଡାକ୍ତର ଜାଣିପାରୁନାହାନ୍ତି ।' ତେଣୁ ଯେତେ କାଟୁଛନ୍ତି, ସେତେ ଗହୀରା ହୋଇଯାଉଛି ସେ ବ୍ୟାଧି ଓ କ୍ଷତ ।

ନିଉୟର୍କ, ଲଣ୍ଡନ, ବର୍ଲିନ୍ ପ୍ରଭୃତି ବଡ଼ ବଡ଼ ସହରରୁ ଚିକିତ୍ସକ ଆସିଛନ୍ତି, ଫେରିଛନ୍ତି, ଗଲାବେଳେ କହିଯାଇଛନ୍ତି ଭାରତୀୟ ଚିକିତ୍ସକଙ୍କୁ... କେବଳ କାଟ...

ପୁଅ ବୀରବିକ୍ରମର ଗୋଟାଏ ଆଖି, ସେଇପଟର କର୍ଣ୍ଣ, ସେଇ ପାଖର ହାତ ଓ ଗୋଡ଼ ଅଚଳ । ଆର ପଟଟା ଚଳେ ଅବଶ୍ୟ, କିନ୍ତୁ ଏ କି ଜୀବନ ! ଆଜ୍ଞାରାମ ପୁଅର ଅଚଳ ଅଙ୍ଗକୁ ଚଳେଇବା ପାଇଁ ଲକ୍ଷ ଲକ୍ଷ ଟଙ୍କା ବରବାଦ କଲେ; କିନ୍ତୁ କିଛି ହେଲାନାହିଁ ।

ନିଜେ ସେ ଅସୁସ୍ଥ । କିଛି ଖାଇଲେ ଆଦୌ ହଜମ ହୁଏନି । ମନେହୁଏ ଉଦର ତାଙ୍କର ଶିଳାରେ ତିଆରି– ସଂକୁଚନ ଓ ପ୍ରସାରଣ ବିଧି ଏଠାରେ ଚଳେ ନାହିଁ । ଅବଶ୍ୟ ଯୌବନରେ ମହଣ ମହଣ ସେ ଖାଇଛନ୍ତି । ସ୍ନାୟୁଗୁଡ଼ାକ ଇଚ୍ଛାମତେ ଛିଣ୍ଡିଯିବା ସ୍ଥିତିକୁ ନେଇଆସିଛନ୍ତି । ଏବେ ସୁନା ହୀରା ମୁଠା ମୁଠା କଲେ ବି ଗୋଟିଏ ଚପାତି ବି ହଜମ ହେଉନି । ଖଣି ଭିତରର ମାଙ୍ଗାନିଜ୍ ଉପରକୁ

ଉଠିଆସୁଛି, କୋଇଲା ଉଠିଆସୁଛି, କିନ୍ତୁ ଆଜ୍ଞାରାମଙ୍କ ଉଦର ଭିତରୁ ଯାହା ଉଠିଆସେ, କେବଳ ପିତ୍ତବାନ୍ତି– ଜଳର ଉଦ୍‌ଗାର ।

ମରଣ ନିଶ୍ଚିତ ସେ ଜାଣିଲେ । ଝିଅ ପଦ୍ମିନୀର ପତ୍ତା ନାହିଁ– କିଶୋରୀ ବୟସରୁ ସେ ଅପହୃତା । ବିଶ୍ୱଟାଯାକ ଆଜ୍ଞାରାମ ତାକୁ ଖୋଜି ଆସିଲେ । କନ୍ୟାର ସମ୍ବାଦ ମିଳିଲା ନାହିଁ ।

ପ୍ରତି ସନ୍ଧ୍ୟାରେ ବିଭିନ୍ନ କ୍ଷେଟ୍‌ରୁ ମ୍ୟାନେଜରମାନେ ଆଜ୍ଞାରାମଙ୍କ ପାଖକୁ ଟେଲିଫୋନ୍, ଟେଲେକ୍‌ସ ଓ ବେତାର ଯନ୍ତ୍ରରେ ଜଣାଇଦିଅନ୍ତି, ଏଠାରେ ଲାଭ ଏକା ଦିନକେ ଅଢ଼େଇ ଲକ୍ଷ, ସେଠାରେ ସାର୍ଦ୍ଧ ପାଞ୍ଚଲକ୍ଷ । ହିମାଳୟର ଶୃଙ୍ଗକୁ ବି ଛୁଇଁଯିବ ଏ ସଂଖ୍ୟା । ଏଭରେଷ୍ଟକୁ ବି ବଳିଯିବ ଏ ଧନ ପରିମାଣ !

କିନ୍ତୁ...

ରାତ୍ରି ପାହିଆସୁଥିଲା– ଯିମିତି ସବୁ ଯାମିନୀ ପ୍ରଭାତି ଆସେ । କୋଟିପତି ଆଜ୍ଞାରାମ ଆଜି ପାଦରେ ଯୋତା ପିନ୍ଧିନାହାନ୍ତି– ଦେହରେ ତାଙ୍କର ଆବରଣ ନାହିଁ ।

ଆଜ୍ଞାରାମଙ୍କୁ ଅନ୍ତର ଭିତରକୁ ପ୍ରବେଶ ପାଇଁ ଅନ୍ତଃପୁରୁଷ ଆଜ୍ଞା ଦେଲା । କହିଲା – ଦେଖରେ ମୂର୍ଖ, ଏ ଯାଏ କେଉଁ ଜଗତରେ ଥିଲୁ ? କଅଣ ସେଠାରେ ପାଇଥିଲୁ ? ଆତ୍ମହତ୍ୟା କରିବାକୁ ଆସିଛୁ ? ବଞ୍ଚିନଜାଣିଲୁ ବୋଲି ବଞ୍ଚିତ ହୋଇଛୁ । କିଏ ରକ୍ଷା କରିବ ?

ତଳେ କାହାର ଏ କେକାଧ୍ୱନି... ଜଣେ ପୁରୁଷ, ଜଣେ ସ୍ତ୍ରୀ... ଗୋଡ଼ାଗୋଡ଼ି ହେଉଛନ୍ତି ... ଛନ୍ଦି ହୋଇଯାଉଛନ୍ତି ପାଦେ ପାଦେ । ପିଇ ଯାଉଛନ୍ତି ଏ ପାର୍ବତ୍ୟ ସମୀରଣକୁ । ଛାତିକୁ ଉଷୁମାଉଛନ୍ତି ଦିଗ୍‌ବଳୟ ଛାଡ଼ି ଉଠିଆସୁଥିବା ସବିତାର ରଶ୍ମିକୁ ଦେଖାଇ... ଫୁଲର ଗନ୍ଧରେ ମହାମତୁଆଲା । ସର୍ବତ୍ର ଆନନ୍ଦ... ଆନନ୍ଦ... ଆନନ୍ଦ... ସବୁଆଡ଼େ ସୁନ୍ଦରର ଆବାହନ...

"– ଆରେ ହଁରେ, ଏ ଲୋକଟା କଅଣ କରୁଚି କିରେ ପାହାଡ଼ଟା ଉପରେ ? ଖସିପଡ଼ିବରେ... ମରିଯିବରେ..." ବନଜୀବିନୀ ନାରୀର ଚମକ ବାଣୀ ।

ପୁରୁଷ କହିଲା– ଏ, ତୁ ସତରେ କହୁଚୁ, ମରିବାକୁ ଆସିଚିରେ ସହରୀ ଲୋକଟା... ଆମଆଡ଼ ଲୋକତ ଏ ନଏଁ...

ଡାକ ପକାଇଲେ ସେମାନେ । ଆଦିମ କାଳର ଡାକ ସେ ନିରାଭରଣ, ଅକୃତ୍ରିମ । ଖଣ୍ଡେ ଜଙ୍ଘିଆ କଟୀ ଉପରେ । ପାହାଡ଼ର ଶୃଙ୍ଗ ଉପରେ ଛିଡ଼ାହୋଇ ଆଜ୍ଞାରାମ ହାତ ମୁଠା ମୁଠା କରୁଛନ୍ତି– କାହାକୁ ଖୋଜୁଛନ୍ତି– କିଏ ସେ ଅଦେଖା ଅଜଣା ରୂପକାର– ଯାହାକୁ ନଦେଖିପାରିଲେ ବି ସେ ଦେଖାଦିଏ, ଯାହାକୁ ନଜାଣିପାରିଲେ ବି ସେ ନିଜ ଅସ୍ତିତ୍ୱ ସମ୍ବନ୍ଧରେ ଜଣେଇଦିଏ ।

ଆଜ୍ଞାରାମ ହାତ ମୁଠା ମୁଠା କରିବା ବନ୍ଦ କଲେ । ତଣ୍ଟି ତାଙ୍କର ଶୁଖି ଆସିଲା । ଗୋଡ଼ ଥରିଲା । ଶେଷ ମୁହୂର୍ତ୍ତ ଆସନ୍ନ । ସେ ଚାହିଁ ଦେଖିଲେ ତଳକୁ– କିଛି ରହିବ ନାହିଁ– ମାଂସପିଣ୍ଡୁଳାଟାଏ ହୋଇଯିବ । ହଜାର ହଜାର ଫୁଟ ତଳର ଧରିତ୍ରୀ ତା' କୋଳରେ ଶୋଇଯିବା ପୂର୍ବରୁ ଆଜ୍ଞାରାମଙ୍କ ଦେହ ଦେହ ହୋଇ ନଥିବ– ଯେଉଁ

ଦେହର ଚର୍ବି ତଆରି ହୋଇଛି ପୃଥିବୀର ବହୁ ଭୋଜନାଳୟର ସୁସ୍ୱାଦୁ ସାମଗ୍ରୀରେ ।

ପ୍ରଭାତର ମୃଦୁମନ୍ଦ ସମୀରଣ ତାଙ୍କ ଦେହ ଛୁଇଁଲା । ସେ ଜୀବନରେ ଏହାର ସ୍ପର୍ଶ ଜାଣି ନଥିଲେ କେବେ । ସେ ଚକିତ ହେଲେ ।

ଯେ କଅଣ ? ଏକ ସୁନ୍ଦର ସୂର୍ଯ୍ୟୋଦୟ !! ବଣ ପକ୍ଷୀ ଉଡ଼ିଯାଉଛି । କିଚିରିମିଚିରି ତା'ର ସ୍ୱ . । ତପନ ଧୀରେ ଉଠିଆସୁଛି । ପୂର୍ବ ଦିଗ ବିଚିତ୍ର ରଙ୍ଗ ଶୋଭାରେ ଆନନ୍ଦ ବିକିରଣ କରୁଛି । ବୃକ୍ଷଲତା ହସୁଛନ୍ତି । ସୃଷ୍ଟିର ଆନନ୍ଦ ଝଲକ । ଆକାଶ ଶାନ୍ତ ଓ ଅରୁଣିମାସିକ୍ତ ।

ଯେ ପୁଣି କଅଣ ? ମାଆ ପକ୍ଷିଣୀ ଛୁଆକୁ ଚଞ୍ଚୁରେ ଚଞ୍ଚୁ ରଖି ଖୁଆଇ ଦେଉଛି । ଅଜସ୍ର ଝିଙ୍କାରି ଐକ୍ୟତାନ ତୋଳୁଛନ୍ତି । ଦୂର୍ବା ଉପରେ ନାଚୁଛନ୍ତି ପୁଣି ଉଡ଼ିଯାଉଛନ୍ତି ।

ଅନ୍ତରର ଡାକ, ବାହାରର ଡାକ, ସବୁ ମିଶି ଆଜ୍ଞାରାମଙ୍କୁ ଚେତନା ଦେଲା... ଚମକ ଦେଲା ।

ପୃଥିବୀ ଏତେ ସୁନ୍ଦର ତେବେ ? ମୁକ୍ତ ଆକାଶ, ବିମୁକ୍ତ ନରନାରୀ, ନାହିଁ କପଟାଚାର, ନାହିଁ ଧନଲୋଭ, ନାହିଁ ହିଂସା ଓ ହତ୍ୟା, ନାହିଁ ଚୋରା ଧନ କାରବାରରେ ବିପୁଳ ଧନ ସଞ୍ଚୟ, ନାହିଁ ମାନବ– ଆତ୍ମାର ଅବମାନନା । ଓଃ, ପ୍ରଭୁ... ପ୍ରଭୁ.. ପ୍ରଭୁ !

ପ୍ରଥମ ଥର ପାଇଁ ଆଜ୍ଞାରାମଙ୍କ ଚେତନାରେ ଆବିର୍ଭୂତ ହେଲେ ବିଶ୍ୱପୁରୁଷ ଭଗବାନ । ସେ ଦୁଇ ହାତ ଯୋଡ଼ିଲେ, ଆଖି ବୁଜିଲେ, ଢଳିପଡ଼ିଲେ ଆଗକୁ ଟିକିଏ... ଦୁଇଟି ପାଦ ପଛକୁ ଫେରିଲା, ମୃତ୍ୟୁ ହେଲା ପରାସ୍ତ । ହେଲେ ଜାରଜ ସଭ୍ୟତାର ଅନ୍ତ'ାଳକୁ ଆଉ ନୁହେଁ... ସ୍ୱଚ୍ଛଳ ଆନନ୍ଦର କୈବଲ୍ୟର ଧାରା ଭିତରକୁ ତାଙ୍କର ଗତି, ମହାସ୍ରୋତର ଅଭିମୁଖରେ ସେ ଜୀବନନାବର ଉତ୍ତରଣ... ମଥା ପୋତେ । ଆଜ୍ଞାରାମଙ୍କ ଆଶ୍ରମ । ଆଜ୍ଞା ପରିବର୍ତ୍ତେ ରାମାନନ୍ଦ ଆଶ୍ରମକୁ– ତ୍ୟାଗ ଓ ସେବାପୀଠକୁ ।

ଯେଉଁ ଶୈଳଶିଖର ଉପରେ ତାଙ୍କର ଏ ଅଭିନବ ଆତ୍ମାନୁଭବ ପ୍ରତିଷ୍ଠିତ ହେଲା, ଚେତନାର ରୂପାନ୍ତର ସଂଭବିଲା, ସେହି ପର୍ବତ ପଥ ପ୍ରାନ୍ତେ ସ୍ଥାପିତ ହୋଇଛି ରାମାନନ୍ଦ ବାଟିକା । ଆନନ୍ଦର ଆବାହନ । ପଛରେ ପଡ଼ିଲେ ସମସ୍ତେ । ସଂଭୋଗର ବିଷ ଘେନି ସେମାନେ ବଞ୍ଚି ରହିଲେ ପୃଥିବୀପୃଷ୍ଠରେ ।

ମୃତ୍ୟୁ ସ୍ପର୍ଶର ଅବ୍ୟବହିତ ପୂର୍ବରୁ ଆଜ୍ଞାରାମ ଖୋଜି ପାଇଲେ ସୁନ୍ଦରର ଦେବତାକୁ । ଅସୁନ୍ଦର ନିର୍ବାପିତ ହେଲା ।



# କୁଳାଙ୍ଗାରଙ୍କ କାରାଗାର

ହାଃ... ହାଃ... ହାଃ...

ବର୍ଷେ ତ ପୂରିଗଲା । ଏ ସମୟତକ କଅଣ ଭାବୁଥିଲେ ? କଅଣ କାର୍ଯ୍ୟ କରୁଥିଲେ ? କଅଣ କଳ୍ପନା କରୁଥିଲେ ? କଅଣ ପରିକଳ୍ପନା କରୁଥିଲେ ? ସ୍ଥିର ଥିଲେ ନା ଅସ୍ଥିର ଥିଲେ ? ଆକାଶକୁ କେତେଥର ଚାହିଁଛନ୍ତି, ମାଟିରେ କେତେଥର ନଖରେ ଶିରା ପକାଇଛନ୍ତି । ଭ୍ରୂ କେତେଥର କୁଞ୍ଚିତ ହୋଇଛି ? ପର୍ଶୁରାଜ ସିଂହକୁ ଏ ନିର୍ମମ ପିଞ୍ଜରା ବଡ଼ ଅକଳରେ ପକାଇଛି, ନା ? ହାତ ଗୋଡ଼ ତ ବାଜିଯାଉଥିବ ଲୁହା ଫଳକରେ ? ଉପର ଲୁହାଛାତରେ ତ ମଥା ପିଟିହୋଇ ଯାଉଥିବ ? ସ୍ୱାଧୀନତା ନାହିଁ ନା ? ମୁକ୍ତି ନାହିଁ ନା ? ମୁଁ କିନ୍ତୁ ଠିକ୍ କହିରଖୁଛି, ଆପଣ ଏଠାକୁ ଆସିଲା ପରେ ବି ଯଥାରୀତି ସକାଳ ହେଉଛି ପୃଥିବୀରେ । ସୂର୍ଯ୍ୟ ଖୁବ୍ ତୋରାହୋଇ ଫାଟି ପଡୁଛନ୍ତି ଦିଗ୍‌ବଳୟରେ । ଚଢ଼େଇଗୁଡ଼ାକ କିଚିରିମିଚିରି ହେଉଛନ୍ତି । କିଛି ବଦଳିନି, ତେବେ ହିଁ ଗୋଟାଏ କଥା ବଦଳିଯାଇଛି । ଜାଣନ୍ତି ସେ କଥା କଅଣ ? କେହି ସ୍ୱାଧୀନ ନୁହନ୍ତି । ଡେଣାକଟା ପକ୍ଷୀ ଅବଶ୍ୟ ରାବୁଛି, ହେଲେ ତାହା ବିଳାପର ଧ୍ୱନି । ମୁକ୍ତି ନାହିଁ ବୋଲି ଛିଣ୍ଡା ଡେଣା ଉପରେ ରାଗିଯାଇ ଚଞ୍ଚୁ ବସାଇ ପୁଣି ସେ ତାକୁ ରକ୍ତାକ୍ତ କରୁଛି... ହାଃ...ହାଃ...ହାଃ....

– ତମେ କିଏ ? କିଏ ତମେ ?

– ମୁଁ ରାଜଧାନୀର ପ୍ରେତ– ଅଶରୀରୀ । ଶରୀର ଥିଲେଁ କଅଣ ମୁଁ ଏଠିକି ଆସିପାରନ୍ତି ? ମୁଁ ନିର୍ବିଶେଷ, ମୁଁ ଆତ୍ମାମାତ୍ର, ପ୍ରେତାତ୍ମା ।

ଓଃ... ଃ...ଃ...ଃ...

ଗୋଟିଏ ସ୍ୱଚ୍ଛ ପରିମିତ ସ୍ଥାନ ଥିବା କକ୍ଷ । ଗୋଟିଏ ଖଟ, ଗୋଟିଏ ଚୌକି, ଗୋଟିଏ ଛୋଟ ଟେବୁଲ୍, ଗୋଟିଏ ପାଣିପାତ୍ର । ସବୁ ଗୋଟିଏ ଗୋଟିଏ ମଣିଷର ବ୍ୟବହାର୍ଯ୍ୟ ପଦାର୍ଥ, ଜୀବନର ସଙ୍କୁଚିତ ସାମଗ୍ରୀ । ଏହାକୁ ନେଇ କେହି ଭୋଗ ଉପଭୋଗ କରିପାରେନା ।

ଦଶ ପାହୁଣ୍ଡ ଗଲେ କାନ୍ଥ । ପଛକୁ ଦଶ ପାହୁଣ୍ଡ ଗଲେ କାନ୍ଥ । ପୂର୍ବ ପଶ୍ଚିମ ଉତ୍ତର ଦକ୍ଷିଣରେ ଦଶ ଦଶ ପାହୁଣ୍ଡ ଯାଏ ଚଳନ୍ତି ବାଟ– ତା'ପରେ ନିବୁଜ କାନ୍ଥ । ଉପରେ କାନ୍ଥ କଣକୁ ମେଲା ଜାଗାରେ ଓଡ଼ିଶାର ଆକାଶ ଦେଖାଯାଉଛି । ପୃଥିବୀର ଆକାଶ ସେଇଆଡ଼େ ଲମ୍ବି ଆସିଲେ ବି ଏ ରୁଦ୍ଧ କକ୍ଷରୁ କଳନା କରିହେଉନାହିଁ ସେ କେତେବଡ଼ ବ୍ୟାପକ ହୋଇଥିବ । କେତେ ବଡ଼ ତା'ର ନୀଳିମ– ପ୍ରସାର ।

ସବୁ କଳ୍ପନାର ସମାଧି ଘଟିଛି । ପ୍ରଣୟର ସମାଧି ଯିମିତି ତାଜମହଲ ସ୍ମୃତିକୁ ଶତଗୁଣ ବଢ଼ାଇ ଦିଏ, ଏ ସିମିତି ନୁହେଁ । ଏଠି କଳ୍ପନାର ଶେଷ ହୋଇଯାଇଛି । କେବଳ ବଂଚିରହିବା, ଦଶପାହୁଣ୍ଡ

ଜାଗାରେ ବିଶକୁ ପରିମାପ କରିବା– ତା'ବି ସମ୍ଭବ ହେଉନାହିଁ । ବର୍ଷେ ବିତିଗଲା । ଚାହୁଁ ଚାହୁଁ ବର୍ଷେ ବିତିଗଲା ।

ହାଃ...ହାଃ... ହାଃ...

ପୁଣି ଫେରି ଆସିଲି । କଅଣ ଆତ୍ମଜୀବନୀ ଲେଖୁଛନ୍ତି ? ଅବଶ୍ୟ ଲେଖିବାକୁ ମନା ନାହିଁ । କଲମ କାଗଜ ଥୁଆ ହୋଇଛି । ସୁନାପାତିଆ ଛାଉଣି ଏ କଲମ ନୁହେଁ ଯାହା ଆପଣ ଉପାୟନ ପାଇଥିଲେ ରାଷ୍ଟ୍ରଦୂତ ଥିବା ବେଳେ ଅନ୍ୟ ରାଷ୍ଟ୍ରର ସଚିବଙ୍କଠାରୁ । ଆପଣ ଯଦି ଆପଣଙ୍କର ଉପାୟନର ପ୍ରଦର୍ଶନୀ ଖୋଲନ୍ତେନା, ତେବେ ବେଶ୍ ଗୋଟାଏ ଏକ୍‌ସପୋ ସୃଷ୍ଟି ହୋଇଯାଆନ୍ତା । କିନ୍ତୁ ଆଉ ବେଳ ନାହିଁ । ହଁ, ଶୁଣନ୍ତୁ, ମୋର ଗୋଟିଏ ପରାମର୍ଶ ଗ୍ରହଣ କରିବେ ।

— କଅଣ ?

ଛାୟାମୂର୍ତ୍ତିକୁ ଅ...ଇରହିଲେ ବାସୁଦେବ । ଉଜ୍ଜ୍ୱଳ କାନ୍ତିର ଏ ପ୍ରେତ ପୁରୁଷ । ସାଥୀହୀନ କାରାକକ୍ଷରେ ଏ ମୂର୍ତ୍ତି ଆସିଛି ସାଥୀତ୍ୱ ପ୍ରଦାନ କରିବା ପାଇଁ । ଚଳନଶୀଳ ପୃଥିବୀଭରା ମଣିଷ ଯେଉଁଠି ଚିତ୍‌କାର କରୁଛି, ସେ ବିଶ୍ୱ ଏ ବିଶ୍ୱ ନୁହେଁ । ଏ ରାଜଧାନୀର କାରାଗାର । ଏହାର କାରବାର ରାଜକୀୟ । ଏଠି ବାରମାସରେ ପନିପରିବା ଫଳେ, ଦୁଗ୍ଧବତୀ ଗୋଧନ ଦୁଗ୍ଧ ଦାନ କରନ୍ତି । ମଣିଷ ଠେଲାରେ ତୈଳ ସୃଷ୍ଟି ହୁଏ । କଚଟି ଘଷିଲେ ଗହମବୀଜ ଅଟା ପ୍ରସବ କରେ । ରାତ୍ରିରେ ହରିନାମ ଶୁଭେ କଏଦୀଙ୍କ କଣ୍ଠରେ; ଜୀବନ ବ୍ୟାପି ଦଣ୍ଡିତ ଲୋକର ଅର୍ଦ୍ଧରାତ୍ରିରେ କାନ୍ଦଣା ବି ଶୁଣାଯାଏ ।

ବାସୁଦେବଙ୍କୁ ଶ୍ରୀ ଅରବିନ୍ଦ ଦର୍ଶନ କରିଥିଲେ ଆଲିପୁର ଜେଲ ଭିତରେ । ସେତେବେଳେ ବାସୁଦେବଙ୍କ କଣ୍ଠରେ ଝୁଲୁଥିଲା ବନମାଳା, ହାତରେ ଥିଲା ମୁରଲୀ । ଛାତିରେ ଲମ୍ଭି ଆସିଥିଲା କୌସ୍ତୁଭ । ବିବେକାନନ୍ଦ ବି ଆସିଥିଲେ, କହିଗଲେ– ମୋର ଅପୂର୍ଣ୍ଣ କାର୍ଯ୍ୟକୁ ପୂର୍ଣ୍ଣକର ଅରବିନ୍ଦ ଘୋଷ । ଯେଉଁ ପନ୍ଥାର ଆଶ୍ରୟ ନେଇଛ ଏ ଯାଏ, ତାହା ଜାତିପ୍ରାଣତାର ପରିଚୟ ଦେଲେ ବି ଭଗବାନ ଅନ୍ତର୍ଯ୍ୟାମୀ ଇଚ୍ଛା କରନ୍ତି ତୁମେ ହେବ ମହାଯୋଗୀ, ବିଶ୍ୱଜନତାକୁ ସମର୍ପିବ ଦିବ୍ୟଜୀବନର ଶୋଭା । ସେଇଆଡ଼େ ନିଜକୁ ପରିଚାଳିତ କର, ପ୍ରସ୍ତୁତ କର ।

ଆଜି ଏ ବାସୁଦେବ ସ୍ଥିର, ନିଷ୍ପନ୍ଦ । ଚାହିଁରହିଥିଲେ ସେହି ଜ୍ୟୋତିର୍ମୟ ପିଣ୍ଡକୁ... ଏ କଅଣ ତେବେ ଭବିଷ୍ୟତର ଭବିତବ୍ୟତା, ଦେହ ଧରି ଆସିଛି ମତେ କହିଯିବ କେଉଁ ସରଣୀ ଅବଶିଷ୍ଟ ରହିଲା, ଯାହା ଉପରେ ଚାଲିଯାଇ ମୁଁ ଉପସ୍ଥିତ ହେବି ସେହି ଶେଷ ପାନ୍ଥଶାଳାରେ ?

ଛାୟାମୂର୍ତ୍ତି ହସି ଉଠିଲା–

ହାଃ... ହାଃ... ମୋ ଉପସ୍ଥିତିର ଗୋଟାଏ କୁହୁକ ଅଛି, ବାସୁଦେବ ! ଆପଣ କଳ୍ପନା କରିବାକୁ ଆରମ୍ଭ କଲେଣି, ସଙ୍ଗେ ସଙ୍ଗେ ପରିକଳ୍ପନା ବି ? ନା ବନ୍ଧୁ, ଆଉ ସୁଯୋଗ ମିଳିବ ନାହିଁ । ଦିନେ ଭାବୁଥିଲେ ନା ଆପଣ ରାଜଧାନୀ ତିଆରି କରିଛନ୍ତି ? ମହାନଦୀ ଉପରେ ବନ୍ଧ ବାନ୍ଧିଛନ୍ତି, ରାସ୍ତା ଘାଟ କରିଛନ୍ତି, ପଥ ଦେଖାଇଛନ୍ତି ?

ଖାରବେଳ, ପ୍ରତାପରୁଦ୍ର, ଯଯାତିଙ୍କର ସମଗୋତ୍ରୀ ହୋଇଯାଇଛନ୍ତି ? ଆପଣଙ୍କ ନାଁରେ କେତେ ଭିତ୍ତିପ୍ରସ୍ତର, କେତେ ଶଙ୍କୁ, କେତେ

ସିମେଣ୍ଟବୋଳା ଲୁହାର କରଣୀ ଏବେ ଆଉ ରାଜ୍ୟ ସାରା କେଉଁଠି ଦେଖିବାକୁ ମିଳୁନାହିଁ । ଶବଗୁଡ଼ାକୁ ମହାମାରୀ ବେଳେ ଯିମିତି ନଈ କୂଳରେ ଫୋପାଡ଼ି ଦିଆଯାଏ, ମଣିଷର ଏ କୃତିତ୍ୱକୁ ବି ଯୁଗପୁରୁଷ ଫୋପାଡ଼ି ଦିଏ । ସେଇଆ ହୋଇଛି– ହାଃ...ହାଃ..., ମହାକାଳର ପୋଷା ପବନ ହୋଇ କେହି ରହିନାହିଁ ଯେ ସବୁବେଳେ ସୁ...ସୁ.. କରୁଥିବ ।

ବାସୁଦେବ ତଳକୁ ଚାହିଁଥିଲେ ଯେଉଁଠି ଦୈନିକ ଖବରକାଗଜ ଖବର ଛପାଇ ଥୋଇଛି ତାଙ୍କ ଆଖି ତଳେ... ଯାନ୍ତ୍ରିକ ହାତ ମାଟି ଖୋଳୁଛି ଜୀବସତ୍ତା ଆବିଷ୍କାର ପାଇଁ । ପରେ ପରେ ଚାଇନାରେ ଦଶଲକ୍ଷ ନରନାରୀ ସହର ସହ କ୍ଷଣକରେ ଦୋହଲିଯାଇ ମରିଗଲେ । ତେବେ... ତେବେ... ଏକ ଆଡ଼େ ପ୍ରାଣୀସତ୍ତାର ଆବିଷ୍କାର, ଅନ୍ୟ ଆଡ଼େ ବିପୁଳ ସଂଖ୍ୟାରେ ପ୍ରାଣୀ ସଂହାର, ଯୁଗ ପାଲଟୁଛି । କାନ୍ଥରୁ ଖୋଳପା ଛାଡୁଛି । ଜୀର୍ଣ୍ଣ ସାପକାତି ତଳେ ନୂଆ ଚିକ୍‌କଣ ତୋଫା ମଖମଲିଆ କାତି ତିଆରି ହେଉଛି ।

ବାସୁଦେବ ପ୍ରଚକ୍ଷୁ ଉଠାଇ ଦୃଷ୍ଟି ବିନିମୟ କଲେ ।

"– ଶୁଣ ପ୍ରେତାତ୍ମା, କାହାର କଣ୍ଠଧ୍ୱନି ଶୁଣିବା ମୋ ପକ୍ଷରେ ସମ୍ଭବ ନୁହେଁ । ତୁମରି କଥା ମୁଁ ଶୁଣିପାରୁଛି । ତୁମ ବାଣୀରେ ଦର୍ଶନ ଅଛି । ମୁଁ ବୁଝୁଛି– କିନ୍ତୁ ମତେ ଗୋଟିଏ ବିଷୟରେ ନିଶ୍ଚିନ୍ତ କରିପାରିବ ? ହଁ, ମୋର ଅଭିମାନ ଅଛି ଯେ ରାଜଧାନୀ ମୁଁ ଗଢ଼ିଛି, ମାତ୍ର..." ବାସୁଦେବ ହଠାତ୍ ଥମିଗଲେ, ପ୍ରେତାତ୍ମାର ହାସ୍ୟଲହରୀ ବଜ୍ରସମ ଫାଟିପଡ଼ିଲା ।

ସେ କହିଲା– ରାଜଧାନୀ ତ ଗଢ଼ିଲେ, ରାଜା ହେଲେ କାହିଁକି ? ରାଜନୀତି କଲେ କାହିଁକି ? ଛାଡ଼ିଦେଲେନି ?

– ସେ ତ ମୋ ରକ୍ତରେ ରହିଛି । ଉତ୍ତର ଦେଲେ ବାସୁଦେବ ।

– ସିମିତି ଅନ୍ୟର ରକ୍ତରେ ରହିଛି ଏ ରାଜପଣକୁ ଭାଙ୍ଗି ଉଡ଼ାଇଦେଇ ସବୁ ସମତୁଲ କରିଦେବା ପାଇଁ । ଆପଣଙ୍କ ନାଁର ପୋଷ୍ଟର ଉପରେ ବହୁ ବର୍ଣ୍ଣ ରଙ୍ଗ ଚିତ୍ରିତ ପୋଷ୍ଟର ମରା ହେଲାଣି । ଆପଣଙ୍କ ତୈଳଚିତ୍ର ଚୋରିହୋଇ ଗଲାଣି ସାହିତ୍ୟ ସଦନରୁ । ଆପଣଙ୍କ ମିଳନୀ ସଂସଦର ଏକଦା ଅତି ପ୍ରିୟ ବନ୍ଧୁଗଣ ଆଜି ଅବାନ୍ଧବ ସାଜିଲେଣି । କେଉଁଟା ସତ୍ୟ– ଆପଣ ନା ଆପଣଙ୍କର ପରାଜୟ ? ଗୋଟାଏ ପରାମର୍ଶ ଦେଉଛି ।

– କଅଣ ? ଦୀର୍ଘଶ୍ୱାସ ପକାଇ ବାସୁଦେବ ଗମ୍ଭୀର ହେଲେ ।

– ଆପଣ ହାତକାଟି ଲେଖିଦେବେ ଆପଣ ଶାନ୍ତ ହୋଇଛନ୍ତି ? ହରି ନାମ କେବଳ ଘୋଷୁଛନ୍ତି ? ଆଉ ରାଜପଣ ପରିବର୍ତ୍ତେ ପୂର୍ବର ପ୍ରେତାତ୍ମା ପାଖରେ ଗୋଟିଏ ଯୁବତୀର ଛାୟାମୂର୍ତ୍ତି । ସେ ବିଗ୍ରହ ଉଜ୍ଜ୍ୱଳ ଜ୍ୟୋତି କିରଣରେ ଝଲସି ଯାଉଛି । ବାସୁଦେବ ଚିତ୍କାର କଲେ–

'– ତୁମେ ତୁମେ କେବେ ମରିଗଲ ?'

'ହିଃ... ହିଃ... ହିଃ..., ମରିନାହିଁ ସାର୍, ମନେଅଛି ତ ଶାସନଗାଦି ଉପରେ ଚଢ଼ିବାବେଳେ ମୁଁ ଆପଣଙ୍କ ପାଦରେଣୁ ନେଇଥିଲି ? ସେ ରେଣୁକୁ

ଏବେ ବି ମଥାରେ ଧରିଛି। ମୁଁ ଯେ ଅମର। ପୁଣି ଆପଣଙ୍କ ଆଶୀର୍ବାଦ, ମରିପାରେ କି ?'

ଓହୋ, ହଁ-ହଁ, ସେଇଆ କହ– ତୁମେ ମରିନ– ହେଲେ ମୁଁ ଏକ୍ଷଣି ତୁମ ମଥା ଆଉଁସି ଆଉଥରେ ଆଶୀର୍ବାଦ କରିପାରିବି କି ? ବାସୁଦେବ ସ୍ୱୀକୃତି ଆଶା ନରଖି ଉଠିପଡ଼ିଲେ ଯିମିତି ଅଭ୍ୟାସ ବଳରୁ ସମସ୍ତଙ୍କୁ ଆଶୀର୍ବାଦ କରି ଆସିଛନ୍ତି ଜୀବନଯାକ ।

ମାତ୍ର ପ୍ରେତାତ୍ମା ବାଧା ଦେଲେ–

'ନା, ବାସୁଦେବ ! ନବମାଳିକା ମରିନାହାନ୍ତି ସତ, ତେବେ ସେ ଯେଉଁ ରୂପ ଧରି ଆସିଛନ୍ତି, ସେଥିରେ ଆପଣ ତାଙ୍କୁ ସ୍ପର୍ଶ କରିପାରିବେ ନାହିଁ । ବେଶି ସମୟ ସେ ଏଠାରେ ରହିବେ ନାହିଁ । ଗୋଟାଏ ଆନ୍ତଃରାଷ୍ଟ୍ର ଜଳ–ବିବାଦର ସନ୍ତୋଷଜନକ ସମାଧାନ କରି ସେକ୍ରେଟାରୀଏଟ୍‌ରୁ ଆସି କେବଳ ଭଗବାନଙ୍କର ପ୍ରସାଦ ସାମାନ୍ୟ ସେବନ କରି ସେ ଶୋଇପଡ଼ିଛନ୍ତି ଶାନ୍ତ ବିସ୍ମୃତିରେ । ମୁଁ ଏଇ ସୁଯୋଗ ଦେଖି ତାଙ୍କ କାରଣ ଶରୀରକୁ ନେଇଆସିଛି ଏଠାକୁ । ସେ ନିଜେ, ଦେଖନ୍ତୁ ଆପଣ, କିମିତି ଶାନ୍ତ ହୋଇଛନ୍ତି, ରାଜପଣ ଛାଡ଼ି ପ୍ରଜାପଣ କରିବାକୁ ସ୍ୱାକ୍ଷର ଦେବାକୁ ବସିଛନ୍ତି, ଆଉ ହୁଏତ ନବମାଳିକା ଯଦି କହନ୍ତି ଆପଣ ସନ୍ନ୍ୟାସୀ ହୋଇ ବାନପ୍ରସ୍ଥ ଅବଲମ୍ବନ କରିବାକୁ ପ୍ରସ୍ତୁତ ଅଛନ୍ତି ତ ?

ବୃଦ୍ଧ ବାସୁଦେବ ଉତ୍‌କ୍ଷିପ୍ତ ହୋଇ ଚିତ୍‌କାର କଲେ– ନା, ନା, ନା, ତୁମେ ଚାଲିଯାଅ– ଉଭୟେ ଚାଲିଯାଅ । ପ୍ରବୀଣ ବୁଦ୍ଧିଜୀବୀ ରାଜନୀତିଜ୍ଞ ବାସୁଦେବ ପାଖରେ ଏ ଅର୍ବାଚୀନ ରାଜନୀତିର ଅର୍ଥ କିଛି ନାହିଁ । ମାନୁଛି ଯୁଗର ଗୋଟାଏ ନିର୍ଦ୍ଦିଷ୍ଟ ସନ୍ଧିକ୍ଷଣରେ ଐତିହାସିକ ଅନୁଶାସନରେ ମୁଁ ଆଜି ବନ୍ଦୀ, ମୋର ଏହି ପରିଣତ ବୟସରେ । ପୃଥିବୀରେ ଏହା କିଛି ନୂଆ କଥା ନୁହେଁ । ତାହାର ପୃଷ୍ଠା ଖୋଲି ଦେଖ ମୋ ଭଳି ଅତୀତରେ ବହୁ ଦେଶପ୍ରେମୀ ନାଗରିକ ସ୍ୱାଧୀନତାକୁ ଜଳାଞ୍ଜଳି ଦେଇ ବନ୍ଦୀଜୀବନ ଯାପନ କରିଛନ୍ତି, ଏପରିକି ସେ ଦୁର୍ଭୋଗରେ ସେମାନେ ଦିନେ ଆତ୍ମାହୁତି ଦେଇ ପରପାରିକୁ ଚାଲିଯାଇଛନ୍ତି ।

ସେଭଳି ପୁଷ୍ପମାଳାରେ ମୁଁ ଆଉ ଗୋଟିଏ ରଂଜିତ କୁସୁମ। ମୋର ତାହାହିଁ ସୌଭାଗ୍ୟ ଏବଂ ଜୀବନାଦର୍ଶ... ମୁଁ କଅଣ ଶାନ୍ତ ନଥିଲି ? କହିଲି, ମୋର କି ରାଜପଣ ଥିଲା ? ମୁଁ ସାହିତ୍ୟ ସଂସ୍କୃତି ସାଧନରେ ମନ ଦେଇଥିଲି । ଚାହିଁଥିଲେ ମୁଁ ଟେବୁଲଟାକୁ ଓଲଟେଇ ଦେଇଥାନ୍ତି, କିନ୍ତୁ ନା... ଯେତେବେଳେ ଯେଉଁ କଥା । ମୋ ପାଖରେ ଅଗଣିତ ସ୍ତାବକ ଥିଲେ, ମୁଁ ମଝିରେ ମଝିରେ ତାଙ୍କରି ସ୍ତୁତିରେ ହଜିଯାଉଥିଲି । ଏବେ ବି ନବମାଳିକା ପାଖରେ ବହୁ ସ୍ମୃତି ବାସ୍ତବତା ଚାଲିଛି । ସେ ଏ କଥା ମନା କରିପାରିବ ? ରାଜନୀତିରେ ଥିଲେ ଏମିତି ଭାଟଗୁଡ଼ାକ ମାଛି ପଲ ଭଳି ଭଣଭଣ କରନ୍ତି, ଆଉ ସିଂହାସନ ଉପରକୁ ଉଡ଼ି ଆସନ୍ତି । ଏ ଲୀଳାଖେଳା ଚାଲିଥିବ, ଯେ ପର୍ଯ୍ୟନ୍ତ ଦଳ ଥିବ, ଆଉ ଦଳର ଡାହୁକ ଡାକୁଆ ଥିବେ ।

ନବମାଳିକାଙ୍କର ନୟନରେ ରୋଷ ଦେଖାଦେଇଛି । ଶାଢ଼ିଟାକୁ କଟୀ ଉପରେ ଗୁଡ଼ାଇ ଆଣି କହିଲେ– "କାହିଁକି ପ୍ରେତାତ୍ମା ତମେ ମତେ ଏଠାକୁ ଆଣିଲ ? ମୁଁ କଅଣ ଜାଣିନାହିଁ ଯେ ଏଯାଏ ଏମାନଙ୍କର ରକ୍ଷଣଶୀଳ ରାଜନୀତିର ଅବସାନ ଘଟିନାହିଁ ? ସମୟ ସୁଅରେ ଏମାନେ ଭାସି

ଯାଇପାରୁନାହାନ୍ତି ? ଅବଶ୍ୟ ମୁଁ ଚାହେନାହିଁ ମୋର ଜନକୋପମ ଏହି ଶକ୍ତିଶାଳୀ ପୁରୁଷ, କହିଲା ମାତ୍ରେ ସ୍ୱାକ୍ଷର କରିଦିଅନ୍ତୁ ଓ ମୁକ୍ତି ଚାହାନ୍ତୁ ତାଙ୍କ ବନ୍ଦୀ ଜୀବନରୁ । ତୁମେ କାହିଁକି ଏପରି ପ୍ରସ୍ତାବ ଦେଲ ? ଭାବିଛ ବାସୁଦେବ ବାବୁ କସ୍ମିନକାଳେ ଏପରି ସର୍ତ୍ତରେ ରାଜି ହୋଇ ମୁକ୍ତିର ସ୍ୱପ୍ନ ଦେଖିବେ, ଭୁଲ– ଭୁଲ୍ ।"

ହାଃ...ହାଃ... ହାଃ... ଏଥର ମୁଁ ଟିକିଏ ହାଃ... ହାଃ ହସେ, ତୁମେ ତ ବହୁବାର ହସିଛ, ମତେ ତୁଚ୍ଛ ତାଚ୍ଛଲ୍ୟ କରି ପ୍ରେତାତ୍ମା ! ନବମାଳିକା ଏ ରାଜ୍ୟର କନ୍ୟା, ମୁଁ ବି ଏ ରାଜ୍ୟର ମଣିଷ । ଆମକୁ ଆମର ଚିରଶତ୍ରୁ କହିବ ନାହିଁ ଯେ ଜାତିର ସନ୍ତାନ ଭାବରେ ଆମେ ଅମଣିଷ, ଜାତିପ୍ରେମ ଆମ ହୃଦୟରେ ନାହିଁ; କିନ୍ତୁ ଦେହ ଥିଲେ ସ୍ୱାର୍ଥ ଅଛି । କାହାର କିଛି ଉପକାର କରିବା ଆଗରୁ ନିଜର କରଣୀୟ କ'ଣ ମଣିଷ ଆଗ ବିଚାର କରିଥାଏ । ସେହି ଦୃଷ୍ଟିରେ ମୁଁ ହୁଏତ ପାପୀ, ସେ ହୁଏତ କିଞ୍ଚିତ୍ ପଥଭ୍ରଷ୍ଟା... ହେଲେ ଆମ ଭିତରେ ବୈରଭାବ ନାହିଁ । ମୁଁ କିଛିଦିନ ଶାସନ କରୁଥିଲି, ସେ କରୁଛନ୍ତି, ସେ କିଛିଦିନ କରିବେ, ଆଉ କିଏ ଆସିବ । ଚକ୍ର ଗଡ଼ିଯିବା ପାଇଁ ଭୂମି ରହିଛି । ଅବଶ୍ୟ ଭୂମି ସରିଗଲେ ଚିତ୍ର ଆଉ କେଉଁଆଡ଼େ ଗଡ଼ିବ ସେ ବିଚାର ଭିନ୍ନ । ମାତ୍ର ଗୋଟାଏ କଥା, ଆୟୁଷ୍ମତୀ ନବମାଳିକା, ରକ୍ଷଣଶୀଳ ରାଜନୀତି କଅଣ ମୁଁ ବୁଝିପାରିଲି ନାହିଁ । ତୁମର ବହୁ ବକ୍ତୃତାରେ ମୁଁ ଶୁଣିଛି ତୁମେ କହୁଛ ବର୍ତ୍ତମାନର ରାଜନୀତି, ଉନ୍ନୟନର ରାଜନୀତି । ତୁମକୁ ବଧାଇ ଦେଉଛି, କନ୍ୟା, ଯେ ତୁମେ ଯଥାର୍ଥରେ ରାଜନୀତିର ସଂଜ୍ଞା ନିରୂପଣ କରିପାରିଛ । କିନ୍ତୁ ହଠାତ୍ କଅଣ ତୁମରି ରାଜତ୍ୱରେ କେବଳ ରାଜନୀତି ଉନ୍ନୟନ ସ୍ତରକୁ ଆସିଗଲା ନା ଆଗରୁ ଆସିଥିଲା ? ଦେଶ ସ୍ୱାଧୀନ ହେବା ତ ଉନ୍ନୟନ, ରାଜା ମହାରାଜାଙ୍କ ଉଚ୍ଛେଦ ତ ଉନ୍ନୟନ, ପ୍ରଜାମାନଙ୍କ ପାଖକୁ ଶକ୍ତି ଆସିବା ତ ଉନ୍ନୟନ, ଗରିବ ଦୁସ୍ଥ ଲୋକଙ୍କ କଲ୍ୟାଣ ପାଇଁ ଯୋଜନାବଦ୍ଧ ଅର୍ଥନୀତିର ବିକାଶ ତ ଉନ୍ନୟନ !! ଏତିକି ତଫାତ୍ ଯେ, ଯେଉଁ ଲୋକ କାମ କରୁନି, ତା'ର ପିଠିରେ କୋରଡ଼ାମାଡ଼ ଦେଲେ ସେ ନିଶ୍ଚୟ ଯନ୍ତ୍ରଣାରେ କାତର ହୋଇ ଚେଇଁ ଉଠିବ । ଯେଉଁଠି ଭୟ ପ୍ରଦର୍ଶନର ବ୍ୟବସ୍ଥା ନାହିଁ ସେଠି ପ୍ରଗତିର ଶିଥିଳତା ସ୍ୱାଭାବିକ; ତେଣୁ ତୁମ ଓ ମୋ ଭିତରର ଦର୍ଶନର ଏଇମାତ୍ର ପାର୍ଥକ୍ୟ । ନ ହେଲେ ଆମ ଦୁଇ ହୃଦୟରେ ରହିଛି ସମପରିମାଣରେ ଏ ଦେଶକୁ ଗଢ଼ିବାରେ ପରମ ଉଲ୍ଲାସ ଓ ଅକୁଣ୍ଠ ତ୍ୟାଗ ।

– ଆପଣଙ୍କ ଏ ବନ୍ଦୀ ଜୀବନରେ କିଛି ଅସ୍ୱାଚ୍ଛନ୍ଦ୍ୟ ଘଟୁଛି କି ? ନବମାଳିକା ଅନ୍ତର୍ହିତା ହେବା ପୂର୍ବରୁ ଏ ପ୍ରଶ୍ନ ପଚାରିଥିଲେ । କାରାକକ୍ଷ କ୍ରମେ ସ୍ତିମିତ ହୋଇଆସୁଛି । ଦୁଇଟି ମୂର୍ତ୍ତି ଲିଭିଯିବା ଉପରେ । ଉତ୍ତର ମିଳିଲା– ବନ୍ଦୀଜୀବନର ପରିବେଶ ମୁଁ ଯେତେ ସଂଖ୍ୟାରେ ଭୋଗିଛି, ତୁମେ ତା'ର ସୀମା ସ୍ପର୍ଶ କରିନଥିବ । ବନ୍ଦୀତ୍ୱ ଅର୍ଥ ବନ୍ଧନ କେବଳ ଶାରୀରିକ । ତେବେ ପ୍ରଚୁର ବହି ଓ ପତ୍ରିକା ପଢ଼ିବାକୁ ପାଉଛି । ଅନ୍ୟାନ୍ୟ ଟିକିଏ ଟିକିଏ ସ୍ୱାଚ୍ଛନ୍ଦ୍ୟ ଯେ ମୁଁ ପାଉନାହିଁ, ତାହା ଅସ୍ୱୀକାର କରିବି ନାହିଁ । ତେବେ ମତେ ହସ ଲାଗୁଛି, ତୁମେ ଅନ୍ୟ କାରାବାସୀଙ୍କ ସହିତ ମୋର ମିଳାମିଶା ଆଉ କଥାବାର୍ତ୍ତାକୁ ନିଷିଦ୍ଧ କରିଦେଇଛ । ଭାବିଛ ମୁଁ ଏବେ ବି ଜ୍ୱଳନ୍ତ ଦଗ୍ଧ ଅରଣ୍ୟ ଶିଖା ? ନା, ଝିଅ, ନା– କାଳ ଘେନି ଋତୁ ଆସେ । ସବୁ ଋତୁରେ ମଳୟ ବହେ ନାହିଁ । ଏଇ ଦେଖ, ମୋ ଚାରିପଟେ ଗୀତା, ରାମାୟଣ, ପୁରାଣ, ମନ ମୋର ବହୁ ଊର୍ଦ୍ଧ୍ୱରେ ...

ଯିବାବେଳ ଆସିଗଲା । ବିଶ୍ୱାସ କରୁନ ମୁଁ ଜାଣେ । ରାଜନୀତିର ସୁରାଭରା ଗ୍ଲାସ୍‌ରେ ଏ ବିଶ୍ୱାସ ପ୍ରତିବିମ୍ବିତ ହୁଏନି, ଏ ବି ସତକଥା । ତୁମର ଭ୍ରାନ୍ତି ନାହିଁ ।

ଏ ପ୍ରବଚନ ଶୁଣିବା ପାଇଁ ନବମାଳିକାର ସୂକ୍ଷ୍ମଶରୀର ନଥିଲା । କାରାଗାର କକ୍ଷ ପ୍ରାଚୀରରେ ଉଦ୍‌ଭାସିତ ହୋଇ ମିଳାଇଯିବା ଉପରେ ସେ ରୂପଶ୍ରୀ... ଏତିକିବେଳେ ଗୋଟାଏ ମର୍ମାନ୍ତିକ ଦୃଶ୍ୟ ଘଟିଗଲା ।

ପ୍ରେତାତ୍ମା ନବମାଳିକାର ସୂକ୍ଷ୍ମ ଶରୀରକୁ ନେଇଆସି ବାସୁଦେବ ଓ ନବମାଳିକା ସାକ୍ଷାତ୍‌କାର ସୃଷ୍ଟି କରିଛି ବୋଲି ଆତ୍ମସନ୍ତୋଷ ଲାଭ କରୁଥିଲା । ତାହାରି ଉଦ୍ଦାମତାରେ ସେ ଅବଲୁପ୍ତ ହୋଇଯିବା ପୂର୍ବରୁ କହି ଉଠିଲା– ଚାଲ ରାଜ୍ୟଲକ୍ଷ୍ମୀ, ଏଗୁଡ଼ାକ ଜାତିର କୁଳାଙ୍ଗାର, କାରାଗାର ହିଁ ଏମାନଙ୍କର ଯୋଗ୍ୟସ୍ଥାନ, ଚାଲ– ।

ନବମାଳିକାର ଅସ୍ପଷ୍ଟ ଶରୀର ପୁଣି ଜଳିଉଠିଲା । ଆଖି ଉତ୍ତପ୍ତ । ବଦନ ମଣ୍ଡଳରେ ସଂସାରଯାକର ଘୃଣା ଓ କ୍ରୋଧ । ସେ ମୁଖଗହ୍ୱରରୁ ବଜ୍ର ଫାଟି ଆସିଲା–

'ସ୍ତବ୍ଧ ହୁଅ ପ୍ରେତପୁରୁଷ । ପ୍ରେତ ହୋଇ ବି ଖୋସାମତି କରିବାର ଲୋଭ ସମ୍ଭାଳି ପାରିନ ? ରାଜ୍ୟଲକ୍ଷ୍ମୀ ? ହୁଁଃ– ଶରୀର ନାହିଁ, କାମନା ନାହିଁ, ଭବିଷ୍ୟତକୁ ଆକାର ପାଇବ କି ନାହିଁ ଜଣାନାହିଁ, ଅଥଚ କହିଦେଉଛ ମୁଁ ରାଜ୍ୟଲକ୍ଷ୍ମୀ ଆଉ ନମସ୍ୟା । ବାସୁଦେବ ଏ ଜାତିର କୁଳାଙ୍ଗାର ? ଯାହା ସେ କହିଲେ ଐତିହାସିକ ଅନୁଶାସନରେ ଆଜି ସେ କାରାରୁଦ୍ଧ । ଜାଣ– ଇତିହାସ ଗୋଟାଏ ଘାଟରେ ବସି ନୌକା ମେଲାଏ ନାହିଁ ଅନନ୍ତକାଳର ବାରିପ୍ରବାହ ଉପରେ... ଆଜି ଏ ଘାଟରେ ତ ଶହେବର୍ଷ ପରେ ଅନ୍ୟ ଘାଟରେ.. ସେ ପୋତ ଖେଳାଏ, ପାଲ ବାନ୍ଧେ, କି କାତ ସଜାଡ଼େ । ଏତେ ସାହସ ଯେ କହିଦେଲ କୁଳାଙ୍ଗାର ?'

ତାଙ୍କର ସାହିତ୍ୟ ସୃଷ୍ଟି ପରୀକ୍ଷା କରିଛ ? ବଚନ– ପ୍ରବଚନ ପରୀକ୍ଷା କରିଛ ? ସଂସ୍କୃତିକୁ ତାଙ୍କର ଦାନ କଳନା କରିଛ ? ଏତିକି ତାଙ୍କର ଭୁଲ୍ ଯେ ସେ ଗୋଟାଏ ସ୍ଥାନରେ ଅଟକିଗଲେ ନାହିଁ– ଚାଲିଲେ– ତେଣୁ ମହାକାଳ ତାଙ୍କୁ ସୁସ୍ଥିର କରିବା ପାଇଁ ସାମୟିକ ବିଶ୍ରାମ ଖଞ୍ଜି ଦେଇଛି । କିଏ ଜାଣେ ଏଇ ବିଶ୍ରାମରୁ ସେ ପାଇବେ ଅଦ୍ଭୁତ ଜାଗୃତି, ଅଦ୍ଭୁତ ଶକ୍ତି... ଯାହାର ବିନିମୟରେ ତାଙ୍କରି ପରାମର୍ଶରେ ଏ ରାଜ୍ୟ ଆହୁରି ସମୃଦ୍ଧ ହେବ ?·

ଛାୟାମୂର୍ତ୍ତି ଅପସରି ଗଲା । ଅତ୍ୟଧିକ ଗ୍ଲାନିଭାବରୁ ବୋଧହୁଏ ସେ ନଇଁପଡ଼ିଲା । ତାହାହିଁ ଥିଲା ବାସୁଦେବଙ୍କ ପ୍ରତି ତା'ର ପ୍ରଣାମ ।

ନବମାଳିକାର ସ୍ଥୁଳ ଶରୀର କ୍ରମେ ଚେତନା ଚଞ୍ଚଳ ହେଲା । ମୁଦି ରହିଥିବା ଆଖି ଦୁଇଟି ଫିଟିଆସିଲା । ସାଧା ଖଟ ଖଣ୍ଡେ, ତା' ଉପରେ ଏକ ପରସ୍ତିଆ ଚାଦର ଖଣ୍ଡେ । ମଥା ତଳେ ପାତଳା ତକିଆ । ଶ୍ରୀହୀନ ଶଯ୍ୟା, ତପସ୍ୱିନୀର କଠୋର ସାଧନା ।

ନବମାଳିକା ଆଲୁଳାୟିତ କେଶର ବିପର୍ଯ୍ୟସ୍ତ ଲହରୀକୁ ହାତରେ ଠେଲିଦେଇ ଦଉଡ଼ିଗଲେ ଚିର ଶାନ୍ତିର ଆବାସ ଠାକୁରଙ୍କ ଘର ଭିତରକୁ...

ମାଆ ଆଉ ଯୋଗୀ...

ପ୍ରାର୍ଥନାରତ ତାଙ୍କ କଣ୍ଠରୁ ଉଚ୍ଚରିତ ହେଲା– "ଆଃ, ବହୁ ସମସ୍ୟା, ବହୁ ନିଷ୍ପତ୍ତି, ବହୁ ବିଚାର, ବହୁ ଯନ୍ତ୍ରଣା, ସମତା ସାମଞ୍ଜସ୍ୟହୀନ ରାଜନୀତି, କାହାକୁ ସନ୍ତୋଷ, କାହାକୁ ରୋଷ, ସର୍ବପଥ ଦେଇ ଗୋଟାଏ ନାରୀ ଶାସନର ଶୀର୍ଷରେ, କେତେ ବା ସଂଗ୍ରାମ କରିବ ? ପ୍ରଭୁ– ସମ୍ଭାଳି ନିଅ । କେତେ ଜ୍ଞାନୀ ବିଜ୍ଞାନୀ, କେତେ ଦୁସ୍ଥ ଦରିଦ୍ର, କେତେ ଲୋଭୀ ତସ୍କର, ଟାଉଟରଙ୍କ ଗହଣରେ ଯିବାକୁ ପଡୁଛି, ଶାନ୍ତି ଦିଅ, ଶକ୍ତି ଦିଅ ମା–

ନା ନା, କୁଳାଙ୍ଗାର ବୋଲି ଏ ମହତ୍‌ଜନମାନେ କାରାବାସୀ ନୁହନ୍ତି । ଏମାନେ ସ୍ୱର୍ଣ୍ଣପିଣ୍ଡ । ଏତିକି ମୁଁ ଆଶା କରୁଥିବି ମତେ କନ୍ୟା ରୂପେ ଗ୍ରହଣ କରି ଏମାନଙ୍କ ହାତ ମୋ ହାତକୁ ପ୍ରସାରିତ ହୋଇଆସୁ । ଏକ ବଦ୍ଧାଞ୍ଜଳି ଭିତରେ ଜାତିର କାର୍ଯ୍ୟକ୍ରମ ରୂପାୟିତ ହେଉ ଶତ ପୁଷ୍ପ ଶୋଭନରେ– ଏତିକି ପ୍ରାର୍ଥନା ପ୍ରଭୁ ।

କବାଟରେ ଠକ୍ ଠକ୍ ଶବ୍ଦ– ବୋଧହୁଏ ଜରୁରୀ, ଶାସନ କାର୍ଯ୍ୟର କୌଣସି ଅତି ଅସ୍ୱାଭାବିକ ପରିସ୍ଥିତି ।

ଧ୍ୟାନ ଶେଷ ହୋଇ ଯାଇଥିଲା । ନବମାଳିକା ମୃଗଚର୍ମ ଉପରୁ ଉଠିଆସି କବାଟ ଖୋଲିଦେଲେ ।

ଆଗରେ ସେକ୍ରେଟେରୀ ।

– କଅଣ କିଛି ଜରୁରୀ ?– ନେତ୍ରୀଙ୍କର ପ୍ରଶ୍ନ । ସେକ୍ରେଟେରୀ ଇଙ୍ଗିତରେ ବୈଠକଖାନାକୁ ଡାକିଲେ ।

ସଂଗୋପନେ କଥାବାର୍ତ୍ତା–

ପଲିସି ମ୍ୟାଟ୍‌ର... ଉପରୁ ନିର୍ଦ୍ଦେଶ ଆସିଛି, ଆପଣଙ୍କ ବିବେଚନାରେ ଯଦି କାହାର କାରାମୁକ୍ତିରେ କିଛି ଅନିଷ୍ଟ ନଘଟେ, ତେବେ ସେ କ୍ଷେତ୍ରରେ ଆପଣଙ୍କର ଜଜ୍‌ମେଣ୍ଟ୍ ପୂର୍ଣ୍ଣମାତ୍ରାରେ ସମର୍ଥନ ପାଇବ ।" ସେକ୍ରେଟେରୀ ଏତିକି କହି ନୀରବ ହେଲେ– ଅପେକ୍ଷା କଲେ ପ୍ରତିକ୍ରିୟାକୁ...

ଉଚ୍ଛ୍ୱସିତ ଆନନ୍ଦାଶ୍ରୁ ଗଡ଼ିଆସିଲା ନେତ୍ରୀଙ୍କର ଦୁଇ ନେତ୍ରରୁ । ଆଶ୍ଚର୍ଯ୍ୟ !!

x x x

ବାସୁଦେବ ଆସି ଛିଡ଼ାହେଲେ ମୁକ୍ତ ପ୍ରାଙ୍ଗଣ ଉପରେ... ଉଡ଼ନ୍ତା ଘର– ବ୍ୟାକୁଳ ପକ୍ଷୀ ଉଡ଼ିଯାଉଥିଲା ମହାକାଶ ବକ୍ଷରୁ ପକ୍ଷ ପିଟି... ନିଜ ନୀଡ଼ର ସୁଗନ୍ଧ ବାରି ଆଗକୁ ଯୋଜନ ଯାଏ ନୀଳ ଗଗନର ପଥ ।

ବାସୁଦେବ ହସିଦେଲେ । କହିଲେ ସାଥୀମାନଙ୍କୁ – ଯେଉଁମାନେ ଆସିଥିଲେ ସଂଖୋଳି ନେବାକୁ – 'ହଉ ଚାଲ ।'



# ଫାସିଷ୍ଟ ବଗିଚା ଓ ଫାଜିଲ୍ ଫୁଲ

ପଚାଶ ବର୍ଷ ପୂରିଗଲେ ମଣିଷ ମନ ତୀକ୍ଷ୍ଣ ହୋଇଯାଏ – ଯାହା କିଛି ତାହାର ଚାରିପଟେ ଦେଖାଯାଇଛି, ସେସବୁକୁ ଦେଖିବାକୁ ଗୋଟାଏ ଅନନ୍ୟ ସାଧାରଣ ଭାବାବେଶରେ ।

ତା'ପୂର୍ବର ମନଟା ଥାଏ ଉଦ୍‌ବେଳିତ ଅବସ୍ଥାରେ... ଯିମିତି ନୌକା ମଝି ସିଆର ଫୁଲା ଜଳର ଚାରିଆଡ଼ ଚଞ୍ଚଳତା ।

ସେ ବୟସ ଆଉ ଏ ବୟସର ଏଇ ପାର୍ଥକ୍ୟ ବିଷୟରେ ଏକ ପ୍ରକାର ତନ୍ଦ୍ରାଛନ୍ନ ଭାବ ଘେନି ଚିନ୍ତା କରୁଥିଲେ ଶିଳ୍ପୀ ଓ ମନନଶୀଳ ସାଧକ ସୁବ୍ରତ ରାୟ ।

ସେ ଖୋଜୁଥିଲେ ତାଙ୍କର କଅଣ ଆଉ ଅବଶେଷ ରହିଲା, ଯାହାର ଅପ୍ରାପ୍ତି ଘେନି ସେ ଅଶାନ୍ତ ହେବେ ଜୀବନରେ । ରାଶି ରାଶି ଶିଳ୍ପସମ୍ଭାର ସୃଷ୍ଟି କରିଛନ୍ତି । କେତେ ତୈଳଚିତ୍ର, କେତେ ଗ୍ରାଫିକ୍ ଆର୍ଟ... କେତେ ସ୍ଥାପତ୍ୟ, କେତେ ପଲ୍ଲୀଚିତ୍ର, ଲାଣ୍ଡସ୍କେପ୍ ପୁଣି ଖୋଦେଇ ମୂର୍ତ୍ତି । ସମସ୍ତଙ୍କୁ ସେ ଧରି ରଖିପାରି ନାହାନ୍ତି । ସେହି ଗନ୍ତାଘରୁ କିଏ କେତେ ନେଇ ଯାଇଛନ୍ତି । ତଦପେକ୍ଷା କିଏ କେତେ ଚୋରିକରି ନେଇଛନ୍ତି ସେମାନଙ୍କ ସ୍ମୃତିକୋଷ ଭିତରେ ।

ଆଜି ସେ ପଥଶ୍ରାନ୍ତ । ମୃତ୍ୟୁର ପରମ ଆଶ୍ଳେଷକୁ ସେ ଅପେକ୍ଷା କରି ବସିଛନ୍ତି । ଯୌବନରେ ସେ ଥିଲେ ଅତନ୍ଦ୍ର ରସିକ । ରସର ପ୍ଲାବନ ଯେଉଁଠି, ସେଇଠି ସେ ହୋଇଯାଆନ୍ତି ପ୍ଲାବିତ ଜଳଧାରା । ଆଃ... କି ଅଚିନ୍ତନୀୟ ସେ ସ୍ମୃତି !!

ଆରାମଚୌକି ଉପରେ ସେ ଢଳିପଡ଼ିଲେ । ଡାହାଣ କରକୁ ଗୋଟିଏ ଛୋଟ ପୁଷ୍ପବାଟିକା । ବଡ଼ର ବ୍ୟାପକତାକୁ ସେ ପସନ୍ଦ କରନ୍ତି ନାହିଁ । ଛୋଟ... ଛୋଟ କଳା କୋଇଲିଟିଏ... ଛୋଟ କୁକୁଡ଼ା ଛୁଆ... ଏଇ କାଲି ମାତ୍ର ଅଣ୍ଡା ଫୁଟାଇ ସେ ବାହାରି ଆସିଛି– କି କୋମଳ ତା'ର ଦେହ ଭଙ୍ଗିମା ! ସିମିତି ଛୋଟ ଗୋଷ୍ପଦ ନୀର... ଏମାନେ ଛୋଟ ସତ, ମାତ୍ର ଭୂମାକୁ ବକ୍ଷରେ ଗ୍ରହଣ କରିନେବା ପାଇଁ ଏମାନଙ୍କର ଶକ୍ତି ଅଛି ।

ପଚିଶ ବର୍ଷ ତଳେ ଶୈଳ ଚିଠି ଲେଖିଥିଲା । ବହୁବାର ସୁବ୍ରତ ସେ ଚିଠିଟି ପଢ଼ିଛନ୍ତି... ଅଶ୍ରୁ ଧାରଧୌତ ଏକ ଛିନ୍ନପୃଷ୍ଠା... ତଥାପି କ୍ଳାନ୍ତି ଆସିନାହିଁ । ପୁଣି ସେ ପଢ଼ିଲେ ।

ଟେବୁଲ ଉପରେ ଥୁଆ ପ୍ରଚକ୍ଷୁ ଆଖିଉପରକୁ ଟେକି ଆଣିଲେ ।

ସୁବ୍ରତ, କି ଶାନ୍ତି, କି ତୃପ୍ତି, କି ନୈଶ୍ଚିନ୍ତ୍ୟ– ତୁମେ ଉପଲବ୍ଧି କରି ପାରିବ ? ଭଗବାନଙ୍କଠାରେ ନତମସ୍ତକ ହୋଇଯାଏ, ଯେତେବେଳେ ଏକୁଟିଆ ବସି ଭାବେ କି ସୁନ୍ଦର ଓ ସଂପୂର୍ଣ୍ଣ କରିଦେଲେ ମୋ ଜୀବନକୁ । ସୁବ୍ରତ, ତିନିବର୍ଷ ତଳେ ଏଇ ତାରିଖରେ ମୁଁ ନିଃସ୍ୱ ଥିଲି । ଅବସର ମୁହୂର୍ତ୍ତରେ ନିଜକୁ ଚାହିଁଲେ ନୈରାଶ୍ୟରେ ହୃଦୟ ସଙ୍କୁଚିତ ହେଉଥିଲା । ଅସୀମ ଜଳଧିରେ ଅସହାୟ ଅବସ୍ଥାରେ ଭାସୁଥିଲା ମୋ

ଜୀବନତରୀ । ଏକାକୀ କେଉଁଠି ବସିଲେ ଆଖିରୁ ଲୁହ ଝରୁଥିଲା; କିନ୍ତୁ ଚାରୋଟି ଦିନ ପରେ, ୨୯ ତାରିଖ ଅଗଷ୍ଟ ମାସରେ ସବୁ ପରିବର୍ତ୍ତିତ ହୋଇଗଲା ।

କିମିତି ଆସିଲ ସୁବ୍ରତ ? କିଏ ତୁମକୁ ଟାଣି ଆଣିଲା ? ନା, ନା, ମୁଁ ନୁହେଁ, ଦୈବ ନିର୍ଦ୍ଦେଶରେ ନିଶ୍ଚୟ ଆସିଲି । କାଉଁରୀକାଠିଟିଏ ସାଙ୍ଗରେ ଆଣିଥିଲ ପରା ! ତାହାରି କୁହୁକ ସ୍ପର୍ଶରେ ଶୁଷ୍କବୃନ୍ତରେ କଳିକା ବିକଶିଲା । ସୁବ୍ରତ, ଏ ଅନୁଭୂତି ଜୀବନର ସତେଇଶଟି ବର୍ଷ ଭିତରେ କେବେ ମୁଁ ପାଇ ନଥିଲି । ଆଜି ମୁଁ ବଡ଼ ତୃପ୍ତ । କୌଣସି ଦୁଃଖ ଅଶାନ୍ତି ଯେ ନାହିଁ, ତାହା କହୁନାହିଁ । ତଥାପି ନିରାଶ ଭାବ ମୋର ଆଉ ନାହିଁ ।

ଭଗବାନଙ୍କଠାରେ ଏମିତି ମିନତି, ଜୀବନର ଶେଷ ପର୍ଯ୍ୟନ୍ତ ତୁମଠାରେ ଦୃଢ଼ବିଶ୍ୱାସ ରଖିବାକୁ ମତେ ସୁଯୋଗ ଓ ଶକ୍ତି ଦିଅନ୍ତୁ । ଯେତେବେଳେ କୌଣସି ଧକ୍‌କା ଆସୁଛି, ମୁଁ ପଡ଼ିଯାଇନାହିଁ । ଆଘାତ ଆସିଲେ ଭାଙ୍ଗି ପଡୁନାହିଁ । ଆଖି ବୁଜି ଧ୍ୟାନ କରୁଛି । ଦେଖୁଛି ମୁଁ ତ ଏକା ନୁହେଁ,– ମୋ ପଛରେ ଜଣେ ସବୁବେଳେ ଅଛନ୍ତି । ଦୁର୍ବଳ ହୋଇ ପଡ଼ିଲେ, ଆଗେଇ ଚାଲିବାକୁ ବଳ ନ ପାଇଲେ, ହାତ ଧରି ସେହି ପୁରୁଷ ଚଲେଇନେବେ । ଓଃ, ସେତିକି ଭାବିବା ମାତ୍ରେ ସବୁ ଦୁଃଖ ଦୁଶ୍ଚିନ୍ତା ନିଜେ ନିଜେ ଦୂର ହେଇଯାଇଛି ।

ଆଜି ହୃଦୟ ଖୁବ୍ ଉଦ୍‌ବେଳିତ । ଲେଖିବାକୁ ଶକ୍ତି ପାଉନାହିଁ । ସୁବ୍ରତ, ତୁମେ ପାଖରେ ଥିଲେ କେବଳ ତୁମକୁ ଘଣ୍ଟା ଘଣ୍ଟା ଚାହିଁ ରହନ୍ତି । ତୁମ ମୁଖର ଭଙ୍ଗୀ, ନୟନର ନୃତ୍ୟ ଦେଖିଦେଖି ଆତ୍ମବିଭୋର ହୋଇଯାନ୍ତି ।

ତୁମେ ସେପ୍ଟମ୍ବରରେ ଆସିବ ? ବର୍ଷା ବୋଧହୁଏ ଛାଡ଼ିଯାଇଥିବ ! ହଁ, ଶୀଘ୍ର ଛାଡ଼ିଯାଇ ବି ଅସହ୍ୟ ହେଲାଣି । କଅଣ ଅସହ୍ୟ ହେଲାଣି କହିଲ ? କହିପାରିବ ?

ଶିଳ୍ପୀକୁ ଦେଖିବି, ସାଙ୍ଗରେ ଆଣିବ କେତୁଟା ଶିଳ୍ପର ନମୁନା– ଯା ଭିତରେ ଯାହା ଆଙ୍କିଥିବ । ତୁମେ ତ ଫୁଲର ରସିକ । ଫୁଲମାଳାରେ ଶୟନଶଯ୍ୟା ବିଭୂଷିତ କରିବାକୁ ତୁମର ଯେ କେତେ ଅନୁନୟ ମତେ... ମନେପଡ଼େ ?

ମୁଁ ଭଲ ଅଛି । କୁକୁରଛୁଆଟାଏ ପୋଷିଛି ଚୋର ଭୟରେ । ନାଁ ଦେଇଛି 'ବୀରା' । ବୀରାଙ୍ଗନାଟିଏ । ଖୁବ୍ ସାହସ । ବହୁତ ଭୁକୁଛି ।

ତୁମ ଖବର ଲେଖ– ତୁମ ହୃଦୟର ଖବର, ମନର ଖବର, ଦେହର ଖବର, ମସ୍ତିଷ୍କର ଖବର । ସବୁ ମତେ ଦରକାର । କେଉଁଟାର ଅଭାବ ରହିଗଲେ ଅତୃପ୍ତ ଲାଗିବ । ଥାଅ, ରହିଲି ସୁବ୍ରତ...

ତୁମର ଶୈଳ

ଏମିତି କେତେ ଲିପି । ପ୍ରତିଭା ପୂଜାର ପ୍ରଣିପାତ ନୈବେଦ୍ୟ, କେତେ ହୃଦୟର କେତେ କୁହା ଅକୁହାର ଝିଲିମିଲି ଚାନ୍ଦିନୀ-ଧୌତ ଖଣ୍ଡ ଖଣ୍ଡ ଚିଠି... ଚିଠି ନୁହଁନ୍ତି ତ, ଆତ୍ମପ୍ରତିମ୍ବିତ ମୁକୁରମାଳା ।

ସେପଟକୁ ଥାକ ଥାକ ଫାଇଲ୍ । ବର୍ଷ ବର୍ଷ ଧରି ନାନା ବିଷୟରେ, ନାନା ପ୍ରସଙ୍ଗରେ ଚିଠିର ସଞ୍ଜୀକରଣ । ସୁବ୍ରତ ଦୀର୍ଘଶ୍ୱାସ ପକାଇ ଉଠିଲା । ବାରଣ୍ଡାପଟ ଫୁଲଗଛରେ ଫୁଲ ଫୁଟିଛି– କେତେ ବର୍ଣ୍ଣର କେତେ ରଙ୍ଗର । ଘେରିଆସିଛି ଛୋଟ

ପାଚିରୀଟିଏ । ଛୋଟ ବଗିଚା ହେଲେ ବି ତା'ର ପ୍ରତ୍ୟେକଟି ଫୁଲଗଛକୁ ଆଉଁଷି ଯାଇଛି ଶୈଳ । ଶୈଳ ଆଜି ତିରୋହିତ, କାୟା ତା'ର ଲୁଚିଯାଇଛି– କିନ୍ତୁ ସ୍ମୃତି... ସେ ତ ଅମର ।

ଆଉ ଏ ଶ୍ରୀବନ୍ତୀ । ସୁନାଛାଉଣୀ ରୂପ ତା'ର... ସେ ବି ଅନ୍ତର୍ହିତା । ତା'ର ଆସିବାର ଆଲୋକ ପଥରେ ଏଇ ଫୁଲଗୁଡ଼ିକ ତାକୁ ସ୍ୱାଗତ କରିଥିଲେ । ସୁବ୍ରତ ବୃନ୍ତଚ୍ୟୁତ କରି ଗୋଟିଏ ଉପହାର ନିଶ୍ଚୟ ଦେଇଥିବେ । ହାତର ରଙ୍ଗଥାଳିଟି ପୁଣି ଉଠି ଯାଇଥିବ ଊର୍ଦ୍ଧ୍ୱକୁ, ଭୂର ରୂପନେବାକୁ... ଶ୍ରାବନ୍ତୀର ଚିଠି... ବଡ଼ ଦୁଃଖିନୀ । ହେଲେ ସୁବ୍ରତଙ୍କର ସାଧନାକୁ ସେ ଦୀପ୍ତ କରିଥିଲା ।

ଶ୍ରୀଚରଣେଷୁ,

ତମେ ପରା କବିତା ଲେଖ କେବେ କେମିତି ? ମୋର ଆଜି ଖାଲି କବିତା ମନେ ପଡୁଛି ।

"ଯତ ଶୁନି ସେଇ ଅତୀତ କାହିନୀ,
ପ୍ରାଚୀନ ପ୍ରେମେର ବ୍ୟଥା,
ଅତି ପୁରାତନ ବିରହ ମିଲନ କଥା,
ଅସୀମ ଅତୀତେ ଚାହିତେ ଚାହିତେ
ଦେଖାଦେୟ ଅବଶେଷେ...
କାଲେର ତିମିର ରଜନୀ ଭେଦିୟା ତୋମାର
ମୂରତି ଏସେ
ଚିର ସ୍ମୃତିମୟୀ ଧ୍ରୁବତାରକାର ବେଶେ ।"

ମୋ କଥା ମନେପଡ଼େ ? ଏ ପ୍ରଶ୍ନଟା ଚିରନ୍ତନ, ନା ? କିନ୍ତୁ କଅଣ ମନେପଡ଼ିବ ? କଅଣ ଆମ କଥା ?

"ଅମରା ଦୁଜନେ ଭାସିଆ ଏସେଛି
ଯୁଗଲ ପ୍ରେମେର ସ୍ରୋତେ
ଅନାଦି କାଲେର ହୃଦୟ-ଉତ୍ସ ହତେ ।
ଆମରା ଦୁଜନେ କରିୟାଛି ଖେଲା
କୋଟି ପ୍ରେମିକେର ମାଝେ
ବିରହ ବିଧୁର ନୟନ ରଖିଲେ, ମିଲନ ମଧୁର
ପୁରାତନ ପ୍ରେମ ନିତ୍ୟନୂତନ ସାଜେ ॥"

ପଢ଼ିଲେ କିଏ ହୁଏତ ଭାବିବ ଏ ପ୍ରେମ–ପତ୍ର; କିନ୍ତୁ ତମେ ବି କ'ଣ ସେଇଆ ଭାବୁଛ ? ମୋର ଗୋଟାଏ ଅତୀତ ଥିଲା ଶିଳ୍ପି ! ତମମାନଙ୍କ ଗଣନା କହେ, ମୁଁ ସେଇ ଅତୀତର ଶୋଚନାରେ ବର୍ତ୍ତମାନର କର୍ତ୍ତବ୍ୟ କରିପାରୁନି । ସେ କଥା ସତ । ହଁ, କ'ଣ କହୁଥିଲି ଅତୀତ କଥା– ବହୁତ ପ୍ରେମଚିଠି ଲେଖିଛି, ଯୋଉଗୁଡ଼ାକ କି ଓଡ଼ିଶାର ଅଧିକାଂଶ ପାଠପଢୁଆ ଲୋକ ତିରିଶ ଥରରୁ ଅଧିକା ଦେଖିଥିବେ, ପଢ଼ିଥିବେ । ସେଥିରେ ଥିଲା କେତେ ନାକ... କାନ୍ଦୁରା କଥା– ଯେମିତି... ତୁମକୁ ଚାହିଁଛି, ନ ଦେଖିଲେ ମରିଯିବି... ଇତ୍ୟାଦି । କେତେ ରିମ୍ କାଗଜ ହେବ କେଜାଣି– ସେମିତି ଟ୍ରଙ୍କ୍‌ରେ ଟ୍ରଙ୍କେ ସାଇତିଛି । ତା' ଭିତରେ ସିନେମା ଷ୍ଟାର୍‌ଙ୍କ ଯୋଡ଼ି ଫଟରେ 'ଇଉ', 'ଆଇ' ଛାପମରା ରୋମାନ୍‌ସ ବି ଅଛି । ତଳେ 'ତୁମର ସ୍ୱାମୀ' ଲେଖି ଦଖଲ ଜାହିର କରିବାର ଝାନୁ ଓସ୍ତାଦି ବି ଅଛି ।

ପୁଣି ଅଛି କେତେ ବର୍ଣ୍ଣନା, ଫୁଲ ଭଅଁରର କଳ୍ପନା, ରୋମିଓ ଜୁଲିଏଟ୍‌ର ସ୍ୱପ୍ନ– ପାଣି ମାଛର ସମ୍ପର୍କ ।

ଅସହିଷ୍ଣୁ ହୁଅନି ସୁବ୍ରତ ! ପ୍ରେମ ଓ ଦେହ ସଂପର୍କର ଊର୍ଦ୍ଧ୍ୱରେ ତମେ, ତମକୁ ଏଗୁଡ଼ାକ ନ କହିବି ତ କାହାକୁ ଆଉ କହିବି ? ଆମର ପ୍ରେମ କରିବାର ବୟସଟା ହଠାତ୍ ସ୍ଥିର ରହିଗଲା ।– ନ ଯଯୌ ନ ତସ୍ଥୌ... ପ୍ରେମ ବୋଲି ବୋଲିବାଟା ଭାବିଲେ ଆଜି

ହସ ମାଡୁଛି । ସେଇଥିପାଇଁ ମୁଁ ସେ ପ୍ରେମ-ଚିଠିର କଥାଗୁଡ଼ାକ ରୋମନ୍ଥନ କରୁଛି ।

କୋଉ ପରମ କି ଚରମ ମୁହୂର୍ତ୍ତରେ ତମେ ଏ ବିଷନୀଳ ଦେହଟାକୁ ପବିତ୍ର ଦେବାଳୟ କହି ସ୍ୱର୍ଗ, ଭୋଗର ଊର୍ଦ୍ଧ୍ୱରେ ରଖିଦେଲ ମୁଁ ଜାଣିନି । କିନ୍ତୁ ସେମିତି କଅଣ ଘଟିଗଲା । ଏଥିରେ ମୁଁ ପ୍ରେମପତ୍ର ଲେଖିବି ତୁମକୁ ? ବହୁତ ତ ତୁମକୁ ଲେଖିଛି– ସେଥିରେ କଅଣ ଥାଏ ତମେ ଜାଣିଥିବ; କିନ୍ତୁ ପ୍ରେମ ଥିଲା କହି ମୋର ଅପମାନ କେବେ କରିବ ନାହିଁଟି ?

ଏଗୁଡ଼ାକ କଅଣ ମୁଁ ଲେଖୁଛି କହତ ? ଗୋଟାଏ ଗୋଟାଏ ସ୍ଥାନ, ଗୋଟାଏ ଗୋଟାଏ ବିଶେଷ ମୁହୂର୍ତ୍ତ, ବ୍ୟକ୍ତିବିଶେଷଙ୍କ ସଂସ୍ପର୍ଶରେ ଖୁବ୍ ଅର୍ଥବହ ହୋଇଉଠେ– ନା ? ସେଇ ଜ୍ୟୋତ୍ସ୍ନା, ନକ୍ଷତ୍ର, ସେଇ ଆକାଶ ଓ ଧରିତ୍ରୀ, ସେଇ ଅନ୍ଧାର ଓ ଆଲୋକର ଅର୍ଥ ସବୁଦିନ ତ ସମାନ ନୁହେଁ । ସେଇଥିପାଇଁ ମୁଁ ବାବଦୂକ ପାଲଟିଛି ।

ଆଜି ଏଇନେ ତମେ ଷ୍ଟେସନ ଛାଡ଼ିନଥିବ । ଈଶ୍ୱର କଲ୍ୟାଣମୟ । ସେ ତମର ପଥ ନିରୁପଦ୍ରୁତ କରନ୍ତୁ । ତୁମକୁ ଦୀର୍ଘାୟୁ କରନ୍ତୁ । ଶୀତଳ ପବନରେ କେତେ କଅଣ ମନକୁ ଆସୁଥିବ । ମନେ ପଡୁଥିବ ନିଜର ତଥା ମୋର ବିଚିତ୍ର ଜୀବନର ଇତିବୃତ୍ତ । ଏଥିରେ ଜାଗତିକ ଦୁଃଖ ଶୋକ ପ୍ରବୃତ୍ତି ନିବୃତ୍ତିର ଧାରା କିଛି ନଥିବ । ଏକ ଶାନ୍ତ ସମାହିତ ଜୀବନ ସଙ୍ଗୀତ ନୁହେଁ ? ହୃଦୟ ପରିପୂର୍ଣ୍ଣ ।

ମୋର ଅଭାବ କିଛି ନାହିଁ– ନା, କିଛି ନାହିଁ ବୋଲି କହିବିନି । ତେବେ ସେ ଅଭାବର ଜ୍ୱାଳା ବା ଦହନ ନାହିଁ । ଲକ୍ଷ୍ୟ ପାପ ତାପ, କୁଟିଳତାଭରା ଏଇ ମନଟା ଗୋଟାଏ ଲକ୍ଷ୍ୟର ଧ୍ୟାନରେ ସ୍ଥିର, ପବିତ୍ର ହୋଇଯାଏ । ସେ ଲକ୍ଷ୍ୟ ମୋର ତୁମେ ସୁବ୍ରତ ! କେତେଜଣ ଏତକ ପାଆନ୍ତି କହିଲ ?

ତୁମର ଶ୍ରାବନ୍ତୀ

ପ୍ରଚକ୍ଷୁ ତଳେ ଆଖିର ସାମାନ୍ୟ ଜ୍ୟୋତି ଝାପ୍‌ସା ହୋଇଗଲା ସୁବ୍ରତଙ୍କର । ଲୁହ ନୁହେଁ ତ ? ସେ କାନ୍ଦିବେ କାହିଁକି ? ଏପରି ପରିପୂର୍ଣ୍ଣ ଜୀବନ କାହାର ଅଛି ? ନା, ସେ କାନ୍ଦିବେ ନାହିଁ । ଏଇ ଯେ ଶୈଳ, ଶ୍ରାବନ୍ତୀ, ପୁଣି ସୁଚରିତା... ଏମାନେ ଏଇ ବାରଣ୍ଡାରେ ବସି ଯାଇଛନ୍ତି । ଦୁଷ୍ଟ ଜହ୍ନ ହସିଦେଇ କ୍ରମେ ଫିକା ହୋଇଯାଏ । ରାତି ସରିଆସେ । ଫୁଲ କେତୋଟି ଶିଶିର ଶୋଭାରେ ସ୍ନାତ ଥା'ନ୍ତି । ସେଇ କାକରଭିଜା ଲତାର ପତ୍ରେ ପତ୍ରେ ହାତ ଚଳାଇ ଆଣନ୍ତି ଶିଳ୍ପୀ ସୁବ୍ରତ ରାୟ । ମନେ ମନେ କହନ୍ତି– ଫୁଲଠାରୁ ଆଉ କୋମଳ ଓ ସୁନ୍ଦର ସୃଷ୍ଟି କିଛି ଅଛି ?

– 'ଅଛି, ମୁଁ ଆଉ ତୁମେ– '

'– ଦୂର୍ ପାଗଳୀ, ତମେ କେତେବେଳେ ?'

'– ସମୟ କଅଣ ସ୍ଥିର ଥାଏ ଯେ କହିବି ଏତିକି ଘଣ୍ଟା ଏତିକି ମିନିଟ୍, କାହିଁ ଦେଖାଅ ତ ନୂଆ କଅଣ ସବୁ ଆଙ୍କିଛ ? ଏଇ ଦୁଷ୍ଟ ଫୁଲଗୁଡ଼ାକ, ଏଇ ଛୋଟ ବଗିଚାଟି, ତା' ଉପରେ ଚହଲି ଯାଇଥିବା ପ୍ରଭାତର ସୁନା କିରଣ, ରାତ୍ରିର ଜ୍ୟୋତ୍ସ୍ନା ଧାର, ସବୁ ତୁମକୁ କ୍ରମେ କ୍ରମେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମୋ ପାଖରୁ ଦୂରକୁ ନେଇଯାଉଛନ୍ତି ... ତା' ହବନି... ତୁମେ ଏକାନ୍ତ ମୋର– ହଁ ମୋର ।

ଏ ଥିଲା ସେଦିନ ସଂଧ୍ୟାର କଳାରାଗିଣୀ ସୁଚରିତାର । ସୁବ୍ରତ ଆଖି ପୋଛିଆଣି ଗୋଟିଏ ନିର୍ଦ୍ଦିଷ୍ଟ ଫାଇଲ୍ ଉପରକୁ ହାତ ବଢ଼ାଇଲେ । ସୁଚରିତାର

ପତ୍ରାବଳୀ । ସେ କିନ୍ତୁ ହଜିଯାଇଛି, କଟାକ୍ଷ କରି ଅସହନୀୟ ଭଙ୍ଗୀରେ ପଡ଼ିଯାଇଛି ।

ସୁବ୍ରତ ଚାହିଁଲେ । ଫୁଲ ଫୁଟିଛି । ବଗିଚାଟି ଦେଖିଛି ଶୈଳକୁ । ଶ୍ରାବନ୍ତୀ ଘୂରିବୁଲିଛି, ଆଉ ଦୁଚରିତା... ଏଇ ପୁଷ୍ପିତ ଉଦ୍ୟାନ ଭିତରେ– ସମସ୍ତେ ଘୂରି ଘୂରି ବୋଧହୁଏ କ୍ଲାନ୍ତ ହୋଇଗଲେ– ତେଣୁ ନୀରବ ।

ସୁଚରିତାର ଚିଠି...

ପୂଜନୀୟ ! ଆପଣ ବୋଧହୁଏ ଭାବିଛନ୍ତି ମତେ ସଂପୂର୍ଣ୍ଣ ନିଜର କରି ପାରିଲେ । ତାହା ନୁହେଁ । ଆପଣ ପରିହାସରେ କି ସତରେ ବେଳେବେଳେ କହନ୍ତି– 'ସୁଚରିତା, ମୁଁ ବହୁ ବର୍ଷ ହେଲା ତୁମକୁ ଧ୍ୟାନ କରି ବସିଛି ।'

ଏ ଧ୍ୟାନ ଅବଶ୍ୟ ଆପଣଙ୍କର ଭାଙ୍ଗିଛି । ମତେ ପାଇଛନ୍ତି । ସେଇଟା ଗୋଟାଏ ଦୁର୍ବଳ ଅକଳ ଅବସ୍ଥାରେ । ଆପଣ ମୋ ଭିତରେ ଗୋଟାଏ ଗୋପନ ତନ୍ତ୍ରୀ ଦେଖିପାରିଥିଲେ, ଯେଉଁଟାକୁ ମୁଁ ଜାଣିନଥିଲି । ପକ୍କା ଖେଳୱାଡ଼ ପରି ସେଇଟାରେ ହିଁ ଆପଣ ଆଘାତ କଲେ । ମୋ ମନ ଯେ ସର୍ବତୋଭାବେ ଜଣକର ହେବାକୁ ଖୋଜୁଥିଲା, ତାହା ମୁଁ ଅବଚେତନ ମନରେ ଅନୁଭବ କରୁଥିଲେ ବି ଚେତନା ସ୍ତରରେ ବୁଝିପାରୁନଥିଲି ।

ଆପଣ ଯେତେବେଳେ ଏହିପରି ଗୋଟାଏ ପ୍ରସ୍ତାବ ଧରି ମୋ ପାଖରେ ଛିଡ଼ା ହେଲେ, ମୋର ମନେହେଲା ଅନ୍ୟ ପୁରୁଷମାନଙ୍କଠାରୁ ଆପଣ ଭିନ୍ନ ଓ ଆପଣ ଆସିଛନ୍ତି ସର୍ବତୋଭାବେ ମତେ ଗ୍ରହଣ କରିବାକୁ ଓ ସର୍ବତୋଭାବେ ନିଜକୁ ମୋ ପାଖରେ ସମର୍ପଣ କରିବାକୁ । ପ୍ରକାଶ୍ୟରେ ଅବଶ୍ୟ ଏପରି କୌଣସି ଚୁକ୍ତି ଆମ ଦୁହିଁଙ୍କ ଭିତରେ ହୋଇନଥିଲା । କେବଳ ଏହି ବୁଝାମଣା ଭିତ୍ତିରେ ମୁଁ ମୋର ସର୍ବସ୍ୱ ଆପଣଙ୍କୁ ସମର୍ପଣ କରି ନିଜ ପାଖେ କିଛି ନରଖି ।

ଆପଣ ଯଦି ନିତାନ୍ତ ମତେ ଗୋଟିଏ ସାଧାରଣ ସ୍ତ୍ରୀଲୋକ ବୋଲି ଭାବୁଥାନ୍ତି, ତେବେ ଭୁଲ୍ କରିବେ । ଆପଣ ଜାଣନ୍ତି, ଆପଣ ମତେ ପାର୍ଥିବ କିଛି ଦେଇପାରିବେ ନାହିଁ । ଏପରିକି ସହସାଥୀତ୍ୱ ପର୍ଯ୍ୟନ୍ତ ନୁହେଁ । ତେବେ କି ଲୋଭରେ କଳଙ୍କ ଅପବାଦ ସହି ନିଜ ଲୋକଙ୍କୁ ପର କରି ଆପଣଙ୍କ ପଛେ ପଛେ ଗୋଡ଼େଇବି ?

ଅନ୍ୟମାନଙ୍କୁ ଆପଣଙ୍କର ଯାହା ଦେବାର ଅଛି, ଯଥା–ଅର୍ଥ, ଆଶ୍ରୟ, ମନୋଯୋଗ ଇତ୍ୟାଦି ... ସେଥିରୁ କୌଣସିଟା ମୁଁ ସ୍ପର୍ଶ କରିବି ନାହିଁ; କିନ୍ତୁ ମୋତେ ଆପଣଙ୍କର ଯାହା ଦେଲ ବୋଲି ଆପଣ ଶପଥ କରି କହିଥିଲେ, ତାହାରି ଅଣୁ ମାତ୍ର ଅନ୍ୟ କେହି ଯଦି ସ୍ପର୍ଶ କରେ, ତାହା ଆଉ ମୋର ସ୍ପର୍ଶଯୋଗ୍ୟ ହୋଇ ରହିବ ନାହିଁ ।

ମତେ ମୁଗ୍ଧ କରିଛି ଓ ମୋ ଭିତରର ନାରୀତ୍ୱ ଆପଣଙ୍କ ପାଦତଳେ ଢଳି ପଡ଼ିଛି ଦୁଇଟି ଆକର୍ଷଣ ଯୋଗୁ– ପୌରୁଷ ଓ ପ୍ରତିଭା । ତେବେ ଏକଥା ସତ, ବିଶ୍ୱରେ ବହୁ ପ୍ରତିଭାର ଆକାଶଚୁମ୍ବୀ ଜ୍ୟୋତି ରହିଛି, ସେହିପରି ପୌରୁଷର ସ୍ୱାକ୍ଷର ବି କମ୍ ଲୋକଙ୍କର ନାହିଁ ।

ତେବେ କଣ ଗୋଟାଏ ଆପଣଙ୍କର ଅଛି, ଯାହାର ସଂଜ୍ଞା ନାହିଁ କି ତାହା ବୁଝାଇ ହେବନାହିଁ... ଏହି ରହସ୍ୟ ଟିକକର ଦାସୀ ମୁଁ ହୋଇ ଯାଇଛି– ଏଥିରୁ ଉଦ୍ଧାର ନାହିଁ ।

ଆଉ ଏ ଫୁଲ ବଗିଚା ଓ ଆପଣଙ୍କ ହାତର ଅଙ୍କନଶିଳ୍ପ– ଯୁଗେ ଯୁଗେ ରହିଥାଉ; କାରଣ ଏ ଦୁଇଟି ହେଉଛି ଆପଣଙ୍କ ଶକ୍ତିର ଉତ୍ସ ରହିଲି ।

ଏକାନ୍ତ ଭାବରେ
ସୁଚରିତା

ମହାକାଳର ଗର୍ଭ ଭିତରେ ଶୈଳ, ଶ୍ରାବନ୍ତୀ, ସୁଚରିତା ବିଲୀନ ହୋଇଗଲେ । ସବୁ ଶପଥ, ସବୁ ସଂକଳ୍ପ, ବହୁ ଉଚ୍ଛ୍ୱାସ ସେମାନଙ୍କର କୁଆଡ଼େ ଶୂନ୍ୟରେ ମିଶିଗଲା । କେବଳ ହୃଦୟର ସିଆର ସିଆର ଭିତରେ ରହିଗଲା ଏମାନଙ୍କର ସ୍ମୃତିର ଝଲକ ।

ସୁବ୍ରତ ଆଜି ଜରାଜୀର୍ଣ୍ଣ । ପ୍ରତିଭା ମନ୍ଦୀଭୂତ । ଶିଳ୍ପାଙ୍କନ ପାଇଁ ଆଙ୍ଗୁଠି ସିଧାସଳଖ ରହୁନାଇଁ; ଅଥଚ ରକ୍ତ ଶୁଖି ଯାଇ ନାହିଁ । ସେଥିରେ ବହୁଛି ଏବେ ବି ସୃଷ୍ଟିର ଶତଦଳ ।

କଇଁଚିକୁ ଧରି ହାତ ଥରିଯାଉଥିଲେ ବି ସେ ରଙ୍ଗ ବେରଙ୍ଗ କାଗଜକୁ କାଟି ଶୁକପକ୍ଷୀର ଚଞ୍ଚୁ ତିଆରି କରୁଥିଲେ, ଅବା ଗୋଟିଏ ଯୁବତୀର ଆଖି ଡୋଳାକୁ ରୂପ ଦେଉଥିଲେ ।

ଆଖି ସ୍ଥିର । ଜ୍ୟୋତି କ୍ରମେ ଝାଉଁଳି ଆସୁଛି ।

ସେଦିନ ଥିଲା ସେହି କାଳ ଅପରାହ୍ନ ... ଦୂରରେ ମାଇକ୍ ବାଜି ଉଠୁଥିଲା– ଗୋଟାଏ ନୁହେଁ ସହସ୍ର...

ଫାସିଷ୍ଟ ମୁଣ୍ଡ ଟେକୁଛି, ତା'ର ତଣ୍ଟି ଚିପିଦିଅ । ଆମେ ଯାହା କହୁଛୁ ଓ କରୁଛୁ ଅବା କରିବାକୁ ପରିକଳ୍ପନା କରୁଛୁ, ତାହା ଛଡ଼ା ସବୁ ହେଉଛି ଫାସିଷ୍ଟ ।

ବନ୍ଧୁଗଣ ! କିମିତି ଚିହ୍ନିବ ଏ ପାମର ଫାସିଷ୍ଟକୁ ?

ଜନତା ଚିତ୍କାର କଲା– 'ଆମେ କିମିତି ଚିହ୍ନିବୁ, ଏକଥା ଆମର ନେତାମାନେ କହିଦଅନ୍ତୁ ।'

ବକ୍ତା କହିଲେ–

"ଠିକ୍ କଥା, ଆମେ ଚିହ୍ନାଇଦେଉଛୁ । ତମ ନିଜକୁ ଛାଡ଼ି ସବୁଆଡ଼େ ଫାସିଷ୍ଟ ରହିଛନ୍ତି । ତୁମର ଗୋଟାଏ କାନ ଫାସିଷ୍ଟ ହେଲେ ଅନ୍ୟ କାନ ନହୋଇପାରେ । ତୁମର ଗୋଟାଏ ଆଖି ଯଦି ଫାସିଷ୍ଟ ନୁହେଁ, କିଏ ଜାଣେ ଅନ୍ୟ ଆଖିଟା ଫାସିଷ୍ଟ ହୋଇ ନଥିବ ? କାହାକୁ ବିଶ୍ୱାସ କର ନାହିଁ । କାନ କାନକୁ ବିଶ୍ୱାସ ନକରୁ, ଆଖି ଆଖିକୁ ବି ନୁହଁ ।"

ଶ୍ରୋତାମାନେ ଆଖି କାନ ଦରାଣ୍ଡିଲେ । ନିଜ ନିଜର ଇନ୍ଦ୍ରିୟକୁ ଦେଖିଲେ ।

ପୁଣି ଭାଷଣ... ଏଇ ଯେ ସବୁ ତଥାକଥିତ ସାହିତ୍ୟିକ, କଳାକାର, ଶିଳ୍ପୀ ଏମାନେ ରେଜିମେଣ୍ଟେଡ୍ ହେବାକୁ ଚାହୁଁନାହାନ୍ତି । ଭାବିଛନ୍ତି ସେମାନେ ଗୋଟାଏ ସ୍ୱତନ୍ତ୍ରଗୋଷ୍ଠୀ । ତାହା ଏ ଶାସନରେ ହୋଇପାରିବ ନାହିଁ । ମଇ ଚଳେଇ ସବୁ ମାଟିକୁ ସମତଳ କରିଦିଅ । ହଁ ଶୁଣ ! ଗୀତାକୁ ପୋଡ଼ିଦିଅ । ଭଗବଦ୍‌ଗୀତାକୁ ପାଣିରେ ଭସାଇ ଦିଅ । ତା'ର ପୃଷ୍ଠାଗୁଡ଼ାକ ଛିଣ୍ଡାଇ ଦିଅ ।

ଲୋକମାନେ ପାଟିକଲେ– 'କାହିଁକି ? ହିନ୍ଦୁର ଧର୍ମଗ୍ରନ୍ଥ ନଷ୍ଟ କରିଦେବୁ ? କି କଥା କହିଲ ହେ ?'

ପୁନଃ ପୁନଃ ମାଇକ୍‌ରେ ଘୋଷଣା... ହଁ ନଷ୍ଟ କରିଦିଅ । ନିଜେ ନିଜେ ନକଲେ ବୁର୍ଜୋୟା ବିରୋଧରେ ରଥଚକ୍ର ମାଡ଼ିଆସିବ । ଭଗବାନ ଶ୍ରୀକୃଷ୍ଣ କହିଥିଲେ ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ । କିନ୍ତୁ ବିଂଶ ଶତାବ୍ଦୀର ଶେଷଭାଗ ଆହ୍ୱାନ ଦିଏ– ଦୁଇଟା ମାତ୍ର ଗୋଷ୍ଠୀ... ଗୋଟାଏ ଫାସିଷ୍ଟ, ଅନ୍ୟଟା ଆଣ୍ଟି... ଦୁଇ ବର୍ଣ୍ଣ୍ୟଂ ମୟା ସୃଷ୍ଟଂ... ଆମେ ସୃଷ୍ଟି କରିଛୁ ।

ଜନତା କରତାଳି ଦେଲେ । ବକ୍ତା କହୁଥିଲେ...

ଏଇ ଟିକିଏ ଦୂରରେ ଶିଳ୍ପୀ ସୁବ୍ରତ ରାୟର ଖେଳନା କାରଖାନା । ଜୀବନଯାକ ସମୟର ଅପବ୍ୟବହାର କରିଗଲା ଲୋକଟା... କାରଣ ସେ ଫାସିଷ୍ଟ... ସେ ମୂର୍ତ୍ତି ଗଢୁଛି, ଚିତ୍ର ଅଙ୍କନ କରୁଛି । ବାସ୍, ଏତିକିରେ ମଣିଷ ଜୀବନର ପୂର୍ଣ୍ଣତା ଆସିଗଲା କି– ନା ଆଉ କିଛି ଅଛି ? ଦେଶ ପାଇଁ, ଜନତା ପାଇଁ କଅଣ ସେ କରିଛି ?

ଜନତାର କଳରୋଳ... କେବେ ଓ କିମିତି ଆସିବ ସେଇ ଯେ ପୂର୍ଣ୍ଣତା ?

ମାଇକ୍‌ରେ ଉତ୍ତର ଆସିଲା– କୋଡ଼ିଏ ଦଫା ଅର୍ଥନୈତିକ ପ୍ରୋଗ୍ରାମରେ ଏହା ପଡୁଛି କି ? ଯଦି ନାହିଁ, ତେବେ ତାହା ଗ୍ରହଣୀୟ ନୁହେଁ । ତେଣୁ ସାହିତ୍ୟ, ସଙ୍ଗୀତ, ଚନ୍ଦ୍ରମା, ଫୁଲ ବଗିଚା, ଚିତ୍ରକଳା, ବାଇନାଚ, ରଥଯାତ୍ରା, ମେଳଣ, ବିଭାଘର, ଆତସବାଜୀ ଏପରିକି ନରନାରୀର ସମ୍ପର୍କ ଫାସିଷ୍ଟ ଶକ୍ତି ନିର୍ଝରର ଚତୁରଙ୍ଗ ଫୁଆରା । ଶୁଖାଅ ଏହାର ମୂଳ ସ୍ରୋତକୁ । ପ୍ରୋଲିଟାରିଏଟ୍ ପୀଡ଼ନ ସୂତ୍ରରେ ଏଗୁଡ଼ାକ ଆସିଛି ବୁର୍ଜୋୟା ସମ୍ପଦ ଘେନି । ଯାକୁ ଭାଙ୍ଗିବାକୁ ହେବ– ଧ୍ୱଂସ କରିବାକୁ ହେବ । ନିକାଲି ଦିଅ !

ହାତତାଳି... ତିନି ତରଙ୍ଗରେ ତରଙ୍ଗାୟିତ ହୋଇ ହାତ ତାଳି ଚାଲିଲା ।

– ବାପା, ସେମାନେ ଭାଂଗି ଦେଉଛନ୍ତି, ଆମ ବଗିଚା କାହ୍ନୁକୁ ଭାଙ୍ଗି ଦେଉଛନ୍ତି । ବାପା, ବାରଣ୍ଡା ଉପରୁ ଉଠିଆସ । ତୁମେ ଦେଖିପାରୁ ନଥିବ– ଶୁଣୁଥିବ ନିଶ୍ଚୟ । ବିକଟ ଅଟ୍ଟହାସ କରି ସେମାନେ ଆମ ବଗିଚାର ଫୁଲଗଛଗୁଡ଼ାକ ଉପାଡ଼ି ଦେଉଛନ୍ତି । ବାପା... ଗଲା ଆମର ଫୁଲ ବଗିଚା ନଷ୍ଟ ହୋଇଗଲା । ବାପା... ବାପା...

ଅନ୍ୟରୂପାର ଆର୍ତ୍ତ ଚିତ୍କାର ।

ଝିଅ ଅନ୍ୟରୂପାର ମୁହଁକୁ ସୁବ୍ରତ ନିଷ୍ପ୍ରଭ ଆଖିରେ ଚାହିଁ ତା'ର ଗଣ୍ଡ ଉପରେ ଚର୍ବିଳ ହାତ ଦୁଇଟିକୁ ଖସାଇ ଆଣିଲେ । ଉଦାସ ଚାହାଣୀ ପକାଇ କହିଲେ... "ହଁ ମା, ସେମାନେ ଭାଙ୍ଗିଦେବେ । ମୁଁ ଏହାରି ଅପେକ୍ଷାରେ ଥିଲି । କିଛି ରଖିବେ ନାହିଁ । ଶୈଳ, ଶ୍ରାବନ୍ତୀ, ସୁଚରିତାର ଆଦରର ଏଇ ଫୁଲବଗିଚା ତାହାର ସାର୍ଥକତା ପୂରଣ କରିସାରିଛି– ଆଉ ରହିବ କାହିଁକି ?

ତୋର ମା' ସ୍ୱର୍ଗରେ... କିନ୍ତୁ ଏମାନେ ସତ ହେଉ, ମିଛ ହେଉ, ମୋର ପ୍ରତିଭାକୁ ପୂଜା କରିବା ଆଳରେ ମତେ ଯେପରି ସବୁ ସମର୍ପଣ କରିଥିଲେ, ତାହାରି ଭାବାବେଶ ମତେ ସମର୍ଥ କରିଥିଲା କଳିଙ୍ଗ କୃଷ୍ଟିକୁ ଜୀବନ୍ୟାସ ଦେଇ ମୋ ହାତରେ ପୁଣି ସଜାଇବାକୁ । ଏଥିରେ ଅପଚୟ କିଛି ନଥିଲା । ସବୁ ଥିଲା ସଞ୍ଚୟ ।

ଯେଉଁମାନେ ମୋର ଛୋଟ ବଗିଚାଟିକୁ ପ୍ରାଣହୀନ କରିଦେଉଛନ୍ତି, ତାଙ୍କୁ ମାଆ କହ, ମୋର ପ୍ରତିବାଦ କରିବାର କିଛି ନାହିଁ । ଯୁଗପୁରୁଷ ସବୁ ବିଧାନ କରୁଛି । ସେମାନେ ସବୁ କ'ଣ ତା' ହେଲେ ଶେଷ କରିଦେଲେ ମାଆ ? ଭାଙ୍ଗିଦେଲେ ? ହଁ, ପାଚେରିଟା ଭାଙ୍ଗିବାର ଶବ୍ଦ ତ ମୁଁ ଶୁଣିପାରୁଛି ।

ଝିଅ ଅନ୍ୟରୂପାର ଆଖିରେ ଅଶାନ୍ତ ଶ୍ରାବଣର ଝରଣା । କହିଲା– ହଁ ବାପା, ସେମାନେ ମାଟିରେ ସବୁ ମିଶାଇଦେଲେ । ଆଉ ଗୋଟାଏ କ'ଣ କଳାପଟା ଆମ ଘର ଆଗରେ ଟାଙ୍ଗି ଦେଇଛନ୍ତି ବାଉଁଶଟାଏ ପୋତି ଦେଇ ।

ସୁବ୍ରତ ହସିଲେ... କଷ୍ଟର ହସ... ପୀଡ଼ିତ ଆତ୍ମାର ହସ...

କହିଲେ– ପଢ଼ ମା' ! ଆଗାମୀ ନବବର୍ଷ ପାଇଁ, ନବ ଚେତନା ପାଇଁ କି ସନ୍ଦେଶ ସେଥିରେ ଅଛି ?

ଅନ୍ୟରୂପାର ଉତ୍ତର– 'ହଁ ବାପା ପଢ଼ିଚି'...

ସୁବ୍ରତ ରାୟ ଜଣେ ଅସାଧାରଣ ଫାସିଷ୍ଟ, ଆଉ ଏ ବଗିଚା ବି ଫାସିଷ୍ଟ, ଫୁଲଗୁଡ଼ାକ ଫାଜିଲ...

ସୁବ୍ରତଙ୍କର ଓଷ୍ଠଧାର କମ୍ପିଗଲା– 'ଝିଅ ! ଏହାର ଅର୍ଥ କଅଣ ?'

– 'ମୁଁ ଜାଣେନି ବାପା, କିନ୍ତୁ... କିନ୍ତୁ... ଏ କଅଣ ?'

– 'କଅଣ ମାଆ, ମୁଁ ଯେ ଭଲ ଦେଖିପାରୁନି.. କଅଣ ହେଲା ?'

– 'ସେମାନେ ନେଇ ଯାଇଛନ୍ତି, ତୁମର ଜୀବନଯାକର ସାଧନା... ତୁମର ଶିଳ୍ପ, ସ୍ଥାପତ୍ୟ, ସବୁ ଅଙ୍କନ, ଆଉ କହୁଛନ୍ତି... ଏଗୁଡ଼ାକ ଭାଙ୍ଗିଦିଅ, କାରଣ ଏହା ଭିତରେ ରହିଛି ଅସଂଖ୍ୟ ଫାସିଷ୍ଟ ବୀଜାଣୁ... ହତ୍ୟାକର, ନଷ୍ଟ କର.... ନହେଲେ ସବୁ ସଂକ୍ରମିତ ହୋଇଯିବ ।'

'ଓଃ– ଓଃ– ଚିତ୍କାର କଲେ ସୁବ୍ରତ... ଆଉ କଅଣ କରୁଛନ୍ତି ?'

– 'ନାହିଁ ବାପା, ଆଉ କିଛି ନାହିଁ... ତେବେ ଅଳିଆ ସେ ଫାଇଲଗୁଡ଼ାକ ବି ନେଇଯାଇଛନ୍ତି... କଅଣ ହେବ, ସବୁ ତ ଗଲା– ଯାଉ, ଏଗୁଡ଼ାକ ଥାଇ କଅଣ ହେବ ?'

ସୁବ୍ରତ ଥରଥର ପାଦରେ ଚାଲୁ ଚାଲୁ କହିଲେ– 'କୁଆଡ଼େ ନେଲେ ? ରୂପା, ବନ୍ଦକର, ସେମାନଙ୍କର ବାଟ ବନ୍ଦକର । ମତେ ମାରି ଦିଅନ୍ତୁ, କବର ଏଇଠି ଦେଇଦିଅନ୍ତୁ; କିନ୍ତୁ ଶ୍ରାବନ୍ତୀ, ଶୈଳ, ସୁଚରିତାର ଚିଠି ନଷ୍ଟ କରନ୍ତୁ ନାହିଁ। ଯଦି ଥାଏ ଫାସିଜିମ୍, ସବୁଥିରେ ଥାଉ ପଛକେ ସେଥିରେ ନାହିଁ; କାରଣ ନାରୀର ସମର୍ପଣ, ଆକୂତି ଯାହା ସେଥିରେ ସଞ୍ଚିତ ରହିଛି, ତାହା ଦିନେ ଏଇ ସୁବ୍ରତକୁ ଯଶର ଉଚ୍ଚ ଶିଖରକୁ ନେଇଥିଲା ମାଆ ! ଫେରାଇ ଆଣ ମାଆ, ତୁ ବୁଝିବୁନି, ସେ କି ସମ୍ପଦ, ଜାତୀୟ ସମ୍ପଦ, କୃଷ୍ଟିର ସଞ୍ଚିତ ମଧୁକ୍ଷର । ଅକ୍ଷର ସେଗୁଡ଼ାକ । ପ୍ରାଣମୟ ଉତ୍ସାହ, ମାଆ ! ଫେରାଇ ଆଣ ।'

ଧୀରେ ସୁବ୍ରତଙ୍କ ଆଖି ପତା ନଇଁଆସିଲା । କଣ୍ଠରୁ କଥା ଆଉ ବାହାରିଲା ନାହିଁ । ନଷ୍ଟ ନୀଡ଼ର ପକ୍ଷୀ ଆଉ ଫେରିଲା ନାହିଁ । ଶାନ୍ତ ହୋଇଗଲା କାକଳି । କେତେବେଳୁ ମାଟିରେ ମିଶି ଯାଇଥିଲା ଫାସିଷ୍ଟ ବଗିଚା । ସୁବ୍ରତ ମିଶିଗଲେ ସେଇ ମାଟି ଓ ମ୍ଳାନିମାରେ... ।



# ରକ୍ତ କରବୀ

ହିମାଳୟ, ଓକ୍ ବୃକ୍ଷ, ପାଇନ୍ ବଣ ଆଉ ତୁଷାର ଚିତ୍ରିତ ଶୃଙ୍ଗ ଘେନି ସେଦିନ ହସିଉଠୁଥିଲା ଦାର୍ଜିଲିଙ୍ଗ ।

ସେ ହସ ଥିଲା ନୀଳିମ, ପୁଣି ଶୁଭ୍ର, ନମ୍ର...

ସୂର୍ଯ୍ୟରଶ୍ମିର ଲହରୀ ସ୍ୱପ୍ନ ସେଠି । ଟଟୁ ଘୋଡ଼ାର ଶୈଳଦେହ ଉପର ଖୁରା ଶବ୍ଦ ପଥଚାରୀକୁ ସ୍ୱପ୍ନରୁ ଜାଗ୍ରତ ଅବସ୍ଥାକୁ ନେଇଆସୁଥିଲା ।

ବାୟୁର ତରଙ୍ଗେ ତରଙ୍ଗେ ନଭଶ୍ଚୁମ୍ବୀ ହୋଟେଲମାଳାର ଗବାକ୍ଷ ଦେଇ ଭାସିଆସୁଥାଏ ନର୍ତ୍ତକୀର କଣ୍ଠ ସହିତ ବହୁ ବିଦେଶୀ ଅର୍କେଷ୍ଟ୍ରାର ସମନ୍ୱିତ ଗୁଞ୍ଜରଣ ।

ଏ ଦାର୍ଜିଲିଙ୍ଗ ଶୈଳ-ନିବାସ । ଶୈଳ ହିଁ ଏହାର ଆତ୍ମା । ଶୈଳ ହିଁ ଏହାର ପ୍ରକୃତି । ନଗାଧିରାଜ ହିମାଚଳ ହିମ ବଳୟର ଊର୍ଦ୍ଧ୍ୱକୁ ଉଠିଯାଇ କି ଅବ୍ୟକ୍ତ ଆରାଧନାରେ ପ୍ରଣତି ଜଣାଉଥାଏ ବିଶ୍ୱଧାତାଙ୍କୁ । ଏହିପରି ଗୋଟାଏ ବିଶ୍ୱାସ ଆବେଗ ପାଇବି ବୋଲି ଧାଇଁ ଆସିଥିଲି ଏହି ଶୈଳ ନିବାସକୁ ।

ଜୀବନର ମଧ୍ୟାହ୍ନ ଅତିକ୍ରାନ୍ତ । ସାୟାହ୍ନ ବି କ୍ରମେ ଅସ୍ତମିତ । ଅବଶିଷ୍ଟ ନିଶୀଥର ପ୍ରତୀକ୍ଷା । ଯେତେବେଳେ ଚକ୍ଷୁ ଦୁଇଟି ମୁଦ୍ରିତ ହୋଇଯାଇ ଆମନ୍ତ୍ରଣ କରିବ ଜୀବନର ସମାପ୍ତି ଉତ୍ସବକୁ, ସେତେବେଳେ ସରିଯିବ ସବୁ ଦୃଶ୍ୟ ଦେଖା ।

ସଂସାର ନୀଡ଼ର ଶତ ଆକର୍ଷଣକୁ ପଛରେ ପକାଇ ସାଜିଥିଲି ପଥର ପଥିକବେଶ । ଇଚ୍ଛା କରିଥିଲେ ଭାରତବର୍ଷର ବଡ଼ ବଡ଼ ସହର ବମ୍ବେ, ମାନ୍ଦ୍ରାଜ, ଲକ୍ଷ୍ନୌକୁ ଯାଇପାରିଥାନ୍ତି; କିନ୍ତୁ ଏ ବିରାଟ ସହରଗୁଡ଼ାକରେ ଜୀବନ– ଲୀଳାର ତରଙ୍ଗାୟିତ ମୋହ ଥାଇପାରେ, ନାହିଁ ସେଥିରେ ଆତ୍ମାକୁ ନିରବଧି ଆନନ୍ଦ ସ୍ରୋତରେ ଭସାଇ ଦେଇ ମଣିଷଜୀବନକୁ ସାର୍ଥକ କରିବାର ଉପାଦାନ ।

ଜୀବନର ଷାଠିଏ ବର୍ଷ ବିତିଗଲା । ପକ୍ଷରେ ଉଡ଼ିବାର ଯନ୍ତ୍ର ଭଗବାନ ଖଞ୍ଜି ଦେଇଥିଲେ । କେଉଁଆଡ଼କୁ ଉଡ଼ିଯିବି, ତାହାର ନିର୍ଦ୍ଦିଷ୍ଟ ପଥରେଖା ଟାଣିନଥିଲେ । ତାହାହିଁ ଭଗବାନତ୍ୱ । ଷାଠିଏ ବର୍ଷ ସରିଗଲା ସମତଳ ସନ୍ତାପିତ ଭୂଭାଗ ଉପରେ । ଆଖି ଚାହିଁଲା ଶେଷରେ ଉପରକୁ ଦେଖିବାକୁ । ଊର୍ଦ୍ଧ୍ୱ ଆକାଶ ତଳେ ଶୈଳ ଶିଖରର ଅପୂର୍ବ ଉନ୍ମୁଖ ସମର୍ପଣ ଭଙ୍ଗୀକୁ ଦେଖିବାକୁ ହୃଦୟ ଡାକ ଦେଲା । ସେଥିପାଇଁ ବାଛିନେଲି ଦାର୍ଜିଲିଙ୍ଗ ଶୈଳୀ ନିବାସ ।

କହିଛି, ସଂସାରକୁ ଭୁଲିବା ପାଇଁ ମୁଁ ଆସିଛି । ପାଇନ୍ ଆଉ ଓକ୍ ବଣ ଭିତରକୁ ଆସିଛି ଜୀବନର ହଜିଲା ଶ୍ରୀ ଖୋଜିବାକୁ । ବନ୍ୟପକ୍ଷୀ ସମାକୁଳ ତୁଷାରଭରା ପର୍ବତ ମଧ୍ୟ ଆଉ ଏଇ ଯେ ପାର୍ବତ୍ୟ ସଦା ପ୍ରଫୁଲ୍ଲ କାମିନୀମାନେ ସ୍ୱଚ୍ଛନ୍ଦରେ ଆରୋହଣ କରୁଛନ୍ତି ଗୋଟାକ ପରେ ଗୋଟାଏ ଗିରିବର୍ତ୍ମକୁ– ଏଇ ମନୋହର ଭୂମି ମତେ ଅସ୍ଥିର କରେ । ଟିକିଏ ମେଘ ଫାଙ୍କରେ ରଶ୍ମି ଦେଖିଲେ ମୁଁ ଧାଇଁଯାଏ ସୂର୍ଯ୍ୟମଣ୍ଡଳ ଦିଗକୁ ଯିମିତିକି ହାତମୁଠାରେ ସେ ସମ୍ପଦକୁ ମୁଁ ରଖିଦେବି ପୂର୍ଣ୍ଣ କରି ।

ଜୀବନରେ କଳା ଓ କବିତାର ପୂଜାରୀ ହୋଇ ରହିଗଲି । ସୃଷ୍ଟି କରି ପାରିଲି ନାହିଁ । ବିଶ୍ୱଧାତାଙ୍କୁ ବନ୍ଦନା ଶୁଣାଇବା ପାଇଁ କଣ୍ଠରେ ବି କାକଳି ସଞ୍ଚରିଲା ନାହିଁ ।

କେବଳ ମଣିଷଟିଏ, ଦୈହିକ ଜୀବ । ତଥାପି ଥରେ ଥରେ ଅନନ୍ତକୁ, ଅସୀମକୁ, ଅରୂପକୁ ଖୋଜିବା ପାଇଁ ଅନ୍ତର ହାହାକାର କରେ । ସେହି ହାହାକାରର ନିର୍ମମ ଆଲୋଡ଼ନ ମତେ ଏଠାକୁ ଟାଣିଆଣିଛି, ଦେଖେ ଯଦି ଜୀବନଶ୍ରମର ମୁକ୍ତାଙ୍ଗନରେ କିଛି ପଦାର୍ଥ ଥାଏ, ତାହାକୁ ସାଉଁଟି ନେଲେ ମୁଁ କିଛି ଦିନ ବଞ୍ଚିଯିବି ଯଥାର୍ଥ ବଞ୍ଚିବା ଉଦ୍ଦେଶ୍ୟରେ ।

ଏବେ କାହାଣୀ କହେ– କଅଣ ମିଳିବ ଆତ୍ମଚିନ୍ତାରେ– ଏମିତି ତ କେତେ କିଏ କଅଣ ନ କହିଛନ୍ତି ! ମୋ କଥାରେ, ମୋ ଅନୁଭୂତିରେ ବିଶ୍ୱକୁ ବିଶ୍ୱାସ ଯୋଗାଇବାର କଅଣ ବା ଅଛି ?

ସେଦିନ ପ୍ରଭାତରୁ ଘୋର ସ୍ତରାୟିତ ପାତଳା ବରଫ ପଡୁଥାଏ ତୁଳାର ଜିକ୍ ଜିକ୍ ତନ୍ତୁ ପରି ଆକାଶରୁ । ମଥାରେ କ୍ୟାପ୍, ସର୍ବାଙ୍ଗରେ ଥିଲା ତୁଷାର ଛିଟାକୁ ରକ୍ଷା ପାଇବା ପାଇଁ ଅରଣ୍ୟ ପୋଷାକ ।

ନିସ୍ତବ୍ଧ ଭୂମିସୀମା । ନିସ୍ତବ୍ଧ ଯିମିତି ଶିବ ପାର୍ବତୀ କୈଳାସ ଶୃଙ୍ଗରେ । ସର୍ବତ୍ର ଦେହ ଭାବ । ଏଠାରେ ମଣିଷ ଇଚ୍ଛା କଲେ ବି ନରହତ୍ୟା କରିପାରିବ ନାହିଁ, ଇଚ୍ଛା କଲେ ବି ହିଂସ୍ର ହୋଇପାରିବ ନାହିଁ; କିନ୍ତୁ ହେଉଛି ତ ! ଧନ୍ୟ ମଣିଷ ! ସ୍ୱର୍ଗରେ ବି ଅମୃତରେ ସେ ବିଷ ଭରିଦେବ । ମୁଁ ସେ କଥା କହୁ ନାହିଁ । ମୁଁ କହୁଛି ଦେବଦର୍ଶନ ଘଟୁଛି ଏଠି ପ୍ରତି ମୁହୂର୍ତ୍ତରେ ।

ହଠାତ୍ ଅତି ଅସ୍ପଷ୍ଟ ଘଣ୍ଟାଧ୍ୱନି ଶୁଣିବାକୁ ପାଇଲି । କ୍ରମେ ସେ ରବ ସ୍ପଷ୍ଟତର ହେଲା । ଏ ଧ୍ୱନିର ଗୋଟାଏ ଆକର୍ଷଣ ଅନୁଭବ କଲି । ଏହାର ଏକ ନିର୍ଦ୍ଦିଷ୍ଟ ଛନ୍ଦ ଅଛି । ଧ୍ୱନିର ଜଞ୍ଜାଳ ଓ ବିରକ୍ତି ନାହିଁ– ଏହା ପବିତ୍ର, ଶାନ୍ତ ।

ମୋର ପରିଚିତି ଅଛି ଏ ଶବ୍ଦ ସହିତ । ସହରମାନଙ୍କରେ ଯାତ୍ରା କରୁ କରୁ ମୁଁ ସ୍ତବ୍ଧ ହୋଇ ରହିଯାଏ । ଯେଉଁଆଡୁ ଭାସି ଆସୁଥାଏ ଏ ନିକ୍ୱଣ, ସେଇଆଡ଼େ କାନ ଡେରେ । ପାଦ ଖେଳାଇ ଚାଲିଯାଏ ଅନୁସରଣ କରି ପ୍ରଭୁଙ୍କ ଆବାସ ଭିତରକୁ, ଯେଉଁଠି ମହମବତିର ଆଲୋକମାଳା ତଳେ ନର ନାରୀ ମଥା ନତ କରି ପ୍ରାର୍ଥନା କରୁଥାନ୍ତି, ଗାଉଥାନ୍ତି ଈଶ ସ୍ତୁତି ।

ଜଗତକୁ ଜାଗ୍ରତ କରିଦିଏ ଈଶ୍ୱରଙ୍କର ଏ ଅକୁତୋଭୟ ବାଣୀ, ଯାହା ବିସ୍ତାରିତ, ସ୍ପଷ୍ଟତର ଧ୍ୱନି ମାଧ୍ୟମରେ ସଞ୍ଚରିଯାଏ ପ୍ରତି ହୃଦୟକୁ । ଏ ତେବେ କଅଣ ସେହି ପୂତ ଘଣ୍ଟା, ସେଇ ପବିତ୍ର ଈଶ୍ୱର ନିବାସ, ସେଇ ପବିତ୍ର କ୍ରୁଶବିଦ୍ଧ ଅମର ଆତ୍ମାର ଡାକ– ଆସ ମୋ ପାଖେ ଶରଣ ନିଅ, ମୁଁ ଉଦ୍ଧାର କରିବି ।

ହଁ, ଗିର୍ଜା... ସୁନ୍ଦର ଗୋଟିଏ କାଷ୍ଠନିର୍ମିତ ଗୃହ । ଉପରେ କ୍ରୁଶ ଚିହ୍ନର ଅପୂର୍ବ କାରିଗରି ନିର୍ମାଣ । ପ୍ରଭୁ ଝୁଲିଯାଇଥିଲେ ଏଇ କ୍ରସ୍‌ରେ । ଯୁଗ ଯୁଗ ବିତିଯିବ । ଏ ଚିହ୍ନ ଆବୃତ ସତ୍ୟ ଘେନି ଝଟକୁଥିବ । କଣ୍ଟକ ଶଯ୍ୟାରେ ତାଙ୍କର ମୃତ୍ୟୁ । ସେ ମରଣ କେଡ଼େ ରମଣୀୟ । କାଳେ କାଳେ ସେ ମୃତ୍ୟୁ ଝରାଉଥିବ ଜୀବନ୍‌ସଙ୍ଗୀତର ଝରଣା ।

ଯିସସ୍ ଖ୍ରୀଷ୍ଟ । ତାଙ୍କରି ମନ୍ଦିର । ପ୍ରାଣରେ ମୋର ଅଶେଷ ଶାନ୍ତି । ଦାର୍ଜିଲିଙ୍ଗର ଅରଣ୍ୟ ଶୈଳମୟ ପ୍ରକୃତି ଆଜି ଏଇ କ୍ଷଣରେ ଈଶ୍ୱରୀୟ ବନ୍ଦନାରେ ବିଭୋର ।

ମୁଁ କ୍ରମେ ଉଚ୍ଛନ୍ନ ହେଲି । ଚଞ୍ଚଳ ପଦପାତରେ ଚାଲିଲି । ଭଗବାନ ଡାକୁଛନ୍ତି । ଉପର ପୋଷାକ ଦେହକୁ କାଢ଼ିନେଇ ବରଫର ଧଳା ଚାଦରକୁ ସେଥିରୁ ଝାଡ଼ିଦେଇ, ମଥା ନତ କରି ପ୍ରବେଶ କଲି ମନ୍ଦିର ଅଭ୍ୟନ୍ତରରେ ।

କାହାଣୀ କେବେ କହିବି ? ଆଗ ବସିଯାଏ । ପ୍ରଶାନ୍ତ ହୋଇଉଠୁ ହୃଦୟ-ବେଦୀ । ପଥହରା, ଶାନ୍ତିହରା, ଜଞ୍ଜାଳଘେରା ଏ ଆତ୍ମା ପ୍ରଥମେ ଅମୃତ ପାଉ ।

ପ୍ରାର୍ଥନା ସଂଗୀତ ଗାଇଥିଲେ ସେମାନେ । ଗମ୍ଭୀର ଉଦାତ୍ତ ସେ ଗୁଞ୍ଜନ । ଇଂରେଜୀ, ଆମେରିକାନ୍ ଟୁରିଷ୍ଟ, ବିଚିତ୍ର ପୋଷାକର ସେମାନେ । ଭାରତୀୟ ବି ଅଛନ୍ତି, ବୃଦ୍ଧ ବୃଦ୍ଧା, ନର ନାରୀ.. ପୂର୍ଣ୍ଣ ହୋଇଛି ସେ ଧ୍ୟାନ ମନ୍ଦିର ।

କାହାର ଧ୍ୟାନକୁ ବ୍ୟାଘାତ ନ କରି ଧୀରେ ସର୍ବଶେଷ ଆସନରେ ବସିଲି । ମୁଁ କିଏ ମୋର ବିଚାର ରହିଲା ନାହିଁ । ପ୍ରଭୁଙ୍କର ଜଣେ ସନ୍ତାନ । ଆନନ୍ଦ ଓ ଶାନ୍ତି ଅନ୍ୱେଷଣରେ ଆଜି ସେ ପରିବ୍ରାଜକ । କିଛି ମିଳିବାର ଅଭିଳାଷ ନାହିଁ ।

ଆଗରେ ଖ୍ରୀଷ୍ଟମୂର୍ତ୍ତି ... ପାଖରେ ଜନନୀ ମାଡ଼ୋନାଙ୍କର ତୈଳଚିତ୍ର । ପରିବେଶ ଭିତରେ ଲକ୍ଷ୍ୟ କଲି ଏହା ନିତ୍ୟନୈମିତ୍ତିକ ଗିର୍ଜା ପ୍ରାର୍ଥନା ବନ୍ଦନା ଆସର ନୁହେଁ– କିଛି ବିଶେଷତ୍ୱ ଅଛି । ଏହା ବିଚିତ୍ର ଏକ ସମ୍ଭାର, ଖ୍ରୀଷ୍ଟପୂଜା, ଯାହା କି ମୁଁ ଓଡ଼ିଶାରେ ଦେଖିଛି ଭିନ୍ନ ପ୍ରସଙ୍ଗରେ । ତେବେ କଅଣ ଏହା...

ପ୍ରାର୍ଥନାର ଶେଷ ମୂର୍ଚ୍ଛନା ମିଳାଇଯିବା ପରେ ଜଣେ ସୁଠାମ ସୁନ୍ଦର ଜ୍ୟୋତିର୍ମୟ ବୃଦ୍ଧ ଆସନ ଛାଡ଼ି ଛିଡ଼ାହେଲେ । ହଁ, ସେ ଧର୍ମଯାଜକ । ତାଙ୍କରି ଅଧିନାୟକତ୍ୱରେ ଆଜିର ଉତ୍ସବ ପରିଚାଳିତ । ଶୁଭ୍ର ଚପକନ୍‌ରେ ଆଚ୍ଛାଦିତ ଏହାଙ୍କର ଅଙ୍ଗ । ବକ୍ଷ ଉପରେ ଦୋଳିତ ହେଉଛି କ୍ରୁଶବିଦ୍ଧ ଯିଶୁ ଶରୀର । ରକ୍ତର ଛିଟାରେ ଈଷତ୍ ଲୋହିତ ବର୍ଣ୍ଣ ଧରିଛି ସେ ସଂକେତ ।

ଇଂରେଜୀ ଭାଷାରେ ଆରମ୍ଭ କଲେ– 'ଉତ୍ସବର ଶେଷ ପର୍ଯ୍ୟାୟରେ ଆମ୍ଭେମାନେ ଉପସ୍ଥିତ । ଯିଶୁଗୁଣଗାନର ଅବଧି ନାହିଁ । ଗୁଣର ସମୁଦ୍ର ସେ । କେଉଁଠାରେ ଆମେ ତାଙ୍କୁ କଳନା କରିବା ? ଆଜିର ଉତ୍ସବର ମହତ୍ତ୍ୱ ଦୁଇଟି ଭିନ୍ନ ଭିନ୍ନ ଜୀବନ ଅଥଚ ସେହି ପରମାତ୍ମାଙ୍କର ସନ୍ତାନ ସର୍ବସମକ୍ଷରେ ଆଉ ପରମ ପିତା ସମକ୍ଷରେ ପ୍ରତିଜ୍ଞାବଦ୍ଧ ହେଲେ, ସେମାନଙ୍କର ଆତ୍ମାର ଓ ଶରୀରର ମିଳନ ଘଟିଲା । କେହି ଏ ବନ୍ଧନକୁ ଛିନ୍ନ କରିପାରିବେ ନାହିଁ । ସେମାନେ ପବିତ୍ର ପରିଣୟ ସୂତ୍ରରେ ଆବଦ୍ଧ ହେଲେ । ମାଇଁ ବୟ ଶାଶ୍ୱତ୍ ଆଣ୍ଡ ମାଇଁ ଡଟର୍ ଶାଶ୍ୱତୀ । ଈଶ୍ୱର ସେମାନଙ୍କୁ ଆଶୀର୍ବାଦ କରନ୍ତୁ । ଏମାନେ ଏହି ପ୍ରାଣସ୍ପର୍ଶୀ ପରିବେଶ ଭିତରକୁ, ହିମାଳୟର ନିମ୍ନସ୍ଥ ଦାର୍ଜିଲିଙ୍ଗ ସହରକୁ ଓଡ଼ିଶାରୁ ଆସିଛନ୍ତି ପ୍ରକୃତିର ଶାନ୍ତ ଦିଗ୍‌ବଳୟରେ ଦୁଇଟି ହୃଦୟକୁ ଏକାନ୍ତ ଓ ଏକତ୍ର କରିବାକୁ । ତାହା ସମ୍ପନ୍ନ ହେଲା । ଅବଶିଷ୍ଟ ରହିଲା ଦୁଇଜଣ ଭଦ୍ରବ୍ୟକ୍ତି ସାକ୍ଷୀ ରହି ସ୍ୱାକ୍ଷର କରିବେ ବିବାହ ରେଜିଷ୍ଟରରେ... ଆମେନ୍ ।

ନିଷ୍ପନ୍ଦ ଥିଲି । ଚମକ ପାଇଲି । ଏଠାରେ ଓଡ଼ିଶାରୁ ଆଗତ ଦୁଇ ପରିବାର ଭିତରେ ଶୁଭ ପରିଣୟର ବ୍ୟବସ୍ଥା ! ଆଶ୍ଚର୍ଯ୍ୟ ? କିଏ ଏମାନେ । ଦୂରରେ ଥିବାରୁ କାହାକୁ ମୁଁ ଦେଖିପାରୁନାହିଁ ।

ଧର୍ମଯାଜକ ପୁନର୍ବାର ଗୁରୁଗମ୍ଭୀର ଭାବରେ ଡାକ ଦେଲେ– ୟୁ ମାଇଁ ବୟ, ଆପଣ ଆସନ୍ତୁ । ମୋ ଦୃଷ୍ଟି ଆପଣଙ୍କ ଉପରେ ପଡ଼ିଛି । ଆପଣ ଆସନ୍ତୁ,

ଏଇ ପୀଠ ଉପରକୁ ଆସନ୍ତୁ, ଶାଶ୍ୱତ ଶାଶ୍ୱତୀକୁ କଲ୍ୟାଣ କରି ସ୍ୱାକ୍ଷର କରନ୍ତୁ । ଏ ସ୍ୱାକ୍ଷର କେବଳ କାଳି କଲମର ସହଯୋଗରେ ଲିଖିତ ଅକ୍ଷରଗୁଡ଼ିଏ ନୁହେଁ । ଏହା ଈଶ୍ୱର ସ୍ନେହାଙ୍କିତ ଭାବମୟ ସ୍ୱୀକୃତି । ଆପଣଙ୍କର ନାମ ?

"–ମିଷ୍ଟର ଯୋନାଥନ୍ ଫ୍ରାଙ୍କ୍, ଆପଣ ଯେ କେହି ହୁଅନ୍ତୁ– ଈଶ୍ୱରଙ୍କର ପୁତ୍ର ଆସନ୍ତୁ । ମୋ ଦୃଷ୍ଟି ଆପଣଙ୍କ ଉପରେ ପଡ଼ିଛି ।'

ମିଷ୍ଟର ଫ୍ରାଙ୍କ ଧୀରେ ମଥା ନତ କରି ଆସି ସ୍ୱାକ୍ଷର ଦେଲେ । ବର ଓ କନ୍ୟା ମଥାରେ ହାତ ଦେଇ ପ୍ରାର୍ଥନା କଲେ । ବେଶ୍ ଭାବଗମ୍ଭୀର ହୋଇ ଉଠିଲା ଏ ସମର୍ପଣର ଐକାନ୍ତିକ ଦୃଶ୍ୟ ।

ପୁନର୍ବାର ଧର୍ମଯାଜକ ଚାରିଆଡ଼େ ଚାହିଁଲେ । ହଠାତ୍ ତାଙ୍କ ଆଖି ଦୀପ୍ତ ହୋଇଉଠିଲା । ସେ ହସିଦେଲେ । କହିଲେ– ୟୁ ମାଇଁ ବୟ ! ନୋ ନୋ– ୟୁ, ୟୁ– ଆପଣ ଆସନ୍ତୁ । ଆପଣଙ୍କ ଉପରେ ମୋ ଆଖି ପଡ଼ିଛି । ମୁଁ ଗୋଟାଏ ପ୍ରଶାନ୍ତିର ପ୍ରଲେପ ଅନୁଭବ କରୁଛି, ମାଇଁ ବୟ ! ଆପଣଙ୍କ ଉପରେ ମୋର ନେତ୍ରପାତ ହେବାବେଳେ ମୁଁ ଗଭୀର ଆନନ୍ଦ ଅନୁଭବ କରୁଛି । ଆପଣ ଈଶ୍ୱର-ପ୍ରେରିତ ବ୍ୟକ୍ତି ।

କିନ୍ତୁ କିଏ ଏ ଭଦ୍ରଲୋକ ? ଡେରି କରୁଛନ୍ତି କାହିଁକି ? ଆସୁ ନାହାନ୍ତି ତ ? ଅତିଥିମାନେ ପଛକୁ ଫେରି ଚାହିଁଲେ । କିଏ ସେ ବ୍ୟକ୍ତି– ଯାହାଙ୍କୁ ଆବିଷ୍କାର କରି ଫାଦରଙ୍କର ଗଭୀର ଆନନ୍ଦ ହୋଇଛି ? କିଏ ସେ ?

ଏ କଅଣ ? ମୋର ସର୍ବାଙ୍ଗ ଥରିଉଠୁଛି କାହିଁକି ? ପାଦରେ ପ୍ରକମ୍ପ । ମୋ ଆଖିକୁ କିଛି ଦେଖାଯାଉନି ।

ଦେବଦୂତ ଧର୍ମଯାଜକଙ୍କର ଦୁଇଟି ଆଙ୍ଗୁଠି ଗୋଟାଏ ବନ୍ଧୁକର ଅଗ୍ରଭାଗ ଭଳି ମୋରି ଆଡ଼କୁ ପ୍ରସାରିତ । ମୁଁ ତାହାହେଲେ ନିମନ୍ତ୍ରିତ ? କାହିଁକି ?

ନା ନା, ମୁଁ ନୁହେଁ, ଆଉ କିଏ ହୋଇଥିବେ । ମୁଁ ଏଠାରେ ଅପରିଚିତ, ପୁଣି ଓଡ଼ିଶାବାସୀ । ତଥାପି ଦେଖିଲି ସେ ଆଙ୍ଗୁଠି ଦୁଇଟି ମତେ ହିଁ ଠାବ କରି ଆହ୍ୱାନ ଦେଉଛନ୍ତି... ଆସ, ସ୍ୱାକ୍ଷର କର ।

ମୁଁ ହତବାକ୍ ହୋଇ ପଛକୁ ଚାହିଁଲି । ମୁଁ ସର୍ବଶେଷ ବ୍ୟକ୍ତି । ତା'ପରେ ତ ଆଉ କେହି ନାହାନ୍ତି ? ତା'ପରେ... ଆକାଶ, ସୁଦୂର ଶୋଭା ଓ ହିମଶୃଙ୍ଗ.... ତା'ପରେ ପୃଥିବୀ । ମୁଁ ଏକ ପ୍ରକାର ସଂଜ୍ଞା ହରାଇ ବସିଲି ।

ହଠାତ୍ କାନ୍ଧ ଉପରେ କାହାର ସ୍ପର୍ଶ । ସେହି ଈଶ୍ୱର ପ୍ରେମିକ ପୁରୋହିତଙ୍କ ସ୍ମିତ ହାସ୍ୟୋଜ୍ଜ୍ୱଳ ମୁଖ ନଇଁଆସିଛି ମୋର ଅବନତ ମଥା ଉପରକୁ । ସେ ମତେ ଛିଡ଼ା କରେଇଦେଲେ, ଆଉ କହିଲେ...

"ଏହା ଈଶ୍ୱରୀୟ ଜ୍ଞାନ... ଇନ୍ସ୍ପିରେସନ୍ । ମୁଁ ଯେତେବେଳେ ଆପଣଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି ଆହ୍ୱାନ ଦେଉଥିଲି, ସେତେବେଳେ ଭାବନ୍ତୁ ନାହିଁ ଯେ ଫାଦର ଗ୍ରିଗେରୀ ଡାକୁଥିଲା । ତା'ର କି ଶକ୍ତି ଅଛି କାହାକୁ ଡାକିବ, କାହାକୁ ନ ଡାକିବ ? ମୁଁ ଜାଣେନା ଆପଣ କିଏ । ଦରକାର ନାହିଁ । କେଉଁ ଜାତିର, କେଉଁ ରାଜ୍ୟର, କେଉଁ ବର୍ଣ୍ଣର– ଆବଶ୍ୟକତା ନାହିଁ । ଆପଣ ପ୍ରଭୁଙ୍କର ସନ୍ତାନ । ଏ କାର୍ଯ୍ୟରେ ଯିସସ୍ ଆପଣଙ୍କ ସହାୟତା ଚାହୁଁଛନ୍ତି । ସେ ଜାଣନ୍ତି ଏହାର ପରିଣାମ କଅଣ । ଆସନ୍ତୁ, ଦ୍ୱିଧା କରନ୍ତୁ ନାହିଁ । ଆପଣ ନିର୍ବାଚିତ ହୋଇଛନ୍ତି ତାଙ୍କରି କରୁଣାରୁ ।

ମୋ ଆଖିରୁ ସେତେବେଳେ ଜଳଧାରା ଖସିଆସୁଥାଏ । କିଏ ଏହି ଶାଶ୍ୱତ ? ଓଡ଼ିଶାର ପୁଅ ? କିନ୍ତୁ ଶାଶ୍ୱତ ବୋଲି ତ... ତାହାହେଲେ ମାଆ ତା'ର କରୁଣା ଏଠି ରହିଛି, ସ୍ୱାମୀ ଅନିର୍ବାଣ । ଏମାନେ ଏତେଦୂର ଆସି ଶାଶ୍ୱତର ବିବାହ ସଂପନ୍ନ କଲେ ? କାହିଁକି ?

ବିବାହ ବେଦି । ଡାହାଣକୁ ଚାହିଁ ଦେଖିଲି ମଥା ପୋତି ବସିରହିଛି କରୁଣା.. ସେଇ କରୁଣା । ପାଖରେ ବସିଛନ୍ତି ସିମିତି ମଥା ପୋତି ଅନିର୍ବାଣ । ଟିକିଏ ଦୂରରେ ଧର୍ମଯାଜକଙ୍କର ଆସନ ଆଗରେ ମୋର ଜୀବନର, ଆଦରର ସୁଠାମ ପରିପୁଷ୍ଟ ତାରୁଣ୍ୟର ବିଗ୍ରହ ସହସ୍ର ତେଜ ଶିଖାରେ ଶିଖାୟିତ ଶାଶ୍ୱତ– ପାଖରେ ଅବଗୁଣ୍ଠନକାରୀ ସହଧର୍ମିଣୀ ଶାଶ୍ୱତୀ ।

ଦେଖିଲି କରୁଣା ଆଖିପତାରୁ ଅଶ୍ରୁ ପୋଛିଦେଇ ତା' ଆସନରୁ ଉଠିଆସି ମତେ ଦୁଇଟି ପୁଷ୍ପଗୁଚ୍ଛ ଧରାଇଦେଲା । ଅନିର୍ବାଣ ଚାଲିଗଲେ ଅନ୍ୟ ଦିଗକୁ । ଅର୍କେଷ୍ଟ୍ରାର ମଧୁଲଳିତ ସ୍ୱନ ଖେଳି ବୁଲିଲା ପ୍ରଭୁ ମନ୍ଦିରର କୋଣ ଅନୁକୋଣରେ ।

ମୋ ଜୀବନର ଅପରିକଳ୍ପନୀୟ ଏକ ସତ୍ୟ ଶାନ୍ତ ମୁହୂର୍ତ୍ତରେ ମୁଁ ବିବାହ ରେଜିଷ୍ଟରରେ ସ୍ୱାକ୍ଷର ଦେଲି ଶାଶ୍ୱତ ଓ ଶାଶ୍ୱତୀର ବନ୍ଧନକୁ ସ୍ୱୀକୃତି ଦେଇ । ହାତ ଥରି ଯାଇଥିଲା ଲିପି ସୃଷ୍ଟି କରିବାରେ । ତା'ପରେ ଟାଣି ଆଣିଲି ଛାତି ଉପରକୁ ସେମାନଙ୍କୁ, ନବଜୀବନର ବ୍ରତୀ ଓ ବ୍ରତଚାରିଣୀକୁ ।

ଏ କଅଣ ସ୍ୱପ୍ନ ନା ସତ୍ୟ !

ଶାଶ୍ୱତ ନଇଁପଡ଼ି ମୋର ପାଦଧୂଳି ନେବାମାତ୍ରେ ମୁଁ ତାକୁ ପୁନର୍ବାର ନିବିଡ଼ ଆଶ୍ଳେଷରେ ଟାଣିଧରିଲି । ସେ କେବଳ ଏତିକି କହିଲା, 'ଆପଣ ଏଠି ? କି ଆଶ୍ଚର୍ଯ୍ୟ ? ଏଇ ଦୂର ଦାର୍ଜିଲିଙ୍ଗରେ ? ମାମୀଙ୍କୁ କେତେଥର କହିଛି ଆପଣଙ୍କୁ ନିମନ୍ତ୍ରଣ କରିବା ପାଇଁ । ମାମୀ କହୁଥାନ୍ତି ଯେ ଆପଣ ଏତେ ବାଟ ଆସିବେ ନାହିଁ– ତା' ଛଡ଼ା ସେଥିର ଆବଶ୍ୟକତା ନାହିଁ । ଆପଣଙ୍କ ଭଳି ଶୁଭେଚ୍ଛୁଙ୍କୁ ପାଇ ଆମେ ଦୁଇଜଣ ଅତି କୃତଜ୍ଞ ।'

କାନରେ ମୋର ପ୍ରତିଧ୍ୱନିତ ହେଲା– ଶୁଭେଚ୍ଛୁ, ଶୁଭେଚ୍ଛୁ, ଶୁଭେଚ୍ଛୁ, .... ହାୟ ...

ଗୀର୍ଜା ଶୂନ୍ୟ । ସମସ୍ତେ ଚାଲିଗଲେ । ଉତ୍ସବ ଶେଷ । ରହିଗଲୁ କରୁଣା ଓ ମୁଁ । କରୁଣା କହିଲା– 'ମୁଁ ଆଖିକୁ ବିଶ୍ୱାସ କରିପାରିଲି ନାହିଁ । ତମେ ? ତମେ ?' ହାତ ଧରିପକାଇ ଅଶ୍ରୁ ଆଚ୍ଛନ୍ନ ଚକ୍ଷୁରେ ମତେ ଥରେ ଚାହିଁଦେଇ କହିଲା– 'ଆସ, ସମସ୍ତେ ଚାଲିଗଲେଣି । ବିଶ୍ରାମ କରିବ ଆସ, ଆମରି ହୋଟେଲରେ; କିନ୍ତୁ କୃତଜ୍ଞ ରହିଲି ତୁମର ଏ ସଂଯମ ଦେଖି । ସଂଯମ ତୁମେ ଦେଖାଇଛ ସାରା ଜୀବନ, ବିଶେଷରେ ଶାଶ୍ୱତର ଜନ୍ମ ମୁହୂର୍ତ୍ତରୁ । ଏପର୍ଯ୍ୟନ୍ତ ଯୋଗସିଦ୍ଧ ପୁରୁଷ ଭାବରେ ଯାହା ଆଚରଣ କରି ଆସିଛ, ତାହାର ତୁଳନା ନାହିଁ । ଆମେ କ୍ଷୁରଧାରରେ ଚାଲିଛୁ । କହି ରଖେ ତୁମ ରକ୍ତର କରବୀକୁ ତୁମେ ଆଜି ଆଶୀର୍ବାଦ କରିଛ ପୂର୍ଣ୍ଣ ବିକଶିତ ହେବା ପାଇଁ । ଆସ, ମୁଁ ଜାଣେ କି ଦାରୁଣ ଅସହନୀୟ ମୁହୂର୍ତ୍ତ ଥିଲା ତୁମ ପାଇଁ ।

ଆସ ! ତୁମେ ଥରୁଚ, ମୋ ହାତ ଧର, ଗାଡ଼ିକୁ ଉଠିଆସ ।'

ଶରୀରକୁ କାର ଭିତରେ ଆଉଜାଇଦେଇ ମୁଁ ସ୍ତବ୍ଧ ହୋଇ ବସି ରହିଲି କେତେକ୍ଷଣ ।

ପଚାରିଲି– ଶାଶ୍ୱତ ଆଉ ଶାଶ୍ୱତୀ ?

— ସେମାନେ ଅନ୍ୟ ଗାଡ଼ିରେ ଉଠିଲେଣି ।

— ଅନିର୍ବାଣ ?

— ସେ ଏ ଅପ୍ରତ୍ୟାଶିତ ଘଟଣାରେ ପ୍ରାୟ ବିହ୍ୱଳ । ତାଙ୍କ କଥା ସେ ବୁଝିବେ । ସେ ଶକ୍ତି ତାଙ୍କର ଅଛି ।

— ମୋ ହୋଟେଲକୁ ମୁଁ ଯିବି । ତୁମର ଏ ଆନନ୍ଦରେ ମୁଁ ନିରାନନ୍ଦ ସୃଷ୍ଟି କରିବି ନାହିଁ ।

— ତୁମ ସହିତ ମୋର ଅବସ୍ଥାନ କେବେ ଜୀବନରେ ନିରାନନ୍ଦ ସୃଷ୍ଟି କରିଛି କି ? ଆଜି କାହିଁକି ଏ କଥା ?

— ଗୋଟିଏ ପ୍ରଶ୍ନ ପଚାରିବି ?

— ମୁଁ ଜାଣେ ଯାହା ପଚାରିବ ।

— ତୁମେ ଚାହିଁଥିଲ ଶାଶ୍ୱତର ବିବାହ ବିଷୟରେ ମୁଁ କିଛି ନ ଜାଣେ ?

'ହଁ' ଉତ୍ତର ଦେଲା କରୁଣା, ବାହାର ପୃଥିବୀ ଆଡ଼େ ମୁହଁ ଫେରାଇ ।

— କାହିଁକି ?

— ତୁମେ ଜାଣ, ଅଚିନ୍ତ୍ୟ, ତା'ର କାରଣ । ବିଶ୍ୱର କେଉଁ ଦିଗରେ ଏ ସମ୍ବାଦ ସଂଚରଣ ନକରୁ, ସେ ବ୍ରତରେ ମୁଁ ବ୍ରତଶୀଳା ହୋଇ ଏ ଯାଏ ଘୋର ତପସ୍ୟା କରିଆସିଛି । କିନ୍ତୁ ଈଶ୍ୱରଙ୍କ ବିଧାନ ଭିନ୍ନ ହୋଇଗଲା– ନ ହେଲେ ଶାଶ୍ୱତର ବିବାହ ବେଳେ ତୁମେ ଦାର୍ଜିଲିଙ୍ଗରେ ?

— ହଁ, କରୁଣା ! କାହିଁକି କେଜାଣି ମନ ଅଶାନ୍ତ ହୋଇଉଠିବାରୁ ମୁଁ ବ୍ୟତିବ୍ୟସ୍ତ ହୋଇ ଶାନ୍ତି ଖୋଜବା ପ୍ରୟାସରେ ଏଠାକୁ ଚାଲି ଆସିଲି । ତୁମେ ତାହାହେଲେ ଏ ବିବାହ ଗୋପନ ରଖିବା ପାଇଁ ମୋଠାରୁ ଏତେ ଦୂର ଚାଲିଆସିଲ ? କହ କରୁଣା ! କଅଣ ତୁମର ଅଭିପ୍ରାୟ ଥିଲା ?

କରୁଣା ଉତ୍ତର ଦେଲା:

— ହଁ, ଅଚିନ୍ତ୍ୟ ! ମୁଁ ଜାଣେ ତୁମର ପ୍ରକୃତି କଅଣ । ଅତିମାତ୍ରାରେ ଭାବପ୍ରବଣ ହୋଇ ତୁମେ ଯେ କଅଣ କରିଥାନ୍ତ ବା କହିଥାନ୍ତ, ମୁଁ ସେ କଥା ଚିନ୍ତା କଲି । ସବୁ ପ୍ରକାର ଅପ୍ରୀତିକର ଅବସ୍ଥାକୁ ଦୂର କରିବା ପାଇଁ ମୁଁ ପ୍ରସ୍ତୁତ ହୋଇ ଏହି ପନ୍ଥାର ଆଶ୍ରୟ ନେଲି ।

ଯାନ ଚାଲିଥାଏ ସର୍ପିଳ ଗତିରେ ଗିରିପଥ ଦେଇ । ପାଇନ୍ ବଣର ସୁ ସୁ ଶବ୍ଦ... ପବନର ଲୁଚକାଳି ।

ମୁଁ କହିଲି– ଦେଖିଲ ତ ମୁଁ ଭାବପ୍ରବଣ ହୋଇନି; କିନ୍ତୁ ବଡ଼ କଷ୍ଟ ।

କରୁଣା ହାତ ଧରି ଅନୁନୟ କଲା:

— 'ଧନ୍ୟବାଦ, ମନେରଖ, ଶାଶ୍ୱତ ଶାଶ୍ୱତୀ ଆଗରେ ଆହୁରି ଶାନ୍ତ ହୁଅ ! କିଛି ନ ଘଟିଲା ଭଳି ଆଚରଣ କର ! ଶାଶ୍ୱତ ତୁମକୁ ଖୁବ୍ ଶ୍ରଦ୍ଧା କରେ । ସେ କଥା ତୁମେ ଜାଣ । ସେ ବି ଆଶ୍ଚର୍ଯ୍ୟ ହୋଇଛି ତୁମକୁ ଦେଖି ହଠାତ୍ ଏମିତି ଏକ ପରିବେଶରେ ।'

ମୁଁ କରୁଣାକୁ ଆଶ୍ୱାସ ଦେଇ କହିଲି– ମୋର ଗୋଟିଏ ପ୍ରଶ୍ନ ମାତ୍ର । କହ କରୁଣା, ଧର୍ମଯାଜକ ପୁରୋହିତ ମତେ ସାକ୍ଷୀ ଭାବରେ ଠାବ କଲେ କିପରି ? ଜୀବନରେ ତାଙ୍କ ସହିତ ମୋର କେବେ କେଉଁଠି

ସାକ୍ଷାତ ହୋଇନ । ସେ ଦାର୍ଜିଲିଙ୍ଗବାସୀ, ମୁଁ ଓଡ଼ିଶାର... କେମିତି ସମ୍ଭବ ହେଲା ?

ଏତିକିବେଳେ କରୁଣାର ଆଖିରୁ ବିଗଳିତ ଅଶ୍ରୁଧାରା ଗଡ଼ିଆସିଲା ।

ମୁଁ କହିଲି– ଏ ପ୍ରଶ୍ନ ତୁମକୁ କଷ୍ଟ ଦେଇଥିବ; ମାତ୍ର ମୋର ମନେ ହେଉଛି ଈଶ୍ୱରଙ୍କ ଦୃଷ୍ଟିରେ ଆମର ପୂର୍ବ ଆଚରଣରେ ଆମେ ଅପବିତ୍ର ନୋହୁଁ । ତୁମେ ମତେ ଆକାଙ୍କ୍ଷା କରିଥିଲ, ମୁଁ ବି ... ସେ ଥିଲା ପଚିଶ ବର୍ଷ ତଳର ଦୁଇ ଆତ୍ମାର ମିଳନ ଉତ୍ସବ । କହ କରୁଣା ! ମନ୍ଦିରରେ ଯେ ଯୁଗ୍ମ ଜୀବନର ପ୍ରତିଷ୍ଠା ହେଲା ସେଇ ଆଡ଼କୁ ଅନାଇଁ କହ, ଆମେ କଅଣ ଅପବିତ୍ର ? ତାହାହେଲେ ଶାଶ୍ୱତର ପରିଣୟ ବେଳେ ମତେ ପ୍ରଭୁ ଦାର୍ଜିଲିଙ୍ଗକୁ ଆଣିଲେ କାହିଁକି ? ସବୁ କ୍ଷାଳନ କରିଛନ୍ତି ସେ ତାଙ୍କର ଅମୃତ କ୍ରୁଶ ସ୍ପର୍ଶରେ... ନୁହେଁ କି ?

ହଁ ଅଚିନ୍ତ୍ୟ, ଏହା ମୁଁ ବି ବୁଝିପାରୁନି, ଏ ଘଟଣା ଘଟିଲା କିପରି.... ଏଇଠି ମାନବର ପ୍ରଜ୍ଞା ଲୋପପାଇଯାଏ; ଈଶ୍ୱରାନୁଭୂତିରେ ସଂସାର ଚାଲେ । ସମସ୍ତେ ପଚାରୁଛନ୍ତି ଦାର୍ଜିଲିଙ୍ଗରେ ଏ ବିବାହ କାହିଁକି ? ଏତେ ଦୂର, ଏତେ ପଥ ପରିଶ୍ରମ ? ଏହାର ଉତ୍ତର ମୁଁ କାହାକୁ କିଛି ଦେଇ ପାରିଲି ନାହିଁ, ଅଚିନ୍ତ୍ୟ !

ହୋଟେଲ ପ୍ରାଙ୍ଗଣରେ ଗାଡ଼ି ଠିଆହେଲା । ସ୍ୱାଗତ, କୋଳାହଳ, ଚିତ୍କାର... ଶାଶ୍ୱତ ଦଉଡ଼ିଆସି କହିଲା– ମାମି ଏତେ ଡେରିକଲ ? କାହାନ୍ତି ଅଚିନ୍ତ୍ୟବାବୁ ? ଏଇ ଯେ ଆସନ୍ତୁ, ଆସନ୍ତୁ ।

ଅନିର୍ବାଣ ହସି ହସି ହାତ ବଢ଼ାଇଲେ... ସେ ହାତ ଏକାଥରକେ ବଢ଼ିଆସିଲା ନାହିଁ । ଥମିଗଲା । ତଥାପି ସହୃଦୟତା... ଆସ ଅଚିନ୍ତ୍ୟ !

କରୁଣା ଏକ ଭିନ୍ନ ରସ, ଭିନ୍ନ ଭଙ୍ଗିମା, ଭିନ୍ନ ଶରୀରର ହୋଇଯାଇ ସମସ୍ତଙ୍କ ସ୍ୱର ସହିତ ସ୍ୱର ମିଳାଇ କହିଲା– "ଆସ ଅଚିନ୍ତ୍ୟ, ତମକୁ ପାଇ ଆମେ ସମସ୍ତେ ଆନନ୍ଦିତ । ଜାଣିପାରୁଛି ଡିନ୍‌ର ରେଡ଼ି ।' ଶୀଘ୍ର ଚାଲିଗଲାବେଳେ ମୋରି ଆଡ଼େ ମଧୁର କଟାକ୍ଷ ଢାଳି ସତେଯିମିତି ସେ କହୁଥିଲା, "ସହିନିଅ ଏ ସବୁ 'ଅଚିନ୍ତ୍ୟ' ଡାକ, ମୋଠାରୁ ବି । କ୍ଷମାକର ପ୍ରିୟତମ, ଜନ୍ମଜନ୍ମାନ୍ତରରେ ରହିଯିବ ଏ ଅବଲୁପ୍ତ ରହସ୍ୟ ଏମିତି ଆଚ୍ଛନ୍ନ ହୋଇ । ମୁଁ ଜାଣେ, ତୁମର ରକ୍ତ କଥା କହିବାକୁ ଉଚ୍ଛନ୍ନ ହେଉଛି । ଶତ ଝଙ୍କାରରେ ଝଂକୃତ ହେବାକୁ ତାହା ଇଚ୍ଛା କରୁଛି; କିନ୍ତୁ ନା– ନା– ନା– ତମେ ବୁଝୁଥିବ ପ୍ରିୟତମ !"

ପାଇନ୍ ଗଛମାଳାରେ ଗର୍ଜୁଛି ସମୀରଣ । ଗଭୀର ରାତ୍ରି । ଧବଳ ତୁଷାରର ଛିନ୍ନ ଛିନ୍ନ ସୂତାଖିଅରେ ଆବୃତ ହୋଇଛି ଦାର୍ଜିଲିଙ୍ଗ୍ ।

ଆର କକ୍ଷରେ ଅନିର୍ବାଣ ଆଉ କରୁଣା । ମୁଁ ଏ କକ୍ଷରେ ବସିରହି ଶଯ୍ୟା ଉପରେ ଦେଖୁଥିଲି ଗବାକ୍ଷର କାଚ ମଧ୍ୟରେ ବିଶ୍ୱ ବିଭୂତିରେ ସଂଯୋଜିତ କରୁଣା ସହିତ ଆଦ୍ୟ ପ୍ରଣୟର ସାର୍ଥକ ଦୃଶ୍ୟଦୃଶ୍ୟାନ୍ତର ।



# ନେତ୍ରୀର ନେତ୍ର

ଲୋକଟାର ମୁହଁରେ ମେଞ୍ଚାଏ ଦାଢ଼ି । ଅଧା ଲଙ୍ଗଳା । ବିଦ୍ୟୁତ୍ ମଶାଲ ପଡ଼ିଆର ଅର୍ଦ୍ଧ ଆଲୋକିତ ଗୋଟାଏ ସନ୍ଧିରେ ଛିଡ଼ାହୋଇ କଅଣ ଗୁଡ଼ାଏ ବକ୍‌ବକ୍ କରୁଥାଏ ।

ଷ୍ଟେସନ୍‌ରେ ଲୋକ ଗହଳି । ପୁଲିସ୍ ବାହିନୀ । ତାଙ୍କର କମରପଟି ଓ ଆଖିର ତେଜ ଚକ୍‌ଚକ୍ କରୁଥାଏ ।

ଯେଉଁମାନେ ଗରୀୟାନ୍ ଓ ଗୌରବବାନ୍, ଉଭୟ, ସେମାନେ ଉଚ୍ଚ ପଦବୀରେ ରହିଥିବାରୁ ସେ ପଡ଼ିଆରେ ତାଙ୍କର ସ୍ଥିତି ଉତ୍ସବଟିକୁ ସାର୍ଥକ କରିଥାଏ । ସେମାନଙ୍କର ଭାବଭଙ୍ଗୀ ଓ କେବଳ ଆକାଶକୁ ଚାହିଁ ତାଙ୍କର ଗୌରବକୁ ପରିମାପ କରିବାର ଠାଣିଟି ବଡ଼ ଆମୋଦଦାୟକ ହୋଇଥିଲା ।

ଜଣେ ହୋଟେଲ ମ୍ୟାନେଜର ହାତ ବଢ଼ାଇଦେଲେ ଜଣେ ମନ୍ତ୍ରୀଙ୍କ ଆଡ଼େ ବଡ଼ ବିଚଳିତ ଚାହାଣିରେ । ସଗୋତ୍ରୀ ସେମାନେ କିପରି ବା ହେବେ ? ତେବେ ହୋଟେଲ, ରଙ୍ଗାଳୟ ଓ ଅନେକ ଅନେକ ସ୍ଥାନରେ ସେମାନଙ୍କର ପୂର୍ବ ପରିଚିତି ଥିବ ।

ମ୍ୟାନେଜର ଭାବିଥିଲେ ମନ୍ତ୍ରୀ ଅନୁରୂପ ବିଚଳିତ ହୋଇ ତାଙ୍କୁ କୁଣ୍ଢାଇ ପକେଇବେ– ଏ ଆଶା ତ ସମସ୍ତଙ୍କର ଥାଏ, ନହେଲେ ପାନ ନଖାଉଥିବା ମନ୍ତ୍ରୀଙ୍କୁ ପାନ ଯାଚନ୍ତେ ଏତେ ଲୋକ କାହିଁକି ?

ଓଡ଼ିଶାକୁ ଟେଲିଭିଜନ ଆସିଯିବାରୁ ମଣିଷର କଳା, ଗୋରା, ପଚାରଙ୍ଗିଆ ମୁହଁଗୁଡ଼ାକ ଏବେ ଆଉ ଜନ୍ମିତ ଚମଡ଼ାରେ ଜ୍ୟୋତି ଝରାଉ ନାହାନ୍ତି । ଜ୍ୟୋତିର୍ମୟ ଟେଲିଭିଜନ କୃପାରୁ ସବୁ ତୋଫା ଦୃଶ୍ୟ ହୋଇଛି । ଝଲକ ଝଲକ କରି ଆଲୁଅ ବୃତ୍ତିରେ ସମସ୍ତେ ଧରାପଡ଼ିଯାଇ ଗୋଟାଏ ବର୍ତ୍ତୁଳଧାରାରେ ଆଭାନ୍ୱିତ ହେଉଥାନ୍ତି ।

ସ୍ନିଗ୍ଧ ଚନ୍ଦ୍ର ମଣ୍ଡଳ ସୃଷ୍ଟି କରୁଥାଏ ମର୍କରୀ ଆଲୁଅ । ଛେକବାଡ଼ ଭିତରେ ଅଗଣିତ ନରନାରୀ । ବଡ଼ ବଡ଼ ଲୋକ ଓ ତାଙ୍କର ସହଧର୍ମିଣୀଙ୍କ ଆଡ଼କୁ କ୍ୟାମେରା ଘୂରୁଥିବାବେଳେ ଛୋଟ ପିଲାଏ ସେଇଠି ରଜଘଷ ହେଉଥାନ୍ତି ।

ଉତ୍ସବଟା ହେଉଛି, ଶ୍ରୀଜଗନ୍ନାଥ ଚଳମାନ ହେବେ । ବ୍ରହ୍ମ ସାକାର ରୂପରେ ଗତିଶୀଳ ହେବେ । ଗତିରେ ବିଶ୍ୱପତିଙ୍କୁ ମାତ୍ର ଏଗାର ଘଣ୍ଟାରେ ହାବଡ଼ା ପୋଲ ପାଖରେ ପହଞ୍ଚାଇ ନବାର ଏ ମନୋହର ଉତ୍ସବ ।

ମାଦଳା ପାଞ୍ଜି କେଉଁ ପର୍ଯ୍ୟନ୍ତ ଲିଖିତ କହିହେବ ନାହିଁ । ଏବେ ଲେଖା ହେଉଛି କି ନା ଜଣାନାହିଁ । ଯେଉଁ କରଣମାନେ ଲେଖୁଥିଲେ, ସୂତା ଖିଅକୁ ଏ ଭିତରେ ଛିଣ୍ଡେଇ ପକେଇଛନ୍ତି କି ରଖିଛନ୍ତି, ତା ବି କହିହେବ ନାହିଁ । ଏ ଉତ୍ସବଟି ମାଦଳାପାଞ୍ଜିରେ ପରିଶୋଭିତ ହୋଇ ସାକାର ଶ୍ରୀ ଜଗନ୍ନାଥଙ୍କ ଗତିକୁ ବକ୍ଷରେ ଧରିବ ତ ?

ସେଇ ଲୋକଟା ସେମିତି ପାଟି କରୁଥାଏ । ତା' ଚାରିପଟେ ଚାରିଟା କନେଷ୍ଟବଳ ଛକି ରହିଛନ୍ତି ।

ଏମିତି ମନୋଜ୍ଞ ଅନୁଷ୍ଠାନକୁ ସେ ବିସ୍ୱାଦ କରିଦେବ କି ?

ଟ୍ରେନ୍ ଡବା ଉପରେ ଗାର୍ଡ଼ କୋଠରି ପାଖକୁ ବଳଭଦ୍ର ଲମ୍ବାଳିଆ ମୁହଁ ଧରି, ଜଗନ୍ନାଥେ କାକୁସ୍ଥ କାନ୍ଦୁରିଆ ଆଖି ମେଲି, ଆଉ ସୁଭଦ୍ରା ଦୁହିଁଙ୍କ ଭିତରେ ଆଶ୍ୱସ୍ତା ରହି, ଯାହା ଘଟିବ ଘଟୁ ପଛକେ ସେ ଯେ ନୀରବରେ ଦୁଇ ଭ୍ରାତାଙ୍କ ପଞ୍ଜରାକୁ ଲାଗି ରହିଛନ୍ତି... ଏମିତି ନିଜକୁ ବୋଧଦେଇ ବୈଠା ଉପରେ ଦେବତାମାନେ ବସିଛନ୍ତି।

ଏପରି ସେମାନେ କେବେ କୁଆଡ଼େ ଯାଇନଥିଲେ । ଅବଶ୍ୟ ଥରେ କଳାଘୋଡ଼ା ଧଳାଘୋଡ଼ା ଉପରେ ସବାର ହୋଇ ଭକ୍ତ ଶିରୋମଣି ଗଜପତିଙ୍କର ଟେକ ରଖିବାକୁ ଧାଇଁଯାଇଥିଲେ । ହାତରେ ଥିଲା ଲଗାମ । ଇଚ୍ଛା ମାତ୍ରକେ ଅଶ୍ୱକୁ ଅଟକାଇ ପାରୁଥିଲେ, କୋରଡ଼ା ମାଡ଼ରେ ଦ୍ରୁତ ଧାବିତ କରିପାରୁଥିଲେ । ଅବତରଣକରି ମାଣିକୀ ସହିତ ଐଶ୍ୱରୀୟ ରସିକତା କରିଥିଲେ ।

ମାତ୍ର ଏ ଯେ କାକୁସ୍ଥପଣିଆ, ନିଜର କିଛି କରିବାର ନାହିଁ, ଏ ଘୋଡ଼ା ନୁହେଁ, ଟ୍ରେନ୍– ସେମାନେ ବି ଚାଳକ ନୁହନ୍ତି, ଚାଳକ ହେଉଛନ୍ତି ଅନ୍ୟମାନେ । କୁଆଡ଼େ ଯିବେ, କଣ କରିବେ, କିଛି ଜାଣନ୍ତି ନାହିଁ । ଲାଜ ସଂକୋଚରେ ଅବା ମୁହଁ ଲୁଚାନ୍ତେ, ତା' ି ସମ୍ଭବ ନୁହେଁ। ତାଙ୍କ ଚାରିପଟେ ଉଜ୍ଜ୍ୱଳ ପ୍ରଦୀପମାଳା ।

ସେଇ ଅନ୍ଧାରୁଆ ଗଳିରେ ଠିଆ ହୋଇଥିବା ଲୋକଟା ନିଃଶ୍ୱାସ ନେଲା । ବିଡ଼ିଟାଏ ଟାଣିଲା... ପୁଣି କହିଲା... ହେ ମାଆ ! ଏ ଯେଉଁ ପଡ଼ିଆଟା ନା, ଏଠି ମୋ ଭାଇ ଭଉଣୀ, ଛତରଖିଆ କେତେ କୋଷ୍ଟିଆ ଆମେ ଶୋଇଥାଉ, ଏତିକିବେଳେ ଦୁଃଖସୁଖ ହଉ ।

ସବୁଦିନ ତ ଏ ଷ୍ଟେସନ୍‌ରୁ ଗାଡ଼ି ଛାଡ଼େ ଓ ଆସେ, ଆଜି ଏତେ ଆଲୁଅ, ଏତେ ଲୋକ କିଆଁ ? ହଁ ବୁଝିଲି, ଆମ ଲକ୍ଷ୍ମୀ ଆସିଛନ୍ତି ।

ଲୋକଟାକୁ ଗୋଟାଏ ସିପାହୀ ଠେଙ୍ଗାରେ ଠେଲିଦେଇ କହିଲା– ଆବେ ଚୁପ୍... ବକ୍ ବକ୍ କରନା, ଚୁପ୍– ଗାଡ଼ିଟା ଛାଡ଼ିଦେଉ, ତେଣିକି ତୁ ହଲ୍ଲା କରୁଥା ।

ସବୁ ଜଗନ୍ନାଥଙ୍କ ଲୀଳା । ହସମାଡ଼େ... ଜଗନ୍ନାଥେ ବି ଅଭିନୟ କରୁଛନ୍ତି ।

ସବ୍ୟସାଚୀ ପାଖେ କି ଅଭିନୟ ସେ ନକଲେ ?

ବାଳିକୁ ନିହତ କରିବା ଆଗରୁ କି ଅଭିନୟ ସେ ନକଲେ ?

ଜାରା ଆଖି ଆଗକୁ ହରିଣକାନ ଭଳିଆ ନିଜ ପଦାରବିନ୍ଦକୁ ଦୃଶ୍ୟ କରି କି ସମ୍ମୋହିତ ଅଭିନୟ ସେ ନ କଲେ ?

ଯେଉଁଠି କୂଟ କରିବାକୁ ପଡ଼ିଛି, ଛନ୍ଦ କରିବାକୁ ପଡ଼ିଛି, ସେଠି ଏମିତି କରିଛନ୍ତି । ପଚାରିଲେ ବିଶ୍ୱକଲ୍ୟାଣ ପାଇଁ ... ଏ କଥାର କି ବା ଉତ୍ତର ଅଛି ?

ଜଣାପଡ଼ିଲା ଟ୍ରେନ୍‌ଟା ଅଭିମାନର ଆଭିଜାତ୍ୟ ରଖି ବଡ଼ ମହରଗ କଟକ ସହରକୁ ଛୁଇଁ ଯିବନାହିଁ । ଜଗନ୍ନାଥ ରେଳ କିମିତି ଗଜପତିଙ୍କ ଗଡ଼ା, ଭଗ୍ନବାରବାଟୀ ଦୁର୍ଗକୁ ଚାହିଁ ଚାହିଁ ଯିବ ? ଶ୍ରୀ ଚୈତନ୍ୟ ପାଦପଙ୍କଜରେଖାକୁ ଦେଖି ନଈକୂଳିଆ ସମୀର ଉପଭୋଗ କରିବ ?

ତା' ବକ୍ଷରେ ଦିନ ରାତି ସ୍ୱର୍ଗ ଭବନଠାରୁ ରାଜଭବନ ଯାଏ, ସାଗର ନୀଳ ଜଳରେ ପହଁରି

ପହଁରି ଛିଡ଼ା ହୋଇ ଯାଇଥିବା ପୁରୁଷ କାମିନୀମାନେ, ଝାଉଁବଣରେ ଶିହରିତ ଅଙ୍ଗନେଇ ବିହାର କରୁଥିବା ଏବଂ ବଡ଼ ବଡ଼ ଭୋଜନାଗାରରେ ତୃପ୍ତ ହୋଇଥିବା ଯାତ୍ରିଗଣ ଶୋଇପଡ଼ିବା ପୂର୍ବରୁ ନିଶ୍ଚୟ ପ୍ରାର୍ଥନା କରିଥିବେ–

"ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟାଃ ।"

କଟକ ସେମାନଙ୍କୁ କାଳେ ଉଠାଇଦେବ, ତେଣୁ ଜଗନ୍ନାଥ ଇଚ୍ଛା କଲେ ନଇଁ ନଇଁ ପାର ହୋଇଯିବେ ମରକତ କେଶରୀଙ୍କ ବାଡ଼କୁ, ସଦ୍ୟ ଜାଗ୍ରତ ଗଜପତି ସୈନ୍ୟ ଛାଉଣୀର କଙ୍କାଳ ବାରବାଟୀକୁ ।

ବିରଜା ମୁହଁ ଶୁଖେଇଲେ । ଅନୁଯୋଗ ଯେ, ବିମଳା ଆଗରୁ କିଛି ଉଦନ୍ତ ଦେଲେ ନାହିଁ । ଯେତେ ଟ୍ରେନ୍ ଆଜିଯାଏ ଯାଇଛି ଆସିଛି, ବିରଜା ଅଧିଷ୍ଠାନ ପାଖରେ ମଥା ନଇଁ କହିଯାଇଛି । ଏକ ତନ୍ତ୍ର ଦେବତାଠାରୁ ଅନ୍ୟ ଏକ ତନ୍ତ୍ର ସାଧିକା ସ୍ନେହ ସଦିଚ୍ଛାର ପଥ... କେହି ଏ କଥା ବୁଝିଲେନି ।

କିନ୍ତୁ ଏ କଅଣ ହେଲା ? ବିରଜାକ୍ଷେତ୍ର ଛୁଇଁଲେ ନାହିଁ ଶ୍ରୀଜଗନ୍ନାଥ, ଏପରିକି ଅତି ପାଖ, ସୈକତ ଭଉଁରିରେ ପାଦ ନୂପୁର ପୋତି ରସରାଜ ଭାବଗ୍ରାହୀ ଶ୍ରୀ ଗୋପାଳ ଯେ ରାଧାରାଣୀଙ୍କୁ ଧରି ଛିଡ଼ା ହୋଇଛନ୍ତି ସାକ୍ଷୀ ଗୋପାଳ ତୀର୍ଥରେ, ସେଠି ବି ଜଗନ୍ନାଥେ ଥମିଲେନି । ଏକାବେଳକେ ଗଙ୍ଗା ଧାମ, ଦକ୍ଷିଣେଶ୍ୱର କାଳୀବାଡ଼ି, ବେଲୁର ମଠ !

ଅସଲ ମୁହୂର୍ତ୍ତଟି ଆସିଗଲା । ମାଦୁରୀ କୃଷ୍ଣମୂର୍ତ୍ତି ଡ୍ରାଇଭର ସିଗ୍ନାଲ୍ କଲେ । ନୀଳ ଆଲୋକ ଟେକିଲେ ନେତ୍ରୀ । ଶ୍ରୀ ଜଗନ୍ନାଥଙ୍କ ଚକାଡୋଳା ଆଡ଼େ ପ୍ରସାରିତ ହେଲା, ସେ ଆଲୋକ ମଥାର ଅବଗୁଣ୍ଠନ ତଳେ ନୀଳ ବାରିଧିର ସମୀର ସ୍ପର୍ଶରେ କମ୍ପି ଗଲା; ମାତ୍ର ଉଜ୍ଜ୍ୱଳ ଜଳୁଥିଲା ତାଙ୍କର ଦୁଇଟି ନେତ୍ର... ନେତ୍ରୀର ନେତ୍ର, ଯେଉଁ ଚକ୍ଷୁ ତଳେ ଓଡ଼ିଶାର ଭାବି ଶ୍ରୀର ବହୁ ଯୋଜନା ଝଲସିଯାଏ ପ୍ରତି ମୁହୂର୍ତ୍ତରେ– କଳ୍ପନା, ଯୋଜନା, ଅସମ୍ଭବକୁ ସମ୍ଭବ କରିବାରେ ସାର୍ଥକ ଚେତନା– କେତେ ସ୍ୱପ୍ନ... କେତେ ସତ୍ୟ ।

ଟ୍ରେନ୍ ଧାଇଁଯାଏ ଜଗନ୍ନାଥ ନାମ ଧରି । ବସିରହିଥିଲେ ନିର୍ବାକ୍ ନିସ୍ପନ୍ଦ ନେତ୍ରୀ ନିଜ ସାଲୁନରେ ।

ଭାବରୁ ଭାବାନ୍ତର ଘେନି ବିହଗପକ୍ଷ ଧରି ସେ ଉଡୁଥିଲେ– 'ସତରେ ଏ ଦେଶର ଭାଗ୍ୟ ଫେରିବ । ଏଇ ଛନ୍ଦରେ, ଏଇ କମ୍ପନରେ, ଏଇ ଅଗ୍ରସରଣରେ ଅନ୍ଧାରର ବୁକୁ ଚିରି, ଆଲୁଅର ଶିଖା ଧରି, ପର୍ବତ ଫଟାଇ, ମେଦିନୀ କମ୍ପାଇ ଓଡ଼ିଶାର ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ହୀନମନ୍ୟଭାବର କାହିଁ କେବେ ଲୋପଘଟିବ ।'

ଚକ୍ଷୁ ମୁଦ୍ରିତ

ଚୈତନ୍ୟ ଚିତ୍ତବୃତ୍ତି

ମାଇଲ୍ ମାଇଲ୍ ଧରି ବହୁ ପଥ ଆଗକୁ ଲମ୍ବିଛି

ବହୁ ପଥ...

ନେତ୍ରୀର ନେତ୍ର ଯେତିକି ଦେଖିଛି, ତାହାଠାରୁ ପ୍ରସାରିତ ବହୁ ପଥ– ବିଶ୍ୱାସର ପଥ ।

■■■

# ଭାରତବର୍ଷ

କନ୍ନଟପ୍ଲେସ୍‌ରୁ ସାଉଥ୍ ଏକ୍‌ସଟେନସନ୍... ଟୁରିଷ୍ଟ ବସ୍‌ରେ ଯନ୍ତରମନ୍ତର ରୋଡ଼ରୁ 'ହା ରାମ' ଗାନ୍ଧିଘାଟ ଯାଏ– ଲାଲ୍‌କିଲ୍ଲା ... ପାଖେ ପାଖେ ଶାନ୍ତିବନ– ଶାସ୍ତ୍ରୀ ସମାଧି– ମୌଲାନା ଆଜାଦ୍ କବର ।

ମଣ୍ଡି ହାଉସ୍ ଆଗରେ ସାହିତ୍ୟ ସାଧକଙ୍କର ମେଳା– ଏକାଡେମୀର ଉତ୍ସବ । ପାଖରେ ଟେଲିଭିଜନ୍ ପାଇଁ ଆଗନ୍ତୁକ ଶିକ୍ଷାର୍ଥୀଙ୍କର ତାଲିମ୍ କ୍ଲାସ୍ ।

ସବୁ ସୁନ୍ଦର, ସବୁ ଅଭିରାମ ।

ନିର୍ବାଚନ ସମୟ, ଓଡ଼ିଶାରେ ଭୋଟ ଗଣତି । ଦିଲ୍ଲୀ ସହର ଉନ୍ମୁଖ... କୋଣାର୍କ, ଜଗନ୍ନାଥ ଦେଶର ସାଧୁ ସନ୍ଥ, ଧର୍ମଙ୍କ ଭୋଟ ଦେଉଛନ୍ତି । ମୂର୍ଖ ଆଦିବାସୀ ବନଜୀବିଗଣ ବୁଥ୍ ଆଗରେ ଛିଡ଼ା ।

ବସିଥିଲି ଅରବିନ୍ଦ ଦାସଙ୍କର ଟେଲିଭିଜନ ସେଟ୍ ଆଗରେ । ସନ୍ଧ୍ୟା ନଇଁଆସିଛି । ନିସ୍ତବ୍ଧ ଫ୍ଲାଟ୍ । ମନେ ହେଉଥାଏ ଗୋଟାଏ ଶତାବ୍ଦୀର ଯୁଗପୁରୁଷ କର ଲେଉଟାଉଛି । ପାଖରେ ଅରବିନ୍ଦ, ସ୍ତ୍ରୀ କାନ୍ତି, ମୁଁ ଓ ମୋର ସହଧର୍ମିଣୀ ବୀଣା...

ସୁନ୍ଦରୀ ଯୁବତୀ ହସି ହସି ଦେଖାଇଦେଉଥାନ୍ତି– ଏ ଦଳ ଏତିକି ପାଇଲା । କ୍ଷମା କରିବେ, ହଠାତ୍ ଓଡ଼ିଶାରୁ ଗୋଟାଏ ଫ୍ଲାସ୍ ଆସିଲା । ମୋଟ ହେଲା ଷାଠିଏ । ଟ୍ରେଲ୍ କରୁଛି ଅନ୍ୟ ଦଳ ।

ଦେଖୁଥାଏ । ଗୋଟାଏ ନେତ୍ର ଥାଏ ବକ୍ଷବାସ ସଜାଡ଼ି ଘୋଷଣା କରୁଥିବା ଲାବଣ୍ୟିକା ରମଣୀକୁ, ଅନ୍ୟ ନେତ୍ର ଥାଏ ଜଗନ୍ନାଥ ଧାମର ସିଂହଦ୍ୱାର ପରିସର ଉପରେ ।

ଷାଠିଏ ହଜାର ଜନତାର ଉଚ୍ଛ୍ୱସିତ ରୋଳ... ପଟ୍ଟନାୟକ, ତମେ ଆସ, ତମେ ଗାଦିକୁ ଆସ ; ଗୋଟାଏ ପରିବର୍ତ୍ତନ ଆମେ ଚାହୁଁ । ତମେ କଅଣ ଚାଉଳ ଦର କମେଇ ପାରିବନି ? ତମେ କଅଣ ଲଙ୍ଗଳା ଯୁବତୀକୁ ଶାଢ଼ିଟାଏ ଦେଇପାରିବନି ? ତମେ କଅଣ ପନ୍ଦର ଦିନର ଟାଆଁସା ଫୁରୁଫୁରୁ କେଶ ଉପରେ ଲଗାଇବାକୁ ନଡ଼ିଆତେଲ ଟିକିଏ ଦେଇ ପାରିବନି ? ତମେ ଉତ୍ତର ନ ଦେଲେ ବି ଆମେ ଜାଣୁ ତମେ ପାରିବ ।

ରଥଯାତ୍ରାର ଦୃଶ୍ୟ.... ବିଜୟୀ ବୀର...

ଫ୍ଲାସ୍ ... ପୁରୀରେ ଗାଈ ବାଛୁରୀ ବିଜୟ.... ସ୍ଥିତପ୍ରଜ୍ଞ ଭଳି ବସିରହିଥିଲି । ପିଲାଦିନେ ବହୁ ରଙ୍ଗ ତାମସା ଦେଖିଛି । ଓଡ଼ିଶାର ଲୋକ ସଂସ୍କୃତିର ଏଗୁଡ଼ାକ ମଜ୍ଜାଗତ କଥା । ଏ ବୟସରେ ବି ତାମସା ଦେଖା ମୋର ଶେଷ ହୋଇନି...

ସ୍ତ୍ରୀ ବାଜି ରଖିଥିଲେ ବାଛୁରୀ ଉପରେ ... ସେ ଡେଇଁପଡ଼ିଲେ । ଅରବିନ୍ଦ ସୁପ୍ରିମ୍ କୋର୍ଟରେ ଜବାବ୍‌ସୁଆଲକାରୀ ବାରିଷ୍ଟର । ସେ ତ ଗମ୍ଭୀର ରହିବାର କଥା, ରହିଥିଲେ ।

ଷାଠିଏ ଖସିଲାଣି । ସତୁରୀବେଳକୁ ଥିବି କି ନାହିଁ । ଏ ବୟସରେ କଅଣ ବିଚାର ବିମର୍ଷକୁ ବଦଳାଇବି ? ଅର୍ଦ୍ଧ ଲକ୍ଷ ଲୋକ ଡାକୁଥିଲେ ଜିନ୍ଦାବାଦ ।

ତମେ ଆମର ନେତା... ଆଉ ଦୁଇଟା ରାତ୍ରି ପ୍ରଭାତିବା ପରେ ଏ କଅଣ ଘଟିଲା ? କି ମ୍ୟାଜିକ୍ ଏ ?

ଲୋକ ଚରିତ୍ର ବଦଳେ; କିନ୍ତୁ ସମଷ୍ଟି ବି ବଦଳିଗଲା ?

ଟେଲିଭିଜନରେ ରୂପସୀ ମହିଳାର କଣ୍ଠ ଓ ଚକ୍ଷୁପତାର ନର୍ତ୍ତନ ଶୁଣିଲି, ଦେଖିଲି । ସକାଳେ ଧ୍ୟାନ କରି ଆସିଥିଲି ରାଜଘାଟରେ । 'ହା ରାମ'ର ଚେକା ଚେକା ସୁବିସ୍ତୃତ ନୀଳ ଦୂର୍ବାଦଳ ତରଙ୍ଗ ଉପରେ ଆକାଶର ପ୍ରତିବିମ୍ବ ଦେଖିଥିଲି ।

କହିଲି– ବାପୁ, ତୁମର 'ହା'ଟା ହିଁ ସତ୍ୟ ରହିଗଲା । ରାମର ଅଭିରାମ କୈବଲ୍ୟରେ ତୁମେ ମୁକ୍ତ– ପୁରୁଷ ମୁକ୍ତି ପାଇଗଲ । ଆମ ପାଇଁ ରଖିଗଲ କେବଳ ହା– ହତାଶାର ସ୍ୱର। କି ସ୍ୱପ୍ନ ତୁମେ ନ ଦେଖିଥିଲ ? ଆଜି ହୋଇଛି କଅଣ ?

ତିନି ରାତି ଟେଲିଭିଜନରେ ପଡ଼ିବା, ଉଠିବା, ବିଜୟ, ପରାଜୟ, କାବିନେଟ୍ ଗଠନ, ମନ୍ତ୍ରୀ ଉପମନ୍ତ୍ରୀର ତାଲିକା, ପ୍ରାପ୍ତି ଅପ୍ରାପ୍ତିରେ ଆଡ଼ ରୁଷା, ଅଭିମାନ, କୃଷ୍ଣଙ୍କ ପାଖେ ଲଳିତାଙ୍କ ଅଳି, ନିୟମ କରି ଗୋଡ଼ ହାତ ଧରିବା ସବୁ ଦେଖିଲି ।

ଦେଶରେ ଗୋଟାଏ ଶାସନର ଷଷ୍ଠୀଘର ଉତ୍ସବ । ଦିଲ୍ଲୀରୁ ଆସି ଉତ୍କଳ ଏକ୍ସପ୍ରେସ୍ ତାଳବଣିଆ ଛୁଇଁଲା । ଏବେ ବି ଝାଉଁଗଛଗୁଡ଼ାକ ଛିଡ଼ା ହୋଇଛି । ଲକ୍ଷେ ଟଙ୍କା ବ୍ୟୟରେ ଏଇଠି ସଭାମଣ୍ଡପ ନିର୍ମିତ ହୋଇଥିଲା ।

ଚିହ୍ନା କୁଲୀ, ତେଲେଙ୍ଗା ଶ୍ରମଜୀବୀ ପଚାରିଲା– ବାବୁ, ଦିଲ୍ଲୀରୁ ଫେରିଲେ ?

ସ୍ତ୍ରୀଙ୍କର ଗର୍ବୋନ୍ନତ ଚାହାଣୀ... କିରେ ପ୍ରାନ୍ତଲୁ କଅଣ ବାଛୁରୀ ପାଇଲା ତ ? ଭୋଟ କାହାକୁ ଦେଲ ? ତମ ରାଜ୍ୟ ତ ପେଣ୍ଡୁକଟା, ଯାହାକୁ ଦେବ ସେଥିରେ ଆଉ ଭେଦ ନାହିଁ । କହ, କହ–

ପାନ୍ତଲୁ ହୋଲ୍‌ଡ଼ ଆଖିଟା ଉଠାଉ ଉଠାଉ କହିଲା– ଆଗ ରାତିରେ ଲଙ୍ଗଳ ଉପରେ ସମସ୍ତଙ୍କ ମୁଠା ଥିଲା, ସେଇଥିରେ ଚଷିଯାଇଥାନ୍ତୁ । ହେଲେ ଗୋଟାଏ ରାତି ଭିତରେ ଓ ଗାଈ ଲାଞ୍ଜ ଦେଖାଇଲା; ପହ୍ନାରେ ପହ୍ନାଏ କ୍ଷୀର...

ମୁଁ ହସୁଥାଏ... କହିଲି– ପାନ୍ତଲୁ, ବ୍ୟାଙ୍କରେ ରଖିବା ଭଳି ଜିନିଷ ତ ? ନା ମଦଖାଇ ଉଡ଼ାଇଦେଲ ବସ୍ତିଯାକ ?

– ଆଉ ରଖିବୁ କଅଣ ? କଞ୍ଚା ପଇସା, ଟିକ୍‌ଟିକ୍ କରୁଛି... ସେତିକିବେଳକୁ ଶୋଷ ବି ହେଉଥାଏ ... ଇଜାର୍‌ଦାର ଜାଣିଥାଏ.... ମେଲାଇଦେଲା ପସରା... ସବୁ ସରିଗଲା... କଅଣ ଆଜ୍ଞା, ଏତେଗୁଡ଼ାଏ ସୁଟ୍‌କେଶ୍ ?

ସ୍ତ୍ରୀ କହିଲେ– ଆଗକୁ ପରା ଝିଅ ବାହାଘର– ଦିଲ୍ଲୀ ବଜାରରେ ଚମଡ଼ା ଟିକିଏ ଶସ୍ତା... ଧର ଧର ଯିବା ।

କାକୁସ୍ଥ ଭାବରେ ବସିଥାଏ ସିଭିଲ୍ ସପ୍ଲାଇ ଅଫିସରଙ୍କ ଆଗରେ... ବେଞ୍ଚରେ । ଅନ୍ୟ ବାବୁମାନେ ଚେୟାର ଉପରେ ବସି ରାଜ୍ୟର ବଣ୍ଟନ ନୀତି ସ୍ଥିର କରୁଥାନ୍ତି । କୁମୁଟି ମହାଜନ ବ୍ୟବସାୟୀ କେତେଜଣ ବି ଥାନ୍ତି । ସିଗାରେଟ୍ ନିଆଦିଆ ଚାଲିଥାଏ ।

ଘଣ୍ଟାକ ପରେ ସେ ମୁହଁ ଟେକିଲେ ... ମୋ ଆଡ଼େ... ଝିଅକୁ ବିବାହ ଦେବି, ପିତାର ଗର୍ବ ଓ

ଗୌରବର କାର୍ଯ୍ୟ କରିବି... ଏ କଥା ଯେଉଁଦିନଠାରୁ ସ୍ଥିର କଲି, ମୁଁ ଅହଂଶୂନ୍ୟ ହୋଇଗଲି । ବୈଷ୍ଣବ ଦୀନତାର ହୃଦୟକୁ ବି ଶୁଷ୍କ କରି ରଖିଲି । ଜୈନ ଧର୍ମର ଅହିଂସ ବ୍ରତ ଘେନି କାନ ନାକରେ ଅଦୃଶ୍ୟ ପଟି ଦେଲି । ବୌଦ୍ଧ ଶ୍ରମଣ ବେଶରେ ମୁଣ୍ଡକୁ ଅଦୃଶ୍ୟ ମୁଣ୍ଡିତ କରି କେବଳ ଗାଇଲି...

କଲେକ୍ଟରଂ ଶରଣଂ ଗଚ୍ଛାମି
ଯୋଗାଣକର୍ତ୍ତାଙ୍କ ଶରଣଂ ଗଚ୍ଛାମି
ଚିନିବିକ୍ରେତାଙ୍କ ଶରଣଂ ଗଚ୍ଛାମି
ଶାଢ଼ି ଦୋକାନୀ ଶରଣଂ ଗଚ୍ଛାମି

ଇତ୍ୟାଦି ଇତ୍ୟାଦି ଶରଣଂ ଗଚ୍ଛାମି ମନ୍ତ୍ରରେ ମୋର ଜୀବନ ମନ୍ତ୍ରିତ ହୋଇଉଠିଲା ।

ଅତି ଦୟନୀୟ, ଅତି ଗୋ ବିଚରା ଭୂମିକାରେ ନିଜକୁ ଧୂଳିଲଗ୍ନ କଲେ ବି ଦୁଃଖ କେହି ବୁଝିଲେନି ।

ଅଫିସର ପଚାରିଲେ– କ'ଣ କୁହନ୍ତୁ ?

ଗୋଟାଏ ଟିଣ ଘିଅ ପରମିଟ୍‌ରେ, କନ୍ୟାର ପରିଣୟ ।

– ଆମେ ପରମିଟ୍ ବନ୍ଦ କରିଦେଇଛୁ, କେବଳ ପାଉଁରୁଟିବାଲା ପାଇବେ ।

– ବିବାହ ବ୍ରତ କିପରି ହେବ ?

– ସେ କଥା କଲେକ୍ଟରଙ୍କୁ ପଚାରନ୍ତୁ । ତାଙ୍କର ଆଦେଶରେ ପରମିଟ୍ ବନ୍ଦ କରାଯାଇଛି ।

– ଆପଣ ତ ବିବେକୀ ଲୋକ, ଆପଣ କୁହନ୍ତୁ, ଆପଣଙ୍କ ଝିଅର ବିବାହରେ ଆପଣ କଅଣ କରନ୍ତେ ?

– ଆମମାନଙ୍କ ପାଇଁ ଅନ୍ୟ ପନ୍ଥା ଅଛି ।

– ଯଥା ...

–ଯଥା କମର୍ସିଆଲ୍ ଟାକ୍‌ସ ଅଫିସରର ଗାଡ଼ି ଅଭାବ ହୁଏନି, ପୁଲିସ୍‌କୁ ସବୁ ମିଳେ– କଲେକ୍ଟର କଥା ନ କହି ବି ସବୁ ଭରଣା କରିପାରନ୍ତି–

– କିନ୍ତୁ ଆମ ଭଳି ସାଧାରଣ ଲୋକ ?

– କାର୍ଡ଼ରେ ୨୫୦ ଗ୍ରାମ ଘିଅ ମିଳିବ ।

– ଏଥିରେ ବିବାହ ପର୍ବ ଉଠିବ ?

– ଏ ଯୁଗର ମୂଳମନ୍ତ୍ର 'ବ୍ଲାକ୍'– କିଛି ବେଶି ଟଙ୍କା । ତା'ଛଡ଼ା ନିର୍ବାଚନର ଫଳାଫଳ ପ୍ରକାଶ ଓ ମନ୍ତ୍ରୀ ପରିଷଦ ଗଠନ ପରେ ଦର୍‌ଦାମ୍‌ରେ ଘୋଡ଼ାଛୁଟିଛି ଏବଂ ଛୁଟିବ । କେହି ରକ୍ଷା କରିପାରିବେ ନାହିଁ ।

– ତେବେ ମୋର କର୍ତ୍ତବ୍ୟ ?

– ଆଚ୍ଛା, ପାତ୍ର ! ଯାଙ୍କୁ ଗୋଟାଏ ଟିଣ ଦିଅ ! ଆଲୁଅରେ ନୁହେଁ ଅନ୍ଧାରରେ... ପଚାଶ ଟଙ୍କା ବେଶି ପଡ଼ିବ ବୋଧହୁଏ ?

'ପାତ୍ର' ନାମକ ବ୍ୟକ୍ତି କଅଣ ଗୋଟାଏ ଚିନ୍ତା କରୁଥିଲେ । ହଠାତ୍ ଚମକିପଡ଼ି କହିଲେ– ନିଶ୍ଚୟ... ଆପଣଙ୍କର ଯେତେବେଳେ ହୁକୁମ ହେଲା...

ଏଇ ହେଲା ବାଛୁରୀ, ହଳ, ଛତା, ସାଇକେଲ, ଗଛ ଓ ମଣିଷଙ୍କ ଚିହ୍ନର ରାଜ୍ୟ । ଚିହ୍ନରେ ଚିହ୍ନିତ କରି ଲୋକେ ମୋହର ଦେଲେ । ସେ ସଙ୍କେତ ଉଡ଼ିଗଲାଣି ।

ପାଦ ଥକି ଯାଉଛି, ୟା ପାଖକୁ ଯାଇ, ତା' ପାଖକୁ ଦଉଡ଼ି । ଯେଉଁ ଲୋକଙ୍କୁ ଚାହିଁ କଥା କହିବାକୁ ଇଚ୍ଛା ନଥିଲା, ସେ ଲୋକକୁ ନେହୁରାହୋଇ କେତେ କହିବାକୁ ପଡୁଛି– ନମସ୍କାର ଭଙ୍ଗୀରେ ଶୁଣାଇବାକୁ ହେଉଛି... 'ଆପଣ ଜାଣ ସର୍ବମୟ କର୍ତ୍ତା' ।

ଘରେ ଗୋଟିଏ 'ମାଉସୀ' ଆମର ଅଛି, ଘର ଦୁଆର ସଫା ସୁତୁରା କରି କିଛି କାମ ସେ କରେ । ବୟସ୍କା ମହିଳା ।

ଦିଲ୍ଲୀରୁ ଟେଲିଭିଜନ୍ ଦେଖି ଫେରିଆସି ଭାବିଲି ମାଉସୀରୂପକ ଟେଲିଭିଜନ୍‌ରେ କିଛି ଘଟଣା ଦେଖିନିଏ ।

ପଚାରିଲି– ମାଉସି ! କାହାକୁ ଭୋଟ ଦେଲ ? ବାଛୁରୀ ନା ଲଙ୍ଗଳ ?

– ଏଁ, ଲଙ୍ଗଳକୁ କାହିଁକି ଦେବି ମ ? ବାଛୁରୀକୁ ଦେଲି । ଆମ ଗାଁର ସମତେ ... ମେଳ ହୋଇଗଲୁ, ମେଳ ହୋଇ ଦେଲୁ । ମୁଁ କେବେ ଜିପ୍‌ରେ ବସିନଥିଲି, ସେମାନେ ଆମ ବଂଶକୁ ଜିପ୍‌ରେ ବସେଇଲେ, ନୂଆ ଶାଢ଼ି ଦେଲେ, ଟଙ୍କା ଦେଲେ... ସାଉଁକିନା ଛୁଟିଗଲା ଜିପ୍... ଆମକୁ କେତେ ଭଲ ଲାଗିଲା । ପୁଣି ଭୋଟ ଦେଇ ଆସିଲା ପରେ ଗରମ ପୁରି ତରକାରି ଖାଇଲୁ ।

ମନେହେଲା, ଏବେ ବିଜ୍ଞାନର ଟେଲିଭିଜନ୍ ନୁହେଁ... ମଣିଷର ବିଚିତ୍ର ଅନୁଭବର ଟେଲିଭିଜନ୍...

ରାସ୍ତାକଡ଼ ଅଳିଆଗଦାରୁ ମଣିଷ ପିଲା ଖାଦ୍ୟ ଗୋଟାଏ ... ମନ୍ତ୍ରୀ... ସଭାର ବୈଠକରେ ରାଜ୍ୟର ଶ୍ରେଷ୍ଠ ଭୋଜନାଳୟରୁ ଖାଦ୍ୟ ଆସି ବିତରିତ ହୁଏ ।

ରାଜଘାଟର ଛନ୍‌ଛନ୍ ଦୂବଘାସ । ସେକ୍ରେଟେରୀୟେଟ୍ ଫାଟକପାଖ ସନ୍ତ୍ରୀ... ବନ୍ଧୁକ... ଗୁଳି...

ଭୋକିଲା ପଟୁଆର ଛକ ଡେଇଁଛି ।

ଝିଅ ବିଭାଘର ପାଇଁ ଚିନ୍ତିତ ପିତା ଖୋଜିବୁଲେ ଦ୍ରବ୍ୟସାମଗ୍ରୀ....

ମୁଖ୍ୟମନ୍ତ୍ରୀଙ୍କୁ ଦଶହରା ଶୁଭେଚ୍ଛା ପତ୍ର । 'ମାଉସୀ' ଜିପ୍ ଚଢ଼ି ସ୍ୱର୍ଗ ଦେଖିଛି । ତାପରେ ହାଣ୍ଡିରେ ତା'ର ପଖାଳ ନାହିଁ ।

ରୂପସୀ ମହିଳା ଲକ୍ଷଣ ଖେଳାଇ ଟେଲିଭିଜନ୍ ପର୍ଦ୍ଦାରେ ବାଡ଼ିଧରି ଦେଖାଇଛି... ଦେଶର ପ୍ରଗତି କେତେ ମାତ୍ରାରେ ଉତ୍ତାପ ସଂଗ୍ରହ କରୁଛି ।

ଜଗନ୍ନାଥ ଧରିଛନ୍ତି ସୁଦର୍ଶନଚକ୍ର... ପିଲା ବହି ଖୋଲି ପଢୁଛି.... ଦିଲ୍ଲୀ ଭାରତବର୍ଷର ରାଜଧାନୀ ।

ଓଡ଼ିଆ ଏକ ଦରିଦ୍ର ଜାତି... ଓଡ଼ିଶା ଗୋଟାଏ ଗରିବ ଦେଶ ।

ମୋର ଅଲକ୍ଷ୍ୟରେ ଝିଅ ଆସି ଛିଡ଼ା ହୋଇଛି... ତା'ର ଆଖିରେ ଅଜସ୍ର ପ୍ରଶ୍ନ... ସେଥିରୁ ଗୋଟିଏ ପ୍ରଶ୍ନ... ଏଇ କଅଣ ଭାରତବର୍ଷ ? ଏଥିରେ କଅଣ ମଣିଷ ଜନ୍ମହୁଏ, ବିବାହ କରେ, ପୁଣି ମରିଯାଏ ?

ଏହାର ଉତ୍ତର ନାହିଁ । କେବଳ ଝିଅ ନୁହେଁ, ପୁଅ ଝିଅ ନିର୍ବିଶେଷରେ ... ଘର, ଜଙ୍ଗଲ, ଆକାଶ, ମାଟି ନିର୍ବିଶେଷରେ... ଏକଇ ପ୍ରଶ୍ନ... ଏ କଅଣ ଭାରତବର୍ଷ ?



# କଲ୍‌କୀ ଅବତାର

ଗଡ଼ ଆଗରେ ଶବ୍ଦ ଲାଗିଛି 'ସୁନ୍ଦର' ... ସୁନ୍ଦରଗଡ଼ ।

ବାଣୀ ଆଗରେ ଶବ୍ଦ ଲାଗିଛି 'ଫୁଲ' ... ଫୁଲବାଣୀ ।

ପାଟଣା ଆଗରେ ଶବ୍ଦ 'ଭବାନୀ'... ଭବାନୀପାଟଣା ।

ଉତ୍କଳର ଏହି ସବୁ ସ୍ଥାନ, ସହର... ପାର୍ବତୀୟ ।

ଝରଣା ବହିଯାଏ, ପଥର ତଳେ ସୁନା, ଖଣିମୟ ଧାତୁ... ଜଙ୍ଗଲରେ ପଶୁପକ୍ଷୀ... ବିଚିତ୍ର... କେତେ ପ୍ରକାରର ।

କେଉଁଠି ଶୈଳନିଳୟ...କେଉଁଠି ଅଭୟାରଣ୍ୟ, କେଉଁଠି ପୂଜା ପାଉଛନ୍ତି ଈଶ୍ୱର ବିଭିନ୍ନ ମୂର୍ତ୍ତି ବିଗ୍ରହରେ ।

ଏସବୁ ଥିଲା ସେ କାଳରେ ଐଶ୍ୱର୍ଯ୍ୟ; ପ୍ରକୃତି ଅକୃପଣ ନ ଥିଲା, ମଣିଷ ବି ଦେହକୁ ତତେଇ ପରିଶ୍ରମ କରି ପ୍ରକୃତିର ଗନ୍ତାଘରକୁ ସଜାଉଥିଲା ।

ଧୀରେ କାଳ ଅକାଳ ହୋଇଗଲା । କେହି କାହାକୁ ଅନାଇଁଲେ ନାହିଁ । ଗାଁରେ ଏକତା, ଏକହୋଇ ପଞ୍ଚ ପରମକୁ ଧର୍ମସାକ୍ଷୀ କରି ବିବାଦ ତୁଟାଇବାର ଯେଉଁ ସୁନୀତି ଥିଲା, ତାହା ଭାଙ୍ଗି ଗଲା ।

ଭାଙ୍ଗି ଗଲା ବୋଲି ଏମିତି ସବୁ ଧ୍ୱଂସ ପାଇଯିବ– କିଏ ଜାଣିଥିଲା ? କାହିଁକି ଭାଂଗି ଗଲା ?

ସହରର ରୂପରେ କେତେ କୃତ୍ରିମତା ସତେ ! ମଣିଷମୁଖା ପିନ୍ଧି ବୁଲୁଛି । ଯେତେବେଳେ ଯାହା ସୁବିଧା– ଅର୍ଥଲାଭ ବା ପ୍ରତିପତ୍ତି ଘେନି, ସେ ଏଇ ସବୁ ମୁଖାକୁ ଅଦଳ ବଦଳ କରୁଛି ।

ଗାଁରେ ମହତ ଥିଲା । ଲୋକେ ଚାଳକୁଚାଳ ଲଗାଇ ଘର ବାନ୍ଧିବା ଭଳି ହୃଦୟକୁ ବାନ୍ଧି ରଖୁଥିଲେ । ସ୍ନେହ ଥିଲା, ମମତା ଥିଲା ? ଦୁଃଖ ଶୋକରେ ମଣିଷ ମଣିଷଠାରୁ ମୁହଁ ଫେରାଇ ଏମିତି କର୍କଶ ହୋଇ ଚାଲି ଆସୁଥିଲା କି ?

ଏବେ ଗାଁରେ ଗାଁରେ ଜୀଅନ୍ତା ମଣିଷର କଙ୍କାଳ । ମାଆ ସ୍ତନରୁ କ୍ଷୀର ଶୁଖିଗଲା ଭଳି ମାଟିତଳ ନୀର-ଝରଣା ଶୁଖିଗଲା । ଧାନକ୍ଷେତ ସାରି ସାରି ଫାଟି ଗହ୍ୱର ତିଆରିକରିଛି । ଗୋ ମଡ଼କ, ଫସଲହାନୀ, ପାଣି ମୁନ୍ଦିଏର ଅଭାବ, ରୋଗଯନ୍ତ୍ରଣାରେ କାତର ମଣିଷକୁଳ, ସାହା ଭରସା କେହି ନାହିଁ ।

ପର୍ବତ ଦେହରେ ଗୁଡ଼େଇ ଗୁଡ଼େଇ ରଖିଛି ମାଆ ଲକ୍ଷ୍ମୀ ଅନ୍ନପୂର୍ଣ୍ଣା କେତେ ପ୍ରକାର ଧାତୁ... ବଣରେ ଅଞ୍ଚଳ ଲମ୍ବେଇ ରଖିଛି କେତେ ଅରଣ୍ୟ ଫସଲ... ସେଇ ଏକା, କର୍ତ୍ତ୍ରୀ ମାଆ କମଳା ।

ହେଲେ, ଅପାରଗ ପରମୁଖାପେକ୍ଷୀ, ନିଜ ନିଜ ଭିତରେ ଗୋଛି କଟାକଟିରେ ଧୁରନ୍ଧର, ଜାତି– ଦେଶ– ଭାବଶୂନ୍ୟ ମଣିଷ ଏ ସମ୍ପଦକୁ ଉଭା କରିପାରିଲା ନାହିଁ ।

ତେଣୁ ପ୍ରସ୍ରବଣ ଶୁଖିଛି । ଫସଲ ମରିଛି ! ତୁଣ୍ଡରେ ଦାନା, ଦେହରେ କନା ନାହିଁ । ମଣିଷ ହିଁ ମଣିଷର ହତ୍ୟାକାରୀ– ହନ୍ତକ– ହେ ପ୍ରଭୁ ! ଏ ଜାତି ଆଉ କଅଣ ବଞ୍ଚିବ ?

ସାଗର ତଟରେ ପାଦ ଖେଳାଉଥିଲି । ଏଇ ସବୁ ଚିନ୍ତା ମତେ ଅଥୟ କରୁଥିଲା ।

ସୂର୍ଯ୍ୟ ଲାଲପିଣ୍ଡରେ ଜଗତକୁ ସଙ୍ଖୋଳୁଥିଲେ । ଏମିତି ଆସେ ମୁଁ । ବିଶ୍ୱଧାତାର ଏହି ବିମୋହନ ରୂପକୁ ଦେଖି ସ୍ତବ୍ଧ ରହିଯାଏ । ଅଥଚ ଏଇ ସୃଷ୍ଟିରେ ମଣିଷ ଦେବତାକୁ ସାହାଯ୍ୟ କରୁନାହିଁ। ଦେବଭାବର ଉଚ୍ଛ୍ୱାସ ନାହିଁ ।

ପାଖ ହୋଟେଲରୁ ଆକାଶବାଣୀର ପ୍ରଚାର କାନରେ ପଡ଼ିଲା । ଆଚାର ଯେଉଁଠି ନଷ୍ଟ, ଏ ପ୍ରଚାର କେତେବା ମଣିଷକୁ ମଣିଷ କରିବାରେ ଆଗ୍ରହ ଦେବ ?

ଦିଲ୍ଲୀ ସମ୍ବାଦ... ସୁନ୍ଦରଗଡ଼ ଜିଲ୍ଲା ପାଇଁ ମରୁଡ଼ିର ପ୍ରତିକାର ଉଦ୍ଦେଶ୍ୟରେ ଦୁଇଲକ୍ଷ ଟଙ୍କା ମଞ୍ଜୁର କରାଯାଇଛି । ପାଣି କଷ୍ଟ ଦୂର କରିବା ପାଇଁ ପଶ୍ଚିମ ଓଡ଼ିଶାରେ କୂଅ ଖୋଳିବା ଓ ଅନ୍ୟ ପ୍ରକାରେ ଜଳ ସରବରାହ ପାଇଁ ଏକ କୋଟି ଟଙ୍କା ବ୍ୟୟ ବରାଦ କରାଯାଇଛି । ଫୁଲବାଣୀ ଜିଲ୍ଲାରେ ଗର୍ଭବତୀ, ପ୍ରସୂତି ଓ ଅକ୍ଷମ ଲୋକମାନଙ୍କ ନିମିତ୍ତ ଭୋଜନକେନ୍ଦ୍ର ତଥା ଦୁଗ୍ଧ ଯୋଗାଣ ବ୍ୟୟ ବରାଦରେ ଦୁଇଲକ୍ଷ ଟଙ୍କା ମଞ୍ଜୁର ହୋଇଛି ।

ଲୋକମାନଙ୍କୁ ଅନୁରୋଧ, ଖାଦ୍ୟାଭ୍ୟାସ ବଦଳାଇ ଚାଉଳ ପରିବର୍ତ୍ତେ ଗହମ ପଖାଳ ବ୍ୟବହାର କରନ୍ତୁ । ଗୃହିଣୀମାନେ ଜାଣନ୍ତି, କିପରି ଗହମରୁ ସୁସ୍ୱାଦୁ ଭୋଜନ ତିଆରି କରାଯାଇପାରେ । ତେଣୁ ହା-ହତାଶ ନ ହୋଇ ସଂକଟର ମୁକାବିଲା ପାଇଁ ସମସ୍ତେ ଅଣ୍ଟା ଭିଡ଼ନ୍ତୁ ।

ମୋ ମନରେ କ୍ରିୟା ପ୍ରତିକ୍ରିୟାର ଲେଶ ନାହିଁ । କାରଣ ବର୍ଷ ବର୍ଷ ଧରି ଏଇ ପ୍ରଚାର ଚାଲିଛି । ମରୁଡ଼ି, ଦୁର୍ଭିକ୍ଷ, ଜଳକଷ୍ଟ ଯାବତୀୟ ଅନଟନ ଯନ୍ତ୍ରଣାଭୋଗ ଭୋଗି ଅମୃତର ସନ୍ତାନମାନେ ଅକାଳରେ ଆଖି ବୁଜି ଦେଉଛନ୍ତି ।

କିନ୍ତୁ ହଠାତ୍ ପ୍ରତିକ୍ରିୟା ମନରେ ବିଜୁଳି ଚମକ ଭଳି ଖେଳିଗଲା । ଯେତେବେଳେ ପଛଆଡ଼େ ଛିଡ଼ା ହୋଇଥିବା କେତେକ ଯୁବକ ଏଇ ଆକାଶବାଣୀ କଥାକୁ ପିଇଯାଇ ଭବିଷ୍ୟତର ଯୋଜନାକୁ ମୁହେଁ ମୁହେଁ ଖୋଲାଖୋଲି କହିପକାଇଲେ–

ଭାଇ ! ବେଳ ଆସିଗଲା । ଶୁଣିଛଟି ! ଲକ୍ଷ, କୋଟିର ବ୍ୟବସାୟ । ମରୁଡ଼ି, ବନ୍ୟା, ମହାମାରୀ ଆସିବା ମାନେ ପାଞ୍ଚବର୍ଷକୁ ବେକାର ଜୀବନରେ ସାକ୍ଷାତ ଲକ୍ଷ୍ମୀଙ୍କ ସେବା ।

ପ୍ରଥମେ ଗୋଟାଏ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଗଢ଼ିବାକୁ ହେବ । ଉପଦେଷ୍ଟା ହେବେ ଲୋକପ୍ରତିନିଧି । ସଭାପତି, ସମ୍ପାଦକମାନେ... ଯାହା ଦରକାର ହୁଅନ୍ତି, ସେ ସବୁ ହେବେ ବା ରହିବେ ।

ଏଇ ସ୍ୱେଚ୍ଛାସେବୀ ଅନୁଷ୍ଠାନ ସୁନ୍ଦରଗଡ଼ରେ ପ୍ରଧାନ କାର୍ଯ୍ୟାଳୟ ଛିଡ଼ା କରାଇବ । ଫୁଲବାଣୀରେ ଶାଖା, କୋରାପୁଟରେ ପ୍ରଶାଖା, ସମ୍ବଲପୁରରେ ପ୍ରଗତିମୂଳକ ଅନ୍ୟ ଏକ ପ୍ରଶାଖା– ଏମିତି ମାଙ୍କଡ଼ସା ଜାଲ ଛାଇ ହୋଇଯିବ ସବୁଆଡ଼େ; କାରଣ ଦୁଇଲକ୍ଷ ଟଙ୍କାର, ସମାଜବାଦୀ ସମାଜସେବା ଟେଣ୍ଡର ଝୁଲୁଛି ଆମମାନଙ୍କର ନେତ୍ରସମ୍ମତି ହୋଇ । ଏତେବେଳେ ଶୋଇପଡ଼ିଲେ ଚଳିବ କି ?

ପ୍ରସ୍ତାବ ହେଲା, ସମର୍ଥନ ମିଳିଲା ଅନ୍ୟ ପ୍ରକାର ଭାଷାରେ ।

ଭାଇ, ତଲୁ ଧରିବାକୁ ହେବ । ହଠାତ୍ ଉପରକୁ ଯିବା ନାହିଁ । କଲେକ୍ଟର୍ ପଛରେ... ଅସଲ ବି.ଡ଼ି.ଓ, ସରପଞ୍ଚ, ଗାଁ ଗାଁର ଟହଲ୍‌ଦାର୍ ସୁବିଧାବାଦୀଙ୍କୁ ଏକତ୍ର କରିବାକୁ ହେବ ।

ଅବଶ୍ୟ ଅନୁଷ୍ଠାନର ନାମକରଣ କରିବାକୁ ଅସୁବିଧା ହେବନାହିଁ । କାରଣ ଯେଉଁ ପର୍ଯ୍ୟନ୍ତ ଏ ଜାତିର ଦେବତା ଜଗନ୍ନାଥ ଅଛନ୍ତି, ତାଙ୍କର ମନ୍ଦିର ଅଛି, ତାଙ୍କର ଆନନ୍ଦବଜାର ଅଛି, ବୈକୁଣ୍ଠ ଅଛି, ଚିତ୍ର ଅଛି, ନେଳିଆ ପାହାଡ଼ ଅଛି, ଧ୍ୱଜା ଅଛି, ଗୋଟାଏ ନାଁଦେବା କଷ୍ଟକର ବ୍ୟାପାର ନୁହେଁ ।

ତୃତୀୟ ଯୁବକ କହିଲେ– ଏ ତ ନୂଆ କଥା ନୁହେଁ । ଆଗର ଛପା ଚିଠି ପ୍ୟାଡ୍ ଅଛି– କେତେଟା ସଂଶୋଧନ ମାତ୍ର ।

ଆମ ସଂସ୍ଥାରେ ବୁଢ଼ାଙ୍କୁ ନେବା ସଂଭ୍ରମ ପାଇଁ, ତରୁଣୀଙ୍କୁ ନେବା ଉଦ୍ଦୀପନା ପାଇଁ, ମାଆମାନଙ୍କୁ ନେବା କୋଳେଇ ଆମକୁ ଆଶୀର୍ବାଦ କରିବା ପାଇଁ । ସୁରୁମା ଆମେ ପିନ୍ଧିବା ଆଖିରେ, ଦୁଃଖୀ ଆର୍ତ୍ତ କ୍ଷୁଧାର୍ତ୍ତ ଲୋକଙ୍କ ବେଦନା ସହିନପାରି ଅଶ୍ରୁ କିମିତି ବୋହୁଛି ଦୁନିଆକୁ ଦେଖାଇବା ପାଇଁ ।

ଏତିକି ଅଭି ିଂ, ଏତିକି ସାହସ ଦେଖାଇପାରିଲେ ମୁଣା ଠେଲି ଗୋବିନ୍ଦଙ୍କର ଗତି କିମିତି ଜେଟ୍ ବିମାନ ଗତି ଭଳି ହେବ ଭବିଷ୍ୟତ୍ କହିବ ।

ସୂର୍ଯ୍ୟ ଉଠିଯାଇଛନ୍ତି ଉପରକୁ । ନିତ୍ୟଲୀଳା ତାଙ୍କର ଏମିତି । ମଣିଷ ଖସୁଛି କେତେ ତଳକୁ– ଗଭୀର କେତେ ତଳକୁ– ତା'ର ବି ନିତ୍ୟ ଏଇ ଲୀଳା ।

ମୁଁ ଜାଣେ ଓ ଜାଣନ୍ତି ଚିନ୍ତାଶୀଳ ଲୋକେ, କୋଟି କୋଟି ଟଙ୍କାର ଲକ୍ଷ ଲକ୍ଷ ଅର୍ଥର କେତେ ଅଣୁ ଅଂଶ, କେତେ କପର୍ଦ୍ଦକ ଯାଏ ପ୍ରକୃତ ଦୁଃଖୀର ଦୁଃଖ ହରଣ ପାଇଁ, ପ୍ରକୃତ ଭୋକୀ ଶୋଷୀର ଭୋକ ଶୋଷ ମେଣ୍ଟାଇବା ପାଇଁ ।

ବାଟବରଣ ଓ ବାଟମାରଣ ଏ ଦୁଇ ଅସ୍ତ୍ର ମାରଣାସ୍ତ୍ରଠାରୁ ବି ଭୟଙ୍କର ।

ମଣିଷ ମଣିଷର ହତ୍ୟାକାରୀ । ଏ ଯୁବକଗୋଷ୍ଠୀ, ଏ ସଂସ୍କାର ନିର୍ମାତା ଗଣ, ଏ ବୃଦ୍ଧ ତରୁଣୀ– ମିଶ୍ରିତ ଏ ଜନତା ଭିତରେ ଆମେ, ତୁମେ, ସିଏ– ସମସ୍ତେ ମୁଖାପିନ୍ଧା ଅପରାଧୀ ।

ନୃଶଂସ ଆତତାୟୀ– ବୀଭତ୍ସ ଲୋଭାତୁର ରାକ୍ଷସ ।

ଇଚ୍ଛା ନଥିଲେ ବି ଫେରିବା ପଥରେ ଅନାଇଁଦେଲି ଶ୍ରୀମନ୍ଦିର ଚୂଡ଼ା ଉପରକୁ ।

ଜଣାଇଲି– ହେ ପ୍ରଭୁ, ତୁମର ଅବଶେଷ ଗୋଟାଏ ଅବତାର ରହିଯାଇଛି ।

ସେଇଟା କଲ୍‌କୀ ଅବତାର ! ଲହ ଲହ ଲୀଳାୟିତ ଶାଣିତ ଖଣ୍ଡାଟାକୁ ତୁମେ ଚଳେଇଦିଅ ଆମ ସମସ୍ତଙ୍କର ମୁଣ୍ଡ ଉପରେ ।

ରକ୍ତସ୍ନାନର ଆର୍ଦ୍ରତା ଘେନି ନୂତନ ଫୁଲ ଫୁଟିଯାଉ ।

ନୂଆ ଆକାଶରୁ ନୂଆ ବାଣୀ ସଂଚରୁ ।

ପୁରୁଣା ମଉଳିଯାଉ ।



# ଜୋତା ବାହାରେ ରଖନ୍ତୁ

ଚିତ୍ରକର ସାହିର ଚିତ୍ରକରଙ୍କ ପାଖେ ଯେତେବେଳେ ପହଞ୍ଚିଗଲି, ସମୟ ହୋଇଥିଲା ସନ୍ଧ୍ୟା ।

ପାଖ ଦେବାଳୟରୁ ଶଙ୍ଖ, ଘଣ୍ଟା ଆରତିର ନିରାଜନା ଶବ୍ଦ ଭାସିଆସୁଥିଲା ।

ଚିତ୍ରଶିଳ୍ପୀ ଖଟ ଉପରେ ଅଧା ଶୋଇରହି ମୁହଁକୁ ତଳକୁ କରି କଅଣ ଗୋଟାଏ ଅଙ୍କନ କରୁଥିଲେ। ମତେ ଦେଖି ସଂଭ୍ରମ ଦେଖାଇ ଉଠିପଡ଼ିଲେ।

କହିଲେ– ଆଜ୍ଞା, ବସିବା ହେଉନ୍ତୁ ।

ବସିବାର ଉପକରଣ, ଗୋଟିଏ ହାତଭଙ୍ଗା କାଠଚୌକି । ତାହା ଟଳ କି ଅଟଳ ବାରିହେଲାନାହିଁ; କାରଣ ଚୌକିର ତଳ ଅଂଶକୁ ଆଲୁଅ ଉଜ୍ଜ୍ୱଳ କରୁନଥିଲା ।

ଗୋଟାଏ କଣରେ ସାତ ଆଠ ବର୍ଷର ଝିଅ ଛୋଟ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା କାଠମୂର୍ତ୍ତି ଉପରେ ରଙ୍ଗ ଲେପୁଥିଲା । ଅନାହାର ଓ ସାବଲୀଳ ତାର ଏ ଲେପନ କ୍ରିୟା ଦେଖି ମୁଁ ମୁଗ୍ଧ ବିସ୍ମୟରେ ତାକୁ କିଛି କ୍ଷଣ ଅନାଇଁରହିଲି ।

ଖଣ୍ଡିଏ କନ୍ତା ସେ ପିନ୍ଧିଥିଲା । ତେଲ ତା'ର ମଥାରେ ନଥିବାରୁ କେଶଗୁଡ଼ାକ ରୁକ୍ଷ ଦିଶୁଥିଲା । ଆଠ ନଅ ବର୍ଷର ଝିଅ କିଶୋରୀ ଅବସ୍ଥାକୁ ଆସିବା ଉପରେ ଥିବାରୁ ତା'ର ଅଙ୍ଗରେ କାନ୍ତି ଝଲସି ଆସୁଥିବାର ଲକ୍ଷଣ ରହିଥିଲା ।

ମନଟା ନ ଥିଲା ସରସ; କାରଣ ଦୁଇ ମୁହୂର୍ତ୍ତ ପୂର୍ବରୁ ଏକ ପ୍ରକାର ଆତ୍ମରକ୍ଷା କରି ମୁଁ ଯେଉଁ ପଡ଼ୋଶୀ ଚିତ୍ରକର ବା ଚିତ୍ରକରଣୀ ଘରୁ ବାହାରି ଆସିଥିଲି, ତାହା ମତେ ଅଶାନ୍ତ କରିଥିଲା ।

ଯେଉଁ ଘରୁ ବାହାରିଆସିଲି, ସେଠାରେ ଜଳୁଥିଲା ପ୍ରଦୀପ। ତରୁଣୀଙ୍କ ମୁହଁ ମତେ ଅସ୍ପଷ୍ଟ ଦେଖାଗଲା ; କିନ୍ତୁ ତାଙ୍କର ପ୍ରତ୍ୟେକଟି ଅବୟବ ସାମଗ୍ରିକ ଯୌବନ ଝଲସ ପରିପୁଷ୍ଟିରେ ଏପରି ଦୃଶ୍ୟମାନ ଥିଲା ଯେ, ମୁଁ ବୋଧହୁଏ କେଉଁ ରୂପଜୀବୀର ଆଳୟକୁ ଅସତର୍କଭାବରେ ପଶି ଆସିଛି ବୋଲି ଭାବି ଦଣ୍ଡେ ସନ୍ଦିଗ୍ଧ ରହିଗଲି ।

ମାଆ ଓ ଝିଅ । ମାଆ ଆମନ୍ତ୍ରଣ କଲେ, "ଆସନ୍ତୁ, କଅଣ ବରାଦ ଅଛି; ଭିତରକୁ ଆସନ୍ତୁ ।" ଚିତ୍ରକର ସାହିରେ ଏ ପାଖରୁ ସେ ପାଖ ଯାଏ ସବୁ ଘର ରୂପଶାଳା ବୋଲି ଧାରଣା ଥିଲା । ତେଣୁ ନିଃସଂକୋଚରେ ମୁଁ ସେ ଘରକୁ ପଶି ଯାଇଥିଲି ।

ପୁରୁଷବିହୀନ ଏଇ ଗୃହରେ ଯାହାଙ୍କୁ ଦେଖିଲି, ସେମାନେ ଥିଲେ ପ୍ରୌଢ଼ା ଓ ଯୁବତୀ । ପ୍ରୌଢ଼ା ନିମନ୍ତ୍ରଣ କଲେ । ଯୁବତୀ ମୁହଁ ଉପରେ ପଣତ ଓଠଠାରୁ ଚିବୁକ ଯାଏ ଆଚ୍ଛନ୍ନ କରି ଇଙ୍ଗିତରେ ପ୍ରବେଶ କରିବାକୁ ଅନୁରୋଧ କଲେ ।

ବର୍ତ୍ତମାନ କରେ କଅଣ ? ଅବଶ୍ୟ ମୁଁ ଗୋଟାଏ ଅର୍ଡ଼ର ନେଇ ଆସିଛି । ଏଠାରେ ତାହା

ପରିବେଷଣ କରିବା କେତେଦୂର ଯଥାର୍ଥ ହେବ ବିଚାରିବା ଅବସରରେ ଶୁଣିଲି–

'ଆସନ୍ତୁ ନା, ବସିବାକୁ ଚୌକି ନାହିଁ, ଖଟ ଅଛି ।'

– 'ଖଟ ?' ମୁଁ ଅବାକ୍ ହେଲି ।

ଦେଖିଲି ଖଟ ପଦାର୍ଥଟି ପୁରୁଣାକାଳିଆ ପଲଙ୍କ ଢାଞ୍ଚାରେ ନିର୍ମିତ, ଯଦିଓ ସାଆଁନ୍ତିଆ ପଲଙ୍କର ଆଭିଜାତ୍ୟ ଏଠାରେ ବିଶେଷ ନାହିଁ ।

ଖଟ ଉପରେ ଶେଯ ରହିଛି, ତକିଆ ରହିଛି, ପାଖ ବାଲିସ୍ ବି ଅଛି । ହଠାତ୍ ଦେଖିଲି ଖଟର ବାଡ଼ ଉପରେ ଚମ୍ପାଫୁଲ ମାଳେ ଝୁଲୁଛି ।

ସ୍ୱଚ୍ଛ ଆଲୋକରେ ଯେତିକି ଦେଖିଲି, ମନେହେଲା ଏ ପସରା ଭିନ୍ନ ଏବଂ ଏହାର ଗ୍ରାହକ ଭିନ୍ନ ।

ଯୁବତୀଜଣକ ଆହ୍ୱାନ ଦେଇଥିଲେ ଖଟ ଉପରେ ବସିବାକୁ । ଏବେ ତାଙ୍କର ଭଙ୍ଗୀ ସ୍ୱାଭାବିକ ଅବସ୍ଥାକୁ ଆସିଯାଇଛି । ଅଧର ଚିବୁକଛୁଆଁ । ପଣତ ଖସିଆସିଛି । ସେ ପୁଣି ପ୍ରଦୀପକୁ ତେଜି ଦେଲେ ଓ ତାଙ୍କରି ଆଡ଼କୁ ଶିଖାକୁ ବୁଲାଇଦେଲେ ।

ଶିଖା ଟେକି ପ୍ରଦୀପର ଜଳଣି ଏବେ ତାଙ୍କର ସର୍ବାଙ୍ଗରେ ଲହରି ପିଟୁଛି । ଏ ତ ଅସାମାନ୍ୟା ରୂପସୀ ! ଟଣା ଆଖିଧାରରେ କଜଳରେଖା; ମୁହଁଟି ଚନ୍ଦ୍ର ସମ ସୁଗୋଲ । ନାକ ତୀକ୍ଷ୍ଣ ଓ ଶେଷଆଡ଼କୁ କ୍ରମ ଅବନତ । କଟୀଠାରୁ ପାଦ ପର୍ଯ୍ୟନ୍ତ ଉଚ୍ଛନ୍ନ ଲାବଣ୍ୟଶ୍ରୀରେ ଅତି ନିଟୋଳ।

ଦେଖିଲି ଖଟ ପାଖ ଏକ ଛୋଟ ଟୁଲ୍ ଉପରେ କେତେ ଖଣ୍ଡ ତୁଳି, ସେମାନଙ୍କ ଅଗ୍ରଭାଗରେ ନାନା ରଙ୍ଗର ପ୍ରଲେପ ।

କିଛି ବୁଝିହେଲା ନାହିଁ; ପଲଙ୍କର ଶୋଭା ଓ ନିମନ୍ତ୍ରଣର ଆକାର ପ୍ରକାରରେ ଅନ୍ୟ ଏକ ଚିନ୍ତାଧାରା ମନ ଭିତରେ କୁଣ୍ଡଳୀ ରଚନା କଲା । ଅପର ଦିଗରେ ରଙ୍ଗ ଓ ତୁଳିର କେତେଟା ସ୍ଥିତିସ୍ଥାପକତା ।

ଏ ଦ୍ୱନ୍ଦ୍ୱରେ ଆଉ ଛନ୍ଦି ହେବାକୁ ଇଚ୍ଛା ନକରି କହିଲି– 'କେହି ପୁରୁଷ ନାହାନ୍ତି ?'

'ନା' ପ୍ରୌଢ଼ା ଉତ୍ତରଦେଲେ ଗୋଟାଏ ଦୀର୍ଘଶ୍ୱାସର ଲହରୀ ଝରାଇ ।

ଯୁବତୀ କିମିତି ଉଦାସ ଠାଣିରେ ଦେହବଲ୍ଲରୀକୁ ସାମାନ୍ୟ ସ୍ପନ୍ଦନ ଦେଇ କହିଲେ–

'ପୁରୁଷ ନଥାନ୍ତୁ, ଆମେ ଅଛୁ ।'

ଏକଥା ପରେ ମୁଁ ଆଉ ଏକ ମୁହୂର୍ତ୍ତ ସେଠାରେ ନରହି, ଫେରି ପଡ଼ିଲି । ଆଜି ମନକୁ ଶତାଧିକ୍କାର ଦେଉଛି ଏଇଥିପାଇଁ ଯେ, ଜୀବନ ଯେ କେତେକ ଅଭାବନୀୟ ଅନୁରଞ୍ଜନରେ ରଞ୍ଜିତ, ତାହାର ତିଳେମାତ୍ର ଜ୍ଞାନ ମଣିଷ ସଂଗ୍ରହ କରିନପାରିଯେ ରାୟ ଦେଇଦିଏ, ଲୋକଚରିତ୍ର ସମୀକ୍ଷାକରି ସେଥିରେ ଚୋରାବାଲିର ଅସରନ୍ତି ପ୍ରସାର ରହିଥାଏ ସିନା– ସତ୍ୟ– ଶକ୍ତି ମାଟିର ଅଭାବ ଥାଏ ।

ମୁଁ ଲକ୍ଷ୍ୟ କଲି ମୋର ଫେରିବା ପରେ ପରେ ଗୃହର ପ୍ରଦୀପ ଲିଭିଗଲା । ଦୁଇଟି ଦେହ ଭାସିଆସିଲା ଯିମିତି ରାସ୍ତାଆଡ଼କୁ, ବୋଧହୁଏ ସେ ଦୁଇଟି ଆତ୍ମାହୀନ ସୂକ୍ଷ୍ମ ଶରୀର ସେଇଠି ଅଚଳ ରହିଯାଇ ମତେହିଁ ଖୋଜୁ ଥିଲା ।

ଏ ଘର ଛାଡ଼ି ଯେଉଁ ଘରେ ପ୍ରବେଶ କଲି, ସେଠାରେ ପ୍ରଦୀପ ନଥିଲା, ଥିଲା ବାର୍ ଲାଇଟ୍ ।

ଚିତ୍ରକର ପଚାରଲେ– 'ବସିଲେ ନାହିଁ ଯେ ?' ମୁଁ ଏ ଯାବତ୍ ସେହି ପ୍ରୌଢ଼ା ଓ ଯୁବତୀଙ୍କର ଘର, ଖଟ, ଚମ୍ପାଫୁଲର ମାଳା, ଅଧରଛୁଆଁ ପଣତ ଓ 'ପୁରୁଷ ନଥାନ୍ତୁ, ଆମେ ଅଛୁ'ର ତାତ୍ପର୍ଯ୍ୟ ଭାବୁ ଭାବୁ ଅମନୋଯୋଗୀ ହୋଇଯାଇଥିଲି ।

ମୁଁ ବସିପଡ଼ିଲି– ଚୌକି ଅବଶ୍ୟ ବୋହଲିଗଲା । ଚିତ୍ରକର ଝିଅକୁ ନିର୍ଦ୍ଦେଶ ଦେଲେ–

'ଯା, ବାବୁଙ୍କ ପାଇଁ ପାନ ଆଣ୍ ।'

ଶୁଣିଲି ଏକଥା ପଦକ; କିନ୍ତୁ ମନର ଅଶ୍ୱ ଛୁଟୁଥାଏ ସେଇ ରୂପସୀର ଲଳିତକଣ୍ଠର ସମ୍ଭାଷଣ ଶୁଣିବାକୁ, 'ଆମେ ଅଛୁ ।' ଏତେ ଆତ୍ମବିଶ୍ୱାସ ନିଜେ ସ୍ଥିତି ସମ୍ବନ୍ଧରେ ? କି କ୍ଷତି ହୋଇଥାନ୍ତା । ମୁଁ ଯଦି ଅଟକିଯାଇଥାନ୍ତି ଟିକିଏ ?– 'ପାନ' କିଶୋରୀ ଝିଅର କଣ୍ଠ । ଚିତ୍ରକରଙ୍କର ଅଧା ଅଙ୍କିତ ରୂପ ମୋ ଦୃଷ୍ଟିରେ ପଡ଼ିଲା... ତାହା ଥିଲା ନଟରାଜଙ୍କର ନୃତ୍ୟବିଳାସ । ମୁଗ୍ଧ ହୋଇ ମୁଁ ଚାହିଁରହିଲି ସେଇଆଡ଼େ... ଯିମିତି କେତେ କ୍ଷଣ ପୂର୍ବରୁ ଯୁବତୀର ଅଙ୍ଗଶ୍ରୀର ପରିପୁଷ୍ଟ ଔଜ୍ଜଲ୍ୟକୁ ମୁଁ ସ୍ୱଚ୍ଛ ଆଲୋକିତ କକ୍ଷ ଭିତରେ ଅବଲୋକନ କରୁଥିଲି ।

କହିଲି– 'ଆପଣ ଏଇ ରେଖାଚିତ୍ର ଅଙ୍କନ କରନ୍ତି ନା ଆଉ କିଛି ?'

ଶିଳ୍ପୀ ହସିଲେ । କହିଲେ– 'ଆପଣ ବୋଧହୁଏ ଗଣପତି ଗଢ଼ିଦେବା ପାଇଁ ଅର୍ଡ଼ର ନେଇ ଆସିଛନ୍ତି– କୁହନ୍ତୁ କିଭଳି– ମାନେ ଉଚ୍ଚତା, ବେହରଣ କେତେ ଓ କିମିତି ଆପଣ ଚାହାନ୍ତି ।

ମୋର ହେଜ ହେଲା– ସତେ ତ, ଆଉ କୋଡ଼ିଏ ଦିନ ପରେ ସିଦ୍ଧିଦାତା ଗଣେଶଙ୍କର ପୂଜାର୍ଚ୍ଚନା– ତେଣୁ ଚିତ୍ରକର ସେ ବିଷୟରେ ଏତେ ସଚେତନ ।

ଚିତ୍ରକରଙ୍କ ପାଖରୁ ବିଦାୟ ଘେନି ଆସିଲି ।

ଦୁଇଦିନ ପରେ ମୋର ଘରବାରଣ୍ଡାରେ ଯେଉଁ ଫଳକକୁ କଣ୍ଟା ବାଡ଼େଇ ଟାଙ୍ଗିଦେଲି, ସେଇଟା ଏମିତି ଆଶ୍ଚର୍ଯ୍ୟ କାମ ଦେବ ବୋଲି ମୁଁ ଭାବିନଥିଲି । ପ୍ରଥମେ ପ୍ରଥମେ ହୁଏତ ତା' ସମ୍ଭବ ହେଲାନାହିଁ ।

ଝୁଡ଼ିଏ ଝୁଡ଼ିଏ ବାଲିମଇଳା ମୋ ବୈଠକଖାନାରୁ ମୁଁ ନିଜେ ଓଲେଇ ସଫା କରେ ପ୍ରତ୍ୟେକ ଦିନ ରାତି ଏଗାରଟାବେଳେ । କେତେ ପ୍ରକାର ଯେ ଜୋତା, ବୁଟ୍, ବର୍ଷାଦିନିଆ ହାଫ୍‌ସୁ, ଚପଲ ଉଭୟ ପୁଅ ଓ ଝିଅଙ୍କର, ଫାନ୍‌ସୀମାର୍କା ସାଣ୍ଡାଲ୍... ଏସବୁ ବହିଆଣନ୍ତି ବୋଝେ ବୋଝେ ବ୍ରଜ ଧୂଳି... ପରମ ପବିତ୍ର ଶ୍ରୀକ୍ଷେତ୍ର ଗୋବର ଓ ମାଟି; ଅଥଚ ଆଗନ୍ତୁକମାନେ ବୁଝନ୍ତି ନାହିଁ ଯେ ଘର ଭିତରେ ଶ୍ରୀ ଅରବିନ୍ଦ ଓ ଶ୍ରୀମା ଆସ୍ଥାନରେ ଅଛନ୍ତି ।

ସହରରେ ଗଣପତି ପୂଜାର ଆଡ଼ମ୍ବର । ନାହିଁ ନଥିବା ଏ ଦୃଶ୍ୟ । ଗତ ଦଶବର୍ଷ ହେଲା ଏମିତି ବ୍ୟାପକ ଓ ସାହିସାହିକେ ଦୁଇ ତିନୋଟି ଗଣନାଟ୍ୟ ମୂର୍ତ୍ତି ଥାପନା କରି ଲୋକେ ବସ୍ତି ବସ୍ତି, ସାହି ସାହି, ବଜାର ବଜାର ଭିତରେ ମନାନ୍ତର ସୃଷ୍ଟି କରିଚାଲିଛନ୍ତି । ହଠାତ୍ ଏଭଳି ଗଦ୍‌ଗଦ୍ ଧର୍ମଭାବର ଯେ ସୁଅ ଛୁଟିଛି ଏହାର ଅନ୍ତରାଳରେ କି ସତ୍ୟ ଅଛି, ଜଣାଯାଏ ନାହିଁ ।

ଜୋତା ପିନ୍ଧି ପଶି ଆସିଲେ ସାହିର ଦଳେ ଟୋକା ।

— ଆଜ୍ଞା ଚାନ୍ଦା, ଏଥର କିଛି ମୋଟା....

ସମସ୍ତେ ଜୋତା ପିନ୍ଧିଛନ୍ତି । ଏତେଗୁଡ଼ାକ ପାଦୁକାମେଳରେ ଯେ ଆବର୍ଜନା ଘର ଭିତରେ ଠୁଳ ହେଲା ତାହା କିପରି ପରିଷ୍କାର ହେବ ସେଇ ଚିନ୍ତାରେ ମୁଁ ଥଳକୂଳ ପାଉନଥିଲି । ଆଉ ଦଳେ ଲୋକ ଚିତ୍କାର କରି ଧସେଇ ଆସିଲେ—

'ଆଜ୍ଞା, ଜମ୍‌ମା ଦେବେନି... ଏଗୁଡ଼ାକ ଚୋର, ତସ୍କର । ଆରବର୍ଷ ଖର୍ଚ୍ଚର ଅଡ଼ିଟ ରିପୋର୍ଟ କାହିଁ ? ଏମାନେ ପଇସା ଖାଇଗଲେ । ଯାତ୍ରାବାଲା ଟୋକା—ଟୋକୀଙ୍କ ପଛରେ ବର୍‌ବାଦ୍ କରିଦେଲେ । ଆମେ ଅଲଗା ପ୍ରଗତିକାମୀ ଯୁବକ । ଏଥର ଆମେ ମୂର୍ତ୍ତି ଗଢ଼ିବୁ । ଯାହା ଖର୍ଚ୍ଚ ହେବ ହିସାବ ଦେବୁ । ଆମକୁ ବିଶ୍ୱାସ କରନ୍ତୁ— ଆମକୁ ଚାନ୍ଦା ଦେବେ, ତାଙ୍କୁ ଦେବେନି ।'

ଦୁଇ ପଟରୁ ଦୁଇଟା ଚାନ୍ଦାଖାତା ମୋ ଟେବୁଲ୍ ଉପରେ ରହିଲା । ମୁଁ ବିକଳ ହୋଇ ଏପଟ ସେପଟ ଅନାଉଥାଏ, ବୁଦ୍ଧି ଦିଶୁନଥାଏ— ଏ ବିଷୟରେ କଅଣ କରିବା ଉଚିତ୍ ବା ଅନୁଚିତ୍ ।

ଭାବୁଥିଲି ଓ ଚାହୁଁଥିଲି ସମସ୍ତଙ୍କ ପାଦଦେଶକୁ । ଅବଲୀଳାକ୍ରମେ ଏମାନେ ଜୋତା ପିନ୍ଧି ପଶି ଆସିଛନ୍ତି ଯେଉଁଠି ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ଗାନ୍ଧିଜୀ, ଯୋଗୀ ଅରବିନ୍ଦଙ୍କ ଫଟୋଚିତ୍ର ଶୋଭାପାଇଛି । କାହାରି କଅଣ ଦାଣ୍ଡକାନ୍ଥରେ ଟଙ୍ଗା ହୋଇଥିବା ଫଳକ ଉପରେ ଆଖି ପଡୁ ନାହିଁ ବା ଆଖି ପଡ଼ିଲେ ବି ଅନୁଶାସନକୁ ମାନୁନାହାନ୍ତି ।

ଏମିତି ଭାବନାସାଗରରେ ନିମଜ୍ଜିତ ଥିବା ସମୟରେ ସମ୍ମିଳିତ ରମଣୀକଣ୍ଠର ବେଣରାଗିଣୀ ଭାସିଆସିଲା । ଦଶ ବାରଜଣ ବିଭିନ୍ନ ବୟସ ତଥା ଆକାର ପ୍ରକାରର ନାରୀ ଚପଲ ଖସ୍ ଖସ୍ କରି ପଶି ଆସିଲେ ।

ଜଣେ ତା' ମଧ୍ୟରୁ କହିଲେ— 'ଅଛନ୍ତି ତ ! ବାଃ ବାଃ, ଏତେ ଲୋକ ?'

ମୁଁ କଣ୍ଠରେ ବିରକ୍ତିର ସ୍ୱର ଝରାଇ କହିଲି—

'ଆପଣମାନେ ବି ସେଇ ଏକା ପଥରେ ? ମାନେ ଗଣେଶ ଗଢୁଛନ୍ତି ନା କଅଣ ?'

— ଆଜ୍ଞା, ଏମାନେ ଏଥର ନୂଆ କରି ଗଣପତି ପୂଜା କରୁଛନ୍ତି । ଏମାନେ ଯୁଆଡ଼େ ଯିବେ ଚାନ୍ଦା ତାଙ୍କୁ ଅପୂର୍ବ ହେବନି, ତାଙ୍କୁ ଦିଅନ୍ତୁ ଆମକୁ ଦିଅନ୍ତୁ; କିନ୍ତୁ ଏ ଟାଉଟରଗୁଡ଼ାଙ୍କୁ ଦେବେନାହିଁ । ଗତବର୍ଷର ଖର୍ଚ୍ଚ ହିସାବ ସାଧାରଣରେ ପ୍ରକାଶ କରିନାହାନ୍ତି ।' ଯୁବକଗୋଷ୍ଠୀରୁ କେହି ଜଣେ ଏମିତି କହିଦେଲେ ।

ତୁମୁଳକାଣ୍ଡ । ମୋର ସେହି କ୍ଷୁଦ୍ର ପରିମିତ ବୈଠକଖାନାରେ ହୈଃ ହୈଃ ରବ । ସଂଘର୍ଷ, ଚିତ୍କାର ଓ ଚପଲଉଠା ପର୍ଯ୍ୟନ୍ତ ଦୃଶ୍ୟ—ଦୃଶ୍ୟାନ୍ତର ।

ପ୍ରତି ଦଳକୁ କିଛି କିଛି ଦେଇ ବିଦାୟ କଲାବେଳକୁ ଘରେ ମାଟି ଗୋବର ବାଲିର ବେଶ୍ ଗୋଟାଏ ପତଳା ସ୍ତର ପଡ଼ିଯାଇଛି ।

ହା— ହତୋସ୍ମି ହେଲି । ଯେ ଯାହାର ସିଦ୍ଧି ପାଇଁ ସିଦ୍ଧିଦାତାଙ୍କୁ ଧରିଛନ୍ତି । ସମାଜ ଅଙ୍ଗରେ ବହୁ ବ୍ରଣ ଓ କ୍ଷତ ସ୍ଥାନରେ ପୂଜ ଭରିରହିଥିଲା; ଏବେ ଏପ୍ରକାର ଭକ୍ତି ନାମରେ ଅପବ୍ୟୟ ଓ ପ୍ରତାରଣାର ଆଉ ଗୋଟାଏ ସିଂହଦ୍ୱାର ଖୋଲିଗଲା ।

ସିଂହଦ୍ୱାର—

ଏଠି କଅଣ ନହୁଏ ? କ୍ଷଣ କ୍ଷଣରେ ପ୍ରୀତି ଘଟେ । ଗୋମାତା ଖାଇଯାଏ କାଗଜ, କନା, ପରିବା । ବନ୍ଧନହୀନ ପଶୁସମାଜ, ବନ୍ଧନହୀନ ମଣିଷ ଗୋଷ୍ଠୀ । ଦୋକାନେ ଦୋକାନେ ଭାଙ୍ଗ ଓ ଗଞ୍ଜେଇର ବିକାକିଣା । ମହାପ୍ରସାଦ କୁଡୁଆ ଧରି ଢଳିଢଳି ଚରଣ ଛନ୍ଦେଇ ଯାଉ ଯାଉ ମହାପାତ୍ରେ 'ରାମରତିରେ' ଗୀତ ଗାଆନ୍ତି ।

ରିକ୍ସା ରିକ୍ସାରେ କୋଳାକୋଳି । ଦୁଇ କାଖରେ ବାଦୁରୀ ଭଳି ଲଟକିରହି ସ୍ତନ ଦୁଇଟାକୁ ଚିପୁଡ଼ି ଆଣୁଥିବା ଦୁଇ ପିଲାଙ୍କୁ କୋଳେଇ ହାତ ପତେଇଦିଏ ଶ୍ୟାମା ଭିଖାରୁଣୀ ।

ପାଖ ଦେଇ ଚାଲିଯାଏ ଅମରପଥର ଯାତ୍ରୀ କୋକେଇବନ୍ଧା ସବାରିରେ ସ୍ୱର୍ଗଦ୍ୱାର ଆଡ଼କୁ ।" ଆରେ ମୋ ରଙ୍କରତନ, କୁଆଡ଼େ ଗଲୁରେ " କାନ୍ଦି କାନ୍ଦି ଗର୍ଭଧାରିଣୀ ଧୂଳି ଉପରେ ଗଡ଼େ, ଉଠେ, ପୁଣି ଲୁହ ପୋଛେ ।

ଆଗ ଦୋକାନରେ ଡାକ୍ତରବାବୁ ପ୍ରେସ୍‌କ୍ରିପସନ୍ ଲେଖୁଛନ୍ତି । ରୋଗ ଗୋଟାଏ ଆଡ଼େ, ବ୍ୟବସ୍ଥା ପତ୍ର ଅନ୍ୟ ଆଡ଼େ । ଇଞ୍ଜେକ୍‌ସନ୍ ନେବାକୁ ବାଧ । ହାତ ଦେଖାଏ ରୋଗୀ । ଫୋଡ଼ାଟା ଯେତେ ନ କାଟେ, ପାଞ୍ଚଟଙ୍କା ଗଣି ଦେବାରେ ବାଧା ଆସେ ।

ଇଚ୍ଛା ନଥିଲା, ତେବେ କଲେଜପଢ଼ା ଝିଅ; ଜିଦ୍ ଧରିଲା– ବାପା ଆଜି ଚାଲ, ତମେ କାହିଁକି ଶୁଖିଯାଉଛ, ଡାକ୍ତରଙ୍କୁ ଦେଖାଇବା, ସିଂହଦ୍ୱାରର ବଡ଼ଡାକ୍ତର– ସେ ଦେଖି ଭଲ ଔଷଧ ଦେବେ ।

ଟିକିଏ କରକୁ ବହି ଦୋକାନ । ବହି ବିକ୍ରି ହେଉଛି– ନିଷିଦ୍ଧ ବହି– ଯୁବକଯୁବତୀ ଭିଡ଼ କରୁଛନ୍ତି । ଏହାର ବି ଏକ ଗୁପ୍ତ ରହସ୍ୟ ଅଛି । ସେବାଟେ ଉଲଗ୍ନ ଫଟୋଚିତ୍ରର ଆଲବମ ବିକ୍ରି ହୁଏ ।

ସଭା ତ ଅସଂଖ୍ୟ । ଯୁବକ, ପ୍ରୌଢ଼ା, ବୃଦ୍ଧ, ନାରୀ, ପଶୁ ... ସମସ୍ତଙ୍କର ଅବାଧ ପ୍ରବେଶ... ଚତୁର୍ଦ୍ଦିଗ ଖୋଲା ଭୂଇଁରେ ଯେ ଯାହା ଭାବିଲା କହିଲା ।

ରାମଚନ୍ଦ୍ର ଏଠାକୁ ଆସନ୍ତି, ଶୁଣନ୍ତି ସୀତାଙ୍କୁ କିପରି ସେ ଅଗ୍ନି ପରୀକ୍ଷା କରାଇଥିଲେ ବୋଲି । ଏବର ଯୁବକ-ଅଧ୍ୟାପକ ବକ୍ତା ଭାବରେ ତାଙ୍କୁ ଜଘନ୍ୟ ନାରୀ ବିଦ୍ୱେଷୀ କରି ଆକ୍ଷେପ କରୁଛନ୍ତି । ପୁଣି ଓଲଟା ଦିଗର ପ୍ରବୃତ୍ତି ଘେନି ବୃଦ୍ଧ ପଦ୍ମଶ୍ରୀ ଦ୍ରୌପଦୀ ବସନ ଭିଡ଼ିଲାବେଳେ ଦୁଃଶାସନଙ୍କୁ ନରାଧମ କହି କାନ୍ଦି ପକାନ୍ତି ।

... ଆମେ ଶାସନକୁ ଆସିଲେ ଅନାହାର ମୃତ୍ୟୁ, ହେବନି, ସମସ୍ତେ ଖାଇବାକୁ ପାଇବେ, ସମସ୍ତେ ସୁଖରେ ଶୋଇପାରିବେ, କାହାରି ଅଭାବ ରହିବ ନାହିଁ– ବକ୍ତାମାନେ ଗୋଟାକ ପରେ ଗୋଟାଏ ଆଶ୍ୱାସନା ଦିଅନ୍ତି । କ୍ଷଣେ ଗୋଟାଏ ପଶି ସାମୟିକ ମଣିଷକଣ୍ଠ ଉଚ୍ଚାରିତ ଭାଷା ବୁଝିବାକୁ ଚେଷ୍ଟା କରିବାରେ ବୀରପୁରୁଷଙ୍କର ଛତ୍ରଭଙ୍ଗ ହୋଇଯାଏ ।

ପୁଣି ମେଳା ଜମିଯାଏ ।

ସିଂହଦ୍ୱାର...

ଗଣନାଥ ମୂର୍ତ୍ତିଙ୍କ ଆସ୍ଥାନ । ଦେଖିଲି ଚାରିଆଡ଼େ ଆଲୋକସ୍ତମ୍ଭ ନାଚୁଛି, ଉପରକୁ ଉଠୁଛି, ତଳକୁ ଯାଉଛି, ନଈଭଳି ଭାସିଯାଉଛି । ହଜାରେ

ଆଖି ଏକାଠି ଠରାଠରି ହେଲେ ଯିମିତି ମୁଦି ହୋଇଯାଏ, ପୁଣି ଖୋଲିଯାଏ, କି କୌଶଳ ସତେ ଖଞ୍ଜା ଯାଇଛି ଯେ ଇଲେକ୍‌ଟ୍ରିକ୍ ଆଖିଗୁଡ଼ାକ ଏମିତି ମୁଦା ଖୋଲା ହୋଇ ନାଚୁଛନ୍ତି ।

ରକ୍ତ, ପୀତ, ହରିତ୍, ଶୁଭ୍ର– ସବୁପ୍ରକାର ଆଲୋକର ତୀର୍ଯ୍ୟକ୍ ପ୍ରତିଫଳନ, ଯାହାକି ବ୍ୟୋମପଥ ଦେଇ ବ୍ରହ୍ମାଣ୍ଡଯାଏ ପ୍ରସରିଯାଇଛି ।

ଆଉ ସ୍ୱୟଂ ଗିରିଜାନନ୍ଦଙ୍କର କଥା କଅଣ କହିବା ? ସେ ତ ନଗେଶପୁରିଆ ଯାତ୍ରାପାର୍ଟିର ବ୍ୟାଣ୍ଡ୍ ବାଜା ତଳେ ଆତ୍ମଗୋପନ କରି ତ୍ରାହି ତ୍ରାହି ଡାକୁଛନ୍ତି । ତାଙ୍କ ଅବୟବଗୁଡ଼ିକ ଶୁଣ୍ଢ ପର୍ଯ୍ୟନ୍ତ ଓରିଏଣ୍ଟାଲ୍ ହୋଇଯାଇଛନ୍ତି । ଚିତ୍ରତାରକା ସନ୍ଧ୍ୟା ରାୟ, ହେମାମାଳିନୀ ବା ହେଲେନ୍‌ଙ୍କର ଆଖି ଭଙ୍ଗିମା ତାଙ୍କ ଆଖିରେ ଆରୋପିତ ହୋଇଛି ।

ମୋ ପଛରେ କେହି ଜଣେ ବେରସିକ ବ୍ୟକ୍ତି କାହାକୁ ପଚାରି ଦେଲେ–

'ଏ ଆଲୋକସଜ୍ଜାରେ କେତେ ଖରଚ ହୋଇଥିବ ?'

ଉପରୁ ଉଡ଼ା ଉତ୍ତରଟାଏ ଆସିଗଲା !

– 'ଦଶହଜାରରୁ କମ୍ ହୋଇନଥିବ ।'

– 'ଦଶ ହଜାର ?' ଲୋକଟିର ବିସ୍ମୟ ଆକାଶଚୁମ୍ବୀ ଲକ୍ଷ୍ୟ ବୋଧହୁଏ ।

ଆଉ ଜଣେ କାନ୍ଧ ମିଳାଇ ଠିଆହୋଇଥିବା ଗଣକ ହିସାବ କରି କହିଲେ– 'ସହରର ସବୁ ମୂର୍ତ୍ତି ଏକାଠି କରି ଖର୍ଚ୍ଚ ଅଟକଳ କଲେ ବୋଧହୁଏ ଦୁଇ ତିନି ଲକ୍ଷ ଟଙ୍କା ଖରଚ ହୋଇଥିବ !'

ଅର୍ଥ...

ଅର୍ଥନୀତି....

– 'ଛିଃ... ଛିଃ... ବେରସିକ, ଦେଖ ବାବୁ, ଗୋଟିପୁଅ କିମିତି ଅଣ୍ଟା ଢଳଉଛି । ନାରୀ ନହୋଇ ବି ଅଭିନେତା କିମିତି କଣ୍ଠରେ "ଓଗୋ ପ୍ରାଣନାଥ" କହୁଛି– ଯାକୁ ଦେଖିବ ଶୁଣିବ ନା ଦୁଇଲକ୍ଷ ତିନିଲକ୍ଷ ହେଉଥିବ ?'

ଯିଏ ଏକଥା କହିଲେ ସେ ଲାଲ ଟୁକୁଟୁକୁ ଆଖିରେ ଆମ ସମସ୍ତଙ୍କୁ ଚାହିଁଗଲେ ।

ଏତେ ଆଲୋକର ହିଲ୍ଲୋଳ ତଳେ ଗୋପବନ୍ଧୁ ମୂର୍ତ୍ତିର କରପଟେ ନର୍ଦ୍ଦମାକୁ ଜାହ୍ନବୀ ନାମ୍ନୀ ଯେ ରୋଗିଣୀ ଭିକ୍ଷୁଣୀଟି ତା'ର ଜଳାଧାରରେ ଅଧା ପଶିଯାଇ ଶେଷ ଜୀବନାବସାନର ମୁହୂର୍ତ୍ତଟିକୁ ଅପେକ୍ଷା କରି ଦୁଇ ଛୋଟ ଶିଶୁର ଶବଧରି ପଡ଼ିରହିଥିଲା, ତାକୁ ସାଥୀ କରି ବସିରହିଥିଲା ଗୋଟିଏ କଳା କୁତ୍ତୀ । ଦୁହେଁ ନାରୀ– ଯଦିଓ ପଶୁ କୁଳରେ 'ନାରୀ' ବୋଲି ଶବ୍ଦ ନାହିଁ– କହିଲେ ହେବ ପ୍ରସବିନୀ... ଦୁଇ ସର୍ବଂସହା ପ୍ରାଣୀ ।

ହଠାତ୍ କିମିତି ଚମକିପଡ଼ି ସେହି ସ୍ୱର୍ଗଗାମିନୀ ଭିକ୍ଷୁଣୀକୁ ଚାହିଁଦେଲି ।

ମନେହେଲା ସହରର ସମସ୍ତ ମୃଣ୍ମୟ ଶିବତନୟ ଗଣପତିଙ୍କର ଶୁଣ୍ଢ ପରସ୍ପର ସଂଯୋଜିତ ହୋଇଗଲେ ବି ପହଞ୍ଚି ପାରିବ ନାହିଁ ଏଇ ମହାପ୍ରାଣୀ ପରପାରଗାମିନୀ ମହିଳା ଯାଏ ।

ସେ କିଏ ?

ତାର ଅତୀତ ?

ନଖାଇ ମରିଛି, ତାହାହିଁ ଏକ ଅଭ୍ରାନ୍ତ ସତ୍ୟ । ପିଲା ଦୁଇଟି ବି ।

ପାର୍ଲମେଣ୍ଟ... ଆସେଂବ୍ଲି, ନିର୍ବାଚନ, ମନ୍ତ୍ରୀପରିଷଦ... ଖାଣ୍ଟି ଦୁଧ ରାସ୍ତା ଉପରେ ଢଳାଯାଇଛି, ଖାଣ୍ଟି ଗବ୍ୟଘୃତ ରାସ୍ତା ଉପରେ ସୁଅ ଛୁଟାଉଛି ... ପର୍ବ, ପୂଜା... ଗଣେଶବନ୍ଦନା...ଲକ୍ଷ ଲକ୍ଷ ଟଙ୍କାର ଜଳଧାର ଗଡ଼ିଯାଇଛି ମଣିଷର କାମନା ପ୍ରବୃତ୍ତିକୁ ଚରିତାର୍ଥ କରିବାର ପ୍ରବଳ ସିନ୍ଧୁ– ଉଚ୍ଛ୍ୱାସକୁ ।

ନଗେଶପୁରିଆ ବ୍ୟାଣ୍ଡପାର୍ଟି । ଗୋପବନ୍ଧୁଙ୍କ କାନ ଫାଟିଯାଉଛି... ସେ କାଳର ଲୋକ... କଅଣ ବା ବୁଝିବେ ଏ କାଳର ରସ– ରହସ୍ୟକୁ ?

ନମସ୍କାର କଲି ସେଇ ଶବଶିବାନୀକୁ । ଅଶାନ୍ତ ମନ ଓ ଅସତ୍ୟ ଶରୀରକୁ ବୁହାଇ ଫେରିଆସିଛି ନିଜ ନୀଡ଼ ଭିତରକୁ....

ଦେଖିଲି ପରିଚିତ ଦୁଇଜଣ ଯୁବକଙ୍କୁ– ମୋ ଅପେକ୍ଷାରେ ଥିଲେ । ଜଣେ କହିଲେ– 'ଆପଣ ଶିଳ୍ପୀମାନଙ୍କୁ ନିଜ ହାତରେ ଉପାୟନ ଦେବେ । ଅଭିନବ ବ୍ୟବସ୍ଥା କରିଛୁ ଆମେ । ଦେଖୁଛନ୍ତି ସହରଭରା ଗଣେଶ ପ୍ରତିମା । ବହୁ ସିଦ୍ଧ ଅସିଦ୍ଧ ଶିଳ୍ପୀ ତୂଳୀ ଚଳାଇଛନ୍ତି । ଉତ୍ସାହିତ କରିବେ ଶ୍ରୀକ୍ଷେତ୍ର ସାଂସ୍କୃତିକ ସମିତି । ଏହା ପୂର୍ବରୁ ଆପଣଙ୍କୁ ଘେନି ଆମେ ପ୍ରତ୍ୟେକଟି ମୂର୍ତ୍ତି ପ୍ରଦକ୍ଷିଣ କରିଆସିବୁ । ସାଙ୍ଗରେ କମିଟି ମେମ୍ବର ଥିବେ ଓ ବିଚାରକମଣ୍ଡଳୀ ଆମକୁ ସାହାଯ୍ୟ କରିବେ ।'

ଏଥିରେ ଉଲ୍ଲସିତ ହେବାର କଥା, ହେଲି ।

ଉପାୟନ ଗ୍ରହଣ ଉତ୍ସବ ।

ଜନସମାବେଶ ଖୁବ୍ ହୋଇଛି । ବହୁ ଶିଳ୍ପୀ ଉପସ୍ଥିତ ଅଛନ୍ତି ।

ସମିତିର ସମ୍ପାଦକ ପ୍ରାରମ୍ଭିକ ସୂଚନା ଦେବା ପରେ ବିଚାରକ ମଣ୍ଡଳୀର ପ୍ରଧାନ ବିଚାରକ ପୁରସ୍କୃତ ହେଉଥିବା ଗଣେଶ ପ୍ରତିମା ନିର୍ମାଣକାରୀଙ୍କର ଗୋଟିଏ ଗୋଟିଏ ନାମ, ମୂର୍ତ୍ତି, ପରିକଳ୍ପନା ଓ ସଂକ୍ଷିପ୍ତ ପରିଚୟ ଦେବାକୁ ଆରମ୍ଭ କଲେ–

"ସଜ୍ଜନବୃନ୍ଦ ! ସହରରେ ଶତାଧିକ ମୂର୍ତ୍ତି ପରିଦର୍ଶନ କରି ବିଚାରକଗଣ ସର୍ବସମ୍ମତିକ୍ରମେ ଯେଉଁମାନଙ୍କୁ ଶ୍ରେଷ୍ଠ ସ୍ଥାନ ଦେଇଛନ୍ତି, ସେମାନଙ୍କ ମଧ୍ୟରେ ଅଛନ୍ତି ଜଣେ ନାରୀଶିଳ୍ପୀ, ସେ ଆଜି ସଭାପତିଙ୍କଦ୍ୱାରା ପୁରସ୍କୃତ ହେବାକୁ ଯାଉଛନ୍ତି । ତାହା ସହରର ଜନସାଧାରଣ ତଥା ବୁଦ୍ଧିଜୀବୀଙ୍କ ପକ୍ଷରେ ଅତି ଆନନ୍ଦର ବିଷୟ ।

"ବଣର ମାଳତୀ ବଣରେ ଫୁଟି ସୁବାସ ହରାଇଥିବା ଭଳି ଚିତ୍ରକର– ସାହିର ଏହି ଅଜ୍ଞାତା ମହିଳା କୁମାରୀ କନକ ମହାପାତ୍ର ନିଜ ହାତରେ ଏକକ ପରିକଳ୍ପନା ଘେନି ଯେଉଁ ପ୍ରତିମା ଗଠନ କରିଛନ୍ତି, ତାହା ସର୍ବୋତ୍କୃଷ୍ଟ ବିବେଚିତ ହୋଇଛି ।

ସେ କେବଳ ଗତାନୁଗତିକ ଭାବରେ ପ୍ରତିମା ଗଢ଼ିନାହାନ୍ତି, ତାହା ସହିତ ଅନାହାରରେ ମୃତ୍ୟୁ ଓ ମଣିଷର ଖାଦ୍ୟକୁ ଛଡ଼ାଇ , ପଶୁ ଓ ପଶୁଠାରୁ ଖାଦ୍ୟ ଛଡ଼ାଇ ମଣିଷ ଯେ କିପରି ସଂଘର୍ଷ କରୁଛି, ତାହା ବି ଦେଖାଇ ଆମର ପ୍ରାଣକୁ ଶୋକାର୍ତ୍ତ କରିଛନ୍ତି । ପ୍ରତିମା ସେ ଗଢ଼ିନାହାନ୍ତି, କେବଳ ଗଣନାଥଙ୍କ ପ୍ରତୀକ ଶୁଣ୍ଢଟି ମାତ୍ର ଗଢ଼ିଦେଇ ଅବଶିଷ୍ଟ ଚିତ୍ରରେ

ସମସାମୟିକ ଜୀବନର ଅଶ୍ଳୀଳ ପରିସମାପ୍ତି ଦେଖାଇଛନ୍ତି ।"

ସର୍ବତ୍ର ହର୍ଷମୁଖର ହାତତାଳି । କିଏ ସେ କନକ ମହାପାତ୍ର... ?

ଆଗପଛ ସବୁ ଆଡ଼କୁ ଜନତାର ମୁଗ୍‌ଧ ବିସ୍ମୟର ଦୃଷ୍ଟିରେଖା ।

"ଦୟାକରି କନକ ମହାପାତ୍ର ମଞ୍ଚ ଉପରକୁ ଆସି ଏକ ହଜାର ଟଙ୍କା ଓ ମାନପତ୍ର ଗ୍ରହଣ କରନ୍ତୁ ଏବଂ ଯେଉଁମାନେ ବରାଦ ଦେଇଥିଲେ ମୂର୍ତ୍ତି ଗଠନ ପାଇଁ, ସ୍ଥାନୀୟ ମହାବିଦ୍ୟାଳୟର ଛାତ୍ରବୃନ୍ଦ, ତାଙ୍କର ପ୍ରତିନିଧି ଆସନ୍ତୁ । ତାଙ୍କୁ ଆମେ ପୁଷ୍ପଗୁଚ୍ଛ ଦେଇ ଅଭିନନ୍ଦନ ଜଣାଇବୁ ।"

ଯେ ତରୁଣୀଟି ସଲ୍ଲଜ ଭଙ୍ଗୀରେ ପ୍ରଣାମ କରି ମୋ ଆଗେ ଛିଡ଼ା ହୋଇ ମୋ ହାତରୁ ଏକ ହଜାର ଟଙ୍କା ଓ ମାନପତ୍ର ଗ୍ରହଣ କଲେ ସେ ଆଉ କେହି ନୁହେଁ, ସେଦିନ ସନ୍ଧ୍ୟାରେ ଯାହାଙ୍କର ଖଟ ଉପରେ ଚମ୍ପାଫୁଲ ମାଳ, ଶେଯ ସୁପାତି ଓ ଆମନ୍ତ୍ରଣର ଭିକ୍ଷା, ଦେଖି ମୁଁ ଭାବିନେଇଥିଲି ରୂପ ବ୍ୟବସାୟିନୀ— ସେହି ମହତୀ କୁମାରୀ ଶିଳ୍ପୀ । କନକକୁ ଦେଖିବା ମାତ୍ରେ ମୁଁ ଶିହରିତ ହୋଇଗଲି ।

କନକ ମୋ ଠାରୁ ଉପାୟନ ଗ୍ରହଣ କଲାବେଳେ ତାଙ୍କର କେତୋଟି ଆଙ୍ଗୁଠି ମୋର କର ସ୍ପର୍ଶ କରିଥିଲା । ଶିଳ୍ପୀର କରାଙ୍ଗୁଳି... ଭାଗ୍ୟ ଥିଲେ ଏ ସ୍ପର୍ଶ ଜୀବନକୁ ସ୍ପର୍ଶକାତର କରେ ।

ଧୀରେ କହିଲା— "ତୁମେ ?"

ସେ କେବଳ ତଳକୁ ଚାହିଁରହିଲେ... ପୁଣି ଥରେ ପ୍ରଣାମ ।

ଦ୍ୱିତୀୟ ଶିଳ୍ପୀଙ୍କ ଘୋଷଣା— "ଦ୍ୱିତୀୟ ସ୍ଥାନ ଅଧିକାର କରିଛନ୍ତି ଭଗବାନ ମହାପାତ୍ର— ଚିତ୍ରକର ସାହିର ଅଦ୍ୱିତୀୟ ଶିଳ୍ପୀ..."

ମୁଁ ଆନନ୍ଦରେ ତାଙ୍କୁ ପାଞ୍ଚଶତ ଟଙ୍କା ଓ ମାନପତ୍ର ଦେବାବେଳେ ସମସ୍ତଙ୍କୁ ଶୁଣାଇ କହିଲି— "ଆରେ ଆପଣ ଯେ... ଖୁବ୍ ଆନନ୍ଦର କଥା ।"

ସେ ହସିଲେ... କହିଲେ, "ସେଦିନ ସନ୍ଧ୍ୟାରେ ଆପଣ ଘରକୁ ଆସିଥିଲେ । ଭାବିଥିଲି ଆପଣ ମତେ ଭଲ ଗଣେଶ ପ୍ରତିମା ଗଢ଼ିବାକୁ ଅର୍ଡ଼ର ଦେବେ; କିନ୍ତୁ ତା' ପରିବର୍ତ୍ତେ ଖଣ୍ଡେ ଛୋଟ ଟିଣପଟାରେ କେତେଟା ଅକ୍ଷର ଲେଖିବାକୁ ଯେତେବେଳେ ଅନୁରୋଧ କଲେ, ମୁଁ ନିରାଶ ହୋଇ ଯାଇଥିଲି । ଆପଣ ଚାହୁଁଥିଲେ, ... 'ଜୋତା ବାହାରେ ରଖନ୍ତୁ'... ଏଇ ସାଇନ୍ ବୋର୍ଡ଼ ଖଣ୍ଡିକ; ମୁଁ ଅବଶ୍ୟ ତା' ଲେଖିଦେଇଥିଲି ।"

ସଭା ମଉଳିଯାଇଛି । ନିଜ ଘରର ନିଭୃତ ବସିବା ସ୍ଥାନରେ ବସି ଆକାଶକୁ ନିରୀକ୍ଷଣ କରୁଥିଲି ... ଭାବୁଥିଲି... କନକ ମହାପାତ୍ର, ଯାହାର କଣ୍ଠରେ ଶୁଣିବାକୁ ପାଇଥିଲି 'ପୁରୁଷ ନଥାନ୍ତୁ, ଆମେ ଅଛୁ' ସେଇ ସମଯାତ୍ରୀର ଆତ୍ମବିଶ୍ୱାସରେ ସେ ପ୍ରତିମା ଗଠନ କରି ଯଶସ୍ୱିନୀ ହୋଇପାରିଛି । ଆଉ ଭଗବାନ ମହାପାତ୍ର...

■■■

# ଦୁଇଟି ବଳବନ୍ତ ସିଂହ

ବିମାନଦୋଳାରେ ବସି ସଙ୍ଗୀତଶିକ୍ଷୀଙ୍କର ମରଶରୀର ଦୋହଲି ଦୋହଲି ଯାଉଥାଏ ।

ଆଗରେ ପଛରେ ଆକୁଳ ଜନତା ।

ବଡ଼ଦାଣ୍ଡ; ପୁରୁଷୋତ୍ତମ କ୍ଷେତ୍ର ।

ଏକାଦଶ ଶତାବ୍ଦୀରେ ରାଜା ଚୋଡ଼ଗଙ୍ଗଙ୍କ ସମୟରେ ବିଶିଷ୍ଟାଦ୍ୱୈତବାଦର ପ୍ରତିଷ୍ଠାତା ରାମାନୁଜ କହିଗଲେ ଏହି ଶ୍ରୀକ୍ଷେତ୍ରରେ– 'ମୃତ୍ୟୁ ମହାସତ୍ୟ' ।

ନିମ୍ବାର୍କ ସମ୍ପ୍ରଦାୟର ଜୟଦେବ ଗୋସ୍ୱାମୀ ଶ୍ରୀମନ୍ଦିର ଜଗମୋହନ ଭିତରେ ନେତ୍ରରୁ ଅଶ୍ରୁ ବୁହାଇ ଗାଉଥିଲେ 'ଗୀତଗୋବିନ୍ଦ'... ସେ ବି କହିଗଲେ– 'ସାବଧାନ, ମୃତ୍ୟୁ ଆସିଯିବ; ଜୀବ ଭକ୍ତିରସରେ ପ୍ଳାବିତ ହେଉ ।'

ମିଥିଳାର ବିଶିଷ୍ଟ କବି ବିଦ୍ୟାପତି ଓଡ଼ିଶାକୁ ଆସି ପୁରୀରେ ଅବସ୍ଥାନ କରି କହିଗଲେ– ଭକ୍ତିଧନ ବ୍ରଜେନ୍ଦ୍ର ନନ୍ଦନଙ୍କୁ ସବୁ ସମର୍ପଣ କର । ମୃତ୍ୟୁକୁ ବାରଣ କରିହେବନାହିଁ । ଏହା ସତ୍ୟ ।'

ଚଣ୍ଡୀଦାସ ବ୍ରଜଭାଷାରେ ପଦ୍ୟାବଳୀ ଲେଖି ଓଡ଼ିଶାକୁ ଆସି ପୁରୀଠାରେ ପାରାୟଣ କଲେ ତାଙ୍କର ଭକ୍ତି– ସ୍ତୋତ୍ରାବଳୀ ।

ଚୈତନ୍ୟଦେବ ତ ଅଠରବର୍ଷ କାଳ ଶ୍ରୀକ୍ଷେତ୍ରର ବିଭୂତି ହୋଇଗଲେ । ସେ କହିଗଲେ– 'କୃଷ୍ଣନାମ ଉଚ୍ଚାରଣ କର ରେ ମୂଢ଼ମତି ! ମୃତ୍ୟୁ ଅମୃତରେ ପରିଣତ ହେବ ।'

ପଞ୍ଚଦଶ ଶତାବ୍ଦୀରେ ମହାସାଧକ କବୀର ପୁରୀଧାମରେ ରାମନାମ ପ୍ରଚାର କରି ସର୍ବଧର୍ମ ସମନ୍ୱୟର ସାରବତ୍ତା ପ୍ରତିପାଦନ କଲେ ।

ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ରାମାନନ୍ଦସ୍ୱାମୀ ରାମାନନ୍ଦୀ ସମ୍ପ୍ରଦାୟର ସାଧନ ଭଜନ ପ୍ରଚାର ପାଇଁ ପୁରୀଧାମକୁ ଆସି ମୃତ୍ୟୁଶୀଳ ମଣିଷର ଅମୃତ ପ୍ରାପ୍ତି ପାଇଁ ପ୍ରବଚନ ଦେଇଗଲେ ।

ଷୋଡ଼ଶ ଶତାବ୍ଦୀର ପ୍ରଥମ ଭାଗରେ ଗୋସ୍ୱାମୀ ତୁଳସୀ ଦାସ ଶ୍ରୀକ୍ଷେତ୍ରକୁ ଶୁଭାଗମନ କରି ରାମନାମ ପ୍ରଚାରକଳ୍ପେ ପ୍ରାଣୀର ମୃତ୍ୟୁକୁ ମହାସତ୍ୟ ବୋଲି ଜ୍ଞାପନ କଲେ ।

ପୁଣି ଏହି ଶତାବ୍ଦୀରେ ବାବା ଗୁରୁ ନାନକ ଶିଖଧର୍ମ ପ୍ରଚାର କରିବା ଅଭିପ୍ରାୟରେ ଶ୍ରୀକ୍ଷେତ୍ରକୁ ଆସି ଜୀବନ ମୃତ୍ୟୁ ବିଷୟରେ ପ୍ରବଚନ ଦେଲେ ।

ଏହି ଶତାବ୍ଦୀର ମଧ୍ୟଭାଗରେ ଗୁରୁ ନାନକଙ୍କର ପୁତ୍ର ଉଦାସୀ ସମ୍ପ୍ରଦାୟର ପ୍ରତିଷ୍ଠାତା ବଲ୍ଲଭାଚାରୀ ପୁରୀ ଆଗମନ କରି 'ଜୀବନ କଅଣ, ମୃତ୍ୟୁ କଅଣ'– ପ୍ରସଙ୍ଗରେ କଥା କହିଲେ ।

ଶ୍ରୀକ୍ଷେତ୍ର ନ ଦେଖିଛି କଅଣ ? ଦାରୁବ୍ରହ୍ମ ମୂର୍ତ୍ତି କଅଣ ବା ନ ଶୁଣିଛନ୍ତି ? ସେଇ ଯେଉଁ ସିଂହଦ୍ୱାର ଚକଡ଼ା, କ୍ଷେତ୍ର ଉପରକୁ ଆସିବାକୁ ହେଲେ ସବୁଆଡ଼େ ପଥ ଲମ୍ବି ଯାଇଛି– ସେ ଚକଡ଼ା ଉପରେ କିଏ କେତେ ଧର୍ମାତ୍ମା, ସାଧକ, ସମ୍ପ୍ରଦାୟୀ, ବୌଦ୍ଧ,ଜୈନ,ଶାକ୍ତ ବା ଅଦ୍ୱୈତ ବେଦାନ୍ତୀ ତନୁଭାର ଥୋଇ ନଥିବେ ବା କଳାଲୋଚନ ତଳେ ମହାବେଦି ନିକଟରେ ଅଶ୍ରୁଧାର ଢାଳିନଥିବେ ?

ସେହି ଚକଡ଼ା ନିକଟରେ ସଂଗୀତ ସାଧକ, ଜଗନ୍ନାଥ ଜଣାଣ ଜଣାଇବା ଭକ୍ତି ରସିକଙ୍କର ପ୍ରାଣହୀନ ଶରୀର ଯେତେବେଳେ ଉପସ୍ଥିତ ହେଲା, ସେତେବେଳେ....

– "ଆଜ୍ଞା, ଲେଖୁଛନ୍ତି ତ, ହଁ ଲେଖନ୍ତୁ ଲେଖନ୍ତୁ, ତାଲିକାରେ ନାଁଟା ଥାଉ । ହଁ, ପଞ୍ଚବଟୀ ଯାଗାଘର ପହିଲିମାନ୍ ଶ୍ୟାମ ସୁଆର ଫୁଲମାଳ ଦେଲେ ।"

– "ହୋ ବାବୁ, ଲେଖନ୍ତୁ, ପ୍ରୀତିଭକ୍ତି ସଂଗୀତ ଅନୁଷ୍ଠାନର ପୁଷ୍ପାର୍ଘ୍ୟ, ତା'ପରେ ନିଖିଳ ଦେବଦାସୀ ସଂଘର ଏଇ ଗୋଲାପଗୁଚ୍ଛ...'

– "ଆଜ୍ଞା, ଆମେ କିଆଁ ପଛରେ ପଡ଼ିଯିବୁ । ହେ ଟୋକା, ଗଲୁ ଦି' ଅଣା ପଇସାରେ ଗୋଟାଏ ପ୍ୟାକେଟ୍ ଧୂପବତୀ... ଆଗତୁରା ଲେଖନ୍ତୁ, ଅଖିଳ ଅପମିଶ୍ରଣ ଚୋରାଖାଦ୍ୟ ସଂଗ୍ରାହକ ସଂଘ ପକ୍ଷରୁ ଧୂପଦାନ..."

– "ଲେଖ ବାବୁ, ହିନ୍ଦୁସ୍ଥାନୀ ସଙ୍ଗୀତ ମିଶାଣ ଓଡ଼ିଶୀ ଭଜନ ସମ୍ପ୍ରଦାୟର ସଭାପତି ଶ୍ରୀକାନ୍ତ ଯାଯୋଡ଼ିଆଙ୍କର ଭକ୍ତିନ[illegible]ନ ଏହି ତୁଳସୀମାଳ..."

ଯେ ଲେଖୁଥିଲେ, ସେ ପଚାରିଲେ, "ଏ ଲେଖା ସେ କାହାକୁ ଦେବେ, କଅଣ ବା ଏହାର ପ୍ରୟୋଜନ ?"

ଭିଡ଼ ଭିତରୁ ପାଟି ହେଲା, "ସାମ୍ବାଦିକଙ୍କୁ ଦେଇଦିଅନ୍ତୁ, ଛାପା ହୋଇଯିବ ।" ପୁଣି ସେହିଆଡୁ ସ୍ୱର ଶୁଣାଗଲା..." ଏବେ ତ ବିଧାନସଭା ଚାଲିଛି ; କିଏ ଛାପିବ ଏ ଅବାନ୍ତର କଥାଗୁଡ଼ାକୁ ? ବରଂ ରୁଷିଆ ଗୁପ୍ତଚରଙ୍କର ଓଡ଼ିଆରେ ଅନୁପ୍ରବେଶ ଓ ଆଡ୍ଡା ବଡ଼ ମୁଖରୋଚକ ହୋଇଛି ଏତେବେଳେ..."

ଅଟକିଥିବା ବିମାନ ଦୋହଲି ଉଠିଲା ... ଚାଲିଲା ସ୍ୱର୍ଗଦ୍ୱାର ଶ୍ମଶାନ ଅଭିମୁଖେ... ରାମ ନାମ ସତ୍ୟ... ଈଶ୍ୱର ଆଲ୍ଲା ତେରେ ନାମ୍... ସବ୍‌କୋ ସନ୍‌ମତି ଦେ ଭଗବାନ୍...

ଏହି ସନ୍‌ମତିର ଗୋଟାଏ ଦୃଶ୍ୟ...

ପୂଜାପଣ୍ଡା ଧରଣୀଧର ଚୁପ୍‌ଚାପ୍ କରି କହିଲେ... "ଯାଃ ଚାଲିଗଲା ଲୋକଟା...ଜୀବନଯାକ ଖାଲି ଖାଣ୍ଟି ଖାଣ୍ଟି ନିରୁତା କଥା କହୁଥିଲା । କିଓ, ଆଜିକାଲି ଟିକିଏ ସଙ୍ଗୀତରେ ମିଶ୍ରଣ ନଦେଲେ, ଯିମିତି ଓଡ଼ିଶୀ ନାଚରେ ଖେମ୍‌ଟା, ଜଣାଣରେ ଭାଟିଆରି, ଭଜନରେ ଠୁମୁରି, ଓଡ଼ିଶୀ ଗାନରେ ହିନ୍ଦୁସ୍ଥାନୀ ଦ୍ରୁତ ଟପ୍‌ପା... ଦାଣ୍ଡରେ ଦି'ପଇସା ମିଳିବ କି ? ଲୋକଟା ଆମ ରୋଜଗାରର ପନ୍ଥା ଅନେକଟା ବନ୍ଦ କରିଦେଇଥିଲା ହୋ..."

ବନ୍ଧୁ ଜଣକ କହିଲେ– "ହଇଏ ପଣ୍ଡେ, ଲୋକଟା ଅନୁଷ୍ଠାନ ଗଢ଼ିଛି ସରକାରଙ୍କଠାରୁ କିଛି ପଇସା ଆସେ; ତାହା ବାପା-ମା' ଛେଉଣ୍ଡ ହୋଇଗଲା ... ମୋର ମନକୁ ଆସୁଛି ଗୋଟାଏ କଥା– କହିବି ? ନିର୍ଭୟରେ କହିବି ?"

– କହ ସାଙ୍ଗ ।

– ମାଡ଼ିବସିବା ।

– କିରେ କାହାକୁ ?

– ଅନୁଷ୍ଠାନକୁ ।

– ଠିକ୍, ମୁଁ ହେବି ସଭାପତି ।

– ମୁଁ ହେବି ସମ୍ପାଦକ ।

– ପାର୍ଷଦବର୍ଗ ?

– ଲୋକ ମିଳିବେ ।

– ତେବେ ଏତିକି... ଲୋକଟା ମରୁ ନମରୁ ଏମିତି ଆମେ ଡାହାଣା ହୋଇଯିବା ନା ?

– ଆଗରୁ ତ ଚିନ୍ତା କରିବା କଥା ?

– ହଉ, ଚାଲ୍ ଶବ ପଛେ ପଛେ ଯିବା– ଉପରକୁ ଠିକ୍ ରଖି ଚାଲ୍, ଭିତରଟା ଯାହା ହେଉ...

ମହାତୀର୍ଥ ଶ୍ମଶାନରେ ସାଧକଙ୍କର ଚିତାଗ୍ନି ଜଳିଉଠିଲା... ସେ ପୋଡ଼ି ପାଉଁଶ ହୋଇଗଲେ...

ଘରବାହୁଡ଼ା ଶୋକାକୁଳ ଜୀବିତ ପ୍ରାଣୀମାନେ ଶୁଣୁଥିଲେ ମାଇକ୍‌ରେ ପ୍ରଚାରିତ ସ୍ତୋତ୍ର...

'ଯାବତ୍ ପବନୋ ନିବସତି ଦେହେ
ତାବତ୍ ପୃଚ୍ଛତି କୁଶଳଂ ଗେହେ
ଗତବତି ବାୟୌ ଦେହାପାୟେ
ଭାର୍ଯ୍ୟା ବିଭ୍ୟତ ତସ୍ମିନ୍ କାୟେ ।

ଭଜ ଗୋବିନ୍ଦଂ ଭଜ ଗୋବିନ୍ଦଂ ଗୋବିନ୍ଦଂ ଭଜ ମୂଢ଼ମତେ ।'

ହେ ବନ୍ଧୁ, ଦେହରେ ପ୍ରାଣପବନ ଥିବାଯାଏ ଘରର ଲୋକେ ତୋର କୁଶଳ ପଚ୍ଛା କରୁଥିବେ । ମାତ୍ର ତାହା ଉଡ଼ିଯିବା ପରେ ନିଜ ସ୍ତ୍ରୀ ମଧ୍ୟ ତୋ'ର ଦେହକୁ ଦେଖି ଭୟ କରିବ ।

ହେ ବନ୍ଧୁ, ପୁନଃ ପୁନଃ ଜନ୍ମ, ପୁନଃ ପୁନଃ ମୃତ୍ୟୁ, ଜନନୀ ଜଠରରେ ପୁନଃ ପୁନଃଶୟନ... ଏହିଭଳି ପୁନରାବର୍ତ୍ତିତ ଦୁସ୍ତର ସଂସାରସାଗରରୁ, ହେ ମୁରାରି, ମତେ ଉଦ୍ଧାର କର...

x x x

– ଆଜ୍ଞା ଚାନ୍ଦା ?

– କି ଚାନ୍ଦା ?

– ସ୍ୱର୍ଗତ ସଙ୍ଗୀତ ସାଧକଙ୍କର ଶୋକସଭା ପାଇଁ କିଛି ଚାନ୍ଦା ।

– ଉଦ୍ଦେଶ୍ୟ ?

– ଦରିଦ୍ରନାରାୟଣ ଭୋଜନ...

– ଠିକ୍ ଅଛି, ନିଅ...

– ଧନ୍ୟବାଦ, ଆପଣଙ୍କର ସୌଜନ୍ୟ ବିରଳ ।

ସମାଦୃତ ସୌଜନ୍ୟର କେତେଗୁଡ଼ିଏ ଅର୍ଥ ଆଦାୟ ହୋଇଗଲା । ଶୋକସଭାର ସ୍ଥାନ ସେହି ସିଂହଦ୍ୱାରର ଚକଡ଼ା.. ଭଲ ଜାଗାଟିଏ... ପତିତପାବନଙ୍କର ଆଖି ଆଗରେ ସାଧକଙ୍କ ପାଇଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରାଯିବ ।

ମାଇକ୍, ଆଲୁଅ, ରେକର୍ଡ଼, ରିକ୍ସା, ଫଟୋ, ଫୁଲମାଳ, ଧୂପବତୀ... ନିରୂପିତ ସମୟର ଘଣ୍ଟାଏ ପରେ ସବୁ ଆସିଗଲା...

ସ୍ୱେଚ୍ଛାସେବକମାନେ ଚିତ୍କାର କଲେ...

ଉଠ, ଉଠ; ଆବେ ଶୋଇଛ କଅଣ ? ତମେ ସବୁ ଜାଣନା ଯେ ଆମର ପ୍ରିୟ ସାଧକ ଚାଲିଗଲେ ? ତାଙ୍କ ପାଇଁ ଏଠି ଶୋକସଭା ହେବ ? କିରେ ରାମ, ମୁଦୁଲି, ତୁମକୁ କଅଣ କୁହାଯାଇଥିଲା, ଆଉ ତୁମେ କରିଛ କଅଣ ?

ଚଉତରା ଉପରେ ମାଳମାଳ ଲଙ୍ଗଳା, ଅଧଲଙ୍ଗଳା କୁଷ୍ଠରୋଗୀ ରୋଗିଣୀ । ଛିଣ୍ଡା କନ୍ଥା, ଭଙ୍ଗା ଆଟିକାରେ ତାଙ୍କର ସର୍ବସ୍ୱ ସମ୍ପାଦିତ ମାନବତ୍ୱ ଶୋଭାପାଉଛି ।

ମାଇପିଟିଏ– ସ୍ତନ ଥାଇ ନିଃସ୍ତନା; ତାକୁ ରେଙ୍କୁଟି ଖାଉଛି ଛଅମାସର ମଣିଷଛୁଆ । ସେ ସ୍ତ୍ରୀଲୋକ ପାଟି କରୁଛି, ମୋ ପେଟକୁ ମାରୁଛି– ମତେ ଟିକିଏ ପାଣି ଦିଅ, ମୁଁ ଉଠିପାରୁନି । ମରିଗଲି, ମରିଗଲି...

କୁକୁର ଦୁଇଟା ଚଳନଶୀଳ ସେହି ମଣିଷ ରୂପର ପ୍ରାଣୀମାନଙ୍କୁ ଶୁଂଘିଯାଇଛନ୍ତି ସେମାନେ ।

ବୁଢ଼ା କୁନ୍ଥାଉଛି, ତା' କାନରେ ସ୍ୱେଚ୍ଛାସେବୀମାନଙ୍କର ଚିତ୍କାର ଶୁଭୁଛି । ସେ କହିଲା– ଆମେ ଆଉ କୁଆଡ଼େ ଯିବୁ ? ମଠର ମାହାର୍ଦ ଆସିଯିବ ।

କିନ୍ତୁ ମିଟିଂର ଉଦ୍ୟୋକ୍ତାମାନଙ୍କ ପକ୍ଷରେ ଗୁରୁ କର୍ତ୍ତବ୍ୟ ଥିଲା ଶୋକସଭାର ପ୍ରସ୍ତୁତି... ବିଳମ୍ବ ହୋଇଗଲାଣି, ତେବେ ଆତ୍ମା ଅତୃପ୍ତ ରହିଯିବ–

ସଭାପତି ଆସିଗଲେଣି । ବକ୍ତାଗୁଡ଼ାକ ଶୋକ ଝରାଇବା ପାଇଁ ମନେ ମନେ ଭାଷଣ ପ୍ରସ୍ତୁତିରେ ଲାଗିଛନ୍ତି ।

କିଏ ଖଣ୍ଡିଏ ବାଉଁଶ ଧଡ଼ା ନେଇ ଆସିଲା । ନେଃ... ଦିଟା କଷିଦେ... ଏଗୁଡ଼ାକ ଉଠିଯିବେ ।

କଣ୍ଠଶିଳ୍ପୀ– ସାଧକଙ୍କର ନିଜ କଣ୍ଠର ରେକର୍ଡ଼ ନିନାଦିତ ହେଲା 'କ୍ଷମାନୁକମ୍ପା....'

କ୍ଷମା ? କାହାକୁ ?

ହୋ– ହଲ୍ଲା କରି, ବାଉଁଶବାଡ଼ି ଉଠେଇ ଯେଉଁ ଯୁବକମାନେ ଏହି କୁଷ୍ଠରୋଗୀ, ରୋଗିଣୀ, ବୁଢ଼ା, ଭିଖାରି, ସ୍ତନଟଣା ଶିଶୁ ଓ ପେଟମରା ସ୍ତ୍ରୀ ସହିତ ସେମାନଙ୍କର ସାଥୀ ଶ୍ୱାନମାନଙ୍କୁ ତଡ଼ି ନେଇଗଲେ, ସେମାନେ ଏକ ମହାକର୍ତ୍ତବ୍ୟ ସାଧନ କରିଛନ୍ତି ବୋଲି ଭାବି ଶୋକସଭା ପାଇଁ ପରିଷ୍କାର ଭାବରେ ସତରଞ୍ଜି ବିଛାଇଲେ ।

ସ୍ଥାନଟି ଶୋଭନ ଦେଖାଗଲା । ତଡ଼ାଖାଇ ଗଲାବେଳେ ସେ ସ୍ତ୍ରୀ ଲୋକଟି ଝଲକାଏ ବାନ୍ତି କରିଦେଲା । ଅପୂର୍ବ ନୈପୁଣ୍ୟ ଦେଖାଇ ଜଣେ ସ୍ୱେଚ୍ଛାସେବୀ ପାଖ ଡାକ୍ତରଙ୍କ ଦୋକାନରୁ ଫିନାଇଲ୍ ମାଗିଆଣି ତାହା ଉପରେ ଢାଳିଦେଲେ । ବାନ୍ତିର ସ୍ତୁପ ଓ ଫିନାଇଲ୍ ପାଣି ମିଶି ତାହା ଯେଉଁ ସୁଗନ୍ଧ ବିତରଣ କଲା ତାହା ସମୀରରେ ମିଶି ବହିଗଲା ।

ବର୍ତ୍ତମାନ ସବୁ ପରିଷ୍କାର... ନିର୍ମଳ

ଝରଝର ଶୋକାପ୍ଳୁତ ଭାଷଣ...

ଝରଝର ସଙ୍ଗୀତ ପରିବେଷଣ ।

ସଭା ଶେଷବେଳକୁ ଦେଖାଗଲା, କାହା ହୃଦୟରେ ଆଉ ଶୋକ ନାହିଁ । କାରଣ, ଭାଷଣ ଓ ଗାନରେ ତାହା ଦୂର ହୋଇଯାଇଛି । ଏଣିକି ରାଜନୀତି, ଚୋରା କାରବାର, ପଞ୍ଚାୟତ ନିର୍ବାଚନ ପ୍ରଭୃତି ଯେତେକ ଶୁଭକାର୍ଯ୍ୟରେ ଯୋଗଦେବାକୁ ହେବ । ପେଟପୋଟଣା ଚିନ୍ତା କରିବାକୁ ହେବ ତ !!

ଯିଏ ମଲେ, ସିଏ ଗଲେ...

ଯିଏ ରହିଲେ, ସେ ଅମରତ୍ୱର ସ୍ୱପ୍ନ ଦେଖିଲେ...

x x x

ପର ପ୍ରଭାତର ନୀଳଚକ୍ର ବାନା ଦେଖିଲା, ଆଉ ମନ୍ଦିର ଯାତ୍ରୀମାନେ ଦେଖିଲେ ଉତ୍କଳମଣିଙ୍କ ବିଗ୍ରହ ତଳେ ମରିଯାଇ ମଡ଼ା ହୋଇଯାଇଛନ୍ତି ସେଇ ସ୍ତ୍ରୀଲୋକ ଓ ତାହାର ସନ୍ତାନ, ଯିଏ ଶୁଖିଲା ଚମକୁ ମୁହଁରେ ଟାଣି ସେଥିରୁ ଅମୃତ ଝରିବ ବୋଲି ଏବଂ ତାହାରି ଝରଣାରୁ ନିଜେ ବଞ୍ଚିଯିବ ବୋଲି ସ୍ୱପ୍ନ ଦେଖି ମା' ଛାତି ଉପରେ ଲେପଟି ରହିଗଲା ।

ଏ ଦୁଇ ପ୍ରାଣୀଙ୍କର ଶୋକସଭା କରିବାକୁ ଏ ବିପୁଳ ପୃଥିବୀରେ କେଉଁ ଚଉତରା ରହିଛି ? କିଏ ଏହାର ଉତ୍ତର ଦେବ ?

ସମାଜସେବୀ ଡାକ୍ତର !

ସମାଜସେବୀ କମିଟି ମେମ୍ବର !

ସମାଜସେବୀ ରାଜନୈତିକ କର୍ମୀ... ସମସ୍ତଙ୍କର ଚଲାପଥ ଉପରେ ଦୁଇଟି ଶବ... କାହାର ଆଖି ଏ ଦୃଶ୍ୟ ଦେଖି ଚକିତ ହେଲାନି, କାହା ହୃଦୟରେ ସାମାନ୍ୟ କମ୍ପନ ହେଲାନାହିଁ ।

ସିଂହଦ୍ୱାରର ଦୁଇଟି ବଳବନ୍ତ ସିଂହ ଚାହିଁ ରହିଥିଲେ । କେଉଁ ଯୁଗରୁ ସେ ଚାହାଣି ସେମିତି ଅଛି ।

ପାଷାଣ ଚକ୍ଷୁର ଚାହାଣି...

ପଥର... ପଥର... ପଥର... ସର୍ବତ୍ର ରୁକ୍ଷ କଠିନ ପାଷାଣ ।

■■■

# ପବିତ୍ର ଲିପି

କେଉଁକାଳୁ ଆଖିରେ ଚଷମା ଉଠିଲାଣି । ଦାନ୍ତମାଢ଼ିର ଅବସ୍ଥାର ଶୋଚନୀୟ; କେତୁଟା ତୀକ୍ଷ୍ଣ ହୋଇ ଝୁଲୁଛି, କେତୁଟା ସ୍ଥାନଚ୍ୟୁତ । ଏ ଜନ୍ମରେ ଆଉ ଦେଖାହେବନି । ତୀକ୍ଷ୍ଣ ଦାନ୍ତଗୁଡ଼ାକ କଳପାଟିକି ଚିରି ଦଉଛନ୍ତି । ମୁଖଗହ୍ୱର କ୍ରମେ ବିକୃତ ହେବାକୁ ବସିଲାଣି ।

ଦିନେ ଯାହାର ମାଂସଳ ବକ୍ଷ ଥିଲା, ଯାହାର ଚଉଡ଼ା ପରିପାଟୀରେ ପୌରୁଷର କାନ୍ତି ଝଟକୁଥିଲା, ସାଉଁଳିଦେଲେ କେଉଁଠି ହାତ ଅଟକି ଯାଉନଥିଲା; ଯିମିତି ମାଂସଳ ସିମିତି ମସୃଣ, ସେ ବକ୍ଷ ଆଜି ଦୀର୍ଣ୍ଣ । ପଞ୍ଜରା ଅସ୍ଥିମାଳରେ ତାହା ଆଉ ପୂର୍ବ ବୈଭବ ରଖିନାହିଁ ।

ମେରୁଦଣ୍ଡ ସିଧାସଳଖ ହୋଇ ରହିନାହିଁ । ମେରୁର ନାଡ଼ୀ ସକଳ ଶୁଷ୍କ । ସେଥିରେ ପ୍ରବାହ ନାହିଁ । ବାଙ୍କି ହୋଇ ଆସୁଥିବା ଏଇ ମେରୁହାଡ଼ ସୂଚାଇ ଦେଉଛି ଜୀବନର ଶେଷ ବଙ୍କିମ ଗତି ଶେଷ ପ.ନ୍ଥଶାଳା ପାଖରେ...

ସେହିପରି ହାତ, ପାଦ, କେଶ, ଚକ୍ଷୁକ୍ରମେ ଶକ୍ତି ହରାଉଛନ୍ତି । ଆଖିର ମଣି ଦୁଇଟି ଯାହା ଏ ବିଶ୍ୱକୁ ଦେଖି ଶିହରିତ ହୋଇ ଜଣାଇଦେଉଥିଲା ଏ ବିଚିତ୍ର ଭୁବନରେ କି ଅପରୂପ ରୂପ ରହିଛି, କେହି କଳନା କରିପାରିବେ ନାହିଁ । ଦୁଇଟି ଆଖି ସତ, ମାତ୍ର ତୃତୀୟ ଲୋଚନ ଥାଏ କବି, ଶିଳ୍ପୀଙ୍କର... ସେହି ଲୋଚନର ଲୀଳାୟିତ ଦୃଷ୍ଟିଭଂଗୀରେ ଯାହା ଧରାଦିଏ ତାହା ଅନିର୍ବଚନୀୟ ।

ସେହି ଆଖି ଦୁଇଟି ଉପରେ ଚଷମା ଲାଗିଛି । ଚଷମାର କାଚ ବର୍ଷକରେ ଦୁଇଥର ବଦଳାଇବାକୁ ପଡ଼େ; କାରଣ ଆଖିର ତେଜ କ୍ରମେ ମଉଳିଯାଉଛି । ଅଥଚ ଏଇ ନୟନର ମଣି ମାଣିକ୍ୟ ସହିତ ସେମାନେ ଆଖି ମିଳାଇ କେତେ କଅଣ କହି ନଥିଲେ !! କେଉଁ କାବ୍ୟଗ୍ରନ୍ଥରେ ତାହା ହୁଏତ ରସାଳ ହୋଇ ଲେଖାଯାଇନାହିଁ; ହେଲେ ବି ସେ କୂଜନ ସେମାନଙ୍କର ଆଜି ବି ହୃଦୟର ମିଶି–କୋଠରିରେ ସଂଚିତ ରହିଛି ।

ଜୀବନ ଏମିତି, ସବୁ ଶେଷ ହୋଇଯାଏ, ସ୍ମୃତି କିନ୍ତୁ ପ୍ରଖର । ମହାକାଳର ଗୋଟାଏ ଗନ୍ତାଘର ଅଛି । ସେଥିରେ ସଂଚିତ ରହିଯାଏ ଏହି ଛୋଟବଡ଼ ସ୍ମୃତିର ନିର୍ମାଲ୍ୟ । ବିଚିତ୍ର ଏମାନଙ୍କର ସନ୍ତରଣ । ଶରୀର ଅବଶ ହୋଇ ଆସିଲେ, ମୃତ୍ୟୁର ଶୀତଳସ୍ପର୍ଶ କ୍ରମେ ସର୍ବାଙ୍ଗ ଜଡ଼ିଭୂତ କରିବା ବେଳେ ଦୁଇଟି ବନ୍ଦନୀୟ ସ୍ରୋତ ହୃଦୟରୁ ଉଚ୍ଚାରିତ ହେଉ ବୋଲି ବୟଃଭାରେ ଆନତ ଶିଳ୍ପୀ ଶ୍ରୀକାନ୍ତ ଭଗବାନଙ୍କୁ ପ୍ରାର୍ଥନା କଲେ...

ସେ ଥିଲା ସନ୍ଧ୍ୟାର ନୀରାଜନା ବେଳ । ଆଲମାରିରେ ଖଚିତ ରହିଛି ଅଜସ୍ର ଗ୍ରନ୍ଥ । ଜୀବନଯାକର ଅଧ୍ୟୟନ ଐଶ୍ୱର୍ଯ୍ୟ । କାହିଁ କାଳିଦାସ, କାହିଁ ସେକ୍ସପିୟର, କାହିଁ ଶଙ୍କରାଚାର୍ଯ୍ୟ, କାହିଁ ବେଦବ୍ୟାସ, କାହିଁ ଗଙ୍ଗାଧର ମେହେର... ସମସ୍ତେ ଏବେ ବି ବାଣୀ ଶୁଣାଉଛନ୍ତି । ଶାଶ୍ୱତୀ ଭାରତୀ ।

ସେମାନେ ବି ଆସିଥିଲେ ଦିନେ ଏ ପୃଥିବୀକୁ... ବିଶ୍ୱଲୀଳାକୁ ଦେଖୁ ଦେଖୁ ତୃତୀୟ ନୟନ ଫିଟିଗଲା । ମାନବ ଜୀବନର ଜାହ୍ନବୀ ସ୍ରୋତରୁ ଛାଣିଆଣିଲେ କେତେ କଅଣ ବିଚିତ୍ର ଅନୁଭବ । ମହାକାଳର ମହାକୋଷ ସମ୍ଭବ ହେଲା ।

ଦୁଇଟି ବନ୍ଦନୀୟ ସ୍ତୋତ୍ର... ଗୋଟିଏ ଈଶ୍ୱରଙ୍କ ଉଦ୍ଦେଶ୍ୟରେ, ଅନ୍ୟଟି ସେହିମାନଙ୍କ ଉଦ୍ଦେଶ୍ୟରେ ଯେଉଁମାନେ ଶିଳ୍ପୀର ପ୍ରତିଭାକୁ ପ୍ରଣାମ କରି ପୁଷ୍ପମାଳା ରଚନା କରିଥିଲେ, ପବିତ୍ର ଲିପିମାଳାରେ ।

ଶ୍ରୀକାନ୍ତ ଜାଣନ୍ତି, ପ୍ରତିଭା ତାଙ୍କର ନାହିଁ । ଯାହା ଥିଲା ତାହା ସାମୟିକ ଆବେଗର ମସୀ ରୂପାନ୍ତର । ଏହା ବି ଜାଣନ୍ତି, ଅଜସ୍ର ପାଣ୍ଡୁଲିପି ତାଙ୍କର ତାଙ୍କ ଅନ୍ତେ ଧୂଳିରେ ମିଶିଯିବ। କିଏ ପ୍ରକାଶ କରିବ ? କେଉଁ ପ୍ରକାଶକ ସହାନୁଭୂତିଶୀଳ ହେବ ?

ବିଚିତ୍ର ଏ ସଂସାର ଘୂରୁଛି ତା'ର ପରିଧିରେ। ଗଣ୍ୟମାନ୍ୟ ନହେଲେ କ୍ଷମତା ଓ ଅର୍ଥ ଦୃଷ୍ଟିରେ, ଯେତେ ପ୍ରତିଭାବନ୍ତ ଲୋକ ହେଉ, ତା'ର ସୃଷ୍ଟି ସଂକଳନର ପ୍ରକାଶ ସମ୍ଭବ କି ?

ଅବନ୍ତୀ ଆସିଲା ଧୂପବତି ଜାଳିବା ପାଇଁ... ଏ ଅବନ୍ତୀ ମାନାମ୍ୟର ପୂଜାରିଣୀ। ଶେଷ ସ୍ତିମିତ ସୂର୍ଯ୍ୟଲୋକ ତଳେ ଏ ଆସିଛି ଶ୍ରୀକାନ୍ତକୁ ହାତ ଧରି ନେଇଯିବ ଚିତାଗ୍ନିର ଝଲକ ପାଖକୁ । କାହିଁକି ଏ ଆସିଛି ? କି ସଯୋଗ ଏ ପାଇବ ଏହି ସ୍ଥବିର ଶ୍ରୀକାନ୍ତଠାରୁ ?

– କଅଣ ଭାବୁଛନ୍ତି ?

– ନା, ଭାବିବାର କଅଣ ଅଛି ? ଶ୍ରୀକାନ୍ତ କହିଲେ ।

– ମୁଁ ସଜାଡ଼ି ରଖିଛି । ଗହଣା ଯେତିକି ଅଛି ମୋ ଦେହରେ ତାକୁ ବିକି ଆପଣଙ୍କର ଏ ରାଶି ରାଶି ପାଣ୍ଡୁଲିପିକୁ ଛାପିବି । ଆଗ ଛାପିବି ଏ ପବିତ୍ର ଲିପିମାଳାକୁ । ଯେଉଁମାନେ ଅନବଦ୍ୟ ଭାଷାରେ ଆପଣଙ୍କର ସାଧନାକୁ ପ୍ରଶସ୍ତି ଜଣାଇ ଏତେ ପତ୍ର ଲେଖିଯାଇଛନ୍ତି ସେମାନେ କିଏ, କେଉଁଠି, ମୁଁ ଜାଣେନା । ତେବେ ସେମାନେ ଏ ଜାତିର ନମସ୍ୟ । କାରଣ ତାଙ୍କର ଲିପିମାଳାରେ ଏପରି କିଛି ତନ୍ମୟତା ରହିଛି ଆପଣଙ୍କର ଜୀବନକୁ ଘେନି ଯେ, ତାହା ଯଦି ପ୍ରକାଶ ନପାଏ, ତେବେ ଗୋଟାଏ ସାଧକ ଜୀବନର ବହୁ ବିଚିତ୍ର ଗବାକ୍ଷ ଚିରଦିନ ପାଇଁ ବାରିତ ରହିଯିବ ।

ଶ୍ରୀକାନ୍ତ ଚାଲିଗଲେ ଅତୀତର ବନାନୀ ଭିତରକୁ । କେତେ ଲତା, ଗୁଳ୍ମ, ପତ୍ର ଓ ପୁଷ୍ପରେ ସେ ଅରଣ୍ୟ ଶୋଭିତ । ସତେ ତ, ବନାନୀ !! ସେ କାହିଁକି ଆସିଥିଲା । ଅବନ୍ତୀ ?

ଅବନ୍ତୀ ମୂକ । ତେବେ ବନାନୀ ବୋଲି ଜଣେ କେହି ନାରୀ ଶ୍ରୀକାନ୍ତଙ୍କୁ ଶ୍ରଦ୍ଧା ଜଣାଇଛି । ତା'ର ଲିପିମାଳା ?

ଅଛି, ସବୁ ସଜ୍ଜିତ ଅଛି । ନୀଳରଙ୍ଗ କାଳିରେ ଗୋଲ ଗୋଲ ଅକ୍ଷର ।

ଅବନ୍ତୀକୁ ସଙ୍କେତ ଦେଇ ଶ୍ରୀକାନ୍ତ କହିଲେ– ଏସବୁ ମହାକାବ୍ୟ ନୁହେଁ, କବିତା ନୁହେଁ, ନାଟକ

ନୁହେଁ, ଗୋଟାଏ ଭାବୋଚ୍ଛ୍ୱାସିତ ତରୁଣୀ ମତେ ଅର୍ଘ୍ୟ ନିବେଦନ କରିଥିଲା । କିନ୍ତୁ ଆଜି ସେ କାହିଁ ? ଅବନ୍ତୀ, ଆକାଶରେ କେତେ ନକ୍ଷତ୍ର ! ଟିପି ଟିପି ହସୁଥାନ୍ତି । ପ୍ରଭାତରେ ସେମାନେ ନିଶ୍ଚିହ୍ନ । ସିମିତି ମୋ ଜୀବନରେ ଏ ନକ୍ଷତ୍ରମାଳିନୀ ଆକାଶ ଆଜି ମେଘ ମେଦୁର ।

– ପଢୁଛି...

– କଅଣ ?

– ପାଇଲି, ସେ ଚିଠି– ବନାନୀର...

– ପଢ଼ିବ ? କାହିଁକି ?

ତା'ର କାରଣ ଜୀବନ ପ୍ରତି ସେସବୁର କିଛି ସନ୍ଦେଶ ଅଛି ବୋଲି ଆପଣଙ୍କୁ ଭଲ ଲାଗିବ ।

"ପୂଜନୀୟେଷୁ !

ଜୀବନରେ କେତେ କଅଣ ଘଟିଗଲା । ଆଉ ଯିବ । ତମର ମନେଥିବ ସେହି ବିଖ୍ୟାତ ଛବି ।

One star, one string and all rest Darkness and everlasting space save that she shelters in her breast. The travail of the race Borne through the cold and soundless with sun riding down the air. She bows, too heavenly to weep.

Too human to despair, and ever on her lonely string Expects the music from above. Some faint confirming whispering of fatherhood and love one star, one string and through the drift of aeons and with human cries. She waits the hand of God to lift the bandage from her eyes.

ଗଭୀର ଅନ୍ଧକାର ରାତ୍ରି । ଆଖିରେ ପଟି । ପୃଥିବୀ ଉପରେ ସେ ଝିଅଟି ନଇଁପଡ଼ିଛି । ହାତରେ ଥିବା ତାରଯନ୍ତ୍ରରେ କେବଳ ଗୋଟିଏ ତା'ର ଅବଶିଷ୍ଟ ଅଛି; ଅନ୍ୟ ସବୁ ଛିଣ୍ଡି ଯାଇଛି । ଆକାଶରେ ଗୋଟିଏ ମାତ୍ର ତାରା । ମୋର ଖୁବ୍ ମନେପଡ଼େ ସେଇ ଛବି । ସେଇ କବିତାର କଥା । ଆଶା ଓ ବିଶ୍ୱାସର ଏତେ ଉଜ୍ଜ୍ୱଳ ପ୍ରତୀକ। ମତେ ଖୁବ୍ ଭଲ ଲାଗେ ଶିଳ୍ପୀ ।

ଜୀବନରେ କିଛି ହଜିବାର ନାହିଁ । 'ସବୁ'ର ମୂଲ୍ୟ ଅଛି । ସେଇ ଏକ ମାତ୍ର ନକ୍ଷତ୍ର, ଗୋଟିଏ ମାତ୍ର ତାରା । ମୁଁ ବଞ୍ଚିଛି, ହାରିଯାଇନି, ନିଃଶେଷ ହୋଇନି। କଅଣ ତମ ମନକୁ ଆସୁଥିବ ମୁଁ ଜାଣେନି । ପାଖରେ ଥିଲେ ବୁଝନ୍ତି । ସେ ଆଖିକୁ ଚାହିଁ ସବୁ ମୁଁ ବୁଝିନିଅନ୍ତି । ଏତେ ଦୂରରେ ମୁଁ ଶୁଣୁଛି ସେ ଗଭୀର ଦୀର୍ଘନିଶ୍ୱାସ । କେବେ ? କେତେ ଦୂରରେ ? ପରସ୍ପରର ଦାୟଦାୟିତ୍ୱ– ଆବୋରିନେବାର ସ୍ୱପ୍ନ । ଅମୃତର ସ୍ୱପ୍ନ ତଥାପି ଆମେ ଏକ ।

କହୁଥିଲ, ଆଉ ଗୋଟିଏ ବର୍ଷ । ଚାକିରିରୁ ଅବସର ନେବ । ତା' ପରେ ମୁଁ କଅଣ ଭାବିବି ସେ କଥା ବି କହୁଥିଲ । ମୋର ତ ଆଉ କିଛି ଦରକାର ନାହିଁ କେବଳ ତମ ପରିଚୟ ।

ତମର ଜନ୍ମତିଥି ଆଜି । ସାତବର୍ଷ ହୋଇଗଲା । ଏଇ ଦିନଟିରେ ମୁଁ ଶାନ୍ତ ମନରେ ପ୍ରାର୍ଥନା କରିଆସିଛି ବିଶ୍ୱପିତାଙ୍କୁ– ଶିଳ୍ପୀକୁ ମୋର ଦୀର୍ଘଜୀବୀ କର ପ୍ରଭୁ, ଶାନ୍ତି ଦିଅ, କଲ୍ୟାଣ ଦିଅ, ସୁଖୀ କର । ଏ ଦିନଟିରେ

ତୁମକୁ ପାଖରେ ପାଇଥିଲେ ମୁଁ ଖୁସି ହୋଇଥାନ୍ତି । ତମେ ଯେଉଁଠି ଥାଅ ପଛେ ସୁରକ୍ଷ ହୁଅ । ଏ ଏକତ୍ୱକୁ ସ୍ୱୀକାର କରିବାରେ ତମର କୁଣ୍ଠା ନ ଆସୁ ।

କାଲି ସମ୍ମିଳନୀ କାମ ସାରି ଶୁଭରେ ଫେରିଯାଇଥିବ । ତମର ସଭାକାର୍ଯ୍ୟ ଚାଲିଥିଲା । ମୁଁ ଚାଲିଆସିଲି । କାଲି ଲଞ୍ଚକୁ ନିମନ୍ତ୍ରଣ ଥିଲା । ଏ ସବୁ ଭିତରକୁ ମୁଁ ଯାଏନି । ସତକଥା କହିବାକୁ ଗଲେ ଦଳେ ଅଭଦ୍ର, ନୀଚ ମନୋଭାବର ଲୋକଙ୍କ ଉଚ୍ଛ୍ୱାସ । ଅଶ୍ଳୀଳ ଆଲୋଚନା ଛଡ଼ା ଏଠି ଆଉ କିଛି ଅନୁଭୂତିରେ ଆସେନି । ତମ ଆଖି ସେଠି ହୁଏତ ଥରକ ପାଇଁ ମତେ ନିରୀକ୍ଷଣ କରିଥିବ, ମତେ ଖୋଜିଥିବ । ବିରାଟ ସେ କୋଠାରେ ବସି ସେତେବେଳେ ମୁଁ ଭାବୁଥିଲି ତମ କଥା । ତମ ଚଲାପଥ ପୁଷ୍ପିତ ହେଉ, ଚନ୍ଦନାସ୍ମୃତ ହେଉ– ଏତିକି କାମନା କରୁଥିଲି ।

ଉଦାସ ମନେହେଉଛି କି ମତେ ? ହଁ ସୁନା, ଏଇ ଦିନଟିରେ ମୁଁ ଉଦାସ ହୋଇଥାଏ । ସମସ୍ତ ମନ ହୃଦୟର ବ୍ୟାକୁଳତା ନେଇ ତୁମକୁ ମୁଁ ନିବେଦନ କରେ । ଆତ୍ମାର ବିଳାପ ଶୁଣେ ତମରି ଉଦ୍ଦେଶ୍ୟରେ । ମତେ ନିଅ; ଏ କଦର୍ଯ୍ୟତା, ଏ ଦ୍ୱନ୍ଦ୍ୱ, ଏ ଇତରତା, ଏ ଅଶ୍ଳୀଳତା ଭିତରୁ ମତେ ନେଇଯାଅ । ମୁଁ ପାରୁନି । ସବୁ ଅଭିମାନ ତମରି ଉଦ୍ଦେଶ୍ୟରେ ମୁଁ ବାଢ଼ିଦିଏ । ଅପରାଧ ତମର କରିଛି ? କାହିଁକି ଏ ଯନ୍ତ୍ରଣା ଦେଉଛ ? ମୁଁ ଠିକ୍ କ'ଣ ଚାହୁଁଛି ଜାଣିପାରୁନି । ମୋ ପାଇଁ ତମର ସ୍ନେହ ପ୍ରୀତି ଦିଅ– ଏକଥା ନୁହେଁ । କାହିଁକି ଭାବୁଛି, ତମେ ସହସ୍ରହସ୍ତ, ସହସ୍ର ମନ ହୋଇ ସାହିତ୍ୟ ସୃଷ୍ଟି କରନ୍ତନି ? ଶିକ୍ଷା, ସାହିତ୍ୟ, ଦର୍ଶନ । ଯାହା ସେଦିନ କହୁଥିଲ– Tending towards universalism । ମତେ ତମେ ଘଣ୍ଟା– ଘଣ୍ଟାଧରି କହନ୍ତ ସେସବୁ କଥା– ମୁଁ ଶୁଣନ୍ତି, ଶିଖନ୍ତି ।

ମୁଁ ଭାବିଲେ ସ୍ତବ୍ଧ ହୁଏ ସୁନା ! ତୁମେ କେତେ ଜାଣ କେତେ ବୁଝିଛ । ନା, ଲଜ୍ଜା ପାଇବାର କିଛି ନାହିଁ । ମୁଁ ଅନ୍ଧ ହୋଇନି । କିନ୍ତୁ ଏଇ ଶ୍ରଦ୍ଧା ନଥିଲେ ତୁମକୁ ବୁଝନ୍ତି କିମିତି କହିଲ ?

କଅଣ ହେଲା ତମ ଇଂରାଜୀ ବହିର କଥା ? ଆଉ ସେ ଗଳ୍ପ ଓ ପ୍ରବନ୍ଧ ସଂକଳନ ? କେହି ପ୍ରକାଶକ ନେବାକୁ କହିଥିଲେ ? ବୁଝିଥିଲ ? ନାହିଁ ତ, ସେ ଗଳ୍ପ ସଂକଳନ ପାଇଁ ମୁଁ ଟଙ୍କା ଦେବି । ଏତେ ଥର ଏ ସହରକୁ ଆସୁଛ, ବୁଝିଲେ ହୁଅନ୍ତାନି ?

ମୁଁ ପାଣ୍ଡୁଲିପି ପ୍ରସ୍ତୁତ କରିଦେଉଛି– 'ମହାପୁରୁଷ ସ୍ମରଣେ' । ତମେ ସେ ଚାକିରିକୁ ଯିବା ପରେ ସବୁ ଛାଡ଼ିଦେଲଣି । ଖାଲି କାମ, ସ୍କୁଲ୍, ପରିଦର୍ଶନ ଟୁର୍– କିନ୍ତୁ ମୋର ଅନେକ ଅଂଶ ଯେ ତମର ସେ ପ୍ରଥମ ପରିଚୟରେ ରହିଗଲା– ତମେ ସ୍ରଷ୍ଟା, ସାହିତ୍ୟିକ, ଗାଳ୍ପିକ, ବାଗ୍ମୀ, କଳାକାର...

ତମେ ତ ମତେ ପାଠ ପଢ଼େଇଚ । ସାହିତ୍ୟ କଅଣ ତମଠାରୁ ଶିଖିଛି । ତମର ଅଧ୍ୟାପନା ସମୟ ଭିତରେ ହଜାର ହଜାର ଛାତ୍ରଛାତ୍ରୀଙ୍କୁ ପଢ଼ାଇଥିବ । କିଏ କଅଣ ପାଇଥିବ ମୁଁ ଜାଣେନା, କିନ୍ତୁ ସାହିତ୍ୟର ଅନନ୍ତଗର୍ଭ, ଅସୀମ ଆନନ୍ଦର ଉଲ୍ଲାସ ମତେ ଯଦି କିଏ ଦେଇଥାଏ, ତେବେ ସେ ତମେ । ଏ ଅତିରଞ୍ଜନ ନୁହେଁ ବା ଖୁସି କରିବା ପାଇଁ କହୁନି । ମୋର ସେ ଶିକ୍ଷାର ପ୍ରତିଦାନ ତ ଦେଇପାରିବିନି– ସେତିକି ହେଉ ମୋର ନଗଣ୍ୟ ଶ୍ରଦ୍ଧାଞ୍ଜଳି । ତମର ଲେଖା ସବୁ ପଢ଼ିଥିଲି । କିନ୍ତୁ ସମୀକ୍ଷା କରିବା ପାଇଁ ଆଜି

ଯେତେବେଳେ ବିଶ୍ଳେଷଣାତ୍ମକ ଦୃଷ୍ଟି ନେଇ ପଢୁଛି ସେଥିରୁ କେତେ ଅପରୂପର ସନ୍ଧାନ ଯେ ପାଇଛି ତା'ର ଠିକ୍ ନାହିଁ । କିନ୍ତୁ ଶିଳ୍ପୀ, ଯାହାର ଅନୁଭବ କରିବାର ଶକ୍ତି ବା କ୍ଷମତା ନଥାଏ, ତାହାହିଁ ମୋ ଅବସ୍ଥା ।

ଥରେ ଥରେ ତୁମେ ଅଶାନ୍ତ ବିଷଣ୍ଣ ହୋଇପଡ଼ । କାହିଁକି ? ଏତିକି ପଚାରୁଛି, ଜୀବନ ତୁମକୁ କଅଣ କିଛି ଐଶ୍ୱର୍ଯ୍ୟ ଦେଇନି ? ସଂସାର ତୁମକୁ କଅଣ କୌଣସି ବିଭବରେ ପରିପୂର୍ଣ୍ଣ କରିନି ? ଜୀବନରୁ ତମେ ଯେତିକି ଆଘାତ ପାଇଛ, ସ୍ନେହଶ୍ରଦ୍ଧା, ପ୍ରୀତି ତା' ତୁଳନାରେ କମ୍ ପାଇନ । ତମର ତ ବଡ଼ ସମ୍ପଦ ତମର ଲେଖନୀ ଅଛି । ଆହୁରି ଅନେକ କାମ ତମ ପାଇଁ ରହିଛି । ତମେ ଲେଖାପଢ଼ାରେ ହେଳା କରନି । ସବୁ ସତ୍ତ୍ୱେ ତୁମକୁ ଆହୁରି ବଡ଼ ହେବାକୁ ପଡ଼ିବ ।

ବିବ୍ରତ ଅନ୍ୟମନସ୍କ ହୋଇ ସେ କାମ ସବୁରେ ହେଳା କରନାହିଁ । 'ଜୀବନରଙ୍ଗ' ସବୁ ରଖିଛ ନା ଦେବି ? ଏସବୁ କାମରେ ତମେ ଯେତେ ମତେ ଲଗେଇପାରିବ, ମୁଁ ସେତିକି ଖୁସି ହେବି । ଆମର ଏକତ୍ୱ ଠିକ୍ ଅଛି । ସେଥିରେ ବିଶେଷ ଅନ୍ତରାୟ ସୃଷ୍ଟି କରିବା ପରି ନର ଓ ନାରୀ କେହି କଅଣ ଜନ୍ମ ହୋଇଛି ? ପ୍ରଣାମ ଜଣାଇ ରହୁଛି ।

—ବନାନୀ

ଶ୍ରୀକାନ୍ତ ଚେତନାକୁ ଆସିଲେ— କହିଲେ, ଅବନ୍ତୀ... ଆଚ୍ଛା, ଏ ସମୁଦାୟ ଚିଠିରେ କେଉଁଠି ଏମିତି ଅଛି 'ପ୍ରେମ' ବା 'ଭଲପାଏ ତୁମକୁ' କିଛି ଅଛି ?

— ନା,

— ତେବେ ଏହାକୁ ପ୍ରଣୟଲିପି କହିବ କି ?

— ତାହାଠାରୁ ବେଶୀ— ଅନ୍ତର୍ଭେଦୀ ।

— ଏଗୁଡ଼ାକୁ ମୁଁ ଛାପିବାକୁ ଇଚ୍ଛା କରେ ।

ଶ୍ରୀକାନ୍ତ ହସିଲେ— କିଏ ପଢ଼ିବ ? ଏମିତି ସମସ୍ତଙ୍କ ଜୀବନରେ ଘଟିଥାଏ ।

ଅବନ୍ତୀ ନୀରବ ରହି କହିଲେ— ବିଶ୍ୱ ଇତିହାସରେ ଲିପିମାଳା ପ୍ରକାଶିତ ରହିଛି । ମୁଁ ଚେଷ୍ଟା କରିବି ।

— ପାରିବ ନାହିଁ ।

— କିମିତି ଜାଣିଲେ ?

— ଏଇ ଦେଖୁନ, ଆଜି ବନାନୀ କାହିଁ ?

କହିଥିଲା— ସେ 'ଏକତ୍ୱ'ରେ ବିଶେଷ ବିଘ୍ନ ସୃଷ୍ଟି କରିବା ପାଇଁ ନର ବା ନାରୀ କେହି କଅଣ ଜନ୍ମ ହୋଇଛି ? କିନ୍ତୁ ବନାନୀ ଉଡ଼ିଗଲା... ଚଢ଼େଇଟି ଭଳି ଉଡ଼ିଗଲା; ଆଉ ତମେ ଆସିଛ ମୋ ପାଖକୁ ଗୋଟାଏ କିଛି ଆକର୍ଷଣରେ । ସମୟ ଆସିଲେ ତମେ ବି ଉଡ଼ିଯିବ ।

କେବଳ ବନାନୀ ନୁହଁ, ଏମିତି ସେମାନେ ଚାଲିଯାଉଛନ୍ତି... ଅଥଚ ମୁଁ କହେ ଏ ପବିତ୍ର ଲିପିଗୁଡ଼ିକ ମୋ ଜୀବନକୁ ପୁଷ୍ପିତ କରି ରଖିଛନ୍ତି । ଛାୟାଟା ଚାଲିଯାଇଛି । ବୃକ୍ଷ, କୋଟରଗତ ବୃକ୍ଷ ଛିଡ଼ାହୋଇଛି... ଅବନ୍ତୀ ବିଦାୟ ନେଲା । ଅଶରୀରୀ ସେ, ଛାୟାମୂର୍ତ୍ତି ଅଳୀକ—

■■■

# ଆନନ୍ଦବଜାର

ବଡ଼ଦେଉଳର ଆନନ୍ଦବଜାର ପ୍ରବେଶପଥ ଉପରେ ଛିଡ଼ା ହୋଇ ନିଶ୍ୱାସ ମାରିଲି । ଶ୍ରୀମନ୍ଦିରରେ ଦେବପୂଜା କରିବାକୁ ମୁଁ ପ୍ରାୟ ଆସେ ନାହିଁ । କିମିତି କେତେବେଳେ ଚାଲିଆସେ ବନ୍ଧୁ ସ୍ୱଜନଙ୍କର ଆମନ୍ତ୍ରଣ ତାଡ଼ନାରେ ।

ଜନଗହଳି ଥାଏ ବଡ଼ଦାଣ୍ଡ ସନ୍ଧ୍ୟାବେଳେ । ମଝିରେ ପିଚୁରାସ୍ତା ଥିଲେ ବି ଦୁଇ ପାଖେ ହୋଟେଲ, ବିପଣି, ଲଟେରୀବାଲାମାନଙ୍କର ଚିତ୍କାର ଓ ବ୍ୟବସାୟ–ଜଞ୍ଜାଳରୁ ଜନ୍ମୁଥିବା କୋଳାହଳ ତଥା ଧୂଳିପଟଳକୁ ଅତିକ୍ରମ କରି ବୃଷଭ ଓ ଶ୍ୱାନମାନଙ୍କର ସାମୟିକ ଅସତ୍ ଭାବରୁ ଉପଜାତ ଲଣ୍ଡଭଣ୍ଡ ଅବସ୍ଥାରେ କୌଣସି ପ୍ରକାରେ କାହାର ମନର ପରିଚ୍ଛନ୍ନତା ରହିପାରେ କି ? ରହିପାରେ ନାହିଁ ବୋଲି ମୁଁ ଜଗନ୍ନାଥଦର୍ଶନରେ ମନ ବଳାଏ ନାହିଁ ।

ବରଂ ଯେଉଁଠି ଥାଏ, ମନକୁ ଊର୍ଦ୍ଧ୍ୱପଥରେ ନେଇଯାଏ । ସନ୍ଧ୍ୟାକାଳୀନ ଜନସମାଗମରୁ ଦୂରରେ ଥିବା ଏକ ନିର୍ଜନ ସାଗର ବେଳାଭୂମି ଉପରେ ଉପବେଶନ କରି ମୁଁ ପରମପଦ ପ୍ରାର୍ଥନା କରିଥାଏ ।

ଏ ଯେଉଁ ସମୟ କଥା କହୁଛି, ତାହା ଥିଲା ପହିଲି ଭୋଗର ସକାଳ । ଶରତ୍ ମାସରେ ଶ୍ରୀଜଗନ୍ନାଥ ଏହି ଭୋଗ ପ୍ରତି ଆସକ୍ତ ଥିବାରୁ ପ୍ରଥମ ଭୋଗ ଉଠିଯାଏ ସକାଳୁ ସକାଳୁ । ଆନନ୍ଦବଜାର ଆନନ୍ଦମୟ ହୋଇଯାଏ ।

ଯେଉଁମାନେ ନିତ୍ୟ ମନ୍ଦିର ବେଢ଼ା ବୁଲନ୍ତି, ଏକ ପ୍ରକାର ଅଭ୍ୟାସ ସେମାନଙ୍କର । ତାଙ୍କ ଆଖିରେ ଗୋଟିଏ ଦୃଶ୍ୟ ଧରାପଡ଼ିଯାଏ ବି ଅଧରା ରହିଯାଏ । କେବେ ଅତୀତରେ ଆସିଥିଲି ଦେବତା ଦର୍ଶନ ପାଇଁ, ମନେ ହେଉନାହିଁ, ଏଥର କିନ୍ତୁ ମୁଁ ସେ ଦୃଶ୍ୟ ଦେଖି ବିସ୍ମିତ ହେଲି ।

ମନ୍ଦିର ନିର୍ମାତା ଗଜପତି ଯେଉଁ ତାମ୍ରବର୍ଣ୍ଣ ପାଷାଣଦ୍ୱାରା ମନ୍ଦିର ବେଢ଼ାକୁ ବେଢ଼ାଇଥିଲେ ଏବଂ ଯାହା ବହୁକାଳ ହେଲା ଅନାହତ ଥିଲା, କ୍ରମେ ଦେଖିଲି ସେଗୁଡ଼ିକ ସେହି ମୌଳିକ ବର୍ଣ୍ଣରେ ଆଉ ଶୋଭା ପାଉନାହିଁ ।

ତାମ୍ରବର୍ଣ୍ଣ ତଥା ପାଷାଣର ସ୍ୱାଭାବିକ ରୂପ ପରିବର୍ତ୍ତେ ସେଠାରେ ଦେଖିଲି ବହୁ ଧଳା ମାର୍ବଲ ପଥର, ଯାହା ଉପରେ ସ୍ୱର୍ଗବାସୀ ଓ ବାସିନୀଙ୍କର ଏ ଧରିତ୍ରୀ ଉପରେ ଘଟିଥିବା ସେମାନଙ୍କର ଆଦି ଆବିର୍ଭାବ ଓ ଶେଷ ପ୍ରୟାଣର ତାରିଖ, ସନ... କାହାର ପୁତ୍ର, କାହାର ପିତା, କାହାର କାମିନୀ, କାହାର ସନ୍ତାନରେ ଅଖ୍ୟାତ ପ୍ରାଣୀମାନଙ୍କର ଉତ୍କୀର୍ଣ୍ଣ ସ୍ମୃତି ।

ସ୍ମୃତି... ସ୍ମୃତି... ସ୍ମୃତି...

ପଥର ଉପରେ ଖୋଦିତ ଏ ଶୈଳୀର ବହୁ ଭଙ୍ଗୀ ଦୃଷ୍ଟିଗୋଚର ହେଲା । ସେମାନଙ୍କର ବୟସ କେତେ ଜାଣିବା ସମ୍ଭବ ନୁହେଁ; କିନ୍ତୁ ଏକଥା ସତ୍ୟ, ସେମାନେ ଅଦେହୀ; ଅଥଚ ସ୍ନେହ ମମତା କବଳରୁ ପୃଥିବୀରେ ରହିଯାଇଥିବା ସେମାନଙ୍କର ପ୍ରିୟଜନଙ୍କର ମୁକ୍ତି ନାହିଁ ।

ମୋର ମନେହେଲା ମନ୍ଦିରର ଉଚ୍ଚତାରୁ ଶହ ଶହ ମନ୍ଦିରକୁ ଏକ ଉପରେ ଏକ ଥୋଇ ସର୍ବୋଚ୍ଚ ଲମ୍ବି ଯାଇଛି ସ୍ନେହ– ବନ୍ଧନର ରଜ୍ଜମାଳ, ଯାହା ଏ ପାଷାଣ– ଲେଖକ ସହିତ ସ୍ୱର୍ଗପ୍ରୟାଣ ପ୍ରାଣୀଙ୍କୁ ଏକତ୍ର ଓ ଏକାନ୍ତ ବାନ୍ଧିରଖିଛି ।

ହାୟରେ ମଣିଷ ! ସ୍ମୃତିର କେତେ ଆକର୍ଷଣ ସତେ ! ସେମାନେ ପାପୀ ଥିଲେ କି ପବିତ୍ର ଥିଲେ, ସ୍ପର୍ଦ୍ଧିତ ଥିଲେ କି ନମ୍ର ଥିଲେ, ଥିଲେ ହିଂସ୍ର କି ଅହିଂସ, ଜାଣିବାର ଅବକାଶ ନାହିଁ । ହେଲେ ଏତିକି ଜାଣିହେଲା, ପ୍ରିୟଜନମାନେ ଇଚ୍ଛାକଲେ ଧର୍ମପ୍ରାଣ କୈବଲ୍ୟ ମୁମୁକ୍ଷୁ ଦେବଦର୍ଶନପ୍ରୟାସୀ ଲକ୍ଷ ଲକ୍ଷ ଲୋକଙ୍କର ରଜରେଣୁ ଏହି ଦେଉଳ ବେଢ଼ାରେ ପଥର ରକ୍ଷିତ ପ୍ରେତମାନଙ୍କ ନାମ ବର୍ଣ୍ଣମାଳାରେ ପଡୁ ଓ ଯଦି ସେମାନେ ନରକରେ ପଡ଼ିଥାନ୍ତି, ଉଦ୍ଧାର ପାଆନ୍ତୁ । ସ୍ୱର୍ଗରେ ଥିଲେ ଆଉ ଅବତରଣ ନ କରନ୍ତୁ ।

ସେତେବେଳେ ମୁକ୍ତିମଣ୍ଡପ ଚକଡ଼ାରୁ ବେଦଧ୍ୱନି ଲହରୀ ଆସୁଥିଲା । ହାତ ହଲାଇ, ମୁଦ୍ରା ଦେଖାଇ ବୃଦ୍ଧ ଯୁବକ ବେଦବିତ୍‌ମାନେ ପାରାୟଣ କରୁଥିଲେ । କଲିକତା ସହରର ମୋନୋପଲି ସୂତ୍ରରେ ସବୁ ଯାତ୍ରୀଙ୍କର ଯେ ବଡ଼ ଗୁମାସ୍ତା, ତାଙ୍କୁ ଚାହିଁ ଦେଖିଲି, ସେ ନିର୍ବିକଳ୍ପ ସମାଧିରେ ଆସୀନ । ବଙ୍ଗୀୟ ଓ ବଙ୍ଗିୟାମାନେ ତାଙ୍କ ପାଦ ପାଖରେ ନତ ହୋଇ ଯାତ୍ରୀ ଦକ୍ଷିଣା ଥୋଇବାରେ ପ୍ରତିଯୋଗିତା କରୁଛନ୍ତି ।

ଅନାୟାସ ଓ ଇମିତି ସ୍ୱଚ୍ଛଳ ଭାବରେ ଯେ ଅର୍ଥ ଅର୍ଜନ କରାଯାଏ, ତାହା ଏହି ଜଗନ୍ନାଥ ଦେଉଳରେ ଦେଖାଯାଏ । ଏକଥା ଯେ ମତେ ଇଙ୍ଗିତରେ ଶୁଣାଇଦେଲେ, ସେ ନିଜେ ଜଣେ ସେବକ ପିଲା । ରକ୍ତରେ ତାଙ୍କର ମନ୍ଦିର ଭାବାବେଶର ଅଣୁ ପରମାଣୁ ରହିଛି ଏବଂ ମୋର ପୂର୍ବତନ ଛାତ୍ର ଥିବାରୁ ସଂଭ୍ରମ ସହକାରେ ମୋ ସହିତ ମିଳିତ ହୋଇ ଆଜି ଏ ପ୍ରଭାତଟିକୁ ଆନନ୍ଦମୟ କରିବା ଇଚ୍ଛାରେ ଆନନ୍ଦବଜାରକୁ ଯିବା ପାଇଁ ସେ ଆମନ୍ତ୍ରଣ କଲେ ।

ସେ ପୁଣି ଶିକ୍ଷକ । ଉପର ବରଡ଼ା ପତ୍ର ଶୁଖି ଶୁଖି ଆସି ଖସି ପଡ଼ିବା ଅବସ୍ଥାରେ ତଳକୁ ଚାହିଁ ଦିନ ଗଣୁଥିବାବେଳେ ତଳ ସବୁଜ ପତ୍ରର ଏତିକି ସଂଭ୍ରମ ଓ ଭକ୍ତି ସେତେବେଳେ ମତେ ଅନବଦ୍ୟ ଓ ପାରମାର୍ଥିକ ବୋଧହେଲା ।

ମୁଁ ନୀରବରେ ସମ୍ମତି ଦେଲି ।

ସୁଦୂର ନାଗାରାଜ୍ୟରୁ ଆସିଥିବା ଦୁଇଟି ଉଦ୍‌ଭିନ୍ନଯୌବନା ନାଗା ତରୁଣୀଙ୍କ ଆଡ଼େ ମୁଁ ଲକ୍ଷ୍ୟ କଲି । ଗୋଟିଏ ସେଥିରୁ ନୋଟ୍ କରୁଥାଏ । ପାଖରେ ପଣ୍ଡା ମହାଶୟ । କ୍ଲିପ୍ ଲଗା ଫାଇଲ୍ ପଟା ଉପରେ ସେ ଲେଖୁ ଥାଏ, ଯାହା ଦେଖୁଛି ମନ୍ଦିର ଗାତ୍ରରେ ଅବା ଶୁଣୁଛି ସ୍ତୋତ୍ର, ଭଜନ, ସ୍ତବର ମର୍ମାର୍ଥ । ପଣ୍ଡାମହାଶୟ ଭୁଲ୍ ନିର୍ଭୁଲ୍ ସବୁ ପ୍ରକାର ତଥ୍ୟ ପରିବେଷଣ କରି ଚାଲିଥାନ୍ତି ସେମାନଙ୍କ ଗହଣରେ ।

ବିଚିତ୍ର ଏ ମନ୍ଦିରର ବେଢ଼ା ଓ ଏହା ଭିତରେ ନରନାରୀ ସ୍ରୋତର ଉଦ୍‌ବେଳ ଭାବ ! ଯଥାର୍ଥ ଆଖି ଥିଲେ, କାନ ଥିଲେ, ଅତି ନିଗୂଢ଼ ରହସ୍ୟରେ ଦୋଳାୟିତ ମନ୍ଦିରର ଜୀବନୀ ଶକ୍ତି ଦେଖାଇବ ଏମିତି କିଛି ଦୃଶ୍ୟ, ଶୁଣାଇବ ଏମିତି କିଛି ସଂଗୀତ ଯାହାର ପଟାନ୍ତର ବିଶ୍ୱର କେଉଁ ଚିତ୍ରଶାଳା ଓ ସିଂଫନିରେ ନଥିବ ।

ବୁଲିବୁଲି ଆମେ ଆସିଲୁ ଆନନ୍ଦବଜାରର ପ୍ରବେଶ ପଥ ଉପରକୁ । ଭଗବାନ ଆହାର କରିସାରିଛନ୍ତି, ତେଣୁ ଜନତା ପାଇଁ ଆନନ୍ଦବଜାର ଆନନ୍ଦରେ ନୃତ୍ୟ କରୁଛି ।

ଦୁହିଁଙ୍କର ପାଦ ହଠାତ୍ ଅଟକିଗଲା । ଆଗରେ ଅଶ୍ରୁମତୀ ତରୁଣୀ । ଦୁଇ ଆଖିରୁ ଧାରଧାର ଲୁହ ବୋହିଯାଉଛି । ପଣତ କାନିକୁ ମୁହଁ ଉପରେ ଅଧା ଚାପି ରଖି ସେ କଇଁ କଇଁ କାନ୍ଦୁଛି । ଆମରି ଆଡ଼େ ତା'ର ଶରୀର ଓ ମନର ଦୋଳନ । ଆମକୁ ସେ କଅଣ କହୁଛି, କାହିଁକି ବା କାନ୍ଦୁଛି, କିଛି ଜାଣିପାରିଲୁ ନାହିଁ । ଅଚଳ ରହିଗଲୁ । ଦୁଇପଟେ ଦୁଇ ପ୍ରାଚୀର ଥିବାରୁ ଯିବା ମଧ୍ୟ ସମ୍ଭବ ହେଲାନାହିଁ ।

ଜନତାର ସ୍ରୋତ ହଠାତ୍ ବେଗରହିତ । ଆମେ ବି ନିଶାଣ ଭାବରେ ପଥର ଉପରେ ଶିଳୀଭୂତ ।

କେଉଁଠି ଥିଲେ ଜଣେ ପୁଲିସ୍ ଆସି ପହଞ୍ଚିଗଲେ । କେଉଁଠି ଥିଲେ ଯୁବକ, ବୃଦ୍ଧ, ପ୍ରୌଢ଼ ସମବେଦନା ପ୍ରକାଶକାରୀ, ବହୁ ଲୋକ ଝିଅଟିର ରକ୍ଷକ ହୋଇଗଲେ ।

ଆମେ ରହିଗଲୁ ସହସ୍ର ନୟନ ତଳେ– ନାରୀ ପ୍ରତି ଅସଦାଚରଣ କରିଥିବା ଅପରାଧୀଯୁଗଳ ।

ଆମେ କାହାକୁ କଅଣ କହିବୁ ଅବା ସେଭଳି ଏକ ପରିସ୍ଥିତିରେ ଆମର କଅଣ କର୍ତ୍ତବ୍ୟ, କିଛି ବୁଝିପାରିଲୁ ନାହିଁ । ଝିଅଟି ଆମକୁ ଛାଡ଼ି ନ ଦେବାର ଭଂଗୀ ବି ଦେଖାଇଲା ।

ସିପାହି କହିଲା– ଚାଲନ୍ତୁ ଦେଉଳ ଫାଣ୍ଡିକୁ । ନିଶ୍ଚୟ କିଛି କହିଛନ୍ତି ବା କରିଛନ୍ତି, ତାହା ନହେଲେ ଏ ଝିଅ ଏମିତି କାନ୍ଦନ୍ତା କାହିଁକି ?

ଜଣେ ଯାତ୍ରୀ ଗୁମାସ୍ତା ଗର୍ଜିଉଠିଲେ– କହ ମା', ଏ ଟୋକା ନା ଏ ବୟସ୍କ ଲୋକ– କିଏ ଯା ଭିତରୁ– ନା ଦୁଇଜଣଯାକ ?

ଆଉ ଜଣେ ଚିତା ତିଳକଧାରୀ ଧର୍ମାଧିକାରୀ ବାବାଜି କହିଲେ– ଓହୋ, କି ପାପ, ଦିନବେଲୁଟାରେ ଏଠାରେ ଛିଃ... ଛିଃ ...

ମୁଁ କେବଳ ଜଗନ୍ନାଥଙ୍କୁ ଡାକୁଥାଏ... କହୁଥିଲି, ପ୍ରଭୁ, ମୁଁ ତୁମ ପାଖକୁ ଆସେନି, ତାହା ତୁମେ ଜାଣ । ଦୂରରେ ରହି ତୁମକୁ ଡାକିଛି, ତୁମେ ବି ସେ ଡାକ ଶୁଣିଛ... ଏମିତି ଆସିଯିବା ବ୍ୟତିକ୍ରମରୁ ତୁମେ ବୋଧହୁଏ ରାଗିଗଲ ଓ ଏ ଘଟଣା ଘଟାଇଲ । କ୍ଷମାକର ପ୍ରଭୁ– ଯଥେଷ୍ଟ ହେଲା ।

ଝିଅଟା ଯଦି ଏତେଗୁଡ଼ାଏ ଲୁହ ନ ଢାଳି ଟିକିଏ କଥା କହି ଆମକୁ ଅଭିଯୋଗ ମୁକ୍ତ କରନ୍ତା, ତାହାହେଲେ ଏ ଜନତା, ଯିଏ ହଠାତ୍ ନାରୀ ସମ୍ଭ୍ରମକୁ ରକ୍ଷା କରିବା ଭଳି ମଧ୍ୟଯୁଗୀୟ ଘୋଡ଼ାଚଢ଼ା ନାଇଟ୍ ଅଭିନୟ କରିବାକୁ ଆଗେଇ ଆସୁଛନ୍ତି, ସେ ବୁଝନ୍ତେ ଆମେ କେତେ ନିର୍ଦ୍ଦୋଷ ।

ଆମ ଚଲାପଥ ଉପରେ ଜଣେ ଗୌରବର୍ଣ୍ଣା ସୁନ୍ଦରୀ ସାବଲୀଳା ଯୁବତୀ ଯଦି କାନ୍ଦି ଉଠେ ଓ ଆମକୁ ଲକ୍ଷ୍ୟ କରି ସେ କ୍ରନ୍ଦନଧାରାକୁ ଆମ ପାଇଁ ନୈବେଦ୍ୟ କରେ, ତେବେ ବଚନହୀନା ଏ ନାରୀ ବିଷୟରେ ଯିଏ ଯାହା ଅନୁମାନ କରିବ ସବୁ ତ ସତ୍ୟ ହୋଇଯିବ !

– 'ସତ୍ୟବ୍ରତ ଏ କି କଥା ?' ମୁଁ ପଚାରିଲି ।

– 'ସାର୍ ଟିକିଏ ଅପେକ୍ଷା କରନ୍ତୁ, ତା'ର କୋହ ଥମିଆସୁ । ଜଣେ ଶୁଭାକାଙ୍କ୍ଷୀକୁ ଦେଖି ତା'ର ହୃଦୟବନ୍ଧ କଟିଯାଇଛି– ମୁଁ ଯାହା ଦେଖୁଛି । ସତ୍ୟବ୍ରତ ଏତକ କହି ହସୁଥିଲା ।

– 'ତୁମେ ତାକୁ ଚିହ୍ନ ନା କଅଣ ?' ମୁଁ ଅନ୍ଧାରରେ ଆଲୋକ ଦେଖିଲି । ନିଃଶ୍ୱାସ ସ୍ୱାଭାବିକ ହେଲା । ମୁଁ କହିଲି– ଭଗବାନ, ତାହାହିଁ ହେଉ, ନହେଲେ ଦେଉଳ ଫାଣ୍ଡିକୁ ଯିବା ଭାଗ୍ୟରେ ଅଛି ।

ସତ୍ୟବ୍ରତ କଠୋର ହେଲା– 'ସୁଷମା, ଏସବୁ କଅଣ ହେଉଚି ? ଚାରିପାଖେ ମଣିଷ ଭିଡ଼ ଦେଖୁଛୁ ତ ?'

– 'ସତ୍ୟବାବୁ, ଆପଣଙ୍କୁ ଖୋଜି ଖୋଜି ଆସୁଛି । ବାପା ମୋର ରାତି ପାହାନ୍ତାରୁ ଡାକ୍ତରଖାନାରେ ବେହୋସ ପଡ଼ିଛନ୍ତି । ଷ୍ଟ୍ରୋକ୍ ହେଲା । ରକ୍ତଚାପ । ଅଙ୍ଗ ଅଚଳ । ହାତରେ ଟଙ୍କା ନାହିଁ,ପାଖରେ କେହି ସାହା ଭରସା ନାହିଁ । ଆମ ଘର କଥା ସବୁ ଜାଣନ୍ତି ଆପଣ । ଏକା ସାହିରେ ଘର ବୋଲି– ତା' ଛଡ଼ା ବହୁତ ଆପଦ ବିପଦରେ ମତେ ଓ ବାପାଙ୍କୁ ସାହାଯ୍ୟ କରିଥିବାରୁ ମୁଁ ଦଉଡ଼ି ଆସିଛି ଆପଣଙ୍କ ପାଖକୁ । ଚାଲନ୍ତୁ ଡାକ୍ତରଖାନା । ବାପା ଆଉ ମୋର ବଞ୍ଚିବେ ନାହିଁ ।'

ଝିଅର ଲୁହ ଝରଣା, ଆହୁରି ବେଗ ଧରିଲା ।

ମୁଁ ପଥିକ ମାତ୍ରରେ କହିପକାଇଲି– 'ମୁଁ ବି ଯିବି, ହଉ... ହଉ...' ଏହା ପ୍ରବୋଧନା କି ଆଉ କଅଣ ମୁଁ ବୁଝିପାରିଲି ନାହିଁ ।

ପୁଲିସ୍‌ର ମୁହଁ ଶୁଖିଗଲା । କହିଲା– ଛେଃ, ଭାବିଥିଲି କିଛି ଗୋଟାଏ ରୋଜଗାର ହେବ ସକାଳୁ ସକାଳୁ । ଆରେ ଏଗୁଡ଼ାକ ଚିହ୍ନାଚିହ୍ନି ହୋ...

'ନାଇଁମ କିଛି ନୁହଁ, ଏ ଝିଅଟା ତାଙ୍କର ସବୁ ଚିହ୍ନା । ତା' ବାପ କେଉଁଠି ଡାକ୍ତରଖାନାରେ । ଖୋଜୁଥିଲା ଏଇ ଟୋକା ବାବୁଙ୍କୁ । ସାହି ବାଲାତ– ଯା କଅଣ ହଉନି ?'

ଲୋକେ ଭିଡ଼ ଭାଙ୍ଗି ଚାଲିଲେ ଯେଝା ବାଟରେ । ଗୋଟାଏ ଚକ୍ଷୁରୋଚକ, ମନପୂରକ ଶୃଙ୍ଗାରତିଳକ ସୁଗନ୍ଧ ଯେ କ୍ରମେ ସଞ୍ଚରିଯାଇଥିଲା, ତାହା ଧୀରେ ପ୍ରଶମିତ ହୋଇଆସିଲା ।

ପହିଲି ଭୋଗର ସୁବାସ ଆଘ୍ରାଣ ମାତ୍ର ରହିଗଲା । ଚାଲିଲୁ ଡାକ୍ତରଖାନା । ଆଗେ ଜନସେବା, ପରେ ମହାପ୍ରସାଦ– ସେତିକି କହିଲି ସତ୍ୟବ୍ରତକୁ ।

ତା'ର ଆଖି ସ୍ୱଚ୍ଛ ହୋଇଉଠିଲା, ଆଉ ସେ ଝିଅଟି ତା'ର ପରିଚିତ ବନ୍ଧୁ ଯୁବକଟିକୁ ଖୋଜି ଆସି ତା'ର ମହା ଦୁର୍ବିପାକରେ ଦେଖିଲା ମତେ, ଯିଏ ଦିନ ଗଣୁଛି ଏମିତି ଶ୍ୱେତ ଶୁଭ୍ର ପ୍ରସ୍ତର ଉପରେ ଶ୍ରୀ ଜଗନ୍ନାଥଙ୍କ ଦୃଷ୍ଟି ତଳେ ତା'ର ନାମକୁ ଉତ୍କୀର୍ଣ୍ଣ କରିବା ଆଶାରେ ।

କିନ୍ତୁ କେହି କରିବେ ନାହିଁ, ମୁଁ ଜାଣେ । ଲକ୍ଷ ଚରଣରେଣୁ ପାଇ ଜୀବ ମୁକ୍ତି ପାଇବ, ଏ ସତ୍ୟ ଆଜିର କୁଳ-ସନ୍ତାନ ବିଶ୍ୱାସ କରେନାହିଁ । ନକରିବା ଭଲ ।

ସେହି ନାସ୍ତି... ନାସ୍ତି ହେଉ ମୋର ଅସ୍ତିତ୍ୱର ପରମ ଓ ଚରମ ଲକ୍ଷ୍ୟ । ସତ୍ୟବ୍ରତ ଏତିକି ଜାଣୁ, ତା'ର ସାର୍ ଏ ଉପଭୋଗ ଚାହାନ୍ତି ନାହିଁ, ଯାହା ଚାହାନ୍ତି, ତାହା କେବଳ ଶରଧାବାଲି କି ସାଗର ସ୍ୱର୍ଗଦ୍ୱାରରୁ ହାତେ ... ହାତେ ଭୂଇଁ ।

■■■

# କାହାକୁ ଡାକିବା

ହିନ୍ଦୁ ସଂସ୍କୃତିରେ ଅଛି, କାହାକୁ ନଡାକି ଯଦି ଅତିଥି ଅଭ୍ୟାଗତ ଆସିଗଲେ, ତେବେ ମହାପୁଣ୍ୟ ହେବ ବୋଲି ଲୋକେ ବିଶ୍ୱାସ କରି ଦ୍ୱାର ଖୋଲିଦେଉଥିଲେ ।

ଏବେ ଅତିଥି ଶବ୍ଦର ବହୁ ବ୍ୟାପକ ଅର୍ଥ ହେବାରୁ ଓ ଗୋଟିଏ ସନ୍ଧ୍ୟାରେ ଏକାଧିକ ଅତିଥିଙ୍କ ଆବଶ୍ୟକତା ପଡୁଥିବାରୁ, ବିଷୟଟି ସମସ୍ୟାମୂଳକ ହୋଇପଡ଼ିଛି ।

ଶ୍ରୀ ଜୟପ୍ରକାଶ ନାରାୟଣଙ୍କର ଓଡ଼ିଶା ଆଗମନ ଓ ପ୍ରସ୍ଥାନ ପୁରୀ ଜିଲ୍ଲାର ବିଷ୍ଣୁପୁର ଗ୍ରାମବାସୀଙ୍କର ଆପାତତଃ ସମସ୍ୟା ନୁହେଁ, ଯଦିଓ ସେମାନେ ଜାଣନ୍ତି ଯେ, ତାଙ୍କ ଭଳି ଜଣେ ବ୍ୟକ୍ତି ଯେବେ ବିଷ୍ଣୁପୁର ଗାଁ କ୍ଲବ୍‌ଘରେ ଥିବା ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କର ଫଟୋ ପାଖେ ପ୍ରଦୀପ ଜଳାଇ ମାଲ୍ୟାର୍ପଣ କରନ୍ତେ, ତେବେ ତ ତାହା ବାର୍ଷିକ ଉତ୍ସବର ଗୌରବ ଓ ଗରିମା ବଢ଼ାଇ ପାରନ୍ତା; କିନ୍ତୁ ଶ୍ରୀମତୀ ଇନ୍ଦିରା ଗାନ୍ଧି ଓ ଜୟପ୍ରକାଶଙ୍କୁ ଏକା ଘାଟରେ ପାଣି ପିଆଇବା ଏକ ପ୍ରକାର ଅସମ୍ଭବ ବ୍ୟାପାର ବୋଧକରି କ୍ଲବ୍‌ର ସଦସ୍ୟମାନେ ଅନ୍ୟଆଡ଼େ ମୁହଁ ଫେରାଇ ବିଚାର ଆଲୋଚନା ଆରମ୍ଭ କରିଦେଲେ ।

ବାର୍ଷିକ ଉତ୍ସବ ସମୟ ଆସିଗଲା । 'ବସନ୍ତ ଆଗମେ' କବିତା ଆବୃତ୍ତି କରି ଝିଅମାନେ ଉଦ୍‌ବୋଧନୀ ସଙ୍ଗୀତ ଗାନ କରିବେ । ପରମ୍ପରା ଅନୁଯାୟୀ ବସନ୍ତ ଋତୁରେ ହିଁ ଏ ଉତ୍ସବ ହେବାର କଥା । ଭାଲେଣିପଡ଼ିଲା ସଭାପତିଙ୍କର ଯିଏ ନିଜ ଘରର ଗୋଟାଏ ବଖରାରେ କ୍ଲବ୍ କରି ଦୁଇଟା ଚେୟାର, ଗୋଟାଏ ଟେବୁଲ, ଲୋକସମ୍ପର୍କ ବିଭାଗରୁ ଦୁଇ ତିନିଟା ଚିତ୍ର ଟାଙ୍ଗି 'ବିଷ୍ଣୁପୁର ଯୁବକ ଶ୍ରୀ ସାମର୍ଥ୍ୟ ସଂଘ' ନାମରେ ଅନୁଷ୍ଠାନ ଗଢ଼ିଛନ୍ତି ଓ ବାର୍ଷିକ ଚାରିହଜାର ଟଙ୍କା ସରକାରୀ ଆର୍ଥିକ ସାହାଯ୍ୟ ପାଉଛନ୍ତି ।

ଗାଁର ଏ ହେଉଛନ୍ତି ମାରଣା ଷଣ୍ଢ । ସମସ୍ତଙ୍କ ମନରେ ଭୟ ଉଦ୍ରେକକାରୀ ଏହି ମହାଜନ, କ୍ଷମତାସୀନ ଶାସକଗୋଷ୍ଠୀର ସମର୍ଥକ ଓ ସଭ୍ୟ ଥିବାରୁ ବିଷ୍ଣୁପୁରର ବିଷ୍ଣୁ ମୂର୍ତ୍ତି ଭଳି ପୂଜା ଅର୍ଚ୍ଚନା ପାଇ ଗୋଟିଏ ଦରିଦ୍ର ପରିବାରର ଖଟିଖିଆ ଶ୍ରମିକ ଏଇ ବିଶ୍ୱବନ୍ଧୁ ନାୟକ ଏବେ ଧନୀ ହୋଇ ଯାଇଛନ୍ତି । ଆକାଶକୁ ଯାଙ୍କର ମଥା ଛୁଉଁଛି । ସଭ୍ୟମାନେ ଯାଙ୍କର ଇଙ୍ଗିତରେ ଚଳନ୍ତି, ହେଲେ ସେଥିରେ ଗୋଟାଏ ଦୁଇଟା ଭିନ୍ନମତର ଯୁବକ ଦେଖାଦେଲେଣି; ଫଳରେ ଏକଛତ୍ରବାଦ ରହିପାରୁନି । ବିଭେଦ ଆସିଯାଇଛି ।

ବୈଠକ ବସିଛି । ପ୍ରଶ୍ନ ... କିଏ ପ୍ରଧାନ ଅତିଥି, ଉଦ୍‌ଘାଟକ, ସମ୍ବର୍ଦ୍ଧକ, ମୁଖ୍ୟବକ୍ତା, ଗୌଣ ବକ୍ତା, ଧନ୍ୟବାଦ ଦାନକାରୀ, ସଭପତି, ବିବରଣୀ ପାଠକ, ଧୂପବତି ପ୍ରଦୀପକ, ହାରମୋନିୟମ ଗାୟକ ଇତ୍ୟାଦି ହୋଇ ଆସିବେ– ତାଙ୍କର ତାଲିକା ପ୍ରସ୍ତୁତୀକରଣ ।

କ୍ଲବ୍‌ର ସଭାପତିଙ୍କ ଆଗରେ ଗୋଟିଏ ପନ୍ଥା । ସେ କହିଲେ, ବନ୍ଧୁଗଣ, ଯଦି କ୍ଲବ୍‌ର ଉନ୍ନତି ଚାହଁ, ଯଦି ଗ୍ରାମର ଉନ୍ନତି ଚାହଁ, ଯଦି ଜୀବନରେ ବଡ଼ ହେବା ପାଇଁ ଇଚ୍ଛାକର, ତେବେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନ ଅତିଥି ଭାବରେ ବରଣ କରିବାକୁ ହେବ ।

ଏ ଆସିଲେ କି କି ଲାଭ ହେବ ବୋଲି ଜଣେ ସଦସ୍ୟ ପଚାରିଲେ– କାରଣ ଲାଭ କ୍ଷତିର ଫର୍ଦ୍ଦ ଏବେଠୁ ତିଆରି ନ କଲେ, ଅଯଥା କର୍ମରତ ରହି ଶେଷରେ ସୁଫଳ ମିଳିବନାହିଁ ।

ବିଶ୍ୱବନ୍ଧୁ ନାୟକ କହିଲେ– ପ୍ରଥମେ– ମୁଖ୍ୟମନ୍ତ୍ରୀ ଆସିବେ, ଗ୍ରାମରେ ବିରାଟ ଉଦ୍‌ବେଳନ ଘଟିବ, ଯିମିତି ଗାଁ ପୋଖରୀରେ ପଥରଟାଏ ପକାଇ ଦେଲେ ଚାରିଆଡ଼େ ସୁଅ ପରେ ସୁଅ ଛୁଟିଯାଏ; ଅବଶେଷରେ କୂଳକୁ ସେଗୁଡ଼ାକ ଯେମିତି ଆଘାତ କରନ୍ତି, ଏ ସେମିତିକା କଥା ହେବ ।

ଦ୍ୱିତୀୟ, ଫଟୋ ଉଠିବ ଅଜସ୍ର– ଗାଁର ତରୁଣ ତରୁଣୀ, ବୁଢ଼ା ବୁଢ଼ୀ ସମସ୍ତଙ୍କର ଛବି ଉଠିଯିବ । କେବଳ ମୁଣ୍ଡମାଳ ଦେଖାଯିବ । ଆମ ହାତରୁ ଗୋଟାଏ ପଇସା ପଡ଼ିବନି– ସବୁ ସରକାର କରିଦେବେ ।

ତୃତୀୟ,ମାଇକ୍ ବାଜା ମନକୁ ମନ ଚାଲିଆସିବ । କେତେ ମଟର କାର୍, ଜିପ୍, ପୋଲିସ୍, ମାଜିଷ୍ଟ୍ରେଟ୍ ଆସଯିବେ । ଭଙ୍ଗା ରାସ୍ତା ଉପରେ ଗୋଡ଼ି ପଡ଼ିଯିବ । ଖାଲ ଜମି ଢିପ ହୋଇଯିବ । ଶୂନ୍ୟରୁ ଏସବୁ ମଙ୍ଗଳ ଖସି ଆସିବ । ଆମ ଦେହରୁ ଝାଳ ବୋହିବ ନାହିଁ କି ତୁଣ୍ଡରୁ କଥା ଶୁଭିବ ନାହିଁ । ସବ୍ କାମ ସୁରୁଖୁରୁରେ ହୋଇଯିବ ।

ଅମାନିଆ ଯୁବକମାନେ ଗୋଟାଏ ଦଳ କରିଛନ୍ତି । ସମର୍ଥନ ମିଳିଲା– ନାହିଁ ଏ ପ୍ରସ୍ତାବ ଉପରେ...

ରତ୍ନାକର ବେକାର ଯୁବକ; ବି. ଏ. ପାଶ୍ କରି କର୍ମଯୋଗାଣ ଫାଟକ ପାଖରେ ଶୂନ୍ୟ ଆକାଶକୁ ଚାହିଁ କେତେଥର ଫେରି ଅଗ୍ନିଶର୍ମା ହୋଇଯାଇଛି । ଭଉଣୀ ବିବାହ– ବେଦିକୁ ଯାଇ ପାରୁନି, ଯୌତୁକ ଡାକରେ ତା'ର ପରିବାର ମ୍ରିୟମାଣ । ଏ ଶାସନରେ ଏତେ ମଙ୍ଗଳପ୍ରଦ ଯୋଜନା ସବୁଜ ବିପ୍ଳବରୁ ଶ୍ୱେତ, କୃଷ୍ଣ, ରଙ୍ଗବେରଙ୍ଗ ସବୁ ବିପ୍ଳବକୁ ସେ ଦେଖି, ବୁଝି ଏତିକି ସ୍ଥିର କଲାଯେ ମନ୍ତ୍ରୀମାନଙ୍କୁ ଏ ଗ୍ରାମକୁ ଆଣି ଛେଳି କାଟି, ଓଡ଼ିଶୀ ନାଚ ଦେଖାଇ ତୃପ୍ତି ଦେବା କାମ ଏଣିକି ଆଉ ହେବନାହିଁ ।

ରତ୍ନାକରର ମନେପଡ଼ିଲା ତା'ର ଗୁରୁଦେବଙ୍କ କଥା । ଆହା, ଶାନ୍ତ ସ୍ନିଗ୍ଧ ସେ ବ୍ୟକ୍ତିତ୍ୱ ! ଏ ଜଗତରେ ସେ ଲୋକ ନୁହନ୍ତି । ବିଷୟବୃତ୍ତିରେ ମନ ନାହିଁ । କେବଳ ଜାତି, ସଂସ୍କୃତି, ଧର୍ମ ଘେନି ତାଙ୍କର ଚିନ୍ତା ଓ ବିଚାରଣା । ସେ ବିଷ୍ଣୁ ପୁରକୁ ଆସି ଯଦି କିଛି କିଛି କରନ୍ତେ, ତେବେ ଅନ୍ଧକାର ଖସିଯାଇ ଆଲୋକ ଫୁଟନ୍ତା । ମଣିଷ କଅଣ, ତା'ର ଲକ୍ଷ୍ୟ କ'ଣ, ଅଥଚ ସେ କିପରି ଅନିତ୍ୟ ଭୋଗ– ବାସନାରେ ପଥ ବାହି ଚାଲିଛି– ସେ ପଥରୁ ଗୁରୁଦେବ ଦେଖାଇ ଦିଅନ୍ତେ ; ନ୍ୟାୟ ନୀତିର ଆଲୋଚନା କରନ୍ତେ । କ୍ଷମତା ଓ ଟଙ୍କାର ସେ ଦାସ ନୁହନ୍ତି ।

ରତ୍ନାକର ସାହସ ସଞ୍ଚୟ କରି କହିଲା– "ମୋର ଏକ ପ୍ରସ୍ତାବ ଅଛି; ମନ୍ତ୍ରୀମାନେ ଏଠାକୁ ଆସିଲେ ଅକାରଣେ ଗୋଟାଏ ବିସ୍ଫୋରକ ପରିବେଶ

ସୃଷ୍ଟି ହେବ; ମନ୍ତ୍ରୀତ୍ୱ ସହିତ ରାଜନୀତି ଓ ଦଳୀୟ ସ୍ୱାର୍ଥ ଏପରି ମିଶାଣ ଯେ ନିର୍ମଳ ଭାବରେ କିଛି କରିବା ସମ୍ଭବ ହେବନାହିଁ । ସେମାନଙ୍କୁ ଅଣା ନ ଯାଇ ତାଙ୍କ ପରିବର୍ତ୍ତେ ଜଣେ ସ୍ୱନାମଧନ୍ୟ ସାହିତ୍ୟିକ–"

ରତ୍ନାକର ଉପରେ ବିଶ୍ୱବନ୍ଧୁ ନାୟକ ଛଞ୍ଚାଣ ସମ ଝାମ୍ପି ପଡ଼ିଲେ । କହିଲେ– ହେ ରତ୍ନାକର, ନ ଭାବି ନ ଚିନ୍ତି କିଛି କୁହନାହିଁ । ସାହିତ୍ୟିକଙ୍କୁ ଆଣିବ ? ହଇଯେ, ସେଗୁଡ଼ାକ କ'ଣ କହିବେ ? ଭାଷଣ ଆରମ୍ଭରେ ଆକାଶକୁ ଚାହିଁବେ, କହିବେ, ବର୍ତ୍ତମାନ ଦିଗଦିଗନ୍ତ ଅରୁଣିମାରେ ସ୍ନାତ । ପୁଣି କହିବେ– ଉଠ, ଜାଗ୍ରତ ହୁଅ, ଯୁଗପୁରୁଷ ଡାକୁଛି । ମଝିରେ ମଝିରେ ବିବେକାନନ୍ଦ, ରାମକୃଷ୍ଣ ଆଉ ଭଗବତ୍‌ଗୀତାରୁ ଉଦ୍ଧୃତି ଦେଇ ଯାହା ଜନତାଙ୍କୁ ଜାଗ୍ରତ କରିବେ ତ ଜଣାପଡୁଛି, ବରଂ ନୁଆଁଇ ପକାଇବେ ହେ । ସାହିତ୍ୟ ଓ ଧର୍ମରୂପକ ଅଫିମ ଖୁଆଇ ସେମାନେ ଗରମ କରିପାରିବେ ମନ୍ତ୍ରୀ ଶୁକଦେବ ପଟ୍ଟନାୟକ ଭଳି ? ତାତିଲା କରେଇ ଯିମିତି ସୋରିଷ ତେଲରେ ଫୁଟୁଛି ସିମିତି ମନେହେବଟିକି ? ରତ୍ନାକର ବସିପଡ଼– ମନ୍ତ୍ରୀ ବିହୁନେ ସୃଷ୍ଟି ନାଶ, ଜଳ ବିହୁନେ ଶସ୍ୟ ନାଶ ଭଳି କଥା ହେବ ।

ସହ ସମ୍ପାଦିକା ପୀରତି ଦେଇ ପଣତ ସଜାଡ଼ି ଛିଡ଼ାହେଲେ– ଏ ଜଣେ ଅଗ୍ରଗାମୀ ତରୁଣୀ । ହିନ୍ଦିରେ କୋବିଦ । ଏହାଙ୍କର ଉଗ୍ର ସ୍ୱଭାବ ଯୋଗୁ ସଭାପତି ବିଶେଷ ଭରସି କରି ତାଙ୍କୁ କିଛି କହିପାରନ୍ତି ନାହିଁ ।

ସେ ଛିଡ଼ାହୋଇ ଅଗ୍ନି ଝରାଇଲେ । କହିଲେ, "ଶୁକଦେବ ପଟ୍ଟନାୟକ– ମନ୍ତ୍ରୀଙ୍କୁ ମୁଁ ଜାଣେ । ମୋ ଭଳି ଏ ଦେଶରେ ତାଙ୍କୁ କେହି ଚିହ୍ନିନଥିବେ । ମତେ ବାହାହେବାକୁ କହି ସେ ଠକିଛନ୍ତି । ଆପଣମାନେ ଜାଣନ୍ତି ସେ କଥା । ମୁଁ କିନ୍ତୁ ତାଙ୍କୁ ସେଥିପାଇଁ କ୍ଷମା କରିଛି । ଅଜାତଶତ୍ରୁ ବାଳକମାନେ ଆଜି ମନ୍ତ୍ରୀ; ସେମାନଙ୍କ ଭିତରେ ଗଭୀର ଆତ୍ମଶକ୍ତି ନାହିଁ କି ସେମାନେ ଭୋଗବିଳାସରୁ ମୁକ୍ତ ନୁହଁନ୍ତି । କୁମ୍ଭୀର କାନ୍ଦଣା କାନ୍ଦି ଗରିବଙ୍କ ପାଇଁ ଯେଉଁ ଦରଦ ଦେଖାନ୍ତି, ସେଥିରେ କାଣିଚାଏ ସତ୍ୟ ଥାଏ କି ? ତେଣୁ ରତ୍ନାକରବାବୁଙ୍କ ମତକୁ ମୁଁ ସମର୍ଥନ କରୁଛି । ଏ ମନ୍ତ୍ରୀ ସମାଜ ତାଙ୍କ ମସ୍‌ନଦ୍‌ରେ ବସି ଶାସନ କରନ୍ତୁ । ଆପଣମାନେ ତାଙ୍କୁ ବିରକ୍ତ କରନ୍ତୁ ନାହିଁ । ସେମାନେ ଗାଁ ଗଣ୍ଡା ବୁଲନ୍ତୁ ନାହିଁ ।

ଜଣେ ସଭ୍ୟ ଉତ୍ତ୍ୟକ୍ତ ଭାବରେ କହିଲା– ମନ୍ତ୍ରୀମାନେ ନିର୍ବାଚନ ଜିଣି ଆସିଛନ୍ତି । ଅଗ୍ନି ପରୀକ୍ଷା ଭିତରେ ଶୁଦ୍ଧ ସୁବର୍ଣ୍ଣ ଭଳି ଝଟକି ଉଠି ଆସିଛନ୍ତି । ତାଙ୍କୁ ଏମିତି କହିବା ଠିକ୍ ହେଉନାହିଁ ।

ସଭାର ବାତାବରଣ କ୍ରମେ ଉତ୍ତାପ ଆହରଣ କରୁଥିଲା । ଗୋଟାଏ କଣରୁ ଶବ୍ଦ ଉଠିଲା–

ଆପଣମାନେ ଫଟୋ ଚାହାନ୍ତି ତ ଖବରକାଗଜର ସମ୍ପାଦକଙ୍କୁ ଡାକନ୍ତୁ; ଫଟୋହୀନ ସମ୍ବାଦ ପାଇବେ ନାହିଁ । ତେଣୁ ମୁଁ ପ୍ରସ୍ତାବ କରୁଛି ଖବରକାଗଜ ସମ୍ପାଦକଙ୍କୁ ଡକାଯାଉ ।

"ନାଇଁ ନାଇଁ, ଫଟୋରୁ ଆମେ କଅଣ ପାଇବୁ ? ତାଙ୍କରି ଭାଷଣରେ ସଭା ଆରମ୍ଭ ଓ ଶେଷ, ବାକି ସମସ୍ତଙ୍କର ଭାଷଣ– ଏମିତି ଛପାହୋଇଥିବ– "ଅମୁକ କହିଲେ" ଯଦିଓ ସେ ତାଙ୍କ ଅପେକ୍ଷା ଭଲ କହିଥିବେ ଓ ସାର କଥା କହିଥିବେ । ଖବରକାଗଜ ସମ୍ପାଦକ ଆସିବେ

ନାହିଁ । ଯଦି କାହାକୁ ଆଣିବାର କଥା, ଆମ ଜିଲ୍ଲାର ଯେ ପାଳନକର୍ତ୍ତା ଆ.ଇ.ଏସ୍, ସେ ଆସନ୍ତୁ ।”

କିଏ ଜଣେ ପାଟିକଲେ– “କଅଣ ହେଲା ? ଶେଷକୁ ଜିଲ୍ଲାପାଳ ?”

ଉତ୍ତର ମିଳିଲା– “ତାଙ୍କ ହାତରେ ଗ୍ରାଣ୍ଟ୍ ଅଛି, ହଲାର ଲାଇସେନ୍‌ସ କରାଇଦେଇପାରିବେ, ଭିନ୍ନ ଭିନ୍ନ କମିଟିରେ ରଖିଦେଇ ପାରିବେ; ଅତି ଊଣାରେ ଆମ ସ୍ତ୍ରୀମାନଙ୍କୁ ଜିଲ୍ଲା ଜେଲର୍ ପରିଦର୍ଶିକା କରି ପାରିବେ ।”

ଗୋଟାଏ ନାଲି ସିନ୍ଦୂର ଚିତା କପାଳରେ ମାରିଥିବା ଯୁବକ ଉଠିପଡ଼ି କହିଲା– ସେତିକି କଅଣ ? ଆମ ସ୍ତ୍ରୀମାନଙ୍କୁ ଡାକ୍ତରଖାନା ରନ୍ଧନଶାଳାର ଚାଖୁଣିଆ କରିଦେଇ ପାରିବେ, ହସ୍‌ପିଟାଲ କମିଟିରେ ସ୍ଥାନ ମିଳିବ । ହଁ ହଁ, ଜିଲ୍ଲାପାଳଙ୍କୁ ଡାକନ୍ତୁ ।

“ସେ ତ ଇଂରାଜୀରେ କହିବେ, ଗାଁରେ ଶତକରା କେତେ ବୁଝିବେ ?” ସ୍କୁଲ୍ ଶିକ୍ଷକ ଗଗନବିହାରୀ ଏତକ କହି ଉତ୍ତର ଅପେକ୍ଷାରେ ସମସ୍ତଙ୍କୁ ଚାହିଁ ରହିଲେ ।

– “ଇଂରାଜୀ ଦେବଭାଷା ହୋଇଯାଇଛି । ସଂସ୍କୃତ ମୃତଭାଷା, ଓଡ଼ିଆ ଆହୁରି ମୃତ । କେହି ନବୁଝିଲେ ବି ଇଂରାଜୀ ଭାଷାର ଧ୍ୱନି ତ କାନରେ ପଶିବ ?” ଯୁଦ୍ଧଫେରନ୍ତା ଜଣେ ମିଲିଟାରୀ ସିପାହି ବଡ଼ପାଟିରେ ଏତକ କହିଲେ ।

ଏସବୁ ବିଚାର ଆଲୋଚନା ଠିକ୍ ବାଟକୁ ଆସୁନାହିଁ ଜାଣି ବିଶ୍ୱବନ୍ଧୁ ନାୟକ ଶେଷରେ କହିଲେ–

“ତେବେ ଜଣେ ସମାଜସେବିକା ମହିଳାଙ୍କୁ ଆଣିବା । ସେ ଏଠାରେ ଶସ୍ତା ଭୋଜନ କେନ୍ଦ୍ର ଖୋଲିବେ ଏବଂ ଏ ନିଶ୍ଚୟ ଜଣେ ମନ୍ତ୍ରୀଙ୍କ ସହଧର୍ମିଣୀ ହୋଇଥିବେ ।”

“ଖାଲି ମନ୍ତ୍ରୀ ମନ୍ତ୍ରଛଡ଼ା ଆଉ କଅଣ ଏ ସଂସାରରେ କିଛି ନାହିଁ ?” ବିଷ୍ଣୁପୁର ଗାଁର ମଶାଣିପାଖ ପରିତ୍ୟକ୍ତ ଭଗ୍ନ ମନ୍ଦିରର ବାବାଜୀ ରାମ ଦାସ ଏତକ କହି ଛିଡ଼ା ହୋଇରହିଲେ । ମୁହଁରେ ଘନ ଶ୍ମଶ୍ରୁ, ତମ୍ବାପାତିଆ ଦେହ... ରାମଦାସ ଅନେକ ଦିନ ହେବ ଗାଁ ଛାଡ଼ି ଚାଲିଯାଇଥିଲେ । ତାଙ୍କର ହଠାତ୍ ଆବିର୍ଭାବ ଦେଖି ସମସ୍ତେ ସ୍ତବ୍ଧ ରହିଗଲେ ।

ରାମ ଦାସ କହିଲେ, “ମୁଁ ବଦ୍ରିନାଥ, ହରଦ୍ୱାର, ହୃଷୀକେଶ ବୁଲିଆସିଛି । ପରମାତ୍ମା ସହିତ ଜୀବାତ୍ମାର ମିଳନ ମୁଁ ଦେଖିଛି । ମୋର ଗୁରୁ ସନ୍ନ୍ୟାସୀଙ୍କୁ ନିମନ୍ତ୍ରଣ କରି ଆଣନ୍ତୁ । ସେ ଗୃହୀ ସନ୍ନ୍ୟାସୀ । ସେ କହିବେ ଏ ଦେଶର କଥା, ଦୁର୍ନୀତି କଥା, ବ୍ୟଭିଚାରର କଥା, ଶାସନର ଅପାରଗତାର କଥା; କିନ୍ତୁ ସେ ସନ୍ନ୍ୟାସୀଙ୍କର ନିଜର ଧନସମ୍ପଦ ନାହିଁ, ସ୍ୱାର୍ଥ ନାହିଁ । ରାମ ଦାସ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରିଛି । ରାମ ଦାସ ଜଣେ ଜୀବ ନୁହେଁ, ପ୍ରାଣୀ ନୁହେଁ, ସେ ଏକ ଆତ୍ମା, ସେ ଏକ ସ୍ଫୁଲିଙ୍ଗ, ତା'ର ଗୁରୁ ଏକ ମହାତ୍ମା, ଏକ ସୂର୍ଯ୍ୟ... ତାଙ୍କୁ ଡାକିବେ ? ବିଷ୍ଣୁପୁରକୁ ଆପଣମାନେ ଡାକିବେ ? ସେ ଆସିପାରିବେକି ନାହିଁ ମୁଁ ଜାଣେନା, ତେବେ ଅନ୍ତରଖୋଲି ଡାକନ୍ତୁ, ସେ ଆସିବେ ।

ବିଷ୍ଣୁପୁର ଲୋକାରଣ୍ୟ...

ବସନ୍ତ ଋତୁର ଗୋଟିଏ ସନ୍ଧ୍ୟା । ଚାରିଆଡ଼େ ମସାଲ ଜଳୁଛି... ଏ ଗାଁରେ ବିଜୁଳି ଆଲୁଅ ଥିଲା,

ସଭା ବେଳକୁ ତାହା କଟିଗଲା । ଏ ସଭାର ମୁଖ୍ୟ ଅତିଥି ମନ୍ତ୍ରୀ ନୁହଁନ୍ତି ।

କଳାବଜାରୀ ଟାଉଟର ନୁହଁନ୍ତି ।

କଣ୍ଟ୍ରାକ୍ଟର ନୁହଁନ୍ତି ।

ନୁହଁନ୍ତି ମାଜିଷ୍ଟ୍ରେଟ୍... ।

ନୁହଁନ୍ତି ସମ୍ବାଦପତ୍ରର ଫଟୋପ୍ରିୟ ସମ୍ପାଦକ ।

ନୁହଁନ୍ତି ଭବିଷ୍ୟତର ଲୋକପ୍ରତିନିଧି ବା ଆଜିର ସ୍ୱୟମ୍ଭୂମାନେ ।

ନୁହଁନ୍ତି ଶିଳ୍ପପତି, ଦୂରାଗତ ବଣିଜ ବେପାରୀ– ଯେ ମୁଖ୍ୟ ଅତିଥି, ସେ ବିଶ୍ୱର ଅତିଥି, ସେ ଲୋକନାୟକ...ଲୋକ ଶକ୍ତି ଉତ୍ସର ମହା ପାରାବାର...

'ଜୟପ୍ରକାଶ' । ସେ ଆସିଛନ୍ତି ।

ଆଉ ମୁଖ୍ୟବକ୍ତା ରତ୍ନାକରର ଗୁରୁଦେବ, ତେଜସ୍ୱୀ ସାହିତ୍ୟିକ, ଶିଳ୍ପୀ ଓ ମମତାଭରା ଚୈତନ୍ୟରୂପ, ଆଗାମୀ କାଳର ଦିଗନିର୍ଣ୍ଣୟକାରୀ ଆଧ୍ୟାତ୍ମ୍ୟ ସେବୀ ପ୍ରଣବାନନ୍ଦ ସ୍ୱାମୀ ।

ସତ୍ୟ ଓ ପ୍ରଣବର ଅପୂର୍ବ ମିଳନ !!!

ଏ ମିଳନରେ ବିଶ୍ୱବନ୍ଧୁ ନାୟକ କେତେବେଳୁ ଅସ୍ତମିତ ହୋଇଯାଇଛନ୍ତି ।

ମନ୍ତ୍ରୀ– ମନ୍ତ୍ରଣା– ତାମସ ବି ଅନ୍ତର୍ହିତ ।

ଆଜି ଆଉ 'କାହାକୁ ଡାକିବା'ର ପ୍ରଶ୍ନ ନାହିଁ । ଯାହା ସତ୍ୟ ଓ ଶ୍ରୀ, ତାହା ଆସିଯାଇଛି ଦ୍ୱାରପ୍ରାନ୍ତକୁ...

ତାହାହିଁ ଜୟ; ତାହା ହିଁ ପ୍ରକାଶ ।

ତାହାହିଁ ଆଗାମୀ ପ୍ରଭାତର ରଶ୍ମି ରେଖା ... ସବୁ ହରାଇଥିବା ମଣିଷର ଟିକିଏ ସ୍ୱପ୍ନ... ସ୍ୱଚ୍ଛ... ମାତ୍ର ଆଶା...



# ସୋରେଇଏ ପାଣି

ଶ୍ରୀଜଗନ୍ନାଥବଲ୍ଲଭ ମଠ ପ୍ରାଙ୍ଗଣରେ ଯେଉଁ ଆଧ୍ୟାତ୍ମିକ ସଭା ହେଲା ଓ ସେଥିରେ ପ୍ରଭୁପାଦ ଚିଦାନନ୍ଦ ସରସ୍ୱତୀ ଯେପରି ଧର୍ମୀୟ ଭାଷଣ ଦେଲେ, ତାହା ସଚିବାଳୟର ପ୍ରୌଢ଼ ଷ୍ଟେନୋବାବୁ ଶ୍ରୀ ପଙ୍କଜ ମହାନ୍ତିଙ୍କୁ ବଡ଼ ଭାବ-ରସରେ ଆନ୍ଦୋଳିତ କଲା ।

ଇମିତି ହୋଇଥାଏ । ଯାହାଙ୍କର ହୃଦୟ ଆଗରୁ କର୍ଷିତ ହୋଇ ରହିଛି, ସେଠି ଈଶ୍ୱରଙ୍କର ନାମ ରୂପ ବୀଜ ପଡ଼ିବାମାତ୍ରେ ଅଙ୍କୁର ଫଳିଯାଏ । ଷ୍ଟେନୋବାବୁଙ୍କର ତାହାହିଁ ଘଟିଲା ।

ସେଦିନ ସନ୍ଧ୍ୟାରେ ସରସ୍ୱତୀ କଅଣ କହିଥିଲେ, ସାରାଂଶରେ ତାହା ଏତିକି ହେବ ଯେ, ସମଗ୍ର ଜଗତ ହେଲା ବ୍ରହ୍ମମୟ ସମୁଦ୍ର । ସେଠାରୁ ଯିଏ ଯେତେ ବାରି କଳସୀରେ, ସୋରେଇରେ, ମାଟିହାଣ୍ଡିରେ, ପିତଳ ହଣ୍ଡାରେ ଅବା ବୋତଲ ଶିଶିରେ ଆଣିଲା, ତାହା ସେହି ଆକାରରେ ରହିଲା ସିନା; ମାତ୍ର ସେଗୁଡ଼ିକ ଭାଙ୍ଗିଗଲେ କି ଉଭେଇଗଲେ ସେହି ମୂଳ ପଦାର୍ଥ ଜଳରେ ହିଁ ମିଶିଯିବ ।

ସିମିତି ଜୀବଜନ୍ତୁ ମଣିଷ ଘଟ ଧରୁଛନ୍ତି । କାହାର କେତେ ଆକାର ପ୍ରକାର, ହେଲେ ଆମେ ପ୍ରାଣୀ ମାତ୍ରକେ ବ୍ରହ୍ମମୟ, ବ୍ରହ୍ମ । ବାରିଧିର ଜଳାଂଶ ଜଳବିନ୍ଦୁ ।

ଶ୍ରୀ ପଙ୍କଜ ମହାନ୍ତି ଏଭଳି ତାତ୍ତ୍ୱିକ ବିଚାର କେବେ ଶୁଣିନଥିଲେ । ସେକ୍ରେଟେରିଏଟ୍ ଚାକିରି, ହାକିମଙ୍କ ପାଖେ ପାଖେ ରହି ତାଙ୍କ ବକ୍ତବ୍ୟ ସବୁ ନୋଟ୍ କରନ୍ତି । ନିଜର ବକ୍ତବ୍ୟ ବୋଲି ସେ କିଛି ଜାଣନ୍ତି ନାହିଁ । ଏମିତି ଅଭ୍ୟାସ ହୋଇଗଲା ଯେ, ନିଜେ ନାସ୍ତିକ ହୋଇଗଲେ, ଅନ୍ୟର କଥାର ଅସ୍ତିତ୍ୱକୁ ସ୍ୱୀକାର କଲେ ।

ଆଜି ତାଙ୍କର ଆଖି ଫିଟିଗଲା । ମନର ମୂଳ ପର୍ଯ୍ୟନ୍ତ ହଲିଗଲା ! ଛୁଟିରେ ଆସିଥିଲେ ଜଗନ୍ନାଥ ଦର୍ଶନ କରିବାକୁ । ମଝିରେ ମଝିରେ ଏପରି ସେ କରନ୍ତି । ସେକ୍ରେଟେରୀଙ୍କ ବାସଭବନ ପୁରୀକ୍ଷେତ୍ରରେ ହୋଇଥିବାରୁ, ସେ ଆସି ନପାରିଲେ ଷ୍ଟେନୋବାବୁ ଆସି ଗୃହର ରକ୍ଷଣାବେକ୍ଷଣ କଥା ବୁଝିଯାଆନ୍ତି । ସେ ଘରର ଫାଳେ ଭଡ଼ାନେଇଥିବା ବ୍ୟକ୍ତିଙ୍କଠାରୁ ଟଙ୍କା ଆଦାୟ କରନ୍ତି ।

କେଜାଣି କାହିଁକି ଚିଦାନନ୍ଦ ସରସ୍ୱତୀଙ୍କର ପ୍ରବଚନରେ 'ସୋରେଇଏ ପାଣି' କଥାଟା ତାଙ୍କୁ ବଡ଼ ମଉଜ ଲାଗିଲା ।

ଏହାର କାରଣ ଏବଂ ଏପରି ଅପୂର୍ବ ଯୋଗାଯୋଗ ଯେ, ଶ୍ରୀ ପଙ୍କଜ ମହାନ୍ତି ପୁରୀ ଅଭିମୁଖେ ଯାତ୍ରା କରିବା ପୂର୍ବରୁ ତାଙ୍କର ଟେବୁଲ୍ ଉପରେ, ଫାଇଲ୍ ଭିତରେ 'ସୋରେଇଏ ପାଣି' ବିଷୟଟି ରହିଛି ।

ବଡ଼ ଆଚମ୍ଭିତ କଥା ! ଫାଇଲ୍‌ରେ ସୋରେଇ ସଂକ୍ରାନ୍ତ ନୋଟ୍– ଏଣେ ଚିଦାନନ୍ଦ ସରସ୍ୱତୀଙ୍କର ପ୍ରବଚନରେ ବି ସେଇ ଏକ କଥା– ସୋରେଇଏ ପାଣି ।

ପୂଜା ଛୁଟି ପ୍ରାୟ ପାଖେଇ ଆସିଲା । ପାଖେଇ ଆସିଲା ଆତଙ୍କର ଯେତେକ ପରିପାଟୀ । ସ୍ତ୍ରୀ ମାନମୟୀ ତ ଫର୍ଦ୍ଦ କରି ସ୍ୱାମୀଙ୍କର ପତଳା ଟାଇପ୍‌କରା କାଗଜରେ ଆଗରୁ ଲେଖିରଖିଛନ୍ତି ପଦାର୍ଥଗୁଡ଼ିକ । ଏ ବର୍ଷ ସେ ସବୁ କିଣିବାକୁ ହେବ ।

ଏଇ କାଲି ଭଳି ଲାଗୁଛି । ଗୋଟାଏ ଗୋରା ତକ୍‌ତକ୍ ଟୋକା ପଶୁପାଳନ ମନ୍ତ୍ରୀଙ୍କ ପାଖେ ପି.ଏ. ହୋଇଛି । ସେକ୍ରେଟୋଏଟ୍‌ରେ ତା'ର ଚେର ନାହିଁ କି ହେଡ୍ ଅଫ୍ ଡିପାର୍ଟମେଣ୍ଟରେ ତା'ର ପୋତା ନାହିଁ । କେବଳ ପଲିଟିକାଲ୍ ନିଯୁକ୍ତିରେ ଏ ଟୋକା ଯାହା ରୋଜଗାର କଲାଣି, ଯିମିତି ଦାମିକିଆ ବସନରେ ଭୂଷିତ ହେଉଛି, ଯେତେ ପ୍ରକାର ମଟରଗାଡ଼ିରେ ଚଢୁଛି, ଯେତେଥର ଅତିଥି ଆଳୟରେ ମାଂସ ପଲାଉ, ବିରିଆନି ଖାଉଛି, ଏଇ ଅଯୋଗ୍ୟ ସ୍ୱାମୀ ଶ୍ରୀ ପଙ୍କଜ ମହାନ୍ତି କେବଳ 'ୟେସ୍ ସାର୍' କହି କହି ଏହାର କାଣିଚାଏ ବି ଭୋଗ କରୁନାହାନ୍ତି । ଡାକିବା ମାତ୍ରେ ହାତରେ ଡିକ୍‌ଟେସନ୍ ଖାତା ଓ ଗୋଟାଏ ମୁନିଆ ପେନ୍‌ସିଲ୍ ନେଇ ହାଜର ।

ମାନମୟୀ ଏମିତି ଥରେ ଥରେ ସ୍ୱାମୀଙ୍କୁ ଭର୍ତ୍ସନା କରନ୍ତି । ଝିଅ ତ ଶତକରା ଶହେ ଆଧୁନିକା । ତା'ର ବରାଦ ଶୁଣିଲେ ଆଖି ଖୋସି ହୋଇଯିବ । କ୍ଷେନୋ ବାବୁ ହତଚକିତ ହୋଇ ଯାଆନ୍ତି । କ୍ଷେନୋ ଚାକିରିରେ ହାତ ଚିକ୍‌କଣ କରିବାର ସୁଯୋଗ ନାହିଁ । ସତେ, ଏ କଥା ବୁଝାଇଲେ ବି ଗୃହସ୍ଥଳିର କେହି ମାନୁ ନାହାନ୍ତି ।

ଶ୍ରୀ ପଙ୍କଜ ମହାନ୍ତିଙ୍କର ବାତ୍ସଲ୍ୟ ମମତା ଏକମାତ୍ର ପୁତ୍ର ଉପରେ ରହିଛି । ସୁଧାର ସୁଶାନ୍ତ ଏଇ ପୁଅ ତାଙ୍କର ନିଜ ଘରେ ରାତ୍ରିବାସ କରନ୍ତି ନାହିଁ । ଏଗାର ଶ୍ରେଣୀର ଛାତ୍ର; ଏଇ ବୟସରୁ ଏବଂ ଏଇ ଶ୍ରେଣୀରୁ ସେ ରାଜଧାନୀର ବାଳିକା-ସମାଜର କିଏ କଅଣ, ରୀତିମତ ଏନ୍‌ସାଇକ୍ଲୋପେଡ଼ିଆ ତିଆରି କରି ରଖିଛି । ସେହି ସବୁ ପୃଷ୍ଠାରେ ଯାହାଙ୍କର ନାମାଙ୍କିତ ରହିଛି, ତାଙ୍କ ପଛରେ ଗୋଡ଼ାଇବାକୁ ତା'ର ଗୋଟାଏ ସାଇକେଲ୍ ଦରକାର । ଏ ଯାଏ ଏଇ ଅତ୍ୟାବଶ୍ୟକ କୈଶୋରୀୟ ପଦାର୍ଥ ଯେ ତା'ର ପିତା ପ୍ରଦାନ କରିପାରିନାହାନ୍ତି, ତାହାରି ଅଭାବ ମର୍ମଶୂଳ ହୋଇଛି ତା' ପକ୍ଷରେ ।

ଧିକ୍ ସେ ଜନକ ! ଧିକ୍ ସେ ବାତ୍ସଲ୍ୟ ! ପୂଜାଛୁଟି ହେବା ପୂର୍ବରୁ ନୂଆ ଚକ୍ ଚକ୍ ସାଇକେଲ୍ ଖଣ୍ଡିଏ ବାପାଙ୍କୁ ଦେବାକୁ ହେବ । ନହେଲେ ସେ ଘରେ ନିଆଁ ଲଗାଇବ, ସବୁ ପୋଡ଼ି ପାଉଁଶ କରିବ ।

ମାଆ ମାନମୟୀ ଏହାକୁ ସମର୍ଥନ କଲେ ।

କହିଲେ– ତୁମକୁ ଲାଜମାଡୁନି– ପୁଅ ଗୋଟାଏ କିବା ସାଇକେଲ୍ ମାଗୁଛି– ସେକ୍ରେଟେରୀଏଟ୍‌ରେ କେତେ କ'ଣ ଲୁଟି ହୋଇଯାଉଛି... ଛାର ଗୋଟାଏ ସାଇକେଲ । ଯଦି କିଣିବାକୁ ଶକ୍ତି ଯୋଗାଇନାହଁ କଳେବଳେ କୌଶଳରେ ଗୋଟାଏ କିଛି କରିପାରୁନ ?

ପୁଅ ହାବୁଲ ବି କଥାଟା ପସନ୍ଦ କଲା । ଡାକନାମ ହାବୁଲ୍... ଭଲ ନାଁରେ କେହି ତାକୁ ନଡାକିବାରୁ ତା'ର ବିବାହବେଦିରେ ନାମକରଣ ହୋଇପାରେ ବୋଲି ଗୋଟାଏ ଚିନ୍ତା ଏପରି ରହିଛି ।

ସ୍ତ୍ରୀଙ୍କଠାରୁ ଅଯୋଗ୍ୟତା ପାଇଁ ଧିକ୍‌କାର, ପୁତ୍ରମଣିଙ୍କଠାରୁ ତଦ୍ରୂପ ଧିକ୍‌କାର, ଝିଅଙ୍କଠାରୁ ସେହିପରି ଅସଦ୍‌ଭାବ ଜାଣି ଏଥର ଶ୍ରୀ ପଙ୍କଜ

ମହାନ୍ତି ସ୍ଥିର କଲେ, କିଛି ଗୋଟାଏ ସେ କରିବେ । 'କଳେବଳେ କୌଶଳେ' ଏଇ କଥାଟା ଈଶୋପନିଷଦର ପ୍ରଥମ 'ଶ୍ଳୋକ' ଭଳି ତାଙ୍କୁ ଜଣାଗଲା । କାରଣ ଏହି ଶ୍ଳୋକରୁ ଚିଦାନନ୍ଦ ସରସ୍ୱତୀ ଆରମ୍ଭ କରି ସେଦିନ ସନ୍ଧ୍ୟାରେ 'ସୋରେଇଏ ପାଣି' ଭାଷଣ ଦେଇଥିଲେ ।

ଷ୍ଟେନୋଙ୍କ ରୁମ୍ । ରାଜଧାନୀର ବିଶାଳ ସେକ୍ରେଟେରିଏଟ୍ ପ୍ରାସାଦ । ତାଙ୍କ ଟେବୁଲ୍ ଉପରେ ଖୋଲା ଫାଇଲ୍ । ସେଥିରେ ସେକେଟ୍ରେରୀଙ୍କ ପାଖକୁ ଏକ ନୋଟ୍ ଲେଖାଯାଇଛି ।

ହେଡ୍ ଆସିଷ୍ଟାଣ୍ଟ ବରଦା ବାବୁଙ୍କର ସୋରେଇ କେଉଁଦିନୁ ଭାଙ୍ଗି ଯାଇଛି । ସେ ପାଣି ପିଇବା ପାଇଁ ହନ୍ତସନ୍ତ ହେଉଛନ୍ତି । ଏକଥା ଷ୍ଟେନୋଙ୍କ କର୍ତ୍ତବ୍ୟ ସେକ୍ରେଟେରୀଙ୍କୁ ଜଣାଇ ପ୍ରତିବିଧାନ କରିବା; ଅର୍ଥାତ୍ ଗୋଟାଏ ନୂଆ ସୋରେଇ କିଣିବା ପାଇଁ ଅର୍ଡ଼ର କରାଇଆଣିବା ।

ସ୍ୱାମୀ ଚିଦାନନ୍ଦ ସରସ୍ୱତୀଙ୍କର ଭାଷଣ ପରେ କେବଳ ସୋରେଇ ସ୍ୱପ୍ନ ଦେଖିଚାଲିଛନ୍ତି ଶ୍ରୀ ପଙ୍କଜ ମହାନ୍ତି । ନୋଟ୍ ନିଜେ ଲେଖିଛନ୍ତି । ସେ ବର୍ତ୍ତମାନ ଉଠିଯିବେ ସେକ୍ରେଟେରୀଙ୍କ ପାଖକୁ । ଅର୍ଡ଼ର କରାଇଆଣିବେ । ବ୍ରିଟିଶ୍ ଅମଳରୁ ଏଇ ପଦ୍ଧତି । ସାମାନ୍ୟ ଟଙ୍କାଏ ଦୁଇଟଙ୍କାର ପଦାର୍ଥ ପାଇଁ ସର୍ବୋଚ୍ଚ ହାକିମଙ୍କର ଦସ୍ତଖତ ଓ ସମର୍ଥନ ଆବଶ୍ୟକ । ସେ ଜାତିଟା ଜାଣିଥିଲା, କିପରି ଧନ– ସମ୍ପତ୍ତିର ସତ୍ ଉପଯୋଗ କରିବାକୁ ହୁଏ ।

ଚାହିଁଲେ ଶ୍ରୀ ପଙ୍କଜ ସେ ସୋରେଇ ଶବ୍ଦଟାକୁ । ଚାହିଁ ଚାହିଁ, ଦୀର୍ଘକାଳ ଚାହିଁ ତାଙ୍କର ନିଜ ହାତ ଅକ୍ଷରକୁ ସେ ଚିହ୍ନି ପାରିଲେ ନାହିଁ । ତାହା ନିର୍ଗୁଣ ବ୍ରହ୍ମ ହୋଇଗଲା । ପୁଣି ନିମିଷକେ ତାହା ସଗୁଣ ଆକାରରେ ବଢ଼ି ବଢ଼ି 'ସାଇକେଲ' ଆକାର ଧରିଲା ।

ସ୍ୱାମୀ ଚିଦାନନ୍ଦଙ୍କ ବାଣୀ "ସବୁ ସେଇ ମୂଳ ପଦାର୍ଥରୁ ନିଃସାରିତ..." । ଏଇ ଦର୍ଶନ ଶ୍ରୀ ପଙ୍କଜଙ୍କୁ ଦମ୍ଭ ଦେଲା ।

ସେ 'ବ୍ରହ୍ମ ବ୍ରହ୍ମ' କହି ଚାଲିଲେ ସେକ୍ରେଟେରୀଙ୍କ ପାଖକୁ । ଗୋଟାଏ କଅଣ ଛୋଟକାଟର ବୈଠକ ବସିଛି ସେଠାରେ । ଅନେକ ଲୋକ । ଏହାହିଁ ସୁଯୋଗ ।

– କଅଣ ପଙ୍କଜ ବାବୁ ?

– ଆଜ୍ଞା ଗୋଟାଏ ଦସ୍ତଖତ ।

– ଓଃ, ଦେଖୁଛ ଏତେ କାମ ।

– ଆଜ୍ଞା ଗୋଟାଏ ଦସ୍ତଖତ ।

ହେଡ୍ ଆସିଷ୍ଟାଣ୍ଟଙ୍କର ସୋରେଇଟି ଭାଂଗି ଯାଇଛି ଯେ...

– ଆଚ୍ଛା ।

ନୀଳିମ କାଳିରେ ସେକ୍ରେଟେରୀ ଦସ୍ତଖତ୍ କଲେ । ଫାଇଲ୍‌ଟାକୁ ଖାପ୍ କରି କାଖପୁଟରେ ସମ୍ପାଦି ଶ୍ରୀ ପଙ୍କଜ ମହାନ୍ତି ନିଜ ଦପ୍ତରକୁ ଚାଲି ଆସିଲେ ।

ସନ୍ଧ୍ୟାବେଳେ ଘରକୁ ଫେରି ସ୍ତ୍ରୀଙ୍କୁ ପ୍ରଥମ ପ୍ରେମମୟ ଡାକରେ ଅଭ୍ୟର୍ଥନା କରି କହିଲେ, ହାବୁଲ୍‌ର ମନୋବାଞ୍ଛା ପୂର୍ଣ୍ଣ ହେବ । ମୁଁ ଜାଣି ନଥିଲି

ମାନମୟୀ, ଯେ ମୋ ଭିତରେ ଏତେ ଦକ୍ଷତା ରହିଛି, ଏତେ ପ୍ରଜ୍ଞା ରହିଛି । ଯଥାର୍ଥରେ କହିଥିଲେ ଚିଦାନନ୍ଦ ସରସ୍ୱତୀ, ଯେ ମଣିଷ ହିଁ ବ୍ରହ୍ମ, ଶକ୍ତିମୟ ବ୍ରହ୍ମ, ବ୍ରହ୍ମୋସ୍ମି ।

ଏବେ ହାବୁଲ୍ ନୂଆ ରାଲେ ସାଇକେଲ୍‌ରେ ବସି ରାଜଧାନୀଯାକ ପଇଁତରା ମାରୁଛି, ରାତି ନାହିଁ ଦିନ ନାହିଁ । କେଉଁ ଝିଅ କାନ୍ଧରେ ହାତ ରଖୁଛି ତ କାହା ବେଣୀରେ ଫୁଲ ଖୋସୁଛି । କାହା ଗଣ୍ଡରେ ଚୁମାଟା ଦେଉଛି ତ, କାହା ଆଖି ଆଗରେ ନିଜ ଫଟୋ ଦେଖାଉଛି ।

ଶ୍ରୀ ପଙ୍କଜ ମହାନ୍ତିଙ୍କ ପରିବାରରେ ପୂଜାଛୁଟିରେ ଆନନ୍ଦ ହିଲ୍ଲୋଳ । ପୁଅ ନୂଆ ସାଇକେଲ ପାଇଛି । ପିତାର ପିତୃତ୍ୱ ଯଥାର୍ଥରେ ବିକଶିତ ହୋଇଛି । ଏହା କଅଣ ନିରାନନ୍ଦ ବିଷୟ ହୋଇପାରେ ?

ମାନମୟୀଙ୍କ ସହିତ ଶ୍ରୀ ପଙ୍କଜ ଏକା ଥାଳିରେ ଆଜି ଖାଇଲେ; ଏକାଠି ସିନେମା ଦେଖିଗଲେ । ଏକା ବିଛଣାରେ ରାତି ପୁହାଇବାବେଳେ ମାନମୟୀ ସ୍ନିଗ୍ଧ ଆନନରେ ପଚାରିଲେ–

– ହଇଏ, ଏତେଗୁଡ଼ାଏ ଟଙ୍କା କେଉଁଠୁ ଆଣିଲ ? ଏଇ ଯେ ନୂଆ ସାଇକେଲ୍ ହାବୁଲ୍‌ର...

ଶ୍ରୀ ପଙ୍କଜ ମାନମୟୀଙ୍କ ଗଭାକୁ ହଲାଇଦେଇ କହିଲେ– କେବଳ ଟାଇପ୍ ମେସିନ୍ ଏମିତି କାମ କରିଦେଲା ଗୋ ମାନ ! ସୋରେଇ ଜାଗାରେ 'ସାଇକେଲ୍' ଟାଇପ୍ କରିଦେଲି । କିଏ କ'ଣ ମିଳାଇ ଦେଖେ କି ?

ହାକିମ ତ ବଡ଼ ବଡ଼ ଯୋଜନା, ବଡ଼ ଟୁର୍ ପ୍ରୋଗ୍ରାମ୍, ବଡ଼ବଡ଼ ନୌକା ବିହାରର ଆୟୋଜନ କରିବାକୁ ବ୍ୟସ୍ତ । ଏ ଛୋଟକାଟିଆ ଚାରି ବା ପାଞ୍ଚଟା ଟଙ୍କାର ହେର୍ ଫେର୍‌ରେ କଅଣ ଯାଏ ଆସେ ?

ଆଗଭରା ହୋଇ ସ୍ୱାମୀଙ୍କୁ ମାନମୟୀ ଗୋଟିଏ ଗଭୀର ଚୁମ୍ବନ ଦେଲେ । ଅନେକ କାଳ ହେଲା ଏପରି ଉପଚାର ସେ କରିନଥିଲେ ।

ଏଣେ ହେଡ୍ ଆସିଷ୍ଟାଣ୍ଟ ନୂଆ ସୋରେଇରୁ ପାଣି ପିଉଛନ୍ତି; ମାତ୍ର ଟଙ୍କାଏ ଚାରିଅଣା ଦାମ୍ । ସେତିକି ଯାହା ଶ୍ରୀ ପଙ୍କଜଙ୍କର ବ୍ୟକ୍ତିଗତ ଖର୍ଚ୍ଚ ହୋଇଗଲା ।

ସ୍ୱାମୀ ଚିଦାନନ୍ଦ ସରସ୍ୱତୀ ବର୍ତ୍ତମାନ ଋଷିକେଶରେ ବିଶ୍ରାମ ନେଉଛନ୍ତି । ତାଙ୍କର ଭାଷଣ ସାର୍ଥକ ହୋଇଛି ।



# ଅରବିନ୍ଦଙ୍କ ପଦାରବିନ୍ଦ

କୋରାପୁଟର ଏକ ଘଞ୍ଚ ବନାନୀପରିବୃତ ଅଖ୍ୟାତ ପଲ୍ଲୀରେ ଯେଉଁଦିନ ଶୁଭଶଙ୍କରଙ୍କୁ ଶ୍ରୀ ଅରବିନ୍ଦଙ୍କର ଫଟୋଚିତ୍ର ସମକ୍ଷରେ ଧ୍ୟାନରତ ଥିବାର ଦେଖିଥିଲି, ତା' ପରଠାରୁ ମହାନଦୀ ଭାର୍ଗବୀ ପ୍ରଭୃତି ନଦୀରେ ବହୁ ଜଳ ପ୍ରବାହିତ ହୋଇଯାଇଛି ।

ହେବାର କଥା । ସୃଷ୍ଟିର ଚିରନ୍ତନ ବିଧିରେ ଏହି ପବହମାନତା ହିଁ ପ୍ରମାଣ କରେ ଜୀବନ ସ୍ରୋତମୁଖୀ, ବହିଯିବା ହିଁ ଏକାର ସ୍ୱଧର୍ମ ।

କୋରାପୁଟ ପ୍ରଭୃତି ଓଡ଼ିଶାର ଦକ୍ଷିଣାଞ୍ଚଳରେ ଗୋଟାଏ ପଦବୀ ଆରୂଢ଼ ହୋଇ ମୁଁ ସରକାରୀ କାର୍ଯ୍ୟରେ ନିରତ ଥିଲି । ମୋର ଧାରଣା ନଥିଲା ଗିରିବାସୀ ବନଜୀବୀମାନଙ୍କର ଜୀବନ ସହିତ ଏକାନ୍ତ ହୋଇଯାଇ ପୁଣି ଶାନ୍ତ ଆକାଶ ମଧୁକ୍ଷରା ଧରିତ୍ରୀକୁ ଅଧ୍ୟାତ୍ମ ସ୍ତରରେ ସ୍ପର୍ଶ କରି ଏହି ଅତି ସାଧାରଣ ଓଡ଼ିଶାର ଜଣେ ନାଗରିକ ଶ୍ରୀ ଅରବିନ୍ଦଙ୍କର ପଦତଳେ ବସି ସମୟ ଯାପନ କରୁଛନ୍ତି ।

କେତେ ଏମିତି ନାମ ଗୋତ୍ରହୀନ ପ୍ରାକୃତ ମଣିଷ ଓଡ଼ିଶାର ନିଭୃତ ଗୋପନ ସ୍ଥାନମାନଙ୍କରେ ଏବେ ବି କୁଟୀର ରଚନା କରି ସହର ଜନସମୁଦ୍ରଠାରୁ ବିଚ୍ଛିନ୍ନ ହୋଇ ଯୋଗ ସାଧନା କରୁଥିବେ ।

ସେମାନଙ୍କର ଇତିବୃତ୍ତ କେହି ରଚନା କରିବେ ନାହିଁ କି ସେପରି କରିବା ଶ୍ଳାଘ୍ୟ ନୁହେଁ; କାରଣ ନୀରବତା ହିଁ ସେମାନଙ୍କ ଜୀବନର ପ୍ରଥମ ଯଜ୍ଞାନୁଷ୍ଠାନ, ଯାହା ପରେ ଆଉ କିଛି ଉର୍ଦ୍ଧ୍ୱ ଭାବରେ ଆଚରଣ ସମ୍ଭବ ହେବ ।

ଦୀର୍ଘକାଳ ବିତିଯାଇଛି । ସ୍ମୃତିରେ ସବୁ ଭରଣା ରହିନାହିଁ । ଛୋଟ ଛୋଟ ବଉଦ ଭାସିଗଲା ଭଳି ମନାକାଶ ଯେତିକି ଆଚ୍ଛାଦିତ, ସେତିକି ସୁଦୀପ୍ତ ।

ମତେ ପାଛୋଟି ନେଲେ ଆଶ୍ରମର ଦ୍ୱାରପ୍ରାନ୍ତରୁ ଶୁଭଶଙ୍କର। ସେ ରୂପ, ସେ ଶରୀର ଓ ଭାବାନୁସଙ୍ଗ ଦେଖିଲେ ମନେହେବ ସାଧାରଣ ଦେହଧାରୀ ମଣିଷଠାରୁ ଏ ଲୋକ ନିଶ୍ଚିତରେ ଉପରକୁ ଯାଇଛନ୍ତି । ତାହାହିଁ ତ ଶ୍ରୀ ଅରବିନ୍ଦଙ୍କର ନିର୍ଦ୍ଦେଶ; ଚେତନାକୁ ପ୍ରସାର କର । ଉପରୁ ଯେଉଁ ଭଗବତ୍ ଚାପ ଆସୁଛି, ତାହାକୁ ସର୍ବ ଆସ୍ପୃହାରେ ପ୍ରାଣମୟ ଆକୃତିରେ ଗ୍ରହଣ କରିନିଅ । ସେଥିପାଇଁ ହୃଦୟ– ପାତ୍ର ରହୁ ପରିଷ୍କାର; କାରଣ ମଳିନତା ହିଁ ବିଷଦୃଶ, ସାଧନାର ଅନ୍ତରାୟ ।

କକ୍ଷ ଭିତରେ ପଶିଯିବା ମାତ୍ରେ କି ଅନନ୍ତ ପ୍ରଶାନ୍ତି ହୃଦୟର ପ୍ରତ୍ୟେକ ଅନୁଭବରେ ସୁରକ୍ଷିତ ହୋଇଗଲା । ଫୁଲ ପତ୍ରର ବିରାଟ ଆୟୋଜନ । ପ୍ରଦୀପ ବତିର ସୁଗନ୍ଧ ଚାରିଆଡ଼େ ସଞ୍ଚାରିତ ହେଉଛି । ନିର୍ମଳ ପରିବେଶ । ଗ୍ରନ୍ଥାଗାରରେ ଅରବିନ୍ଦ ରଚନାବଳୀ ।

ପ୍ରତ୍ୟେକ ବୁଧବାର ସନ୍ଧ୍ୟାରେ ପାଠଚକ୍ର ହୁଏ । ଆରଣ୍ୟକ ଅଶିକ୍ଷିତ ଆଦିବାସୀ ପରିବାର ଠୁଳ ହୁଅନ୍ତି ସେହି ସ୍ନିଗ୍ଧଶ୍ୟାମ ବନଛାୟା ତଳେ । ବୁଝନ୍ତୁ ନ ବୁଝନ୍ତୁ, ସେମାନେ ଚାହିଁ ରହନ୍ତି ଯୁଗ୍ମ ମୂର୍ତ୍ତି ଶ୍ରୀ ଅରବିନ୍ଦ ଓ ଦିବ୍ୟଜନନୀଙ୍କ ମୂର୍ତ୍ତିଆଡ଼େ ।

ଏ ସବୁର ଉଦ୍‌ଗାତା ଶୁଭଶଙ୍କର । ପ୍ରବର୍ତ୍ତକ ସେହି । ଗୌରବର୍ଣ୍ଣ ରାଜକୁମାର ସମ ଏହାଙ୍କର

ଶାରୀରିକ କାନ୍ତି ଓ ମାନସ ଦୀପ୍ତି ମୋତେ ସେଦିନ ଲୋଭାତୁର କରିଥିଲା, ଜୀବନରେ ଯେପରି ଯାଙ୍କ ସଙ୍ଗ ବର୍ଜିତ ନ ହୁଏ । ସତ୍‌ସଙ୍ଗର ଏପରି ଏକ ପ୍ରଭାବ, ଟିକିଏ ମନ ମୁକୁଳିଗଲେ,ସେହି ଦିବ୍ୟ ପଥ ଦେଇ ତେଣିକି ଆସିବ ପୂର୍ଣ୍ଣାଙ୍ଗ ସମର୍ପଣ, ମହାବୋଧିର ପ୍ରକାଶ ।

କେଉଁ ମସିହାର ରାଜନୈତିକ ନିର୍ବାଚନ, ମୋର ମନେନାହିଁ । ତେବେ ଶୁଭଶଙ୍କରଙ୍କ ଆଶ୍ରମ ପରିଦର୍ଶନ ପର ଘଟଣା, ବହୁକାଳ ପରେ ବୋଧହୁଏ । ଓଡ଼ିଶାରେ ରାଜନୈତିକ ଅସ୍ଥିରତା ତ ଲାଗିରହିଛି ।

ସିନେମା ଦେଖା ବା ଖେଳ ପଡ଼ିଆର ଖେଳାଳି ବଦଳ ଭଳି କି ଉଠା କାବିନ୍‌ର ଉଠାପଡ଼ା, ଭଙ୍ଗା ଓ ପୁନର୍ନିର୍ମାଣ ରୀତି ସଦୃଶ ଓଡ଼ିଶାରେ ନିର୍ବାଚନ– ତାମସା ଗୋଟାଏ ଦେହସୁହା ବ୍ୟାଧିରୂପେ ରାଜ୍ୟ ଶରୀରରେ ଦେଖାଦେଇ ଆସିଛି । ଆଗକୁ ବି ସେଇଆ ହେବ । ସେଥିରୁ ଜନଗଣଙ୍କର ନିସ୍ତାର ନାହିଁ ।

ପଣ୍ଡିଚେରୀରୁ ଶ୍ରୀଅରବିନ୍ଦଙ୍କ ଆଶ୍ରମକୁ ଭକ୍ତି ନୈବେଦ୍ୟ ଢାଳିବାକୁ ଯାଇଥାଏ ସେ ଥର । ସେ ପୁଣ୍ୟଭୂମିରେ ଟିକିଏ ପାଦଚାରଣା କରିଦେଲେ ଓ ସମାଧି କରରେ ଆଣ୍ଠୁମାଡ଼ି ପ୍ରଣତ ହୋଇଗଲେ, ଯାହା ଆଧ୍ୟାତ୍ମ୍ୟ ସ୍ପନ୍ଦନ ସଞ୍ଚିତ ହୋଇଯାଏ, ପୁନର୍ବାର ମୋହଗ୍ରସ୍ତ ସଂସାର ଜଞ୍ଜାଳ ବିଷରେ ଘାରି ହେବାବେଳେ ତାହା ଅବ୍ୟର୍ଥ ନିଦାନ ମନେହୁଏ ।

ବସିଥିଲି, ଓଡ଼ିଆ ସାଧକ ତ୍ୟାଗୀ କୃଷ୍ଣବନ୍ଧୁଙ୍କ ପ୍ରକୋଷ୍ଠରେ । ପଚାରି ବୁଝୁଥିଲି ତାଙ୍କ କାର୍ଯ୍ୟାଳୟ ଓ ଓଡ଼ିଶାରେ ପାଠଚକ୍ରର ପ୍ରସାର ଓ ବିକାଶ କିପରି ସମାହିତ ହେଉଛି ।

ହେଠାତ୍ କେହି ଜଣେ ଗୋଟିଏ ଟେଲିଗ୍ରାମ୍ ଆଣି କୃଷ୍ଣଚନ୍ଦ୍ରଙ୍କର ଟେବୁଲ୍‌ରେ ରଖିଦେଇଗଲେ । ସେ ତାହା ଫଟାଇ ଆଖି ବୁଲାଇଦେବା ମାତ୍ରେ ପୁଣି ସେ ଆଖି ଦୁଇଟିକୁ ମୁଦ୍ରିତ କରି ଦୀର୍ଘଶ୍ୱାସ ପକାଇ ନୀରବ ହୋଇଗଲେ ।

ମୁଁ ସଂସାରବାସୀ । ଟେଲିଗ୍ରାମ ମାନେ ଭୟ ଓ ଆଶଙ୍କାର ରକ୍ଷଦୂତ ବୋଲି ଆମେ ଭାବୁ... ଏହା ହିଁ ସଂସ୍କାର ହୋଇଆସିଛି । ତେଣୁ ମୁଁ କହିଲି–

'କଅଣ ଅଶୁଭ ଖବର ?'

କୃଷ୍ଣବନ୍ଧୁ ଧୀରେ ଆଖି ଫିଟାଇ କହିଲେ–

'ମୁଁ ବୁଝିପାରୁନି, ଶ୍ରୀମା' ଶ୍ରୀ ଅରବିନ୍ଦଙ୍କୁ ଧାରଣ କରି ଏମାନେ କିପରି ଏଭଳି କୁକର୍ମ କରିପାରନ୍ତି । ମୂଳ ଚେତନା ତ ଏତେ ବିଷାକ୍ତ ରହିଛି, ସେଠାରେ ଊର୍ଦ୍ଧ୍ୱ ପ୍ରସାରଣ ସମ୍ଭବ ହେବ କୁଆଡୁ ? ଅଥଚ ଏମାନେ ଆସନ୍ତି ଆଶ୍ରମକୁ ପ୍ରତି ମାସରେ, ପରିବା କାଟିବାକୁ ଅନୁମତି ମାଗନ୍ତି, ଧ୍ୟାନ କରୁ କରୁ ଶୋଇପଡ଼ନ୍ତି, ହଲେଇଲେ ଉଠନ୍ତି ନାହିଁ । ସବୁ ପେଖନା । ଆଚରଣରେ ତ ଶୁଦ୍ଧଭାବ ଆସିଲାନାହିଁ ? ଶେଷକୁ ଦିବ୍ୟଜନନୀଙ୍କୁ କଅଣ ରାଜନୀତି ଅଙ୍ଗନକୁ ଟାଣି ନେଇଯିବ ? ମୂର୍ଖ...'

ହସ ଓ କ୍ରୋଧର ଯୁଗପତ୍ ଭଙ୍ଗିମା ଏହି ସାଧକଙ୍କର ମୁହଁରେ ପରିସ୍ଫୁଟ ହୋଇଯିବା ମାତ୍ରେ ଆମେ ସମସ୍ତେ ଯେଉଁମାନେ ବସିଥିଲୁ ଆତଙ୍କରେ ଶୀଘ୍ର ସ୍ଥାନ ତ୍ୟାଗ କରିବାକୁ ମନେକଲୁ ।

କିନ୍ତୁ ମୋର କୌତୂହଳ ହେଲା ଟେଲିଗ୍ରାମରେ କଅଣ ଏପରି ବକ୍ତବ୍ୟ ଅଛି ଯେ ସାଧକଙ୍କର ସ୍ୱାଭାବିକ ଅତି ପରିଚିତ ପ୍ରଶାନ୍ତ ଓ ଆନନ୍ଦଘନ ମୁଖମଣ୍ଡଳରେ ଏତେ ବିରକ୍ତି ଓ ବିତୃଷ୍ଣାର ପ୍ରଲେପ ?

ପଚାରିଦେଲି–

'ଟେଲଗ୍ରାମ୍‌ଟା କିଏ ପଠେଇଛନ୍ତି ଓ କଅଣ ବକ୍ତବ୍ୟ ?'

କୃଷ୍ଣବନ୍ଧୁ ହସିଲେ– ଏ ହସ ଯେପରି କଳାଛାଇଟାକୁ ଅପସାରଣ କରି ଗୋଟାଏ ବିଦ୍ୟୁତ୍ ସଞ୍ଚାର ଥୋଇଦେଲା ଆମ ସମସ୍ତଙ୍କ ହୃଦୟରେ ।

"ଶୁଭଶଙ୍କର ତା'ର କରିଛି ଯେ ସେ ମନିଅର୍ଡ଼ରରେ ଶହେଟଙ୍କା ମାଆଙ୍କୁ ପ୍ରଣାମି ପଠଉଛି ପ୍ରାର୍ଥନା କରି, ସେ ଯିମିତି ନିର୍ବାଚନରେ ଜୟଯୁକ୍ତ ହୋଇ ଗୋଟିଏ ଏମ୍.ଏଲ୍.ଏ ହେବ ଓ ତାଆରି ମାଧ୍ୟମରେ ଦେଶସେବା କରିବ । ଓଃ, କି ଦେଶସେବକ ସତେ ?" ଏତକ କହି କୃଷ୍ଣବନ୍ଧୁ ଟେଲିଗ୍ରାମ୍‌ଟାକୁ ଫାଇଲ୍ କରିରଖିଦେବା ପାଇଁ ନିର୍ଦ୍ଦେଶ ଦେଲେ ଓ ଆମକୁ ଚାହିଁ କହିଲେ– "ଛାଡ଼, ଦିବ୍ୟଜନନୀ ସବୁ ଜାଣନ୍ତି । ଫୁଲ ଭିତରେ ମୃତ୍ୟୁପାଣ୍ଡୁର କୀଟଟି ବି ସମର୍ପିତ ହୋଇଯାଏ ତାଙ୍କ ପାଖରେ । ଫୁଲର ପାଖୁଡ଼ା ଫୁଟିଥିଲା, ସେତିକି ଯାହା ସତ୍ୟ; ବାକି ସବୁ ଅନୃତ, ତେଣୁ ପରିବର୍ଜନୀୟ ।"

ଚମତ୍କାର ଦର୍ଶନ । ତରୁଣ ବୟସରୁ ଘର ସଂସାର ଛାଡ଼ି, ବିବାହ ବନ୍ଧନରେ ଜଡ଼ିତ ନ ହୋଇ ଅରବିନ୍ଦ ପାଦବନ୍ଦନ ତଳେ ଯେ ଆତ୍ମା ପ୍ରତିନିୟତ ସମର୍ପିତ, ତାଙ୍କ କଣ୍ଠରୁ ଏ ଦର୍ଶନର ଉଚ୍ଛ୍ୱାସ କଅଣ ଲୋକଙ୍କୁ ମୁଗ୍ଧ ନ କରିବ ?

ଆମେ ସମସ୍ତେ ଆଚ୍ଛନ୍ନଭାବରେ କ୍ଷଣମାତ୍ର ରହିଗଲୁ ।

ବିଦାୟ ନେଇ ଫେରିଆସିବା ପରେ ମୋର ମନେହେଲା ଆଶ୍ରମ ସମ୍ବନ୍ଧୀୟ ଯାହା ତତ୍ତ୍ୱ ମୋର ଆଜିଯାଏ ହୃଦୟ କକ୍ଷ ଭିତରେ ଆବଦ୍ଧ ଥିଲା, ତାହା ସହିତ ଆଉ ଗୋଟିଏ ବିଚାର ସଂଲଗ୍ନ ହେଲା । ଶୁଭଶଙ୍କର ତେବେ ଆଜି ରାଜନୈତିକ ଜଗତକୁ ଚାଲିଆସିଛନ୍ତି । ଭଲ କଥା, ଜୀବନ ଯେତେବେଳେ ସର୍ବୋଦୟ ପାଇଁ ଆମନ୍ତ୍ରିତ, ସେତେବେଳେ ରାଜନୀତି କାହିଁକି ଏହି ଉଦୟ ଭିତରେ ନୂତନ ସ୍ୱାଦ ନଦେବ ?

କିନ୍ତୁ ଦୁଃଖ ମୋର ଅପରିମିତ । ଯାହାକୁ ପଦ୍ମାସନରେ ଦେଖି ଆସିଥିଲି ଶ୍ରୀଅରବିନ୍ଦ ବିଗ୍ରହ ସମକ୍ଷରେ, ସେ ଆସନ ଆଉ ପଦ୍ମମଣ୍ଡିତ ରହିବ ତ ? ସେହି ଶୁଭଶଙ୍କର, ଆଉ ସେ ଶୁଭଶଙ୍କର ଥିବ ତ ଶେଷ ପର୍ଯ୍ୟନ୍ତ ?

ସବୁ ଭୁଲିଗଲି । ନିର୍ବାଚନ ଗଲା, ଆସିଲା । ତେବେ ଏତିକି ଜାଣିଲି ଶୁଭଶଙ୍କର ହାରିଯାଇଛନ୍ତି । ଶ୍ରୀମା'ଙ୍କର କୃପାକଟାକ୍ଷ ପରିବର୍ତ୍ତେ ସେ ପାଇଲେ ରୋଷଦୀପ୍ତ ନୟନ ଈକ୍ଷଣ ? ଅର୍ଥ ଦେଇ ଭଗବତୀଙ୍କୁ ବି ଅଧୀନା କରିବା ପ୍ରବୃତ୍ତି ! ହାୟରେ ମଣିଷ, ଯଥାର୍ଥରେ ତୁ ମଣିଷ ।

ଏହି ସବୁ କଥା ମନ ଭିତରେ ବିଚାର ଆଲୋଚନା କରୁଥିବାବେଳେ ରେଡ଼ିଓରୁ ବାର୍ତ୍ତା ପ୍ରସରି ଆସିଲା:

'ପ୍ରଦେଶ କଂଗ୍ରେସ ସଭାପତି ଶ୍ରୀ ଶୁଭଶଙ୍କର ମିଶ୍ର ଦିଲ୍ଲୀରୁ ଉଡ଼ାଜାହାଜ ଯୋଗେ ଆଜି ରାଜଧାନୀରେ ପହଞ୍ଚି ଭଞ୍ଜନଗର ଯାଇଛନ୍ତି । ସେଠାରେ ଦୁଇଦଳ ରାଜନୈତିକ କର୍ମୀ ଭାଷଣ ଠେଙ୍ଗା ପାହାରରେ ଆହତ ହୋଇଥିବାରୁ ସେ କିଛି ଗୋଟାଏ ସମାଧାନ କରିବେ ଓ ତତ୍‌ପରେ ଜୟପୁର ଯାଇ ମନ୍ତ୍ରୀଙ୍କ ସଭାରେ ତାଙ୍କରି ଦଳର ଲୋକେ ଫୁଲମାଳ ପରିବର୍ତ୍ତେ ଜୋତାମାଳ କିପରି ଉପହାର ଦେଲେ, ତାହାର ତଦନ୍ତ କରି, କିଏ କିଏ ଏପରି କଲେ, ଶାସ୍ତିବିଧାନ ଦେଇ ଫେରିଆସିବା ପରେ ପୁଣି ଦିଲ୍ଲୀ ଯିବେ । କାରଣ ସେଠାରେ ବିଭିନ୍ନ ରାଜ୍ୟର କଂଗ୍ରେସ ପ୍ରାଦେଶିକ ସଭାପତିଙ୍କ ମେଳନରେ

ଭାଷଣ ଦେଇ ଫେରିଆସି ରାଜ୍ୟ ଅତିଥି ଆଳୟରେ ବିଦେଶୀ ରାଷ୍ଟ୍ରଦୂତଙ୍କ ସମ୍ମାନାର୍ଥେ ପ୍ରଦତ୍ତ କକଟେଲ୍ ପାର୍ଟିରେ ଯୋଗଦେବେ ।'

ଆଶ୍ୱସ୍ତ ହେଲି । ଶୁଭଶଙ୍କରଙ୍କର ଜୀବନ ପରିଧି ବେଶ୍ ଲମ୍ବା ଚଉଡ଼ା ହୋଇଛି ଯା ମଧ୍ୟରେ !

ବାଃ... ବେଶ୍ !

ଗୋଟାଏ ସୁବାସିତ ପ୍ରଦୀପଦୀପ୍ତ ବର୍ଣ୍ଣାଳୀ ପୁଷ୍ପଗୁଚ୍ଛ– ସମ୍ଭାରରେ ପ୍ରାଣମୟ କକ୍ଷ ଭିତରେ ଶ୍ରୀ ଅରବିନ୍ଦ ଚିତ୍ରପଟ ତଳେ ବ୍ରାହ୍ମଣ ଶୁଭଶଙ୍କରଙ୍କ ଧ୍ୟାନ ଦୃଷ୍ଟି ଓ ତାଙ୍କ ସହିତ ବନାନୀ– ବନ୍ଧୁ ଆଦିବାସୀ ନରନାରୀଙ୍କ ନୀରବ ଉପବେଶନର ଚିତ୍ର ମୋ ଆଖିରେ ଶତ କମଳ କଳି ଭଳି ଫୁଟିଗଲା ସ୍ମୃତିର କେଉଁ ଅତଳସ୍ପର୍ଶୀ ପୀଠଦେଶରୁ; ଆଉ ତା' ସହିତ ସୁରାପାନରତ, କକ୍‌ଟେଲ୍ ପାର୍ଟିର ନାୟକ, ବହୁ ରାଜନୈତିକ କମିଟି କମିଶନର ସଭ୍ୟ, ସଭାପତି, ସମ୍ପାଦକ, ଉଡ଼ାଜାହାଜ, ହେଲିକେପ୍‌ଟର ତଥା ଷ୍ଟେଟ୍ କାର୍‌ର ଯାତ୍ରୀ । 'ମୋର ସମୟ ନାହିଁ, ସମୟ ନାହିଁ, ବଡ଼ କାର୍ଯ୍ୟବ୍ୟସ୍ତ'ର ପ୍ରଚଣ୍ଡ ରାଜନୈତିକ ତୁଙ୍ଗନେତା ଶୁଭଶଙ୍କରର ଚିତ୍ର ସତେ କେତେ ଅମେଳ !

ହୁଏ ଏମିତି ।

ପୁଣି କେତେକାଳ ଚାଲିଗଲା ସମୁଦ୍ର ହୃଦୟ ତଳେ...

କୋରାପୁଟ ପିଲାଏ ଡାକିଲେ ଭଞ୍ଜଜୟନ୍ତୀର ସଭାରେ କିଛି କହିବାକୁ । ମାନି ଗଲି । ଅରଣ୍ୟ ପ୍ରକୃତି ମତେ ନିମନ୍ତ୍ରଣ କଲା । ଅମଳିନ ଥିଲା ଶୁଭଶଙ୍କରଙ୍କର ସେ କ୍ଷୁଦ୍ର ଅରବିନ୍ଦ ଆଶ୍ରମ ସ୍ମୃତି ।

ଭାବିଲି ଆଜି ସେ ବଡ଼ କଂଗ୍ରେସୀ ନେତା ହୋଇ ହଟ୍‌ଟମଟ୍ କାର୍ଯ୍ୟରେ ରତ ଥିଲେ ବି ନିଃସ୍ୱ ନୁହଁନ୍ତି । ତାଙ୍କର ହୃଦୟ ଦେବତା ଅରବିନ୍ଦଙ୍କର ସେ ବର୍ଣ୍ୟ-ଗୃହକୁ ଏବେ ବହୁ ଅର୍ଥ ଲଗାଇ ସୁରମ୍ୟ କରିପାରିଥିବେ ।

ଆଳୟର ଭୂଷଣ ଓ ଆଭିଜାତ୍ୟ ବେଶ୍ 'ଆକର୍ଷଣୀୟ ହୋଇଥିବ ଏବଂ ସେଠାରେ କିଛି ସମୟ ଅତିବାହିତ କରିପାରିବି... ଏଇ ଜୀବନ୍ତ ଉଦ୍‌ବୋଧନ ମତେ କୋରାପୁଟକୁ ଟାଣିନେଇଥିଲା ।

ସମ୍ବାଦପତ୍ର ପୃଷ୍ଠାରେ...

ଶାନ୍ତିକାମୀ ଶୁଭଶଙ୍କର ଆଜି ମସ୍କୋ ରୱାନା ହେଲେ, ବିଶ୍ୱଶାନ୍ତି ପରିଷଦରେ ଯୋଗଦେବେ ।

ଆଜି ପୁଣି ଜି.ଡି.ଆର. ଜର୍ମାନୀରେ ... ବିଶ୍ୱ ଶିଶୁ ଉତ୍ସବରେ ପ୍ରଧାନ ପୁରୋଧା ଶୁଭଶଙ୍କର ।

ଷ୍ଟେଟ୍‌ସ୍‌ରେ... ଭାରତୀୟ ଶୁଭେଚ୍ଛୁ ଦଳର ଅଧିନାୟକ ଶୁଭଶଙ୍କର ।

ସବୁ ପଢ଼େ, ସବୁ ବୁଝେ ।

ସଭା ଶେଷରେ ମୁଁ ଇଚ୍ଛା ପ୍ରକାଶ କରି ଶୁଭଶଙ୍କରଙ୍କର ଅରବିନ୍ଦ ଆଶ୍ରମ ଦେଖିବି ।

ସେଠାର ଲୋକେ ସବୁ ଆୟୋଜନ କଲେ; କିନ୍ତୁ ମନେହେଲା କାହାର ଯିମିତି ଆଗ୍ରହ ନାହିଁ । ଅତିଥି ବୋଲି ମତେ ସହ୍ୟ କରିନେଲେ ।

ଯେ ଘରେ ଦୀର୍ଘକାଳ ପୂର୍ବେ ମୁଁ ପଶିଯାଇ ପ୍ରଶାନ୍ତି ଓ ଆନନ୍ଦ ଅନୁଭବ କରିଥିଲି, ସେ ଘର ସିମିତି ଥିଲେ ବି କେତେକ କନ୍ୟାଶ୍ରମର ଛାତ୍ର ସେଠାରେ ମେସ୍ କରିଥିବାର ଦେଖିଲି ।

ମଳା କୁକୁଡ଼ାର ପର, ଅଇଁଠା ବାସନ ଓ କେତୁଟା ଲୁଙ୍ଗି ପଡ଼ିଥିଲା ଏଣେତେଣେ ।

ଜିପ୍‌ଟା ପଛକୁ ଫେରିଲା । ମୁଁ ତା' ସହିତ !

■■■

# ଲାବଣ୍ୟର ଲବଣ

– ଖାଲି ଲୁଣ ?

– ହଁ ବାବୁ; ତୁଚ୍ଛା ଲୁଣ ।

– ଭାତ ?

– ଭାତ ନାହିଁ, ପଖାଳ; ବେଲା ତଳରେ ଧାପେ ଭାତ । ଗୋଳେଇ ଦିଏ, ପିଇ ଦିଏ ।

– ଭୋକ ମରେ ?

– ମରିବ କିମିତି, ଯୋଉ ନିଆଁକୁ ସେଇ ନିଆଁ ।

– ଏମିତି କେତେ ବର୍ଷ ଚାଲିଛି ? ମନ ଖୋଲି କହ ।

– ପିଲା ବଅସରୁ ଯୁବତୀ ହେଲି । ଗୋଟାଏ ଓଳି ଖାଏ, ଓଳି ତଳ ବେରେଣ୍ଡାରେ ଶୁଏ; ଖରା, ବରଷା, କାକର ସବୁଥିରେ ସେଇ ଏକା ଜାଗା, ଏକା ମାଟି ଉପରେ ଶୋଇଚି । ବାଘ ହେଣ୍ଟାଳ ଡେଇଁ ଚାଲିଯାଏ, ହରିଣ ଚିଲାମାରେ । ଶୋଇ ଶୋଇ ଭାବେ, ନ ମରି ବଞ୍ଚିଛି କିଆଁ ?

ଲାବଣ୍ୟର ଆଖି ତଳେ ଲୁହ ଜକେଇ ଆସିଲା । ଏ ଲୁହର ସ୍ୱାଦ ସହିତ ପଖାଳ ଲୁଣର ଲୁଣିଆ କେତେ ଥର ମିଶିଛି । ଆଖି ଦୁଇଟା ତ ଭଗବାନ ତିଆରି କରିଛନ୍ତି କେବଳ ଲୁହ ଢାଳିବା ପାଇଁ ।

ଫୁଲବାଣୀର ଘନ ଜଙ୍ଗଲ ଭିତରେ ବାସନା ଫୁଲ ମହକ ଆଉ ଝରଝର ଝରଣା– ପ୍ରକୃତି ଯେଉଁଠି ସାଜିଛି ଅନୁପମ ଶୋଭା ମଣିଷକୁ ପାଗଳ କରିବା ପାଇଁ, ସେ ଆରଣ୍ୟକ ନିଭୃତ ବସୁନ୍ଧରା ଉପରେ ଲାବଣ୍ୟ ବାନ୍ଧି ହୋଇ ରହିଛି, ତା'ର ମୁକ୍ତି ନାହିଁ । ଦେହଟା ମାଟିରେ ମିଶିଗଲେ ଅବା ସେ ଏ ବନ୍ଧନରୁ ମୁକୁଳିଯିବ ।

ଗଭାରେ ଗଭାଏ ବଣଫୁଲ, ଆଖିତଟରେ ଯୌବନର ତୁଳିରେ ମୋଆଏ କୁହୁକ କଳା । ପୀନବକ୍ଷ ଉପରେ ଅଙ୍ଗୀ ଖଣ୍ଡକର ଅସଜଡ଼ା ବନ୍ଧନୀ । ଛବିଟି ଦୋହଲୁଛି । ଓଠ ଖୋଲିଲେ ସୁଷମାର ଢେଉ । କ୍ରମଭାରୀ ଦେହର ସୋପାନେ ସୋପାନେ ସାର୍ଥକ ଯୌବନର ଲୀଳା । ଶ୍ୟାମା ହୋଇ ସେ ବି ରୂପବତୀ ।

ଏ ରୂପକୁ ଲୁଟିନେବା ପାଇଁ ବଣ– ଜଙ୍ଗଲରେ ବି ହେଣ୍ଟାଳ ମାରୁଥିବା ବାଘର ଅଭାବ ନାହିଁ । ଲାବଣ୍ୟ କିନ୍ତୁ ଏଯାଏ ନିଜକୁ ବଞ୍ଚାଇ ଆସିଛି । ବାବୁ ଜଣକ ସବୁ କଅଣ ଲେଖୁଥିଲେ କାଗଜ ଉପରେ । ରାଜଧାନୀ ସହରରୁ ଆସିଛନ୍ତି । ଚାରିଆଡ଼େ ଲୋକ, ଆଦିବାସୀ ଭାଇ ବନ୍ଧୁ । ଲାବଣ୍ୟର ସାହସ ଦେଖି ସମସ୍ତେ ଆବାକାବା ହୋଇଯାଇଛନ୍ତି । ଯୁବତୀ ଝିଅ ମୁହଁ ଖୋଲି ସବୁ କଥା କହିଯାଇଛି ।

– କେତେ ଟଙ୍କା ତୋ ବାପର ବାପା ସାହୁକାରଠୁ କରଜ ନେଇଥିଲା ?

– ମୋଟେ କୋଡ଼ିଏଟା ଟଙ୍କା ।

– ଦେଇପାରିଲାନି ?

– ନା ।

– ବାପା ବି ଦେଇପାରିଲାନି ?

– ସେ ତ ମରିଯାଇଛି, କହୁଥିଲା କିଛି ଶୁଝିଛି ।

– କେତେ ଦିନ ଏମିତି ଏଠି ପଡ଼ିରହିଥିବୁ ?

– ମରିବାଯାଏ ।

ଅବିବାହିତ ମାଜିଷ୍ଟ୍ରେଟ୍ ମିହିର କୁମାର ଲାବଣ୍ୟର ଜମାନବନ୍ଦୀ ନେଉ ନେଉ ଆତ୍ମବିସ୍ମୃତ ହୋଇଯାଇଥିଲେ । ଏତେ ସ୍ପଷ୍ଟ ଭାବରେ ଏମିତି ସହଜ ସରଳ ଭଙ୍ଗୀରେ କେହି ଯୁବତୀ କଥା କହିବାର ସେ ଜାଣିନାହାନ୍ତି ।

ଅଥଚ ତା'ର ଆଖି ନାଚୁନାହିଁ । ଅଧର ନିମନ୍ତ୍ରଣ କରୁନାହିଁ । କଟୀର ଦୋଳନ ନାହିଁ । ବେପରୁଆ ।

ମୁଗ୍ଧ ହେଲେ ମିହିରକୁମାର ।

– ଆଚ୍ଛା, ସେ ଗଛଛାଇରେ ତୁ ଟିକିଏ ବସ୍ ।

ଆସିଲେ ଡକା ହୋଇ ବଳିୟାର ସିଂହ । କନେଷ୍ଟବଳ ଡାକିଆଣି ହାକିମଙ୍କ ଆଗେ ଛିଡ଼ା କରାଇଲା । ଛିଡ଼ା ହେଉ ହେଉ ସେ ପାଟିକଲେ;

– ମୁଁ ସବୁ ବର୍ଷ ପାର୍ଟିକୁ ଚାନ୍ଦା ଦିଏ, ମାଗଣ ଦିଏ । ମତେ ଧମକେଇ ପାରିବନି ।

ମିହିରକୁମାର କହିଲେ– ଆଜ୍ଞେ, ମୁଁ ସେ କଥା ଜାଣେ ନାହିଁ ।

ମୁଁ ପଚାରୁଛି ଏ ଯୁବତୀ ଝିଅକୁ ଏଇ ମୁହୂର୍ତ୍ତରେ ତୁମେ ଛାଡ଼ିଦେବ କି ନାହିଁ ? ମାନେ ସେ ଆଉ ତମ ପାଖରେ ତମ ଘରେ ଦାସୀବୃତ୍ତି କରିବ ନାହିଁ । ରାଜି ?

ବଳିୟାର ସିଂହ ମୁହଁ ଫୁଲାଇଲେ । ନିଶ ପଟାକ ଫୁଲିଗଲା । କହିଲେ:

– ତା'ର ପୂର୍ବପୁରୁଷ କରଜ ନେଇଥିଲେ ଟଙ୍କା । ସର୍ତ୍ତ ଥିଲା ସୁଧ– ମୂଳ ନ ଶୁଝିଲେ ତା'ର କେହି ନା କେହି ବେଠି ଖଟିବ । ଚବିଶ ଘଣ୍ଟା ଘରେ ରହି କାମ କରିବ । ତେଣୁ ନିୟମ କହୁଛି, ତାକୁ ମୁକୁଳାଇବା ପାଇଁ କେହି ସମର୍ଥ ନୁହନ୍ତି । ଅକାରଣେ ଆପଣ ଏଠି ଗୋଟାଏ ଭିଡ଼ ଜମାଇଛନ୍ତି କାହିଁକି ?– ଏ ଲାବ୍, ଯାଃ, ଜଙ୍ଗଲ ସାଫ୍ କର, ନହେଲେ ଏକ ନାତ୍ ଦେବି ଯେ...

ମିହିରକୁମାର କନେଷ୍ଟବଲ୍‌ଠାରୁ ହାତକଡ଼ି ନେଇଆସି ପିଲା କଣ୍ଢେଇ ଖେଳିଲା ଭଳି ହାତ ଉପରେ ନଚେଇଲେ ।

– ବଳିୟାର ସିଂହ ! ଲାବଣ୍ୟକୁ କଅଣ ଖାଇବାକୁ ଦେଇ ଆସିଛ ଏତେ ବର୍ଷ ଭିତରେ ?

– ହେଃ ହେଃ, ଯାହା ଆମେ ଖାଉ ।

– କଅଣ ତମେ ଖାଅ ?

– ମାଉଁସ, ଭାତ, କ୍ଷୀରୀ, ତରକାରି, ପିଠା । ଆମ ଘର ଖାନ୍‌ଦାନ ଘର, ଅଭାବ ନାହିଁ । ଦେଖୁଥିବେ କିମିତି କୋଶ କୋଶ ଦୂରଯାଏ ଲମ୍ବି ଯାଇଛି ମୋର କ୍ଷେତ ଖମାର, ଗାଈ ଗୁହାଳ, ଘର ବୁନିଆଦି ।

ମିହିର ହସି ହସି କହିଲେ– ଲାବଣ୍ୟ କହୁଥିଲା ସେ ପଖାଳ ଆଉ ଲୁଣ ପିଆଜ ଖାଇ ଖାଇ ପିଲାଟି ବୟସରୁ ଏବେ ଯୁବତୀ ହୋଇଛି । କଅଣ ସତ ?

– ସବୁ ମିଛ ।

– ମିଛ ?

– ମିଛ ନୁହେଁ ? ପଖାଳ ଖାଇ ଖାଇ ଏମିତି ଯୁଆନ ଯୁବତୀ କିଏ ହୋଇପାରେ ?

ଜମିଥିବା ଲୋକେ ଆଖି ଠରାଠରି ହେଲେ । ଗୋଟାଏ ମଧୁର ଗୁଞ୍ଜନ ସଞ୍ଚରିଗଲା ।

ମିହିରକୁମାର ଆନମନା ହୋଇଗଲେ । ଚାହିଁଲେ ଲାବଣ୍ୟ ଆଡ଼େ... ଆଶ୍ଚର୍ଯ୍ୟ... ଏକ କଳା ମୁଗୁନିପଥର ଖୋଦେଇ ନାରୀମୂର୍ତ୍ତି ସେଠି ବସି ନଖରେ ଦାଗ କାଟୁଛି ବଣୁଆ ଘାସ ଉପରେ । ପ୍ରକୃତି ଗନ୍ତାଘରର ଗୋଟିଏ ସୁରକ୍ଷିତ ମାଣିକ୍ୟ ବିଭବ, ଯାହା ଉପରେ ଆକାଶରୁ ବର୍ଷିଆସିଛି ଚନ୍ଦ୍ରମା କିରଣ, ସୂର୍ଯ୍ୟ ସ୍ୱର୍ଣ୍ଣାଭା ଅଜାଡ଼ିଛି ଯାହାର କୁନ୍ତଳ କଲ୍ଲୋଳରେ । ବନ ଶୋଭାର ସବୁଜିମା ଯାହାର ଅଙ୍ଗରାଜିରେ ରୋପଣ କରିଛି ଶ୍ୟାମଳ ପରିପୋଷଣ ।

– ବୁଝିଲ ବଳିୟାର ସିଂହ ! ତୁମର ସେଥିରେ ବାହାଦୂରୀ ନାହିଁ । କେବଳ ପଖାଳ ଜାଉ ଖାଇ ବି ଏମାନେ ହୋଇଯିବେ ରୂପବତୀ । କାରଣ ପ୍ରକୃତି ଏମାନଙ୍କୁ ସଜେଇଦେବ ନିଜ ଆଧାରରେ ମଧୁ ମିଶ୍ରଣ କରି । ଛାଡ଼, ମୁଁ ସେଥିପାଇଁ ଆସିନାହିଁ ।

– କଅଣ ପାଇଁ ଆସିଛନ୍ତି ଆଜ୍ଞା ? ଯାକୁ ନେଇଯିବେ ?

– ବଳିୟାର ସିଂହ, ତମର ଇଜ୍ଜତ ମୁଁ ବୁଝିପାରୁଛି । ଲାବଣ୍ୟର ଗୋଡ଼ରେ ଯେ ବେଡ଼ି ପଡ଼ିଛି ସେ ବେଡ଼ିକି ମୁଁ ମୁକୁଳେଇଦେବି, ଆଉ ସେହି ଲୁହା ଜଞ୍ଜିରକୁ ତୁମେ ଅମାନିଆ ହେଲେ ତୁମ ହାତଗୋଡ଼ରେ ପକାଇ ତୁମକୁ ଜେଲଖାନାକୁ ପଠାଇଦେବି ।

ସମସ୍ତେ ମାଜିଷ୍ଟ୍ରେଟ୍‌ଙ୍କ କଥା ଶୁଣି ତଟସ୍ଥ ହୋଇଗଲେ ।

– ଆଚ୍ଛା, ଆଉ ଗୋଟାଏ ପ୍ରଶ୍ନ । ଯାକୁ ମାରଧର କେବେ ତୁମେ ବା ତୁମର ପରିବାର କେହି କରିନାହାନ୍ତି ?

ତୁଣ୍ଡରୁ ଏତିକି କଥା ବାହାରୁ ବାହାରୁ ଲାବଣ୍ୟ ଦଉଡ଼ି ଆସି ପିଠିପଟ ଲୁଗାକୁ ଖୋଲି ଦେଇ ଚିତ୍କାର କଲା;

– ଦେଖ ବାବୁ ଦେଖ, ଚିଆଁ... ଚିଆଁ– ଦାଆକୁ ତତେଇ ଏଇ ଚିଆଁ ଦାଗ ଦେଖ...

ମିହିର ଗର୍ଜିଉଠିଲେ– ଅମଣିଷ ଜାନୁଆର, ଏ କଅଣ କରିଛ ? ଏତେ ନିର୍ମମ ? ନିଜ ଝିଅ ହୋଇଥିଲେ ଏମିତି କରିପାରିଥାନ୍ତ ?

ବଳିୟାର ସିଂହ ପାଟିକଲେ– ପ୍ରମାଣ, ମୁଁ, ମାନେ, ଆମେ କରିଛୁ ବୋଲି ପ୍ରମାଣ ?

– ଆଉ କଅଣ ସେ ନିଜ ପିଠି ଉପରେ ନିଜେ ଚିଆଁ ଲଗେଇଚି ? ମାଜିଷ୍ଟ୍ରେଟ୍ କହିଲେ ।

ସେତିକିବେଳୁ ଲାବଣ୍ୟ ଛିଡ଼ା ହୋଇଛି ପିଠିକୁ ଖୋଲିରଖି... ଚାରି ଗୋଟି କଳା ଲାଞ୍ଛିତ ଦାଗ ତା'ର ପୃଷ୍ଠଦେଶକୁ ସିଆର ସିଆର କରି କାଟି ଦେଇଛି । ଉନ୍ନତ ବକ୍ଷର ସମାତଟଯାଏ ଖସିଆସିଥିବା କଳଙ୍କ ରେଖାକୁ ଦେଖୁ ଦେଖୁ ମିହିର କେଉଁ ସ୍ୱପ୍ନରାଜ୍ୟକୁ ଉଡ଼ିଗଲେ । କନକଦୋଳାରେ ଲାବଣ୍ୟକୁ ବସାଇ ତା'ର ଏ ଶ୍ରୀବତ୍ସ– ଲାଞ୍ଛନକୁ ସ୍ପର୍ଶ କରୁଥିଲେ ଏବଂ କହୁଥିଲେ, ପ୍ରିୟତମେ, ଭୁଲିଯାଅ ଏ ଦାଗକୁ । ତମ ଅନ୍ତରରେ ଏ ମ୍ଳାନିମା ନାହିଁ, ଯାହା ଅଛି ବାହାରେ । ସେ ଥାଉ... ମୋର ସେଥିରେ ଯାଏ ଆସେ ନାହିଁ । ତୁମେ ଆଉ ମୁଁ...

ସ୍ୱପ୍ନ ଡୋର ଛିଣ୍ଡିଗଲା ।

– ହଉ ଯା, ବସ୍ ସେଠି । ଶୁଣ ବଳିୟାର ସିଂହ ! ଯୁଗ ପାଲଟିଛି । ଅନ୍ଧାରରୁ ଆଲୁଅକୁ ଆସ । ଏ ରାଜ୍ୟରେ ପୁରୁଣାକାଳିଆ ଦାଦନ ଶ୍ରମିକ ରହିବେ

ନାହିଁ । ତୁମେ ସବୁ ସାହୁକାର ମହାଜନ । ସାମାନ୍ୟ ଋଣ ଦେଇ ଏମାନଙ୍କୁ ଖଟେଇ ଖଟେଇ ମାରୁଛ । ତମ ନାଁରେ ଆହୁରି ଅଭିଯୋଗ ଅଛି । ତୁମେ ମହାଜନୀ କାରବାର ଚଳେଇଛ; ଦୁଃଖୀ ରଙ୍କୀଙ୍କ ସମ୍ପତ୍ତି ନେଇଛ । ବିଚରା ଏମାନେ ପଶୁଭଳି ତୁମ ଘରେ ଖଟୁଛନ୍ତି । କୋରଡ଼ା ଖାଇଛନ୍ତି । ଜର ରୋଗରେ ପଡ଼ିଲେ ବି ପାଣି ଟିକିଏ ଏମାନଙ୍କ ତୁଣ୍ଡରେ ଦେବାକୁ, ଆହା ଟିକିଏ କରିବାକୁ କେହି ନାହିଁ । କୁକୁରଟାକୁ ମୁଠାଏ ଅଇଁଠା ଫୋପାଡ଼ିଦେବା ଭଳି ଏମାନଙ୍କୁ ଅଇଁଠା ଖାଇବାକୁ ଦେଉଛ । ତମେ କଅଣ ଭୁଲିଗଲ ଏମାନେ ମଣିଷ ନୁହଁନ୍ତି ?

ସବ୍‌ଇନ୍‌ସ୍‌ପେକ୍‌ଟରଙ୍କୁ ହାକିମ କହିଲେ– ହାତକଡ଼ା ଲଗାଅ ! ଏଇ ବଳିୟାର ସିଂହକୁ ହାତକଡ଼ା ଲଗାଅ । ଗୋଟାଏ ଗୋଟାଏ ଗାଁରୁ ଏମିତି ଗୋଟାଏ ଗୋଟାଏ ନରପିଶାଚଙ୍କୁ ଦେଖି ଥାନାକୁ ପଠାଇଦେଲେ ବାକି ସମସ୍ତେ କ୍ରୀତଦାସମାନଙ୍କୁ ମୁକ୍ତ କରିଦେବେ... ଲଗାଅ...

... ବାବୁ, ବାବୁ, ନା, ନା ବାବୁ, ପେଜ ଦେଉ, ପଖାଳ ଦେଉ, ମାଡ଼ ମାରୁ, କୋରଡ଼ାରେ ପିଠି ଫଟାଉ, ତା'ର ଲୁଣ ଖାଇଛି ବାବୁ ପିଲାଟି ଦିନରୁ । ତା'ର ପିଲାଙ୍କୁ କାଖେଇଚି, ଖେଳେଇଚି, ତା'ର ବଳଦ, ମଇଁଷି, ଚରେଇଚି, ତାଙ୍କ ମୁହଁକୁ ତୋରାଣି ଦେଇଛି । ଅଧର୍ମ ହେବ । ମୁଁ ଲୁଣ ଖାଇଛି ବାବୁ ! ହଁ, ବାବୁ ମୁଁ ଜାଣେ । ରେଡ଼ିଓରୁ ଶୁଣିଛି ଏବେ ମୋ ଭଳି ନାରୀମାନଙ୍କୁ ସରକାର ମୁକୁଳେଇ ଦେଉଛନ୍ତି । ମତେ ମୁକୁଳେଇ ଦିଅ ବାବୁ, ହେଲେ ବଳିୟାର ସିଂହ ବାବୁଙ୍କୁ ଜେଲକୁ ପଠାଅନି । ହାତରେ ବେଡ଼ି ଦିଅନି । ଅଧର୍ମ ହେବ, ବାବୁ, ମୁଁ ଲୁଣ ଖାଇଚି ।

ଅଶ୍ରୁମତୀ ଲାବଣ୍ୟ । ସେ ମୁକ୍ତି ପାଇବ, ଆନନ୍ଦର ଅଶ୍ରୁ, ତା'ର ଖାଉନ୍ଦ ଦେଖିଯିବ, ଦୁଃଖର ଅଶ୍ରୁ... ଏଭଳି ଅଦ୍ଭୁତ ଲୁହ ଝରଣାର ଗଙ୍ଗୋତ୍ରୀ କିଏ କେବେ ଦେଖିଛି ?

ସେଦିନ ଫୁଲବାଣୀର ଘନ ଅରଣ୍ୟ ମଧ୍ୟରେ ଯେଉଁ ଦୃଶ୍ୟ ଅଭିନୀତ ହୋଇଗଲା, ତା'ର ସ୍ପର୍ଶ ଓ କମ୍ପନ ଲାଗିଥିଲା ପତିତପାବନ ଶ୍ରୀଜଗନ୍ନାଥଙ୍କର ରକ୍ତଧ୍ୱଜାରେ...

ମନ୍ଦିର ଶାସକ ଚନ୍ଦ୍ରନାଥ ବାବୁ ସରକାରୀ କର୍ମଚାରୀଙ୍କୁ ହସି ହସି କହିଲେ– ଆଣିଲ ରେଜିଷ୍ଟ୍ରାରଟା ଗତ ଦୁଇ ଦିନ ଭିତରେ କେତେଜଣ ଯୁବକ ଯୁବତୀ ଶ୍ରୀମନ୍ଦିର ପ୍ରାଙ୍ଗଣରେ ପରସ୍ପରକୁ କର ସମର୍ପଣ କରି ନବ ଜୀବନ ଆରମ୍ଭ କରିଛନ୍ତି, ଦେଖିବା ।

– ପ୍ରାୟ ତିନିଶ । ଉତ୍ତର ମିଳିଲା ।

– ଅଦ୍ଭୁତ କଥା । ପ୍ରଶାସକ ଚିନ୍ତାମଗ୍ନ ହୋଇ ଏତିକି କହିଲେ ।

ସହକାରୀ କହିଲେ– ସାର୍, ଏଣିକି ବାଟ ଫିଟିଗଲା, ଅଳ୍ପ ଖର୍ଚ୍ଚରେ ବିବାହ କାର୍ଯ୍ୟ ଶ୍ରୀମନ୍ଦିରରେ ଚଳଣୀ ହୋଇଯିବ। ବାଜା ନାହିଁ, ରୋଷଣୀ ନାହିଁ, ଖାଇବା ଖୁଆଇବା ଧୁମ୍‌ଧାମ୍ ନାହିଁ, ଶାନ୍ତି ଓ ଆନନ୍ଦରେ ବାହାଘର ହୋଇଯାଉଛି । ଯୌତୁକ ନେବା ଦେବା ପ୍ରଶ୍ନ ଆଉ ନାହିଁ ।

ଚନ୍ଦ୍ରନାଥ ଖାତା ଉପରେ ଆଖି ବୁଲାଇ ଆଣୁ ଆଣୁ କହିଲେ– ଗୋଟାଏ ନୂଆ ଯୁଗ ଆରମ୍ଭ ହୋଇଛି । ଦେଖୁନ, ସବୁଆଡ଼େ ପ୍ରଗତିର ଚିହ୍ନ... ଗୋଟାଏ ନବ ଉନ୍ମାଦନା । ବଞ୍ଚିବାର ସ୍ୱପ୍ନ ଯିମିତି ସାର୍ଥକ ହେବାରେ ଲାଗିଛି... ଆରେ ଇଏ କଅଣ ? ଆମ ମିହିର ବାବୁ ଯେ... କନ୍ୟା ଲାବଣ୍ୟ ଦେବୀ... ବଡ଼ ଚାଲାଖ୍ ଲୋକ

ତ । କାହାକୁ ନ ଜଣେଇ ମାଜିଷ୍ଟ୍ରେଟ୍ ମିହିରବାବୁ ବାହା ହୋଇ ପଡ଼ିଲେ ? ଠିକ୍ ଅଛି । ତାଙ୍କୁ ଅଭ୍ୟର୍ଥନା କରିବା ଆମର କର୍ତ୍ତବ୍ୟ । ଏହିଭଳି ଶିକ୍ଷିତ ଯୁବକ... ଆରେ ଇଏ ପୁଣି କଅଣ ? କନ୍ୟାର ଘର ଫୁଲବାଣୀ, କଅଣ ଗାଁ ନାଁଟା ପଢ଼ିହେଉନାହିଁ । ପ୍ରଭୁ ଜଗନ୍ନାଥ ! ଖୁବ୍ ଲୀଳା ଲଗାଇଛ !!

ସମୟର ଚଳନ୍ତି ସୁଅ । ସେ ପଟେ ମଧୁଯାମିନୀର ମଧୁର ପରିବେଶ । ପୁଷ୍ପିତ ପୁଷ୍ପର ଘନ ଆସ୍ତରଣ ଉପରେ ବସିଛନ୍ତି ଡେପୁଟି କଲେକ୍ଟର ମିହିର କୁମାର । ଶଯ୍ୟା ପ୍ରାନ୍ତରେ ଅରଣ୍ୟ ଭିତରେ ସଞ୍ଚରଣଶୀଳା ସୂର୍ଯ୍ୟ, ଚନ୍ଦ୍ର, ଆକାଶ ଓ ବାରିପାତରେ ମନ ଓ ଶରୀରକୁ ଯେ ପ୍ରକୃତିର ତାଣ୍ଡବ ଓ ଲାସ୍ୟ ଉଭୟ ନର୍ତ୍ତନରେ ସୁକୁମାର ଓ କର୍କଶ କରିଛି ସେଇ ମୁକ୍ତ ବନଜୀବିନୀ କାମିନୀ ଲାବଣ୍ୟ ।

ଟିକିଏ ଦୂରରେ ପତିତପାବନଙ୍କର ରାଜବେଶର ଫଟୋଚିତ୍ର । ଧୂପ, ପୁଷ୍ପ, ଚନ୍ଦନର ସମ୍ମିଳିତ ବାୟୁ ପ୍ରବାହର ସୁଗନ୍ଧରେ ଦୁଇଜଣଙ୍କର ଜୀବନ ମଧୁଚକ୍ର ଆଜି ପବିତ୍ର ଓ ସୁରଭିତ ।

ଲାବଣ୍ୟ ଓଢ଼ଣାକୁ ଦୀର୍ଘ ଟାଣିଆଣି ମିହିରଙ୍କର ପାଦଯୁଗଳ ଉପରେ ନଇଁ ପଡ଼ିବା ବେଳକୁ ମିହିର ଧରି ପକାଇ କହିଲେ– ନା, ନା ଲାବଣ୍ୟ, ମୁଁ ନୁହେଁ, ଆଗେ ଦେବତା । ତମରି ନୀଳମାଧବ, ବିଶ୍ୱାବସୁଙ୍କର ଆଦରର, ଭକ୍ତିର ନିଧି, ଆଦିବାସୀର ଆଦିଦେବତା ଶ୍ରୀ ଜଗନ୍ନାଥ, ତାଙ୍କରି ପାଖେ ଆଗ ଢଳିଯାଅ । ମୁଁ ପରେ ।

କଳାଡୋଳା ସହିତ ଡୋଳା ମିଳାଇ ଲାବଣ୍ୟ ପ୍ରାର୍ଥନା କରିଥିଲା– ପ୍ରଭୁ ନୀଳାଚଳ ନାଥ, ଏ ଜୀବନକୁ ଏମିତି ନୂଆ ରୂପ ଦେଲ ? କିପରି କଲ ?

ଆଖି ଦୁଇଟିରୁ ବହି ଆସିଥିବା ଦୁଇ ଟୋପା ଲୁହକୁ ପୋଛି ଆଣି ଲାବଣ୍ୟ ମିହିରଙ୍କ ପାଦତଳେ ପ୍ରଣାମ କରି ଛିଡ଼ା ହୋଇ ପଚାରିଥିଲା–

ବଲିୟାର ସିଂହଙ୍କର ଖବର କଅଣ ?

ମିହିର କହିଲେ– ଦୁଃଖ କରନି, ତାଙ୍କୁ ଜେଲ୍ ହୋଇଯାଇଛି ।

ଆଇନ୍ ତା' ବାଟରେ ଯିବ ଲାବଣ୍ୟ, କେହି ରୋକି ପାରିବେ ନାହିଁ । ପୁଣି ଯେତେବେଳେ ନୂଆ ଯୁଗ ଆରମ୍ଭ ହୋଇଛି, ନୂଆ ସଳିତା ଜଳୁଛି, ସେତେବେଳେ ଆଇନ୍ ଆହୁରି କଠୋର ହୋଇ ସମସ୍ତଙ୍କୁ ନ୍ୟାୟ ଆଉ ମୁକ୍ତି ଦେବ । ତା' ନହେଲେ ମୁଁ ତୁମକୁ ପାଇଥାନ୍ତି କିମିତି ?

ଆଉଥରେ ଲାବଣ୍ୟ ସ୍ୱାମୀଙ୍କ ପାଦତଳେ ଲୋଟି ପଡ଼ିବାବେଳେ ପ୍ରଦୀପ ଲିଭିଯାଇଥିଲା । ଆକାଶର ଦିଗ୍‌ବଳୟ ଛାଡ଼ି ଉଠିଆସୁଥିଲେ ଚନ୍ଦ୍ରମା । ନିର୍ମଳ ନଭରେ ନବ ଚନ୍ଦ୍ରର ଉଦୟ ଉତ୍ସବ ।



# ଶ୍ୱାନ ସଂସ୍କାର

ପ୍ରିୟାନନ୍ଦ ସ୍ୱାମୀ ଭାଷଣ ଦେଉଥିଲେ । ଆକାଶରେ ଆଲୋକିତ ଜ୍ୟୋସ୍ନାର ତରଙ୍ଗ । ବଡ଼ ମଧୁମୟ ପରିବେଶ ।

ସହର କିନ୍ତୁ ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକରେ । ବିପଣିମାଳାରେ ବିଭିନ୍ନ ପ୍ରକାର ବିଜୁଳିବତିର ସମାରୋହ । ଯାହା ହୋଇଥାଏ ସହର ବଜାରରେ । ଲୋକ ଗହଳି ଯିବା ଆସିବାର ଗତିଛନ୍ଦ।

ମନକୁ କଅଣ ଆସିଲା, ମୁଁ ଚାଲିଗଲି ଉପରକୁ । ସ୍ଥାନଟି ଗୋଟିଏ ମଠାଧୀଶଙ୍କର ମଠ । ସେହିଠାରେ ପ୍ରିୟାନନ୍ଦ ସ୍ୱାମୀ 'ଜୀବନରେ ଧର୍ମ' ସଂପର୍କରେ ପ୍ରବଚନ ଦେଉଥିଲେ ।

ଶ୍ରୋତାମାନେ ଅଭିଭୂତ ଅବସ୍ଥାରେ ଶୁଣିବା ପାଇଁ ଯେତେ ମନୋଯୋଗ ଦେଉଥିଲେ, ଶୁଣିପାରୁ ନଥିଲେ । ଶୁଣୁ ଶୁଣୁ ସେମାନେ ବ୍ୟସ୍ତ ବିରକ୍ତ ହୋଇ ଉଠୁଥିଲେ । ଅଥଚ କେହି ପ୍ରତିବନ୍ଧକକୁ ଦୂର କରିବା ପାଇଁ ଯତ୍ନ କରୁନଥିଲେ । ଆଶ୍ଚର୍ଯ୍ୟ...

ମୁଁ ଏକମାତ୍ର ଶ୍ରୋତା ଥିଲି, ଯିଏ ଏଡ଼େ ସୁନ୍ଦର ଭାଷଣକୁ ଶୁଣୁଶୁଣୁ ଉତ୍ତ୍ୟକ୍ତ ହୋଇଉଠୁଥିଲା; ମାତ୍ର ମୋର ନିଷ୍ଫଳ କ୍ରୋଧ ମତେ ହିଁ ଶେଷରେ ଧିକ୍କାର ଦେଲା, ମୁଁ ଧର୍ମସଭାରୁ ଯାହା ଶିକ୍ଷା ନ କଲି, ଅନ୍ୟ ଏକ ପରିସ୍ଥିତିରେ ତାହାଠାରୁ ମହାଶିକ୍ଷା ଓ ଜ୍ଞାନ ଲାଭ କଲି ।

ଘରକୁ ଫେରିଆସି ଭାବିଲି, ଜୀବନରେ ଏମିତି କ୍ୱଚିତ୍ ସତ୍ସଙ୍ଗ ମିଳେ । ପୁଣି ସନ୍ନ୍ୟାସୀମାନଙ୍କର ପ୍ରବଚନ ମଣିଷର ମୋହବନ୍ଧ କାଟି ଦିଏ, ସେତିକିବେଳେ ମନେହୁଏ ଏହି ବକ୍ତା, ସ୍ୱାମୀଜୀଙ୍କ ପଛେ ପଛେ ମୁଁ ଚାଲିଯିବି କି ? ସେ ଭଗବାନଙ୍କୁ ସାକ୍ଷାତ୍ କରିଛନ୍ତି ବୋଲି ସିନା ଅନୁଭବସିଦ୍ଧ କଥା କହି ଆମ ମନର କଳୁଷ କାଟିଦେଇଛନ୍ତି । ଛିଃ, ଏ ସଂସାର ଆସକ୍ତିରେ ମାତି ଆମେ ସତ୍ୟସ୍ୱରୂପକୁ ଭୁଲି ବସିଛୁ ।

ବୈରାଗ୍ୟ ରସରେ ମନ ପୂର୍ଣ୍ଣ ହୋଇଗଲା । କ୍ରମେ ତାହା ନିଷ୍ଫଳ ଅବସ୍ଥାକୁ ଆସିଗଲା । ଯଦି ସମଗ୍ର ଭାଷଣଟି ଶୁଣିବାରେ ବାଧା ଆସିନଥାନ୍ତା, ତେବେ କେତେ ପୁଣ୍ୟ ଯେ ସଞ୍ଚିତ ହୋଇପାରିଥାଆନ୍ତା, ତା'ର କଅଣ କଳନା ଅଛି ?

ମନେପଡ଼ିଲା ସ୍ୱାମୀଜୀ ସେହି ବିରକ୍ତ ପରିବେଶ ଭିତରେ ଅସୀମ ଧୈର୍ଯ୍ୟ ଧରି ପ୍ରବଚନ ଦେଉଥାନ୍ତି । ମୁଖମଣ୍ଡଳ ପ୍ରଦୀପ୍ତ । ଗଳାରେ ପୁଷ୍ପହାର । ପଦ୍ମାସନ। ମେରୁ ଅସ୍ଥି ସ୍ଥିର । ଅଧର ଦୁଇଟିରୁ ସ୍ଫୁରିଆସୁଥାଏ ଅମୀୟ ବଚନମାଳା ।

ସେ କହୁଥିଲେ– ଦେଖ ବନ୍ଧୁଗଣ ! ରେଳଯାତ୍ରା କରି ଦୂରପଥ ଯିବାକୁ ବସିଛ । ସାଙ୍ଗରେ ସାମାନ୍ ଧରିଛ । ମୁଣ୍ଡରେ ଲଦିଛ ବିସ୍ତରା, ଗୋଟାଏ ହାତରେ ସୁଟ୍‌କେଶ୍ । ଆର ହାତରେ ଜଳଖିଆର ଟିଫିନ୍ କ୍ୟାରିୟର୍ ଓ ପାଣି ବୋତଲ ।

ରାୟ ବସିପଡ଼ିଲେ ରେଳ ଡବାରେ । ତୁମ ସ୍ଥାନରେ ବସି ବି ତୁମେ ଓହ୍ଲାଉନାହଁ, ତମର ମଥା

ଉପରେ ଲଦା ହୋଇଥିବା ବିସ୍ତରାକୁ । ହାତରୁ ଖସାଉନାହଁ ପାଣି ବୋତଲ, ସୁଟକେଶ, ଆଉ ଜଳଖିଆ ଥାଳ; କିନ୍ତୁ ତୁମେ ଜାଣୁଛ ଦୀର୍ଘକାୟ ଏହି ରେଳଗାଡ଼ି । ଏ ସବୁ ସାମାନକୁ ରଖିବା ପାଇଁ ତା'ର ଗର୍ଭରେ ଅକୁଳନ ସ୍ଥାନ ଅଛି । ତୁମେ କିନ୍ତୁ ଧରିବସିଛ ଏଗୁଡ଼ାକୁ । ପାଖଛଡ଼ା କରୁନା କାହିଁକି ?

ସ୍ୱାମୀଜୀଙ୍କର ଆଖି ସ୍ଫୀତ ହୋଇଗଲା । ଶ୍ୱାସ ଖର ହେଲା । ସେ କହିଲେ, କାହିଁକି ? ତୁମ ମନରେ ଭୟ ଯେ ତୁମର ପ୍ରିୟ ବସ୍ତୁଗୁଡ଼ାକୁ ତୁମେ କାଳେ ହରାଇ ବସିବ ।

ତୁମର ଏତେଦୂର ଆସକ୍ତି ରହିଛି ଏହି ସବୁ ପଦାର୍ଥ ଉପରେ ଯେ ସେଗୁଡ଼ାକୁ ଛାଡ଼ି ତୁମେ ମୁକ୍ତ ଓ ହାଲୁକା ଭାବରେ ରେଳଡ଼ବାରେ ବସି ପାରୁନ, ବୋଧହୁଏ ତୁମର ଯାତ୍ରା ଶେଷ ହେବାଯାଏ ତୁମେ ତୁମର ଦେହ ମୁଣ୍ଡରେ ଏ ସବୁ ଧରି ରଖିଥିବ । ଓଜନ ଯୋଗୁ କଷ୍ଟ ପାଉଥିବ, କ୍ଲାନ୍ତ ହେବ, ଯାତ୍ରା ତୁମର ଆନନ୍ଦମୟ ହେବନାହିଁ ।

ପୁଣି ସେହି ପ୍ରତିବନ୍ଧକ । ଶୁଣି ହେଉନାହିଁ ଭାଷଣ । ମଝିରେ ମଝିରେ ମନ ପ୍ରିୟାନନ୍ଦଙ୍କ ବ୍ୟକ୍ତିତ୍ୱରୁ ଖସି ଆସି ଆଉ କୁଆଡ଼େ ଚାଲିଯାଉଛି । ଏକାଗ୍ରତା ଆସୁନାହିଁ । ବିରକ୍ତ ହେଲି । କେହି କ'ଣ ନାହାନ୍ତି ଏ ଆପଦଟାକୁ ଦୂର କରିଦେବା ପାଇଁ ? ସମସ୍ତେ ସହିଯାଉଛନ୍ତି ? ଏ କେମିତି କଥା ?

ସ୍ୱାମୀଜୀ ହସିଲେ । ପୁଣି ଆରମ୍ଭ କଲେ । ଆଃ ତାଙ୍କର କି ଉଦ୍ରିକ୍ତ ହସ । ଅନାବିଳ ମ୍ଲାନିମାର ସହିତ ସେ ଦିବ୍ୟ ହସ ।

ସେ କହିଲେ, "ଟ୍ରେନ୍‌ରୂପୀ ଭଗବାନଙ୍କୁ ନିଜର ସମସ୍ତ ଭାର ସମର୍ପଣ କରି ମାନବ ଆସକ୍ତିଶୂନ୍ୟ ହୋଇ ରହି ପାରନ୍ତିନାହିଁ ଏ ସଂସାରରେ । ଏହାହିଁ ଆଶ୍ଚର୍ଯ୍ୟ ! ସେ ପ୍ରଭୁ ଯେ କେଡ଼େ ଉଦାର, କେଡ଼େ ଦୟାଳୁ, ମଣିଷକୁ ଯେ ସେ କେତେ ଭଲ ପାଆନ୍ତି..."

ହଠାତ୍ କେହି ଜଣେ ପାଟି କଲେ– କିଏ ଏମିତି ଗୋଳମାଳ କରୁଛି, କର୍ମକର୍ତ୍ତା କଅଣ କରୁଛନ୍ତି ? ବନ୍ଦ କରିପାରୁ ନାହାନ୍ତି ?

ମୁଁ ଶୋଇ ପଡ଼ିଲି । ହରିନାମ ସ୍ମରଣ କରୁ କରୁ ନିଦ୍ରା ଗଲି । ତା'ପରେ... ସ୍ୱପ୍ନ... ଅପୂର୍ବ ସ୍ୱପ୍ନ । ରୋମାଞ୍ଚକର ସ୍ୱପ୍ନ...

ମଠ ତଳେ ଅନ୍ଧାର ଗର୍ତ୍ତ । ଚନ୍ଦ୍ରମା ସେଠାରେ ଅନୁପସ୍ଥିତ । ଏକ ଭୂଗର୍ଭ କୋଟର । ପାଉଁଶ, ମଳ, ଆବର୍ଜନା ଓ ମାଟିର ଏହି ଗର୍ତ୍ତ ଭିତରକୁ ଆସିଲା ଗୋଟିଏ କୁକୁରୀ । ତା'ର ଦେହଯାକ କ୍ଷତ । ଲାଞ୍ଜଟା ଅଧେ ଛିଣ୍ଡି ଯାଇଛି । ଆସିଲା ସେ । ଆସିବା ମାତ୍ରେ ତା'ର ଜିଭ ଲମ୍ବି ଗଲା, ଲମ୍ବି ଗଲା ସେଇଆଡ଼େ, ଯେଉଁଠି ତା'ର ଗର୍ଭର ଜୀବନୀସତ୍ତା ରୂପ ପାଇଛି ଗୋଟିଏ ଶିଶୁ ବିଗ୍ରହରେ ।

ଶିଶୁଟି ଏଇ ପକ୍ଷେ ବି ହେବନି । ତା'ର ଆୟୁ ଆଘ୍ରାଣରୁ ଜାଣିଲା ତା'ର ମାଆ ଆସିଛି । ସ୍ନେହ ନେଇ ଆସିଛି । ଅସରନ୍ତି ଚୁମ୍ବନ ନେଇ ଆସିଛି । କ୍ଷତ ବହୁଳ ତା'ର ଦେହରେ ଯେତିକି ଲୋମ ଥିଲା ସନ୍ତାନ ସ୍ପର୍ଶରେ ତାହା ଜାଗ୍ରତ ହେଲା । ବାତ୍ସଲ୍ୟାନୁଭବରେ ସେଗୁଡ଼ାକ ସିଧା ଛିଡ଼ା ହୋଇଗଲା ।

କୁକୁରୀ ଦୁଇ ହାତ ଦୁଇ ଗୋଡ଼ରେ ଗାତଟାର ପରିସରକୁ ଖୋଳି ବଢ଼ାଇ ଦେଲା । ପଶିଗଲା ସେହି ଖୋଲାସ୍ଥାନ ଭିତରକୁ । ଲମ୍ବିଗଲା ଚଉକାତ

ହୋଇ । ତା'ର ଏକ ଏକ ସ୍ତନରୁ ଝରିଆସିଲା କ୍ଷୀରଧାର । ଆନନ୍ଦରେ ସେ ଆଖି ବୁଜିଦେଲା । ଦିନକର କ୍ଳାନ୍ତି ଯେପରି କ୍ଷଣକରେ ନିର୍ବାପିତ ହୋଇଗଲା ।

କେବଳ ଚଅଁ ଚଅଁ ଶବ୍ଦ । ମାତୃ ସ୍ତନରୁ ଶ୍ୱାନ ଶିଶୁର କ୍ଷୀର ଟାଣିବାର ଅମୀୟ ଛନ୍ଦ । ପୂଜାରେ ହରିନାମ କୀର୍ତ୍ତନରେ ଯେଉଁ ସଙ୍ଗୀତ ନଥାଏ, ତାହାଠାରୁ ଅତୁଳନୀୟ ଏ ସ୍ୱର୍ଗୀୟ ସଙ୍ଗୀତର ପ୍ରବାହ ।

ମୁଁ ଶୁଣୁଥାଏ । କୁକୁରୀଛୁଆକୁ ଚାଟି ଚାଟି କହିଲା– ଜାଣୁରେ ଲିଟି (ନାଁ ଦେଇ ଦେଇଛି, ଏକୋଇଶା ହୋଇନାହିଁ) ଏ ଉପର ମହଲାରେ ବାବାଜୀ ଜଣେ ଧର୍ମ କଥା କହୁଛନ୍ତି । ଘଣ୍ଟାଏ ହେଲା, ତୁ କେଁ କେଁ ହୋଇ ଯେ ସାଂଘାତିକ ଚିତ୍କାର କଲୁ ନା, ଆଉ କେଉଁ ସଭା ହୋଇଥିଲେ, ଲୋକଗୁଡ଼ାକ ମାଡ଼ି ଆସି ତୋର କଅଁଳ ବେକକୁ ଟେକି ମୋଡ଼ି ଭାଙ୍ଗି ଏ ଗାତରୁ ସେ ରାସ୍ତା ତଳ ନର୍ଦ୍ଦମାକୁ ପକାଇ ଦେଇଥାନ୍ତେ । ରକ୍ଷା ହେଲା, ସେଇଟା ଧର୍ମସଭା । ଆଉ ଯେଉଁମାନେ ଶୁଣୁଥିଲେ, ସେମାନେ ସମସ୍ତେ ଧୀର ବ୍ୟକ୍ତି । ତେଣୁ ତୁ ବଞ୍ଚିଗଲୁ ।

ମୋର ଡେରି ହୋଇଗଲା ଧନ ! କଅଣ କହିବି ? କିଛି ନିଜେ ଖାଇଲେ ତ ପୁଣି ହଜମ ହୋଇଯିବା ଆଗରୁ ତୋ ପାଖରେ ବାନ୍ତି କରିଦେବି । ଏତିକିବେଳୁ ତତେ ନ ଶିଖେଇଲେ ତୁ ପରର ଅଇଁଠା, ବାନ୍ତି ଭୁଞ୍ଜିବୁ କିମିତି ? ଅବଶ୍ୟ ମୋ ଥନରେ ଏବେ ବି କ୍ଷୀର ଅଛି, ହେଲେ ଆଉ କେତେ ଦିନ ?

ଲିଟି ଚଅଁ ଚଅଁ ଦୁଧ ପିଇବା ଭିତରେ କହିଲା– ମାଆ, ମାଆ ମ, ମତେ ଭାରି ଭୋକ ହେଲା । ଆଉ ଏ ଉପର ମହଲାରେ କଅଣ ଗୋଟାଏ ବାଜାବାଜିଲା ଯେ ମୁଁ ଡରିଗଲି– ମୁଁ ତ ଆଗରୁ ଶୁଣି ନଥିଲି । ଭାରି ଡର ମାଡ଼ିଲା । ମାଆ ମ, ଆମେ ତ ପଶୁଜାତି– ମଣିଷଙ୍କୁ କଅଣ ଭୋକ ଲାଗେ ?

ମୁଁ ଦେଖିଲି ସ୍ୱାମିଜୀ ଖୁବ୍ ହସୁଛନ୍ତି । ହସି ହସି ବେଦମ୍ । କହିଲେ– ଭକ୍ତଗଣ ! ଦେଖ, ଶ୍ୱାନଶିଶୁ ବର୍ତ୍ତମାନ ଶାନ୍ତ । କେତେ ସମୟ ଚିତ୍କାର କରିବ ? ଆହା ବିଚାରା ! ଭୋକ କରୁଥିଲା, ମାଆ ପାଖରେ ନାହିଁ । ମାଇକ୍‌ର ଗର୍ଜନ । ବାହାଘର ରୋଷଣି ଏଇ ବାଟେ ଗଲା । ଡରିବନି ? ତମ ପିଲା ଏଇ ପରିସ୍ଥିତିରେ କଅଣ କରିଥାନ୍ତା ? ମରିଯାଇଥାନ୍ତା, ସକ୍‌ରେ ମରିଯାଇଥାନ୍ତା; କିନ୍ତୁ ପଶୁ ବୋଲି ଈଶ୍ୱର ତାକୁ ସହିବାର ଶକ୍ତି ଦେଇଛନ୍ତି ।

ପ୍ରିୟାନନ୍ଦ ସ୍ୱାମୀ କହିବାକୁ ଲାଗିଲେ– ଭୋକ ହେଲେ ଥରେ ଖାଇ ଦେଲେ ପଶୁ ତୃପ୍ତ ହୋଇଯାଏ । ତେଣିକି ସେ ଅନାସକ୍ତ । ପୁଣି ଅପେକ୍ଷା କରେ ବୁଭୁକ୍ଷା ଜାଗ୍ରତ ହେବାଯାଏ; କିନ୍ତୁ ମଣିଷର କଥା ଭିନ୍ନ । ଭୋକ ନ ଥିଲେ ବି ସେ ଖାଏ, ଖାଇବା, ଅତୃପ୍ତି ତା'ର ଚିରନ୍ତନ । ତେଣୁ ଆମେ ପଶୁ, ପାଶବିକ ଆମର ପ୍ରବୃତ୍ତି । ଶ୍ୱାନ ଛୁଆଟି ଶାନ୍ତ ହୋଇଗଲା । ତମେମାନେ କେତେ ବିରକ୍ତ ହେଉନଥିଲ ? ପ୍ରକାଶ୍ୟରେ ସ୍ଥିତପ୍ରଜ୍ଞ ଭାବ ଦେଖାଇଲେ ବି ମୁଁ ଜାଣିଥିଲି ତମ ଭିତରୁ ଅନେକ ଶ୍ୱାନଶିଶୁର ରୋଦନରେ ବିଚଳିତ ହେଉଥିଲ । ରୋଦନ କାହାର ନାହିଁ ?

— ମାଆ ମ, ମାଆ, ଯାହା ଖାଦ୍ୟ ପାଇଛୁ, ଜମେଇ ରଖୁନୁ କିଆଁ ? ସବୁଦିନ ଏମିତି ହଇରାଣ ହେଉଛୁ କାହିଁକି ? ଏ ଗାତରେ ଆଉ ଟିକିଏ ଖୋଳି ଜାଗା କରିନେ... ।

ଲିଟି ମାଆର ମୁହଁ ପାଖରେ ମୁହଁ ରଖି ଏତକ କହିଲା– କୁକୁରୀ ଦାନ୍ତ ଦେଖାଇ ବୋଧହୁଏ ହସିଲା । କହିଲା– ମୁଁ କଅଣ ମଣିଷ ହେଇଚି କିରେ ! ସଞ୍ଚୟ କରିବ ? ଆମ ଜାତିର ଖୋଲା ମନ, ଖୋଲା ସ୍ୱଭାବ । ହଠାତ୍ ରାଗିଯିବୁ... ଖେଁ ଖେଁ ହେବୁ କିଛି ସମୟ, ତା' ପରେ ପ୍ରୀତି, ପରସ୍ପରକୁ ଚୁମ୍ବନ ଦେବୁ । ଭଲ ପାଇବୁ । ମଣିଷ ଏମିତି କରେ ନାହିଁ । ସେ ଯୁଦ୍ଧ କରେ । ଶାନ୍ତି ଶାନ୍ତ ବୋଲି ଉପରକୁ କହୁଥାଏ । ତାଙ୍କର ପୁଣି ଗରମ ଯୁଦ୍ଧ ଅଛି, ଥଣ୍ଡା ଯୁଦ୍ଧ ଅଛି । ଚାଲିଥାଏ ଏମିତି ହିଂସା... ଶେଷ ହୁଏନି ।

ସ୍ୱାମୀଜୀ ମଟରରେ ଚଢ଼ିଲେ । ଭକ୍ତମାନେ ବିଦାୟ ଦେବାକୁ ରାସ୍ତା ଉପରକୁ ଆସିଗଲେ । ହଠାତ୍ ତାଙ୍କର ମନେପଡ଼ିଲା, ସେ କୁକୁରୀଛୁଆଟି କେଉଁଠି ଆର୍ତ୍ତନାଦ କରୁଥିଲା । ଦେଖିବାକୁ ଇଚ୍ଛା ହେଲା । ସମଗ୍ର ଭାଷଣ ବେଳେ ତା'ର ତୀବ୍ର ରବ ଅସହ୍ୟ ଥିଲା ।

କିନ୍ତୁ ଆଶ୍ଚର୍ଯ୍ୟ କଥା, କେଉଁଠି ସେମାନେ ଅଛନ୍ତି, ସ୍ଥାନ ନିରୂପଣ ହୋଇପାରିଲା ନାହିଁ । ସମସ୍ତେ ଖୋଜିଲେ... ପାଇଲେ ନାହିଁ ।

ସ୍ୱାମୀ ପ୍ରିୟାନନ୍ଦ ତଦ୍‌ଗତ ହେଲେ । ମଟରକାରରୁ ଅବତରଣ କଲେ । ସର୍ବାଙ୍ଗ ଗୈରିକ ବସନ ଜଡ଼ିଥିବାରୁ କ୍ରୋଧ ସଂଜାତ ହେଲା ।

ଅସ୍ପଷ୍ଟ ଚନ୍ଦ୍ରାଲୋକରେ ମାଡ଼ି ଆସିଲେ କେଉଁଠୁ କେଜାଣି ଶ୍ୱାନ ବାହିନୀ...

ଚିତ୍କାର, ଆକ୍ରମଣ କରିବା ଉପରେ...

ପ୍ରିୟାନନ୍ଦ ସ୍ଥିର ରହିଗଲେ ।

ହସିଲେ... ଅମ୍ଳାନ ହସ ।

କହିଲେ– ବାଃ, କିଛି ଶାନ୍ତ ହୋଇନାହିଁ । ସର୍ବତ୍ର ଆର୍ତ୍ତନାଦ... ଏହାହିଁ ମଣିଷର ଭାଗ୍ୟଲିପି, ପଶୁର ଅଦୃଷ୍ଟ, ଜୀବମାତ୍ରକେ ଲଲାଟଲିଖନ । ଏହା ଚାଲିଥିବ ଯେପର୍ଯ୍ୟନ୍ତ ମଣିଷ ଆତ୍ମସତ୍ୟ ପାଇନାହିଁ ।

ସହସା ମୋର ନିଦ ଭାଙ୍ଗିଗଲା, ତାହା ସଙ୍ଗେ ସଙ୍ଗେ ରୁଦ୍ଧ ହୋଇଗଲା ସ୍ୱପ୍ନର ଦ୍ୱାର । ପ୍ରିୟାନନ୍ଦ ଅଦୃଶ୍ୟ ହୋଇଗଲେ ।

ଦେଖିଲି ନବବର୍ଷର ସ୍ୱର୍ଣ୍ଣଦୀପ୍ତ ସୂର୍ଯ୍ୟର ନବୀନ କିରଣ ଧାରା...

ଉପଚକିତ ଚାରିଆଡ଼େ... ଆର୍ତ୍ତ ଚିତ୍କାରର କ'ଣ ଶେଷ ନାହିଁ ? ଶଯ୍ୟାରେ ବସି ଚିନ୍ତା କଲି ।



# ଭକ୍ତନାମାବଳୀ ଖାତା

ଓଁପ୍ରକାଶ ନାରାୟଣ ମାରଓ୍ୱାରବାସୀ ହେଲେ ବି ଓଡ଼ିଶାକୁ ତାଙ୍କର ଦ୍ୱିତୀୟ ଜନ୍ମଭୂମି ଭାବରେ ଗ୍ରହଣ କରିନେଇଛନ୍ତି । ଆଜିର କଥା ନୁହେଁ, ତାଙ୍କର ପୂର୍ବପୁରୁଷମାନେ କେବେ ଆସି ଜଗନ୍ନାଥ ଧାମ ପରିକ୍ରମା କରି କଟକ ସହରରେ ବସତି କଲେ, କେହି କହିପାରିବେ ନାହିଁ ।

ସେ ବଂଶର ବ୍ୟବସାୟ ପୈତୃକ ଓ ପୁରାତନ ସତ; କିନ୍ତୁ ପ୍ରୌଢ଼ ଓଁପ୍ରକାଶ ନାରାୟଣ ଏହାକୁ ଏକମାତ୍ର ସମ୍ବଳ କରି ଓଡ଼ିଶାରେ ପ୍ରଖ୍ୟାତ ହୋଇନାହାନ୍ତି, ସେ ଏ ରାଜ୍ୟର ଧର୍ମଚେତନା ଓ ସାଂସ୍କୃତିକ ଜାଗରଣ ସହିତ ନିଜକୁ ଓ ପରିବାରକୁ ମିଶାଇଦେଇଛନ୍ତି ।

ପ୍ରକାଶ ନାରାୟଣ ଏକ ପ୍ରକାର ସର୍ବଦା ଅସ୍ଥିର ବ୍ୟକ୍ତି । ବ୍ୟବସାୟ ବୁଝିବାକୁ ତାଙ୍କର ଏ ଅସ୍ଥିରତା ପ୍ରତିବନ୍ଧକ ସୃଷ୍ଟି କରେ ନାହିଁ । ଅନ୍ୟ ଲୋକ ଅଛନ୍ତି, ବ୍ୟବସାୟ ବୁଝନ୍ତି । ଓଁ ପ୍ରକାଶ କେବଳ ଧର୍ମ, ସଂସ୍କୃତି ଓ ସଭାସମିତି ଡାକିବା ଓ ସେ ବିଷୟରେ ତତ୍‌ପର ହେବାକୁ ଜୀବନର ବ୍ରତ ବୋଲି ଧରିନେଇଛନ୍ତି ।

ଲୋକଟି, ସୁନ୍ଦର ସୁଷ୍ଟୁ ରୂପର ବ୍ୟକ୍ତିତ୍ୱସମ୍ପନ୍ନ । ଅଧରରେ ହସ ଲାଗିରହିଥାଏ । ଅନ୍ୟ କେହି ପ୍ରଣାମ କରିବା ପୂର୍ବରୁ ସେ ଆଗନ୍ତୁକଙ୍କ ଦୁଇ ହାତ ଦୂରରୁ ଦେଖି ଏକ ପ୍ରକାର ଆତ୍ମବିସ୍ମୃତ ଚିତ୍କାର କରନ୍ତି– 'ରାମ୍– ରାମ୍, ଓଁ ଶିବାୟ ନମଃ, ଭଜ ହରି ଗୌର... ନମସ୍କାର... ନମସ୍କାର...'

ଆଗନ୍ତୁକ ଆପ୍ୟାୟିତ ହୁଅନ୍ତି । ନ ହେବେ କିପରି ? ଲକ୍ଷପତି ଓଁପ୍ରକାଶ, ତାଙ୍କ ତୁଣ୍ଡରୁ ଯେତେବେଳେ ପ୍ରଣବ ଝଙ୍କାର ଝରିପଡ଼େ, ସେତେବେଳେ ବିଧର୍ମୀ ବ୍ୟକ୍ତି, ନାସ୍ତିକ ଲୋକ ବି ଈଶ୍ୱର ଚିନ୍ତନରେ ନିମଗ୍ନ ହୋଇ ପଡ଼ନ୍ତି ।

ଏପରି କି ଏଇ 'ରାମ୍... ରାମ୍... ନମସ୍କାର' ଟିକକ ପାଇଁ ମନ୍ତ୍ରୀମାନଙ୍କର ଫିଆଟ୍ ଗାଡ଼ି, ଅଟକିଯାଏ ରାସ୍ତା କଡ଼ରେ । ଖସ୍‌ଖସ୍ ଓହ୍ଲାଇ ପଡ଼ନ୍ତି ସେମାନେ । ଆଉ ଚାଲେ ଧାର୍ମିକ ଆଳାପ, ଯୋଜନାର ବିଚାର...କାହିଁ ଆଉ ସେକ୍ରେଟେରୀୟେଟ୍ ଆଡ଼େ ଆସୁନାହାନ୍ତି ବୋଲି । ଓଁ ପ୍ରକାଶଙ୍କ ପ୍ରତି ମନ୍ତ୍ରୀମାନଙ୍କର ଅଭିମାନ ଓ ଆତ୍ମଶୁଷାର ଯେଉଁ ବାକ୍ୟାଳାପ ଚାଲେ, ତାହା ବାଟର ବାଟୋଇମାନଙ୍କ ପାଇଁ ଆମୋଦଦାୟକ ହୋଇଥାଏ ।

ସେତିକି ନୁହେଁ, ଜଗନ୍ନାଥ ଧାମକୁ ଆସି ସମୁଦ୍ର ତଟରେ ବିହାର କରି ପୁରୀ ନିବାସରେ ଗୃହ ରଚନା କରି ଦେବଦର୍ଶନ ତଥା ବଣଭୋଜିରେ ଆପ୍ୟାୟିତ ହେବାକୁ ପୁଣି କୋଣାର୍କର ପାଷାଣ ମିଥୁନ ମୂର୍ତ୍ତିଗୁଡ଼ିକର ଫଟୋ ନେବା ପାଇଁ ଉତ୍ସୁକ ଭାରତବର୍ଷର ବିଭିନ୍ନ ରାଜ୍ୟ ଓ ପ୍ରାନ୍ତରୁ ଯେଉଁ ଅତିଥିମାନେ ଓଡ଼ିଶା ଆସିବାକୁ ମନ୍ ବଳାନ୍ତି, ସେମାନଙ୍କର ସତ୍‌କାର ପାଇଁ ଓଁପ୍ରକାଶ ନାରାୟଣଙ୍କର ବହୁ ଏଜେଣ୍ଟ୍ ବର୍ଷସାରା ଆକୁମାରୀ ହିମାଚଳ କାର୍ଯ୍ୟରତ ଥା'ନ୍ତି । ତାହାର ଅର୍ଥ, ଏସବୁ ଉପଭୋଗ

ପାଇଁ ଏକମାତ୍ର ସାର୍ଥକ ବ୍ୟକ୍ତି ହେଉଛନ୍ତି ଓଁପ୍ରକାଶ ନାରାୟଣ ଯିଏ ବମ୍ବେର ଇଣ୍ଡିଆ ଗେଟ୍ ସଦୃଶ । ତାଙ୍କରି ମାଧ୍ୟମରେ, ପାଖ ଦେଇ, ଅଭ୍ୟନ୍ତର ଦେଖିଆସି ପାରିଲେ ଯେକୌଣସି ବ୍ୟକ୍ତିର ଓଡ଼ିଶା ରହଣୀ ଏକ ସ୍ମାରକୀ ଭାବରେ ଚିରଜୀବନ ରହିଯାଏ ।

ଓଁ ପ୍ରକାଶ ନିଜ କାର ନିଜେ ଚଳାଇ ବଡ଼ ଉଦ୍‌ବିଗ୍ନ ଚିତ୍ତରେ ସେକ୍ରେଟେରୀଏଟ୍ ଗେଟ୍ ପାଖରେ ଅଟକିଗଲେ । ଅବତରଣ କଲେ ଗାଡ଼ିଟିକୁ ପାର୍କିଂ କରିବା ପରେ । ଜାପାନୀ କଣ୍ଟେଇର କଳକବ୍‌ଜା ଭଳି ତାଙ୍କର ଯନ୍ତ୍ରଗୁଡ଼ିକ ସ୍ୱେଚ୍ଛାକୃତ କାମ କରେ । ପ୍ରହରୀକୁ ଦୂରରୁ ଦେଖି ଓଁପ୍ରକାଶ ଅଭ୍ୟର୍ଥନା କଲେ–

"ରାମ... ରାମ, ଓଁ ଶିବାୟ ନମଃ... ନମସ୍କାର ନମସ୍କାର ।'

ପ୍ରହରୀ କୃତକୃତ୍ୟ ହେଲା । ମନ୍ତ୍ରୀମାନଙ୍କର କରୁଣାରୁ ଓଁପ୍ରକାଶଙ୍କର ପରମାନେଣ୍ଟ୍ ପାଶ୍ ରହିଛି । ଏକଥା ପ୍ରହରୀମାନେ ଜାଣନ୍ତି, ରିସେପ୍‌ସନିଷ୍ଟ ଜାଣନ୍ତି, ସର୍ବୈବ ଜନତା ସେକ୍ରେଟେରୀୟଟ୍‌ର ।

ସେ ପଶିଗଲେ ବ୍ୟସ୍ତ ବିଭ୍ରାନ୍ତ ହୋଇ ଜଣେ ମନ୍ତ୍ରୀଙ୍କ ଖାସ୍ କାମରାକୁ... । 'ରାମ୍... ରାମ୍ ଓଁ ଶିବାୟ ନମଃ– ନମସ୍କାରଂ ନମସ୍କାରଂ'ର ଧ୍ୱନି ତରଙ୍ଗାୟିତ ହୋଇ ସେ କକ୍ଷଟିକୁ ଅପାର୍ଥିବ ଗୁଞ୍ଜନରେ ଗୁଞ୍ଜରିତ କଲା ।

ମନ୍ତ୍ରୀ ପଚାରିଲେ– ଓଁପ୍ରକାଶଜୀ... ଏଇଟା କେଉଁ ମାସ ମାନେ ସିଜିନ୍ ?

– ରାମ୍ ରାମ୍ ଆଜ୍ଞା, ଏଇଟା ଶୀତ ସମୟ.. ପ୍ରଚୁର କୋବି ଓ ଆଳୁର ତାଜା ବଜାର ।

– ତେବେ ଏ ସିଜିନ୍‌ରେ ଭାରତବର୍ଷରୁ କି କି ପଦାର୍ଥ ବେଶି ଆମଦାନୀ ହୋଇ ଏ ରାଜ୍ୟକୁ ଆସେ ?

– ରାମ୍... ରାମ୍... ଆଜ୍ଞା ! ସାଧୁ, ସନ୍ଥ, ଭାଗବତ ପ୍ରଚାରକ, ତ୍ରିନାଥ ମେଳାର ସାଧକ, ଏକଗୋଡ଼ିଆ ବାବା, ତ୍ରିନେତ୍ରବାବାଜୀ, ବନଚାରୀ ତାନ୍ତ୍ରିକ, ଜନନୀ ସାଧିକା, ବାମାକ୍ଷେପାର ଦକ୍ଷିଣପ୍ରସ୍ତ ମୁନିମାନେ ଇତ୍ୟାଦି ... ଇତ୍ୟାଦି....

ମନ୍ତ୍ରୀ ହସିଲେ– କହିଲେ ଓଁ ପ୍ରକାଶଜୀ ଆପଣଙ୍କୁ ପରୀକ୍ଷା କରୁଥିଲି ... ଶୀତ୍ ମାସରେ ଆମଦାନୀ ରପ୍ତାନୀର ହିସାବ ଆପଣଙ୍କ ପାଖରେ ଅଛି କି ନାହିଁ । ଦେଖିଲି, ଅଛି । ବଡ଼ ବିଚିତ୍ର ଭାବରେ ଅଛି । ଦେଖ ଶରତ୍ ପଡ଼ିଗଲାଣି, ଗୋରୁ ଖାଇବା ପର୍ଯ୍ୟନ୍ତ କୋବିପତ୍ର ଓ ଫଳକୁ ଯେଉଁମାନେ ଅପେକ୍ଷା କରିବେ, ସେମାନେ ହେଲେ ଦାରିଦ୍ର୍ୟର ସୀମାରେଖା ତଳର ଲୋକଗୁଡ଼ାକ, କିଣିବାର ଶକ୍ତି ନାହିଁ । ଗୋରୁ କୋବିର ଫାଳେ ଅଂଶକୁ ଟାଣୁଥିବାବେଳେ ଅନ୍ୟ ଫାଳକ ଏମାନେ ଟାଣିବେ । ସେ ଚିତ୍ର ଆମେରିକା ଫଟୋ ଉଠାଇ ବିକ୍ରି କରୁଛି ତାଙ୍କ ବଜାରରେ ।

କୁକୁରର ଦାନ୍ତନିକୁଟା ଭୁକିବା ସହିତ ମିଣିଷ ପିଲାର ସଂଗ୍ରାମ ପଚା ମହାର୍ଦ ଉପରେ ଝିଙ୍କାଝିଙ୍କି ଫଟୋ ତ ବ୍ରିଟିଶ ବଜାରରେ ବିକ୍ରି ଚାଲିଛି । ସେଗୁଡ଼ାକ ଆମର ଧ୍ୟେୟ ନୁହେଁ । ଦେବୋତ୍ତର ବିଭାଗର ଦାୟିତ୍ୱ ନେଇ ମୁଁ ଚାହେଁ କିପରି ଶୀଘ୍ର ଶୀଘ୍ର ଦାରିଦ୍ର୍ୟର ସୀମାରେଖା ତଳେ ଥିବା ହଜାର ହଜାର ଲକ୍ଷ ଲକ୍ଷ ଲୋକଙ୍କ ମନରେ ଧର୍ମଭାବ ଉଦିତ ହେବ, ଯାହା ଫଳରେ ସେମାନେ ବୁଝିବେ

ଅଦୃଷ୍ଟ ଦୋଷରୁ ଅବା ପୂର୍ବଜନ୍ମର ଦୁଷ୍କୃତ ପାପରୁ ଆଜି ସେମାନେ ଓଡ଼ିଶା ଭୂଇଁରେ କୁକୁର, ମାଙ୍କଡ଼, ଗୋରୁ ସହିତ ଲଢ଼େଇ କରୁଛନ୍ତି । ଥରେ ଏ ଧାରଣା ବଦ୍ଧମୂଳ ହୋଇଗଲେ, ସେମାନେ ଶାସନକୁ ବିରକ୍ତ କରିବେନାହିଁ କି ଦରଖାସ୍ତ ଦେଇ ତାଙ୍କୁ ଦାରିଦ୍ର୍ୟର ସୀମାରେଖା ତଳୁ ଅସୀମତା ଆଡ଼କୁ ଝିଙ୍କି ଉଠାଇବାକୁ ଆମମାନଙ୍କୁ ହଇରାଣ କରିବେ ନାହିଁ । ବୁଝିଲେ ତ ?

ଆମ୍ଭେ ବୁଝିଗଲୁ... ରାମ୍... ରାମ୍...ଏତିକି ବୁଝିବୁ ନାହିଁ ? ତେବେ ଆପଣଙ୍କର ଏ ଉଦ୍ଦୀପନାମୟ ଭାଷଣର ଏତିକି ସାରାଂଶ ହେଲା ଯେ ଆମ୍ଭେ ଶୀଘ୍ର ଗୋଟାଏ ଧର୍ମସଭା ଆୟୋଜନ କରିବୁଁ ଯେଉଁଥିରେ ଯଜ୍ଞ ଆହୁତିରେ ଲକ୍ଷେ ଟଙ୍କା ଖର୍ଚ୍ଚ ହେବ ଏବଂ ଜଣେ ମହାପୁରୁଷ ଧରନ୍ତୁ ବିଶ୍ୱାନନ୍ଦ, ଗ୍ରାମାନନ୍ଦ, ସପୁରାନନ୍ଦ ବା ପର୍ବତ୍ର ଗିରି– ନଦୀ ... ଗିରି କି ସମୁଦ୍ରାନନ୍ଦଙ୍କୁ ଆଣି ପ୍ରବଚନ ଶୁଣାଇବୁ । ହବ, ସବୁ ହବ । କେବଳ ଆପଣଙ୍କର କୃପା ଦୃଷ୍ଟି ରହିଲେ ହେଲା । ବ୍ୟବସାୟ ତ ମାନ୍ଦା ଚାଲିଛି, ପୁଣି ମୋର ବ୍ୟବସାୟ ଆହୁରି ମାନ୍ଦା । କାରଣ ମୁଁ ତ ଆପଣମାନଙ୍କ ସେବାରେ ରହି ଜାତିର ପୁଣ୍ୟ ସଞ୍ଚୟ ଉଦ୍ଦେଶ୍ୟରେ ବାରମାସରେ ତେର ଧର୍ମାନୁଷ୍ଠାନ କରୁଛି । କାହିଁକି ? ମୋର ବିଶ୍ୱାସର ଦରିଦ୍ର ସୀମାରେଖା ତଳେ ପଡ଼ିଥିବା ଜନଗଣଙ୍କୁ ଧର୍ମାମୃତ ଚଖାଇବା ପାଇଁ । ତେବେ ବିଦାୟ ଦିଅନ୍ତୁ । ଦେଖିବେ ପନ୍ଦର ଦିନ ମଧ୍ୟରେ ସ୍ୱାମୀଜୀମାନଙ୍କର ଆଗମନ ଓ ପ୍ରବଚନରେ ସହର ବିକମ୍ପିତ ହେବ । ଏତକ କହି ଓଁପ୍ରକାଶ ଆଉଥରେ ରାମ୍ ରାମ୍ ଉଚ୍ଚାରଣ କଲେ । ମନ୍ତ୍ରୀ ଟିକିଏ ଭାବିଲେ– କହିଲେ– ଏଥର ଗୋଟାଏ ରେଜିଷ୍ଟର ରଖ ଯଜ୍ଞଶାଳାରେ । ଭକ୍ତମାନେ ସେ ଖାତାରେ ନାମ, ପିତାଙ୍କ ନାମ, ଗ୍ରାମ, ପୋଷ୍ଟ ଅଫିସ, ଜିଲ୍ଲା ଇତ୍ୟାଦି ଲେଖିଦେବେ । କାରଣ ନିର୍ବାଚନ ସମୟରେ ହାତ ବଢ଼ାଇଲାବେଳକୁ ଲକ୍ଷାଧିକ ଲୋକଙ୍କର ଠିକଣା ଆମକୁ ଜଣାଥିବ । ସୁବିଧା କଅଣ ଏଥିରୁ ଉତ୍ପନ୍ନ ହେବ, ତୁମେ ତ ବୁଝିପାରୁଥିବ ।

ଓଁପ୍ରକାଶ ନାରାୟଣ ତିନିବାର ରାମ୍ ରାମ୍ କହି ଅନ୍ତର୍ହିତ ହୋଇଗଲେ ଶୀତତାପ ନିୟନ୍ତ୍ରିତ କକ୍ଷ ଭିତରୁ...

ବର୍ତ୍ତମାନ ତାଙ୍କ ଆଗରେ ଉଜ୍ଜ୍ୱଳ ପୃଥିବୀ । ଗୋଟାଏ କରିବାର କାମ ଜୁଟିଗଲା । ସେ ତୃପ୍ତ ହୋଇ ଇଣ୍ଟରଭିଉଟା ଯେ ଚମତ୍କାର ହେଲା, ଭାବି ଗାଡ଼ି ଚଳାଇ ଆଣି ନିଜ ତ୍ରିତଳ ପ୍ରାସାଦ ମୁହଁ ଆଗରେ ପାର୍କିଂ କରିଥିଲେ ।

॥ ୨ ॥

ଜଣ ଜଣ କରି ଭକ୍ତ ସଭା ଆରମ୍ଭ ପୂର୍ବରୁ ନିର୍ଦ୍ଦିଷ୍ଟ ରେଜିଷ୍ଟ୍ରି ଖାତାରେ ନାମ ଦସ୍ତଖତ କରି ସ୍ୱାମୀ ବିଶ୍ୱାନନ୍ଦ ପରମହଂସଙ୍କ ଚରଣସ୍ପର୍ଶ କରୁଥିଲେ, ତା'ପରେ ଆସନ ଗ୍ରହଣ କରୁଥିଲେ । ଓଁପ୍ରକାଶ ନାରାୟଣଙ୍କର ତନ୍ମୟ ଓ ତଦ୍‌ଗତ ଅବସ୍ଥା ଦେଖି ଲୋକେ ଅବାକ୍ ହୋଇଗଲେ ।

ସ୍ୱାମୀ ବିଶ୍ୱାନନ୍ଦ ପ୍ରବଚନ ଆରମ୍ଭ କରି କହିଲେ– ଭକ୍ତଗଣ, କାହିଁକି ଆପଣମାନେ ଏତେସଂଖ୍ୟାରେ ପ୍ରତି ସନ୍ଧ୍ୟାରେ ମୋ କଥା ଶୁଣିବାକୁ ଆସୁଛନ୍ତି, ମୁଁ କହିପାରିବି ନାହିଁ । ମୁଁ ଆସିଛି କେବଳ ଭଗବାନଙ୍କର ନାମ ନେବା ପାଇଁ ଓ ସେହି ନାମ ମାହାତ୍ମ୍ୟ ସମସ୍ତଙ୍କୁ ଶୁଣାଇବା ପାଇଁ ।

ପୁଣି ସେ କହିଲେ– କେହି କେହି ପ୍ରଶ୍ନ କରିଛନ୍ତି ମୁଁ କାହିଁକି ଏରୋପ୍ଲେନ୍‌ରେ ଭାରତ ସାରା ବୁଲୁଛି, ମୁଁ କାହିଁକି ବଡ଼ବଡ଼ ହୋଟେଲରେ ରହୁଛି, ମୁଁ କାହିଁକି ରାଜା ମହାରାଜା, ମନ୍ତ୍ରୀ, ରାଜ୍ୟପାଳ, ଶିଳ୍ପପତିଙ୍କର ଆତିଥ୍ୟ ଗ୍ରହଣ କରୁଛି, ଅଥଚ ଲକ୍ଷ ଲକ୍ଷ ଗରିବ ପାଦ ଛଡ଼ା କୌଣସି ଯାନରେ ଏଯାଏ ଯାଇନାହାନ୍ତି । ଏସବୁ ପ୍ରଶ୍ନ ମୋତେ ବାଧୁଛି, ଏହାର ଉତ୍ତର ସେହିମାନେ ଦେଇପାରିବେ, ଯେଉଁମାନେ ଆମମାନଙ୍କ ଭଳି ସନ୍ନ୍ୟାସୀଙ୍କୁ ଆଗରେ ଥୋଇ, ଆମମାନଙ୍କୁ ବାଦ୍‌ସାହୀ ଖାନା ଦେଇ ଅବଶ୍ୟ ନିରାମିଷ, ପ୍ଲେନ୍‌ରେ ଉଡ଼ାଇ ସଭାସମିତି ପ୍ରଚାର ପତ୍ରରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଛନ୍ତି । ଏଇ ଦେଖନ୍ତୁନା ଓଁ ପ୍ରକାଶ ନାରାୟଣ କି ଚମତ୍କାର ଭାବରେ ମୋର ସ୍ୱାଗତ ପାଇଁ ଆୟୋଜନ କରୁଛନ୍ତି ।

ରଙ୍ଗମଞ୍ଚରେ ଆଲୋକ ଜଳୁଛି । କୋଡ଼ିଏଟା ମାଇକ୍ ମୋର ଭାଷଣକୁ ସହରର ସବୁ ପ୍ରାନ୍ତକୁ ଘେନିଯାଉଛି । ଭାଷଣ ପରେ ସାଂସ୍କୃତିକ କାର୍ଯ୍ୟ ରହିଛି, ତାହାର ବି ଖର୍ଚ୍ଚ ଅଛି ।

ପରମହଂସ ପୁଣି କହିଲେ– ମୁଁ ଯେଉଁ ଜନତାକୁ ଏଠାରେ ଦେଖୁଛି, ଏହା କଅଣ ନିର୍ମଳ ଜନତା ? ଏମାନେ କଅଣ ସଙ୍କଳ୍ପ କରି ମତେ କହିପାରିବେ ଯେ ମୋର ଭାଷଣ ଶୁଣି ସେମାନଙ୍କର ଅନ୍ତର ଭଗବତ୍ ବିଶ୍ୱାସରେ ପୂର୍ଣ୍ଣ ହେଇଯିବ କିମ୍ବା ଏଣିକି ତାଙ୍କ ଜୀବନରେ କେବଳ ଆଧ୍ୟାତ୍ମିକ ଚିନ୍ତା ଛଡ଼ା ବୈଷୟିକ ଭାବ ରହିବ ନାହିଁ ?

ମୋର ଗୋଟିଏ ବାକ୍ୟ ଶୁଣନ୍ତୁ– କ୍ରୋଧ, ମୋହ, ଗର୍ବ ଓ ଅସହିଷ୍ଣୁତା ଆଦି କୁପ୍ରବୃତ୍ତିଗୁଡ଼ିକୁ ମନରେ ସ୍ଥାନ ଦିଅନ୍ତୁ ନାହିଁ । ଦେଲେ ଆପଣମାନେ ବିପଥକୁ ଚାଲିଯିବେ । ଏହି କୁପ୍ରବୃତ୍ତି ପରିହାର କରି ମନକୁ ନିର୍ମଳ ତଥା ସତ୍‌ଚିନ୍ତାରେ ମଗ୍ନ କରିପାରିଲେ ବ୍ୟକ୍ତିତ୍ୱର ପୂର୍ଣ୍ଣାଙ୍ଗ ବିକାଶ ସାଧିତ ହେବ ।

ପୁଣି ଦେଖନ୍ତୁ ଏହି ଐତିହାସିକ କଟକ ସହର ଅବା ପୁଣ୍ୟକ୍ଷେତ୍ର ପୁରୀଧାମ ଯୁଗ ଯୁଗ ଧରି ସନ୍ଥ ସନ୍ନ୍ୟାସୀମାନଙ୍କର ପ୍ରବଚନ ଶୁଣି ଆସିଛି । ମତେ କହନ୍ତୁ ଶ୍ରୋତୃଜନତାର କେତେ ଭାଗ ଏସବୁ ଶୁଣି ପରମାର୍ଥୀ ହୋଇପାରିଛନ୍ତି ?

ଓଁ ପ୍ରକାଶ ନାରାୟଣ ଯିଏ କି ଆଜିର ଆୟୋଜନରେ ସିଦ୍ଧହସ୍ତ ଓ ମୁକ୍ତହସ୍ତ ସେ କହିପାରିବେ କି ସେ କେତେ ନିର୍ମଳ ? ଯଦି ନୁହଁନ୍ତି ତେବେ କହିବାକୁ ହେବ ପାରାୟଣ ପ୍ରବଚନ ସବୁ ଉପରକୁ ଉଡ଼ିଯାଇଛି । କିଛି ରହୁନାହିଁ, କାହାକୁ ସ୍ପର୍ଶ କରୁନାହିଁ ।

ପ୍ରବଚନ ଶେଷ ହେଲା । ପରମହଂସଙ୍କର ବାଣୀ ଯେ ଏମିତି ଅଡୁଆ ଅସଫା ହୋଇଯିବ, ଓଁପ୍ରକାଶ ଜାଣିନଥିଲେ । ମନଟା ତାଙ୍କର ଖରାପ ହୋଇଗଲା । ମନେ ମନେ ପ୍ରତିଜ୍ଞା କଲେ ଆଉ ସେ ଗୋଡ଼ ପୂରାଇବେ ନାହିଁ ଏସବୁ ଧର୍ମସଭା ଆଡ଼େ । ନିଜ ବ୍ୟବସାୟ ବୁଝିଲେ, ତାହା ବଢ଼ିବ । ଲକ୍ଷ୍ମୀ ଘରକୁ ଆସିବେ ।

ବର୍ଷେ ବିତିଯାଇଛି । ସ୍ୱାମୀ ବିଶ୍ୱାନନ୍ଦଙ୍କ ପରେ ଶୁଦ୍ଧାନନ୍ଦ ଆସିଛନ୍ତି । ଲୁଗା ମଇଳା ହେଲେ ପୁଣି ତାହା ସଫା ହୋଇ ରଜକ ଘରୁ ଆସେ, ସେହିପରି ମନର ମଇଳା ହୁଏତ କିଛି ବିଶ୍ୱାନନ୍ଦ ସ୍ୱାମୀ ଧୋଇଦେଇଥିଲେ । ମାତ୍ର ଶୁଦ୍ଧାନନ୍ଦ ଆସିବା ପୂର୍ବରୁ ତାହା ଯେଉଁ ମଇଳାକୁ ସେହି ମଇଳା । ଆସିଲେ ଅସୀମାନନ୍ଦ, ସେ ବି ଗୀତା ଯଜ୍ଞ, ଭାଗବତାଧିଷ୍ଠାନ

କଲେ । କିଛି ଅସାରତା ପୋଛିଲେ, ମାତ୍ର ଗମ୍ଭୀରାନନ୍ଦ ଆସିବାବେଳକୁ ମନ ଓ ହୃଦୟରେ ପୁଣି ଜମିଗଲା କେତେ ମଇଳା । ଶେଷକୁ ଆଉ ସଭା ହୋଇପାରିଲା ନାହିଁ ।

ବର୍ଷ ବର୍ଷ ଏହିପରି ବିତିଗଲା । ଯେତେ ସଂଖ୍ୟାରେ ସନ୍ନ୍ୟାସୀ ପ୍ରବଚନ ଦାତା, ତ୍ରିଦଣ୍ଡ ସ୍ୱାମିଗଣ ସହରକୁ ଆସିଲେ, ସେତିକି ସର୍କସ ଖେଳ ଦେଖିବା ଭୁଲି ଆଗ୍ରହ ନେଇ ଲୋକେ ବିନା ଟିକଟରେ ରଙ୍ଗ ରହସ୍ୟ ଦେଖିବାକୁ ଆସିଲେ ।

ଜଣେ ଶ୍ରୋତା କହିବାର ଶୁଣାଗଲା– ଏ ଗମ୍ଭୀରାନନ୍ଦ ଯାହା କହିଲେ, ଗୃହସ୍ଥ ହୋଇ ଆମ ସାର୍ ତା' ତାଙ୍କ ଭାଷଣରେ ଏଇଆ କହିଥାନ୍ତି; ମାତ୍ର ଏଠାରେ କେହି ବୁଝନ୍ତୁ ବା ନବୁଝନ୍ତୁ ଏମିତି 'ହାୟ ହାୟ ଓଃ... ଓଃ କି ଅମୃତ' ଏମିତି କାହିଁକି କହୁଛନ୍ତି ? ଲୋକଦେଖାଣିଆ ନୁହଁ କି ?

ପଡ଼ୋଶୀ ଶ୍ରୋତା ଜଣକ ଉତ୍ତର ଦେଲେ– ସାର୍‌ଙ୍କ ଭାଷଣ ଶୁଣିଛି । ବରଂ ମୁଁ କହିବି ସେ ଯେଉଁ ଆନ୍ତରିକତା ଓ ନିଷ୍ଠାରେ କଥା କୁହନ୍ତି, ସେଥିରୁ ଅଂଶ ମାତ୍ର ଏମାନଙ୍କର ନାହିଁ । ତଥାପି ଏମାନଙ୍କ ଗୋଡ଼ତଳେ ଯେ ଭକ୍ତମାନେ ପଡ଼ିଯାଉଛନ୍ତି ତା'ର କାରଣ...

ଅନ୍ୟ ଜଣକ ପଚାରିଲେ କାରଣ ? ପ୍ରଥମ ବ୍ୟକ୍ତି ଉତ୍ତରଦେଲେ– କାରଣ ହେଉଛି ଏମାନଙ୍କର ବେଶ, ବାଗ୍ମିତା ଓ ବୈଭବ । ବେଶର ଗୋଟାଏ ଆକର୍ଷଣ ଅଛି, ଆପାଦମସ୍ତକ ଲାଲ୍ ଆଖି ଖୋଲା କପାଳରେ ଚନ୍ଦନର ଜମାଟ ପ୍ରଲେପ ଭିତରେ ଧଳାରଙ୍ଗର ତ୍ରିଭୁଜ ଅଙ୍କନ, ସେମିତି କେତେ ପ୍ରକାର ଚିତ୍ର ସଙ୍ଗଠନ... ଏଇଗୁଡ଼ାକ ସାମାନ୍ୟ ଚେତନା ବିଶିଷ୍ଟ ଲୋକଙ୍କୁ ସାମୟିକ ମୁହ୍ୟମାନ କରିଦିଏ । ମାତ୍ର ଆଚରଣରେ କି ଚେତନାରେ କିଛି ପରିବର୍ତ୍ତନ ହୁଏ ନାହିଁ ଏମାନଙ୍କର ।

ଦୃଶ୍ୟ ପରିବର୍ତ୍ତନ ହୋଇଯାଇଛି । କଟକ ଲାଲବାଗ ଥାନାରେ ଯେଉଁ ସାମଗ୍ରୀଟି ଯୋଗୁଁ ରାଜ୍ୟର ଗୋଟାଏ ବଡ଼ ଖୁଣି, ଡକାଏତ୍ ଓ କେତୁଟା ଚୋରି ମାମଲାର ସୂତ୍ର ମିଳିଲା, ସେ ପଦାର୍ଥଟି ଅତିବାଞ୍ଛିତ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସେ ଆଉ କିଛି ନୁହେଁ, ଗୋଟିଏ ରେଜିଷ୍ଟର ଖାତା । ଏହି ଖାତାରେ ଦସ୍ତଖତ୍ କଲାବେଳେ କେହି ଜାଣି ନଥିଲେ ଯେ ଅପରାଧୀମାନେ ସେଠାରେ ଛାଡ଼ିଯାଇଛନ୍ତି ସେମାନଙ୍କ ଆଙ୍ଗୁଳିର ସ୍ପଷ୍ଟ ଚିତ୍ର । କୁକ୍‌କୁରୀ 'ହୀରା' ଏଇସବୁ ସଂକେତକୁ ଆଘ୍ରାଣ କରି ଭକ୍ତମାନଙ୍କର ବିଶ୍ୱାନନ୍ଦ ପ୍ରେମକୁ ସାବ୍ୟସ୍ତ କରିଦେଲା ।

ପ୍ରଥମ ଅପରାଧୀ ଓଁପ୍ରକାଶ ନାରାୟଣ ନିଜେ ଯାହାଙ୍କର ପ୍ରରୋଚନାରେ ତାଙ୍କ ଭ୍ରାତୃବନ୍ଧୁଙ୍କୁ ହତ୍ୟା କରାଯାଇଛି, ଭକ୍ତ ଶିରୋମଣି ଡାକ୍ତର ରସିକବିହାରୀ ପଟ୍ଟନାୟକ ବର୍ତ୍ତମାନ ଜେଲ୍ ଫାଟକ ସେପଟରେ । ତାରିଖ ଗଡ଼ିଯିବା ପରେ ବି ଔଷଧ ବିକ୍ରୟ ଓ ପ୍ରତିଷ୍ଠିତ ଡାକ୍ତରଖାନାରୁ ତାଙ୍କ କ୍ଲିନିକ୍‌କୁ ଔଷଧ ଚୋରା ଚାଲାଣ ଅପରାଧରେ ତାଙ୍କର କାରାଗାର ବାସ ।

ଅତିବଡ଼ି ବୈଷ୍ଣବ ମହାମତୀ ନୀରୋଦ ଆଚାର୍ଯ୍ୟଙ୍କ "ବାର୍ତ୍ତଟ୍ ସୋ" ହୋଟେଲ୍‌ର ରୁଦ୍ଧ ୧୭ ନମ୍ବର କକ୍ଷରେ ଶାରଦା, ନର୍ମଦା ଓ ବନମାଳତୀ ତରୁଣୀଙ୍କର ଦେହ ଦାନରୁ ଅର୍ଥ ଅର୍ଜନ । ଏହି ମହାଜ୍ଞାନୀ ବୈଷ୍ଣବେ ପୁଙ୍ଗବଙ୍କୁ ଗଦ୍ ଗଦ୍ ହୋଇ କେବଳ

ହଜାରେ ଟଙ୍କାର ଫୁଲମାଳରେ ସାତରାତ୍ରି ମହୋତ୍ସବରେ ସନ୍ନ୍ୟାସୀମାନଙ୍କର ଗଳାଦେଶ ମଣ୍ଡନ କରୁଥିଲେ ।

ଆଉ କୁମାରୀ ପାର୍ବତୀ ପ୍ରତି ସନ୍ଧ୍ୟାରେ ଉଦ୍‌ବୋଧନ ସଙ୍ଗୀତ ଗାଇ ଗାଇ ଯେତେବେଳେ କ୍ଳାନ୍ତି ବରଣ କରିଥିଲେ, ଆଖି ତାଙ୍କର ବୁଜି ହୋଇ ଆସୁଥିଲା, ତାଙ୍କୁ ଜିପ୍‌ରେ ଟେକି ନେଇ ଯେଉଁ ଭକ୍ତଚୂଡ଼ାମଣି ମହେଶ୍ୱର ବାରିକ ମଦ ବ୍ୟବସାୟୀ ବାବାଙ୍କର ଚରଣାଶ୍ରିତ 'ବନ୍ଦେ ପୁରୁଷୋତ୍ତମ' ଗାୟିକା ପାର୍ବତୀର ସର୍ବନାଶ କରିଥିଲେ, ସେ ବି ଯାବଜ୍ଜୀବନ କାରାବାସରେ ରହିଗଲେ ଜାଗ୍ରତ ପୃଥିବୀର ଦୂରରେ ।

"ଭକ୍ତର ଆସନ ତଳେ ମାଟିର ଶକ୍ତି ଯଦି ଏଇଆ ଜନ୍ମ ଦିଏ, ତେବେ ସେ ମାଟିକୁ ଶତକୋଟି ନମସ୍କାର" ଏତିକି କହି ଲାଲବାଗ ଥାନାର ଇନିସ୍‌ପେକ୍‌ଟର ଇନ୍ଦ୍ରଜିତ୍ ମିଶ୍ର କେତେଗୁଡ଼ାଏ ବଡ଼ ଧରଣର ଅପରାଧୀଙ୍କୁ ଯେ ଆଲୋକକୁ ଆଣିପାରିଛନ୍ତି, ଭାବି ସ୍ୱସ୍ତିରେ ନିଶ୍ୱାସ ମାରିଲେ ।

"– କିନ୍ତୁ" ଅପର ଇନିସ୍‌ପେକ୍‌ଟର ପ୍ରଣବ ମୁଖାର୍ଜୀ କହିଲେ, "କିନ୍ତୁ ଧର୍ମସଭା ଭକ୍ତନାମାବଳୀ ରେଜିଷ୍ଟରରୁ ଯେ କୁଖ୍ୟାତ ଦାଗୀ, କଳାବଜାରୀ, ହତ୍ୟାକାରୀ ଓ ଅସାମାଜିକ ପାଷଣ୍ଡଙ୍କର ସନ୍ଧାନ ମିଳିବ, ଏକଥା କେହି କଅଣ ବିଶ୍ୱାସ କରୁଥିଲା ? ଧର୍ମ ଓ ଅପରାଧ କେହି କାହାକୁ ଊଣା ନୁହନ୍ତି ।

ଫାଟକ ସେପଟେ କାରାଗାରର ଏକ ନିଭୃତ କକ୍ଷରେ ଶୁଣାଯାଇଥିଲା, ପରିଚିତ କଣ୍ଠର ସେହି ସ୍ୱର "ରାମ୍ ରାମ୍, ଓଁ ଶିବାୟ ନମଃ, ନମସ୍କାର.. ନମସ୍କାର ।" ଏହା ନ ଥିଲା ଭଲ ମଣିଷର ମର୍ମାନ୍ତକ ଶବ୍ଦ । କେହି ଏ ଶବ୍ଦ ଶୁଣି କୃତକୃତ୍ୟ ହେଉ ନଥିଲେ ସେତେବେଳେ । ଆହା ! ତାହା ପାଷାଣ ପ୍ରାଚୀର ଭେଦକରି ଦୂରକୁ ଯାଇପାରୁନଥିଲା । ସେହି ଚତୁର୍ଦ୍ଦିଗ ପ୍ରାଚୀର ଘେରା କକ୍ଷଭିତରେ ରାମ୍ ରାମ୍ ଶବ୍ଦ ଘୂରିବୁଲିଥିଲା ।

ଏହି ନାମକୀର୍ତ୍ତନ କଅଣ ଯଥାର୍ଥ ମୁକ୍ତି ଦେବ ନାହିଁ ?



# ମାର୍ଗ ବନ୍ଧନୀ

ଏରାକା ଫ୍ରାଙ୍କ୍‌ଠାରୁ ଯେତେବେଳେ ଏଆର୍ ମେଲ୍ ଇନ୍‌ଲ୍ୟାଣ୍ଡ ଚିଠିଟି ପାଇ ପଢ଼ିଲି ମୁଁ ଏକ ପ୍ରକାର ସ୍ତମ୍ଭୀଭୂତ ହୋଇଗଲି।

ଚିଠିଟି ଆସିଛି ୧୩୧, ଦି' ଗ୍ରୁଭ ଏଲିଣ୍ଡ୍, ଲଣ୍ଡନ ଠିକଣାରୁ। ଗୋଲ ଗୋଲ ମଧୁର ସୁନ୍ଦର ଇଂରାଜୀ ଅକ୍ଷର। ପରିଷ୍କାର ଲେଖା।

ମୋ ନାମ ଧରି ସମ୍ଭାଷଣ ଜଣାଇଛନ୍ତି କୁମାରୀ ଏରାକା ଫ୍ରାଙ୍କ୍।

ମୋର ସ୍ତବ୍ଧ ହୋଇଯିବାର କାରଣ, ମୋର ପରିଚୟ ଓ ବଂଶାବଳୀ ଏବଂ କୁମାରୀ ଫ୍ରାଙ୍କ୍‌ର ଲଣ୍ଡନ ସହରରୁ ମୋ ଜାତିର ଦେବତାକୁ ଜାଣିବା ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ।

ଲଣ୍ଡନରେ ପ୍ରଚୁର ମିଳୁଛି ମାଂସ, ରୁଟି। ଶରୀରକୁ ରକ୍ଷା ଓ ସୁନ୍ଦର ତଥା ଲାବଣ୍ୟମୟ କରିବାକୁ ଲଣ୍ଡନ ସହରରେ ପୁଷ୍ଟିକର ଖାଦ୍ୟର ଅଭାବ ନାହିଁ। ମଣିଷକୁ ଆରାମରେ ରଖିବା ପାଇଁ ଯନ୍ତ୍ରରୁ ଉତ୍‌ପନ୍ନ ସାମଗ୍ରୀରେ ପୂର୍ଣ୍ଣ ହୋଇ ରହିଛି ସହର ବଜାର। ଯଦି କିଏ ଆଳସ୍ୟକୁ ବାଛି ନେଇ ବିଳାସରେ ମଜ୍ଜି ରହେ, ସେଥିପାଇଁ ସେଠାରେ ଉପାଦେୟ ବ୍ୟବସ୍ଥା ରହିଛି। ଯଦି କେହି କର୍ମଯୋଗର ଯୋଗୀ ହୋଇଯାଏ, ସେଥିପାଇଁ କୋଇଲା ଖଣି ରହିଛି ଓ ରହିଛି ବାସନକୁସନ ମାଜି ପ୍ଲେଟ ଗିନାକୁ ସଫା କରି ହୋଟେଲରୁ ରୁଚିସମ୍ପନ୍ନ କରିବା ପାଇଁ। ସବୁ ସେଠାରେ ଅଛି।

ମୋର ଗର୍ବ ଯେ ମୁଁ ଓଡ଼ିଶାରେ ଜନ୍ମ ନେଇଛି; ତତୋଽଧିକ ଅହମିକାଗ୍ରସ୍ତ ଯେ ମୁଁ କାଳକାଳ ଧରି କେଉଁ ଅନାଦି ସମୟରୁ ବହୁ ଧର୍ମଗୁରୁଙ୍କ ଚରଣରେଣୁପୂତ ବଡ଼ଦାଣ୍ଡ ଉପରେ ଚଳପ୍ରଚଳ କରୁଛି। କାରଣ ଜାଣିଛି ଶାସ୍ତ୍ର କହେ ଯେ ଯିଏ ଶ୍ରୀକ୍ଷେତ୍ର ପୁରୀ ଧାମରେ ଜନ୍ମ ନେଇ ଦେହଧାରଣ କରେ, ତା'ର ଅନିଚ୍ଛା ସତ୍ତ୍ୱେ ବି ଅମରଧାମକୁ ଯିବା ପାଇଁ ପଥ ସୁଗମ ହୋଇଥାଏ।

ଶୀତଋତୁର ଅପରାହ୍ଣ। କନକ କିରଣରେ ଦିଗନ୍ତ ଉଦ୍‌ଭାସିତ ହୋଇ ଉଠିଛି। ସୂର୍ଯ୍ୟ ଢଳଢଳ। ବାହୁଡ଼ିଯିବେ ବୋଲି ରଙ୍ଗମୟ ବିଚିତ୍ର ରଥ ରଜ୍ଜୁ ଟାଣି ସ୍ୱୟଂ ସାରଥୀ ସାଜିଛନ୍ତି ସବିତା।

ପରମ ଆକର୍ଷଣୀୟ ଏହି ସ୍ୱର୍ଣ୍ଣ ପ୍ରହରରେ ମୋର ମତି ଧୃତି କ୍ରମେ ଅବୋଧ ହୋଇଉଠୁଛି। ବିଶ୍ୱଲୀଳାର ଏ ଅଦ୍ଭୁତ ଉପଭୋଗକୁ ହୃଦୟର କେଉଁ ନିଭୃତ କକ୍ଷରେ ସଂପାଦି ରଖିବି ଭାବି ଆନମନା ହୋଇଗଲାବେଳେ ଦେଖିଲି, ହଠାତ୍ ଜଣେ ସୌମ୍ୟ ଶ୍ୱେତାଙ୍ଗ ପୁରୁଷ ରିକ୍‌ସାରୁ ଅବତରଣ କରି ହାତରେ କାମେରା, କାନ୍ଧରେ ଗୋଟାଏ ବ୍ୟାଗ୍, ମୁହଁରେ ସ୍ୱର୍ଗସୁଷମାର ହସଲହରୀ ଖେଳାଇ ମୋ ପାଖରେ ମୁଣ୍ଡ ତଳକୁ କରି ଉଚ୍ଚାରଣ କଲେ–

"ନ– ମ–ସ୍ତେ... ଆପଣ ମହାନ୍ତି ?"
ତେଣିକି ଇଂରେଜୀରେ କଥାଭାଷା।

ମୁଁ ଆସନ ଦେଖାଇଦେଲି । ଆସିବା ଆଗରୁ ସେ ସବୁ ଜିନିଷ ତଳେ ଥୋଇଦେଇ ଜୋତା କାଢ଼ି ଦେଇଥିଲେ ।

ହଠାତ୍ ତାଙ୍କର ହସ ନିଷ୍ପ୍ରଭ ହୋଇଆସିଲା । ସେ ମଥା ତଳକୁ କରି ଅସ୍ପଷ୍ଟ ସ୍ୱରରେ କହିଲେ, "ମହାତ୍ମା ଗାନ୍ଧି, ଶ୍ରୀମା' ଡିଭାଇନ୍ ମଦର, ଲର୍ଡ଼ ଜଗନ୍ନାଥ, ଯୋଗୀ ଅରବିନ୍ଦ, ସଦାଶିବ, ଯିସସ୍ କ୍ରାଏଷ୍ଟ, ପରମହଂସ ଯୋଗାନନ୍ଦ, ଠାକୁର ରାମକୃଷ୍ଣ, ଓଁ... ଓଁ...ଓଁ..."

କହି ରଖେ ଏମାନେ ମୋର ପ୍ରକୋଷ୍ଠରେ ବିରାଜମାନ କରୁଛନ୍ତି ଚିତ୍ର ବିଗ୍ରହ ଧାରଣ କରି । ସାହେବ ନତମସ୍ତକ ହୋଇ ଏମାନଙ୍କୁ ପ୍ରଣାମ କଲେ । ତା'ପରେ ନିର୍ଦ୍ଦିଷ୍ଟ ଆସନରେ ବସି ନିଜର ପରିଚୟ ଦେଲେ...

"ମୁଁ ଫର୍ଗସ୍ ସ୍ମିଥ... ରମଣମହର୍ଷି ଆଶ୍ରମରେ ରହିଥାଏ । ଲଣ୍ଡନ ମୋର ଘର, ବୃତ୍ତି ମୋର ଯାଯାବର ଜୀବନ... ଇଣ୍ଡିଆକୁ ମୁଁ ଭଲପାଏ । ସତ୍ୟ ଅନୁସନ୍ଧାନରେ ମୁଁ ବାରମ୍ବାର ଭାରତକୁ ଆସୁଛି । ତଥାପି ତୃଷ୍ଣା ମେଣ୍ଟୁ ନାହିଁ । କି ସୁନ୍ଦର ଏ ଦେଶ । କି ବିଚିତ୍ର ଏହାର ଜନ ଜୀବନ ଓ କାରୁକଳାର ସମାରୋହ ।"

ମୁଁ ଅପଲକ ନେତ୍ରରେ ଏହି ସୁଠାମ ଗୌରବର୍ଣ୍ଣୋଜ୍ଜ୍ୱଳ ମାତ୍ର ବତ୍ରିଶ ବର୍ଷ ବୟସ୍କ ବିଦେଶୀୟ ଯୁବକର ଜ୍ଞାନପିପାସାକୁ ପରିମାପ କରିବାରେ ତନ୍ମୟ ଅବସ୍ଥାରେ ରହି ପଚାରିଲି– ମୁଁ କିଛି ସାହାଯ୍ୟ କରିପାରେ ?

– ହଁ ନିଶ୍ଚୟ, ସେଇ ଲକ୍ଷ୍ୟ ନେଇ ତ ମୋର ଯାତ୍ରା ଏ ପୁରୀଧାମକୁ । ଆଚ୍ଛା, କହନ୍ତୁ ତ, ଏପରି ବିଭବମୟ ଦେବତାଙ୍କର ବିଗ୍ରହଗୁଡ଼ିକୁ ଆପଣ ସୁରକ୍ଷିତ ରଖିଛନ୍ତି ମନ୍ଦିର ଅଭ୍ୟନ୍ତରେ । ହିନ୍ଦୁଧର୍ମ ଗ୍ରହଣ ନ କରିଥିବା କିନ୍ତୁ ବିଶ୍ୱାସୀ ବ୍ୟକ୍ତିମାନଙ୍କୁ ଆପଣ କାହିଁକି ମନ୍ଦିର ଭିତରେ ପ୍ରବେଶ କରିବାକୁ ଅନୁମତି ଦିଅନ୍ତି ନାହିଁ; ଅଥଚ ଏଣେ କୁହନ୍ତି ଯେ ସର୍ବଘଟେ ନାରାୟଣ । ଈଶ୍ୱର ସର୍ବ ଜୀବରେ ବିଦ୍ୟମାନ । ହିନ୍ଦୁଧର୍ମ ପ୍ରତି ମୋର ଆସକ୍ତି ନଥିଲେ, ହିନ୍ଦୁ ଧର୍ମର ସାରତତ୍ତ୍ୱକୁ ଜାଣିବାକୁ ମୋର ଆଗ୍ରହ ନଥିଲେ, ଦେବତାମାନଙ୍କର ରୂପ, ଶ୍ରୀମନ୍ଦିରର ପୂଜାନୀତି, ଏଥିରେ ଥିବା ସ୍ଥାପତ୍ୟ ଭାସ୍କର୍ଯ୍ୟଗୁଡ଼ିକର ଇତିବୃତ୍ତ ଜାଣିବାକୁ ପ୍ରଗାଢ଼ ଆକାଙ୍କ୍ଷା ନଥିଲେ ମୁଁ କାହିଁକି ହଜାର ହଜାର ମୁଦ୍ରା ଖର୍ଚ୍ଚ କରି ନାନା ସ୍ୱାଚ୍ଛନ୍ଦ୍ୟ ଅସ୍ୱାଚ୍ଛନ୍ଦ୍ୟ ଭିତରେ ଲଣ୍ଡନ ସହରରୁ ଏ ଧାମକୁ ଆସନ୍ତି ? ତେଣୁ ଆପଣଙ୍କୁ ପ୍ରାର୍ଥନା, ଆପଣ ମତେ ସାହାଯ୍ୟ କରନ୍ତୁ, ମୋର କେତୋଟି ପ୍ରଶ୍ନର ଉତ୍ତର ଦିଅନ୍ତୁ ।

ଏତିକି କହି ମିଷ୍ଟର ସ୍ମିଥ୍ ବ୍ୟାଗ୍ ଭିତରୁ ଗୋଟିଏ ପ୍ରଶ୍ନାବଳୀ ବାହାର କରି ପାଠ କଲେ ।

ମୁଁ ହସି ହସି କହିଲି– ମିଷ୍ଟର ସ୍ମିଥ୍, ଆଗେ ଚା' ପର୍ବ ଶେଷ ହେଉ । ତା'ପରେ ଅନ୍ୟାନ୍ୟ ବିଷୟ ।

ସେ କଅଣ ଭାବି କହିଲେ– ଧନ୍ୟବାଦ । ଆଚ୍ଛା, ଏରାକା ଫ୍ରାଙ୍କ୍‌ଠାରୁ କିଛି ଚିଠି ପାଇଛନ୍ତି କି ? ଆମ ସଂଗଠନର ସେ ଜଣେ ବୁଦ୍ଧିମତୀ ତରୁଣୀ ।

ମୁଁ ଆଶ୍ଚର୍ଯ୍ୟ ହେଲି । କହିଲି– ହଁ ପାଇଛି । ତାଙ୍କର ଚିଠି ପଢ଼ି ମୁଁ ସ୍ତବ୍ଧ ଅବସ୍ଥାରେ ଥିବାବେଳେ ଆପଣ ଆସି ପହଞ୍ଚିଗଲେ । ମୋର ପ୍ରଶ୍ନ, ମତେ କିମିତି ଜାଣିଲେ ? ମୁଁ ତ କୌଣସି ଗୁଣରେ ଅସାଧାରଣ ନୁହଁ ।

ସ୍ମିଥ୍ ହସିଲେ, କହିଲେ– ମିଷ୍ଟର ମହାନ୍ତି, ଆପଣଙ୍କ କଥା ଛାଡ଼ନ୍ତୁ, ପୁରୀ ମନ୍ଦିରକୁ ଯେଉଁମାନେ ମହାପ୍ରସାଦ ଭୋଗ ପାଇଁ କୁଡୁଆ ଯୋଗାଇଥାନ୍ତି, ସେମାନଙ୍କର ନାମ ଓ ବଂଶ ପରିଚୟ ଆମ ପାଖରେ ଅଛି । ପୁରୀର ଦେବଦାସୀଙ୍କ ଇତିହାସ ଓ ସେମାନଙ୍କ କଳାର କ୍ରମବିକାଶ ଆପଣମାନେ ଯେତେ ଜାଣିନଥିବେ, ଆମମାନଙ୍କୁ ତାହା ସେତେ ଜଣା । ତେଣୁ ଆପଣଙ୍କୁ ଜାଣିବାରେ ଆମକୁ ଅସୁବିଧା ହୋଇନି । ଆଚ୍ଛା, ଏରାକା ଫ୍ରାଙ୍କ୍ ନିଶ୍ଚୟ କିଛି ପ୍ରଶ୍ନାବଳୀ ପଠାଇଛି ?

ତାହାହିଁ ମୋ ବିସ୍ମୟର କାରଣ ଥିଲା । ସ୍ୱର୍ଣ୍ଣ ଅପରାହ୍ଣ ମଉଳିବା ସଙ୍ଗେ ସଙ୍ଗେ ଗୋଧୂଳିର ସ୍ପର୍ଶରେ ମୋ ପ୍ରକୋଷ୍ଠର ଚିତ୍ରଗୁଡ଼ିକ ନିକଟରେ ଜଳି ଉଠିଲା ଗନ୍ଧମୟ ଧୂପବତି । କକ୍ଷଟି ସୁରଭିତ ହୋଇଗଲା ଧୂପଗନ୍ଧରେ । ପୁଣି ଥରେ ଏହି ଅବକାଶରେ ଛିଡ଼ା ହୋଇ ସ୍ମିଥ୍ ନମସ୍କାର କଲେ ପ୍ରତ୍ୟେକଟି ଚିତ୍ରପାଖକୁ ଯାଇ ।

ବିସ୍ମୟ ପରେ ବିସ୍ମୟ ଘଟିଯାଇଛି । ମୁଁ ଅଭିଭୂତ । ମୋ ଚକ୍ଷୁରେ ଏହି ବିଧର୍ମୀଠାରୁ କେଉଁ ସ୍ୱଧର୍ମୀ ହିନ୍ଦୁ ଏତେ ଉଚ୍ଚ ଆସନ ଓ ଅନୁଭବକୁ ଯାଇଛି ? କେବଳ ମାଳା, ତିଳକ ଓ କୌପୀନ ଧରିଲେ କଅଣ କିଏ ଧର୍ମ ପ୍ରବର ହୋଇପାରିବ ?

ମୁଁ ପ୍ରକୃତିସ୍ଥ ହୋଇ ପଚାରିଲି, "ମିଷ୍ଟର ସ୍ମିଥ୍, ଏରାକା ପଚାରିଛନ୍ତି ରାମଚଣ୍ଡୀ ସାହିର ଶିବ ମନ୍ଦିରରେ ଥିବା ସ୍ତମ୍ଭର କାମ କଅଣ ? ପୁଣି ପଚାରିଛନ୍ତି, ପିତୃସ୍ତମ୍ଭ ଓ ସ୍ମାରକସ୍ତମ୍ଭ ଭିତରେ ପାର୍ଥକ୍ୟ କଅଣ ? ଜଗନ୍ନାଥଙ୍କ କଣ୍ଠ ଦେଶରେ ଅଜସ୍ର ପୁଷ୍ପମାଳ ବିଲମ୍ବିତ ହେଉଥିଲେ ବି ସେ ସବୁ ମାଳାରେ ମନ୍ଦାର ଫୁଲ ଥାଏ କି ? ଯଦି ଥାଏ, କେବେ କେଉଁଦିନ ସେ ମାଳା ଲାଗି କରାଯାଏ ଦେବତାଙ୍କୁ ।

'ଇଉରେକା' କହି ମିଷ୍ଟର ସ୍ମିଥ୍ ଉଠିପଡ଼ିଲେ– କହିଲେ, "ଫ୍ରାଙ୍କ୍ ବହୁତ ଷ୍ଟଡ଼ି କରୁଛି । ଆପଣମାନେ ଏହି ପବିତ୍ର କ୍ଷେତ୍ରର ବାସିନ୍ଦା । ସବୁ ଜାଣିଥିବେ; କିନ୍ତୁ କୁହନ୍ତୁ ତ, ଏହି ମନ୍ଦାର ଫୁଲର ବିଷୟ..." ଘରଯାକ ବୁଲିଗଲେ ମିଷ୍ଟର ସ୍ମିଥ୍ ।

ମୁଁ ଏକପ୍ରକାର ଆତ୍ମବିସ୍ମୃତ.. ମନ୍ଦାର ଫୁଲ ତାହାହେଲେ କଅଣ ସବୁଦିନେ ସବୁ ପୁଷ୍ପମାଳାରେ ନଥାଏ ? କେଉଁ ବିଶିଷ୍ଟ ଦିନରେ ତାହା ଲାଗିରହେ ?

ମୋ ମନ କଥା ଜାଣିବା ଭଳି ମିଷ୍ଟର ସ୍ମିଥ୍ କହିଲେ– ମିଷ୍ଟର ମହାନ୍ତି– ଛାଡ଼ନ୍ତୁ, ଆମେ ଜାଣୁ ଏ ଫୁଲ ଗୋଟିଏ ଦିନ ମାତ୍ର ବର୍ଷକରେ ଜଗନ୍ନାଥଙ୍କୁ ଲାଗି କରାଯାଏ, ସେ ପୁଣି ଅଳ୍ପ ସମୟ ପାଇଁ ।

ଏ ତରୁଣ ସାହେବର ବୁଦ୍ଧିଦୀପ୍ତ ଚକ୍ଷୁଜ୍ୟୋତିକୁ ମୁଁ ସେଦିନ ପ୍ରାୟ ଅନ୍ଧକାରରେ ଦେଖିପାରିଥିଲି । ସଙ୍ଗେ ସଙ୍ଗେ ସେ ପ୍ରଶ୍ନ କଲେ–

ମଶାଣି ଚଣ୍ଡୀଙ୍କର ରୂପବୈଭବ କଅଣ ? ପୁରୀରେ କେତେ ସ୍ଥାନରେ ମଶାଣି ଚଣ୍ଡୀ ଅଛନ୍ତି ? ଦଶମହାବିଦ୍ୟାରୁ ଏ କେଉଁ ଦେବୀ ? ଲକ୍ଷ୍ମୀ କି ?

ମୁଁ ନିର୍ବାକ୍ । ପୁଣି ସେ ମୁଣି ଭିତରୁ ଗୋଟିଏ ଫଟୋଚିତ୍ର ବାହାର କଲେ, କହିଲେ– ଦେଖନ୍ତୁ ତ ଏ କାହାର ଚିତ୍ର ?

ମୁଁ କହିଲି– ଏ ଚିତ୍ର ତ ଜଗନ୍ନାଥଙ୍କର....

ସେ କହିଲେ, ନା ଏହା ଜଗନ୍ନାଥଙ୍କର ନୁହେଁ, ଯଦିଓ ସେହି ବିଗ୍ରହ ଭଳି ଦେଖାଯାଉଛି । ଏହା ବମ୍ବେ ମାର୍କେଟରେ ତିଆରି ହେଉଛି । ହଜାର ହଜାର ସଂଖ୍ୟାରେ ତାହା ବିକ୍ରି ହୁଏ । ପ୍ରକୃତ ଜଗନ୍ନାଥଙ୍କର ନାନାବିଧ ବେଶର ଫଟୋଚିତ୍ର ଉଠାଇବାକୁ ଆପଣମାନେ ଯଦି ଅନୁମତି ଦିଅନ୍ତେ, ତେବେ ଏ ଅସତ୍ୟ ଛବି ବଜାରକୁ ଆସନ୍ତା ନାହିଁ । ବିଶ୍ୱ ଚାହିଁରହିଛି ପୃଥିବୀ ବିଖ୍ୟାତ ଶ୍ରୀମନ୍ଦିରର ସ୍ଥାପତ୍ୟକୁ ଶ୍ରଦ୍ଧାର ସହିତ ନମସ୍କାର କରିବ । ଏବେ ଲକ୍ଷ୍ମୀ ମନ୍ଦିରର ପ୍ଲାଷ୍ଟର ଖୋଳାଯାଇ ଯେ ଅପୂର୍ବ ସ୍ଥାପତ୍ୟ– କଳା ମନ୍ଦିରରୁ ଆଲୋକକୁ ଆସୁଛି, ତାକୁ ଦେଖିବ କିଏ ? ବିଶ୍ୱପ୍ରେମିକମାନେ ତ ବଞ୍ଚିତ ହେଉଛନ୍ତି... ଆଚ୍ଛା, ନୀଳମାଧବମୂର୍ତ୍ତି କେତେ ପୁରୁଣା ? ଦେଉଳ ଭିତରେ କେଉଁଠି ଅଛନ୍ତି ? ତାଙ୍କୁ ପୂଜା କରାଯାଏ କି ସ୍ୱତନ୍ତ୍ର ନୀତିରେ ? କହିପାରିବେ ?

ମୁଁ କହିଲି, ଶ୍ରୀଜଗନ୍ନାଥଙ୍କ ସିଂହାସନରେ ବିଗ୍ରହର ଠିକ୍ ପଛପଟକୁ ସେ ମୂର୍ତ୍ତି ରହିଛନ୍ତି ।

ସ୍ମିଥ୍ ହସିଲେ– କହିଲେ, ସେ ବିଗ୍ରହର ପ୍ରାଚୀନତା ବିଷୟରେ ଆମେ ଜାଣୁ । ଦେଖନ୍ତୁ ମିଷ୍ଟର ମହାନ୍ତି, ଆପଣମାନେ ଅପୂର୍ବ ସମ୍ପଦର ଅଧିକାରୀ । ଈଶ୍ୱରାନୁଗ୍ରହରୁ ଭାରତୀୟମାନେ ଐଶ୍ୱର୍ଯ୍ୟମଣ୍ଡିତ– ଧର୍ମରେ, କର୍ମରେ, କଳ୍ପନାରେ, ଚିନ୍ତାରେ । କିନ୍ତୁ ଅନେକ କିଛି ଗୁପ୍ତ ରହିଯାଇଛି, ଯାହା ବିଷୟରେ ଆପଣ ଜାଣିନାହାନ୍ତି । ଯାହା ବା ଜାଣନ୍ତି ତାହା ଅଧିକାଂଶ ସ୍ଥାନରେ ବିକୃତ । ଯାହା ବା ବାହାର ଦୁନିଆକୁ ଜଣାଇଛନ୍ତି, ତାହା ବି ବିକୃତ; ସତ୍ୟ ନୁହେଁ ।

ଜଣେ ଲଣ୍ଡନବାସୀ ଯୁବକର ଏଭଳି ସତ୍ୟ–ପ୍ରକାଶ ଓ ନିର୍ଭୀକ ମତଖ୍ୟାପନକୁ ମୁଁ ଶ୍ରଦ୍ଧାର ସହିତ ଗ୍ରହଣ କଲି । ମୁଁ ଜାଣେ ବହୁ ବ୍ୟକ୍ତି ବିକୃତ ଓ ମିଥ୍ୟା ଭାଷଣ ଦେଇ ଶ୍ରୀମନ୍ଦିରର ତତ୍ତ୍ୱ ଓ ତଥ୍ୟକୁ ବିଦେଶୀମାନଙ୍କ ନିକଟରେ ପ୍ରକାଶ କରୁଛନ୍ତି ।

ହଠାତ୍ ସ୍ମିଥ୍ କହିଲେ– ଆପଣ ଏରାକା ଫ୍ରାଙ୍କ୍‌ର ଚିଠିର ଉତ୍ତର ଦେବେ । ସେ ବିଚାରୀ ସେହି ସୁଦୂର ଲଣ୍ଡନ ସହରରୁ ଶ୍ରୀମନ୍ଦିରର କେତନକୁ ଚାହିଁ ବସିଛି ।

– ନିଶ୍ଚୟ, ତେବେ ମତେ କିଛିଦିନ ତଥ୍ୟ ସଂଗ୍ରହ କରିବାକୁ ପଡ଼ିବ ।

ଏଥି ମଧ୍ୟରେ ଚାହା ପର୍ବ ଶେଷ ହୋଇଯାଇଛି ।

ସ୍ମିଥ୍ ଗୋଟିଏ ନୋଟ୍‌ବୁକ୍ କାଢ଼ିଲେ ଏବଂ ମନକୁ ମନ କହିଲେ– "ଭୋଗର ମୁରୁଜକଟା ଯନ୍ତ୍ରଟା କିପରି ହୋଇଥାଏ, କଳାହାଟଦ୍ୱାର ମଧ୍ୟଭାଗରେ କି ପ୍ରକାର ଭାସ୍କର୍ଯ୍ୟ ରହିଛି, ଆଉ ବ୍ରହ୍ମ ପରିବର୍ତ୍ତନ କେଉଁ ତିନିଜଣ କରିଥାନ୍ତି ?

ଜାଣନ୍ତି ମିଷ୍ଟର ମହାନ୍ତି, ଏରାକା ଫ୍ରାଙ୍କ୍ ଏଇ ତିନିଜଣଙ୍କ ନାଁ ଜାଣେ ।

ମୁଁ ଭୀତତ୍ରସ୍ତ ଭାବରେ ଚିତ୍କାର କଲି, "ନା, ସ୍ମିଥ୍, ଅସମ୍ଭବ । ଏ କାର୍ଯ୍ୟ ଏପରି ଗୁପ୍ତ ଭାବରେ ହୁଏ ଯେ କାହାର ଜାଣିବା ଦେଖିବା ଏକାବେଳକେ ଅସମ୍ଭବ ।

ସ୍ମିଥ୍ ହସିଲେ– କହିଲେ, ଶ୍ରୀମନ୍ଦିରର ପୂଜକମାନେ ଅଛନ୍ତି, ଯେଉଁମାନେ ଏ ବିଷୟ ଜାଣନ୍ତି; କିନ୍ତୁ କହିବେ ନାହିଁ । ଆମେ ଜାଣିଛୁ । ଆଚ୍ଛା, କଳାହାଟଦ୍ୱାର ମଧ୍ୟସ୍ଥଳରେ ଗୋଟାଏ ମିଟର ବାକ୍ସ ଅଛି ନା ? ତା'ରି ପାଖରେ ଅନୁପମ ଭାସ୍କର୍ଯ୍ୟ ରହିଛି । କେହି ଦେଖିଛନ୍ତି ?

ମୁଁ ଭାବିଲି ଏସବୁ ଏମିତି ଭୀତପ୍ରଦ ବିଷୟ ଯେ ସ୍ମିଥ୍‌ଙ୍କୁ ଯଦି ମୁଁ ବାରଣ ନକରେ, ତେବେ ସେ ଗୋଟାଏ ପରେ ଗୋଟାଏ ପ୍ରଶ୍ନ ପଚାରି ମତେ ଉଦ୍‌ଭ୍ରାନ୍ତ କରିଦେବେ ।

ସଂଭ୍ରମରେ ମୋର ମଥା ନଇଁ ଆସିଲା । ଏମାନେ ଯଥାର୍ଥରେ ଗବେଷକ, ଜିଜ୍ଞାସୁ । ଏମାନଙ୍କର ସଙ୍ଗଠନ କେବଳ ଅଦୃଶ୍ୟକୁ ଦୃଶ୍ୟ କରିବାରେ, ଅଜ୍ଞେୟକୁ ଜ୍ଞେୟ କରିବାରେ ଯିମିତି ଉତ୍ସର୍ଗୀକୃତ; ଅଥଚ ଆମେ ଏହିଠାରେ ଜନ୍ମିଛୁ, ପୁଣି ଏଇଠି ମାଟି ଦେଖିବୁ । ଯାହା କେବଳ କୁହାଟ ପକାଇ ଥରେ ଥରେ ଡାକି ଦେଉଛୁ– 'ହେ ବଳୀୟାରଭୁଜ, ହେ ଚକାଡୋଳା, ମାଗୋ ମାଆ ବିମଳା, କମଳା... ।'

ସ୍ମିଥ୍ ଉପରକୁ ଅନାଇଁଲେ । ପୁଣି ଦୃଷ୍ଟି ତାଙ୍କର ଅବନତ ହେଲା ନିମ୍ନକୁ । ପଚାରିଲେ–

– ଶ୍ୱେତକୁଷ୍ଠ ଦେଖିଛନ୍ତି ?

– ହଁ, ରୋଗ ।

– ଅର୍ଥାତ୍ ମଣିଷର ମୂଳ ତ୍ୱକ୍ ଉପରେ ଶ୍ୱେତବ୍ୟାଧିର ପ୍ରସାର । ଦେଖିବାକୁ ସୁଖଲାଗେ କି ?

ହଠାତ୍ ଏପରି ବ୍ୟାଧି ବିଷୟରେ ପ୍ରଶ୍ନ କାହିଁକି ?

ମୁଁ କହିଲି– ଖୋଲି କରି କୁହନ୍ତୁ ତ ? କଅଣ ଆପଣଙ୍କର ମନରେ ଅଛି ?

ସ୍ମିଥ୍ କହିଲେ– ଆପଣମାନେ ଯୁକ୍ତି ବାଢ଼ନ୍ତି ଯେ ମନ୍ଦିରର କିଛି ଆୟ ହେଉଛି; କିନ୍ତୁ ଗୋଟିଏ କଥା ଲକ୍ଷ୍ୟ କରନ୍ତୁ । ପୁରାକାଳର ନରପତିମାନେ ଇଚ୍ଛା କରିଥିଲେ ମାର୍ବଲ ପଥର ମନ୍ଦିରଯାକ ଚଟାଣରେ ବିଛାଇ ଦେଇଥା'ନ୍ତେ । ନା, ତାହା କରିନାହାନ୍ତି । ଯେଉଁ ସୁନ୍ଦର ତାମ୍ରବର୍ଣ୍ଣର ଶିଳାକୁ ଆପଣମାନେ ତାଡ଼ି ଉଠାଇ ଦେଇ ସ୍ୱର୍ଗପ୍ରାପ୍ତ ନରନାରୀଙ୍କର ମାର୍ବଲ ଫଳକ ଠାଏ ଠାଏ ଖଞ୍ଜୁଛନ୍ତି ତାହା ସୁସ୍ଥ ସୁନ୍ଦର ଶ୍ରୀମନ୍ତ ଚର୍ମ ଉପରେ ଶ୍ୱେତ କୁଷ୍ଠର ଆକ୍ରମଣ ବୋଲି ଭାବୁନାହାନ୍ତି ତ ?

ମୁଁ କ୍ଷୁଣ୍ଣ ଭାବରେ ଉତ୍ତର ଦେଲି– ବିଶ୍ୱାସ କେନ୍ଦ୍ର, ଗୋଟାଏ କଥା ଅଛି । ବହୁ ଲୋକଙ୍କର ପଦରଜ ପଡ଼ି ସେ ନାମଫଳକର ଅଧିକାରୀ, ପୁରୁଷ ବା ମହିଳା ହେଉ, ନିର୍ବାଣ ପାଇଯାଏ ।

ସ୍ମିଥ୍ ଗମ୍ଭୀର ହେଲେ– କହିଲେ, ମତେ କ୍ଷମା କରିବେ । ମୁଁ କେବଳ ଏସ୍ଥେଟିକସ୍ ବିଚାରରୁ କହୁଥିଲି । ମୁଁ ତତ୍ତ୍ୱ ପାଇଁ ଆସିନାହିଁ, ସତ୍ୟ ପାଇଁ ଅନ୍ୱେଷଣ କରୁଛି ସେହି ଭାବସମ୍ପଦକୁ ।

ସନ୍ଧ୍ୟା କେତେବେଳୁ ଉତ୍ତୀର୍ଣ୍ଣ ହୋଇଯାଇଛି । ସ୍ମିଥ୍ ବିଦାୟ ନେବାକୁ ବସିଲେ ।

ଯିବା ପୂର୍ବରୁ ଛିଡ଼ା ହୋଇ କରମର୍ଦ୍ଦନ କରିବା ଅବସରରେ କହିଲେ– ଈଶ୍ୱର ଓଡ଼ିଆ ଜାତିକୁ ପରିପୂର୍ଣ୍ଣ କରି ଗଢ଼ିଛନ୍ତି; ଆବଶ୍ୟକ ହେଉଛି, ତା'ର ସମ୍ପତ୍ତିର

ସୁରକ୍ଷା ଓ ପ୍ରଚାର । ମୋର ଆଶା ଆପଣମାନେ ତାହା କରିପାରିବେ । ହଁ, ମନେ ପଡ଼ିଲା ଫ୍ରାଙ୍କ୍‌ର ଅନୁରୋଧ । ସେ ଜାଣେ ଆପଣ ଆର୍ଯ୍ୟକୃଷ୍ଟିର ଜଣେ ପରମ ଶ୍ରଦ୍ଧାବାନ୍ ସେବକ । ସେଥିପାଇଁ ମତେ କହିଛି, ଲଣ୍ଡନରୁ ବିଦାୟ ନେଲାବେଳେ ଆପଣଙ୍କୁ ଦୁଇଟି ଉପହାର ଦେବାପାଇଁ ।

ପ୍ରଭାତ ହେଲେ ଆଉ ଗୋଟିଏ ବର୍ଷର ଜନ୍ମ ହେବ । ନବ ସୂର୍ଯ୍ୟର ନବ ଉନ୍‌ମିଳନ। ନବବର୍ଷର ଶୁଭେଚ୍ଛା ଆମମାନଙ୍କର ଗ୍ରହଣ କରନ୍ତୁ ।

ଦେଖିଲି ଗୋଟିଏ ଆଲୋକଚିତ୍ର । ଏକ ଲାବଣ୍ୟମୟୀ ଶ୍ୱେତାଙ୍ଗିନୀ ତରୁଣୀ ଦାରୁବ୍ରହ୍ମ ଜଗନ୍ନାଥ ବିଗ୍ରହ ତଳେ ଉପବେଶନକରି ଚାହିଁରହିଛି, ଧ୍ୟାନସ୍ତିମିତ ଦୁଇଟି ଚକାଡୋଳାକୁ । ଏ ଫ୍ରାଙ୍କ୍... ।

ଅନ୍ୟଟି.... ।

ଦେଖିଲି କୋଣାର୍କର ସୂର୍ଯ୍ୟମୂର୍ତ୍ତିଆଡ଼କୁ ଅପଲକ ଯୋଗଦୃଷ୍ଟି ଦେଇ ବସିରହିଛି ପଦ୍ମାସନରେ ଏହି ହିନ୍ଦୁ କୃଷ୍ଟିପ୍ରେମୀ ଶ୍ୱେତାଙ୍ଗ ଯୁବକ ଫର୍ଗସ୍ ସ୍ମିଥ୍ । ସତେଯେପରି ମନ, ପ୍ରାଣ, ହୃଦୟରେ ସେ ପ୍ଲାବିତ ହୋଇଯାଇଛି କଳିଙ୍ଗର ଶତାବ୍ଦୀବାହୀ ଜୀବନ– ସିନ୍ଧୁ ଭିତରେ ।

ମୁଗ୍ଧ ହେଲି; ଅଭିଭୂତ ହେଲି । ଆହା, ମାନବ ଦେଶ କାଳ ସୀମା ଯେଉଁଠାରେ ବି ଆବିର୍ଭୂତ ହୋଇଥାଉ, ସେ ଯେ ଚେଷ୍ଟା କଲେ ବିଶ୍ୱଭୂମାରେ ସଂଲଗ୍ନ ରହିପାରିବ, ଏହି ବିଶ୍ୱାସକୁ ଦୃଢ଼ପ୍ରତିଷ୍ଠ କରିଦେଇ ଗଲେ ସେ ଯାମିନୀରେ ମିଷ୍ଟର ଫର୍ଗସ୍ ସ୍ମିଥ୍ ମୋରି ଗୃହାଭ୍ୟନ୍ତରରେ ... ।

ସତେ ଯାଯାବର... ଉପରେ ଆକାଶ, ତଳେ ଧରିତ୍ରୀ... ଭିତରେ ଆତ୍ମାକୁ ଚିହ୍ନିବାର ପ୍ରୟାସ । ଆସ କୁମାରୀ ଏରାକା ଫ୍ରାଙ୍କ୍... ତା'ର ଈକ୍ଷଣ ଶକ୍ତିର ମାର୍ଗବନ୍ଧନୀ... ପୁରୀ ରାମଚଣ୍ଡୀ ସାହି; ଆଉ ଲଣ୍ଡନ ସହର... ଆଶ୍ଚର୍ଯ୍ୟ...।



# ମୁଖାପିନ୍ଧା ମଣିଷ

ଚନ୍ଦ୍ରକାନ୍ତ ଦେଖିଲେ ତାଙ୍କ ପାଖରେ ଯେ ବସିଛନ୍ତି, ଖାଲି ବକର ବକର ହେଉଛନ୍ତି । କିଛି ଶୁଣାଇ ଦେଉନାହାନ୍ତି । ଧେତ୍ କହି ସେ ଟିକିଏ ଅପସରି ଗଲେ ।

ସକାଳ ! ସୂର୍ଯ୍ୟ ଦିଗ୍‌ବଳୟ ଛାଡ଼ି ଉପରକୁ ଯାଉଛନ୍ତି । ଲୋହିତ ପିଣ୍ଡ କ୍ରମେ ଜଳନ୍ତା ସହସ୍ର ଚୁଲି ଆକାର । ସେହି ଚକ୍ରବାଳକୁ ଛୁଉଁଛି ଅଶାନ୍ତ ସାଗର ।

ପାଦ୍ରି ଜଣକ ଖ୍ରୀଷ୍ଟଧର୍ମ କଥା ନାନା ଗଳ୍ପ ଛଳରେ ବୁଝାଉଛନ୍ତି । ତା' ପୂର୍ବରୁ ମୁସଲମାନ ମୌଲବୀ ପ୍ରଫେଟ୍‌ଙ୍କ କଥା କହିସାରିଛନ୍ତି । ଚନ୍ଦ୍ରକାନ୍ତ ଦେଖିଲେ, ସେ ଲୋକଟା ପୁଣି ଘୁଞ୍ଚିଆସି ବକର ବକର ଆରମ୍ଭ କରିଛି ।

ଏତେ ଲୋକ ଥାଉ ଥାଉ ଚନ୍ଦ୍ରକାନ୍ତଙ୍କ ପାଖ ଛାଡୁ ନାହିଁ ସେ କାହିଁକି ? ବୁଝି ହେଉନାହିଁ । ଅଲେଖ ଅବଧୂତ ଗୋସାଇଁ କଅଣ କହିବେ ବୋଧହୁଏ । ମାଇକ୍ ଖଞ୍ଜା ଯାଇଛି ତାଙ୍କ ମୁହଁ ପାଖରେ । ତାଙ୍କ ଦେହ ଉଲଗ୍ନ । ଯଥାର୍ଥରେ ସେ କୌପିନୀବନ୍ତ । ତାଙ୍କ ମଣ୍ଡଳୀ ଅଲେଖ ଭଜନ ଗାଇସାରିଛନ୍ତି । ବଡ଼ ପରିପାଟୀରେ ଗାଇଲେ, ଅଣାକାର ଅଲେଖ ସଂଗୀତ ।

"– ଆଜ୍ଞା, ଆପଣ କାଲି ସନ୍ଧ୍ୟାର ବକ୍ତା ଥିଲେ ନାଁ ?"

ଚନ୍ଦ୍ରକାନ୍ତ ବିରକ୍ତ ହେଲେ । କହିଲେ, "ଆପଣ ତ ଦେଖିଥିବେ ଶୁଣିଥିବେ, ପଚାରୁଛନ୍ତି କାହିଁକି ?"

ଲୋକଟି ଗାଇଲା– "କାଲି ଯେ ରାଜେନ୍ଦ୍ରାସନେ ଆଜି ସେ ଫକୀର । କାଲି ସେ ଆପଣଙ୍କ ଛାତିରେ ଦୋହଲୁଥିଲା, ସେ ତାରକସି କାମର ଲକେଟ୍; ଆଜି କାହିଁ ନାହିଁ ?"

ଏ ଲୋକଟା ସୀମା ଛାଡ଼ିଯାଇଛି ବୋଧହୁଏ ।

ଚନ୍ଦ୍ରକାନ୍ତ ଅନ୍ୟମନସ୍କ ହୋଇ କିଛି କ୍ଷଣ ଭାବିଲେ । ଏ କଅଣ କହିଲା– କାଲି ଯେ ରାଜେନ୍ଦ୍ରାସନେ ... ଏହାର ତାତ୍ପର୍ଯ୍ୟ କଅଣ ?

ଅବଧୂତ ଅଲେଖ ଗୋସାଇଁ ପ୍ରବଚନ ଦେଇଛନ୍ତି... ସତ୍ୟ ଶୁଦ୍ଧ ଚେତନ ନିରଞ୍ଜନ ଅଲେଖ ବ୍ରହ୍ମ । ଗୋଟାଏ ବାକ୍ୟର ଅନେକଗୁଡ଼ାଏ ଶବ୍ଦ ।

"– ଦେଖନ୍ତୁ, କାଲି ସନ୍ଧ୍ୟାରେ ଆପଣ ମଞ୍ଚ ଉପରେ ବସିଥିଲେ, କେତେ ଆଦର ଆପ୍ୟାୟନ ପାଇଲେ, ଛାତିରେ ଲକେଟ୍ ଝୁଲିଲା । ଭାଷଣ ଦେଲାବେଳେ ଲୋକେ ଉଲ୍ଲସିତ ହୋଇ ହାତତାଳି ଦେଲେ, ଏବେ ଆପଣ ବାଲି ଉପରେ ବସିଛନ୍ତି । ଛାତିରେ ଗହଣା ନାହିଁ । ସବୁ ମିଛ, ମାୟା; କାଲି ଥିଲା, ଆଜି ନାହିଁ; କେଉଁ ଦିନ ବି ନଥିଲା, କେବେ ବି ରହିବ ନାହିଁ ।"

ଲୋକଟି ଆନନ୍ଦରେ ଏତିକି କହି ଦୋହଲିଗଲା ।

ପାଖ ନାରୀମାନେ ଆଲୋଚନା କରୁଛନ୍ତି... ଶଙ୍କରାଚାର୍ଯ୍ୟ କଅଣ ଖାଆନ୍ତି ? ହାଣ୍ଡିଶାଳର କଥା ତାଙ୍କର ବୋଧିରେ ନୃତ୍ୟ କରୁଛି ।

ଚନ୍ଦ୍ରକାନ୍ତ ଦେଖିଲେ ଶୁଣିଲେ– ସେ ଆରପାଖକୁ ଉଠିଯିବେ କି ? ଚାହିଁ ଦେଖିଲେ, ସେଠାରେ ଯେଉଁମାନେ ବସିଛନ୍ତି, ତାଙ୍କ ଭିତରୁ ଦୁଇ ଚାରିଜଣଙ୍କୁ ସେ ଜାଣନ୍ତି... ଏକ ନମ୍ବର ଗଣେଶ ପାତ୍ରେ, ନାମଯାଦା ଚୋରା ବ୍ୟବସାୟୀ; କିନ୍ତୁ ଏ କି ବେଶ ? ଲଲାଟରେ ଭସ୍ମର ତ୍ରିବଳୀ ରେଖା...

ଆଉ ସେ ଜଣକ...

"ଶଙ୍କରାଚାର୍ଯ୍ୟ ଖାଲି କଖାରୁ ଖାଆନ୍ତି । ସିଝା କଖାରୁ ମ ? କେଡ଼େ ଚାଲାକ୍, ମାଳ ମାଳ ହୋଇ ଯେଉଁ ଲେମ୍ବୁମାଳ ତାଙ୍କ ବେକରେ ପଡୁନି, ସବୁ ପରା ଚାଲାଣ ହୋଇଯାଏ ଆଚାର ହେବା ପାଇଁ ।"

"ଚୁପ୍ ଚୁପ୍; କିଏ ଶୁଣିବ ।"

"ମଲା ମୋର, ଏଠି କଅଣ ବିଚାର ହେଉଛି ନା, ୟାର ଖାଲି କିଏ କଅଣ ଖାଇଲା, ପିଇଲା ।"

"ପିଇଲା କଥାରୁ କହୁଛି, ଅପା ମ, ଏ ଯେଉଁ ତେଲୁଗୁଲୋକଟା ଫଟ ଉଠଉଛି ମ, କେତେ ପିଇଚି କିଓ ? ଗୋଡ଼ ଠିକ୍ ରହୁନି..."

ଆଲୋକଚିତ୍ର ଉଠୁଛି । ଯେ ଉଠୋଉଛି ତା'ର ଗୋଡ଼ ଠିକ୍ ପଡୁ ନାହିଁ । ଆଉ ଯିଏ ତାକୁ ନିର୍ଦ୍ଦେଶ ଦେଉଛନ୍ତି, ସେ ବି... ପବିତ୍ର ଅପବିତ୍ରୋ ବା.. ସମସ୍ତେ ଏଠି ରୁଣ୍ଡ...

ସେ ଲୋକଟା କିମିତି ମନକଥା ବୁଝିପାରିଲା, କହିଲା– ଆପଣ ଏଠାରୁ ଉଠିଯିବାକୁ ବସିଛନ୍ତି ନା ? ହାଃ ହାଃ... ଯେଉଁଆଡ଼େ ଯାଆନ୍ତୁ, କେବଳ ଧୂ ଧୂ ଧୂସର ମରୁବାଲି, ଜଳ ପାଇବେନି । ମୁଖାପିନ୍ଧା ମଣିଷ ଦେଖିବେ, ବିଚିତ୍ର ସେମାନେ, ନିଜକୁ ଠକୁଛନ୍ତି, ଅନ୍ୟକୁ ଠକାଉଛନ୍ତି, ମୁଖା ପିନ୍ଧି ଅସଲ ମୁହଁକୁ ହରେଇଦେଇଛନ୍ତି ।

ପ୍ରତିଦିନ ଦୁଇଥର ବୈଠକରେ ସେ ମୁଣ୍ଡିତ ମସ୍ତକ ବୋଧହୁଏ ମହନ୍ତ ଚେଲା ଯେ ବସୁଛନ୍ତି, ତାଙ୍କ ଉପରେ ସମସ୍ତଙ୍କ ଆଖି ପଡୁଥାଏ । ପଦେ କେବେ ସେ କହିନାହାନ୍ତି, ଆସନ୍ତି, ଯାଆନ୍ତି । ନାସାରୁ ଶିରଯାଏ ତ୍ରିରଙ୍ଗର ଚିତା । ବୟସ ହୋଇନାହିଁ ମଞ୍ଚ ଉପରେ ବସିବାକୁ । ତଥାପି ସେ ବସୁଥିଲେ ।

ଚନ୍ଦ୍ରକାନ୍ତ ସେଇକଥା ଭାବୁଥିଲେ । ଯେଉଁ ଅଧିକାରରୁ ସେ ସଦା ମଞ୍ଚସ୍ଥ, ଏଇ ଚେଲା... ଯୁବକ ରାମାନନ୍ଦୀ ।

ଲୋକଟି ଆଙ୍ଗୁଠି ଦେଖାଇ ସେଇ ଆଡ଼େ କହିଲା– ମୁଁ ଜାଣିଛି, ଆପଣ କଅଣ ଭାବୁଛନ୍ତି... ସେଇ ଚେଲା କଥା ତ ? ସେ ତ ବସିବେ; କାରଣ ସେ ମଠର ମହନ୍ତ... ଗୋଟିଏ ରକ୍ଷିତା ଆଉ ଆଳସ୍ୟରେ ଖାଇବା ପାଇଁ ଭୋଗ ଉପଭୋଗ ତାଙ୍କର ପର୍ଯ୍ୟାପ୍ତ... ଧର୍ମ ତାଙ୍କର ଜନ୍ମ ଜନ୍ମାନ୍ତରରୁ ଅର୍ଜିତ ହୋଇସାରିଛି । ସେତିକି ନୁହେଁ, କାଲି ଦେଖିଛି ଫଟ ଉଠିବାବେଳକୁ ଝୁଣ୍ଟିପଡ଼ିବା ଭଳି ଶଙ୍କରାଚାର୍ଯ୍ୟଙ୍କୁ ଧରିପକାଇଲେ... ଫଟ ଉଠିଗଲା ।

ଚନ୍ଦ୍ରକାନ୍ତ ବିସ୍ମିତ ହେଲେ... ଲୋକଟା କିଏ ? ମନକଥା ଜାଣୁଛି କେମିତି ? ଏ ସଭାର ପ୍ରକୃତ ମର୍ମ ଦର୍ଶନରୁ, ସେ କହିଯାଇଛି ।

ଅଲେଖ ସଂପ୍ରଦାୟଙ୍କର ଭଜନ ଭାଷଣ ଶେଷ ହେଲା ।

ଶଙ୍କରାଚାର୍ଯ୍ୟ ମଞ୍ଚ ଉପରକୁ ଆସିଗଲେ । କ୍ଷଣକ ପାଇଁ ସହସ୍ର ଜନତାର ହୃଦୟ ଉଦ୍‌ବେଳିତ ହୋଇଉଠିଲା... ।

ଛୁଇଁବେ, ପ୍ରସାଦ ନେବେ, କଅଣ କହିବେ ତାଙ୍କୁ... ।

– ଦଶଖଣ୍ଡ ସୁନା ଇଟା ଗୋପନରେ ରଖିଛି, ପ୍ରଭୁ ରକ୍ଷା କର !

– ଗୋଦାମ ତଳେ, ଗହୀରରେ ଛୋଟ ଛୋଟ ଗୋଦାମ, ନିବୁଜ, ନିବିଡ଼... ସେଇଠି ଅପମିଶ୍ରଣ ଚାଲେ । ବ୍ୟାଙ୍କ୍‌ରେ ଦଶଲକ୍ଷ ରହିଗଲେ, ମୁଁ ଛାଡ଼ିଦେବି ବ୍ୟବସାୟ, ପ୍ରଭୁ ଶଙ୍କର ରକ୍ଷା କର !

– ପ୍ରତି ସହରରେ ନାମୀ ବେନାମୀ କ୍ଲିନିକ୍ ରଖି, ଭ୍ରୂଣହତ୍ୟା କରି ଚାଲିଛି, ହେ ଶଙ୍କର ! ପାଦରେ ସ୍ଥାନ ଦିଅ, ବ୍ୟବସାୟର ଆଉ ଟିକିଏ ଉନ୍ନତି ହୋଇଗଲେ, ଛାଡ଼ିଦେବି ଆଶୀର୍ବାଦ କର ।

– ହାଇକୋର୍ଟରେ ଦୁଇଡଜନ ମକଦ୍ଦମା, ମର୍ଡ଼ର ଗୋଟାଏ ଅଧେ ରହିଛି ତା' ଭିତରେ... କଅଣ ସେ ଧଳା ଖଇ ବିତରଣ ଆପଣ କରୁଛନ୍ତି, ତାକୁ ଟିକିଏ ସ୍ପେସିଆଲ ମନ୍ତୁରି ଦେଇ ଦିଅନ୍ତୁ, ପ୍ରଭୁ ଶଙ୍କର, ଯିମିତି ସବୁଥିରୁ ମୁକୁଳିଯିବି ।

– ସ୍ୱାମୀ– ପରିତ୍ୟକ୍ତା ମୁଁ, ଯାଉ ସେ ଅଲକ୍ଷଣା, ହେଲେ ଆଉ ଜଣେ କିଏ ଆସି ମୋ ଦେହ ମନରେ ବସନ୍ତ ବୁହାଇବନି ? ପ୍ରଭୁ ଶଙ୍କର... ସେ ଭୋଗ ବେଲପତ୍ର ଟିକିଏ ଦିଅନ୍ତୁ... ଯିମିତି ମନ– କାମନା ପୂର୍ଣ୍ଣ ହୋଇଯାଏ ।

ଲକ୍ଷ ଲକ୍ଷ କୋଟ କୋଟି ଆର୍ତ୍ତ ଚିତ୍କାର । ଆମର ପାପକୁ ସମର୍ଥନ କର ହେ ଦେବଦୂତ, ଆମର କାମନାକୁ ଆହୁରି ଶାଣିତ କର, ଆହୁରି ଜଳାଅ ।

'ସ୍ୱାମୀ' ଆଉ ସ୍ତ୍ରୀ ଗୋଟାଏ ଯାନର ଦୁଇଟା ଚକ୍ର, ଗୋଟାଏ ଭାଂଗି ଗଲେ ଯିମିତି ଗାଡ଼ିଟା ଅଚଳ ହୋଇଯାଏ, ସିମିତି ପୁରୁଷ ବା ସ୍ତ୍ରୀ ଏକମନ... ଏକ ଧ୍ୟାନ ନ ହେଲେ ସଂସାରର ଗାଡ଼ି ଅଚଳ ହୋଇଯିବ ।'

ଶଙ୍କରାଚାର୍ଯ୍ୟଙ୍କ ବାଣୀ... ମୁଗ୍ଧ ହୋଇ ସମସ୍ତେ ଶୁଣୁଥିଲେ ।

ପ୍ରଭାତର ଅରୁଣିମା ତଳେ ସେଦିନ ଶଙ୍କରଙ୍କର ପ୍ରବେଶ ସହର ଉପକଣ୍ଠରେ । ଚନ୍ଦ୍ରକାନ୍ତ ଦେଖିଲେ ଦୁଇପଟର ପୋଲିସ୍ ଘେର ଭିତରେ ଧର୍ମଗୁରୁ କେଉଁଠି ଉଚ୍ଚ ଆସନରେ ଛିଡ଼ା ହୋଇ ଦର୍ଶନ ଦେଉଛନ୍ତି ତ କେଉଁଠି ରାଜପଥ ଉପରେ ସମସ୍ତଙ୍କୁ ସଂଭାଷଣ ଜଣାଉଛନ୍ତି ।

ହଠାତ୍ ସେ ଘେର ଭାଙ୍ଗି ଜଣେ ବୃଦ୍ଧ ଭିକ୍ଷୁକ ତଳେ ଲୋଟିଗଲା... ହାତରେ ଟିଣପାତ୍ର, କାନ୍ଧରେ ଅଖା ଖଣ୍ଡେ... ଅଣ୍ଟାରେ ଛିଣ୍ଡା କନା... ସେ କଅଣ କହିବାକୁ ଯାଉଥିଲା... ଅଟକିଗଲା ।

ହାଃ ହାଃ, କଅଣ ବା କହିବ ? କହିଥାନ୍ତା ମୈ ଭୁଖା ହୁଁ... ଖାନା ଦୋ... ତା' ପୂର୍ବରୁ ଦେଖିଛନ୍ତି ତ କିପରି କେତେ ଯୋଡ଼ା ପୁଲିସ୍ ବୁଟ୍ ତା' ଉପରେ ବର୍ଷିଗଲା । ତାକୁ ଝାମ୍ପିନେଲେ ରକ୍ଷୀମାନେ... ଶଙ୍କରାଚାର୍ଯ୍ୟ କହୁଥିଲେ– 'ମତ୍ ମାରୋ, ମତ୍ ମାରୋ...'

ଆଶ୍ଚର୍ଯ୍ୟ ଏ ଲୋକ । କିମିତି ଜାଣୁଛି ମନ କଥା ? ହଁ ସେଇ ଦୃଶ୍ୟ ମନେପଡୁଛି... ଚନ୍ଦ୍ରକାନ୍ତ ଅସ୍ଥିର ହେଲେ, କହିଲେ ଆପଣ କିଏ ?

ଲୋକଟା ପ୍ରଥମଥର ପାଇଁ ଶାନ୍ତ ନୀରବ ହୋଇଗଲା । କହିଲା– ମୁଁ ଏକମାତ୍ର ବ୍ୟକ୍ତି ଯାହାର ମୁହଁ ଉପରେ ରଙ୍ଗ ବେରଙ୍ଗର ମୁଖା ନାହିଁ । ଅବଶିଷ୍ଟ ସମସ୍ତେ ଆସିଛନ୍ତି ମୁଖା ପିନ୍ଧି... ଚେତନା ଉପରେ ମୁଖା, ପ୍ରାଣ ଉପରେ ମୁଖା, ହୃଦୟ ଉପରେ ମୁଖା... ସତ୍ୟର ବହୁ ଦୂରରେ ସେମାନେ । କହିପାରିବ, ଏ ବିଶ୍ୱଧର୍ମସଭା ଜଣକର ତିଳେମାତ୍ର ଚେତନାକୁ ଉର୍ଦ୍ଧ୍ୱାୟତନ କରିପାରିଛି କି ? ନା ପାରିବ ? କେବଳ ଲେମ୍ବୁ, ଗଜ, ଧେନୁ ଓ ବିଚିତ୍ର ସନ୍ନ୍ୟାସୀ ସନ୍ନ୍ୟାସିନୀଙ୍କର ବେଶଭୂଷା ଗୈରିକ କୌପିନିରେ ହିଁ ରହିଗଲା ଏହାର ବିସ୍ତୃତି ଓ ଗଭୀରତା ।

ଚନ୍ଦ୍ରକାନ୍ତ କହିଲେ– କିଛି କଅଣ ଏତେ ବଡ଼ ଆୟୋଜନର ତାତ୍ପର୍ଯ୍ୟ ନାହିଁ ?

'– ଅଛି, ଯାହା ପାଇଁ ଅଛି, ସେ କୋଟିକରେ ଗୋଟିଏ, ସେ ତ ପ୍ରତିମୁହୂର୍ତ୍ତରେ ବିଶ୍ୱଧର୍ମକୁ ତା'ର ହୃଦୟର ଅଭ୍ୟନ୍ତରରେ ଲାଳନପାଳନ କରୁଛି...' ଲୋକଟି ଏତିକି କହି ଉଠିପଡ଼ିଲା...

ବିଶ୍ୱ ହେଉ ବା ଅବିଶ୍ୱ ହେଉ, ଧର୍ମଧାରଣ କଲା କେତୋଟି ସନ୍ଧ୍ୟା ଓ ସକାଳକୁ; ଅନୁରଞ୍ଜିତ ହେଲା ପରମାର୍ଥିକ ଭାବ ପ୍ରବାହରେ...

ଚନ୍ଦ୍ରକାନ୍ତ ମଣ୍ଡପରୁ ଯାଉ ଯାଉ ଦେଖିଲେ, ଆଗରେ ନିର୍ମିତ ଭୋଜନାଳୟ ପାଖରେ ଅଇଁଠା ପତ୍ର କେତୁଟା । ସେଥିରେ ମାଛିଙ୍କର ଆନନ୍ଦ ଉଲ୍ଲାସ । ସେଇଠି ଶୁଣିଲେ...

'ଆରେ ଯା ମ, ଆଉ କହନା, ଏଇଟା ପରା ବ୍ରାହ୍ମଣଙ୍କର ସଭା, ଦେଖେଇଲୁ, ସେ ବକ୍ତାଙ୍କ ଲିଷ୍ଟରେ ଗୋଟାଏ ମାହାନ୍ତି କି ପଟ୍ଟନାୟକ ବକ୍ତା ଅଛନ୍ତି କି ?'

ଆଉ ଜଣେ ଉତ୍ତେଜିତ ହୋଇ କହିଲେ– 'ଦେଖ, କେଡ଼େ ବିରାଟ ରାଜନୀତିର ଚାଲ ଖେଳିଗଲେ । ସାପ ମଲା ନାହିଁ କି ବାଡ଼ି ଭାଙ୍ଗିଲା ନାହିଁ ।'

ଚନ୍ଦ୍ରକାନ୍ତ କାନ ଦୁଇଟାକୁ ବନ୍ଦ କରିବା ଆଗରୁ ମୁହଁ ଉପରକୁ ମାଡ଼ି ଆସୁଥିବା ମାଛିପଲକୁ ତଡ଼ିଦେବା ପାଇଁ ହାତ ଉଠଉ ଉଠଉ କିଏ ଜଣେ ଧରିପକାଇ ସେ ହାତ ଦୁଇଟାକୁ କହିଲେ... ଏହାଠାରୁ ଆହୁରି ସଂକୀର୍ଣ୍ଣ ସାଂଘାତିକ କଥା ଶୁଣିବେ ଆପଣ... କେତେ ମାଛି ଉଡ଼େଇବେ ? ଯେତିକି ଉଡ଼େଇବେ, ସେତିକି ସେମାନେ ଆସିବେ; କାରଣ କିଛି ବଦଳି ନାହିଁ କି ବଦଳିବ ନାହିଁ ଯେ ପର୍ଯ୍ୟନ୍ତ ମଣିଷ ନିଜ ଇଚ୍ଛା ଓ ସଂପଲ୍ପରେ ଦିବ୍ୟ ହେବାକୁ କୃତନିଶ୍ଚୟ ନ ହୋଇଛି ।

ଏ ସେହି ଲୋକ । ତାଙ୍କର ସ୍ଥିତି କେଉଁଠି କେହି ଜାଣିଲେ ନାହିଁ । ସାଗର ତା'ର ଚିରାୟିତ ଗତିରେ ତରଙ୍ଗାୟିତ ହେଉଛି । ସବିତାର ଉଦୟ ଅସ୍ତ... ସେ ବି ସ୍ୱାଭାବିକ । ମଝିରେ ମୁଖା ପିନ୍ଧି ମଣିଷର ଚଳ ପ୍ରଚଳ, ତା'ର ପ୍ରବଚନ, ତା'ର ଧର୍ମ, ସବୁ ବିଭଙ୍ଗ, ବାଚାଳ ।



# ପତ୍ରାବଳୀ ଓ ମୋ ମନର ପ୍ରସ୍ତୁତି

ଶରତ୍ ଆସିଛି । ପତ୍ର– ପୁଷ୍ପେ ତା'ର ମନୋହର ରୂପ । ଆକାଶ ଘନ ନୀଳିମ । ଦିଗନ୍ତ ସ୍ୱଚ୍ଛ । ଶୈଳଶିଖରେ ଶାରଦୀୟ ସୂର୍ଯ୍ୟର ଉଦୟ ଉତ୍ସବ; ପୁଣି ଅସ୍ତବର୍ଣ୍ଣର ବିଚିତ୍ର ଆଭା । ମଣିଷ ଆତ୍ମାରେ ଦେବୀ ଦୁର୍ଗାଙ୍କର ଆବାହନ ସଂଗୀତର ମୂର୍ଚ୍ଛନା ।

ସେଇ ମୃଣ୍ମୟ ପ୍ରତିମା । ତାହାରି ପୂଜା ଆଳତି ଷୋଡ଼ଶୋପଚାର । ଘୂରି ଆସିଛି ଗୋଟିଏ ଚକ୍ର । ଏ ଚକ୍ରର ଘୂର୍ଣ୍ଣନରେ ଆଶା-ନିରାଶାର ଛନ୍ଦ ବିଛନ୍ଦରେ କେତେ ସ୍ୱର ଓ ସୁରାହତ ରାଗିଣୀ । ମଣିଷ ଚାଲିଛି । ଚାଲିବାରେ ତା'ର ଶାନ୍ତି ନାହିଁ । ଥକି ପଡୁଛି, ପୁଣି ଚାଲିଛି ।

ଏ ଚାଲିବା ଓ ଥକି ପଡ଼ିବା ଭିତରେ ତା'ର ମନେହେଉଛି ଅହେତୁକ ଏ ପୂଜା ପାର୍ବଣ... ଏ କୋଳାହଳ, ଏ ଅସ୍ଥିର କର୍ମନୈପୁଣ୍ୟ... ଜୀବନ ସହିତ ଏହାର ସମ୍ବନ୍ଧ ବା କଅଣ ? ମୃତ୍ୟୁ ସହିତ ଏହାର ପ୍ରତ୍ୟୟ କେଉଁଠି ? ଆକାର ଆରୋପ କରି ସର୍ବଶକ୍ତିମୟୀ ଭବାନୀରୂପରେ ଏକ ଦୈତ୍ୟକୁ ସଂହାର କରିବାର ଚିତ୍ର ଲେଖିଛି ଶିଳ୍ପୀ । ମନେହେଉଛି ଏ କୌଶଳ ତଳେ ସେଇ ତାମସିକ ରାଜସିକ ଭୋଗବିଳାସର ଗୋଟାଏ ନଗ୍ନ ଭାବ ପ୍ରକଟୁଛି ।

ଦେଉଳ ଦୁଆରେ ଅଗଣିତ ଜନସମାଗମ । ଦୁର୍ଗାମଣ୍ଡପ ତଳେ ଲୋକଲହରୀ । କାହିଁକି ଏମାନେ ଆସିଛନ୍ତି ? ହଠାତ୍ କଅଣ ଏମାନେ ଆଧ୍ୟାତ୍ମିକ ହୋଇଗଲେ ? ନା ହୋଇ ନାହାନ୍ତି; ହୋଇଥିଲେ, ଶୃଙ୍ଖଳା ରହିଥାନ୍ତା । ଦୁର୍ଗାଙ୍କର ବକ୍ଷ ଉପରେ ଯେତେ ତୀକ୍ଷ୍ଣ ଦୃଷ୍ଟିର ପ୍ରହାର, ସେ ତମୋମୟ ଲଲାଟ ଉପରେ ଚକ୍ଷୁ ତ କାହିଁ ଥୟ ଧରୁନାହିଁ ? ସେଇଠି ପୁଣି ନାରୀ ଭର୍ତ୍ସିତା ହେଉଛି ବହୁ ପ୍ରକାରେ । ସେ ଯେ ଭକ୍ତବେଶରେ କଅଣ ସ୍ତୋତ୍ର ପଢୁଛନ୍ତି, ତାଙ୍କରି ପାଖରେ ଅନ୍ୟ କାହାର ଚୋରା ଅର୍ଥ; ମୁହଁରୁ ସୁରାଗନ୍ଧ ଭାସିଆସୁଛି ।

ଥିବେ, ଏମିତି ରହିଥିବେ । କାଳକାଳକୁ ଥିବେ, ଏଇ ଆଶ୍ୱାସନା ଘେନି ଆମେ ବାଟ ଚାଲୁଛୁ ।

ମାତ୍ର ଧ୍ୟାନ କାହିଁ ? ଏ ଯେ କଅଣ ଘଟୁଛି, କାହିଁକି ଘଟୁଛି, କିମିତି ଘଟୁଛି, ସେ ବିଷୟରେ ଧ୍ୟାନ କାହିଁ? ସମାଜ ଆଜି କଳଙ୍କିତ ସବୁ ବିଷୟରେ । ଭଲ-ମନ୍ଦର ବ୍ୟବଧାନ ନାହିଁ । ମନ କ୍ଷୋଭରେ ପରିପୂର୍ଣ୍ଣ ହୋଇଯାଇଛି। ପିଲାମାନେ ଜୋର୍ କଲେ ବେଶି ଚାନ୍ଦା ଦେବା ପାଇଁ; ସେମାନେ ଦେବୀମୂର୍ତ୍ତି ଗଢୁଛନ୍ତି ମାଇକ୍ ବଜାଇବେ, ଅସଲ ଯାତ୍ରାପାର୍ଟି ଆଣୁଛନ୍ତି, ଏପରିକି କଲିକତାରୁ ତାରକା ଆଣିବାକୁ ମୋଟା ଅଙ୍କର ବହିନା ଦେଇଛନ୍ତି ।

ଏମାନଙ୍କୁ ଦେଖି ଭାବୁଥିଲି କି ସୁନ୍ଦର ଏ ତାରୁଣ୍ୟର ପ୍ରବାହ !! କଅଣ କହି ଏ ଲୋକଙ୍କୁ ବୁଝାଇବି ? ଅନୁଭବ କରିଛି ଭଲ କଥା ଦୁଇପଦ କହିଲେ ଲୋକେ ବୁଝନ୍ତି; ଧର୍ମକଥା, ସଂସ୍କୃତିର କଥା । ବାଟ ଭୁଲିଗଲା ଭଳି ସେମାନେ ଶୋଚନା କରନ୍ତି, ସେମାନେ ବାଟ ଭୁଲିଲେ କାହିଁକି ? ଯୁବକ ଆଜି ବିରକ୍ତ । ପ୍ରଚଳିତ ଜୀବନଧାରା ଘେନି ସମ୍ମାନିତ ବ୍ୟକ୍ତିଙ୍କୁ ସେମାନେ ଅଟକ ରଖି ନିଜର

ଦାବି ପୂରଣ କରୁଛନ୍ତି । ପୂର୍ବରୁ ଅତ୍ୟାଚାରୀ ଶାସକମାନଙ୍କର ଅତ୍ୟାଚାରଠାରୁ ବଳିଯାଇଛି । ଘଣ୍ଟା ଘଣ୍ଟା ଅଟକ ରଖି ପାଣି ମାଗିଲେ, ସେମାନେ ପାଣି ପିଇବାକୁ ଦେଉନାହାନ୍ତି । ପାଣିଗ୍ଲାସ ଆସୁଛି, ଅଥଚ ସେମାନେ ପିଇ ଯାଉଛନ୍ତି ବିଦ୍ରୂପ କରି; ତୀବ୍ର ତୃଷାର୍ତ୍ତ ଜଳ ପାଉନାହିଁ ।

ଏଥିରେ ମାନବ-ସଂସ୍କୃତି ମାଟିରେ ମିଶିଯାଇଛି । ହତଚକିତ ହେବା ଛଡ଼ା ଆଉ କିଛି ନାହିଁ । ଯେତେ ବଡ଼ଲୋକ ହେଉ, ବଡ଼ ଏଇ ଅର୍ଥରେ ଯେ ସମ୍ମାନିତ ହେବା ଭଳି ଲୋକ ସେ ଦୁଇ ଦଣ୍ଡରେ ଅପହସିତ ହୋଇ ଯାଉଛି । ଏ କ୍ରୁଦ୍ଧ ଯୁବଗୋଷ୍ଠୀ କଅଣ ଚାହାନ୍ତି ବୁଝାଯାଉନାହିଁ । ପ୍ରବୀଣ କୁଳକୁ ସଂହାର କରିବା ଯଦି ଅଭିପ୍ରାୟ ଥାଏ, ତେବେ ତାହା ସମ୍ଭବ ନୁହେଁ; କାରଣ ପ୍ରବୀଣର ମୁଷ୍ଟିର ଶକ୍ତି ନଥାଇପାରେ କି କଣ୍ଠରେ ମୁର୍ଦ୍ଦାବାଦର ଧ୍ୱନି ନ ଥାଇପାରେ, ଅଛି ତାହାର ଅନୁଭବ, ଯତ୍କିଞ୍ଚିତ୍ ପ୍ରଜ୍ଞା । ଏ ପ୍ରଜ୍ଞା ତାଙ୍କୁ ବଞ୍ଚେଇ ରଖିଛି ବିଶ୍ୱାସଉନ୍ମୁଖ କରି, ନ ହେଲେ ସେ ଟଳିପଡ଼ିଥାନ୍ତେ ଅକାଳରେ... ଏଇ ବିଶ୍ୱାସ ଓ ଊର୍ଦ୍ଧ୍ୱ ଶକ୍ତି ଉପରେ ଏଇ ପ୍ରତ୍ୟୟ ଯାହାକି ଆଧୁନିକ ଯୁଗରେ ପ୍ରାୟ ନାହିଁ, ବଞ୍ଚାଇ ରଖିଛି ଓ ଯାତ୍ରା କରିବାକୁ ସାହସ ଦେଉଛି ।

ଖଣ୍ଡିଏ ଚିଠି ପାଇଥିଲି । ସେଥିରେ ଲେଖାଥିଲା– "ସ୍ୱାଧୀନତାର ଏକବିଂଶତିତମ ଐତିହାସିକ ଗୌରବମୟ ସ୍ମରଣୀୟ ଦିବସରେ, ଜାତିର ପ୍ରାଣରୂପୀ ସମ୍ବାଦପତ୍ରରେ 'ମାନବ ସଂସ୍କୃତି' ଶୀର୍ଷକ ଲେଖା ପ୍ରତି ମନ ଆକୃଷ୍ଟ ହେଲା । ବିଜ୍ଞାନ ପ୍ରତିମୁହୂର୍ତ୍ତରେ ପ୍ରଚଣ୍ଡ ଆଘାତ ଦେଉଛି ଆମର ସଂସ୍କାର ଉପରେ । ଜୀବନ ଏକ ଅର୍ଥହୀନ ଦୁର୍ଘଟଣା ନୁହେଁ । ଏହା ଏକ ପ୍ରବହମାନ ଧାରା, ଯାହା ଇଚ୍ଛା ପୂରଣ ଓ କର୍ମ ପ୍ରକୃତିଦ୍ୱାରା ପରିଚାଳିତ । କର୍ମ ଅନୁସାରେ ଦୁଃଖ ଏବଂ ସୁଖ ଭୁଞ୍ଜିବାକୁ ହେବ । ଈଶ୍ୱରଙ୍କ କରୁଣାରୁ ମଣିଷଠାରେ ଭଲ ମନ୍ଦ ବିଚାର କରିବାର ପ୍ରବୃତ୍ତି ରହିଛି । ଏହି ଶକ୍ତିର ବିନିଯୋଗରେ ମଣିଷ ତାହାର ଅସଂଖ୍ୟ କାମନା ଭିତରେ ଗୋଟିଏ ଶୃଙ୍ଖଳା ଆଣିପାରେ...

ଏତକ ମୋର ଗୋଟିଏ ପ୍ରବନ୍ଧର କେତେକ ଅଂଶ । ପୁଣି ସେ ଚିଠିରେ ଲେଖାଥିଲା– ଉପସଂହାରରେ ଜାତୀୟ ଶିକ୍ଷାନୀତି ଅନୁସୃତ ହେଉ, ଯାହା ବୀର୍ଯ୍ୟବତ୍ତାର ବାହକ ହେବ ଏବଂ ଈଶ୍ୱର, ମାନବ ଓ ପ୍ରକୃତିର ସର୍ବ ପ୍ରକାର ଐଶ୍ୱର୍ଯ୍ୟକୁ କୋଟି କୋଟି ଅନ୍ତେବାସୀଙ୍କର ଅନ୍ତରରେ ରୂପାୟିତ କରିବାକୁ କ୍ଷମ ହେବ । ତା' ପୂର୍ବରୁ ପର୍ବତପ୍ରମାଣ ଅସହିଷ୍ଣୁତା, ଅନାଚାର, ହତ୍ୟା, ଲୁଣ୍ଠନ ଓ ହିଂସାରେ ସମଗ୍ର ଦେଶର ନାଭିଶ୍ୱାସ ପ୍ରବାହିତ ।

ନିବିଷ୍ଟ ଭାବରେ ଚିନ୍ତା କଲେ ଆପଣଙ୍କ କରଣୀରେ ଅଯଥାର୍ଥ ଯୁକ୍ତି, ଭାବ ବା ଲେଖାର ଶୈଳୀ କଳ୍ପନାନ୍ତର ନୁହେଁ, ଯାହା ବାସ୍ତବ, ଯାହା ସତ୍ୟ ଏବଂ ଦୈନନ୍ଦିନ ଜୀବନରେ ପ୍ରତିପନ୍ନ, ତାହା ପ୍ରକଟିତ ଓ ପରିସ୍ଫୁଟ ।

ସେ ପତ୍ର ଲେଖକ ପୁଣି ଲେଖିଛନ୍ତି– ଆଜି ଆପଣଙ୍କର 'ମାନବ– ସଂସ୍କୃତି' ପ୍ରବନ୍ଧର ଭାଷା, ଭାବ, ଶୈଳୀର ପ୍ରାଚୁର୍ଯ୍ୟ ଐଶ୍ୱର୍ଯ୍ୟ ତଥା ଗାମ୍ଭୀର୍ଯ୍ୟ ବୋଧନରେ ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହେଲୁ । ଏଣୁ ଆମ୍ଭମାନଙ୍କ ପକ୍ଷରେ ସୌଭାଗ୍ୟର ବିଷୟ । ତେଣୁ ସ୍ୱତଃ ମନରେ ଏଇ ଭାବ ଉଦ୍ରେକ ହୁଏ ଯେ, ସତ୍ୟ, ଶିବ, ପରମେଶ୍ୱରଙ୍କର ଆପଣ ଆଶୀର୍ବାଦ ଲାଭ କରି ଶତାୟୁ ହୋଇ ଆମ୍ଭମାନଙ୍କର କଲ୍ୟାଣକାମନାରେ ରହି ଉଦ୍‌ଯୋଗ ପଥର ପ୍ରଦର୍ଶକ ହୁଅନ୍ତୁ । ଆପଣଙ୍କର ଅଭୀଷ୍ଟ ସେହି କ୍ଷେତ୍ରରେ ଜନନାରାୟଣ ସେବାରେ ଚରିତାର୍ଥ ହେଉ ।

ମୁଁ ସେ ଲିପି-ଲେଖକଙ୍କୁ ନମସ୍କାର କରୁଛି । ତାଙ୍କ ହୃଦୟର ବ୍ୟଥା ମୁଁ ବୁଝିଛି; ମାତ୍ର ମୁଁ ଏକାକୀ କଅଣ କରିପାରିବି ?

ଆଉ ଜଣେ ଲେଖିଛନ୍ତି– "ଆପଣଙ୍କର ସନ୍ଦର୍ଭ 'ଶିକ୍ଷା–ସଂସ୍କାର ଓ ପ୍ରଶାସନିକ କଠୋରତା' ପଢ଼ିଲି । ଆପଣ ଠିକ୍ ଠିକ୍ ଲକ୍ଷ୍ୟ କରିଛନ୍ତି । ଯାହା ସବୁ ତ୍ରୁଟି ରହିଛି, ସେଥିରୁ ସମସ୍ତେ ନ ହେଲେ ଅନେକଟା ଉଚ୍ଚ ପରିଦର୍ଶକଙ୍କର ବ୍ୟକ୍ତିତ୍ୱର ପ୍ରଭାବରେ ସୁଧୁରିପାରନ୍ତା । ବିଦ୍ୟାଳୟରେ ସାଂସ୍କୃତିକ ଅନୁଷ୍ଠାନ, ଶିକ୍ଷକମାନଙ୍କର ପାଠଟୀକା ପ୍ରସ୍ତୁତି, ପ୍ରଧାନ ଶିକ୍ଷକଙ୍କ ଶ୍ରେଣୀ ପରିଦର୍ଶନ, ପରିଚାଳନାସମିତିର ସଭ୍ୟ ପରିଦର୍ଶନ ଆଦି କେତେଗୁଡ଼ିଏ ପରିଦର୍ଶକଙ୍କ ନିର୍ଦ୍ଦେଶ ପରାମର୍ଶ ଫଳରେ ବିଧାନ କରିହୁଅନ୍ତା । ଉପରୁ ଶିଥିଳତା ତଳକୁ ସଞ୍ଚରିଯାଇଛି । ନିହାତି ଆସ୍ଥାବାନ୍ ପୁରୁଷ ନ ହୋଇଥିଲେ ଠକିବା ବା କାର୍ଯ୍ୟରେ ଶିଥିଳ ହୋଇଯିବା ବୋଧେ ବ୍ୟକ୍ତିର ସ୍ୱଭାବ ନିହିତ ଦୁର୍ବଳତା । ସ୍ୱାଧୀନତା ପରେ ସରକାରୀ କଳରେ ଯେଉଁ ନିଷ୍କ୍ରିୟତା ଦେଖାଦେଇଛି, ତାହା ସ୍କୁଲ୍‌ଗୁଡ଼ିକରେ ଆଚରଣୀୟ କଠୋରତାକୁ କାଟି ଦେଇଛି ।"

ସେ ପୁଣି ଲେଖିଛନ୍ତି– "ସରକାରୀ କର୍ମଚାରୀମାନେ ଯେଉଁଭଳି କେତେ ବର୍ଷ ବ୍ୟବଧାନରେ ସ୍ଥାନାନ୍ତରିତ ହୁଅନ୍ତି, ସ୍କୁଲର ଶିକ୍ଷକମାନେ ବିଶେଷତଃ ପ୍ରଧାନ ଶିକ୍ଷକ ସେହିପରି ସ୍ଥାନାନ୍ତରିତ ହେବା ବିଧେୟ । ଗୋଟିଏ ସ୍ଥାନରେ ଏକାଦିକ୍ରମେ କିଛି ବର୍ଷ ରହିଗଲେ, କେତେକ ସ୍ୱାର୍ଥ, କେତେକ ଦୁର୍ବଳତା, କିଛି ଶତ୍ରୁତା ଆସିଯିବା ଅସ୍ୱାଭାବିକ ନୁହେଁ । ଶିକ୍ଷାପୀଠରେ ଯେଉଁସବୁ ରୋଗ ଅଛି, ସେଥିରୁ କେତୋଟିର କାରଣ କର୍ମକ୍ଷେତ୍ରର ଏ ଅବାଞ୍ଛନୀୟ ସ୍ଥିରତାରେ ଦେଖିବାକୁ ହେବ; କିନ୍ତୁ ଶିକ୍ଷାକ୍ଷେତ୍ରରେ ଯେଉଁ ବିଭାଗ– ଭେଦ ସୃଷ୍ଟି କୌଶଳରେ ରଖାଯାଇଛି, ସେଥିରେ ଏହା କ'ଣ ସମ୍ଭବ ? ପରିଚାଳନା ସମିତିରେ ଯୋଗ୍ୟ ବ୍ୟକ୍ତି ରହନ୍ତି ନାହିଁ । ଯେଉଁମାନେ ଆସନ୍ତି, ସେମାନେ କେଉଁଠି କେଉଁଠି ପଦ-ଲାଳସାରେ ପ୍ରଧାନ ଶିକ୍ଷକଙ୍କ ହାତରେ ଖେଳଣା ହୁଅନ୍ତି ଓ କେଉଁଠି ଦଳବଦ୍ଧ ହୋଇ ଶିକ୍ଷକମାନଙ୍କୁ ହଇରାଣ କରନ୍ତି । ସ୍କୁଲ୍‌ରେ ରାଜନୀତି ପ୍ରବେଶ କରାନ୍ତି, ଅଯଥା ହାକିମି ଦେଖାନ୍ତି । ପ୍ରାଇମେରୀ ସ୍କୁଲ୍‌ରେ ଶିକ୍ଷକତା କରି ହାଇସ୍କୁଲ୍‌ରେ ପରିଚାଳନା ସମିତିର ସଭ୍ୟ ଅଛନ୍ତି; ସେକ୍ରେଟେରୀ ବି ହେଉଛନ୍ତି । ଏହାକୁ ଇନ୍‌ସପେକ୍ଟରମାନେ ଅନୁମୋଦନ କରୁଅଛନ୍ତି ।

ସେ ପୁଣି ଲେଖିଛନ୍ତି– "ପାଠପଢ଼ାରେ ଯାହା ତ୍ରୁଟି ଦେଖୁଛନ୍ତି ତାହା ଠିକ୍ । ଦାବି ତୁଳନାରେ କର୍ତ୍ତବ୍ୟଜ୍ଞାନ ବୃଦ୍ଧି ପାଇନାହିଁ । ଦେଖନ୍ତୁ ତ, ହାଇସ୍କୁଲ୍ ପାଇଁ ସାହିତ୍ୟ ବହି ! କୋଉ କାଳରୁ ଖଣ୍ଡିଏ ବହି ଚଳୁଛି, ଏପରିକି ସେଥିରେ ନିର୍ଦ୍ଧାରିତ ବିଷୟଗୁଡ଼ିକ ମଧ୍ୟ ଯୁଗେ ହେଲା ଚଳିଲାଣି । ଆମ ସାହିତ୍ୟର ଅଗ୍ରଗତି ସହିତ ପାଠ୍ୟପୁସ୍ତକ କି ବିଷୟ ନିର୍ବାଚନର ଯେପରି କିଛି ସଂପର୍କ ନାହିଁ । ଇଂରାଜୀ ବହିର ବିଷୟ ବି ସେହିଭଳି । କେତେଗୁଡ଼ିଏ ବଛା ହୋଇଛି, ଯାହା ସହିତ ଆମ ପିଲାଙ୍କର ଆତ୍ମିକ ସଂଯୋଗ, ଯେତେ ପଢ଼ାଇଲେ ବି ବଢ଼ିବ ନାହିଁ । କାହିଁକି ? ଆମ ଭାରତୀୟ ବିଷୟବସ୍ତୁକୁ ନେଇ ଉଚ୍ଚ ଇଂରାଜୀ ଲେଖା କଅଣ ନାହିଁ ? ରାଜଗୋପାଳାଚାରୀ କି କେ.ଏମ୍. ମୁନିସିଙ୍କ ଲେଖାରୁ କେତୋଟି ପଢ଼ା ହେଉଥିଲେ କି ସୁନ୍ଦର ନ ହୋଇଥାନ୍ତା; ଆପଣଙ୍କ ଲେଖା ପଢ଼ି ମୋ ମନକୁ ଯାହା ସ୍ପର୍ଶ କରୁଛି ଲେଖିଲି ।"

ଆଉ ଖଣ୍ଡିଏ ଚିଠି । ଆଦ୍ୟ ପ୍ରାନ୍ତ ପଢ଼ି ମୁଁ ମୁଗ୍ଧ ହୋଇଗଲି । ପତ୍ରଲେଖକ ଲେଖିଛନ୍ତି– "ପ୍ରଣିପାତ ଗ୍ରହଣ କରିବେ । କେତେଦିନ ତଳେ

ଆପଣଙ୍କଦ୍ୱାରା ଲିଖିତ କେତେକ ପ୍ରବନ୍ଧ ପଢ଼ିବାର ସୌଭାଗ୍ୟ ହୋଇଥିଲା । ସମ୍ବାଦପତ୍ରରେ ସେ ପ୍ରବନ୍ଧ ଲେଖିବା ଏବଂ ତା'ର ଉଦ୍ଦେଶ୍ୟ ସାଧିତ ହେବାରେ ମୁଁ ସନ୍ଦିହାନ । କାରଣ ସମ୍ବାଦପତ୍ରର ଜନ୍ମ ଓ ମୃତ୍ୟୁ ଗୋଟିଏ ଦିନ । ତେଣୁ ଏ ଭାବ– ତରଙ୍ଗ ଲକ୍ଷ୍ୟ ବା ଅଲକ୍ଷ୍ୟରେ ରେଖାପାତ କରିବାରେ ଖୁବ୍ ସମୟ ପାଇ ନଥାଏ । ଆଜି ଶିକ୍ଷାକ୍ଷେତ୍ରରେ ଏତାଦୃଶ ଅବସ୍ଥା କାହିଁକି ହୋଇଛି ଏବଂ ଏହାକୁ କିପରି ସୁଧୁରାଇହେବ, ଏ ସଂପର୍କରେ ବହୁ ଆଲୋଚନା ହେଉଛି । ସମ୍ଭବତଃ ଆପଣମାନେ ବୁଝିପାରିଛନ୍ତି ଯେ ଭାରତୀୟ କୃଷ୍ଟିକୁ ଉନ୍ନତ କରିବାକୁ ହେଲେ ଲୁପ୍ତ ରତ୍ନର ଉଦ୍ଧାର କରିବାକୁ ହେବ । ଏହା ସତ୍ୟ କଥା; କିନ୍ତୁ କି ଉପାୟ ନିର୍ଦ୍ଧାରଣ କରିବାକୁ ହେବ ସେ ସମ୍ପର୍କରେ ପାଣ୍ଡିତ୍ୟଗତ ଯୁଦ୍ଧ କଟୁକ୍ତି ବିନିମୟ ଚାଲିଛି । ଶ୍ରୀ ରାମକୃଷ୍ଣଦେବ ଉପଦେଶ ଛଳରେ କହିଛନ୍ତି– ପାଞ୍ଜିରେ ଏତେ ପାଣି, ଏତେ ବାୟୁ ସବୁ ଲେଖାଥାଏ, ହେଲେ ପାଞ୍ଜିକୁ ଚିପୁଡ଼ିଦେଲେ ଠୋପାଏ ପାଣି ପଡ଼େ ନାହିଁ ।

କିଛିଦିନ ତଳେ ପୁରାତନ ସଂସ୍କୃତିପୁଷ୍ଟ ବେଲୁଡ଼ସ୍ଥ ବିଶିଷ୍ଟ ଚିନ୍ତାନାୟକମାନଙ୍କ ସହିତ କିଞ୍ଚିତ୍ ଆଲୋଚନାର ସୌଭାଗ୍ୟ ହୋଇଥିଲା । ସେମାନେ ସ୍ୱାମୀଜୀ ବିବେକାନନ୍ଦ ପ୍ରଦର୍ଶିତ ସୁଚିନ୍ତିତ ଶିକ୍ଷାମାର୍ଗରେ ଗଭୀର ଭାବରେ ବିଶ୍ୱାସୀ । ମୋର ମନେହୁଏ ଆପଣଙ୍କର ଆବେଗର ବାଟ ଫିଟିଯିବ । ସଭାସମିତି ଅପେକ୍ଷା ଆତ୍ମୋନ୍ନତି ପଥ ଏହି ବିବେକାନନ୍ଦଙ୍କ ମାର୍ଗ ଯୁଗ ଦର୍ଶନ ବାସ୍ତବିକ ଚିନ୍ତାମୟ । ଡକ୍‌ଟର ତ୍ରିଗୁଣା ସେନ ମଧ୍ୟ ଏଥିରେ ବିଶ୍ୱାସୀ । ମୋର ଏତିକି ନିବେଦନ ଆପଣ ଗଭୀରଭାବରେ ଅଧ୍ୟୟନ କରି ଶିକ୍ଷାକ୍ଷେତ୍ରରେ ପ୍ରତିଫଳିତ କରିବାକୁ ଉଦ୍ୟମ କରନ୍ତୁ । ସ୍ୱାମୀ ରଙ୍ଗନାଥାନନ୍ଦ, ସ୍ୱାମୀ ତେଜସାନନ୍ଦ ପ୍ରମୁଖ ବହୁ ଚିନ୍ତାନାୟକ ନିଶ୍ଚୟ ସହାୟକ ହେବେ ।

ପ୍ରଚଳିତ ସମାଜରେ ଭାରତୀୟ ସଂସ୍କୃତି ବା ବୈଦିକ ସଂସ୍କୃତି ପ୍ରବର୍ତ୍ତନ କରାଯାଇପାରିବ । ବେଦର ଜ୍ଞାନକାଣ୍ଡକୁ ଉପନିଷଦ୍ ଏବଂ ବେଦାନ୍ତ ହେଲା ଅନ୍ତ । ନିକଟରେ ଉଦ୍‌ଘାଟିତ ଅଥର୍ବ ବେଦରେ 'ଆଲ୍ଲାଲ୍ଲୋତ୍ୟାଦି ଖ୍ୟାତଃ ନାବନୋପାସ୍ୟଃ ପରମେଶ୍ୱର'– ଶବ୍ଦ କଳ୍ପଦ୍ରୁମଃ ଆଲ୍ଲା ଉପନିଷଦ୍ ପଢ଼ିଥିବେ ନିଶ୍ଚୟ ।

ପ୍ରଶ୍ନ ହେଲା ଏହି ଉପନିଷଦ୍ ବା ଗୀତା ଯାହାକି ବିଦେଶରେ ଖ୍ୟାତ, ଆମର ସମସ୍ତ ଜୀବନରେ କିପରି ପ୍ରବର୍ତ୍ତିତ ହେବ, ଦେଖିବା ଆବଶ୍ୟକ । ବିଶେଷତଃ ଓଡ଼ିଶାରେ ଏପରି ଉଦ୍ୟମ ହୋଇନାହିଁ । ଏକ ଧର୍ମଜୀବନ ଅନୁସରଣ କରି ଉପନିଷଦ୍, ଗୀତା, କୋରାନ୍ ପ୍ରଭୃତିକୁ ଛାତ୍ରଧର୍ମୀ କରି କେତେଗୁଡ଼ିଏ ପୁସ୍ତକ ରଚନା କରିଛି । ଏ ପର୍ଯ୍ୟନ୍ତ ଗୋଟିଏ ଉତ୍କୃଷ୍ଟ ଜାତୀୟ ସଂହତିସଂପନ୍ନ ପ୍ରାର୍ଥନା ପୁସ୍ତକ ପ୍ରସ୍ତୁତ ହୋଇପାରି ନାହିଁ ।

ମୋର ଏହାହିଁ ନିବେଦନ ଯେ ଏ ପ୍ରକାର ପ୍ରଭାବ ପକାନ୍ତୁ । ସମସ୍ତ ଦାନ ଅପେକ୍ଷା ଧର୍ମଦାନ ସର୍ବଶ୍ରେଷ୍ଠ । ଈଶ୍ୱର ନିଶ୍ଚୟ ସହାୟ ହେବେ ।"

ମୋ ଲେଖା ପଢ଼ି ମନର ସ୍ପର୍ଶ କଥା କହୁଛନ୍ତି ଏହିପରି ଅନେକ । ଆତ୍ମପ୍ରୌଢ଼ି ମୁଁ ପ୍ରକାଶ କରୁନାହିଁ; ମାତ୍ର କହୁଛନ୍ତି ।

ଡକ୍ଟର ତ୍ରିଗୁଣା ସେନ୍ ଡକ୍‌ଟର ପ୍ରାଣକୃଷ୍ଣ ପରିଜାଙ୍କ ଚରଣଧୂଳି ନେଲେ । ଡକ୍‌ଟର ସଦାଶିବ ମିଶ୍ର ଡକ୍ଟର ପରିଜାଙ୍କ ଚରଣ ସ୍ପର୍ଶ କଲେ । ଶିକ୍ଷାମନ୍ତ୍ରୀ ବନମାଳୀ ପଟ୍ଟନାୟକ ସମସ୍ତଙ୍କ ଚରଣରଜ ଗ୍ରହଣ କଲେ । ଏ ଦୃଶ୍ୟାଭିନୟ ନୁହେଁ; ଏହା ଏ ଦେଶର ମାଟିରେ ସଂଜାତ ତଥା ପ୍ରୋତ୍‌ଥିତ

ଐଶ୍ୱର୍ଯ୍ୟର ଏକ ଅଂଶର ପରିସ୍ଫୁଟନ– ତିନି ପୁରୁଷର ଜୟଯାତ୍ରାର ଶଙ୍ଖଧ୍ୱନି ।

ଏଇଠି କଅଣ ଅର୍ଗଳ ପଡ଼ିଯିବ ? ତେଣିକି ଆଉ ଯିବାର ରାସ୍ତା ନାହିଁ । ଏଣିକି, ଯେଉଁ ମାର୍ଗ ଖୋଲିଯାଉଛି, ତାହା ଅବିନୟର ମାର୍ଗ, ଅସହିଷ୍ଣୁତାର ପଥ, ଅଶୋଭନୀୟ ପଥ । ଆମେ ପ୍ରବୀଣ ଏଇ କଥା କହୁଛୁ ବୋଲି ତମେ ତରୁଣଗଣ କଅଣ ସତରେ ଆମ ଉପରେ ରକ୍ତଚାଉଳ ଚୋବାଉଛ ?

ଅନ୍ଧାରରେ କାହା ଉପରେ ଟେକାଟା ପକାଇ ଦେଇ ପଳାଇଯିବାର ବୀରତ୍ୱ ଇତିହାସର ବୀରତ୍ୱ ନୁହେଁ। ଏ ବୀରତ୍ୱ ପାଇଁ ଯେଉଁ ସାଧନା କରୁଛ, ତାହା ଏତେ ସାଧନାର ଅପେକ୍ଷା ରଖେନାହିଁ, ଯେ କୌଣସି ପଶୁକୁ ଅନୁସରଣ କଲେ ତାହା ମିଳିପାରିବ । ସେଥିପାଇଁ ଏତେ ସ୍କୁଲ୍ କଲେଜର ଦରକାର ନାହିଁ କି ଏପରି ସମାରୋହ କରି ଜନଗହଳି ସୃଷ୍ଟି କରିବାରେ ଅର୍ଥ ନାହିଁ ।

ଭାବୁ ଭାବୁ ଅନେକ କଥା ଭାବିଯାଉଛି; ଆନନ୍ଦ ଓ ଉତ୍ତାପରେ ମୋର ଗବାକ୍ଷ ଦେଇ ଲୋକେ ଯାତ୍ରା କରୁଛନ୍ତି ଦେବୀଦର୍ଶନରେ; ମହିଷାସୁରକୁ ସଂହାର କରିବାରେ ସେଇ ଶକ୍ତିର ଅପରାଜେୟ ମହାତ୍ମ୍ୟ ହୃଦ୍‌ବୋଧ କରିବାକୁ । ନା ତ, ସେଆଡ଼େ ସେମାନେ ଯାଇନାହାନ୍ତି । ପାଶ୍ଚାତ୍ୟ ଭଙ୍ଗୀରେ ବିବସନା ବା ନିର୍ବସନା ଯେଉଁ ମୃଣ୍ମୟୀ ନାରୀ ଅଙ୍ଗ–ଲାବଣ୍ୟକୁ ଝରାଇ ଛିଡ଼ା ହୋଇଛି, ସେଇଆଡ଼େ; ମାତୃମୂର୍ତ୍ତି ଭବାନୀ ଆଜି ତରୁଣୀମୂର୍ତ୍ତି ଲାଳସା ପାଖେ ଅବଲୁପ୍ତ; ଅଥଚ ଦଶହରା ଉତ୍ସବର ଆଟୋପ ବର୍ଷକୁ ବର୍ଷ ବଢୁଛି, ସଂଖ୍ୟାରେ, ବିଚିତ୍ର ରଙ୍ଗ ତୁଳିରେ ଓ ନିର୍ବାସନ ଶୋଭାରେ–

ସେଦିନ ସନ୍ଧ୍ୟାରେ ଡକ୍‌ଟର ହରେକୃଷ୍ଣ ମହତାବ୍ ଓ ଆମେ କେତେ ଜଣ ସାହିତ୍ୟଧାରା ବିଷୟରେ ଚିନ୍ତା କରୁଥିଲୁ । ହୃଦୟ ଆମର ସେତେବେଳେ ଚିନ୍ତାକୁଳ ଥିଲା । ଆମେ ସାହିତ୍ୟ ସୃଷ୍ଟି କରୁଛୁ, ଅଥଚ ସାଧାରଣ ଲୋକଙ୍କ ପାଖେ ତାହା ପହଞ୍ଚିପାରୁନାହିଁ । ସେମାନେ ଆମ ଲେଖାରେ ସ୍ପନ୍ଦିତ ହେଉନାହାନ୍ତି; ହୁଏତ ଆମ କଥା ବୁଝୁନାହାନ୍ତି । ଗୁରୁଗମ୍ଭୀର ଭାଷାରେ ଲେଖିଲେ ସେମାନେ ପଢ଼ି ସ୍ୱାଦ ପାଇନାହାନ୍ତି, ତରଳ ସରଳ ଲେଖିଲେ ସେଥିରେ ବି ବିପଦ ଅଛି; କାରଣ ଜନତା ଚାହେଁ ସତ୍ୟ ଓ ତାହା ହିରଣ୍ମୟ ପାତ୍ରର ଆବରଣମୁକ୍ତ ସତ୍ୟ ହେବା ଉଚିତ୍ । ବସି ବସି ଚିନ୍ତାକଲୁ ଲେଖାରେ ଗଳ୍ପର ସରସତା ଓ ଶୈଳୀ ରହୁ ଅଥଚ ଗଳ୍ପ ନୋହୁ; ଲେଖାରେ ଭାଗବତ ବାଣୀ ରହୁ, ଅଥଚ ପୂର୍ଣ୍ଣାଙ୍ଗ ଭାଗବତ ନ ହେଉ; ଲେଖାରେ ଆମ ହୃଦୟଟା ଜଳଧାରା ଭଳି ଉଚ୍ଛୁଳିଉଠୁ, ଅଥଚ ଅତି ମାତ୍ରାରେ ତାରଳିକ ହୋଇ ଯେମିତି ଭାସିନଯାଉ । ରମ୍ୟ ଓ ରଚନା, କରିଦେବା ମାତ୍ରେ ବା ପଢ଼ିବାକ୍ଷଣରେ ସ୍ୱକୀୟ ଆକର୍ଷଣୀ ଶକ୍ତିରେ ତାହା ପାଠକର ମନ ଭିତରେ ସ୍ପନ୍ଦନ ସୃଷ୍ଟି କରୁ ।

କାମରେ ଏ ଚିନ୍ତା ଦେଖାଇବାକୁ ଅତି କଷ୍ଟ, ତାହା ମୁଁ ବୁଝୁଛି; ତଥାପି ଚେଷ୍ଟା କରିଛି, ଆରମ୍ଭ ହେଲା– "ଶରତ୍ ଆସିଛି, ପତ୍ର– ପୁଷ୍ପେ ତା'ର ମନୋହରରୂପ" ଶେଷରେ ରହିବ, "ବିଶ୍ୱାସ ଓ ବାସନା, ସାହିତ୍ୟରେ ତାହାହିଁ ପ୍ରତିଫଳିତ ହେଉ ସତ୍ୟର ଉଜ୍ଜ୍ୱଳ ଶକ୍ତି ଘେନି' ଆଜି ଶକ୍ତିମୟୀର ଉପାସନାରେ ପ୍ରଣତ ହୃଦୟର ସେତିକି ଅର୍ଚ୍ଚନା...*



* ଯେଉଁ ଲିପିକାରମାନଙ୍କର ପତ୍ର ମୁଁ ଏଥିରେ ବ୍ୟବହାର କରିଛି, ସେମାନେ ଯଥାକ୍ରମେ ହେଉଛନ୍ତି ଶ୍ରୀ ଗୌତମ ରାଉତ, ଆଠମଲ୍ଲିକ; ଶ୍ରୀବୈକୁଣ୍ଠ ନାଥ ରଥ, ପ୍ରଧାନ ଶିକ୍ଷକ ମଧୁପୁର ଉଚ୍ଚ ବିଦ୍ୟାଳୟ ଓ ଶ୍ରୀ ଯୋଗୀନ୍ଦ୍ର ପଟ୍ଟନାୟକ, ରାଇରଙ୍ଗପୁର ।

# ହୃଦୟ

ଦିନ ନିକଟ ହୋଇଆସୁଛି । ପ୍ରାନ୍ତର ସଫା ହେଉଛି । କୋଠାଘର ଧଉଳୁଛି । ଖାଲ, ଢିପ, ଅରମା ବଣ ରୋଲର୍ ତଳେ ସମତୁଲ ହୋଇ ଯାଉଛି । ଶହେଯାଏ ତମ୍ବୁ ପଡ଼ିଆ ଉପରେ ମୁଣ୍ଡ ଟେକିଲେଣି । ଚିଠି, ଟେଲିଗ୍ରାମ୍ କେତେ କଅଣ ? ଠିକ୍ କେବେ ଆସୁଛନ୍ତି ? ଘଣ୍ଟା, ମିନିଟ୍ ଓ ସେକେଣ୍ଡ ଠିକ୍ କେତେବେଳେ ଓହ୍ଲେଇବେ ? ଉଡ଼ାଜାହାଜ ନା କାର୍‌ରେ ବା ହେଲିକପ୍‌ଟରରେ ?

ଶହ ଶହ ମାଇଲ୍‌ରୁ ଜନତାର ସ୍ରୋତ । ମହୁକୁ ପିମ୍ପୁଡ଼ି ଠାବକଲା ଭଳି ଏ ଆକର୍ଷଣ । ମିଠାର କରାମତି । କର୍ତ୍ତବ୍ୟ ଛାଡ଼ି ଚାକିରି କମେଇ କରି, ରୋଗୀସେବା ଭୁଲି, ମାନ– ଇଜ୍ଜତକୁ ଭ୍ରୂକ୍ଷେପ ନକରି, କରଜ– ଦାମ୍‌ରେ ବୁଡ଼ି ଲୋକେ ଚାଲିଛନ୍ତି ଏକମୁଖୀ ରାସ୍ତା ଉପରେ, ଯେଉଁ ରାସ୍ତା ସିଧା, ସଳଖ ପଡ଼ିଯାଇଛି ଗୋଟାଏ ଆଳୟର ପାବଚ୍ଛ ଶ୍ରେଣୀ ପର୍ଯ୍ୟନ୍ତ ।

ଚିଫ୍ ସେକ୍ରେଟେରୀଙ୍କ ଘର । ଏଇ ଘର ଅଗଣାରେ ନୂତନ ବିରାଟ ମଣ୍ଡପ ତିଆରି ସରିଛି । ଯଜ୍ଞକୁଣ୍ଡ ଅନତିଦୂରରେ । ଭୋଜନଶାଳା ପଚାଶ ହଜାର ଲୋକଙ୍କ ଉଦର ଶାନ୍ତି ପାଇଁ ପାଞ୍ଚମାଇଲ୍ ଯାଏ ଲମ୍ବିଯାଇଛି । ପାଚକମାନେ ଭାରତବର୍ଷର ବିଶିଷ୍ଟ ଉପାନ୍ତରୁ ଆସିଛନ୍ତି । ସେମାନେ ପର୍ଯ୍ୟବେକ୍ଷଣ କରୁଛନ୍ତି ହଣ୍ଡା, କଡ଼ା ଓ ବିବିଧ ରନ୍ଧନପାତ୍ରମାନଙ୍କୁ । ବଡ଼ ବଡ଼ ଉଦରଧାରୀ, ଏହି ପାଚକମାନେ ସମସ୍ତଙ୍କୁ କଟ୍‌ମଟ୍ ହୋଇ ଚାହୁଁଛନ୍ତି, ହୁଏତ କଳନା କରୁଛନ୍ତି କିଏ କେତେ ପରିମାଣରେ ଖାଇବେ ।

ଅଦ୍ଭୁତ ଏ ଆୟୋଜନ । ଏତେ ଲୋକ ଶୋଇବେ କେଉଁଠି, ରହିବେ କିପରି, ଚାଲିବେ କେଉଁଆଡ଼େ, ବସିବେ କେମିତି, ଛିଡ଼ା ହୋଇ କଅଣ ଦେଖିବେ । ସବୁ ଯିମିତି ଅନିଶ୍ଚିତ, ଅନିର୍ଦ୍ଦିଷ୍ଟ । ତଥାପି ଗୋଟାଏ କଅଣ ହେଉଛି ବା ହେବାକୁ ଯାଉଛି, ଯାହା ବିରାଟତ୍ୱର ପରିଧିରେ ପଡ଼ିଯାଇଛି, କେବେ ବା ଶୂନ୍ୟକୁ ଉଠିଯାଇଛି ।

ଏ ମହିମାମୟ ବ୍ୟକ୍ତି ଯେ ଆସୁଛନ୍ତି ଓ ଯାହାଙ୍କୁ ଦେଖିବାକୁ ଲୋକେ ଉଚ୍ଛନ୍ନ ହୋଇ ଦଉଡୁଛନ୍ତି, ସେ ଯେଉଁଠି ଶୋଇବେ, ଯେଉଁଠି ରହିବେ ଓ ଯେପରି ବସିବେ ତାହାର ସୁବ୍ୟବସ୍ଥା ହୋଇଛି । ଚିଫ୍ ସେକ୍ରେଟେରୀ ରାଜ୍ୟର ପ୍ରଧାନ ନାୟକ ହୋଇଥିବାରୁ ତାଙ୍କ ଆଦେଶରେ ପୋଲିସ୍, ଗୃହରକ୍ଷୀ, ଜଳଯୋଗାଣକାରୀ, ବିଦ୍ୟୁତ୍- ପ୍ରବାହକ, ଅରଣ୍ୟ ଅଫିସର, ଗୁପ୍ତ ଗୋଇନ୍ଦା, ବେଦପାଠାଭିଜ୍ଞ ବ୍ରାହ୍ମଣସମାଜ, ପ୍ରଚାର ସଂସ୍ଥାର ସେବକମାନେ ଇତ୍ୟାଦି ଜନଗୋଷ୍ଠୀ ଅଷ୍ଟପ୍ରହର ଜାଗ୍ରତ ହୋଇ କାର୍ଯ୍ୟ କରୁଛନ୍ତି ।

ସୃଷ୍ଟିରେ ପ୍ରଳୟ ହେବ, ନହେଲେ ତା'ରି ଭିତରୁ ଆଉ ଗୋଟାଏ ଅନବଦ୍ୟ ସୃଷ୍ଟି ବାହାରିବ, ଏଭଳି ଏକ ଭାବନା ତଥା କଳିଯୁଗର ଶେଷ ସେକେଣ୍ଡକୁ ଦେଖିବା ପାଇଁ ଏ ଜନତାର ମରଣମୂର୍ଚ୍ଛା । ପ୍ରଣିଧାନ ସତେ ବଡ଼ ଅବାକ୍ ବିଷୟ ।

ସରକାର ଲକ୍ଷେ ଟଙ୍କା ଦାନ କରିଦେଲେ । ଗବ୍ୟଘୃତ ସେଥିରେ କିଣାଯାଇ ଦଗ୍ଧ ହେବ । ସେଥିରୁ ଯେଉଁ କୃଷ୍ଣକୁଣ୍ଡଳୀ ଜନ୍ମନେବ, ତାହା କ୍ରମେ ଧୂମାୟିତ ହୋଇ ସଚରାଚର ବ୍ୟାପିଯିବ । ତାହାରି ଆଘ୍ରାଣ ପାଇ ଯେଉଁ ଭାଗ୍ୟବାନ ଭାଗ୍ୟବତୀ ସୁଯୋଗ ଅପେକ୍ଷାରେ ଥିବେ, ସେମାନେ ଆଉ ଉତ୍କଳରେ ଜନ୍ମ ହେବେ ନାହିଁ । ଏଭଳି ନିର୍ଦ୍ଧନ, ନିର୍ଲଜ୍ଜ, ନିପୀଡ଼ିତ ରାଜ୍ୟରେ ସେମାନଙ୍କର ପୁନର୍ଜନ୍ମ ହେବନାହିଁ । ସେମାନେ ନିର୍ବାଣ ପାଇଯିବେ ।

ସ୍ତ୍ରୀଲୋକମାନଙ୍କର ଭୂମିକା ଓ ଦାୟିତ୍ୱ ବଢ଼ିଯାଇଛି । ଛଅମାସ ହେଲା ସେମାନଙ୍କର ସ୍ୱାମୀମୁଖ ଦର୍ଶନ ହୋଇନାହିଁ । ଯେଉଁମାନଙ୍କ ସହିତ ତାଙ୍କର ଦର୍ଶନ ହେଉଛି, ସେମାନେ ସମସ୍ତେ ଆତ୍ମୀୟ ନହେଲେ ବି ଆତ୍ମୀୟଠାରୁ ହଜାର ଗୁଣ ପ୍ରୀତିବନ୍ଧୁ, ଗୁରୁଭାଇ ।

କିଏ ଅଞ୍ଚଳ ଭିଡ଼ିଲେ, କିଏ ଆଖି ଠାରିଲେ, କିଏ ଥଟ୍ଟା ଟାପରା କଲେ । ସେ ସବୁର ଦ୍ରବ୍ୟଗୁଣ ଏତେ ବେଶି ଯେ ସେଥିରେ ଚିନ୍ତା କରିବାର କିଛି ନାହିଁ; କାରଣ ମହିଳାମାନେ ନିବେଦିତପ୍ରାଣା, ଏକ ସୂତ୍ରେ ଗୁନ୍ଥାମାଳା ଭଳି ଏମାନେ ପୁରୁଷ ସହିତ ବନ୍ଧନରେ ପଡ଼ି ସେହି ମହିମାମୟ ବ୍ୟକ୍ତିଙ୍କର ଆବିର୍ଭାବ ଲୀଳାର ଲୀଳାସଙ୍ଗିନୀ ଭାବରେ ସ୍ୱେଚ୍ଛାସେବିକା ଭୂମିକା ତଥା ନାନାବିଧ ଅପରାପର ଦାୟିତ୍ୱ ଘେନି ଯେତେବେଳେ ପ୍ରାନ୍ତର ଉପର ଦର୍ଶନ ମଣ୍ଡପକୁ ଘେରିଯାଇଛନ୍ତି, ସେ ଶୋଭା କେବଳ ଅମରାବତୀ ସହିତ ତୁଳନୀୟ ହୋଇପାରେ, ଅନ୍ୟତ୍ର ନୁହେଁ ।

ସେକ୍ରେଟେରୀଏଟ୍ ଛୁଟି, ସ୍କୁଲ୍ କଲେଜ ବନ୍ଦ, ବଜାର ହାଟ ମାନ୍ଦା, ସବୁଆଡ଼େ ଉତ୍ସୁକତା, କେତେବେଳେ ଆସିବେ, ସମୟଟା ପୁଣି ଏମିତି ଅଟକିଯାଏ । ହଁ ଆସୁଥିବେ । ପୂଜାର୍ଘ୍ୟ, ପୁଷ୍ପାଦାନି, ଚାମର, ଛତି, କାହାଳୀ, ବାଦ୍ୟ, ସବୁ ଠିକ୍ ଅଛି ତ ? ଟିକିଏ ଏପଟ୍ ସେପଟ୍ ହୋଇଗଲେ ଜିତେନ୍ଦ୍ରିୟ ସେହି ମହିମାମୟ ବ୍ୟକ୍ତି କ୍ରୋଧରେ ଫାଟିପଡ଼ିବେ । ସେ କଅଣ ଆସୁଛନ୍ତି ତାଙ୍କ ସ୍ୱାର୍ଥ ପାଇଁ ? ତମେମାନେ ଏକାବେଳକେ ତାଙ୍କର ସହସ୍ରନାମ ଜପ କଲ, ସ୍ମରଣ କଲ; ତେଣୁ ତାଙ୍କ ସିଂହାସନ ହେଲା ଟଳମଳ । ସେ ଆସିବାକୁ ମନ ବଳାଇଲେ ।

କାହିଁକି ଆସିଛ ? କଅଣ ଦେଖିବ ? ନା, ଏ ଆକାଶବାଣୀର ଇଣ୍ଟରଭିଉ ନୁହେଁ– ମନ ପଚାରୁଛି ଚୈତନ୍ୟକୁ– ହେ ଚୈତନ୍ୟ ! କହିଲୁ ଭଲା, ଗୋଟାଏ ଲୋକକୁ ଦେଖିବାକୁ ଏ ମଣିଷପଟାଳି, ସାପ ନବଖଣ୍ଡ ହୋଇଯିବ, ଏ ଜନତାର ଭିଡ଼ କାହିଁକି ?

ଚୈତନ୍ୟ କହିଲା– ବୁଝିଲୁ ନାହିଁକି ଭାଇ, ଜୀବନରେ ଥରେ ସୁଯୋଗ ଆସେ । ତରିଯିବୁ, ମରଣ, ପୁନରପି ଜନମ ପୁନରପି ମରଣରୁ ତ୍ରାହି ପାଇଯିବୁ । ସେ ଯେ ଭଗବାନ... ଅଦ୍ୱିତୀୟ ଏକତମ ବା ଦ୍ୱିତୀୟ । ତାଙ୍କ ଛଡ଼ା ଆଉ ଭଗବାନ ନାହାନ୍ତି । ସେ ସେହି ।

ମନ ପଚାରିଲା– ହଇରେ, ଭଗବାନ କଅଣ ଖୋଜିଲୋଡ଼ି ଚିଫ୍ ସେକ୍ରେଟେରୀଙ୍କ ଘରକୁ ଆସନ୍ତି ? ଗରିବ ଘରକୁ ଯାଆନ୍ତି ନାହିଁ, ପିଅନ ଘରେ ପାଦ ଦିଅନ୍ତି ନାହିଁ, ସେଠି ବି ଏଇ ବୁର୍ଜୋୟା ବିଚାର, ଆରିଷ୍ଟୋକ୍ରେସିର ଉତ୍ପୀଡ଼ନ; ବଡ଼ବଡ଼ ଲୋକଙ୍କ ଘର ବ୍ୟତୀତ ଏ ମହିମାମୟ ଭଗବାନଙ୍କର ବିଶ୍ରାମ ବା ଦର୍ଶନ ସ୍ଥାନ ଆଉ କେଉଁଠି ନାହିଁ ?

ମନ ଚୈତନ୍ୟ ଏମିତି ଭାବ ବିନିମୟ କରୁ କରୁ ଚତୁର୍ଦ୍ଦିଗରୁ କୋଳା-ହଳ-ସିନ୍ଧୁ ଉଚ୍ଛୁଳିପଡ଼ିଲା– ଆସିଗଲେ– କାହିଁ, କେଉଁଠି, କି ରୂପରେ ଆସୁଛନ୍ତି ? ମଣିଷ ଶରୀର ତ ? କଳ୍କି ପରେ ଶାସ୍ତ୍ର କଅଣ

କହୁଛି, ଆଉ ଅବତାର ଅଛି କି ? କେଉଁ ଆକାରରେ ଭଗବାନ ଆସୁଛନ୍ତି ?

ଦେଖ, ଶୁଣ, କଥା କିମିତି କହୁଛି, ଭଗବାନଙ୍କର ପୁଣି ରୂପ କଅଣ ? ସେ କଅଣ ନର ହୋଇଛନ୍ତି ? ଭଗବାନ ଭଗବାନ ରୂପରେ ଆସିବେ, ଆଚମନ କରିବେ, ଶୟନ କରିବେ, ଦୃଶ୍ୟ, ଅଦୃଶ୍ୟ ସବୁ ଅବସ୍ଥାରେ ସେ ଚଳପ୍ରଚଳ ହେବେ । ପୁଣ୍ୟ ଥିଲେ ତମେ ଦେଖିପାରିବ, ସଫା ନଦେଖି ପାରିଲେ ସୂଚନାରେ ପାଇବ ।

କୋଳାହଳ ବଢ଼ିଲା । ସେ ଆସିବା ପୂର୍ବରୁ କିମିତି ପବନରେ ସୁଗନ୍ଧ ବୋହିଆସିଲା । କୋଟି ଚମ୍ପକମାଳାର ଗନ୍ଧ, ଅୟୁତ ମଲ୍ଲୀର ସୁରଭି– ନିଶ୍ଚିତରେ ଆସିଗଲେ । ଅନେକେ ଉପରକୁ ଚାହିଁଲେ, ଅନେକେ ପାଖ ଲୋକର ଦେହକୁ ଆଙ୍ଗୁଠିରେ ଗେଞ୍ଜି ଦେଇ ସେହି ଆଙ୍ଗୁଠିକୁ ନାସିକା ପାଖକୁ ନେଇ ଆଘ୍ରାଣ କଲେ; ସତେ ତ ଲକ୍ଷେ ଗୋଲାପର ମତୁଆଲା ସୁବାସ । ଆଗେ ତାହାହେଲେ ବସନ୍ତ ଆସିବା ପୂର୍ବରୁ ଯେପରି କୋକିଳ କୁହୁ ଆସିଯାଏ, ସେମିତି ତାଙ୍କର ଆସିବା ଆଗରୁ ସୁଗନ୍ଧ ବିତରିଗଲା । ଧନ୍ୟ ଭଗବାନ, ଧନ୍ୟ ତୁମ ମହିମା !

କୋଳାହଳ ଫାଟିପଡ଼ିଲା– ଦେଖ, ଦେଖ, ମହୁ ବୋହିଯାଇଛି, ସେଇ ଯେ ବିରାଟ ଫଟ ତାଙ୍କର ଅଛି ସଭାମଣ୍ଡପରେ, ସେଥିରୁ ମହୁ ନିର୍ଗତ ହେଉଛି । ଉତ୍କଳ ଧନ୍ୟ ହେଲା । ଭଗବାନ, ଟିକିଏ କ୍ଷିପ୍ରଭାବରେ ଏ ମହୁ ଧାରାକୁ ବୁହାଇ ଦିଅ; ଏ ଦେଶର ବଡ଼ ନଦୀ ମହାନଦୀ, ସେଠାରେ ଆଉ ପୁରୁଣା ଜଳସମ୍ଭାର ନ ଥୋଇ ତାକୁ ପରିଣତ କରିଦିଅ ମହୁରେ । ଆଉ ବାକି ରହିଲା ଘିଅ ।

କିଏ ଜଣେ ପାଟି କଲେ– ବନ୍ଦ କର ଏ ତାମସା, ଓଡ଼ିଶାରେ କେବେ ଘିଅ ମହୁ ଭାସିବ ? ବରଂ ସେ ମହିମାମୟ ଭଗବାନଙ୍କୁ କହିଦିଅ, ନଦୀମାତୃକା ଏ ଦେଶରେ ବହୁ ଜଳାଧାର ରହିଛି, ଭୋକିଲା ଓଡ଼ିଆ ଅଧପେଟରେ ପାଣି ଦି'ଚଳ ପିଇ ଦେଇ ଶୋଇ ପଡ଼ିବ, ଏବେ ବି ଶୋଇ ପଡୁଛି । ମହୁ ଫଟରୁ ନ ଝରାଇ ଦୟାକରି ଯଦି ବାତ୍ୟାବିପନ୍ନ ଓଡ଼ିଆ, ଗୋରୁ ଓ ଗୃହପାଳିତ ପଶୁଙ୍କ ପାଇଁ ଚାଉଳ ଓ କୁଣ୍ଡା ଝରେଇ ପାରନ୍ତ ଭଗବାନ ଶୂନ୍ୟରୁ, ତେବେ ଏ ଦରିଦ୍ର ସରକାର ମାଥ୍ୟୁ ବା ପିଥୁ କେଉଁ ଭାଗ୍ୟବାନ ଅଫିସରଙ୍କୁ ରିଲିଫ୍ ବଣ୍ଟନ ପାଇଁ ପଠାନ୍ତା ନାହିଁ । ତେଣୁ ପ୍ରତି ରନ୍ଧ୍ର ତଳେ ତୁମେ ଭଗବାନ ଛୁଟାଇ ଦିଅ ତଣ୍ଡୁଳ ପ୍ରବାହ, ଦିଅ ବସ୍ତ୍ରସମ୍ଭାର ଓ ବଞ୍ଚିବା ପାଇଁ ଅତ୍ୟାବଶକୀୟ ବହୁ ଦ୍ରବ୍ୟ ।

ଝୋଲାମାରି ବସିଯାଇଥିଲେ ଥୋକେ ସେକ୍ରେଟେରିଏଟ୍ କର୍ମଚାରୀ । ସମସ୍ତଙ୍କର ଲଲାଟରେ ଗୁରୁଚିତା, ତ୍ରିକଲି । ଭକ୍ତ ଏମାନେ; ଭଜନ ଗାୟକ ଭାବରେ ଏମାନଙ୍କର ସୁନାମ ଅଛି । ପ୍ରତି ଗୁରୁବାରରେ ଏହାଙ୍କର ଚାହିଦା ବଢ଼ିଯାଏ... ଏମାନେ ଭଜନ ଗାନ କରନ୍ତି । ତାଳ ମାନ ଓ ଲୟ ସହିତ ଏମାନଙ୍କର ଗାୟନପଦ୍ଧତି ବଡ଼ ସୁନ୍ଦର ।

ପଚରାପଚରି ହେଉଥିଲେ ପରସ୍ପର... ଭିତରେ... ଗଗନ ବାବୁ, କାହାନ୍ତି ବାବା ? କଅଣ ଆସିବେ ନାହିଁ କି ?

... କି କଥା କହୁଛ, ପରମାଣିକ ବାବୁ, ଛଅମାସ ହେଲା ଚାନ୍ଦା କରି କରି ମୁଁ ଏକା ଗୋଟାଏ ଲୋକ ଦଶହଜାର ଟଙ୍କା ଉଠେଇଛି । ମୋ'ଭଳି ଶହେ ଲୋକ ଚାନ୍ଦା ଆଦାୟକାରୀ ଅଛନ୍ତି । ଲକ୍ଷ ଲକ୍ଷ ଟଙ୍କାର ଅର୍ଜନ

ହୋଇଛି । ସରକାରଙ୍କର ଦେୟ ଲକ୍ଷେ ଟଙ୍କା ଛାଡ଼ି ଏ ଯେଉଁ ମୂଳ ଧନ ସେହି ଧନକୁ ଦେଖି ଦେଖି, କିଞ୍ଚିତ୍ ମାତ୍ର ଚାଖି ଚାଖି, ଭକ୍ତମାନେ ନିରାଲମ୍ବ ହୋଇଯିବେ, ଜୀବନମୁକ୍ତ ତଥା ଲୋଭମୁକ୍ତ ହୋଇଯିବେ । ସନ୍ନ୍ୟାସ ନେବେ । ଏଇ ହେଲା ପ୍ରବୃତ୍ତି ଓ ନିବୃତ୍ତିର ଏକତ୍ର ଯୋଗମାର୍ଗ ।

ଆରେ ଶୁଣୁଚ, ସେ ପୁଅ ଦେଇଦେବେ,

ସେ ପୁଣି ରୋଗ ଭଲ କରିଦେବେ,

ସେ ଉପଯୁକ୍ତ ପାତ୍ର ସହିତ ପାତ୍ରୀର ବିବାହ କରିଦେବେ; କେତେ କଅଣ ।

ଭଗବାନଙ୍କର ଐଶ୍ୱର୍ଯ୍ୟକୁ ଆମେ କଅଣ କଳନା କରିପାରିବା ?... ଲୋକେ ଏହିଭଳି କୁହାକୁହି ହେଉଥିଲେ ।

ଚନ୍ଦ୍ରଶେଖର ବାବୁ ଆସିଲେ, ବଡ଼ ମାନ୍ୟଗଣ୍ୟ ବ୍ୟକ୍ତି । ସେ ବହୁ ବାବାଙ୍କର ସାକ୍ଷାତ୍‌କାର ପାଇଛନ୍ତି । ବହୁ ମାତାଙ୍କର ସାନ୍ନିଧ ପାଇଛନ୍ତି । ତୀର୍ଥାଟନ କରିଛନ୍ତି । ସର୍ବତ୍ର ସେ ଦେଖିଛନ୍ତି ଗୋଟାଏ ଆପାତ ଧାର୍ମିକ ଓ ପରମାର୍ଥିକ ଆବରଣ ତଳେ ଲୁଣ୍ଠନ, ଉତ୍ପୀଡ଼ନ, ଧନଗର୍ବ, ସମ୍ଭୋଗ ଓ ବ୍ୟଭିଚାରର କାଚ ଦର୍ପଣ, ଯାହା ଉପରେ ସମାଜ ପ୍ରତିବିମ୍ବିତ ହେଉଛି, ତଥାପି ଲୋକେ ବାରମ୍ବାର ମୂଢ଼ ହୋଇ ପ୍ରତାରିତ ହୋଇଯାଇଛନ୍ତି ।

ଚନ୍ଦ୍ରଶେଖର ବାବୁ ଭାଷଣ ଆରମ୍ଭ କଲେ... ଦେଖ ବନ୍ଧୁଗଣ, ବାବାଙ୍କର ଆସିବାକୁ ବିଳମ୍ବ ଅଛି, କିମ୍ବା ସେ ନ ଆସି ପାରନ୍ତି । ବାର୍ତ୍ତା ପଠାଇ କହିପାରନ୍ତି ଯେ ଉତ୍କଳୀୟମାନଙ୍କୁ ସେ ପରୀକ୍ଷା କରୁଥିଲେ ଏବଂ ସେମାନଙ୍କର ଧର୍ମଭାବ ଅତିମାତ୍ରାରେ ସବ୍‌ଷ୍ଟାଣ୍ଡାର୍ଡ୍ ଥିବାରୁ ସେ ଆସିବେ ନାହିଁ। ଆଉ କିଛିଦିନ ଭଜନ କୀର୍ତ୍ତନ କର; ଦେଖାଯିବ ତେଣିକି ।

ଉତ୍ସୁକ ଜନତା କଥା ଶୁଣୁଥିଲେ । କ୍ରମେ ସମୟ ଆଖର ହେଲାଣି । ଛଅମାସର ପ୍ରସ୍ତୁତି ମଉଳିଯିବା ଉପରେ । କ୍ରମେ ବିରକ୍ତିଭାବ ଆସିଯାଇଛି; ତଥାପି ଭଗବଦ୍ ତ୍ରାସ ଥିବାରୁ ଏବଂ ସ୍ୱୟଂ ଭଗବାନ ଆସିବାକୁ ବିମାନ ଆରୋହଣ କାଳେ କରୁଥିବେ ଏଇ ସମ୍ଭାବନା ଯୋଗୁ ସମସ୍ତେ ପୁଣି ନିଶ୍ଚଳ ଭାବରେ ଭୂମି ସଂଲଗ୍ନ ହୋଇ ବସିପଡ଼ିଲେ ।

—ଆପଣମାନେ କୁହନ୍ତୁ, କି ଇଚ୍ଛା କରି ଖର୍ଚ୍ଚାନ୍ତ ହୋଇ କାୟା କ୍ଲେଶ କରି, ବେକାର ସାଜି ଏଠାକୁ ଆସିଛନ୍ତି; କଅଣ ଆପଣଙ୍କର ଇଚ୍ଛା ? ଆପଣ ?

ଚନ୍ଦ୍ରଶେଖରଙ୍କର ପ୍ରଶ୍ନ କରିବାର ଭଙ୍ଗୀ ଦେଖି ଜଣେ ପ୍ରୌଢ଼ କହିଲେ— ମୋର ଦୁଇଟି ଅଭିଳାଷ ଅଛି । ଏକ ମୋର ପ୍ରମୋଶନ, ଦୁଇରେ ମୋ ସ୍ତ୍ରୀର ବାତରୋଗର ପ୍ରଶମନ ।

ଆଉ ଆପଣ !

ଅନ୍ୟ ଜଣେ ମଝିଲା ବୟସର ବ୍ୟକ୍ତି କହିଲେ—

ମୋର ସେହି ପ୍ରମୋଶନ ଓ ସ୍ତ୍ରୀଙ୍କ ଜାଗାରେ ପୁଅର ବେରାମ ଅର୍ଥାତ୍ ମଦ୍ୟପାନର ନିଶା, ତାହା କିପରି ନିରାକୃତ ହେବ— ସେହି ବିଷୟରେ ବାବାଙ୍କୁ ପଚାରିବି ।

ଚନ୍ଦ୍ରଶେଖର ବାବୁ ଠୋ ଠୋ ହସିଲେ— କହିଲେ, ବନ୍ଧୁଗଣ ! ଏସବୁ ବେରାମ ଆରାମ ବିଷୟରେ ଛୋଟିଆ ଛୋଟିଆ ଭଗବାନଙ୍କୁ କହିଲେ ଭଲ ଫଳ ହେବ;

ସ୍ୱୟଂ ଖୋଦ ଭଗବାନଙ୍କୁ ଜଣାଇ ଲାଭ କଅଣ ? ଓଡ଼ିଶାରେ କେତେ ସରକାରୀ ଚାକିରିଆ ନ ଅଛନ୍ତି । ସମସ୍ତଙ୍କର ପର୍ସନାଲ୍ ଫାଇଲ୍ ଦେଖି ବାବା ଯଦି ଗଣନା କରିବେ, ତେବେ ସେ ସମଗ୍ର ବିଶ୍ୱର ଫାଇଲ୍ କେବେ ଦେଖିବେ ?

ଆକାଶର ଏକ ପ୍ରାନ୍ତରେ କ୍ଷୁଦ୍ର କୁଙ୍କୁମ ବିନ୍ଦୁ ଭଳି ଗୋଟାଏ ଛୋଟ କେନ୍ଦ୍ର ଦେଖାଗଲା । ସହସା ଲକ୍ଷ କଣ୍ଠରୁ ନିର୍ଗତ ହେଲା– ବାବା ଆସିଗଲେ... ଆସିଗଲେ, ଜୟ ଭଗବାନଙ୍କୁ ଜୟ... ସବାରିରେ ଆସୁଛନ୍ତି... ତଫାତ୍ ହୁଅ, ତଫାତ୍ ହୁଅ...

ଦେବକୀ ଜଠରେ, ନନ୍ଦ ଘରେ, ଯଶୋଦା କୋଳରେ, ମାଛକାତି ତଳେ, ଶୂକର ଶ୍ରେଣୀରେ, ବାମନ ଯଷ୍ଟି ତଳେ, କଚ୍ଛପ ପୃଷ୍ଠରେ ଯେଉଁ ଭଗବାନ ଯୁଗସନ୍ଧି ବେଳେ ଜନ୍ମ ନେଇଥିଲେ, ସେହି ଭଗବାନ ବିମାନ କକ୍ଷରେ ବସି ଆସୁଛନ୍ତି– ଭକ୍ତମାନଙ୍କୁ ପ୍ରମୋଶନ ଦେବେ, ବ୍ୟାଧି ହରଣ କରିବେ, ଡକାଏତି ଓ କଳାବଜାରୀ କଳାବାଲାକୁ ଉତ୍ତମ ଡକାଏତ ଓ ଉତ୍ତମ କଳାବଜାରୀ କରିବେ। ଏଇ ତେବେ କଅଣ ଆଧୁନିକ ଭଗବାନଙ୍କର ଭୂମିକା ?

ସ୍ୱେଚ୍ଛାସେବିକାଗୁଡ଼ିକ ଛଅମାସଯାକ ପ୍ରଭାତରେ ଫୁଲ ତୋଳି, ମଧ୍ୟାହ୍ନରେ ମାଳା ଗୁନ୍ଥି, ସଞ୍ଜରେ ଦେବ ବନ୍ଦନା ଯାଏ ସେ ମାଳାକୁ ପ୍ରତିପୋଷି ପାଳି ନିଷ୍ଠାରେ ଯେ କର୍ତ୍ତବ୍ୟ କରୁଥିଲେ, ତାହାର ପ୍ରତିକ୍ରିୟା ସ୍ୱରୂପ ଯେ ଯେଉଁଠି ପାରିଲା ଶୋଇଯାଇଥିଲେ । ସ୍ୱାମୀଙ୍କୁ ଭୁଲିଛନ୍ତି, ଘରରେ ତାଲା ପଡ଼ିଛି, ପୁଅ ଝିଅ କେଉଁଆଡ଼େ ଗଲେ, ଚିନ୍ତା ନାହିଁ । ଏମିତି ନିଷ୍ଠା ଓ ବିସ୍ମୃତି ତ ସହଜ କଥା ନୁହେଁ ? ବିଚରା ଶୋଇଯାଇଛନ୍ତି; ଯାଆନ୍ତୁ ।

ଜଣେ କିଏ ପଚାରୁଛନ୍ତି... ଆଜ୍ଞା, ଏ କେତେ ପ୍ରକରଣର ବାବା ?

ଅର୍ଥାତ୍... ଉତ୍ତ୍ୟକ୍ତ ଗଳାରେ କହିଲେ ଅନ୍ୟ ଭଦ୍ରଲୋକ । ମୁଁ ପଚାରୁଥିଲି– ଏ ପ୍ରଥମ ଗୁରୁ କି ଦ୍ୱାଦଶ ?

– ଏ ଷଷ୍ଠ...

– ଗଣନା କରନ୍ତୁ...

– ବେଶ୍... ପ୍ରଥମେ ଅଭିରାମ, ଦ୍ୱିତୀୟରେ ଜଳୌକା, ତୃତୀୟରେ ପରମହଂସ, ଚତୁର୍ଥରେ ମଇଳା ବାବା,ପଞ୍ଚମରେ ଉଡ୍‌ଡ୍ଡୀୟମାନ ଓଁ ଚାରୀ, ଷଷ୍ଠରେ ଏଇ ... ମାନେ ଏଇ ଭଗବାନ...

– କାହାଠୁ କଅଣ ପାଇଲେ ?

– ପ୍ରଥମ ଦେଲେ କନ୍ୟା, ଦ୍ୱିତୀୟ– ତାଙ୍କୁ ବିବାହ କରାଇଲେ, ତୃତୀୟ ରକ୍ଷା କଲେ ମତେ– ମୁଁ ଲାଞ୍ଚ ନେଉଥିଲି, ଧରାପଡ଼ିଲି ନାହିଁ । ଚତୁର୍ଥ– ଶତ୍ରୁ ନିଧନ କଲେ, ପଞ୍ଚମ ମତେ ଦେଲେ ପ୍ରମୋଶନ– ମୁଁ ମୋ ଉପରବାଲାର ଫାଇଲ୍‌କୁ ପୋଡ଼ିଦେଲି, ଷଷ୍ଠ– ଏପର୍ଯ୍ୟନ୍ତ କିଛି ଦେଇନାହାନ୍ତି; ତେବେ ମୋର ଇଚ୍ଛା ଏଇ ଯେ ଭଗବାନ ଆସୁଛନ୍ତି, ସେ ମତେ ଦେବେ ଗୋଟିଏ ସ୍କୁଟର ଓ ଗୋଟିଏ ଜର୍ସି ଗାଈ...

କାମନା, ବାସନା, ଛୋଟ ଅଳି ଓ ପ୍ରାର୍ଥନାର ବିଶ୍ୱପ୍ରାଙ୍ଗଣ ସତେଯିମିତି ମୁଖରିତ ହୋଇଗଲା । ଅଳିଅଳି ପିଲାଏ ଯିମିତି ମାଗନ୍ତି ହାତ ପତେଇ ... ସିମିତି ହଜାର ହଜାର ଲୋକ ମାଗୁଛନ୍ତି; ଭୌତିକ ବିକାରରେ ବିକୃତ ପ୍ରାର୍ଥନା ସବୁ ଝରିପଡୁଛି ତାଙ୍କ ମୁଖରୁ, ଚକ୍ଷୁରୁ, ଚାହାଣିରୁ।

ଜଣେ ହେଲେ ଅନ୍ତରପୁରୁଷକୁ, ଚୈତ୍ୟ ସତ୍ତାକୁ ନୀରବ କାକୁତିରେ ଊର୍ଦ୍ଧ୍ୱାୟତନକୁ ନେଲେ ନାହିଁ । ନୀରବ ଧ୍ୟାନ, ନୀରବ ସମର୍ପଣ ଓ ନୀରବ ତ୍ୟାଗରେ ହୃଦୟକୁ କେହି ପରିଚ୍ଛନ୍ନ କଲେ ନାହିଁ।

କେବଳ କୋଳାହଳ, ବିରାଟ ଜନ ସମାବେଶ, ଧର୍ମ ନାମରେ ଠକେଇ ଓ ଅର୍ଥ ଉପାର୍ଜନ ଏବଂ ହଜାର ହଜାର ଲୋକଙ୍କର ଦୁଃଖ ଦୁର୍ଦ୍ଦଶାକୁ ବହନ କରି ଆଣୁଥିବା ଭଗବାନଙ୍କର ହେଲିକପ୍‌ଟର୍, ଚିଫ୍ ସେକ୍ରେଟେରୀଙ୍କର ବାବା ମଣ୍ଡପ ଉପରେ ଅବତରଣ କଲାନାହିଁ । ସେ ଅବତରଣ କଲେ ସେ ଜଣେ ଭକ୍ତ, ଯାଇଥିଲେ ଭଗବାନଙ୍କୁ ଆଣିବାକୁ ।

ଦେଖାଗଲା ଶ୍ରାନ୍ତ କ୍ଲାନ୍ତ ହୋଇ ଜଣେ କର୍ମୀ ସତେଯେମିତି ଶୂନ୍ୟରୁ ଓହ୍ଲାଇ ଆସି ହାତଯୋଡ଼ି କହୁଛନ୍ତି...

"ମୁଁ ପାରିଲି ନାହିଁ, ମୁଁ ବାବାଙ୍କର ପରମ ଭକ୍ତ ହେଲେ ବି ମୁଁ ପାରିଲି ନାହିଁ; କିନ୍ତୁ କେତେ ଅଳିକଲି, ହଜାର ହଜାର ଲୋକ, କେବଳ ଓଡ଼ିଶାର ନୁହେଁ, ସମଗ୍ର ଭାରତବର୍ଷର ଆପଣଙ୍କୁ, ହେ ବାବା ଅପେକ୍ଷା କରିଛନ୍ତି, ଦର୍ଶନ କରିବେ, ସୁମଧୁର ବଚନ ଶୁଣିବେ, ଶୂନ୍ୟରୁ ଆପଣଙ୍କର ଅଲୌକିକ ଶକ୍ତିର ବିତରଣ କ୍ରିୟାକୁ ଦେଖି ମୁଗ୍ଧ ହେବେ; କିନ୍ତୁ ହେଲାନାହିଁ, କଅଣ ବାବା କହିଲେ ଜାଣ ?

ଜନତା ଉତ୍ତେଜିତ କଣ୍ଠରେ ପଚାରିଲା,

– କଅଣ ?

– ସେ କହିଲେ, ଆପଣମାନେ ଆହୁରି ଖୋଲନ୍ତୁ, ଖୋଲନ୍ତୁ, ଖୋଲନ୍ତୁ...

ଜନତା ଭିତରୁ ଚିତ୍କାର ଆସିଲା– ଆମେ ଆମର ସର୍ବସ୍ୱ ଚାନ୍ଦା ଦେଇଛୁ । ସେ ଟଙ୍କା କୁଆଡ଼େ ଗଲା ? ଆଉ ବେଶି କଅଣ ଖୋଲିବୁ ?

ଏତିକିବେଳେ ମହିଳାମାନେ ବାହୁନା ଆରମ୍ଭ କରିଦେଲେ... ହଇଲୋ ସୁଶୀଳା ! ତୁ ଛଅ ମାସ ହେଲା କେଉଁଠି ଅଛୁ ଲୋ !

"ହଇଏ, ତମେ ଛଅମାସ କାହା କୁଞ୍ଜରେ ରହିଲ କି ?" ପ୍ରବଳ କ୍ରନ୍ଦନଧ୍ୱନି । ଭଙ୍ଗା କଣ୍ଢେଇକୁ ଯୋଡ଼ିବାର ପ୍ରୟାସ ।

ଘର ମନେପଡ଼ିଲା ଏତେବେଳକୁ ! ଜନତାର ଚିତ୍କାର... ଚାଲ ଗୃହସ୍ଥାଶ୍ରମକୁ... ସେଇଠାରେ ଭଗବାନ ଅଛନ୍ତି... ପରସ୍ପର ସ୍ନେହ-ପ୍ରୀତିରେ ବାନ୍ଧି ହୋଇ ଆଧାତ୍ମିକତାରେ ଜୀବନକୁ ଛନ୍ଦୋମୟ କରିବା– ଏ ବାବା ଫାବା ଉତ୍ତମ କଥା ହେଲେ ବି ଆମେ ସମ୍ଭାଳି ପାରୁନୁ; କାରଣ ଆମେ କ୍ଷୁଦ୍ର– ପ୍ରାଣ, କ୍ଷୁଦ୍ର ଆମର ସଞ୍ଚାରଭୂମି ।

ଜନତା ଜାଣିବାକୁ ଚାହିଁଲା– କଅଣ ଆଉ ଖୋଲିବୁ ? ଆପଣ କଅଣ କହୁଥିଲେ ଖୋଲିବା କଥା ?

ଅର୍ଦ୍ଧ ପକ୍ୱ ଶ୍ମଶ୍ରୁମୟ ମୁହଁଟି ଥରିଉଠିଲା ଭକ୍ତଙ୍କର– ସେ କହିଲେ; ବାବା କହିଛନ୍ତି, ଯାଅ, ଭକ୍ତମାନଙ୍କୁ ମୋର ବାର୍ତ୍ତା ଦିଅ– ସେମାନେ ଖୋଲନ୍ତୁ– ଖୋଲନ୍ତୁ– ଆହୁରି ଖୋଲନ୍ତୁ– ସଫା କରନ୍ତୁ । ବକ୍ତା ଆବେଗରେ ଥରିଗଲେ; କହିଲେ– ତେବେ ଯାଇ ସେ ଆସିବେ ।

ଜନତାର ସେଇ ଏକ ଚିତ୍‌କାର–

"କଅଣ ଖୋଲିବୁ ?"

ଉଦାତ୍ତ ଉତ୍ତର ମିଳିଲା–

"ହୃଦୟ... ହୃଦୟ..."

■■■

# ମଣି ଓ ମନ୍ୱନ୍ତର

ଘୋଡ଼ାମାନେ ନାଚୁଛନ୍ତି ।

ଯାତ୍ରା ଘୋଡ଼ା । ଦୁଇଟି ମାତ୍ର...

ତାଙ୍କ ଗଳାରେ ଘଣ୍ଟି ଘାଘୁଡ଼ି...

ବେକକୁ ସବୁଆଡ଼େ ପ୍ରସାରିତ କରି

ସେମାନେ ନାଚୁଥିଲେ ।

ସେମାନଙ୍କର ଗୋଡ଼ ନଥିଲା । ଅଶ୍ୱର ଖୁରା କହିଲେ ଯାହା ବୁଝାଯାଏ, ତାହା ସବୁ ନଥିଲା । ମଣିଷ ସେ ଅଭାବ ପୂରଣ କରୁଥିଲା ।

ତେଣୁ ଯେତେବେଳେ ଡାକବାଜି ଯନ୍ତ୍ରରେ ଜଣେ କେହି ମଣ୍ଡପ ଉପରୁ ଚିତ୍କାର କଲେ– ହେଃ... ହେଃ ଘୋଡ଼ାନାଚ ବନ୍ଦ କର, ବର୍ତ୍ତମାନ ସଭା ଆରମ୍ଭ ହେବ, ସେତେବେଳେ ନାଚୁଥିବା ମଣିଷ ଦୁଇ ଜଣ ଥମିଗଲେ ।

ଆପେ ଆପେ ଘୋଡ଼ା ବି । ଘୋଡ଼ା ଦି'ଟା ପଥର ଭଳି ହୋଇଗଲେ । ଯିମିତି ସେପଟକୁ ବଉଳ ଛୁରିଅନା ବଣ ଶ୍ମଶାନରେ ପାଞ୍ଚଜଣ ସାଥୀ ପଥର ପାଲଟି ସମାଧି ତଳେ ନିଥର ହୋଇଯାଇଛନ୍ତି ।

ସେ ସଭାର ଆକର୍ଷଣ ବହୁତ କିଛି ଥିଲା । ବାର୍‌ଲାଇଟ୍ ବହୁତ ଜଳୁଥିଲା । ନାଲି, ନେଳୀ, ହଳଦି ରଙ୍ଗର କେତେ କିସମର ବିଜୁଳିବତି । ଲୋକମାନେ ଚଉକି ଉପରେ ପୁଣି ପଡ଼ିଆ ଘାସ ଉପରେ ବସି ମେଳା ରଚନା କରିଥିଲେ । ଯୁବା, ଯୁବତୀ, ପିଲା । ପଡ଼ିଆଟା ଲୋକଗହଳିରେ ଫାଟିପଡୁଥିଲା । ଅଗଣନ ଜନତା ।

ବିମାନଟିଏ ବି ଥିଲା; ପଞ୍ଚ ଦୋଳରେ ଯେମିତି ବିମାନ ସାଜିଥାଏ । ତା' ଭିତରେ କେହି ଦେବତା ନଥିଲେ । ରାଧା, କୃଷ୍ଣ କି ମଦନମୋହନ । ଗୋଟାଏ ଫଟ । ସେ ବି ସଫା ଦିଶୁନଥାଏ । ଗୁଡ଼ାଏ ଫୁଲହାର ସେ ଫଟ ଉପରେ ଅଜାଡ଼ି ରହିଥିଲା ।

ଏଡ଼େ ବଡ଼ ବିଜୁଳି ଆଲୁଅ ଥୋପମାନଙ୍କରେ କାମେରାରୁ ଫଟ ଉଠୁଥିଲା । ସମସ୍ତଙ୍କ ମୁଖମଣ୍ଡଳ ଉଜଳିଯାଇଥିଲା କିଛି ସମୟ ପାଇଁ ।

ମଞ୍ଚଟିଏ ଅବଶ୍ୟ ଥିଲା କେହି କେହି ତା' ଉପରେ ବସିଥିଲେ । ସେମାନେ ବାରିହୋଇଯାଉଥିଲେ । ତାଙ୍କର ଆତ୍ମତୃପ୍ତି ଆସୁଥିଲା ଯେ ସେମାନେ ମଣ୍ଡପ ଉପରେ ବସିଛନ୍ତି ।

ସ୍ତ୍ରୀଲୋକଟିଏ ଓ ତାଙ୍କୁ ଘେରି କେତେକ ପୁରୁଷ । ଘୋଡ଼ାନାଚ ବନ୍ଦ ହୋଇଯିବାରୁ ଛୋଟ ଛୋଟ ଶିଶୁଙ୍କର ମନ ଆକାଶରେ ବାଦଲ ଛାଇ ହୋଇଗଲା । ସେମାନଙ୍କୁ କାନ୍ଦ ମାଡ଼ିଲା । କିଏ ବି ସତ ସତ କାନ୍ଦିଲେ ।

ଜଣେ ମାଇପି ମଞ୍ଚ ଉପରେ ବସିବା ଆଗରୁ ମୁଣ୍ଡରେ ଓଢ଼ଣା ଦେଇ ଗୋଟାଏ ଆଲୁଅର ମଶାଲକୁ ବେଣ୍ଟ ଧରି ପୋତିଦେଲେ ତୁଳସୀ ଚଉତରା ଭଳି ଜାଗାରେ । ହରିବୋଲ, ହୁଳହୁଳି ଓ ହାତତାଳି ଶୁଭିଲା ।

ଏ କାର୍ଯ୍ୟଟି କଲାବେଳେ ତାଙ୍କର ମୁହଁ ଉପରକୁ ସବୁଆଡୁ ଉଜ୍ଜ୍ୱଳ ଆଲୋକ ବନ୍ୟା ମାଡ଼ିଆସିଲା । ସେ ସେଇ ଢେଉ ଭିତରେ ନାଗକନ୍ୟା ଭଳି ସୁନ୍ଦର ହସ ହସିଦେଲେ ।

ଶ୍ମଶାନଆଡ଼େ ବି ଆଲୋକ ଜଳୁଥାଏ; ହେଲେ ତାହା ବଡ଼ ଅଣଉଜଳା । ସେ ଆଲୁଅ କାହାକୁ ସୁଖ

ଲାଗୁନଥାଏ । ସେଠି ଜୀବନ ନ ଥିବାରୁ ତାହା ଭୟଙ୍କର ବୋଧହେଉଥିଲା ।

ମଞ୍ଚ ଉପରୁ ମାଇପି ଜଣକ କଅଣ ସବୁ କହୁଥିଲେ । ଦୁଲାଳୀ କେବଳ ତାଙ୍କ ତୁଣ୍ଡରୁ ଶୁଣୁଥାଏ– ମଣି... ମଣି... ମଣି... ମଣି...

ସୁଆଣ୍ଡ ଗାଁରେ ତା'ର ଘର । ସେଇଠୁ ସେ ଚାଲି ଚାଲି କରି ଆସିଛି ତା' ବାଆ ସାଙ୍ଗେ । ବାଆ ତାକୁ କାହିଁକି ଏ ଘୋଡ଼ାନାଚ ଆଉ ମେଳଣ ଦେଖାଇବାକୁ ଆଣିଲା ସେ ଜାଣେନି । କାନ୍ଧରେ ହୁଦା ପକେଇଥିବା କେତେଜଣ ଟୋକା ବାଟଯାକ ଦୁଲାଳୀକୁ କଦଳୀଟାଏ ଖାଇବାକୁ ଦେଇ ଆସିଛନ୍ତି । ମୁଡୁମୁଡୁ ବୋଟ ଚଣା ବି ସେ କିଛି ଚୋବେଇଛି ।

ତା' ବୟସ ସାତ କି ଆଠ । ବାଆର ନାଁ ଅନ୍ତିମ ପ୍ରଧାନ । ନାଁଟା କିମିତି ବାଁଖାଡ଼ିଆ, ସହଜରେ ତୁଣ୍ଡକୁ ଆସେନି । ସେ ତ ବାଆ ଡାକେ, ସେଥିରୁ କଅଣ ମିଳିବ ?

ସୁଆଣ୍ଡ ଗାଁରେ 'ମଣି' କଥାଟା ଅତି ଜଣାଶୁଣା । ପୁଅ ଝିଅଙ୍କର ବି ମଣି ନାଁ ଅଛି । ଲୋକେ ହାତ ହଲେଇ କଥା କହୁଥିବାବେଳେ କେଜାଣି କାହିଁକି ଗର୍ବରେ ମଣି... ମଣି ବୋଲି ହେଉଥାନ୍ତି । ଦୁଲାଳୀ ଏ ସବୁ ଜାଣିଛି ।

ବାପକୁ ଜାଣିବା ସାଙ୍ଗେ ସାଙ୍ଗେ ଏ ମଣି– ମଣିଷଟାକୁ ସେ ଜାଣେ; ହେଲେ ତାକୁ ଦେଖିନି । ଅନ୍ତିମ ପ୍ରଧାନ ଝୁଅକୁ ଘରୁ ଗୋଡ଼ କଢ଼େଇ ଆଣିବାବେଳେ କଥା ଦେଇଥିଲା, ସେ ମଣିକୁ ଦେଖାଇଦେବ ଠିକଣା ଜାଗା ଉପରେ ।

ଏଣେ ଘୋଡ଼ାନାଚ ବନ୍ଦ । ତେଣେ ଭୋକ କଲାଣି । ଗୁଡ଼ାଏ ଲୋକ ଖାଲି ବକ୍‌ବକ୍ କରୁଛନ୍ତି । ଯାତ୍ରା ଭଳିଆ ଲାଗୁଚି; ହେଲେ ବେଲୁନ୍ ଆକାଶକୁ ଉଠୁନି କି ଫାଟୁନି । ସୁନ୍‌ପାପୁଡ଼ି ବି କେହି ବିକୁନି ।

ଦୁଲାଳୀ ଶେଷକୁ ବିରକ୍ତିରେ କହିଲା– ବାଆବା, ମଣି କାଇଁ ମ ?

ଅନ୍ତିମ ପଧାନେ ଝୁଅ କଥା ଶୁଣି ଚମକି ଉଠିଲେ । କହିଲେ– ସେ ପରା ହଜିଯାଇଛି । ଅଚଳ ଦୋଅଣି ଯେମିତି ବାଲି ଭିତରେ ପୋତି ହେଇଯାଏନି, ସେମିତି ପରା ! ତାକୁ ଆଉ ସାଉଁଟି ଆଣିବାକୁ କେହି ପାରିଲେ ନାହିଁ । ତେବେ ହେଇଟି ଦୁଲୁ ଏ ଯେଉଁ ପଂଝାଏ ବସିଚନ୍ତି ହେଇ ସେ ଉପରେ, ସେ ବି ଗୋଟିଏ ଗୋଟିଏ ମଣି... ମାଣିକ । ତାଙ୍କୁ ଦେଖିଲେ ଯାହା, ତାଙ୍କ କଥା ଶୁଣିଲେ ଯାହା, ମଣିକୁ ଦେଖିଲେ ତା' କଥା ଶୁଣିଲେ ସେଇଆ, ଏକାକଥା ।

ସେ ସ୍ତ୍ରୀଲୋକ କହୁଥିଲେ ମଞ୍ଚ ଉପରୁ ... ଆମେ ମଣିଙ୍କର ଅଧା କାମକୁ କରିଯିବା । ସେ ସ୍ୱର୍ଗରେ ଥାଇ ଆମକୁ ଦେଖୁଛନ୍ତି, ତାଙ୍କ କାମ ପୂରଣ ହୋଇନି ।

ଦୁଲାଳୀ ପାଟିକଲା– ବାଆବା, ମତେ ଭୋକ କଲାଣି, ଚାଲେ ଗାଁକୁ ଚାଲିଯିବା ।

ଏଇଭଳି ପରିସ୍ଥିତି ଘଟିବ ବୋଲି ଭାବିଥିଲେ ରାଜନୈତିକ ସଂଗ୍ରାମୀ ଅନ୍ତିମ ପ୍ରଧାନ । ଯେଉଁମାନେ ସଭାକୁ ଆସିବା ପାଇଁ ଗାଁ– ଗାଁରେ ପ୍ରଚାର କରୁଥିଲେ, ସେମାନେ କହୁଥିଲେ– ତୁମେମାନେ ଚାଲ, ଚିନ୍ତା କରନି, ଫେରିବାବେଳେ ଟ୍ରକ୍‌ରେ ଆସିବ, ଖାଇବାକୁ ଦିଆଯିବ । ଇଚ୍ଛା ହେଲେ ପଡ଼ିଆ ଉପରେ ଶୋଇପଡ଼ିବ; ପାହାନ୍ତାରୁ ଥଣ୍ଡାଏ ଥଣ୍ଡାଏ ଘରକୁ ଚାଲିଆସିବ ।

ପିଲାଟାକୁ ଭୋକ କରୁଛି । କାହାକୁ ଭୋକ କରୁଥିଲେ ମଣି ବି ଉପାସ ରହିଯାଆନ୍ତି । ପ୍ରଧାନଙ୍କ

ଆଗରେ ତୋରଣ ଫିଟିଗଲା । ସେ ଭାବବିହ୍ୱଳ ହୋଇପଡ଼ିଲେ... ଦେଖିଲେ ମଣି ବି ଆଖିରୁ ଲୁହ ଝରାଇ ତାଙ୍କ ଖାଇବା ବଗଡ଼ା ଭାତଥାଳିରୁ ଦୁଲାଳୀକୁ ଖୁଆଇ ଦେଉଛନ୍ତି ।

ହୋସ୍ ହେଲା ତାଙ୍କର ଯେତେବେଳେ ଦୁଲାଳୀ କହୁଥିଲା– ବାଆବା, ସେ ମାଇପି ଲୋକ ଯେଉଁ ମସାଲ ଜାଳିଥେଲା, ଲିଭିଗଲାଣି ବାଆ... ଦେଖୁନୁ–

ଅନ୍ତିମ ପ୍ରଧାନେ ଏକା ନୁହେଁ, ଦଶହଜାର ପରିମିତ ଦେଖଣାହାରୀ ଦେଖିଲେ ଜ୍ୟୋତି ଲିଭିଯାଇଚି । ଅଖଣ୍ଡ ଜ୍ୟୋତି ଖଣ୍ଡେ ଦୀପ୍ତିରେ ରହିପାରିଲା ନାହିଁ ।

ଜନତା ବଡ଼ ବ୍ୟସ୍ତ ହୋଇପଡ଼ିଲେ । ଅଶୁଭ ଲକ୍ଷଣ । କେହି କଅଣ ତେଲ ଢାଳି ପାରିଲେନି ?

ତେଲ ଢଳା, ତେଲ ଲଗାଇବା କାମକୁ ସାହସର ପ୍ରୟୋଜନ ଥାଏ । ପ୍ରୟୋଜନ ଓ ସ୍ୱାର୍ଥସାଧନ ବିନା କେହି କଅଣ ତେଲ ଦିଏ ? ଏଇ ତେଲ ଦେବା ପ୍ରକ୍ରିୟା ସମସ୍ତଙ୍କୁ ଜଣା ଯେ; ତେବେ ୧୯୨୮ରୁ ଶ୍ମଶାନରେ ବାସକରୁଥିବା ମଣିଙ୍କ ଆଖି ଆଗରେ ତେଲ ଦେଇ କାମ କରାଇନେବା ତ ସହଜ କାର୍ଯ୍ୟ ନୁହେଁ । ସମସ୍ତେ ଭୁଲିଗଲେ ଯେ ଅଗ୍ନି ବି ଲିଭିଯିବ ମହାକାଳ ଇଙ୍ଗିତରେ ସମୟ ଆସିଗଲେ ।

ମହାକାଳ ପରୀକ୍ଷା କରୁଥିଲା । ସେପଟେ ଏତେ ଫୁଲମାଳ, ସେପଟେ ଏତେ ଭାଷଣ ସେପଟେ ଏତେ ବେଦପାଠ ଆଉ କିଏ କେତେ ପ୍ରକାରେ କଅଣ କଲେ ମଞ୍ଚ ଉପରେ ବସିଥିବା ସଂଭ୍ରାନ୍ତ ଲୋକଙ୍କ ଆଖିରେ ପଡ଼ିବେ ଓ ସେ ଆଖିରୁ କୃପା ଝରି ଆସିବ ଘନ ହୋଇ । ଏଇ ଭାବନା କରୁକରୁ ସୁଆଣ୍ଡର ଜ୍ୟୋତିକୁ କେହି ସାଷ୍ଟାମ କରିପାରିଲେ ନାହିଁ ।

କାରଣ ତାହା ଥିଲା ପ୍ରାଚୀନ ଜ୍ୟୋତି ।

ସେ ଜ୍ୟୋତି ଜଳୁଥିବା ବେଳେ ବ୍ରିଟିଶ୍ ଶାର୍ଦ୍ଦୁଳ ବି ଗର୍ଜନ କ୍ଷୀଣ କରିଦେଇଥିଲା । ଯେଉଁ ଚାରିଗୋଟି ଜ୍ୟୋତି ଏଇ ମହାଜ୍ୟୋତିକୁ ସାମ୍ନାରେ ରଖି ବକୁଳ ଛୁରିଅନା ବଣରେ ଉଡୁଥିବା ଜୁଳୁଜୁଳିଆ ପତଙ୍ଗର ପୁଚ୍ଛସ୍ଥ ଆଲୋକରେ ନିଜକୁ ଆବିଷ୍କାର କରୁଛନ୍ତି, ଆଉ ତଉଲି ଦେଖୁଛନ୍ତି ସେ ଯୁଗକୁ ଏ ଯୁଗକୁ ପ୍ରେତ ପୁରୁଷ ହୋଇ, ସେମାନେ ସେ ସଞ୍ଜବେଳେ ଦେଖିଲେ ଘୋଡ଼ାନାଚ, ବିମାନ ଦୋଳନ ଓ ମାଇକ୍‌ର ଚିତ୍‌କାର ତଳେ କେଉଁଠି ଟିକିଏ ବି ନାହିଁ ସେମାନଙ୍କର ସେ କାଳର ଅନୁରୂପ ଭାବ–ବିହ୍ୱଳତା !!

"ସେହି, ନାହିଁ ଯା'ର ନିଜ ପର ଜ୍ଞାନ
ପାଏ ନୀଚ ଯା'ର ସ୍ନେହ ସନମାନ,
ବିଶ୍ୱହିତେ ଯା'ର,
ଆହାର ବିହାର,
କରେ ବିଶ୍ୱହିତେ ଯେ ଜୀବନ ଦାନ ।
ସେହି, କରେ ଯେହୁ ସତ୍ୟ ଆଚରଣ
ସତ୍ୟ ଆରାଧନା, ସତ୍ୟ ସଂଭାଷଣ
ଭିତର ବାହାର,
ଯାର ସତ୍ୟ ସାର
ସୁଖେ ଦୁଃଖେ ସଦା ସତ୍ୟ ଯା ଶରଣ ।"

ହୋ... ହୋ ଶବ୍ଦରେ ଅନ୍ତିମ ପ୍ରଧାନେ ଚମକି ଉଠିଲେ– ସଭା ଭାଙ୍ଗିଲା । ମଣିଷର ଫେରନ୍ତା ସୁଅ ଛୁଟିଲା । ଆଗ ସେ ମହନୀୟା ମହିଳା ଜଣକ ଗଲେ, ବାଟ କଢ଼େଇ ତାଙ୍କୁ ବହୁଲୋକ ଘେରି କରି ନେଇଗଲେ ।

ଦୁଲାଳୀର ଭୋକ ଶହେ ଗୁଣ ବଢ଼ିଗଲା । ସେ କହିଲା– 'ବାଆବା, ସେ ମାଇପି ଲୋକକୁ ଏମିତି ଘେରିକରି ଲୋକେ ନେଇଗଲେ କିଆଁ ?

ଅନ୍ତିମ ପ୍ରଧାନେ ହସିଲେ– କହିଲେ, ସେ ପରା ଆମ ଆଶା– ଭରସାର ସ୍ଥଳ ।

ଦୁଲାଳୀ ଆବାକାବା ହୋଇ ଅନାଇ ରହିଲା । ସେ ବୁଝିଲାନି ଆଶା କଅଣ, ଭରସା କଅଣ । ତା' ଉପରକୁ ଜନତା ମାଡ଼ି ଆସିଲା ।

ଘଟବାହୁଡ଼ା ସମସ୍ତେ... ଉଚ୍ଛନ୍ନ କିମିତି ଫେରିବେ । ଆସିଲାବେଳେ ଗୋଟାଏ ଅନାଗତ ମାଦକତା ତାଙ୍କୁ ଠେଲି ନେଇଆସିଥିଲା । ମଣି ବିଷୟରେ ବଚନ, ମଣି ବିଷୟରେ ମେଳନ, ମଣି ବିଷୟରେ ଏବର ମଣିଷ କଅଣ କହିବ, ତାହା ହୃଦୟରୁ ବାହାରିବ ନା ଓଠରୁ ଝରିବ, ଜାଣିବା ପାଇଁ ଜନଗହଳି ଫାଟିପଡ଼ିଥିଲା ।

ଏବେ ଜ୍ୟୋତି ଲିଭିଛି, ମଣି ମିଳନ । ଗୁଡ଼ାଏ ଲୋକ ଭଁ ଭାଁ ଯାନ ଛୁଟାଇ ଉଡ଼ିଗଲେ ।

ଦୁଲାଳୀ ପଚାରିଲା– ବାଆବା, ମଣି ପରା ଭଲଲୋକ ଥେଲେ, ଏ ମାଇପି ଲୋକ କଅଣ ସେଇଆ ?

ତରତର କରି ପ୍ରଧାନେ କହିଦେଲେ ଜିଭ ଚାଟି... ହଁ...ହଁ ସମେତେ ଭଲଲୋକ, ସମେତେ ଜାତିକୁ ଦେଶକୁ ଟେକିବା ପାଇଁ ପରିଶ୍ରମ କରୁଛନ୍ତି । ସମସ୍ତେ ଭଲ ଲୋକ– ଏ କଅଣ, ସେ କଅଣ ? ସମସ୍ତେ ଦେଶ ପ୍ରେମିକ, ଦେଶ ପ୍ରେମିକା... ମାନେ... ହଁ...ହଁ...

ଟେକିବା କଥାଟା ଦୁଲାଳୀର କାନରେ ପଶିବାମାତ୍ରେ ଦୁଲାଳୀ କାନ୍ଦଣା ନାକୀ ସୁରୁରେ କହିଲା– ବାଆବା ମେତେ ଟେକିଧର କାନ୍ଧ ଉପରେ । ମୁଁ ଚାଲିପାରିବିନି ।

ରାଜନୈତିକ କର୍ମୀ ଅନ୍ତିମ ପ୍ରଧାନେ ଚିନ୍ତା କଲେ, ଝିଅ ତ ଠିକ୍ କହୁଛି । ମଣି କହୁଥିଲା– ନିଜ ଶକ୍ତିରେ ଚାଲ । ଏବେ ଟେକିବାକୁ ପଡ଼ିବ । ନା, ନା, ମଣି ପଛକୁ କଅଣ ମଣିଷ ନାହାନ୍ତି ? ଅବଶ୍ୟ ଅଛନ୍ତି ।

କ୍ରମେ ମଣିଷଶୂନ୍ୟ ସେ ପଡ଼ିଆ ଭୟଙ୍କର ଦେଖାଗଲା । ବିଜୁଳୀ କର୍ମଚାରୀମାନେ ଚାକିରି ଶେଷ ହେଲା ଭାବି ଆଲୁଅ ଲିଭାଇଦେଲେ; କିନ୍ତୁ ହଠାତ୍ କେଉଁଆଡୁ ମାଡ଼ିଆସିଲେ ବଉଳ ଛୁରିଅନା ବଣ ଭିତରକୁ ପ୍ରଚୁର ଜ୍ୟୋତିରିଙ୍ଗଣ । ଚକ୍... ଚକ୍... କରୁଥିଲେ ସେମାନେ । ଝିଙ୍କାରୀର ଝିଁ ଝିଁ ଶବ୍ଦ । ପ୍ରେତାତ୍ମାଙ୍କ ନିବାସ ସ୍ଥଳ, ସବୁ ମିଶି ଗୋଟାଏ ଅତୀନ୍ଦ୍ରିୟ ରହସ୍ୟାବୃତ ରାଜ୍ୟ ସେଠି ସୃଷ୍ଟି ହୋଇଥିଲା ।

ପହରାବାଲା ଗେଟ୍ ବନ୍ଦ୍ କରିଦେଇଛି; ପୁଣି ବର୍ଷକ ପରେ ଏଇ ଦିନ ଖୋଲିବ । ତା'ର କାମ ଶେଷ । କମ୍ ସେ ହଇରାଣ ହେଲାଣି ?

ଝିଅକୁ କାନ୍ଧରେ ବସାଇ ଅନ୍ତିମ ପ୍ରଧାନ ବାଟ ଚାଲୁଥିଲେ ସୁଆଣ୍ଡ ଆଡ଼େ । ଝିଅ ଥଣ୍ଡା– କାକରରେ କାତେଇଯାଇଚି ତାଙ୍କ ଉପରେ । ଆହା, ତାକୁ ଭୋକ କରୁଥିଲା । ଯେଉଁମାନେ ମଟରରେ ଚାଲିଗଲେ ଲିଙ୍ଗରାଜ ଦେଉଳ ବା ଜଗନ୍ନାଥ ଦେଉଳ ଆଡୁ ଆସିଥିଲେ, ସେମାନଙ୍କ ପୁଅଝିଅ ସାନ୍ଧ୍ୟ ଭୋଜନ ସାରି ଫ୍ରିଜ୍‌ରୁ ଆଇସ୍‌କ୍ରିମ୍ ଚୋଷୁଥିବେ, ଆଉ ଦୁଲାଳୀ... ?

ସେ ମାଇପିଟିର କଥା ଅନୁରଣନ ଦେଉଥିଲା ଅନ୍ତିମ ପ୍ରଧାନଙ୍କର ଚେତନାରେ...

ସବୁ କର, କହ; କିନ୍ତୁ ଛଳନା କରନି । ଛଳନା ମହାପାପ ।

ସୁଆଣ୍ଡ ଦିଶୁନାଇଁ । ମାନଚିତ୍ରରେ ନାଇଁ କି ମନଗହୀରରେ ନାଇଁ । ଅନ୍ଧାର ରାତି । ଆସିବାବେଳେ ସମସ୍ତେ ପଚରାଉଚରା କରୁଥିଲେ, ଫେରିବା ବେଳେ ଏକା ... ଏକା, କେହି ନାହାନ୍ତି । ଚିନ୍ତା କରୁଥିଲେ ଅନ୍ତିମ ପ୍ରଧାନେ । ମାତୃହରା ଝିଅକୁ କଅଣ ଖୁଆଇବେ ? ପଖାଳ ବି ହାଣ୍ଡିରେ ନଥିବ ।

■■■

# ଜାଗ୍ରତ କୁଣ୍ଡଳିନୀ

ଯୋଗଦାଶ୍ରମର ସାଧିକା ଦୟା ମାତାଙ୍କର ଭକ୍ତଜନମାନଙ୍କୁ ପ୍ରଦତ୍ତ ଇଂରାଜୀ ଭାଷଣର ଟେପ୍ ରେକର୍ଡ଼ ସେଦିନ ସ୍ୱଳ୍ପାଲୋକିତ ଧ୍ୟାନ ଗୃହରେ ସ୍ୱାମୀ ଶିବାନନ୍ଦ ଗିରି ବଜାଇ ଶୁଣାଇଦେଲେ ।

ଗୃହର ସମ୍ମୁଖରେ ସାଗରର ବିପୁଳ ତନୁ ଓ ଝଙ୍କାର । ଆକାଶରେ ଥିଲା ଚନ୍ଦ୍ରମା । ପାଖେ ପାଖେ ବୃକ୍ଷଲତା ଗୁଳ୍ମର ପ୍ରସାର । ଯାହାଙ୍କର ଏ ଆବାସ, ସେ ଜଣେ ଧର୍ମପ୍ରାଣ ସତ୍‌ସଙ୍ଗୀ ଇଂଜିନିୟର । ମାଟି, ସିମେଣ୍ଟ, ଇଟା, ଲୁହା ମିଶାଇ ସୌଧ, ସେତୁ, ପଥ ନିର୍ମାଣ କରିବା ସଙ୍ଗେ ସଙ୍ଗେ ରାଜଯୋଗର କେତୋଟି ସାଧନପନ୍ଥାରେ ଅଭ୍ୟାସ ରଖିଥିବାରୁ ପ୍ରିୟନାଥ ସହରବାସୀଙ୍କ ପାଖରେ ଜଣେ ଉଚ୍ଚକୋଟୀର ପୁରୁଷ ବୋଲି ଖ୍ୟାତି ହୋଇଥାନ୍ତି ।

ଧ୍ୟାନ ସଦନଟି ତାଙ୍କର କଳ୍ପନା । ବହୁ ରଙ୍ଗର ଉଜ୍ଜ୍ୱଳ ବୈଦ୍ୟୁତିକ ପ୍ରଦୀପର ଜ୍ୟୋତିରେ ଶୋଭାପାଉଛନ୍ତି ପ୍ରଣବ, ଓଁକାର ଭିତରେ ଶ୍ରୀକୃଷ୍ଣ, ଯୋଗରତ ଗୌତମ, ବନବାସୀ ରାମଚନ୍ଦ୍ର, କ୍ଷିରାବ୍ଧିଶାୟିତ ବିଷ୍ଣୁ... ଏମିତି ସର୍ବଧର୍ମ– ସମନ୍ୱୟର ବିଗ୍ରହ ଓ ପ୍ରତିମା ।

ଶାନ୍ତି ଓ ସଂପ୍ରୀତିର ବାତାବରଣଯୁକ୍ତ ଏହି ସଂଧ୍ୟାଧର୍ମୀୟ ଆସରଟିକୁ ପରମ ପରିତୋଷର ସହିତ ଗ୍ରହଣ କରୁଥିଲେ ସେ ସମୟର ପ୍ରଧାନ ଅତିଥି ଐଶ୍ୱରୀୟ ସଂପଦରେ ପୂର୍ଣ୍ଣ ଆସ୍ଥାବାନ୍ ଏ ରାଜ୍ୟର ଶିକ୍ଷାବିତ୍ ଓ ସାହିତ୍ୟିକ ପୂର୍ଣ୍ଣାନନ୍ଦ ପଟ୍ଟନାୟକ ।

ପୂର୍ଣ୍ଣାନନ୍ଦ ଜୀବନର ପ୍ରାନ୍ତ ଉପରେ ଉଭା ହୋଇ ଅତୀତ ଓ ଭବିଷ୍ୟତକୁ ନିରୀକ୍ଷଣ କରି ଯାହା ଅବବୋଧରେ ଆଣୁଥିଲେ, ତାହା ଥିଲା ଦିବ୍ୟ ଜୀବନର ଆଭାସ । ଯାହା ଘଟି ଯାଇଛି ଜୀବନରେ, ଯାହା ବା ଆସୁଛି... ସବୁର ବିସ୍ମୃତି– ସମାଧି ଉପରେ ଅବଶିଷ୍ଟ ଆୟୁକାଳକୁ ସେ ସତ୍ୟ, ଶିବ ଓ ସୌନ୍ଦର୍ଯ୍ୟର ଆବାହନରେ ଯାହା ନକରିବେ ବୋଲି ଆତ୍ମବିଶ୍ୱାସ ପ୍ରତିଷ୍ଠା ହୋଇ ଏକାନ୍ତ କାର୍ଯ୍ୟକରି ଚାଲିଛନ୍ତି ।

ବହୁ ସାଂସ୍କୃତିକ ଅନୁଷ୍ଠାନରେ ତାଙ୍କର ଉପସ୍ଥିତି ଓ ଅଭିଭାଷଣ ଲୋକମନକୁ ପ୍ରଭାବିତ କରିଥାଏ । ପ୍ରିୟନାଥ ଇଞ୍ଜିନିୟର ଓ ପୂର୍ଣ୍ଣାନନ୍ଦ ଅଭେଦାତ୍ମା: କାରଣ ଦୁହିଁଙ୍କର ପଥ ଥିଲା ଧ୍ୟାନ ସାଧନ ପଥରେ ଗତି କରି ଈଶ୍ୱର ଉପଲବ୍ଧି ପାଇଁ ମନ ପ୍ରାଙ୍ଗଣକୁ ପରିଚ୍ଛନ୍ନ ରଖିବା ।

ଏଥିପାଇଁ ପ୍ରୟୋଜନ ଆସକ୍ତିହୀନ ଜୀବନଯାପନ ! ମାତ୍ର ଦୁହେଁ ଗୃହସ୍ଥ; ପୁତ୍ର କନ୍ୟା ବନ୍ଧୁ ଆସଙ୍ଗ ପରିବର୍ଦ୍ଧିତ ହୋଇ ସଂସାରରେ ରହିବା ସମ୍ଭବପର ନୁହେଁ । ତଥାପି ପୂର୍ଣ୍ଣାନନ୍ଦ ତାଙ୍କର ବହୁଧର୍ମୀୟ ପ୍ରବଚନରେ ଶୁଣାଇଥାନ୍ତି ଏହି ଆସକ୍ତିହୀନ ଜୀବନର ପରମ ସାର୍ଥକତାର ବିଷୟ । ନିଜେ ମଧ୍ୟ ଆଚରଣରେ ଅନାସକ୍ତ ରହିବାର ସମ୍ୟକ୍ ଭାବ ସେ ଦେଖାଇଥାନ୍ତି । ଏଥିପାଇଁ ସେ ସମ୍ମାନିତ ବ୍ୟକ୍ତି ଭାବରେ ପରିଚିତ ।

ଦୟାମାତାଙ୍କ ଇଂରାଜୀ ପ୍ରବଚନକୁ ନିଜ ମାତୃଭାଷାରେ ସେଦିନ ରମଣୀୟ ସଂଧ୍ୟାରେ ପ୍ରକାଶ କରିଥିଲେ ପୂର୍ଣ୍ଣାନନ୍ଦ । ଗଭୀର ଧ୍ୟାନ ଓ ଯଥାର୍ଥ ସତ୍ୟମୟ କର୍ମ ଆମ ଜୀବନର ଲକ୍ଷ୍ୟ ହେଉ ବୋଲି ଦୟାମାତା କହିଥିଲେ । ମଣିଷର ଶରୀର, ମନ, ହୃଦୟ ଓ ବୁଦ୍ଧିକୁ

ଈଶ୍ୱରଙ୍କର ପ୍ରେମଦ୍ୱାରା ଆବୃତ ରଖିବାକୁ ସେ ଉପଦେଶ ଦେଇଥିଲେ। ନୀରବତା ଓ ଅନାସକ୍ତି ଭିତରେ ପରମ ପଦ ଲାଭ ହୋଇପାରିବ ବୋଲି ସାଧିକା ଦୟାମାତା ଯାହା ଇଂରାଜୀରେ କହିଥିଲେ, ଅତ୍ୟନ୍ତ ଭାବାବେଶ ଓ ପ୍ରତୀତମାନସ ଦେଇ ପୂର୍ଣ୍ଣାନନ୍ଦ ତାହାକୁ ବ୍ୟକ୍ତ କରିବାରେ ଯେଉଁ ଅକ୍ଷୟ ବାତାବରଣ ସୃଷ୍ଟି କରିଥିଲେ, ତାହା ଅତୀବ ଆକର୍ଷଣୀୟ ହୋଇଥିଲା ।

ପର ପ୍ରଭାତର କଥା । ଇଞ୍ଜିନିୟର ପ୍ରିୟନାଥ ଉପସ୍ଥିତ ହେଲେ ପୂର୍ଣ୍ଣାନନ୍ଦଙ୍କର ଆବାସରେ... ଶୁଦ୍ଧସ୍ନାତ ଶରୀର ଓ ଈଶ୍ୱରାଭିମୁଖୀ ମନ ନେଇ ବସିଥିଲେ ପୂର୍ଣ୍ଣାନନ୍ଦ । ଅଭିବାଦନ ଜଣାଇଲେ ପ୍ରିୟନାଥଙ୍କୁ, ଧନ୍ୟବାଦ ଦେଲେ । ଏତିକି କହି ସେ ଗତ ସଂଧ୍ୟାରେ ଯେଉଁ ସତ୍‌ସଙ୍ଗ ଅନୁଷ୍ଠାନଟି ତାଙ୍କ ଧ୍ୟାନ ଗୃହରେ କରିଥିଲେ, ତାହା ଅଧ୍ୟାତ୍ମ୍ୟ ଭାବ ପ୍ରସାର କରିବାରେ ଯଥେଷ୍ଟ ସହାୟକ ହୋଇଥିଲା ।

ପ୍ରିୟନାଥ କହିଲେ– ପୂର୍ଣ୍ଣାନନ୍ଦ ବାବୁ, ଆପଣ ସାଧନ ଭଜନରେ ବହୁ ପଥ ଅତିବାହିତ କରିଯାଇଛନ୍ତି । ଦୟାମାତାଙ୍କ ପ୍ରବଚନକୁ ଆପଣ ଯେଉଁ ଦିବ୍ୟ ସରସତା ସହିତ ପରିବେଷଣ କରୁଥିଲେ, ମନେହେଲା ଆପଣ ଏ ପୃଥିବୀରେ ଆଉ ସତ୍ତା ନୁହଁନ୍ତି; ପରପାରର ମୁକ୍ତ ଜୀବ । ତେଣୁ ଆପଣ ଆମମାନଙ୍କର ନମସ୍ୟ ।

ପୂର୍ଣ୍ଣାନନ୍ଦ ଅପ୍ରତିଭ ହେଲେ; କହିଲେ– "ନା, ନା, ଏସବୁ ଅତିରଞ୍ଜନ । 'ମୁଁ'କାର ଏ ତୁଣ୍ଡରୁ ବାହାରୁଥିବାଯାଏ, ମୁଁ ପ୍ରାଣୀମାତ୍ର, ଅହଂମୟ ଜୀବମାତ୍ର, ଯେତେଦିନ ସ୍ୱାର୍ଥ, ମାୟା ଓ ଅହଂକୃତିରେ ଏ ଜୀବନ ଅତିବାହିତ ହେଉଥିବ, ସେତେଦିନ ମୁଁ ପାମର, ପାପୀ, ଅପବିତ୍ର ମଣିଷ । ମୋର ଲୋଭ ରହିଛି, ସ୍ୱାର୍ଥ ରହିଛି; ମତେ ଏତେ ବଡ଼ କରନ୍ତୁ ନାହିଁ ।"

ପ୍ରିୟନାଥ କହିଲେ– "ଏଭଳି ନମ୍ରତା ଆପଣଙ୍କୁ ଶୋଭାପାଏ । ତେବେ ମୁଁ ଏତିକି କହିବି, ଆପଣ ନାନାବିଧ ଅନୁଷ୍ଠାନରେ ଏପରି ଯୋଗ ନ ଦେଇ ଗୋଟିଏ ନିର୍ଦ୍ଦିଷ୍ଟ ସଂସ୍ଥା ସହିତ ଯୁକ୍ତ ରହି ଅଖଣ୍ଡ ନୀରବତାରେ ବୁଡ଼ିଯାଆନ୍ତୁ । ଅଧଘଣ୍ଟାର ନୀରବ ଧ୍ୟାନ ଓ ମନର ଗଭୀର ତନ୍ତୁରେ ପ୍ରବେଶ ସମାଧି, ଯେଉଁ ପରିମାଣରେ ଆଧ୍ୟାତ୍ମ୍ୟଜ୍ୟୋତି ଶରୀର, ମନ ଓ ଜୀବନକୁ ଆଲୋକିତ କରିପାରିବ, ତାହା ଏଭଳି ବିକ୍ଷିପ୍ତ ଉଚ୍ଛନ୍ନ ଜୀବନ ଧାରଣର ସମ୍ଭବ ନୁହେଁ । ତେଣୁ ମୋର ଅନୁରୋଧ, ଆପଣ ସେହି ଜ୍ୟୋତି ପଥରେ ଅଗ୍ରସର ହୁଅନ୍ତୁ... ଅନାସକ୍ତ ବିମୁକ୍ତ ଆତ୍ମା ହୋଇ ବହୁ ଲୋକଙ୍କର ହିତ ପାଇଁ କାର୍ଯ୍ୟ ସାଧନ କରନ୍ତୁ ।"

ପୂର୍ଣ୍ଣାନନ୍ଦ ଏଯାଏ ଚକ୍ଷୁ ମୁଦ୍ରିତ କରିଥିଲେ ଫିଟାଇଲେ । ସତରେ ଇଞ୍ଜିନିୟରଙ୍କର କଥାରେ ଆନନ୍ଦ ରହିଛି । ତିନୋଟି ଝିଅ ପାତ୍ରସ୍ଥା ହୋଇ ଚାଲିଯାଇଛନ୍ତି । ସେ ବୋଝ ଶିର ଉପରୁ ଖସିଯାଇଛି । ସଂସାର ବୋଲି ବିଶେଷ କିଛି ଜଞ୍ଜାଳ ନାହିଁ । ଧୀରେ ସୁସ୍ଥେ ପ୍ରାଣଧାରଣ ମାତ୍ର ପ୍ରଧାନ କ୍ରିୟା । "କାତବ କାନ୍ତା କସ୍ତେ ପୁତ୍ରଃ, ସଂସାରୋଽୟ ମତୀବ ବିଚିତ୍ରଃ" । ଏହି ବିଚିତ୍ର ସଂସାରରେ କିଏ କାହାର ? ମନ ଶାନ୍ତ ହୋଇଛି, ଆସକ୍ତିରହିତ ହୋଇଛି।

ଦାଣ୍ଡପଟ ଗେଟ୍ ପାଖରେ କାହାର କଣ୍ଠ ଶୁଣାଗଲା– "ନାଇଁ ମା, ଏତିକି ପଇସା ହବନି, ବସ୍ ଷ୍ଟାଣ୍ଡ୍‌ରୁ ଏଠିକି ଆସିଲେ ଆଠଣା ବାରଣା ଲୋକେ ଦେଉଛନ୍ତି, ଯାତ୍ରାଦାଣ୍ଡ, ଆଠଣା ପଇସା ଦିଅନ୍ତୁ ।" ରିକ୍‌ସାବାଲା ଅଳି କରୁଛି । ପୂର୍ଣ୍ଣାନନ୍ଦ କାନ ଡେରିଲେ– "ହଉ ନେ ଚାଳିଶପଇସା, ସୁଟ୍‌କେଶ୍ ଦୁଇଟି ଅଗଣାକୁ ନେଇଆ, ଆଉ ଏ କମଳାଝୁଡ଼ି, ପାହାଳ ରସଗୋଲାହାଣ୍ଡି,

କନାବ୍ୟାଗ୍, ଆସ୍ତେ, ସେଥିରେ ବାପାଙ୍କ ପାଇଁ ତାଙ୍କର ପ୍ରିୟ ଜିନିଷ । ଆଲୋ ଗୁରୁବାରୀ, ମାଆ କାହାନ୍ତି ?"

ଇଞ୍ଜିନିୟର ପ୍ରିୟନାଥ ଏ ଗୋଳମାଳରେ ଟିକିଏ ରହିଯାଇଥିଲେ; ପୁଣି ପ୍ରବଚନ ଆରମ୍ଭ କଲେ– "ଆପଣ ଧ୍ୟାନବେଳେ ରେଚକ, କୁମ୍ଭକ ଓ ପୂରକ କରିବାରେ କିଛି ଅସୁବିଧା ଭୋଗୁନାହାନ୍ତି ତ ? ଦୁଇ ଭ୍ରୂର ଠିକ୍ ମଧ୍ୟବିନ୍ଦୁରେ ମନ ସ୍ଥିର ରଖିବେ; ଆପଣ ତ ସବୁ ଜାଣନ୍ତି । ମୁଁ କଅଣ ବା ବିଶେଷ କହିବି..."

"ହଁ, ହଁ, ମୁଁ ଜାଣେ, କ'ଣ କହିଲେ ? ହଁ, ମଧ୍ୟବିନ୍ଦୁ"... ପୂର୍ଣ୍ଣାନନ୍ଦଙ୍କ କଣ୍ଠସ୍ୱରରେ ଚଞ୍ଚଳତା। ଦୁଇକାନ ରହିଗଲା ଗୃହାଭ୍ୟନ୍ତରର କଳରୋଳ ଶୁଣିବାରେ...

"ଯେତେ ଯାହା କୁହନ୍ତୁ ମୂଳାଧାରରୁ ସହସାର ଯାଏ ଯେ ଗତି ରହିଛି, ସେ ଗତିକୁ ଯୋଗମାଧ୍ୟମରେ ତ୍ୱରାନ୍ୱିତ କରିବାକୁ ହେବ । ମେରୁଦଣ୍ଡର ଦୁଇ ପାଖରେ ଇଳା ପିଙ୍ଗଳା ତ ଅନବରତ କ୍ରିୟା ସାଧନ କରି ଚାଲିଛି । କେବଳ ସୁଷୁମ୍ନାକୁ ପ୍ରଜ୍ୱଳିତ କଲେ ହେଲା ।" ପ୍ରିୟନାଥ କହୁଥିଲେ ଭାବାବେଗରେ... ?

"ହଁ... ହଁ... କଲେ ହେଲା ।" ପୂର୍ଣ୍ଣାନନ୍ଦ କ୍ଷୀଣ ସ୍ୱରରେ କହିଲେ । ଏଣେ ତାଙ୍କର ଡାହାଣ ହାତ ଆଙ୍ଗୁଠିଗୁଡ଼ିକ ଟେବୁଲ୍ ଉପରେ ଥିବା ଲ୍ୟାମ୍ପର ସୁଇଚ୍‌କୁ ଦୁଇଥର ଏପଟ ସେପଟ ଟିପି ଆଲୁଅ ଓ ଅନ୍ଧାର କରିସାରିଛନ୍ତି । କାଲେଣ୍ଡାର ଆଡ଼େ ସେ ଦୁଇ ଚାରିଥର ଆଖି ବୁଲେଇ ସାରିଛନ୍ତି । ପେପର ଉଏଟ୍‌ଟା କେତେବେଳୁ ଟେବୁଲ୍ ଉପରୁ ଗଡ଼ିଆସି ଚଟାଣ ଉପରେ 'ଠୋ' କରି ଶବ୍ଦ କରିସାରିଛି...

"ମମତା, ତୁ ଆସିଛୁ ବୋଲି ବାପା ଜାଣିଛନ୍ତି ? ସାଙ୍ଗରେ ଜ୍ୱାଇଁ ଆସିଲେନି ? ପାହାଳ ରସଗୋଲା ବାପା ଖୁବ୍ ଭଲ ପାଆନ୍ତି, ସେ କାହା ସାଙ୍ଗେ ଗପୁଛନ୍ତି କି ?" ପୂର୍ଣ୍ଣାନନ୍ଦଙ୍କର ସହଧର୍ମିଣୀ ସାବିତ୍ରୀ ଦେବୀ କହୁଥିଲେ ଭିତର ଅଗଣାରେ ବିବାହିତ ଜ୍ୟେଷ୍ଠା କନ୍ୟାର ଚିବୁକ ସ୍ପର୍ଶକରି....

ପ୍ରିୟନାଥ ଯୋଗର ପ୍ରଥମ ସୋପାନରୁ ଦ୍ୱିତୀୟକୁ ଯାଇଛନ୍ତି... କହିଲେ– "ଆପଣ ଦେଖିବେ ସ୍ୱାଧ୍ୟାୟଠାରୁ ଈଶ୍ୱର ପ୍ରଣିଧାନ ଯାଏ ଯିବା ବେଳକୁ ଆପଣଙ୍କର ଶରୀରର ତେଜ କିପରି ହୋଇଥିବ । ସେ ତ ମନକୁ ଦୀପ୍ତି ଝରାଇବ... ପ୍ରତ୍ୟେକ ଲୋମକୂପ ପୂର୍ଣ୍ଣ ହୋଇଯିବ ଆଧ୍ୟାତ୍ମ୍ୟ ରସରେ..."

"ସେ ଦାର୍ଜିଲିଙ୍ଗ୍ ଯାଇଥିଲେ ଯେ ବାପାଙ୍କ ପାଇଁ କଅଣ ଆଣିବେ ଆଣିବେ ଭାବି ଶେଷରେ ଏଇଟାକୁ ଆଣିଲେ... ତାଙ୍କର ଗୋଟାଏ କଅଣ କନ୍‌ଫରେନ୍‌ସ ଥିଲା.. ଓଃ, ବାପା କାହାନ୍ତି ମ ? କିଏ ଲୋକଟାଏ ଆସି ଯୋଗ ଫୋଗ କଅଣ କହୁଛି । ବାପା ତ ମତେ ଦେଖିଛନ୍ତି ଆସିବାର..." ଝିଅ ମମତାର କଣ୍ଠସ୍ୱର.. କାନରେ ଶତ ବୀଣାତାନ ସୃଷ୍ଟି କରୁଥିଲା ପୂର୍ଣ୍ଣାନନ୍ଦଙ୍କର ।

ଜ୍ୱାଇଁ ଦାର୍ଜିଲିଙ୍ଗ୍ ଯାଇଥିଲେ ।

କଅଣ ସେ ଜିନିଷଟା, ଯାହା ଆଣିଛନ୍ତି ?

"ଦେଖନ୍ତୁ, କୁଣ୍ଡଳିନୀ ଯେତେବେଳେ ଜାଗ୍ରତ ହେବ..."

ପୂର୍ଣ୍ଣାନନ୍ଦ ଭାବୁଥିଲେ– "ଝିଅ ସେ ଅର୍ଜିନାଲ୍ ପାହାଳ ଦୋକାନରୁ ଆଣିଛି କି ବସ୍‌ଷ୍ଟାଣ୍ଡର ଦୋକାନରୁ ... ଓଃ, ଏ ଲୋକଟା ଏତେବେଳେ ଯୋଗ, ଅନାସକ୍ତି... କୁଣ୍ଡଳିନୀ, ଈଶ୍ୱର ପ୍ରଣିଧାନ ନ କରି ଯଦି ଚାଲିଯାଆନ୍ତା ... ଝିଅ ଆସିଛି, ମମତା ଆସିଛି, ଶାଶୁଘରୁ... ଓଃ,

ଚୋରଟା କେତେ ବକର ବକର ହେଉଛି– ଯିବା ନାଁ ତ ଧରୁନି ?"

– "ଆପଣ ସେଦିନ ଅତିବଡ଼ି ଜଗନ୍ନାଥ ଦାସଙ୍କ ସଭାରେ କହିଥିଲେ ପ୍ରଣବ ଓଁକାର ଭିତରେ ହିଁ ଜଗନ୍ନାଥ... ଆପଣ ବୋଧହୁଏ ଅନ୍ୟମନସ୍କ । ଯୋଗୀ ସିଏ ତାହାର ଚିତ୍ତବୃତ୍ତି ନିରୋଧ କରିବା କଥା... ଯୋଗଶ୍ଚିତ୍ତ ବୃତ୍ତିଃ ନିରୋଧଃ... ଅନ୍ୟମନସ୍କତା ବଡ଼ ପ୍ରତିବନ୍ଧକ ସୃଷ୍ଟି କରେ ଗଡ଼୍ ରିଆଲଇଜେସନ୍‌ରେ..." ଏତକ କହି ଇଞ୍ଜିନିୟର ପ୍ରିୟନାଥ ପକେଟ୍‌ରୁ କ୍ରିୟାଯୋଗର ଖଣ୍ଡିଏ ପୁସ୍ତିକା କାଢ଼ିଲେ ।

ପୂର୍ଣ୍ଣାନନ୍ଦ ଏକପ୍ରକାର ଚାପା ଚିତ୍‌କାର କଲେ... "ହେ ଭଗବାନ, ଏ ସମୁଦାୟ ବହିଟାକୁ ପଢ଼ିବ ନା କଅଣ ଏଠି ?"

"ଏ କ୍ରିୟାଯୋଗର ମୂଳ କଥା ହେଲା ପିଣ୍ଡରେ ଥିବା ଚକ୍ରଗୁଡ଼ାକ ପରିଷ୍କାର କରିଦେବା– ଆପଣ ଶୁଣୁଛନ୍ତି ତ ? ମୋର ତ କାହିଁ ସନ୍ଦେହ ହେଉଛି– ଆପଣ ମୋ କଥା ଶୁଣୁନାହାନ୍ତି । ହଁ– ହଁ– ଏମିତି ହୋଇଥାଏ– କେତେବେଳେ ପୂର୍ଣ୍ଣସମାଧି, କେତେବେଳେ ଆଜ୍ଞାଚକ୍ରପଦ୍ମ ନିମୀଳିତ ।"

ଭିତର ଅଗଣାରୁ ଝିଅ ମମତା କହୁଛି– "ଦାର୍ଜିଲିଙ୍ଗ୍‌ରୁ ଇଏ ଯେଉଁ ଜିନିଷଟା ଆଣିଛନ୍ତି, ସେ ପଦାର୍ଥଟା କଅଣ ବାପା ଜମା କଳ୍ପନା କରି ପାରିବେନି; ୟାଙ୍କର ଚମତ୍କାର ସିଲେକ୍‌ସନ୍ ଟାଲେଣ୍ଟ୍ ଅଛି..."

ପୂର୍ଣ୍ଣାନନ୍ଦ ଚିତ୍କାର କଲେ– ହଁ ମା' ସିଲେକ୍‌ସନ୍ ଟାଲେଣ୍ଟ୍... ପଦାର୍ଥ ନିର୍ବାଚନ କରିବାର ପ୍ରତିଭା ନିଶ୍ଚୟ ରବିର ଅଛି ।"

ପ୍ରିୟନାଥ କଅଣ କହିବା ଆଗରୁ ଚାକରାଣୀ ଗୁରୁବାରୀ ଦଉଡ଼ି ଆସି କହିଲା... "ବାବୁ, ମାଆଙ୍କର ଆଙ୍ଗୁଠି ଦୁଇଟା ନିଆଁରେ ରୋଷେଇ କରୁ କରୁ ପୋଡ଼ିଗଲା... ବାବୁ, ଚାଲିଆସ ବାବୁ... ଓଃ କଅଣ ହେଲାଟି..."

ଅନାସକ୍ତ ଯୋଗୀ ପୂର୍ଣ୍ଣାନନ୍ଦଙ୍କ ଚରଣ ତଳେ ଝିଅ ଓଳଗି କରିବା ବେଳେ ତାଙ୍କର ଡାହାଣ ହାତରେ ଥିଲା ପାହାଳ ରସଗୋଲାର ବର୍ତ୍ତୁଳ ରୂପ– ପାଟିକୁ ଯିବା ପାଇଁ କେତେ ବା ସମୟ–

ସହଧର୍ମିଣୀ କହିଲେ– "ଏମିତି ଗୋଟାଏ ନିଆଁରେ ପୋଡ଼ାପୋଡ଼ି କଥା ନକହିଥିଲେ, ସେ ଲୋକଟା କଅଣ ସହଜରେ ଯାଇଥାନ୍ତା ?"

ସମସ୍ତଙ୍କ କଣ୍ଠରୁ ହସର କଳରୋଳ ଝରିପଡ଼ିଲା । ଇଞ୍ଜିନିୟର ପ୍ରିୟନାଥ ବାବୁ ସେତେବେଳକୁ ସାଇକେଲ୍‌ରେ ବସି ଚାଲିଯାଇଥିଲେ ଓ ଭାବୁଥିଲେ ପୂର୍ଣ୍ଣାନନ୍ଦଙ୍କ ପାଇଁ ବିହିତ ଦଣ୍ଡ ହୋଇଛି– ସ୍ତ୍ରୀଙ୍କର ହାତପୋଡ଼ିଗଲା; କାରଣ ଧର୍ମ ଓ ଆଧ୍ୟାତ୍ମ୍ୟ ଚର୍ଚ୍ଚାବେଳେ ତାଙ୍କର ମତିର ସ୍ଖଳନ ଘଟିଥିଲା ।

ସେ ଅନ୍ୟମନସ୍କ ରହଯାଇଥିଲେ ।





# ଶ୍ରୀ ରାଜକିଶୋର ରାୟ

ସେଦିନ ଶ୍ରୀ ରାଜକିଶୋର ରାୟ ଓ ଓଡ଼ିଆ କ୍ଷୁଦ୍ରଗଳ୍ପ ନାମ ଦୁଇଟି ଥିଲା ସମାର୍ଥକ । ଶ୍ରୀ ରାୟ ଲେଖିଛନ୍ତି ୧୯୪୧ ରୁ ଆମରଣ ୧୯୯୮ ପର୍ଯ୍ୟନ୍ତ । ହିମାଳୟ ଯେପରି ପୂର୍ବାପର ତ୍ୱୟନିଧି ରେ ଅବଗାହନ ପୂର୍ବକ ପୃଥିବୀର ମାନଦଣ୍ଡ ପରି ଦଣ୍ଡାୟମାନ, ସେମିତି ସେ ସ୍ୱାଧୀନତା ପ୍ରାପ୍ତିର ପୂର୍ବାପର କାଳକୁ ଅଭିଭୂତ କରି ସେଦିନ ଓଡ଼ିଆ କ୍ଷୁଦ୍ରଗଳ୍ପର ମାନଦଣ୍ଡ ପରି ଦୃପ୍ତଭଂଗୀରେ ଉଭା ରହିଥିଲେ ।

ଯେ କୌଣସି ବିଷୟକୁ ଗଳ୍ପରେ ପରିଣତ କରିବାର ଦୁର୍ଲ୍ଲଭ ସାମର୍ଥ୍ୟ ଥିଲା ତାଙ୍କର । ତାଙ୍କ ଜୀବନଯାପନରେ ଯେମିତି ଥିଲା ଏକ ସ୍ପର୍ଦ୍ଧା ବ୍ୟଂଜକ ନାଟକୀୟ ଭଂଗୀ, ସେମିତି ଗଳ୍ପ ରଚନାରେ ଥିଲା ସମାନ୍ତରାଳ ଭାବରେ ସଂଭ୍ରାନ୍ତ ଭାଷାରେ ଏକ ସହଜ ବିଦଗ୍ଧ କଳିଙ୍ଗ - ଶିଳ୍ପୀ ସୁଲଭ ନାଟ୍ୟାବେଗାକ୍ରାନ୍ତ ସୁନ୍ଦର ପରିପାଟୀ ।

ସଂଖ୍ୟା ପ୍ରତୁଳ । ସହଜାତ ଥିଲା ତାଙ୍କର ସତ୍ୟ, ପ୍ରେମ ଓ ସୌନ୍ଦର୍ଯ୍ୟ ପ୍ରତି ଗଭୀର ଅନୁରାଗ; ପୁଷ୍ପ, ନାରୀ ଓ ସବୁ ଅବସ୍ଥାରେ ଜୀବନର ପ୍ରସନ୍ନତା ପ୍ରତି ପରାନୁରକ୍ତି, ତଥା ଜଗତ ଓ ଜୀବନର ଅନୁଭୂତି, ଅଭିଜ୍ଞତା ବୈଚିତ୍ର୍ୟ ପ୍ରତି ପ୍ରବଳ ଆକର୍ଷଣ ।

ଏମିତି ଗୋଟିଏ ଗୋଟିଏ କଥାଶିଳ୍ପୀଙ୍କୁ ପାଇଲେ ଭାଷା ଧନୀ ହୋଇଯାଏ । ତାଙ୍କ ଗଳ୍ପ ସମଗ୍ରର ମନୋଜ୍ଞ ମୃତ୍ୟୁଞ୍ଜୟ ସଂକଳନ ଟି ପ୍ରକାଶିତ । ଏହା ଯେମିତି ବିଶାଳ ସେମିତି ବର୍ଣ୍ଣୋତ୍ସବମୟ ।

ମାଳବିକା ରାୟ








ଜଗନ୍ନାଥ ରଥ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ